# ଗୋପାଳକୃଷ୍ଣ
# ସୃଷ୍ଟି-ସମୀକ୍ଷା

[ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଡି. ଲିଟ୍. ଡିଗ୍ରୀପ୍ରାପ୍ତ ସନ୍ଦର୍ଭ-୧୯୮୧ ]

ଡକ୍ଟର **ଗଙ୍ଗାଧର ବଳ**, ଏମ୍. ଏ., ଡି. ଲିଟ୍.
ପ୍ରଫେସର୍ ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ରେଭେନ୍ସା କଲେଜ, କଟକ

# GOPALAKRUSHNA SRUSTI-SAMIKSHYA

By Dr. Gangadhar Bal
First Edition : 1985
Price : Rs 50/-

ପ୍ରକାଶକ : ଡକ୍ଟର ଗଙ୍ଗାଧର ବଳ, କଟକ

ପ୍ରାପ୍ତିସ୍ଥାନ : ଗ୍ରନ୍ଥମନ୍ଦିର, କଟକ-୨ ଓ ବ୍ରହ୍ମପୁର-୧

ମୁଦ୍ରକ : ପ୍ରାଚୀ ପ୍ରତିଷ୍ଠାନ, କଟକ

ପ୍ରଥମ ସଂସ୍କରଣ : ଦଶହରା, ୧୯୮୫

ମୂଲ୍ୟ : ଟ ୫୦-୦୦
ସାଦା ବନ୍ଧେଇ : ଟ ୪୫-୦୦

# ସୂଚୀପତ୍ର





# ସଂକ୍ଷିପ୍ତୀକରଣ

ଅନୁ.—ଅନୁବାଦକ

ଅପ୍ର.—ଅପ୍ରକାଶିତ

ଅ. ଶ.—ଅମରୁ ଶତକ

ଅ. ସା. ସିଂ.—ଅଭିମନ୍ୟୁ ସାମନ୍ତସିଂହାର

ଉ. ନୀ.—ଉଜ୍ଜ୍ୱଳ ନୀଳମଣିଃ

ଓ. ସା. ଏ.—ଓଡ଼ିଶା ସାହିତ୍ୟ ଏକାଡେମୀ

କ. ସୂ.—କବିସୂର୍ଯ୍ୟ

କ. ସୂ. ଗ୍ରଂ.—କବିସୂର୍ଯ୍ୟ ଗ୍ରନ୍ଥାବଳୀ

କି. ଚ. ଚଂ.—କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ

କୁ. ସ.—କୁମାର ସମ୍ଭବମ୍

କେ. କୋ.—କେଶବ କୋଇଲି

କେ. ନା. ମ.—କେଦାରନାଥ ମହାପାତ୍ର

କୃ. କ. ମୃ.—ଶ୍ରୀକୃଷ୍ଣ କର୍ଣ୍ଣାମୃତମ୍

କୃ. ଗ. ନା. ଦେ.—କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

କୃ. ଦା. କ.—କୃଷ୍ଣଦାସ କବିରାଜ

କୃ. ନ.—କୃପାସିନ୍ଧୁ ନରେନ୍ଦ୍ର ଦେବ

ଗ. ନା.—ଗଜପତି ନାରାୟଣ

ଗା. ସ. ଶ.—ଗାଥା ସପ୍ତଶତୀ

ଗା. ସ./ସଂ.—ଗାହା ସତ୍ତସଈ

ଗୀ. ଗୋ.—ଗୀତଗୋବିନ୍ଦମ୍

ଗୋ. ବ. ନା.—ଗୋବିନ୍ଦବଲ୍ଲଭ ନାଟକମ୍

ଗୋ. ଲୀ. ମୃ.—ଗୋବିନ୍ଦ ଲୀଳାମୃତମ୍

ଗୋ. କୃ.—ଗୋପାଳକୃଷ୍ଣ

ଗୋ. କୃ. ଗ୍ରଂ.—ଗୋପାଳକୃଷ୍ଣ ଗ୍ରନ୍ଥାବଳୀ

ଗୋ. କୃ. ପ.—ଗୋପାଳକୃଷ୍ଣ ପଦାବଳୀ (ପଦ୍ୟାବଳୀ)

ଗୌ. ବୈ. ଦ.—ଗୌଡୀୟ ବୈଷ୍ଣବ ଦର୍ଶନ

ଗ୍ରଂ.; ଗ୍ରଂ. ବ.—ଗ୍ରନ୍ଥାବଳୀ

ଗୃ. ପୁ.—ଗୃହପୁଷ୍ପାଞ୍ଜଳି

ଚୈ. ଚ. ମୃ.—ଚୈତନ୍ୟଚରିତାମୃତ

ଛ୍ର.—ଛନ୍ଦ

ଜ. ବ. ନା.—ଜଗନ୍ନାଥବଲ୍ଲଭ ନାଟକ

ଜ. ନା.—ଜଗନ୍ନାଥ ନାରାୟଣ

ଜୀ. ଗୋ.—ଜୀବଗୋସ୍ୱାମୀ

ଦ. ଅ.—ଦଶ ଅବତାର

ପ. ; ପ. ବ.—ପଦାବଳୀ (ପଦ୍ୟାବଳୀ)

ପ. ପୁ.—ପଦ୍ମପୁରାଣ

ପ୍ର.—ପ୍ରକାଶକ

ପା. ଖି.—ପାରଳାଖେମୁଣ୍ଡି

ପ୍ରେ. ଚ.—ପ୍ରେମଚନ୍ଦ୍ରମଣି

ପୃ.—ପୃଷ୍ଠା

ବା. ବୈ. ଚ.—ବାବାଜୀ ବୈଷ୍ଣବଚରଣ ଦାସ

ବି. କୁ.—ବିଳାପ କୁସୁମାଞ୍ଜଳିଃ

ବି. ଚ. ପ.—ବିଦ୍ୟାପତି-ଚଣ୍ଡୀଦାସ ପଦାବଳୀ

ବି. ଚ.—ବିଦଗ୍ଧଚନ୍ଦ୍ରମଣି

ବି. ମା.—ବିଦଗ୍ଧ ମାଧବ ନାଟକ

ବୈ. ପ.—ବୈଷ୍ଣବ ପଦାବଳୀ

ବ୍ର. ବୈ. ପୁ.—ବ୍ରହ୍ମ ବୈବର୍ତ୍ତ ପୁରାଣ

ଭ. ର. ମୃ. ସିଂ.—ଭକ୍ତିରସାମୃତ ସିନ୍ଧୁଃ

ରା. କୃ.—ରାମକୃଷ୍ଣ

ରା. କୃ. ପ.—ରାଧାକୃଷ୍ଣ ପଦ୍ୟାବଳୀ

ରୂ. ଗୋ.—ରୂପଗୋସ୍ୱାମୀ

ଲ. ମା.—ଲଳିତମାଧବ ନାଟକ

ଶ୍ରୀ. ଜ. ଗୀ. ଗୋ.—ଶ୍ରୀ ଜୟଦେବ ଶ୍ରୀଗୀତଗୋବିନ୍ଦ

ଶ୍ରୀ. ଭା.—ଶ୍ରୀମଦ୍ ଭାଗବତ

ସ. କ.—ସଦୁକ୍ତି କର୍ଣ୍ଣାମୃତ

ସଂ.—ସଂସ୍କରଣ

ସଂ. କ.—ସଂକଳକ

ସଂ. ଗ୍ରା.—ସଂଗ୍ରାହକ

ସ. କୁ. ପା.—ସରୋଜକୁମାର ପାଣିଗ୍ରାହୀ

ସଂପା.—ସମ୍ପାଦକ, ସମ୍ପାଦିତ

ସା. ଦ.—ସାହିତ୍ୟଦର୍ପଣଃ

ସ୍ତ. କ. ଦ୍ରୁ.—ସ୍ତବକଲ୍ପଦ୍ରୁମଃ

A. B. O. R. I.—Annals of Bhandarkar Oriental Research Institute.

ed.—edited

edn.—edition

F. N.—Foot Note

G. D. M.—The Ganjam District Manual

H. B. L.—History of Brajabuli Literature

H. O. G.—History of the Gangas.

H. S. L.—History of Sanskrit Literature

H. V. F. M.—Early History of the Vaisnav Faith and Movement in Bengal

I. O.—Inscriptions of Orissa.

J. B. O. R. S.—Journal of Bihar Orissa Research Society.

O. H. R. J.—The Orissa Historical Research Journal.

P.—Page.

Pub.—Published, Publisher.

———



[ ଗୋପାଳକୃଷ୍ଣଙ୍କ
କାଷ୍ଠ ନିର୍ମିତ ମୂର୍ତ୍ତି ]

[ ଚିତ୍ର ]



[ ରସିକରାଜ ଶ୍ରୀକୃଷ୍ଣ
ଓ
ଶ୍ରୀରାଧାଙ୍କ ବିଗ୍ରହ ]

[ ଚିତ୍ର ୧ ]



[ ଚିତ୍ର ୩ ]

[ ଚିତ୍ର ୩ : କବିଙ୍କ ଗୃହରେ ସଂରକ୍ଷିତ ଗୋ. କୃ. ପ.ର ସଂପାଦକ ରାମକୃଷ୍ଣ ପଟ୍ଟନାୟକ (ତୁଳସୀମାଳା ଓ ଚଷମା ପରିହିତ) ଏବଂ କବିଙ୍କ ମୂର୍ତ୍ତିନିର୍ମାତା ବୃନ୍ଦାବନଚନ୍ଦ୍ର ପଟ୍ଟନାୟକଙ୍କ ଆଲୋକ ଚିତ୍ର ।

[ ଚିତ୍ର ୪ : ପାରଳାଖେମୁଣ୍ଡି କରଣସାହିରେ ପ୍ରତିଷ୍ଠିତ ରସିକରାଜ ମନ୍ଦିର ]



[ ଚିତ୍ର ୪ ]

# ମୁଖବନ୍ଧ

## ( ଏକ )

ଓଡ଼ିଶାରେ ଖ୍ୟାତନାମା କବିମାନଙ୍କର ରଚନାର ବିଧିବଦ୍ଧ ଗବେଷଣା ଓ ସମୀକ୍ଷା ଏ ଅବଧି ନ୍ୟୁନତମ ହୋଇଛି । ଗୋପାଳକୃଷ୍ଣଙ୍କର ପଦାବଳୀ ସମ୍ପର୍କରେ ଓଡ଼ିଶାରେ ବିଭିନ୍ନ ସମୟରେ ବିଭିନ୍ନ ଲେଖକଙ୍କ ଦ୍ୱାରା ପ୍ରବନ୍ଧ ଓ ପୁସ୍ତିକା ରଚିତ ହୋଇଥିଲେ ମଧ୍ୟ (ପରିଶିଷ୍ଟ 'ପାଞ୍ଚ' ଦ୍ରଷ୍ଟବ୍ୟ) ସେ ଗୁଡ଼ିକରେ ବିଜ୍ଞାନ-ସମ୍ମତ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀର ଅଭାବ ଲକ୍ଷିତ ହୁଏ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଏହି ଖ୍ୟାତନାମା ଗୀତ-କବିଙ୍କର ସଙ୍ଗୀତର ସଂଗ୍ରହ ଓ ମୁଦ୍ରଣ ହୋଇ ଆସୁଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ସେଗୁଡ଼ିକର ବିଜ୍ଞାନ-ସମ୍ମତ ସଂସ୍କରଣ ହୋଇ ପାରିନାହିଁ । ବହୁ ଗୀତର ଉଦ୍ଧାର ହୋଇ ପାରିନାହିଁ ଏବଂ କେତେକ ଗୀତ ନଷ୍ଟ ହୋଇ ଯାଉଛି । କବିଙ୍କ ବଂଶଧର (ଅନୌରସ) ରାମକୃଷ୍ଣ ପଟ୍ଟନାୟକଙ୍କ ଦ୍ୱାରା ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ସଂଗ୍ରହକୁ ବାଦ ଦେଲେ (ତା'ର ଅବିକଳ ନକଲ କୃଷ୍ଣଚନ୍ଦ୍ର ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଏବଂ ଓଡ଼ିଶା ଜଗନ୍ନାଥ କମ୍ପାନୀ ପ୍ରକାଶିତ କାଳୀଚରଣ ପଟ୍ଟନାୟକଙ୍କ ଅଗ୍ରଲେଖାଯୁକ୍ତ ଗୋପାଳକୃଷ୍ଣ ପଦ୍ୟାବଳୀ) ଅନ୍ୟମାନଙ୍କ ଦ୍ୱାରା ସମ୍ପାଦିତ (ମୋହନ ଚରଣ ଦାସଙ୍କ ପ୍ରକାଶିତ 'ରାଧାକୃଷ୍ଣ ପଦ୍ୟାବଳୀ', ଏବଂ ବାବାଜୀ ବୈଷ୍ଣବ ଚରଣ ଓ ସରୋଜ କୁମାର ପାଣିଗ୍ରାହୀଙ୍କ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ) ପଦ୍ୟାବଳୀ ଓ ଗ୍ରନ୍ଥାବଳୀ ଗୁଡ଼ିକୁ ଗୋପାଳକୃଷ୍ଣଙ୍କ ରଚନାର ପ୍ରାମାଣିକ ସଂସ୍କରଣ ରୂପେ ଗ୍ରହଣ କରିବାରେ ବାଧା ରହିଛି (୧) ।

ମୋହନ ଚରଣ ଦାସଙ୍କ ପ୍ରକାଶିତ ରାଧାକୃଷ୍ଣ ପଦ୍ୟାବଳୀରେ କେତେକ ଗୀତର ପଦ ବିକୃତ କରାଯାଇଛି । ରାମକୃଷ୍ଣ ସମ୍ପାଦିତ ସଂସ୍କରଣର ଅପୂର୍ଣ୍ଣ ଗୀତ ଗୁଡ଼ିକୁ କପୋଳ-କଳ୍ପିତ ଭାବରେ ପୂରଣ କରାଯାଇଛି, ପୁଣି ନାମକରଣ ଦୃଷ୍ଟିରୁ ଅପ୍ରାସଙ୍ଗିକ ଗ୍ରାମ୍ୟରସ ବା ଆଦିରସାତ୍ମକ ଗୀତର ମଧ୍ୟ ସନ୍ନିବେଶ କରାଯାଇଛି । ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀ ରାମକୃଷ୍ଣ ସଂସ୍କରଣର ପ୍ରାପ୍ତ ଦୁଇଗୁଣ । ରାମକୃଷ୍ଣ ସ[illegible]ରର ଗୋଟିଏ ଅପୂର୍ଣ୍ଣ ଗୀତ ପୂରଣ କରାଯାଇଛି ।

(୧) ସନ୍ଦର୍ଭ'ର ଚତୁର୍ଥ ପରିଚ୍ଛେଦ ଏବଂ ପରିଶିଷ୍ଟ (ଏକ) ଦ୍ରଷ୍ଟବ୍ୟ ।

ରାମକୃଷ୍ଣ ସଂସ୍କରଣର ବାହାରେ ଯେଉଁ ଗୀତ ଗୁଡ଼ିକ ସନ୍ନିବେଶିତ ହୋଇଛି, ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଗୋପାଳକୃଷ୍ଣଙ୍କ ଜଣାଶୁଣା ଗୀତର ଭାଷା ଓ ଶୈଳୀ ସହ ତୁଳନା କରି ଦେଖିଲେ ପୃଥକ୍ ବୋଧ ହୋଇଯା'ନ୍ତି । ସେଗୁଡ଼ିକ ଗୋପାଳକୃଷ୍ଣଙ୍କ ନାମରେ ଭଣିତ ହୋଇଥିଲେ ମଧ୍ୟ ସେଗୁଡ଼ିକର ପିତୃତ୍ୱ ସମ୍ପର୍କରେ ପାଠକ ଓ ସମାଲୋଚକମାନଙ୍କ ମନରେ ସନ୍ଦେହ ଜାତହେବା ସ୍ୱାଭାବିକ (୨) । ତେଣୁ ଏହାକୁ ଗୋପାଳକୃଷ୍ଣଙ୍କ ରଚନାବଳୀର ଏକ ପ୍ରାମାଣିକ ସଂଗ୍ରହ କହିହେବ ନାହିଁ । ସରୋଜ କୁମାର ପାଣିଗ୍ରାହୀ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ (୧ମ ଭାଗ)ରେ କେତୋଟି ନୂତନ ଗୀତ ସନ୍ନିବେଶିତ ହୋଇଛି ଏବଂ ବାବାଜୀ ବୈଷ୍ଣବ ଚରଣଙ୍କ ସମ୍ପାଦିତ ଗ୍ରନ୍ଥାବଳୀର ୮୪ଟି ନୂତନ ଗୀତ ସହିତ ଏ ଗ୍ରନ୍ଥାବଳୀର ୮୪ଟି ନୂତନ ଗୀତର ମେଳ ରହିଛି; କିନ୍ତୁ ରାମକୃଷ୍ଣ ସମ୍ପାଦିତ ଗୋପାଳ-କୃଷ୍ଣ ପଦ୍ୟାବଳୀର କେତୋଟି ଗୀତ ଏଥିରେ ନାହିଁ । ତୁଳନାତ୍ମକ ଆଲୋଚନା ଫଳରେ ଏହି ୮୪ଟି ନୂତନ ଗୀତ ମଧ୍ୟରୁ ଅଧିକାଂଶ ଗୋପାଳକୃଷ୍ଣଙ୍କର ନୁହେଁ ବୋଲି ଜଣାପଡ଼ୁଛି । ତା'ଛଡ଼ା ପୂର୍ବପ୍ରକାଶିତ ପଦ୍ୟାବଳୀ ଓ ଗ୍ରନ୍ଥାବଳୀର ଭାବ ଓ ରସ ଦୃଷ୍ଟିରୁ ଗୀତ ଗୁଡ଼ିକର ଯେପରି ସଜ୍ଜୀକରଣ-ଶୃଙ୍ଖଳା ଦେଖାଯାଏ, ଏଥିରେ ତାହା ଦେଖାଯାଏନା । ପୁଣି ସୂଚୀପତ୍ର ଓ ଗୀତ ଗୁଡ଼ିକର ମୁଦ୍ରଣ ଜନିତ ଅଶୁଦ୍ଧି ପ୍ରଚୁର । ତେଣୁ ଏହା ମଧ୍ୟ କବିଙ୍କ ରଚନାର ଏକ ପ୍ରାମାଣିକ ସଂସ୍କରଣ ନୁହେଁ । ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ କବିଙ୍କ ଗୀତର ସଂଗ୍ରାହକ ବେବର୍ତ୍ତା ହରିବନ୍ଧୁ ପଟ୍ଟନାୟକଙ୍କ ବ୍ୟକ୍ତିଗତ ସଂଗ୍ରହ ଉପରେ ପ୍ରତିଷ୍ଠିତ । ଏ ପରିସ୍ଥିତିରେ ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଏବଂ କବିଙ୍କ ନାମରେ ଭଣିତ ହୋଇଥିବା ସନ୍ଦେହ ସୂଚକ ଗୀତଗୁଡ଼ିକୁ ବାଦ ଦେଇ ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ 'ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀ'କୁ ମୋର ଆଲୋଚନା ପାଇଁ ମୁଁ ମୁଖ୍ୟତଃ ଗ୍ରହଣ କରିଛି ।

କବିଙ୍କର ଜୀବନୀ ଭାଗର ଆଲୋଚନା ପାଇଁ ମୁଁ ରାମକୃଷ୍ଣ, ବାବାଜୀ ବୈଷ୍ଣବ ଚରଣ ଓ ଫକୀରମୋହନ ଦାସଙ୍କ ଲିଖିତ ଜୀବନୀର ସାହାଯ୍ୟ ନେଇଛି ଏବଂ ସରୋଜ କୁମାର ପାଣିଗ୍ରାହୀଙ୍କ ଦ୍ୱାରା ସୂଚିତ ଗୋଟିଏ ଜନଶ୍ରୁତି ଉଲ୍ଲେଖ କରିଛି ।

( ଦୁଇ )

କବିଙ୍କ ଜୀବନୀ ଓ ରଚନା ସମ୍ପର୍କରେ ଅଧିକ ଉପାଦାନ ସଂଗ୍ରହ ଉଦ୍ଦେଶ୍ୟରେ ତା ୫।୧୨।୭୮ରିଖରେ ପାରଳାଖେମୁଣ୍ଡି ଯାତ୍ରା କରିଥିଲି । ପାରଳାଖେମୁଣ୍ଡିର କରଣ ସାହିରେ ଅବସ୍ଥିତ କବିଙ୍କର ବାସଗୃହ ଓ ତାଙ୍କର ବଂଶଧରମାନଙ୍କ ସମ୍ପର୍କରେ ଅନୁସନ୍ଧାନର ସୁଯୋଗ ମୋତେ ଘଟିଥିଲା । ଏ ଦିଗରେ ମୋତେ ସାହାଯ୍ୟ କରିଥିଲେ ପାରଳାଖେମୁଣ୍ଡି ସବ୍‌ରେଜିଷ୍ଟ୍ରାର୍ ଅଫିସର କର୍ମଚାରୀ ଶ୍ରୀମାନ୍ ଭବାନୀ ଶଙ୍କର ପଟ୍ଟନାୟକ (ଗୋପାଳକୃଷ୍ଣ

(୨) ତଦେବ

କଳା ଓ ସଂସ୍କୃତି ପରିଷଦର ସଭ୍ୟ) ଏବଂ ମୋର ଗୁରୁ ଅଧ୍ୟାପକ ଧୀରେନ୍ଦ୍ରନାଥ ଶତପଥୀ । ମୁଁ କବିଙ୍କ ବାସଗୃହରେ ତାଙ୍କର ଉତ୍ତରାଧିକାରୀମାନଙ୍କ ଗହଣରେ କିଛିକାଳ ଅତିବାହିତ କରିବାର ସୁଯୋଗ ପାଇଥିଲି । ଉତ୍ତରାଧିକାରୀଙ୍କ ମଧ୍ୟରୁ ଚକ୍ରପାଣି ପଟ୍ଟନାୟକଙ୍କ ପୁତ୍ର ବ୍ରଜବନ୍ଧୁ ପଟ୍ଟନାୟକ (ମହାରାଜା ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ଶିକ୍ଷକ), ତାଙ୍କର ଜ୍ୟେଷ୍ଠ ଭ୍ରାତା ଏବଂ ଜ୍ୟେଷ୍ଠ ପୁତ୍ର ଶ୍ରୀମାନ୍ ରାଧାରମଣ ପଟ୍ଟନାୟକ (ଗୋପାଳ-କୃଷ୍ଣ କଳା ଓ ସଂସ୍କୃତିପରିଷଦର ସମ୍ପାଦକ) ମୋ ସହିତ ଆଳାପ ଆଲୋଚନାରେ ଯୋଗ ଦେଇ କବିଙ୍କ ସମ୍ପର୍କରେ ନାନା ଘଟଣା ବର୍ଣ୍ଣନା କରିଥିଲେ । ଚକ୍ରପାଣି ପଟ୍ଟନାୟକ ସ୍ୱର୍ଗତ ଗୋପାଳକୃଷ୍ଣ ପଦ୍ୟାବଳୀର ସମ୍ପାଦକ ରାମକୃଷ୍ଣ ପଟ୍ଟନାୟକଙ୍କର ଭ୍ରାତା । ସେ ଥିଲେ ଜଣେ ସଙ୍ଗୀତଜ୍ଞ ଯେ କି ଗୋପାଳକୃଷ୍ଣଙ୍କ ଗୀତର ପାରମ୍ପରିକ ଗାନ ଶୈଳୀ ସହିତ ସୁପରିଚିତ । କଟକ ଆକାଶବାଣୀ ତରଫରୁ କେତେଥର ତାଙ୍କ ଗୀତ ରେକର୍ଡ଼ କରାଯାଇ ପ୍ରଚାର କରାଯାଇଥିଲା । ଚକ୍ରପାଣି ଗୋପାଳକୃଷ୍ଣଙ୍କ ସମ୍ପର୍କରେ ନାନା ଶ୍ରୁତ ଓ ପ୍ରାପ୍ତ ବିବରଣୀ ସଂକ୍ଷିପ୍ତ ଭାବରେ ତାଙ୍କର ଦୈନିକ ଟିପା ଖାତାରେ ଲିପିବଦ୍ଧ କରି ରଖିଥିଲେ (୩) । ତାର ଅବଲମ୍ବନରେ ଶ୍ରୀମାନ୍ ରାଧାରମଣ ଗୋପାଳକୃଷ୍ଣଙ୍କ ଜୀବନୀ ସମ୍ପର୍କରେ ନାନା ଘଟଣା ଓ କିମ୍ବଦନ୍ତୀ ଲିପିବଦ୍ଧ କରିଛନ୍ତି (ମୋର ଅନୁରୋଧରେ ସେ କବି ସମ୍ପର୍କୀୟ କିୟଦଂଶ ଚକ୍ରପାଣିଙ୍କ ଟିପା ଖାତାରୁ ପଢ଼ି ଶୁଣାଇଥିଲେ ) । ଶ୍ରୀମାନ୍ ରାଧାରମଣ ପ୍ରକାଶିତ ହୋଇଥିବା କବିଙ୍କର ଆବିର୍ଭାବ କାଳ ଓ ବଂଶଲତା ସଂପର୍କରେ ଦୃଷ୍ଟି ଦେଇ ବଂଶୀଧାରୀ ପଟ୍ଟନାୟକଙ୍କ ପୂର୍ବ ପୁରୁଷ, କବିଙ୍କର ପୁତ୍ର କନ୍ୟା ଏବଂ ବର୍ତ୍ତମାନର ବଂଶଧରମାନଙ୍କ ସମ୍ପୂର୍ଣ୍ଣ ବିବରଣୀ ପ୍ରଦାନ କରିଥିଲେ । ସେ କହିଥିଲେ ଯେ ଗୋପାଳକୃଷ୍ଣଙ୍କର ଚାରି ପୁତ୍ର ଓ ଚାରି କନ୍ୟା ଥିଲେ । କବିଙ୍କ ଜୀବିତ କାଳରେ କନ୍ୟାମାନେ ଜୀବିତ ଥିଲେ, ସବୁ ପୁତ୍ର ମରିଯାଇଥିଲେ ।

ରାଧାରମଣଙ୍କ ପିତା ବ୍ରଜବନ୍ଧୁ ବାବୁ କଥା ପ୍ରସଙ୍ଗରେ କହିଲେ ଯେ ଗୋପାଳକୃଷ୍ଣ କବି ହେବାର ବାସନା ରଖି କବିତା ଲେଖୁ ନ ଥିଲେ । ସେ ବୈଷ୍ଣବ ଧର୍ମର ଦୀକ୍ଷା ଗ୍ରହଣ କରିଥିଲେ । ରାଜକାର୍ଯ୍ୟ ସହ 'ରସିକରାଜ'ଙ୍କ (କବିଙ୍କ ପରିବାରରେ ପୂର୍ବ ପ୍ରତିଷ୍ଠିତ ରାଧାକୃଷ୍ଣ ବିଗ୍ରହ) ଧ୍ୟାନ ଓ ସେବାରେ ତାଙ୍କର ସମସ୍ତ ଅତିବାହିତ ହେଉଥିଲା । ତନ୍ମୟ ଅବସ୍ଥାରେ କବିଙ୍କ ଚିତ୍ତରେ ଯେଉଁ ଭାବତରଙ୍ଗ ଖେଳି ଯାଉଥିଲା କବି ଖଡ଼ି ସାହାଯ୍ୟରେ କାନ୍ଥ ବା ଚଟାଣରେ ଲେଖି ଦେଉଥିଲେ । କିନ୍ତୁ ଗୀତଗୁଡ଼ିକ ତାଳପତ୍ର ପୋଥିରେ ସଂଗ୍ରହ କରି ରଖିବାର ପ୍ରଚେଷ୍ଟା ତାଙ୍କର ନଥିଲା । କବିଙ୍କର ଅନୁସରଣକାରୀ ବେବର୍ତ୍ତା ହରିବନ୍ଧୁଙ୍କର ଦୃଷ୍ଟିରେ ପଡ଼ିଲମାତେ ସେ ସେଗୁଡ଼ିକୁ ତାଳପତ୍ର ପୋଥିରେ ଉଦ୍ଧାର କରି ସାଇତି ରଖୁଥିଲେ । ଭିତ୍ତି (କାନ୍ଥ) ଲିଖିତ କେତେକ ଗୀତ ଉଦ୍ଧୃତ ନ ହେବା ଫଳରେ

(୩) ବଂଶଧରମାନଙ୍କ ବିବରଣୀ ଅନୁଯାୟୀ ଚକ୍ରପାଣି ଗୋପାଳକୃଷ୍ଣଙ୍କ ପୁତ୍ର ହରିବନ୍ଧୁଙ୍କ କନ୍ୟା ସାନାମାଙ୍କ ଠାରୁ ବଂଶଲତା ଓ କବିଙ୍କ ସମ୍ପର୍କୀୟ ନାନା ଘଟଣା ଶୁଣି ତାଙ୍କ ଟିପା ଖାତାରେ ଲିପିବଦ୍ଧ କରିଥିଲେ ।

ନଷ୍ଟ ହୋଇଯାଇଛି (୪) । ସମୟେ ସମୟେ କବି ତାଳପତ୍ରରେ ଗୀତ ଗୋଟିଏ ଗୋଟିଏ ଲେଖି ଅନୁରୋଧ କରିଥିବା ଲୋକଙ୍କୁ ଦେଇ ଦେଉଥିଲେ । ସେ ସୂତ୍ରରୁ ହରିବନ୍ଧୁ କିଛି କିଛି ମଧ୍ୟ ସଂଗ୍ରହ କରି ପୋଥିରେ ନକଲ କରି ନେଉଥିଲେ । କେବଳ ହରିବନ୍ଧୁଙ୍କ ଯୋଗୁଁ ଗୋପାଳକୃଷ୍ଣ ପଦ୍ୟାବଳୀ ବୋଲି ଯାହା ବର୍ତ୍ତମାନ ଦେଖିବାକୁ ମିଳୁଛି ।

କବିଙ୍କ ସ୍ୱହସ୍ତ ଲିଖିତ ପୋଥିର ନମୁନା ଦେଖିବା ସମ୍ପର୍କରେ ଆଗ୍ରହୀ ହେବାରୁ ସେମାନେ ଦୁଃଖ ପ୍ରକାଶ କରି କହିଲେ ଯେ ସେମାନଙ୍କର ଦୁର୍ଭାଗ୍ୟ ଓ ଅଯୋଗ୍ୟତା ହେତୁ କବିଙ୍କ ହସ୍ତ ଲିଖିତ ତାଳପତ୍ରର କୌଣସି ନମୁନା ରଖି ପାରିନାହାନ୍ତି । କବିଙ୍କ ସମୟର ହାତଲେଖା ତାଳପତ୍ର ପୋଥି ତାଙ୍କ ପୂର୍ବରୁ ଜ୍ୟୋତିଃଶାସ୍ତ୍ର, ବ୍ୟାକରଣ ଓ ବୈଦ୍ୟଶାସ୍ତ୍ର ସମ୍ପର୍କୀୟ ପୋଥି ତାଙ୍କ ପୁରାତନ ଗୃହର ଆଣ୍ଟୁରେ କାଠବାକ୍ସରେ ରଖାଯାଉଥିଲା । ପ୍ରାୟ ୪୦ ବର୍ଷ ପୂର୍ବରୁ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଉଇ ଓ କୀଟ ଦ୍ୱାରା ନଷ୍ଟ ହୋଇ କିଛି ଅଂଶ ରହିଥିଲା । ରାମକୃଷ୍ଣ ପଟ୍ଟନାୟକଙ୍କ ସମୟରେ ବୃନ୍ଦାବନର ଜନୈକ ବୈଷ୍ଣବ ସାଧୁ କବିଙ୍କ ଗୃହରୁ କେତେକ ଓଡ଼ିଆ ଓ ସଂସ୍କୃତ ପୋଥି ନେଇ ଯାଇଛନ୍ତି । କବିଙ୍କ ସ୍ୱହସ୍ତ ଲିଖିତ ପୋଥି ଓ ତାଙ୍କ ଗୀତ ରଚନାର ନମୁନା ତନ୍ମଧ୍ୟରେ ଯାଇଛି କି ନାହିଁ ନିର୍ଦ୍ଦିଷ୍ଟ ଭାବରେ କହିହେବ ନାହିଁ । ତାଛଡ଼ା ବିଭିନ୍ନ ଅଞ୍ଚଳର କେତେକ ଲୋକ ପ୍ରତ୍ୟର୍ପଣର ଆଶା ଦେଇ କେତେ ପୋଥି ନେଇ ଯାଇଛନ୍ତି । ସେ ସମସ୍ତ ଆଉ ଫେରି ଆସିନାହିଁ । କବି ରଘୁନାଥ ହରିଚନ୍ଦନ ଓ ତାଙ୍କର ସହକବି ବିଷ୍ଣୁଦାସଙ୍କ ଲିଖିତ କାବ୍ୟର ଦୁଇଟି ତାଳପତ୍ର ପୋଥିର ନକଲ ତାଙ୍କ ଗୃହରେ ଦେଖିବାକୁ ମିଳିଲା । ବେବର୍ତ୍ତୀ ହରିବନ୍ଧୁଙ୍କ ଗୃହରେ କବିଙ୍କ ରଚନାର ଯେଉଁ ସଂଗ୍ରହ ଥିଲା, ତା'ର ଅସ୍ତିତ୍ୱ ବର୍ତ୍ତମାନ ମିଳୁନାହିଁ । ମହାରାଜାଙ୍କର ପାଞ୍ଜିଆ କରଣ ଭାବରେ ତାଳପତ୍ର ପୋଥିରେ ଯାହା ଲେଖୁଥିଲେ ତାହା ମହାରାଜାଙ୍କ ଡ଼ିଅସରେ ରହୁଥିଲା, ପରେ ତା'ର କିଛି ନମୁନା ରହୁ ନଥିଲା ।

ରାଧାରମଣବାବୁ ଓ ତାଙ୍କର ବଡ଼ବାପା ତାଙ୍କ ଗୃହର ରାସ୍ତା ପାର୍ଶ୍ୱସ୍ଥ ଏକ କକ୍ଷରେ ଥିବା କବିଙ୍କର ମୂର୍ତ୍ତି ଓ ବିଭିନ୍ନ ଦେବ ବିଗ୍ରହ ପ୍ରତିଷ୍ଠିତ ଏକ ବିମାନ ଦେଖାଇ ମୂର୍ତ୍ତିର ନିର୍ମାତା ଓ ବିମାନଟି ତିଆରି ସମ୍ପର୍କରେ ନାନା ପ୍ରଶ୍ନର ଉତ୍ତର ଦେଇଥିଲେ । ସେମାନଙ୍କର ବିବରଣୀ ଅନୁଯାୟୀ କବିଙ୍କ ତିରୋଧାନର କିଛି ବର୍ଷ ପରେ (ପ୍ରାୟ ବାରବର୍ଷ) '[illegible]' ଗ୍ରାମ ନିବାସୀ ଦାରୁଖାନା ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ ଗୋପାଳକୃଷ୍ଣଙ୍କର କାଷ୍ଠମୂର୍ତ୍ତି (ପାଳଧୂଆ କାଠ ଓ ସୋଲରେ) ନିର୍ମାଣ କରିଥିଲେ । ମୂର୍ତ୍ତି ନିର୍ମାଣ ପରେ ଗୋପାଳକୃଷ୍ଣଙ୍କ କନ୍ୟା ପିତାଙ୍କ ମୁଖ ଓ ଆକୃତି ସହିତ ଏହାର ସାମଞ୍ଜସ୍ୟ ଲକ୍ଷ୍ୟ କରି ଅନୁମୋଦନ କରିଥିଲେ । କାଠ ଓ ସୋଲରେ ମୂର୍ତ୍ତି ତିଆରି କରାଯାଇ କନା ଓ କାଗଜ ମଡ଼ାଯାଇ ଖଡ଼ି ପଥର ରଙ୍ଗ ବୋଳା ଯାଇ ଅନ୍ୟ ରଙ୍ଗ (ଟେକ୍ରାଭ ହଳଦିଆ) ଦିଆଯାଇଛି । କବିଙ୍କର

---

(୪) ତତ୍କାଳୀନ ସାମାଜିକ ପ୍ରଥା ଦୃଷ୍ଟିରୁ ହରିବନ୍ଧୁ କବିଙ୍କ ପରିବାରର ଲୋକ ନ-ଥିବାରୁ ଅନ୍ତଃପୁରକୁ ପ୍ରବେଶ କରିପାରୁ ନଥିଲେ । ଫଳରେ ଅନ୍ତଃପୁରର ଭିତ୍ତିରେ ଲିଖିତ କେତେକ ଗୀତ ସଂଗୃହୀତ ନ ହେବା ଯୋଗୁଁ ଲୋପ ପାଇଯାଇଛି ।

ଦେହ ଥିଲା ରକ୍ତାଭ ଗୌରବର୍ଣ୍ଣ । ମୂର୍ତ୍ତି ନିର୍ମାଣ ପରେ ରାଜଦରବାରରେ ମୂର୍ତ୍ତି ବର୍ଷେ କାଳ ରହିଥିଲା । ସର୍ବସାଧାରଣଙ୍କ ପକ୍ଷରେ ମୂର୍ତ୍ତି ଦର୍ଶନର ସୁବିଧା ପାଇଁ ବଂଶୀନ୍ଧମାନଙ୍କ ଅନୁରୋଧ କ୍ରମେ ସେମାନଙ୍କ ଗୃହକୁ ଅଣାଗଲା । ବିମାନରେ ପ୍ରତିଷ୍ଠିତ ଅନ୍ୟ ଠାକୁରଙ୍କ ପୂଜା ସହିତ କବିଙ୍କର ମୂର୍ତ୍ତି ପୂଜା ଏ ଅବଧି ହୋଇଆସୁଛି । କରଣ ସାହିରେ ପ୍ରତିଷ୍ଠିତ ରସିକରାଜଙ୍କର (ଗୋପାଳକୃଷ୍ଣଙ୍କ ଗୁରୁମନ୍ଦିରରେ ପ୍ରତିଷ୍ଠିତ ବିଗ୍ରହ) ବାଳଭୋଗ ଅଣାଯାଇ ବିମାନରେ ପ୍ରତିଷ୍ଠିତ ମୂର୍ତ୍ତି, ପରେ କବିଙ୍କର ମୂର୍ତ୍ତିକୁ ଅର୍ପଣ କରାଯାଏ (ପାରମ୍ପରିକ ମନ୍ତ୍ରପାଠ କରାଯାଇ) । ବର୍ତ୍ତମାନ ଗୋପାଳକୃଷ୍ଣଙ୍କର ଅଧସ୍ତନ ନୀଳମଣିଙ୍କର ପତ୍ନୀ ବୃନ୍ଦା ରତ୍ନମଣି ପାରମ୍ପରିକ ଗୁରୁଦତ୍ତ ମନ୍ତ୍ରରେ ଠାକୁର ଓ କବିଙ୍କର ମୂର୍ତ୍ତି ପୂଜା କରନ୍ତି ।

କବିଙ୍କର ମୂର୍ତ୍ତି ପଦ୍ମାସନାସୀନ । ଦକ୍ଷିଣ ହସ୍ତ ଓ କଣ୍ଠରେ ତୁଳସୀମାଳା । ଉଚ୍ଚତା ପ୍ରାୟ ଚାରିଫୁଟ ହେବ । ମୂର୍ତ୍ତିକୁ ଚାହିଁଲେ ଜଣାଯାଏ ଯେ କବି ସୁସ୍ଥକାୟ ଓ ସୁଗଠିତ ଶରୀର ଥିଲେ । କବି ସକାଳେ ଓ ସନ୍ଧ୍ୟାରେ ନିୟମିତ ବ୍ୟାୟାମ କରୁଥିଲେ; ତାର ନିଦର୍ଶନ ସ୍ୱରୂପ ଦଣ୍ଡ ପକାଇବା ସମୟର (ଦାଣ୍ଡି କାଟିବା ପାଇଁ) କବିଙ୍କ ହସ୍ତ ବ୍ୟବହୃତ ଦୁଇଟି କାଷ୍ଠନିର୍ମିତ ଉପକରଣ (Small Parallel bar) ମୂର୍ତ୍ତି ପାର୍ଶ୍ୱରେ ସଂରକ୍ଷିତ ଅଛି । ମରହଟ୍ଟାକାଳୀନ ସାମାଜିକ ପରମ୍ପରା ଅନୁସାରେ ବର୍ଗୀ ଓ ପିଣ୍ଡାରୀ ପ୍ରଭୃତି ଶତ୍ରୁର ସମ୍ମୁଖୀନ ହେବାପାଇଁ କବି ମଧ୍ୟ ସମର-କୌଶଳ ଶିକ୍ଷା କରିଥିଲେ ଏବଂ ଖଡ୍ଗ ଚାଳନାରେ ଦକ୍ଷତା ଅର୍ଜନ କରିଥିଲେ (୫) । କବିଙ୍କ ବ୍ୟବହୃତ ଖଣ୍ଡା (ଯୋଡା-ମାଟିର ଖୋଳ ମଧ୍ୟରେ ରଖାଯାଇଥିବାରୁ ଏହା 'ମାଟିଖଣ୍ଡା' ନାମରେ ପରିଚିତ) ବର୍ତ୍ତମାନ ରାଜନଗରରେ କନକଦୁର୍ଗା ମନ୍ଦିରରେ ସଂରକ୍ଷିତ । କକ୍ଷରେ ଥିବା ବିମାନ ଗୋପାଳକୃଷ୍ଣ ପଦ୍ୟାବଳୀର ସଂପାଦକ ରାମକୃଷ୍ଣ ପଟ୍ଟନାୟକଙ୍କର (ଅଶୀବର୍ଷ ଜୀବିତ ଥିଲେ) ପୂର୍ବରୁ ପ୍ରତିଷ୍ଠିତ । ବିମାନରେ ରାଧାକୃଷ୍ଣ, ନୃସିଂହନାଥ, ପଞ୍ଚତତ୍ତ୍ୱ (ଚୈତନ୍ୟ, ନିତ୍ୟାନନ୍ଦ, ଅଦ୍ୱୈତ, ଗଦାଧର ଓ ଶ୍ରୀବାସ) ଏବଂ ବିଭିନ୍ନ ଲକ୍ଷଣ ଚିହ୍ନିତ ରାଧାକୃଷ୍ଣଙ୍କର ପାଦପଦ୍ମ ପୂଜିତ ହେଉଛନ୍ତି । କବିଙ୍କ ବ୍ୟବହୃତ ମାଳା ଓ ଲେଖନୀ ଏ ପର୍ଯ୍ୟନ୍ତ ସୁରକ୍ଷିତ ଅଛି । କକ୍ଷର ଭିତ୍ତିରେ ସ୍ୱର୍ଣ୍ଣନୋଳି ପରିହିତ ରାମକୃଷ୍ଣ ପଟ୍ଟନାୟକ ଓ ମୂର୍ତ୍ତି ନିର୍ମାତା ଭାଗୁଖିନା ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକଙ୍କର ଆଲେକ ଚିତ୍ର ମଧ୍ୟ ସୁରକ୍ଷିତ ।

ଶ୍ରୀମାନ୍ ରାଧାରମଣଙ୍କ ପ୍ରଦତ୍ତ ବିବରଣୀ ଅନୁଯାୟୀ ଚକ୍ରପାଣି ପଟ୍ଟନାୟକଙ୍କ ଲିଖିତ 'ଭକ୍ତକବି ଗୋପାଳକୃଷ୍ଣ' ଶୀର୍ଷକ ଲେଖା କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲର ମୁଖପତ୍ର 'କଳ୍ପତରୁ'ରେ ୧୯୫୭, ଅଗଷ୍ଟ ପ୍ରଥମ ସଂଖ୍ୟାରେ ପ୍ରକାଶ ପାଇଥିଲା । କବି ୬୮ ବର୍ଷ ଜୀବିତ ଥିଲେ ବୋଲି ସେଥିରେ ଉଲ୍ଲେଖ ରହିଛି । ପାରଳାଖେମୁଣ୍ଡିର କରଣ ସାହିରେ

---

(୫) କିମ୍ବଦନ୍ତୀ ଅଛି ଯେ କବି ତାଙ୍କ ଗୃହ ନିକଟସ୍ଥ ରସିକରାଜ ମନ୍ଦିର-ଚତ୍ୱରରେ ବସିଥିବା ବେଳେ ଏକ ପିଣ୍ଡାରି ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ କରିଥିଲା, କିନ୍ତୁ କବି ସମ୍ମୁଖସ୍ଥ ପିଣ୍ଡାରି ହସ୍ତରୁ ନିଜକୁ କୌଶଳ ସହକାରେ ରକ୍ଷା କରିଥିଲେ ।

ତାଙ୍କର (ରାଧାରମଣ ବାବୁ) ବାପାଙ୍କର ପିଉସା ଯୀମାଦ୍ରି ପଟ୍ଟନାୟକ 'ପୃଥ୍ୱୀରାଜ ନାଟକ' (ଗଜପତି ପ୍ରେସ୍‌ରେ ମୁଦ୍ରିତ) ଓ ବହୁ କବିତା ରଚନା ସହ ଗୋପାଳକୃଷ୍ଣଙ୍କର କେତୋଟି ସଙ୍ଗୀତ ଇଂରାଜୀରେ ଅନୁବାଦ କରିଥିଲେ (୭) । ଇଂରାଜୀ ଅନୁବାଦ ଆମେରିକାର କୌଣସି ଏକ ପତ୍ରିକାରେ ପ୍ରକାଶ ପାଇଥିଲା ।

କବିଙ୍କ ସମୟରେ ନିର୍ମିତ ବାସଗୃହ ବୁଲି ଦେଖିଥିଲି । ବ୍ରଜବନ୍ଧୁ ବାବୁଙ୍କ ବିବରଣୀ ଅନୁଯାୟୀ ବର୍ତ୍ତମାନର ଗୃହ ଗୋପାଳକୃଷ୍ଣଙ୍କ ସମୟର । ଗୃହର ପଶ୍ଚିମାର୍ଦ୍ଧର ଭୂମି କବିଙ୍କର ପୈତୃକ ଭୂମିଥିଲା । କବି ପୂର୍ବାର୍ଦ୍ଧଭୂମି କିଣି ନିଜେ ଗୃହ ନିର୍ମାଣ କରାଇଥିଲେ । ସେ ସମୟରେ ଗୃହ ଓ ଆଟୁଘର ଥିଲା, ବର୍ତ୍ତମାନ 'ଟିଣର' (ଖପରିଲ) ଛପର ହୋଇଛି ଏବଂ ପାହାଚ ତିଆରି କରାଯାଇଛି । କବିଙ୍କ ସମୟର ଇଷ୍ଟକ ନିର୍ମିତ ବାରଣ୍ଡା ଖମ୍ବମାନ ଏବେ ମଧ୍ୟ ରହିଛି । କବିଙ୍କ ସମୟରେ ନିର୍ମିତ ନାନା କମ ଓ କାରୁକାର୍ଯ୍ୟ (ରାଧାକୃଷ୍ଣ, ସଖୀ, ଲତା, ଶୁଆ ଓ କଳସ ଇତ୍ୟାଦି) ଶୋଭିତ ଦୃଢ ଦ୍ୱାରବନ୍ଧ ଓ ଦ୍ୱାର ସେହିପରି ରହିଛି । ଶାକରପଟା, ପାଭାରପଟା ଓ ଓଳଗ୍ରୁପଟାରେ ମଧ୍ୟ ନାନା କାରୁକାର୍ଯ୍ୟ ହୋଇଥିବାର ଲକ୍ଷ୍ୟକଲି (ଆଲେକ ଚିତ୍ର ଦ୍ରଷ୍ଟବ୍ୟ) ।

ଗୃହର ସଦର ଦ୍ୱାରର ଊର୍ଦ୍ଧ୍ୱଭାଗରେ ବିଭିନ୍ନ ରଙ୍ଗରେ ଚିତ୍ରିତ ରାଧାକୃଷ୍ଣ ଛବି ଦେଖିବାକୁ ପାଇଲି । ବ୍ରଜବନ୍ଧୁ ବାବୁ କହିଲେ ଯେ ଏ ଛବି କୌଣସି ଶିକ୍ଷିତ ଆର୍ଟିଷ୍ଟ୍ ଦ୍ୱାରା ନୁହେଁ, ପାରଳାଖିମୁଣ୍ଡିର ଚିତ୍ରକରମାନଙ୍କ ଦ୍ୱାରା ଅଙ୍କିତ । ଚିତ୍ରକରମାନେ ପରମ୍ପରାକ୍ରମେ ଏ କଳା ଆୟତ୍ତ କରିଥାନ୍ତି (୭) ।

ଚିତ୍ରାଙ୍କନରେ ସେମାନଙ୍କର ଅନୁପାତ-ଜ୍ଞାନର (ସେନ୍‌ସ ଅଫ୍ ପ୍ରୋପରସନ୍) ପ୍ରଶଂସା ନ କରି ରହି ହୁଏନାହିଁ । ତୁଳି କାଗଜରେ ଛବିଟିକୁ ମନୋମତ ରୂପ ଦେବାକୁ ହେଲେ ବର୍ତ୍ତମାନର ଆର୍ଟିଷ୍ଟ୍‌ମାନଙ୍କୁ ବାରମ୍ବାର ପେନ୍‌ସିଲ ଗାର ଲଗାଇବାକୁ ପଡ଼େ, କିନ୍ତୁ ଏ ଚିତ୍ରକରମାନଙ୍କର ହସ୍ତ ଏପରି କୁଶଳ ଯେ ଗୃହଭିତ୍ତିରେ ଯେଉଁ ଆକୃତି ଥରେ ରେଖା ସାହାଯ୍ୟରେ ଫୁଟାଇଥିବେ, ଦ୍ୱିତୀୟଥର ସଂଶୋଧନ ଆବଶ୍ୟକ ହୁଏନାହିଁ । ଏ ଚିତ୍ରରେ ସେମାନେ ଯେଉଁ ରଙ୍ଗ ବ୍ୟବହାର କରନ୍ତି, ତାହା ବର୍ତ୍ତମାନର ବିଭିନ୍ନ ରାସାୟନିକ ଦ୍ରବ୍ୟ-ମିଶ୍ରଣ-ପ୍ରସ୍ତୁତ ରଙ୍ଗ ନୁହେଁ, ଦେଶୀୟ ବସ୍ତୁରେ ନିର୍ମିତ ପାରମ୍ପରିକ ରଙ୍ଗ (ଟ୍ରେଡ଼ିସନାଲ୍ କଲର) । ପାରଳାଖିମୁଣ୍ଡିରେ ନିର୍ମିତ ଦେବମନ୍ଦିର ଓ ବିଗ୍ରହମାନ ଏହି ପାରମ୍ପରିକ ରଙ୍ଗରେ ଚିତ୍ରକରମାନଙ୍କ ଦ୍ୱାରା ଚିତ୍ରିତ । ମନ୍ଦିରଗାତ୍ର (ଆଭ୍ୟନ୍ତରୀଣ) ମାନଙ୍କରେ ଅଙ୍କିତ ବହୁ ଚିତ୍ର ଦୀର୍ଘକାଳ ଧରି ସେହିପରି ଉଜ୍ଜ୍ୱଳ ରହି ଚିତ୍ରକରମାନଙ୍କର କଳାକୁଶଳତାର ସାକ୍ଷ୍ୟ

(୭) କବିଙ୍କ ରଚିତ 'ଯଶୋଦା କୋଇଲି'ର ଅନୁବାଦ 'ଦି କୁକ୍' ପାରଳାଖିମୁଣ୍ଡିରେ କବିଙ୍କ ଜୟନ୍ତୀ-ବାସରରେ ଅନୁଷ୍ଠିତ ଏକ ସଭାରେ ପଠିତ ହୋଇଥିଲା ।

(୭) ପାରଳାଖିମୁଣ୍ଡିରେ ଏବେବି ଚିତ୍ରକରମାନେ ଅଛନ୍ତି, ଚିତ୍ରାଙ୍କନ ହେଉଛି ସେମାନଙ୍କ କୌଳିକ ବ୍ୟବସାୟ । ପାରଳାଖିମୁଣ୍ଡିରେ 'ଚିତ୍ରକର ସାହି' ନାମରେ ଏକ ସାହି ଅଛି ।

ବନ୍ଦନ କରିଛନ୍ତି । ଏବେ ମଧ୍ୟ ସେମାନେ ନାନା ଉତ୍ସବରେ (ବିଶେଷତଃ ବିବାହଘରରେ) ପାରଳାଖେମୁଣ୍ଡିର ଘରେ ଘରେ ସୁନ୍ଦର ସୁନ୍ଦର ଛବି ଅଙ୍କନ କରିଥାନ୍ତି (୮) । ବାସ୍ତବିକ ପାରଳାଖେମୁଣ୍ଡିରେ ରାଧାକୃଷ୍ଣଙ୍କୁ କେନ୍ଦ୍ର କରି ଏକ ଦିଗରେ ସଙ୍ଗୀତ ଚର୍ଚ୍ଚା (ରଚନା ଓ ଗାନ) ଓ ଅନ୍ୟଦିଗରେ ଆଲେଖ୍ୟ-ଶିଳ୍ପ ଚର୍ଚ୍ଚାର ଅପୂର୍ବ ସମନ୍ୱୟ ପାରଳାଖେମୁଣ୍ଡିକୁ ଏକ ମଞ୍ଜୁଳ କଳାପୀଠ ଭାବରେ ଗୌରବାନ୍ୱିତ କରି ପାରିବା ସଙ୍ଗେ ସଙ୍ଗେ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ତା'ର ପ୍ରଭାବ ବିସ୍ତାର କରି ଆସିଛି ।

ପାରଳାଖେମୁଣ୍ଡି ଓ ଗଞ୍ଜାମ ଅଞ୍ଚଳର ବିଭିନ୍ନ ରାଧାକୃଷ୍ଣ ମନ୍ଦିର ସମ୍ପର୍କରେ ଅନ୍ୟତ୍ର ସୂଚନା ଦିଆଯାଇଛି । ଯେଉଁ ମନ୍ଦିରଗୁଡ଼ିକ ସହ କବିଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା ସେଗୁଡ଼ିକ ହେଉଛନ୍ତି ପାରଳାଖେମୁଣ୍ଡି କରଣଯୋଡ଼ିର 'ରସିକରାଜ ମନ୍ଦିର'; ଘୁଞ୍ଚିଗ୍ରାମ, ଝାରଡ଼ା ଓ ଲିହୁରି ଗ୍ରାମର ରାଧାକୃଷ୍ଣ ମନ୍ଦିର । ପାରଳାଖେମୁଣ୍ଡିର ରସିକରାଜ ମନ୍ଦିର କବିଙ୍କ ପୂର୍ବରୁ ନିର୍ମିତ ହୋଇଥିଲା । କବିଙ୍କର ଏ ମନ୍ଦିର ସହିତ ନିବିଡ଼ ସମ୍ପର୍କ ହେତୁ ଏହାକୁ ତାଙ୍କର ଗୁରୁମନ୍ଦିର କୁହାଯାଏ । ଏ ମନ୍ଦିର ପରିଚାଳନା ପାଇଁ ଗୋପାଳକୃଷ୍ଣଙ୍କର ଅଜା ଅପୁତ୍ରିକ ଥିବାରୁ ବଂଶଲୋପ ଭୟ ହେତୁ ତାଙ୍କର ଭୂସମ୍ପତ୍ତିର କିଛିଅଂଶ ଦାନ କରିଥିଲେ । ବର୍ତ୍ତମାନ ପାରଳାଖେମୁଣ୍ଡିର ଆଡ଼ଭୋକେଟ୍ ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ହେଉଛନ୍ତି ଏ ମନ୍ଦିରର ପରିଚାଳକ । ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କର ପୂର୍ବପୁରୁଷ ପ୍ରତିଷ୍ଠିତ ବିଗ୍ରହର ପୂଜା ଓ ମନ୍ଦିର ପରିଚାଳନା କରି ଆସୁଥିଲେ । ପାରଳାଖେମୁଣ୍ଡିର ରାଜଗୁରୁ ସାହି ତଳକୁ ଅବସ୍ଥିତ କୋକିଳ ମଠ (ପରିଚ୍ଛା ମଠ) ସହିତ କବିଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଏହି ମଠର ସଂସ୍କାର ଓ ପରିଚାଳନାକୁ କେନ୍ଦ୍ର କରି ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି (୯) ।

ଗୋପାଳକୃଷ୍ଣଙ୍କର ବଂଶଲତା (ବର୍ତ୍ତମାନ ପର୍ଯ୍ୟନ୍ତ) ଅନ୍ୟତ୍ର ଦିଆଯାଇଛି । ଏହି ବଂଶର ରାମକୃଷ୍ଣ ପଟ୍ଟନାୟକ (ଗୋପାଳକୃଷ୍ଣ ପଦ୍ୟାବଳୀର ସମ୍ପାଦକ) ଥିଲେ ରେଭିନ୍ୟୁ

---

(୮) ରାଧାକୃଷ୍ଣ ସମ୍ପର୍କୀୟ କାବ୍ୟ ଓ ଚିତ୍ର ମୂଳରେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଯେ ଗୀତଗୋବିନ୍ଦର ପ୍ରେରଣା ଉତ୍କଳର କବି ଓ ଚିତ୍ରକରମାନଙ୍କୁ ଯୁଗେ ଯୁଗେ ଉତ୍ସାହିତ କରି ଆସିଛି, ଉତ୍କଳର ଶୃଙ୍ଗାରଧର୍ମୀ ଲୌକିକ ଓ ବୈଷ୍ଣବ କାବ୍ୟ ଏବଂ ଭିତ୍ତିରେ (ଗୃହ, ମଠ ଓ ମନ୍ଦିରର ଭିତ୍ତି) ମନୋଜ୍ଞ ଚିତ୍ରାଙ୍କନ ତା'ର ପ୍ରମାଣ ।

କେଦାର ନାଥ ମହାପାତ୍ର, ଶ୍ରୀ ଜୟଦେବ ଶ୍ରୀ ଗୀତଗୋବିନ୍ଦ, ୧୯୭୩, ପୃ-୧୫୦

(୯) ଗୋପାଳକୃଷ୍ଣଙ୍କର କବିତ୍ୱ ଓ ସଙ୍ଗୀତ ପ୍ରତିଭାରେ ମୁଗ୍ଧ ହୋଇ ମହାରାଜା ଶ୍ରୀ ଜଗନ୍ନାଥ ଗଜପତି ନାରାୟଣ ଦେବଙ୍କର ରକ୍ଷିତା ଯମୁନା ମହାଦେଈ କିଛି ସୁନା ଅଳଙ୍କାର ଅଙ୍ଗାରରେ ଘୋଡ଼ାଇ କବିଙ୍କ ନିକଟକୁ ଉପହାର ସ୍ୱରୂପ ପଠାଇଥିଲେ । କବି ତାହା ଜାଣିପାରି ମହାଦେଈଙ୍କୁ ଫେରାଇ ଦେବାପାଇଁ ଅଳଙ୍କାର ବାହକ ବ୍ରାହ୍ମଣକୁ ନିର୍ଦ୍ଦେଶ ଦେଇଥିଲେ । ବାହକ ଅଳଙ୍କାରରୁ କିଛି ଆତ୍ମସାତ୍ କରି ଅବଶିଷ୍ଟ ଧନ ପୂର୍ବ ପ୍ରତିଷ୍ଠିତ କୋକିଳ ମଠର ସଂସ୍କାର ଓ ପରିଚାଳନାରେ ବିନିଯୋଗ କରିଥିଲେ ।

ଇନସ୍‌ପେକ୍ଟର । ତାଙ୍କର ଭ୍ରାତା ସୂର୍ଯ୍ୟନାରାୟଣ ଥିଲେ ବୈଦ୍ୟ । ବନବାସୀ (କବିଙ୍କର ନାତି ବୈଷ୍ଣବ ଚରଣଙ୍କର ପୁତ୍ର) ଥିଲେ ଡ. ଏସ୍. ସି. । ଭ୍ରାତା ଗୋବିନ୍ଦଚନ୍ଦ୍ର ଥିଲେ ଷ୍ଟାମ୍ପ ଭେଣ୍ଡର୍ ଓ ଚକ୍ରପାଣି ଥିଲେ ଶିକ୍ଷକ । ଚକ୍ରପାଣିଙ୍କର ଚାରିପୁତ୍ର । ଜ୍ୟେଷ୍ଠପୁତ୍ର ବ୍ରଜବନ୍ଧୁ ପୁରୁଷୋତ୍ତମପୁର ବାଳିକା ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ, ଦ୍ୱିତୀୟ କୃଷ୍ଣଚନ୍ଦ୍ର, ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟର୍ (ଅବସରପ୍ରାପ୍ତ), ତୃତୀୟ ଗୋପାଳକୃଷ୍ଣ ଓଡ଼ିଶା ସରକାରଙ୍କର ପରିସଂଖ୍ୟାନ ବିଭାଗର କର୍ମଚାରୀ ଏବଂ ଚତୁର୍ଥ ବ୍ରଜବନ୍ଧୁ ମହାରାଜା ଉଚ୍ଚ ଇଂରାଜୀ ବିଦ୍ୟାଳୟର ସହକାରୀ ଶିକ୍ଷକ । ବ୍ରଜବନ୍ଧୁଙ୍କର ଜ୍ୟେଷ୍ଠପୁତ୍ର ରାଧାରମଣ ଗୋପାଳକୃଷ୍ଣ ସ୍ମୃତି ଓ କଳାପରିଷଦର ସମ୍ପାଦକ ।

ଓଡ଼ିଶାର ଖ୍ୟାତନାମା ଲିପିତତ୍ତ୍ୱବିତ୍ ପଦ୍ମଶ୍ରୀ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ମତରେ (୧୦) ବିଖ୍ୟାତ ବୈଷ୍ଣବ କବି ରାୟରାମାନନ୍ଦ ହେଉଛନ୍ତି ପାରଳାଖେମୁଣ୍ଡିରେ ଶୁଦ୍ଧା ଭକ୍ତି ପ୍ରଚାରର ମୂଳ ପ୍ରେରଣା । ମଞ୍ଜୁଷା ଓ ଘୁମୁସରର ଜମିଦାର (ରାଜା)ମାନେ ଥିଲେ ରାୟ ରାମାନନ୍ଦଙ୍କର ଶିଷ୍ୟ । ରାୟ ରାମାନନ୍ଦଙ୍କର ପ୍ରେରଣା ଓ ଚୈତନ୍ୟଙ୍କର ପଦଯାତ୍ରା (ପାରଳାଖେମୁଣ୍ଡି ମଧ୍ୟଦେଇ) ହେତୁ ଏଠାରେ ଶୁଦ୍ଧା ଭକ୍ତିର ବିଶେଷ ପ୍ରଚାର ହୋଇଛି । ଚୈତନ୍ୟ ତାଙ୍କର ଦାକ୍ଷିଣାତ୍ୟ ତୀର୍ଥାଟନରେ ପୁରୀଠାରୁ ନୟାଗଡ଼, ଘୁମୁସର, ଅଠଗଡ଼, ମହୁରୀ, ବଡ଼ଖେମୁଣ୍ଡି, ପାରଳାଖେମୁଣ୍ଡି, ପାରଳାର ସୀମାନ୍ତ ଦେବତା ମୁଖ ଲିଙ୍ଗେଶ୍ୱର, ଶ୍ରୀକୂର୍ମମ୍, ସୀମାଚଳମ୍, ବିଦ୍ୟାନଗର (ରାଜମହେନ୍ଦ୍ରୀ), ଶ୍ରୀରଙ୍ଗମ୍ ଦେଇ ରାମେଶ୍ୱରମ୍ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ଚୈତନ୍ୟଙ୍କର ଏହି ଯାତ୍ରା ପଥରେ ପ୍ରାୟ ପ୍ରତି ପାଞ୍ଚମାଇଲ ବ୍ୟବଧାନରେ ଗୋଟିଏ ଗୋଟିଏ ବୈଷ୍ଣବ ମନ୍ଦିର ଦେଖାଯାଏ (ସୀମାଚଳମ୍ ପର୍ଯ୍ୟନ୍ତ) । ଏହି ଐତିହାସିକ କାରଣରୁ ପାରଳାରେ ବହୁ ରାଧାକୃଷ୍ଣ ମନ୍ଦିର ଦେଖାଯାଏ । ଗୋପାଳକୃଷ୍ଣଙ୍କ ସମୟରେ ଏଠାରେ ବହୁ କୀର୍ତ୍ତନମଣ୍ଡଳୀ ଥିଲି ଓ ଓଡ଼ିଆ ବଙ୍ଗଳା ମିଶା କୀର୍ତ୍ତନ ଗାନ କରାଯାଉଥିଲା । ଗୋପାଳକୃଷ୍ଣ ହେଉଛନ୍ତି ଏ ସ୍ଥାନର ଏକ ଐତିହାସିକ ପରମ୍ପରାର ପରିଣତି । ପରମ୍ପରାରେ ପ୍ରଣୋଦିତ ହୋଇ ସେ ଶୁଦ୍ଧା ଭକ୍ତି ବୈଷ୍ଣବ ମତରେ ଦୀକ୍ଷିତ ହୋଇଥିଲେ । ବୈଷ୍ଣବ ଗ୍ରନ୍ଥାଲୋଚନା, ବ୍ରଜ ତଥା ରାଧାକୃଷ୍ଣ ଲୀଳା ସମ୍ପର୍କୀୟ କୀର୍ତ୍ତନ ଶ୍ରବଣରେ ତାଙ୍କର ଗୀତି ପ୍ରତିଭାର ବିକାଶ ଘଟିବା ଅତି ସ୍ୱାଭାବିକ । ଐତିହାସିକ ଶ୍ରୀ ପ୍ରଭାତ ମୁଖାର୍ଜୀ କହନ୍ତି ଯେ ଗଞ୍ଜାମ ଓ ଜୟପୁରର ଜମିଦାର (ରାଜା) ମାନେ ଚୈତନ୍ୟମତ ଗ୍ରହଣ କରିଥିଲେ ଏବଂ ସେମାନଙ୍କର ପ୍ରଜାମାନେ ସେମାନଙ୍କର ଆଦର୍ଶର ଅନୁସରଣ କରିଥିଲେ (୧୧) ।

---

(୧୦) ପାରଳାଖେମୁଣ୍ଡିରେ ପଦ୍ମଶ୍ରୀ ରାଜଗୁରୁଙ୍କ ସହିତ ମୋର ଆଲୋଚନାର କର୍ଯ୍ୟାଂଶ ।

(୧୧) ଶ୍ରୀ ପ୍ରଭାତ ମୁଖାର୍ଜୀଙ୍କ ମତରେ ପୁରୀଠାରୁ ଦକ୍ଷିଣକୁ ଚୈତନ୍ୟଙ୍କର ଯାତ୍ରାପଥ ହେଉଛି—ପୁରୀ, ଅଲାଲନାଥ, ଶ୍ରୀକୂର୍ମମ୍, ସିଂହାଚଳମ୍ ଓ ରାମେଶ୍ୱରମ୍ । P. Mukharjee, 'History of the Chaitanya Faith in Orissa,' South Asian Studies. No. X., Manohar Publications, New Delhi, 1979, PP. 23/24.

( ତିନି )

ଏହି ଗବେଷଣାତ୍ମକ ସନ୍ଦର୍ଭର ଶିରୋନାମା ରଖା ଯାଇଛି 'ଗୋପାଳକୃଷ୍ଣ ଓ ତାଙ୍କର ରଚନାବଳୀ (ଏକ ଅଧ୍ୟୟନ)' । କବିଙ୍କର ସୃଷ୍ଟି ସମ୍ଭାରରେ ତାଙ୍କର ବୈଷ୍ଣବୀୟ ବ୍ୟକ୍ତିତ୍ୱ ଅପେକ୍ଷା ସଙ୍ଗୀତଜ୍ଞ ଓ କବିର ବ୍ୟକ୍ତିତ୍ୱ ମୋ ପକ୍ଷରେ ଅଧିକ ମୂଲ୍ୟବାନ । କାରଣ ଯେଉଁ କାଳରେ ବୈଷ୍ଣବଧର୍ମ ଓ ଧର୍ମୀୟ ଆଚରଣ ସମାଜରେ ବ୍ୟାପକ ଓ ଗଭୀର ପ୍ରଭାବ ବିସ୍ତାର କରିଥିଲା ସେତେବେଳେ ଏ ରଚନାବଳୀର ମୂଲ୍ୟ ଓ ମହତ୍ତ୍ୱ ଯେଉଁ ଦୃଷ୍ଟିରୁ ନିରୂପିତ ହେଉଥିଲା, କାଳ, ଜୀବନ ଓ ଜଗତର ଆମୂଳ ପରିବର୍ତ୍ତନ ପରିପ୍ରେକ୍ଷୀରେ ତାହା ଏକ ପ୍ରକାର ଅଚଳ କହିଲେ ଚଳେ । ସଙ୍ଗୀତ ରୂପରେ ଆତ୍ମପ୍ରକାଶ କରିଥିବା କୌଣସି ରଚନା-ବଳୀର ସାହିତ୍ୟିକ ମୂଲ୍ୟାୟନ ମୋ ଦୃଷ୍ଟିରେ ଏକ କାଳୋପଯୋଗୀ ଆଦର୍ଶ ହେବା ସମୀଚୀନ । କାରଣ ଏକ ନିଷ୍ଠାପର ବୈଷ୍ଣବ ଦୃଷ୍ଟିରେ କବିଙ୍କ ରଚନାବଳୀର ବୈଷ୍ଣବୀୟ ମୂଲ୍ୟାୟନ ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇପାରେ, କିନ୍ତୁ ସମ୍ପ୍ରଦାୟ-ନିରପେକ୍ଷ ଅନାସକ୍ତ ସମୀକ୍ଷକ ଦୃଷ୍ଟିରେ ତାହା ନୁହେଁ । ତେଣୁ ଏ ସନ୍ଦର୍ଭରେ ବୈଷ୍ଣବୀୟ ମୂଲ୍ୟାଙ୍କନର ସଙ୍କେତ ରହିଥିଲେ ମଧ୍ୟ ତଦପେକ୍ଷା ସାହିତ୍ୟିକ ମୂଲ୍ୟାୟନ ଉପରେ ମୁଁ ଅଧିକ ଗୁରୁତ୍ୱ ଦେଇଛି । ଧର୍ମମତବାଦ ଓ ସମ୍ପ୍ରଦାୟର ସୀମାରେଖା ଅତିକ୍ରମ କରି କାଳିଦାସ, ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସଙ୍କ ରଚନା ସମୀକ୍ଷକର ସମୀକ୍ଷା-କଷଟିରେ ଯେପରି ଚିରନ୍ତନ ସାହିତ୍ୟିକ ଆବେଦନରେ ଉଜ୍ଜ୍ୱଳ, ଗୋପାଳକୃଷ୍ଣଙ୍କର ଅମର-ସୃଷ୍ଟି ସମ୍ପଦ ଏଥିରୁ ବଞ୍ଚିତ ନୁହେଁ । ସନ୍ଦର୍ଭର ଯୋଜନା ଅନୁସାରେ ପ୍ରୟୋଜନ ସ୍ଥଳରେ ଶୁଦ୍ଧା ଭକ୍ତି ପରମ୍ପରା ଦୃଷ୍ଟିରୁ ଭକ୍ତି ଓ ପ୍ରେମତତ୍ତ୍ୱ, ଭକ୍ତିରସ, ବିରହତତ୍ତ୍ୱ, ବ୍ରହ୍ମତତ୍ତ୍ୱ, ଜୀବତତ୍ତ୍ୱ ଓ ଅଚିନ୍ତ୍ୟଭେଦାଭେଦ-ବାଦ ସମ୍ପର୍କରେ ଉଲ୍ଲେଖ କରିଥିଲେ ମଧ୍ୟ ଏହା ମୋର ସନ୍ଦର୍ଭର କେନ୍ଦ୍ରିକ ଭୂମି ନୁହେଁ ।

ସୁତରାଂ ଲୌକିକ ଅଳଙ୍କାର ଶାସ୍ତ୍ର (ସାହିତ୍ୟ ଶାସ୍ତ୍ର) ଆଦର୍ଶରେ ବୈଷ୍ଣବୀୟ ଅଳଙ୍କାର ଶାସ୍ତ୍ର (ରୂପ ଗୋସ୍ୱାମୀଙ୍କର ଉଜ୍ଜ୍ୱଳନୀଳମଣି, କବି କର୍ଣ୍ଣପୂରଙ୍କର ଅଳଙ୍କାର କୌସ୍ତୁଭ) ରଚିତ ହୋଇଛି । ଗୋପାଳକୃଷ୍ଣଙ୍କର ଲୌକିକ ରସଭିତ୍ତିକ ସଙ୍ଗୀତଗୁଡ଼ିକର ମୂଲ୍ୟାୟନ ଅବଶ୍ୟ ଲୌକିକ ଅଳଙ୍କାର ଶାସ୍ତ୍ର ଆଦର୍ଶରେ ହୋଇଛି, କିନ୍ତୁ ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କୀୟ ରଚନାବଳୀର ଆଲୋଚନାରେ ବୈଷ୍ଣବୀୟ ଅଳଙ୍କାର ଶାସ୍ତ୍ର ପ୍ରତି ଧ୍ୟାନ ଦିଆଯାଇଛି ।

ଏହି ସନ୍ଦର୍ଭର ଯୋଜନା ସମ୍ପର୍କରେ ଏଠାରେ ପଦେ ଅଧେ ଉଲ୍ଲେଖ କରିବା ପ୍ରୟୋଜନ । ସୂଚନାର ପ୍ରଥମାଂଶଟି ସନ୍ଦର୍ଭର ଉପକ୍ରମ । ଏଥିରେ ଗୋପାଳକୃଷ୍ଣଙ୍କର ଅନନ୍ୟ ସୃଷ୍ଟିପ୍ରତିଭାର ବସ୍ତୁନିର୍ଦ୍ଦେଶାତ୍ମକ ସଙ୍କେତ ଦିଆଯାଇଛି । ଦ୍ୱିତୀୟ ଭାଗରେ କବିଙ୍କର ଜନ୍ମପୀଠ ପାରଳାଖେମୁଣ୍ଡି ଐତିହ୍ୟପୂର୍ଣ୍ଣ ଯେଉଁ ବିରାଟ ଭୂଖଣ୍ଡର ଅଂଶ,

ପୃଷ୍ଠ ପୀଠିକା ରୂପେ ସେହି ବିଖ୍ୟାତ ଗଙ୍ଗଭୂମିର ଧର୍ମ, ସାହିତ୍ୟ, ସଂସ୍କୃତି, ଶିଳ୍ପକଳା ଓ ନୃତ୍ୟ ଉପରେ ଆଲୋକପାତ କରିଛୁ । ପ୍ରଥମ ପରିଚ୍ଛେଦରେ କବିଙ୍କର ଦେଶ ଓ କାଳ ସମ୍ପର୍କରେ ସୂଚନା ଦେଇ ତାଙ୍କର ଜୀବନୀ, ସାଧନା ଓ ସୃଷ୍ଟିର ପରିଚୟ ପ୍ରଦାନ କରିଛୁ ।

'ଗୋପାଳକୃଷ୍ଣ ରଚନାବଳୀ' କହିଲେ ଯେଉଁ ନିଜସ୍ୱରୂପ ପାଠକ ଚିତ୍ତରେ ଝଲସି ଉଠେ, ତାହା ହେଉଛି ତାଙ୍କର ଗୀତିକାରର ସ୍ୱରୂପ । ତେଣୁ ତାଙ୍କର ସଙ୍ଗୀତ ରଚନା ମୂଳରେ ଭାରତ ତଥା ଓଡ଼ିଶାର ସଙ୍ଗୀତ ରଚନା ଓ ସଙ୍ଗୀତଶାସ୍ତ୍ରାନୁଶୀଳନର ଯେଉଁ ଉଜ୍ଜ୍ୱଳ ପରମ୍ପରା ରହିଛି, ଦ୍ୱିତୀୟ ପରିଚ୍ଛେଦର ପ୍ରଥମାଂଶରେ ସେ ସମ୍ପର୍କରେ ଉଲ୍ଲେଖ କରିଯିବା ସଙ୍ଗେ ସଙ୍ଗେ ଦ୍ୱିତୀୟାଂଶରେ ବୈଦିକ ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ପ୍ରେମପ୍ରଧାନ ଲୌକିକ ଓ ବୈଷ୍ଣବ ଗୀତିକାବ୍ୟର ପରମ୍ପରା ସମ୍ପର୍କରେ ଆଲୋଚନା କରାଯାଇଛି । ତୃତୀୟ ପରିଚ୍ଛେଦରେ ଦେଶୀୟ ସାହିତ୍ୟରେ ସେହି ଭକ୍ତି ତଥା ପ୍ରେମପ୍ରଧାନ ଲୌକିକ ଓ ବୈଷ୍ଣବ ଗୀତି କାବ୍ୟର ପରମ୍ପରା ଉପରେ ଆଲୋକପାତ କରାଯାଇଛି । ଚତୁର୍ଥ ପରିଚ୍ଛେଦରେ କବିଙ୍କ ରଚନାବଳୀର ବିଭିନ୍ନ ସଂସ୍କରଣ, ସଂଗୀତ ସଂଖ୍ୟା, ସନ୍ଦର୍ଭର ନାମକରଣ ଓ ସଙ୍ଗୀତ ଗୁଡ଼ିକର ଶ୍ରେଣୀବିଭାଗ ସମ୍ପର୍କରେ ସୂଚନାଦେଇ ପଞ୍ଚମ ପରିଚ୍ଛେଦଠାରୁ ନବମ ପରିଚ୍ଛେଦ ମଧ୍ୟରେ ବିଭିନ୍ନ ବିଭାଗର ବିଶଦ ଆଲୋଚନା କରିଛୁ ।

ଆଲୋଚନା କାଳରେ ସଂସ୍କୃତ ରଚନା, ପଦାବଳୀ ସାହିତ୍ୟ, ଓଡ଼ିଆ କାବ୍ୟ ଓ ସଙ୍ଗୀତ ରଚନା ସହିତ କବିଙ୍କ ରଚନାର ତୁଳନାତ୍ମକ ଅଧ୍ୟୟନ (Comparative Criticism) ପ୍ରତି ଯଥୋଚିତ ଧ୍ୟାନ ଦିଆଯାଇଛି ଏବଂ ପୂର୍ବସୂରିଙ୍କର ପ୍ରେରଣା ଓ ପ୍ରଭାବ ସମ୍ପର୍କରେ ପ୍ରୟୋଜନୀୟ ଦୃଷ୍ଟାନ୍ତମାନ ଉଦ୍ଧାର କରାଯାଇ ବିଭିନ୍ନ ସ୍ଥଳରେ କବିଙ୍କ ମୌଳିକତା ସମ୍ପର୍କରେ ସୂଚନା ଦିଆଯାଇଛି । ବିଭିନ୍ନ ଶ୍ରେଣୀର ସଙ୍ଗୀତଗୁଡ଼ିକର ସମୀକ୍ଷା ମଧ୍ୟରେ ଚରିତ, ରସ. ଭାବ, ଅନୁଭୂତି, ପ୍ରେମ, ଶୃଙ୍ଗାର, ପ୍ରକୃତି ରୂପାୟନ, ସୌନ୍ଦର୍ଯ୍ୟ ଚେତନା, ରଚନାଭଙ୍ଗୀ, ଭାଷା, ଅଳଙ୍କାର, କବିଙ୍କର ବୈଶିଷ୍ଟ୍ୟ ବ୍ୟକ୍ତିତ୍ୱ ତଥା ଭକ୍ତିମତ୍ତା ଓ ମହତ୍ତ୍ୱ ସମ୍ପର୍କରେ ବିଚାର ରହିଥିବାରୁ ପୁନରାବୃତ୍ତି ଆଶଙ୍କାରେ ଏ ସମସ୍ତ ପାଇଁ ଏକ ସ୍ୱତନ୍ତ୍ର ପରିଚ୍ଛେଦ ଯୋଗ କରିନାହିଁ । ପରିଶିଷ୍ଟରେ ବ୍ରହ୍ମତତ୍ତ୍ୱ ଏବଂ ଜୀବତତ୍ତ୍ୱ ଓ ଅଚିନ୍ତ୍ୟ ଭେଦାଭେଦ ସମ୍ପର୍କରେ ଉଲ୍ଲେଖ କରି (ଭଜନ, ସ୍ମରଣ, ପ୍ରାର୍ଥନା ଓ ମନଃଶିକ୍ଷା ଇତ୍ୟାଦି ଗୀତଗୁଡ଼ିକର ତାତ୍ତ୍ୱିକ ଅବବୋଧ ନିମିତ୍ତ) ବିଭିନ୍ନ ଗ୍ରନ୍ଥାବଳୀରେ ପ୍ରକାଶିତ ଗୋପାଳକୃଷ୍ଣଙ୍କର ସନ୍ଦେହଜନକ ଗୀତ, ରାଗତାଳର ପରିବର୍ତ୍ତନ ଓ ପାଠବୈଷମ୍ୟ ଏବଂ ତାଙ୍କ ସମ୍ପର୍କରେ ପ୍ରକାଶିତ ପ୍ରବନ୍ଧ ଓ ପୁସ୍ତିକା ସମ୍ପର୍କରେ ସୂଚନା ଦେଇଛୁ ।

ମୋର ଏ ଗବେଷଣାମୂଳକ ସନ୍ଦର୍ଭର ବୈଶିଷ୍ଟ୍ୟ ସ୍ଥୂଳତଃ ନିମ୍ନୋକ୍ତ ଭାବରେ ଉଲ୍ଲେଖ କରାଯାଇ ପାରେ, ଯଥା—

(୧) କବିଙ୍କର ଦେଶ କାଳ, ସାଂସ୍କୃତିକ ଭିତ୍ତି, ଜୀବନୀ ଓ ବଂଶଲତା ସମ୍ପର୍କୀୟ ଆଲୋଚନାକୁ ଐତିହାସିକ ପ୍ରମାଣ (ଶିଳାଲେଖ, ସାହିତ୍ୟ-ସୃଷ୍ଟି, ତାମ୍ରଶାସନ) ଦ୍ୱାରା ଅଧିକ ପ୍ରାମାଣିକ କରିବାର ପ୍ରୟାସ କରିଛୁ ।

(୨) ଗୋପାଳକୃଷ୍ଣ ପଦ୍ୟାବଳୀ ଓ ବିଭିନ୍ନ ଗ୍ରନ୍ଥାବଳୀର ସଙ୍ଗୀତଗୁଡ଼ିକୁ ପରୀକ୍ଷାକରି ଯେଉଁଗୁଡ଼ିକ କବିଙ୍କର ସ୍ୱକୀୟ ରଚନା, ସେଗୁଡ଼ିକର ଆଲୋଚନା ଉପରେ ଧ୍ୟାନ ଦେଇଛି ଏବଂ ଭାଷା ଓ ଶୈଳୀ ଦୃଷ୍ଟିରୁ ଯେଉଁଗୁଡ଼ିକର ଜନକତ୍ୱ ସନ୍ଦେହ ଜନକ ତା'ର ସୂଚନା ଦେଇ ଗୋପାଳକୃଷ୍ଣ ରଚନାବଳୀର ବିଜ୍ଞାନ-ସମ୍ମତ ସମ୍ପାଦନା (Editing) ଦିଗରେ ପଥ ପ୍ରସ୍ତୁତ କରିଛି ।

(୩) ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ରାମକୃଷ୍ଣ ସମ୍ପାଦିତ ପଦ୍ୟାବଳୀର ରାଗତାଳର କିପରି ପରିବର୍ତ୍ତନ କରାଯାଇଛି, ପରିଶିଷ୍ଟରେ ତୁଳନାତ୍ମକ ଭାବରେ ତାହା ପ୍ରଦର୍ଶନ କରି ସ୍ଥଳବିଶେଷରେ ପାଠ-ବୈଷମ୍ୟ ବା ପାଠାନ୍ତରର ସୂଚନା ଦେଇଛି ।

(୪) ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଏବଂ ବାବାଜୀ ବୈଷ୍ଣବ ଚରଣ ଓ ସରୋଜ କୁମାର ପାଣିଗ୍ରାହୀ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସମ୍ପାଦନା ଓ ସଜ୍ଜୀକରଣ-ଶୃଙ୍ଖଳାର ତ୍ରୁଟି ଦର୍ଶାଇ ବିଷୟାନୁକ୍ରମ, ବସ୍ତୁ, ଭାବ ଓ ରସ ଦୃଷ୍ଟିରୁ ବିଭିନ୍ନ ଶ୍ରେଣୀରେ ସେଗୁଡ଼ିକୁ ସଜ୍ଜିତ କରି ସେଗୁଡ଼ିକର ସମୀକ୍ଷା କରିଛି ।

(୫) ବିଭିନ୍ନ ଶ୍ରେଣୀର ସଙ୍ଗୀତଗୁଡ଼ିକର ସମୀକ୍ଷା କାଳରେ ତୁଳନାତ୍ମକ ଅଧ୍ୟୟନ ପ୍ରତି ବିଶେଷ ଧ୍ୟାନଦେଇ ପୂର୍ବସୂରିଙ୍କର ପ୍ରଭାବ ଓ ପ୍ରେରଣା ସମ୍ପର୍କରେ ଯଥାଯଥ ଦୃଷ୍ଟାନ୍ତ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସ୍ଥଳରେ କବିଙ୍କର ମୌଳିକତା ଉପରେ ଆଲୋକପାତ କରିଛି ।

(୬) ସନ୍ଦର୍ଭରେ ଗୋପାଳକୃଷ୍ଣ ରଚନାବଳୀର ବୈଷ୍ଣବୀୟ ମୂଲ୍ୟାୟନର ସଙ୍କେତ ରହିଥିଲେ ମଧ୍ୟ ସାହିତ୍ୟିକ ମୂଲ୍ୟାୟନ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଛି ଏବଂ ପ୍ରାଞ୍ଜଳ ତାତ୍ତ୍ୱିକ ଅବବୋଧ ନିମିତ୍ତ ଶୁଦ୍ଧା ଭକ୍ତିର ପରମ୍ପରା ଦୃଷ୍ଟିରୁ ଭକ୍ତି ଓ ପ୍ରେମତତ୍ତ୍ୱ, ଭକ୍ତିରସ, ବିରହତତ୍ତ୍ୱ, ବ୍ରହ୍ମତତ୍ତ୍ୱ, ଜୀବତତ୍ତ୍ୱ ଓ ଅଚିନ୍ତ୍ୟ ଭେଦାଭେଦ ସମ୍ପର୍କରେ ପ୍ରୟୋଜନୀୟ ସୂଚନା ଦିଆଯାଇଛି ।

(୭) ପ୍ରତ୍ୟକ୍ଷ ସାହାଯ୍ୟପ୍ରାପ୍ତ ବିଭିନ୍ନ ଭାଷାର ପୁସ୍ତକ ଓ ପତ୍ରପତ୍ରିକା ଏବଂ ଗବେଷଣା ଓ ଆଲୋଚନାର ଭିତ୍ତିକୁ ଦୃଢ଼ କରିବାରେ ସାହାଯ୍ୟ କରିଥିବା ବିଭିନ୍ନ ଗ୍ରନ୍ଥ ଓ ପତ୍ର-ପତ୍ରିକାର ବିସ୍ତୃତ ଗ୍ରନ୍ଥ-ସୂଚୀ ସହିତ ପତ୍ରପତ୍ରିକାର ସୂଚୀ ପ୍ରସ୍ତୁତ କରାଯାଇଛି ।

ଗୋପାଳକୃଷ୍ଣଙ୍କ ସମ୍ପର୍କରେ ପୂର୍ବରୁ ପ୍ରକାଶିତ ପ୍ରବନ୍ଧ ଓ ପୁସ୍ତିକାଗୁଡ଼ିକରେ ପୂର୍ବୋକ୍ତ ବୈଶିଷ୍ଟ୍ୟଗୁଡ଼ିକ ପ୍ରତି ବିଶେଷ ଧ୍ୟାନ ଦିଆ ଯାଇନାହିଁ ।

ଏ ସନ୍ଦର୍ଭ ରଚନାର ମୂଳ ପ୍ରେରଣା ହେଉଛନ୍ତି ବୈଷ୍ଣବର ଉପାସ୍ୟ ଭଗବାନ୍ ଶ୍ରୀକୃଷ୍ଣ । ତାଙ୍କର ଅଲକ୍ଷିତ କୃପାବଳରେ ମୁଁ ଏ ଯୋଜନାରେ ହାତ ଦେଇଛି ବୋଲି ମୋର ବିଶ୍ୱାସ, କିନ୍ତୁ ମୋର ଶକ୍ତି ସୀମିତ ଏବଂ ଉପାଦାନ ତଥା ସମ୍ବଳ ସୀମିତ । ସନ୍ଦର୍ଭ ପ୍ରସ୍ତୁତପାଇଁ ମୁଁ ପରମ ନମସ୍ୟ ବୈଷ୍ଣବ ଆଚାର୍ଯ୍ୟମାନଙ୍କର ତାତ୍ତ୍ୱିକ ଗ୍ରନ୍ଥ, କାବ୍ୟ ଓ

ନାଟକ, ସାମ୍ପ୍ରତିକ କାଳର ଭାରତର କେତେକ ବିଖ୍ୟାତ ଗବେଷକ, ପଣ୍ଡିତ, ସମୀକ୍ଷକ ଏବଂ କବିଙ୍କର ରଚନାର ଉପଯୋଗ କରିଛି । ମୋର ଆଲୋଚନା ଯେ ଦୋଷତ୍ରୁଟି ବର୍ଜିତ ସେ ପ୍ରକାର ଅଭିମାନ ପୋଷଣର ଦୁଃସାହସ ମୋର ନାହିଁ । ଏ ସନ୍ଦର୍ଭ ରଚନା ପାଇଁ ମୋର ପରାମର୍ଶଦାତା ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ରଙ୍କଠାରେ ମୁଁ ନାନାଭାବରେ ଋଣୀ । ଏହାର ରଚନାକାଳରେ ଲୋକରତ୍ନ ଡଃ. କୁଞ୍ଜବିହାରୀ ଦାଶ, ଡ଼ଃ. ଗଦାଧର ମିଶ୍ର, ଡଃ ରାଧାମାଧବ ମହାନ୍ତି ପ୍ରଭୃତି ବିଜ୍ଞ ବୟୋଜ୍ୟେଷ୍ଠ ଓ ସମବୟସ୍କ ବନ୍ଧୁଙ୍କର ପ୍ରେରଣା ଓ ସସ୍ନେହ ଭର୍ତ୍ସନା ମୋ ପକ୍ଷରେ ଅବିସ୍ମରଣୀୟ । ପରିବାରର ଅଜସ୍ର ଜଞ୍ଜାଳ ସତ୍ତ୍ୱେ ମୋର ପତ୍ନୀ ଅଧ୍ୟାପିକା ଶାନ୍ତି ମହାପାତ୍ରଙ୍କର ବାରମ୍ବାର ପ୍ରେରଣା ଓ ସାମୟିକ ମୃଦୁ ଭର୍ତ୍ସନା ନ ମିଳିଥିଲେ ଏ ସନ୍ଦର୍ଭ ବୋଧହୁଏ କେବଳ ପରିକଳ୍ପନା ମଧ୍ୟରେ ସୀମିତ ହୋଇ ରହି ଯାଇଥାନ୍ତା । ଭଗବାନ୍ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ମୋର ପ୍ରଣାମ ନିବେଦନ କରିବା ସଙ୍ଗେ ସଙ୍ଗେ ପୂର୍ବସୂରି ଓ ବନ୍ଧୁମାନଙ୍କ ଉଦ୍ଦେଶ୍ୟରେ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ସନ୍ଦର୍ଭଟିର ପ୍ରକାଶନ ଦାୟିତ୍ୱ ଗ୍ରନ୍ଥମନ୍ଦିରର ପରିଚାଳକ ଶ୍ରୀ ଅଭିରାମ ମହାପାତ୍ର ବହନ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି । ପ୍ରାଚୀ ପ୍ରତିଷ୍ଠାନର ସ୍ୱତ୍ୱାଧିକାରୀ ଡ଼ଃ ଦୋଳଗୋବିନ୍ଦ ଶାସ୍ତ୍ରୀ ଏହାର ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ସାଧୁବାଦ ଜଣାଉଛି ।

କଟକ

ଶ୍ରୀ ଜନ୍ମାଷ୍ଟମୀ

୭-୯-୧୯୮୫

ଶ୍ରୀ ଗଙ୍ଗାଧର ବଳ

# ସମୀକ୍ଷା ସମ୍ପର୍କରେ ପଦେ

ପ୍ରାଚୀନ ଓଡ଼ିଆ ସାହିତ୍ୟର ରତ୍ନମଞ୍ଜୁଷାରେ ରାଧାକୃଷ୍ଣଙ୍କର ଲୀଳା, ରାଗାନୁଗା ପ୍ରେମ ଭକ୍ତି ଏବଂ ବ୍ରଜର ପରକୀୟା ପ୍ରୀତିକୁ ଉପଜୀବ୍ୟ କରି ଅଜସ୍ର କାବ୍ୟ ରଚିତ ହୋଇଛି । ସେ ସମସ୍ତର କିଛି କିଛି ତାତ୍ତ୍ୱିକ ଏବଂ ସାହିତ୍ୟିକ ଦୃଷ୍ଟିକୋଣରୁ ସମାଲୋଚନା ଓଡ଼ିଆ ସାହିତ୍ୟରେ ହୋଇ ସାରିଛି । କିନ୍ତୁ ସେହି ସମାଲୋଚନାକୁ 'ଆସ୍ୱାଦନ' ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରିବାକୁ କୁଣ୍ଠାବୋଧ ହେବ । ସାହିତ୍ୟର ସମାଲୋଚନା କେବଳ ଦୋଷଗୁଣ କଥନ ନୁହେଁ ! ତାହା ଗୋଟିଏ ସୃଷ୍ଟି ସାହାଯ୍ୟରେ ଅନ୍ୟ ଏକ ସରସ ସୃଷ୍ଟି । ଏହା ଯଦି ସତ୍ୟ ହୁଏ ତେବେ ଅଧ୍ୟାପକ ଡକ୍ଟର ଗଙ୍ଗାଧର ବଳଙ୍କର 'ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା' ଏକ ସାର୍ଥକ ସୃଷ୍ଟି । ଏହା ସାମାଜିକ ହୃଦୟ ଆନନ୍ଦରେ ସ୍ୱୀକାର କରିବେ ।

ବୈଷ୍ଣବୀୟ ପ୍ରେମଭକ୍ତି କାବ୍ୟାବଳୀର ସମାଲୋଚନା ବା ସମୀକ୍ଷା ମାନଙ୍କରେ ପ୍ରାୟଶଃ ବହୁ ସ୍ଥଳରେ ତାତ୍ତ୍ୱିକ ବିରୋଧ, ରସାଭାସ ଓ ରସବୈପରୀତ୍ୟ ଦୃଷ୍ଟିଗୋଚର ହୁଏ । ସେହି ସମସ୍ତ କାବ୍ୟର ସାହିତ୍ୟିକ ମୂଲ୍ୟାଙ୍କନ କରିବାକୁ ଯାଇ ଅନେକେ ତତ୍ତ୍ୱ-ଜ୍ଞାନର ଅଜ୍ଞତା ବଶତଃ ପ୍ରଚଣ୍ଡ ଭ୍ରମାତ୍ମକ ମତବାଦ ପରିବେଷଣ କରିଥାଆନ୍ତି । ଏହା ସଚରାଚର ଦେଖାଯାଏ । ତାହାର କାରଣ, ପ୍ରେମଭକ୍ତି କାବ୍ୟ ପାଠ ବା ଅଧ୍ୟୟନର ଯୋଗ୍ୟତା ସମସ୍ତଙ୍କର ନଥାଏ । ବୈଷ୍ଣବ ଧର୍ମଧାରାର ସାଧକ, ଭକ୍ତକବି ବୃନ୍ଦ ନିଜ ସୃଷ୍ଟିର ଆସ୍ୱାଦନର ଅଧିକାର ନିର୍ଣ୍ଣୟ କରିଯାଇଛନ୍ତି । ସାଧକ କବି ଅଭିମନ୍ୟୁ ମଧ୍ୟ ସେଇ ଅଧିକାରର ସୂଚନା ଦେଇଛନ୍ତି—

"ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ ।
ନ୍ୟାସ କଲି ଲେକର ଏ ହୋଇବଟି ଭାବ୍ୟ ॥

କହିବା ବାହୁଲ୍ୟ, ଆମ୍ଭେମାନେ ଅଧିକାଂଶ ଏ ଯୋଗ୍ୟତା ଅର୍ଜନ କରିପାରି ନାହୁଁ; ଏଣୁ ଭ୍ରାନ୍ତି ଅନିବାର୍ଯ୍ୟ । ସୁଖର ବିଷୟ, ଡକ୍ଟର ବଳଙ୍କର ଏହି ସମୀକ୍ଷା ସାହିତ୍ୟିକ ମୂଲ୍ୟାଙ୍କନ ବ୍ୟପଦେଶରେ ସେ ପ୍ରକାର ତାତ୍ତ୍ୱିକ ବିରୋଧ ଓ ରସାଭାସ ଦୋଷରୁ ମୁକ୍ତ । ଏଣୁ ଏହା କେବଳ ସାହିତ୍ୟିକ-ଗବେଷକ କାହିଁକି, ସାଧକ ଭକ୍ତମାନଙ୍କର ମଧ୍ୟ ଅନୁଶୀଳନ ସାମଗ୍ରୀ ହୋଇପାରିଛି ।

ଅଳମତିବିସ୍ତରେଣ

**ହୋଲଟଗୋବିନ୍ଦ ଶାସ୍ତ୍ରୀ**

# ସୂଚନା

## ଉପକ୍ରମ

ଦୟା ନ କରନ୍ତୁ ମୁଁ ଦାସୀ ସିନା ରେ ।
ଦୁଃଖ ଦେଇ ଶ୍ୟାମକୁ          ରାଧା ସୁଖୀ ହେବାକୁ
ବୁଝିବ କଳୁ କିଏ ଆଲୋଚନାରେ ।
ଯେ ତାଙ୍କ ମନୋବାଞ୍ଛା          ତା ନଇକରି କରି
ଦିନ ନେବ ପଛକେ ଗୁମାନ ନାରେ ।
ଯାହାରେ ହେଲେ ସଖି          ସେ ହୋଇଥିଲେ ସୁଖୀ
ମିଳିଲ ପରି କୋଟି ଲକ୍ଷ ସୁନାରେ । (୧)

ସମସ୍ତ ପ୍ରକାର ଲୌକିକ ଅଭିମାନର ଯେତେବେଳେ ଅବସାନ ଘଟି ଯାଉଛି, ପ୍ରଣୟିନୀ ରାଧା ସମସ୍ତ ତ୍ୟାଗ କରି ନିଜର ଦେହ, ମନ ଓ ଆତ୍ମାକୁ ପ୍ରେମିକ ଶ୍ରୀକୃଷ୍ଣଙ୍କ ଠାରେ ଯେତେବେଳେ ସର୍ବତୋଭାବରେ ସମର୍ପଣ କରି ଦେଇଛନ୍ତି, ସେତେବେଳେ ଏହି କାରୁଣ୍ୟମୟୀ ଭାରତୀ ତାଙ୍କର ମୁଖରୁ ଝରିପଡ଼ୁଛି । କ୍ଷୁଦ୍ର ମାନବିକ ଚିନ୍ତାର ଊର୍ଦ୍ଧ୍ୱରେ ତାଙ୍କର ଆତ୍ମୋତ୍ସର୍ଗରେ ରାଧାଙ୍କର ପ୍ରାଣର ଏହି ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତ କେବଳ ଏହି ମାତ୍ର ଗୋଟିଏ ସଙ୍ଗୀତରେ ନୁହେଁ, ଏହିପରି ବହୁ ସଙ୍ଗୀତରେ ଘଟିଛି । ଉତ୍କଳର ସୌଧବାସୀ ଠାରୁ ଆରମ୍ଭ କରି ଦୀନ କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣରେ ଭାବ, ଭାଷା ଓ ସୁରର ଅମନ୍ଦ ମନ୍ଦାକିନୀ ଛୁଟାଇଥିବା ଏହି କବି ହେଉଛନ୍ତି ଓଡ଼ିଆ ଜାତିର ଅତି ପ୍ରିୟ ଗୀତିକାର କବି-କଳହଂସ ଗୋପାଳକୃଷ୍ଣ ।

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର, ଅଭିମନ୍ୟୁ, ବନମାଳୀ, କବିସୂର୍ଯ୍ୟ ବଳଦେବ, ଗୌରହରି, ଗୌରଚରଣ, ହରିବନ୍ଧୁ ଓ ରାମକୃଷ୍ଣ ପ୍ରଭୃତି ବହୁ ଲୌକିକ ଓ ବୈଷ୍ଣବ ଗୀତିକାରଙ୍କର ଆବିର୍ଭାବ ଘଟିଛି । ରାଧାକୃଷ୍ଣଙ୍କ ପ୍ରଣୟକୁ କେନ୍ଦ୍ର କରି ରାଶିରାଶି ସଙ୍ଗୀତ ରଚିତ ହୋଇଥିଲେ ମଧ୍ୟ ଗତାନୁଗତିକ 'ପଦଯୋଜନା, ରାଗରାଗିଣୀ ଓ ଭାଷାର ଆଟୋପରେ ପ୍ରକୃତ କବିତ୍ୱ ଓ ଗୀତିକାରର ବ୍ୟକ୍ତିତ୍ୱ ଆଚ୍ଛନ୍ନ ହୋଇପଡ଼ିଛି । ରାଧାକୃଷ୍ଣ

(୧) ଗୋପାଳକୃଷ୍ଣ ପଦ୍ୟାବଳୀ, ସମ୍ପାଦକ-କୃପାସିନ୍ଧୁ ନରେନ୍ଦ୍ର ଦେବ, ପ୍ର-ସୀମାଦ୍ରି ପଣ୍ଡା, ବ୍ରହ୍ମପୁର, ୧୯୪୯, ପୃ-୧୫୮ ।

ତଥା ଲୌକିକ ପ୍ରଣୟର ଆଲେଖ୍ୟରେ ବୈଶିଷ୍ଟ୍ୟହୀନତା ତଥା ଗତାନୁଗତିକତା ବ୍ୟକ୍ତ ପ୍ରକୃତ ମାନବ ଜୀବନର ଗଭୀର ଅନନ୍ୟ ଅନୁଭୂତିର ଅଭାବ ପରିଲକ୍ଷିତ ହୁଏ । ଅଭିମନ୍ୟୁଙ୍କର ଛାନ୍ଦ ଏବଂ କବିସୂର୍ଯ୍ୟଙ୍କର ଚମ୍ପୂ ଓ ସଙ୍ଗୀତ ସୃଷ୍ଟିରେ ଅଭିଜାତ ପରିବେଶ, ଆଳଙ୍କାରିକ ତଥା ଶାବ୍ଦିକ ଆଡ଼ମ୍ବର ଦେଖାଗଲେ ମଧ୍ୟ ଅନୁଭୂତିର ଅନନ୍ୟତା, ମନୁଷ୍ୟ ରକ୍ତର ବାସ୍ତବ ଉଷ୍ଣତା କେତେକ ମାତ୍ରାରେ ଅନୁଭୂତ ହୁଏ, କିନ୍ତୁ ଗୋପାଳକୃଷ୍ଣଙ୍କର ପଦାବଳୀ ସଂସ୍ପର୍ଶରେ ଯେତେବେଳେ ଆମେ ଆସିଥାଉ, ସେତେବେଳେ ସମସ୍ତଙ୍କ ଅପେକ୍ଷା ସେ ଆମର ଅତି ନିକଟ ଆପଣାର ପରି ମନେ ହୁଅନ୍ତି । ଆମର ମନେହୁଏ ସତେ ଯେପରି ଆମେ ଗୋଟିଏ ଉସପୂର ସ୍ପର୍ଶକାତର ଆତ୍ମା ନିକଟରେ ପହଞ୍ଚିଛୁ ।

ସାମ୍ପ୍ରଦାୟିକ ଦୃଷ୍ଟିକୋଣରୁ କବି ଶ୍ରୀ ଚୈତନ୍ୟ ପ୍ରବର୍ତ୍ତିତ ଶୁଦ୍ଧା ଭକ୍ତି ମତର ବିଶ୍ୱାସୀ ହେଲେ ମଧ୍ୟ ତାଙ୍କର ଧର୍ମବିଶ୍ୱାସ ତଥା ନିଷ୍ଠା ତାଙ୍କର କବିତ୍ୱକୁ ଆଚ୍ଛନ୍ନ କରିନାହିଁ । ଅଗଣିତ ଅନ୍ୟ ବୈଷ୍ଣବ କବିମାନଙ୍କ ପରି ଗୋପାଳକୃଷ୍ଣ କେବଳ ଧର୍ମମତସର୍ବସ୍ୱ ହୋଇ ରହି ଯାଇ ନାହାନ୍ତି । ତାଙ୍କର ସମସ୍ତ ବିଶ୍ୱାସ ଓ ସାମ୍ପ୍ରଦାୟିକ ନିଷ୍ଠାର ଊର୍ଦ୍ଧ୍ୱରେ ତାଙ୍କର ସୃଷ୍ଟି ପ୍ରତିଭାହିଁ ତାଙ୍କୁ ସାରସ୍ୱତ ରାଜ୍ୟରେ ଅବିସ୍ମରଣୀୟ କରି ରଖିଛି । ବୈଷ୍ଣବର ଅପ୍ରାକୃତ ଚିନ୍ମୟ ପ୍ରେମର ମୂର୍ତ୍ତିମନ୍ତ ବିଗ୍ରହ ରାଧାକୃଷ୍ଣ କବିଙ୍କ ସୃଷ୍ଟି ସମ୍ଭାରରେ କେବଳ ଅପ୍ରାକୃତ ହୋଇ ରହି ଯାଇ ନାହାନ୍ତି, କବିଙ୍କ କଳ୍ପନାରେ ସେ ଦୁହେଁ ମାନବ ସ୍ତରକୁ ଓହ୍ଲାଇ ଆସିଛନ୍ତି । ସେମାନେ ପୁଣି ଆମରି ଓଡ଼ିଆ ପୁରପଲ୍ଲୀର ସାମାଜିକ ଓ ପ୍ରାକୃତିକ ପରିବେଶରେ ଅତି ଆପଣାର ପରି ମନେ ହୁଅନ୍ତି । ବାସ୍ତବ ଜୀବନର ସାଧାରଣ ପ୍ରଣୟ କାହାଣୀ ପରି କବିଙ୍କର ସହଜ ସ୍ୱତଃସ୍ଫୂର୍ତ୍ତି ଆବେଗରେ ଅପ୍ରତ୍ୟାଶିତ ସାକ୍ଷାତରୁ ଆରମ୍ଭ କରି ପାରସ୍ପରିକ ଆକର୍ଷଣ, ଅଭିମାନ, ମାନଭଙ୍ଗ ଓ ପରିଶେଷରେ ଆତ୍ମସମର୍ପଣ ଜନିତ ଆନନ୍ଦରେ ତାହା ମହିମାମୟ ହୋଇ ଉଠିଛି । ଡକ୍ଟର ମାନସିଂହଙ୍କ ଭାଷାରେ—'କବିଙ୍କର ଲେଖନୀ ଅନୁଭବର ଅତୀନ୍ଦ୍ରିୟ ଆବେଗ ଓ ପ୍ରେମର ଅନନ୍ୟ ଦୃଷ୍ଟି ଉତ୍ସର୍ଗ ମଧ୍ୟରେ ଖାଣ୍ଟି ମାନବିକ ପ୍ରେମକୁହିଁ ଦେଇ ପାରିଛି ଦୈବିକ ମହିମା । × × × କବି ଗତାନୁଗତିକତାକୁ ଦୃଷ୍ଟି ନ କରି କେବଳ ନିଜର ଦେଖିବା ଓ ଅନୁଭବ କରିବା କଥାହିଁ ଲେଖି ଯାଇଥିବାରୁ ବିଶେଷ ଭିତରେ ବିଶ୍ୱଜନୀନତା ପ୍ରତିଷ୍ଠ ହୋଇ ପଡ଼ିଛି ଅତ୍ୟନ୍ତ ସହଜ ଭାବରେ (୨) ।'

ଅନନ୍ୟ ଅନୁଭୂତି, ମାନସଲୋକର ସୂକ୍ଷ୍ମ ଆଲୋଡନ, ଭାବାନୁରୂପ ଗୀତଛନ୍ଦ (ସ୍ୱରବ୍ୟଞ୍ଜନା), ଶବ୍ଦରାଜିର ପରିମିତ ପ୍ରୟୋଗ ଉଚ୍ଚାଙ୍ଗ ପ୍ରତିଭାର ସ୍ୱାକ୍ଷର ବହନ କରି କାଳକୁ କବିଙ୍କୁ କାଳାତୀତର ମର୍ଯ୍ୟାଦା ଦେଇଛି । ଇତର ଶ୍ରେଣୀୟ କବିଙ୍କର ରାଶିରାଶି ଯୌନରସୋଦ୍ରେକ ସ୍ପର୍ଦ୍ଧିତ ଛାନ୍ଦ ଓ ଗୀତର ସ୍ତୂପ ନିକଟରେ ଏହି ପ୍ରତିଭାଧର କବିଙ୍କର କୃତି ଅଲଗା ବାରି ହୋଇ ଯାଏ, ତା'ର ନୈସର୍ଗିକ ସୁଷମାରେ ।

---

(୨) ମାୟାଧର ମାନସିଂହ, ଓଡ଼ିଆ ସାହିତ୍ୟର ଇତିହାସ, ୧ମ ସଂ, ପୃ-୨୧୨-୨୧୩

# ପୃଷ୍ଠପୀଠିକା

## [ଗଙ୍ଗଭୂମି ଏବଂ ତା'ର ଧର୍ମ, ସାହିତ୍ୟ, ସଂସ୍କୃତି, ଆଲେଖ୍ୟ, ସଙ୍ଗୀତ ଓ ନୃତ୍ୟ]

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏହି ଲୋକପ୍ରିୟ ବୈଷ୍ଣବ ଗୀତିକାର ଗୋପାଳକୃଷ୍ଣଙ୍କର ଆବିର୍ଭାବ ଘଟେ ଗଞ୍ଜାମ ଜିଲାର ପାରଳାଖେମୁଣ୍ଡିରେ। ପାରଳାଖେମୁଣ୍ଡିରେ ସଙ୍ଗୀତ, ନୃତ୍ୟ, ସ୍ଥାପତ୍ୟ, ଚିତ୍ରକଳା; ବୈଷ୍ଣବଧର୍ମ ପ୍ରଚାରର ବହୁଳତା, ବୈଷ୍ଣବ ମନ୍ଦିର ସହ ଅନ୍ୟାନ୍ୟ ମନ୍ଦିର ଏବଂ ଐତିହ୍ୟ ଓ ଗୌରବ-ସମୁଜ୍ଜ୍ୱଳ ରାଜବଂଶର ପୃଷ୍ଠପୋଷକତା ଲକ୍ଷ୍ୟ କଲେ ପାରଳାଖେମୁଣ୍ଡି ରାଜ୍ୟ ଓ ରାଜବଂଶର ଇତିହାସ ସମ୍ପର୍କରେ ଗବେଷକଙ୍କ ଚିତ୍ତରେ କୌତୂହଳ ଜାତହେବା ସ୍ୱାଭାବିକ।

ପାରଳାଖେମୁଣ୍ଡିର ଜମିଦାର ବା ରାଜାମାନେ ଓଡ଼ିଶାର ବିଖ୍ୟାତ ଗଙ୍ଗରାଜାମାନଙ୍କର ବଂଶଧର ଥିଲେ। ଓଡ଼ିଶା ଇତିହାସରେ ଗଙ୍ଗ ସମ୍ରାଟ୍‌ମାନଙ୍କର ଭୂମିକା ଏକକ ଓ ମହାନ୍। ସେମାନେ ଓଡ଼ିଶାକୁ ଏକ ଶାସନାଧୀନ କରି ପାରିଥିଲେ। ସେମାନେ ଓଡ଼ିଶାରେ ଜଗନ୍ନାଥ ତତ୍ତ୍ୱ ସହିତ ଯେଉଁ ସାଂସ୍କୃତିକ ଓ ସାହିତ୍ୟିକ ସମୁନ୍ନତି ଘଟାଇଥିଲେ ତା' ଦ୍ୱାରା ଓଡ଼ିଶାର ଗୌରବ ଚୂଡ଼ାନ୍ତ ସୀମା ସ୍ପର୍ଶ କରିଥିଲା। ସେମାନଙ୍କର ରାଜତ୍ୱ କାଳରେ ଓଡ଼ିଶାରେ ଐକ୍ୟ ଓ ଦୃଢ଼ ଶାସନ ବ୍ୟବସ୍ଥା ହେତୁ ଦୀର୍ଘକାଳ ଧରି ବହିଃ ଆକ୍ରମଣକାରୀମାନେ ଏ ଭୂମିରେ ପ୍ରବେଶ କରିବାକୁ ସାହସ କରି ପାରୁ ନ ଥିଲେ। ଓଡ଼ିଶାର ପ୍ରତିବେଶୀ ଅଞ୍ଚଳମାନ ମୁସଲମାନ ଶାସନାଧୀନ ହୋଇ ଥିଲାବେଳେ ଓଡ଼ିଶା ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ତା'ର ସ୍ୱାଧୀନତା ଅକ୍ଷୁଣ୍ଣ ରଖିଥିଲା (୧)। ଶକ୍ତିଶାଳୀ ଗଙ୍ଗବଂଶର ରାଜାମାନେ ଦକ୍ଷିଣରେ ବନବାସୀ, ଦକ୍ଷିଣପୂର୍ବରେ କଳିଙ୍ଗ ଏବଂ ଦକ୍ଷିଣକୋଶଳର କେତେକାଂଶରେ ଖ୍ରୀଷ୍ଟଜନ୍ମ ପରର ପ୍ରାରମ୍ଭିକ ଶତାବ୍ଦୀ ମାନଙ୍କରେ (୨) ରାଜ୍ୟ ସ୍ଥାପନ କରିଥିଲେ। ପରବର୍ତ୍ତୀ କାଳରେ ଗଙ୍ଗ ରାଜବଂଶର ଉତ୍ତରାଧିକାରୀମାନେ କେନ୍ଦ୍ର-ଭାରତର କେତେକ ଅଂଶ,

---

(୧) S. N. Rajaguru, History of the Gangas, part-1, 1968, State Museum, Orissa, Author's Note.

(୨) ଲିପିତତ୍ତ୍ୱବିତ୍ ଶ୍ରୀ ରାଜଗୁରୁଙ୍କ ମତରେ ଗଙ୍ଗ ସମ୍ବତ୍ସର ଖ୍ରୀ. ୨୨୬/୨୨୭ରୁ ଆରମ୍ଭ ହୋଇଥିଲା। ତଦ୍ଦେବ, ପୃ-୨୩

ଦକ୍ଷିଣ ଓଡ଼ିଶା ଏବଂ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଓ ବିଶାଖାପାଟଣା ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ରାଜତ୍ୱ କରୁଥିଲେ (୩) ।

ସମ୍ଭବତଃ ପ୍ରାଥମିକ ଗଙ୍ଗମାନେ **ଜୈନଧର୍ମ** ଗ୍ରହଣ କରିଥିଲେ ଏବଂ ଗୁପ୍ତ ରାଜାଙ୍କ ସମୟରେ ତୀର୍ଥଙ୍କର ଏବଂ ପାର୍ଶ୍ୱନାଥ ମୂର୍ତ୍ତି ପୂଜା କରୁଥିଲେ । ସତ୍ୟନାରାୟଣ ରାଜଗୁରୁଙ୍କ ମତରେ କଳିଙ୍ଗର ପାର୍ବତ୍ୟ ଅଞ୍ଚଳରେ (ମହାକାନ୍ତାର ଓ ମହେନ୍ଦ୍ର ପର୍ବତ ରାଜ୍ୟର ମଧ୍ୟବର୍ତ୍ତୀ ଅଞ୍ଚଳ—ବର୍ତ୍ତମାନର ଘୁମୁସର ତାଲୁକ ଓ ଫୁଲବାଣୀ ଜିଲା) ସମ୍ଭବତଃ ଗଙ୍ଗମାନଙ୍କର ମୂଳଭୂମି ଥିଲା, ପରେ ଯାହା ସେମାନଙ୍କ ଦ୍ୱାରା ତ୍ରିକଳିଙ୍ଗ ନାମରେ ଅଭିହିତ ହୋଇଥିଲା । ପରେ ସେମାନଙ୍କର ଧର୍ମବିଶ୍ୱାସ ପରିବର୍ତ୍ତିତ ହୋଇଥିଲା । ସେମାନେ **ବ୍ରାହ୍ମଣ୍ୟଧର୍ମ** ଗ୍ରହଣ କରିଥିଲେ (ତ୍ରିକଳିଙ୍ଗରେ) । ସେମାନଙ୍କର **ହସ୍ତୀ** ସଙ୍କେତରୁ ଜଣାଯାଏ ଯେ ସେମାନେ ପ୍ରଥମେ ଜୈନ ଧର୍ମାବଲମ୍ବୀ ଥିଲେ । କଳିଙ୍ଗରେ **ଶୈବ** ଧର୍ମ ଗ୍ରହଣ ପରେ ହସ୍ତୀ ସଙ୍କେତ ବଦଳରେ ସେମାନେ **ବୃଷଭ** ସଙ୍କେତ ପ୍ରବର୍ତ୍ତନ କରିଥିଲେ । ଦ୍ୱାଦଶ ଶତକରେ ଅନନ୍ତବର୍ମ ଚୋଡ଼ଗଙ୍ଗଙ୍କ ସମୟରୁ ଜଣାଯାଏ ଯେ ସେମାନେ ଆତ୍ରେୟ ଗୋତ୍ର ଓ ଚନ୍ଦ୍ରବଂଶୀ କ୍ଷତ୍ରୀୟ ଗୋଷ୍ଠୀର ଏବଂ ପଶ୍ଚିମାଞ୍ଚଳର ଗଙ୍ଗମାନେ ଇକ୍ଷ୍ୱାକୁ କ୍ଷତ୍ରୀୟ ଗୋଷ୍ଠୀ ଓ କାଣ୍ୱାୟନ ଗୋତ୍ର ଅନ୍ତର୍ଭୁକ୍ତ ଥିଲେ (୪) ।

ଅନନ୍ତବର୍ମ ଚୋଡ଼ଗଙ୍ଗଦେବଙ୍କ (ଖ୍ରୀ ୧୦୭୭-୧୧୪୭) କେତେକ ତାମ୍ରଶାସନରୁ ଜଣାଯାଏ ଯେ କଳିଙ୍ଗ ସେତେବେଳେ ପାଞ୍ଚଭାଗରେ ବିଭକ୍ତ ହୋଇଥିଲା ଏବଂ ପ୍ରତ୍ୟେକ ଭାଗ ଗଙ୍ଗବଂଶର ଗୋଟିଏ ଗୋଟିଏ ଶାଖାଦ୍ୱାରା ଶାସିତ ହେଉଥିଲା । କିନ୍ତୁ ପ୍ରଧାନତଃ କଳିଙ୍ଗର ଦୁଇଟି ଶାଖାର ସନ୍ଧାନ ମିଳେ, ଯଥା—**କଳିଙ୍ଗନଗର ଶାଖା** ଓ **ଶ୍ୱେତକ** ଶାଖା (୫) ।

କଳିଙ୍ଗ ନଗରର ଗଙ୍ଗ ଓ କଦମ୍ବଗୋଷ୍ଠୀଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିଲା ଯଦିଓ **କଦମ୍ବଗୋଷ୍ଠୀର** ରାଜକୁମାରମାନେ ଗଙ୍ଗମାନଙ୍କର ଅଧୀନ ଥିଲେ ଏବଂ **'ପଞ୍ଚବିଷୟାଧିପତି'** ଓ **'ରଣକ'** ଉପାଧି ବ୍ୟବହାର କରୁଥିଲେ । ଗଞ୍ଜାମ ଜିଲାର ମହେନ୍ଦ୍ର ପର୍ବତ ଅଞ୍ଚଳରେ ସେମାନେ ଶାସନ କରୁଥିଲେ ଏବଂ ଟକଟି ତାଲୁକର ଜୟନ୍ତୀପୁର ସେମାନଙ୍କର ରାଜଧାନୀ ଥିଲା । କେତେକ ତାମ୍ରଶାସନରୁ ପ୍ରମାଣିତ ହୁଏ ଯେ କଦମ୍ବମାନେ କଳିଙ୍ଗନଗର ଓ ଶ୍ୱେତକ ଗୋଷ୍ଠୀ ଅଧୀନରେ ସାମନ୍ତ ରାଜା ଓ ଦାୟିତ୍ୱ-ସମ୍ପନ୍ନ ଅଧିକାରୀ ଭାବରେ ବାସ କରୁଥିଲେ (୬) ।

କୋଙ୍ଗଦରେ ଶୈଳୋଦ୍ଭବମାନଙ୍କର ପତନ ପରେ କଳିଙ୍ଗ ନଗରର ଗଙ୍ଗମାନେ ମନେ ହୁଏ କୋଙ୍ଗଦ ଅଞ୍ଚଳ ନିଜ ରାଜ୍ୟ ସହ ମିଶାଇ **'ସକଳ-କଳିଙ୍ଗାଧିପତି'** ଉପାଧି

(୩) ତତ୍ରୈବ, ପୃ-୬୩, ୫୨, ୫୩
(୪) ତତ୍ରୈବ, ପୃ-୧୯୨-୧୯୪
(୫) ତତ୍ରୈବ, ପୃ-୧୯୫-୧୯୬
(୬) ତତ୍ରୈବ, ପୃ-୨୦୮-୨୦୯

ଗ୍ରହଣ କରିଥିଲେ (ଖ୍ରୀ: ୭୦୫-୭୦୬ ପୂର୍ବରୁ) । ବିଗ୍ରହଙ୍କ ପାଇଁ ସେମାନେ କଳିଙ୍ଗ ଓ କୋଙ୍ଗଦ ମଧ୍ୟରେ ଜୟବର୍ମ ଦେବଙ୍କୁ ଶ୍ୱେତକ ଅଞ୍ଚଳରେ 'ରାଣକ' ଭାବରେ ଅବସ୍ଥାପିତ କରିଥିଲେ । କିଛି ବର୍ଷ ପରେ ଆସାମରୁ ଆସିଥିବା ଭୌମକର ରାଜାମାନେ ତୋଷାଳୀ ଅଧିକାର କରି ଗଞ୍ଜାମର ଋଷିକୁଲ୍ୟା ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । କୋଙ୍ଗଦ ଓ ଶ୍ୱେତକ ଅଧିକାର ପାଇଁ କଳିଙ୍ଗ ନଗରର ଗଙ୍ଗ ଓ ଭୌମକରମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଲା । ଏହି ସଂଘର୍ଷର ସୁଯୋଗ ନେଇ ଶ୍ୱେତକ ରାଜ୍ୟର ଜୟବର୍ମଦେବ 'ରାଣକ' ଉପାଧି ପରିତ୍ୟାଗ କରି ମହାରାଜା ଉପାଧି ଗ୍ରହଣ କଲେ (ଭୌମକର ରାଜାଙ୍କ ସହିତ ମୈତ୍ରୀ ହେତୁ) । କିନ୍ତୁ ବଂଶର ପ୍ରଥମ ରାଜା ଉତ୍ତମକେଶରୀଙ୍କ ଠାରୁ ଅନୁମତି ଆଣି ସେ କୋଙ୍ଗଦମଣ୍ଡଳର ଗୋଟିଏ ଗ୍ରାମ ଦାନ କରିଥିଲେ । ଏଥିରେ କଳିଙ୍ଗନଗରର ଓ ଶ୍ୱେତକର ଗଙ୍ଗମାନଙ୍କ ମଧ୍ୟରେ ଶତ୍ରୁତା ଆରମ୍ଭ ହୋଇ ବହୁଦିନ ଧରି ଲାଗି ରହିଲା । ପରେ ବାସ୍ତବରେ ଶୁଭକର କେଶରୀ କଳିଙ୍ଗ ଅଞ୍ଚଳକୁ ନିଜର ଅଧୀନସ୍ଥ କଲେ । ମନେ ହୁଏ, ଭୌମମାନଙ୍କ ହସ୍ତକ୍ଷେପ ଫଳରେ ଶ୍ୱେତକର ଗଙ୍ଗମାନେ କଳିଙ୍ଗ ନଗରର ଗଙ୍ଗଙ୍କ ହାତମୁଠାରୁ ନିଜକୁ ମୁକ୍ତ କରିବାକୁ ସୁଯୋଗ ପାଇଲେ (୭) ।

ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀଠାରୁ କଳିଙ୍ଗର ଗଙ୍ଗମାନେ **ଶୈବ ଧର୍ମାବଲମ୍ବୀ** ଥିଲେ । ମାଠର ବଂଶର ଅନନ୍ତବର୍ମନ ପ୍ରଥମଥର ପାଇଁ ନିଜକୁ ପରମ ମାହେଶ୍ୱର ଭାବରେ ଅଭିହିତ କରିଥିଲେ । ତାପରେ କୋଙ୍ଗଦର ଶୈଳୋଦ୍ଭବ ରାଜା ମାଧବରାଜ ୭ମ ଶତାବ୍ଦୀରେ ସେହି ଉପାଧି ଗ୍ରହଣ କରିଥିଲେ । ଗଞ୍ଜାମର ମହେନ୍ଦ୍ର ପର୍ବତର ଶୀର୍ଷଦେଶରେ ଶୈଳୋଦ୍ଭବମାନେ ସେମାନଙ୍କର ଧର୍ମକେନ୍ଦ୍ର ସ୍ଥାପନ କରିଥିଲେ । ଗଙ୍ଗମାନେ ସେହି ପର୍ବତରେ ସେମାନଙ୍କର କୁଳଦେବତା **'ଗୋକର୍ଣ୍ଣେଶ୍ୱର'**ଙ୍କୁ ପ୍ରତିଷ୍ଠିତ କରିଥିଲେ । ଗଙ୍ଗମାନଙ୍କର ତାମ୍ରଶାସନମାନଙ୍କରେ ମହେନ୍ଦ୍ର ପର୍ବତ ଓ କୁଳଦେବତା ଗୋକର୍ଣ୍ଣେଶ୍ୱରଙ୍କର ମହିମା ବର୍ଣ୍ଣିତ ଅଛି । ମାଧବରାଜ ଶୈଳୋଦ୍ଭବଙ୍କର ଖୁର୍ଦ୍ଧା ତାମ୍ରଶାସନରୁ ଜଣାଯାଏ ଯେ ସେ କାବ୍ୟ ଓ ଧର୍ମଶାସ୍ତ୍ରର ସ୍ରଷ୍ଟା ଥିଲେ । ଖ୍ରୀଷ୍ଟୀୟ ୭ମ ଓ ୮ମ ଶତାବ୍ଦୀର ବିଖ୍ୟାତ ନ୍ୟାୟଦର୍ଶନ ସଂକଳକ କୁମାରିଲ ଭଟ୍ଟଙ୍କ ସମୟରେ ଧର୍ମକୀର୍ତ୍ତି ନାମରେ ଜଣେ ବୌଦ୍ଧ ଦାର୍ଶନିକ କଳିଙ୍ଗରେ ବାସ କରୁଥିଲେ (୮) ।

ସେ ସମୟରେ **ବୌଦ୍ଧଧର୍ମ** ଓ **ବ୍ରାହ୍ମଣ୍ୟଧର୍ମ** ମଧ୍ୟରେ **ତୀବ୍ର ପ୍ରତିଯୋଗିତା** ଚାଲିଥିଲା । ଉତ୍ତରଭାରତରୁ କେତେକ ଶୈବ ଆଚାର୍ଯ୍ୟ କଳିଙ୍ଗକୁ ଆସିଥିଲେ ଏବଂ ଗଙ୍ଗଙ୍କ ରାଜ୍ୟରେ 'ପାଶୁପତ' ଓ 'ମତ୍ତମୟୂର'ମାନେ ଲୋକପ୍ରିୟତା ହାସଲ କରୁଥିଲେ । ଧର୍ମଶାସ୍ତ୍ରର ସଂକଳନକର୍ତ୍ତା **ପତଙ୍ଗ ଶିବାଚାର୍ଯ୍ୟ** ନାମକ (ମତ୍ତ ମୟୂର ସମ୍ପ୍ରଦାୟର) ଜଣେ ବିଖ୍ୟାତ ପଣ୍ଡିତ ଦେବେନ୍ଦ୍ର ବର୍ମନଙ୍କର ଦୀକ୍ଷାଗୁରୁ ଥିଲେ (ଗଙ୍ଗାଡ : ୧୮୪) । ମହେନ୍ଦ୍ର ଅଞ୍ଚଳର ପୁରୁଣି ଗ୍ରାମ ନିକଟସ୍ଥ ଯାଗେଶ୍ୱର ଭଟ୍ଟାରିକା ମନ୍ଦିରରେ ସେ ତାଙ୍କର ଶିଷ୍ୟ

(୭) ତତ୍ରୈବ, ପୃ-୨୧୫-୨୧୬

(୮) ତତ୍ରୈବ, ପୃ-୨୨୧-୨୨୨

ପ୍ରଶିଷ୍ୟଙ୍କ ସହିତ ବାସ କରୁଥିଲେ । **ପିଲଶର୍ମନ୍** ନାମକ ଜଣେ ବ୍ୟକ୍ତି ବେଦ ଓ ବେଦାଙ୍ଗରେ ବିଖ୍ୟାତ ପଣ୍ଡିତ ଥିଲେ । ତାମ୍ରସନନ୍ଦ ଗ୍ରହଣକାରୀ **ତମ୍ପରି ଶର୍ମନ୍** (ଶର୍ମା) ଓ **ବିଷ୍ଣୁ ସୋମାଚାର୍ଯ୍ୟ** ମଧ୍ୟ ପ୍ରସିଦ୍ଧ ପଣ୍ଡିତ ଥିଲେ । ସେହିପରି ସନନ୍ଦ ଗ୍ରହଣକାରୀ ଶ୍ରୀଧର ଭଟ୍ଟ ବେଦ ଓ ବେଦାଙ୍ଗରେ ଅସାଧାରଣ ଦକ୍ଷତା ଅର୍ଜନ କରିଥିଲେ । କମଳାସନ ଭଟ୍ଟାରକ ନାମରେ ଜଣେ ମନ୍ଦର-ତନ୍ତ୍ରାବଧାରକ ପରମାର୍ଥ ତନ୍ତ୍ରରେ ବିଶେଷ ଜ୍ଞାନୀ ଥିଲେ; ସମ୍ଭବତଃ ସେ ଶଙ୍କରଙ୍କର ଅନୁପନ୍ଥୀ ଥିଲେ । ନରସିଂହ ଭଟ୍ଟ ଓ ମାଧବ ଭଟ୍ଟ ବେଦ ଓ ଅନ୍ୟାନ୍ୟ ଶାସ୍ତ୍ରରେ ପଣ୍ଡିତ ଥିଲେ (୯) ।

ଖ୍ରୀ: ୭୨୬-୨୭ରୁ ଗଙ୍ଗମାନେ ଦୀର୍ଘ ୪୦୦ ବର୍ଷରୁ ଅଧିକ କାଳ ଅପ୍ରତିହତ ଭାବରେ ମହାନ୍ କଳିଙ୍ଗ ଦେଶ କଳିଙ୍ଗ ନଗରରେ ରହି ଶାସନ କରୁଥିଲେ । ତାପରେ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଚତୁର୍ଥରେ ସେମାନେ **ଉତ୍କଳ ଅଧିକାର** କରି ନିଜ ରାଜ୍ୟ ସହିତ ମିଶାଇ ଦେଇଥିଲେ ଏବଂ **ବାରାଣସୀ କଟକକୁ** ରାଜଧାନୀ ଉଠାଇ ନେଇଥିଲେ । ଗଙ୍ଗ ରାଜାମାନଙ୍କର ତାମ୍ର ଶାସନ ଗୁଡ଼ିକ ସ୍ଥାନୀୟ ଓଡ଼ିଆ-ପ୍ରାକୃତ ପ୍ରଭାବିତ ସଂସ୍କୃତ ଭାଷାରେ ରଚିତ ହୋଇଥିଲା । ସେ ଗୁଡ଼ିକରେ ବହୁ ପ୍ରଚଳିତ ଓଡ଼ିଆ ଶବ୍ଦ ଦେଖାଯାଏ (୧୦) ।

ପ୍ରାଚୀନ ଗଙ୍ଗ ଶାସନ କାଳର ଶେଷ ଭାଗକୁ ସମଗୋତ୍ରୀ ବିଭିନ୍ନ ଶାଖା ମଧ୍ୟରେ କ୍ଷମତା ପାଇଁ ପ୍ରତିଦ୍ୱନ୍ଦ୍ୱିତା ହେତୁ କନ୍ଦଳ ଆରମ୍ଭ ହୋଇଥିଲା । ୧୦ମ ଶତାବ୍ଦୀର ଶେଷ ବେଳକୁ ଗଙ୍ଗମାନଙ୍କର ଆଉ ଗୋଟିଏ ଶାଖା ଶକ୍ତିଶାଳୀ ହୋଇ କଳିଙ୍ଗର ପାଞ୍ଚଟି ପୃଥକ୍ ଅଞ୍ଚଳ ମିଶାଇ କଳିଙ୍ଗର ସମ୍ରାଟ୍ ହୋଇଥିଲେ (୧୧) । ଭେଙ୍ଗିର ପୂର୍ବଦେଶୀୟ ଚାଲୁକ୍ୟମାନଙ୍କର ବିଭିନ୍ନ ସମଗୋତ୍ରୀ ଶାଖାମାନେ ଯେପରି ରାଜ୍ୟାଭିଳାଷୀ ହୋଇ ନିଜ ନିଜ ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ହୋଇ ନିଜ ଦେଶର ଶତ୍ରୁ ପ୍ରତିରୋଧକାରୀ ଶକ୍ତିକୁ ଦୁର୍ବଳ କରି ଦେଇଥିଲେ, କଳିଙ୍ଗରେ ସେହିପରି ଗଙ୍ଗମାନଙ୍କର ବିଭିନ୍ନ ଶାଖା ନିଜ ନିଜ ମଧ୍ୟରେ ସଂଘର୍ଷର ସୂତ୍ରପାତ କରି ବହିଃଶତ୍ରୁକୁ ନିଜ ଦେଶ ପ୍ରତି ଆକୃଷ୍ଟ କରୁଥିଲେ । ଫଳରେ ଏକ ଦୁର୍ବଳ ମୁହୂର୍ତ୍ତରେ ଶତ୍ରୁ ସୋମବଂଶୀ ରାଜା ଯଯାତି ଅନାୟାସରେ ତ୍ରିକଳିଙ୍ଗ ଅଧିକାର କରି ପୂର୍ବର 'ତ୍ରିକଳିଙ୍ଗାଧିପତି' ପଦବୀ ବ୍ୟବହାର କରିଥିଲେ । ଇତ୍ୟବସରରେ ତୋଷଳିର ଭୌମକର ମାନଙ୍କର ପତନ ପରେ (ଖ୍ରୀ. ୯୩୦) ସୋମବଂଶୀ ରାଜାଙ୍କର ସହସା ଉତ୍ଥାନ ଫଳରେ କଳିଙ୍ଗରେ କନ୍ଦଳ ଆରମ୍ଭ ହୋଇଥିଲା । ସେତେବେଳେ କଳିଙ୍ଗରେ ଗଙ୍ଗମାନଙ୍କର ଅଗ୍ରବର୍ତ୍ତୀ ବା ଜ୍ୟେଷ୍ଠ ଶାଖା ତା'ର ପ୍ରାଧାନ୍ୟ ହରାଇ ଆସୁଥିଲା ।

ସମ୍ଭବତଃ ବୈବାହିକ **ବନ୍ଧନ** ଜନିତ ବଂଶଗତ ଦ୍ୱନ୍ଦ୍ୱ ହେତୁ ଗଙ୍ଗ ଓ ପୂର୍ବ ଚାଲୁକ୍ୟମାନଙ୍କ ମଧ୍ୟରେ ସଂଘର୍ଷ ଲାଗି ରହିଥିଲା । ପ୍ରାୟ ଖ୍ରୀ. ୯୮୧ରେ କାମାର୍ଣ୍ଣବ (୧ମ) ଓ ତାଙ୍କର କନିଷ୍ଠ ଭ୍ରାତା ବିନୟାଦିତ୍ୟଙ୍କ ମୃତ୍ୟୁ ପରେ ଏହି ସଂଘର୍ଷର ଅବସାନ ଘଟିଥିଲା ।

(୯) ତତ୍ରୈବ, ପୃ-୨୨୩-୨୨୪

(୧୦) ତତ୍ରୈବ, ପୃ-୨୨୪

(୧୧) S. N. Rajaguru, H. O. G., Part II, 1972, P. 1

ତାପରେ ବଜ୍ରହସ୍ତ (୪ର୍ଥ) ବିଭିନ୍ନ ଗଙ୍ଗଶାଖାମାନଙ୍କ ମଧ୍ୟରେ ପାଞ୍ଚଖଣ୍ଡରେ ବିଭକ୍ତ ହୋଇଥିବା କଳିଙ୍ଗକୁ ଏକତ୍ର କରିଥିଲେ ।

ଚୋଳ ଓ ସୋମବଂଶୀ ରାଜାଙ୍କ ମଧ୍ୟରେ ଶତ୍ରୁତା ଲାଗି ରହିଲା । କଳିଙ୍ଗ ଅଧିକାର କରି ସେମାନେ ରାଜ୍ୟ ବଢ଼ାଇବାକୁ ଚାହିଁଲେ । ଦକ୍ଷିଣରେ ରାଜେନ୍ଦ୍ର ଚୋଳ ସିଂହାସନ ଆରୋହଣ ପରେ ବେଙ୍ଗି ଓ କଳିଙ୍ଗର ରାଜାମାନଙ୍କ ସହିତ ତାଙ୍କର ପୈତୃକ ଶତ୍ରୁମାନଙ୍କୁ ପରାସ୍ତ କଲେ (୧୨) । ମହେନ୍ଦ୍ର ପର୍ବତମାଳାର ପରପାରରେ ଉତ୍ତର କଳିଙ୍ଗ ଅର୍ଦ୍ଧକ ଦେବେନ୍ଦ୍ର ବର୍ମନଙ୍କ ଅଧୀନରେ ଓ ଦକ୍ଷିଣ କଳିଙ୍ଗର ଅର୍ଦ୍ଧକ (କଳିଙ୍ଗ ନଗର ବା ମୁଖଲିଙ୍ଗକୁ ମିଶାଇ) ବଜ୍ରହସ୍ତଙ୍କ (୫ମ) ଅଧୀନରେ ଥିଲା (୧୩) ।

ଅନନ୍ତ ବର୍ମନ୍ ବଜ୍ରହସ୍ତ ଓ ରାଜରାଜଦେବଙ୍କ (୧ମ) ପରେ ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗଦେବ (ଖ୍ରୀ. ୧୦୭୮-୧୧୪୭) ଗଙ୍ଗବଂଶର ଜଣେ ଶକ୍ତିଶାଳୀ ସମ୍ରାଟ୍ ଥିଲେ । ସେ ଦୀର୍ଘ ୭୦ ବର୍ଷ ରାଜତ୍ୱ କରିଥିଲେ । ସେ ସୋମବଂଶୀ କର୍ଣ୍ଣଦେବ ବା କର୍ଣ୍ଣକେଶରୀଙ୍କୁ ପରାସ୍ତ କରି କଳିଙ୍ଗ ଓ ଉତ୍କଳକୁ ଗୋଟିଏ ରାଜ୍ୟରେ ପରିଣତ କରିଥିଲେ । ତାଙ୍କ ଦତ୍ତ ଏକ ତାମ୍ରଶାସନରୁ (ଖ୍ରୀ. ୧୧୧୨) ଜଣାଯାଏ ଯେ ସେ ଗଙ୍ଗା ଓ ଗୋଦାବରୀ ମଧ୍ୟସ୍ଥ ବିଶାଳ ଭୂଖଣ୍ଡର ସମ୍ରାଟ୍ ଥିଲେ । ସେ ତାଙ୍କର ବହୁ ରାଣୀଙ୍କ ସହିତ ପୂର୍ବ ଗୋଦାବରୀ ଜିଲ୍ଲାର ଦ୍ରାକ୍ଷାରାମରେ ଥିବା ଭୀମେଶ୍ୱର ମନ୍ଦିର ଦର୍ଶନ କରି ଭୀମେଶ୍ୱରଙ୍କୁ ବହୁ ଦାନ ପତ୍ର ଦେଇଥିଲେ । ଅଭିଯାନ ଓ ରାଜ୍ୟ ବିସ୍ତାର ପରେ ଚୋଡ଼ଗଙ୍ଗ ପୁରୀରେ **ଜଗନ୍ନାଥ ମନ୍ଦିର** ନିର୍ମାଣରେ ନିଜର ସମସ୍ତ, ଅର୍ଥ ଓ ଶକ୍ତିର ବିନିଯୋଗ କରିଥିଲେ । ଖ୍ରୀ. ୧୧୧୨ରେ ଉତ୍କଳ ଅଧିକାର ପରେ ସେ କଳିଙ୍ଗ ନଗରରୁ ତାଙ୍କର ରାଜଧାନୀ ଚୌଦ୍ୱାର କଟକ ବା ଅଭିନବ ଯଯାତି ନଗରକୁ (ଆଧୁନିକ ଯାଜପୁର) ଉଠାଇ ନେଇଥିଲେ ।

ଶ୍ରୀବୈଷ୍ଣବଙ୍କ ଅନୁସୃତ ପ୍ରଣାଳୀରେ ଚୋଡ଼ଗଙ୍ଗଦେବ ଧାର୍ମିକ ଉତ୍ସବ ପ୍ରବର୍ତ୍ତନ କରିଥିଲେ । ସେ **ବୈଷ୍ଣବ ଧର୍ମ** ଗ୍ରହଣ କରିଥିଲେ ଏବଂ 'ପରମ ଭଟ୍ଟାରକଃ ପରମ ବୈଷ୍ଣବଃ-ପରମ ବ୍ରହ୍ମଣ୍ୟ' ଉପାଧି ଧାରଣ କରିଥିଲେ । ଏହା ପୂର୍ବରୁ ସେ ଥିଲେ ପରମ ମାହେଶ୍ୱର । ସେ ଶୈବ ଧର୍ମ ଓ ରାମାନୁଜ ସମ୍ପ୍ରଦାୟର ବୈଷ୍ଣବ ମତକୁ ସ୍ୱାଗତ କରିଥିଲେ (୧୪) ।

ଗୁପ୍ତ ରାଜତ୍ୱ କାଳରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ସନ୍ଧାନ ମିଳେ । 'ସାତ୍ୱତ ସଂହିତା' ଅନୁସାରେ ତା'ର ନାମ ଥିଲା ସାତ୍ୱତ ଧର୍ମ । ସାତ୍ୱତ ଧର୍ମକୁ ଶ୍ରୀବୈଷ୍ଣବମତ ଜାତି ବୋଲି କୁହାଯାଏ, ଯଦିଓ ଗୁପ୍ତ ଶାସନ ପୂର୍ବରୁ କୃଷ୍ଣ ବାସୁଦେବ ପୂଜା ପ୍ରଚଳିତ ଥିଲା । କଳିଙ୍ଗ ରାଜା ହସ୍ତୀ ବର୍ମନଙ୍କର (ଖ୍ରୀ: ୭୦୭-୭୧୫) ତାମ୍ରଶାସନରୁ ବିଷ୍ଣୁ ପୂଜାର ପ୍ରମାଣ ମିଳେ ଯେଉଁଠି ସହସ୍ରାର୍ଣ୍ଣବଶାୟୀ ନାରାୟଣଙ୍କର ବର୍ଣ୍ଣନା ରହିଛି ।

(୧୨) ତଦୈବ, ପୃ-୯-୧୨

(୧୩) ତଦୈବ, ପୃ-୧୬-୧୭

(୧୪) ତଦୈବ, ପୃ-୧୯-୪୦

ତା'ପରେ ସମ୍ଭବତଃ ଶ୍ରୀମଦ୍ଭାଗବତ ଆଦର୍ଶରେ କୃଷ୍ଣ-ବାସୁଦେବଙ୍କର ମୂର୍ତ୍ତି ପ୍ରବର୍ତ୍ତିତ ହେଲା, କାରଣ କଳିଙ୍ଗରେ ମାଠରମାନଙ୍କ ଶାସନ କାଳରେ କେତେକ ରାଜାଙ୍କ ଦ୍ୱାରା 'ପରମ ଭାଗବତଃ' ରାଜକୀୟ ପଦବୀ ରୂପେ ବ୍ୟବହୃତ ହେଉଥିଲା । ଦେବତାଙ୍କୁ ନାରାୟଣ ସ୍ୱାମୀ କୁହାଯାଉଥିଲା । ପରେ ଭୌମକର ବଂଶର ରାଣୀ ତ୍ରିଭୁବନ ମହାଦେବୀ (ଖ୍ରୀ ୮୯୪) ଓ ଦଣ୍ଡୀ ମହାଦେବୀ (ଖ୍ରୀ: ୯୧୬) ତାଙ୍କର ଦାନପତ୍ରରେ 'ପରମ ବୈଷ୍ଣବଃ' ପଦବୀର ଉଲ୍ଲେଖ କରୁଥିଲେ ।

ତୋଷଳର ଭୌମକର ରାଜାମାନେ ମହାଯାନ ବୌଦ୍ଧ ମତ ଗ୍ରହଣ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ବୈଷ୍ଣବ ଧର୍ମର ଆଶ୍ରୟ ନେଇଥିଲେ ! ଏହି ନୂତନ ବୈଷ୍ଣବ ଧର୍ମ ସମ୍ପର୍କରେ ଶ୍ରୀ ରାଜଗୁରୁ ସ୍ୱକୀୟ ମତ ପ୍ରକାଶ କରି କହନ୍ତି ଯେ ଏହା ସମ୍ଭବତଃ ପରବର୍ତ୍ତୀ ବୌଦ୍ଧ ଧର୍ମର ସଦୃଶୀକରଣ, ଯାହା କି ଶ୍ରୀବୈଷ୍ଣବମାନେ ଆଂଶିକ ଭାବରେ ଗ୍ରହଣ କରିଥିଲେ । ସମ୍ଭବତଃ ସେମାନେ ପୁରୀର ଜଗନ୍ନାଥଙ୍କୁ ବୁଦ୍ଧଙ୍କର ଅବତାର ବୋଲି ସ୍ୱୀକାର କରିଥିଲେ, ଯାହା କି କାଳକ୍ରମେ ଲୋକପ୍ରିୟ ହୋଇଥିଲା । ଏ ସମ୍ପର୍କରେ ପ୍ରାଚୀ ଉପତ୍ୟକାରେ (ପୁରୀ ଜିଲ୍ଲା) ବହୁଳ ଭାବରେ ପୂଜିତ **ମାଧବ** ମୂର୍ତ୍ତିର ବୈଶିଷ୍ଟ୍ୟ ବିଚାରକୁ ନିଆଯାଇ ପାରେ, ଯେଉଁଠି ବହୁ କବିଙ୍କର ଧାର୍ମିକ ସାହିତ୍ୟରେ ବୌଦ୍ଧ ଧର୍ମର ପରବର୍ତ୍ତୀ ସ୍ୱରୂପର ସଙ୍କେତ ମିଳେ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ବେଳକୁ ବୈଷ୍ଣବ ଧର୍ମରେ ବଜ୍ରଯାନ ଓ ତନ୍ତ୍ରଯାନ ମିଶିଯାଇଥିଲା ।

'ବରାହ ସଂହିତା'ରେ **ଚତୁର୍ବ୍ୟୂହ** ମତରେ (ପ୍ରଦ୍ୟୁମ୍ନ, ସଙ୍କର୍ଷଣ, ଅନିରୁଦ୍ଧ ଓ ମାଧବ) ଉଲ୍ଲେଖ ଅଛି । କେତେକ ଉପପୁରାଣ ଅନୁଯାୟୀ ଭେଙ୍କଟାଦ୍ରି (ଉତ୍ତର ଆର୍କଟ ଜିଲ୍ଲାର ଭେଙ୍କଟାଚଳମ୍) ଦକ୍ଷିଣ ଭାରତରେ ବୈଷ୍ଣବ ଧର୍ମର କେନ୍ଦ୍ର ହୋଇଥିଲା । ଗୋପାଳଭଟ୍ଟ ତାଙ୍କର 'ହରିଭକ୍ତି ବିଳାସ'ରେ ଏହି ଉପପୁରାଣ ଗୁଡ଼ିକର ଉଲ୍ଲେଖ କରିଛନ୍ତି । ଆଲ୍‌ଵାର ଓ ଆଚାର୍ଯ୍ୟମାନେ ଏହି ମତକୁ ପ୍ରକୃତ ରୂପ ଦାନ କରିଥିଲେ (୧୫) ।

ଘୁମୁସରର ଭଞ୍ଜ ରାଜାମାନଙ୍କର ଏକ ତାମ୍ର ଶାସନରୁ ଜଣାଯାଏ ଯେ ଦାତା ରାଜା ଭଞ୍ଜ ଶ୍ରୀ ବୈଷ୍ଣବ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ଭଞ୍ଜ ରାଜାମାନେ ତୋଷଳର ଭୌମକର ରାଜାମାନଙ୍କର ସାମନ୍ତ ଥିଲେ ଏବଂ ସେମାନଙ୍କର ରାଜତ୍ୱର ଶେଷ ଭାଗରୁ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ସେମାନେ ରାମାନୁଜଙ୍କ ପୂର୍ବରୁ ଶ୍ରୀବୈଷ୍ଣବ ସମ୍ପ୍ରଦାୟରୁ ସେମାନଙ୍କର ଗୁରୁ ଗ୍ରହଣ କରୁଥିଲେ । ବୌଦ୍ଧ ଧର୍ମର ଇତିହାସରେ ଯେଉଁ ତନ୍ତ୍ର-ଧର୍ମ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ତାହା ଶେଷରେ 'ଶ୍ରୀସମ୍ପ୍ରଦାୟ' ନାମକ ନୂତନ ବୈଷ୍ଣବ ଧର୍ମରେ ମିଶି ଯାଇଥିଲା ! ବୌଦ୍ଧ ତନ୍ତ୍ରକର୍ତ୍ତା ଇନ୍ଦ୍ରଭୂତି ତାଙ୍କର 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣ ଶ୍ଳୋକରେ ଜଗନ୍ନାଥଙ୍କୁ ତାଙ୍କର ଶକ୍ତି ବିମଳାଙ୍କ ସହିତ ଏକ ଭୈରବ

(୧୫) ତତ୍ରୈବ, ପୃ-୪୦-୪୧

ବୋଲି ଉଲ୍ଲେଖ କରିଛନ୍ତି । ଶ୍ରୀ ରାଜଗୁରୁ କହନ୍ତି ଯେ ସମ୍ଭବତଃ ତନ୍ତ୍ରଧର୍ମର ଯୋଗ ପର୍ଯ୍ୟାପ୍ତ ଜଗନ୍ନାଥ ମନ୍ଦିରରେ ଏ ପରମ୍ପରା ସୃଷ୍ଟି କରିଛି (୧୬) ।

ଚୋଡ଼ଗଙ୍ଗଦେବଙ୍କ ସମୟରେ ଗଙ୍ଗ ସାମ୍ରାଜ୍ୟ ଉତ୍ତରରେ ହୁଗୁଳି ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ସେତେବେଳେ ତାହା ତ୍ରିକଳିଙ୍ଗ ନାମରେ ପରିଚିତ ଥିଲା । ସୀମାନ୍ତବର୍ତ୍ତୀ ରାଜ୍ୟମାନଙ୍କରେ ବହୁ ସାମନ୍ତ ରାଜା ସୃଷ୍ଟି ହୋଇ ଅବସ୍ଥାପିତ ହୋଇଥିଲେ । ସେମାନେ ବାହ୍ୟ ଶତ୍ରୁର ଆକ୍ରମଣକୁ ପ୍ରତିହତ କରିବା ସଙ୍ଗେ ସଂଗେ ଯୁଦ୍ଧ ସମୟରେ ସମ୍ରାଟଙ୍କୁ ସୈନ୍ୟ ଓ ସାମଗ୍ରୀ ଯୋଗାଉଥିଲେ । ସୁଦୃଢ଼ ସାମରିକ ଶକ୍ତି ହେତୁ ଦୀର୍ଘ ୩୦୦ ବର୍ଷ ଧରି ମୁସଲମାନମାନଙ୍କର ଆକ୍ରମଣ ସତ୍ତ୍ୱେ ଉତ୍କଳର ସ୍ୱାଧୀନତା ଅକ୍ଷୁଣ୍ଣ ରହିଥିଲା ।

ରାଜରାଜ ଦେବ (୩ୟ) ଓ ତାଙ୍କର ସେନାପତିମାନେ ଗୌଡ଼ର ସୁଲତାନ ଓ ଯବନ-ମାନଙ୍କ ଉପରେ ବିଜୟ ହାସଲ କରିଥିଲେ । ଅନଙ୍ଗଭୀମଙ୍କ (୩ୟ) କନ୍ୟା ଚନ୍ଦ୍ରିକା ଦେବୀ ଯବନମାନଙ୍କ ସହିତ ଯୁଦ୍ଧରେ ନିହତ ହୋଇଥିବା ହୈହୟବଂଶର ସ୍ୱାମୀ ପରମର୍ଦ୍ଦିଦେବଙ୍କ ସ୍ମୃତି ପାଇଁ ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରାଇ ଥିଲେ । ଏହି ବଂଶର ନରସିଂହ ଦେବ (୧ମ) ଗଙ୍ଗାତୀରରେ ରାଢ଼ ଓ ବରେନ୍ଦ୍ରର ମୁସଲମାନମାନଙ୍କୁ ପରାସ୍ତ କରିଥିଲେ ଏବଂ ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିର ନିର୍ମାଣ କରାଇଥିଲେ । ନରସିଂହଦେବଙ୍କ (୩ୟ) ପୁତ୍ର ଭାନୁଦେବ (୩ୟ) ଶ୍ରୀକୂର୍ମମ୍ ମନ୍ଦିରରେ ଲେଖ ସ୍ଥାପନ କରିଥିଲେ ଏବଂ ସୀମାଚଳମ୍ ମନ୍ଦିର (ବିଶାଖାପାଟଣା ଜିଲ୍ଲା) ଦର୍ଶନ କରି ମାତାପିତାଙ୍କ ନାମରେ 'ଗଙ୍ଗା-ନରସିଂହ-ଭୋଗ' ପ୍ରବର୍ତ୍ତନ କରିଥିଲେ ।

ଗଙ୍ଗରାଜାଙ୍କ ଦରବାରରେ ବହୁ କବି ଓ ପଣ୍ଡିତ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ସେନାପତି, ସନ୍ଧିବିଗ୍ରହୀ ଓ ମହାପାତ୍ର ପ୍ରଭୃତି ଦାୟିତ୍ୱପୂର୍ଣ୍ଣ ପଦବୀରେ ନିଯୁକ୍ତ ହୋଇଥିଲେ । ଦ୍ୱିତୀୟ ଭାନୁଦେବଙ୍କ ସମୟରେ (ଖ୍ରୀ. ୧୨୭୪-୭୮) ଉମାପତି ନାମକ ଜଣେ କବି ଓଡ଼ିଶାର ସେନାପତି ଥିଲେ । ସେ ଅମରେଶ୍ୱର ମନ୍ଦିର (ଶ୍ରୀକାକୁଲମ୍ ଜିଲ୍ଲା) ଓ ଅନନ୍ତ ବାସୁଦେବ ମନ୍ଦିରର (ଭୁବନେଶ୍ୱର) ଲେଖ ରଚନା କରିଥିଲେ । ଭାନୁଦେବଙ୍କ (୧ମ) ସମୟରେ ନରହରି ତୀର୍ଥ ନାମରେ ଜଣେ କବି, ପଣ୍ଡିତ ତଥା ଗୁରୁ (୧୭) କଳିଙ୍ଗ ପ୍ରଦେଶର ମାଣ୍ଡଳିକ ଭାବରେ ନିଯୁକ୍ତ ହୋଇଥିଲେ ।

## ଖିମୁଣ୍ଡିର ଗଙ୍ଗବଂଶୀୟ ରାଜା

ଜନଶ୍ରୁତି ଅଛି ଯେ ପାରଳାଖିମୁଣ୍ଡି ଗଙ୍ଗଶାଖାର ଜନ୍ମଦାତା 'କଳାହମ୍ବୀର' ହେଉଛନ୍ତି କପିଳେନ୍ଦ୍ର ଦେବଙ୍କର ଅଷ୍ଟାଦଶ ପୁତ୍ରମାନଙ୍କ ମଧ୍ୟରୁ ପ୍ରଥମ ପୁତ୍ର । ସେମାନେ

(୧୬) ତତ୍ରୈବ, ପୃ-୪୨-୪୩
(୧୭) ତତ୍ରୈବ, ପୃ-୪୩-୬୯

ପୈତୃକ ରାଜ୍ୟ ତ୍ୟାଗ କରି ଉତ୍କଳର ସୀମାନ୍ତବର୍ତ୍ତୀ ଅଞ୍ଚଳମାନଙ୍କରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କରିଥିଲେ । କଳାହସ୍ତିର ଦକ୍ଷିଣରେ ଖିମୁଣ୍ଡି ରାଜ୍ୟକୁ (ପ୍ରାୟ ୧୦ମ ଶତକରୁ ଯା'ର ଅସ୍ତିତ୍ୱ ପ୍ରକାଶ ପାଇଥିଲା) ଆସିଥିଲେ ଯାହା କଳାହାଣ୍ଡି ଠାରୁ କଳିଙ୍ଗ ଓ ଋଷିକୁଲ୍ୟା ନଦୀଠାରୁ ଲାଙ୍ଗୁଲ୍ୟା (ନାଗାବଳୀ) ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

କଳାହସ୍ତିରଙ୍କ ପ୍ରକୃତ ନାମ ଥିଲା ନରସିଂହ ଦେବ । ଯବନ ରାଜା ହସ୍ତିରଙ୍କୁ ହତ୍ୟା କରି ସେ କଳାହସ୍ତିର ନାମରେ ପରିଚିତ ହୋଇଥିଲେ । ନରସିଂହ ଦେବ (ଜେନ୍ନା) କଳିଙ୍ଗରେ ଶାସନ କରୁଥିଲେ । ଏହା ଗୋଦାବରୀ ନଦୀଠାରୁ ଗଂଗା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମହେନ୍ଦ୍ର ପର୍ବତ ଅଞ୍ଚଳ ଓ ପର୍ବତମାଳାର ଉର୍ବର ଉପତ୍ୟକାଗୁଡ଼ିକ ଥିଲା କଳିଂଗର ମାଳ ଅଞ୍ଚଳ (ଉଚ୍ଚ ଭୂମି) । ପୁରୁଷୋତ୍ତମ ଦେବ (ନରସିଂହ ଦେବଙ୍କର ଭ୍ରାତା) ଯେତେବେଳେ ବଡ଼ାନାସୀ କଟକରୁ ରାଜ୍ୟଶାସନ ଚଳାଉଥିଲେ, ସେତେବେଳେ ମାଳ ଅଞ୍ଚଳରେ ଲୋକେ ତାଙ୍କୁ ସମର୍ଥନ କରି ନଥିଲେ । ନରସିଂହ ଦେବ ଓ ତାଙ୍କର ଭ୍ରାତାମାନେ ଏହି ଉଚ୍ଚ ଭୂମିକୁ ନିରାପଦ ବାସଯୋଗ୍ୟ ମଣି ପ୍ରଥମତଃ କୋରାପୁଟ ଜିଲ୍ଲାର 'ଗୁନ୍ପୁର'ରେ ନିଜକୁ ପ୍ରତିଷ୍ଠିତ କରିଥିଲେ । କଳିଂଗର ସେହି ଊର୍ଦ୍ଧ୍ୱ ପାର୍ବତ୍ୟ ଅଞ୍ଚଳର ସୀମାନ୍ତମାନଙ୍କ ଦ୍ୱାରା ସମର୍ଥିତ ହୋଇ ଏବଂ ଗ୍ରେଳ ବଂଶର ରାଜକନ୍ୟାଙ୍କୁ (ଜମ୍ବୁକେଶ୍ୱର ରାୟଙ୍କ କନ୍ୟା) ବିବାହ କରି ନରସିଂହ ଦେବ ଖିମୁଣ୍ଡି ରାଜ୍ୟ ସ୍ଥାପନ କଲେ । ତାଙ୍କର ଅନ୍ୟ ଭ୍ରାତାମାନେ ଅନ୍ୟ ଅଞ୍ଚଳରେ ରାଜ୍ୟମାନ ସ୍ଥାପନ କଲେ । ଗ୍ରେଳ ବିରୁଦ୍ଧରେ ପୁରୁଷୋତ୍ତମଦେବ ଯେତେବେଳେ ତାଙ୍କର ସୈନ୍ୟ ପ୍ରେରଣ କଲେ ଗ୍ରେଳ ଓ ଗଂଗ ସୈନ୍ୟଙ୍କ ଦ୍ୱାରା ଉତ୍କଳର ସୈନ୍ୟମାନେ ପରାସ୍ତ ହୋଇଗଲେ ଏବଂ ଉତ୍କଳର ଲୋକେ ବିଦ୍ରୋହ କଲେ । ପୁରୁଷୋତ୍ତମ ଦେବ ବିଦ୍ରୋହ ଶାନ୍ତ କରି ଭ୍ରାତା ନରସିଂହ ଦେବଙ୍କ ସହ ମିଳିତ ହୋଇଥିଲେ ଏବଂ କଳିଂଗର କିଛି ଅଂଶ ତାଙ୍କୁ ଦେଇ ମିଳିତ ଭାବରେ ଗ୍ରେଳ ବିରୁଦ୍ଧରେ ଅଭିଯାନ କରି ଜୟ ଲାଭ କରିଥିଲେ । ପୁରୁଷୋତ୍ତମ ଦେବଙ୍କ ପରି ନରସିଂହ ଦେବ ଖିମୁଣ୍ଡିରେ 'ମାଣିକେଶ୍ୱରୀ'ଙ୍କୁ ନିଜ ବଂଶର ଅଧିଷ୍ଠାତ୍ରୀ ଦେବୀ ଭାବରେ ପ୍ରତିଷ୍ଠିତ କରି ପୂଜା ଆରାଧନାର ବ୍ୟବସ୍ଥା କରିଥିଲେ ।

ନରସିଂହ ଦେବଙ୍କ ଶାସନ ସମୟରେ ବର୍ତ୍ତମାନର ବଡ ଖିମୁଣ୍ଡି, ସାନ ଖିମୁଣ୍ଡି, ପାରଳାଖିମୁଣ୍ଡି, ବସ୍ତର, କୋରାପୁଟ ଜିଲାର କିଛି ଅଂଶ ଖିମୁଣ୍ଡି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ବସ୍ତର ଓ କଳାହାଣ୍ଡି ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି 'ମାଣିକେଶ୍ୱରୀ' । କଳାହସ୍ତିର ଗୁଡ଼ାରି କଟକରୁ (ଖ୍ରୀ: ୧୨୪୫ରୁ ୧୨୬୫) ଖିମୁଣ୍ଡି ଶାସନ କରିବାକୁ ଲାଗିଲେ । ଖିମୁଣ୍ଡି ଗଜପତିଙ୍କର ରାଜବଂଶୀୟ ଇତିହାସରେ (ତାଳପତ୍ର ପୋଥି) ତାଙ୍କର କୃତିତ୍ୱର ବର୍ଣ୍ଣନା କରାଯାଇଛି । ସେଥିରୁ ଜଣାଯାଏ ଯେ ସେ ଗୁଡ଼ାରିରେ ନୀଳକଣ୍ଠେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ନରସିଂହ ଦେବଙ୍କ ପରେ ତାଙ୍କ ପୁତ୍ର ମଦନରୁଦ୍ର (ମଦନ ଦେବ) ଖ୍ରୀ. ୧୨୬୫ ରୁ ୧୨୯୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ପ୍ରାଚୀନ ବିବରଣୀ ଅନୁଯାୟୀ

ତାଙ୍କର ଜ୍ୟେଷ୍ଠପୁତ୍ର ଦେବ ବା ପଦ୍ମଭାନୁ ତାଙ୍କର ଜ୍ଞାନ ଓ ଶାସ୍ତ୍ରପାଣ୍ଡିତ୍ୟ ପାଇଁ ସର୍ବଜ୍ଞ ନାମରେ ପରିଚିତ ଥିଲେ ।

ରାଜା ଲକ୍ଷ୍ମୀନରସିଂହ ଭାନୁଙ୍କ ବିରୋଧରେ ଓଡ଼ିଶାର ରାଜା ନିଶଙ୍କ ଭାନୁ ସୈନ୍ୟ ପ୍ରେରଣ କରିବାରୁ ଲକ୍ଷ୍ମୀନରସିଂହ ଗୋଲକୁଣ୍ଡାର ଶାସକ ମହମ୍ମଦ ଶାହ ବାହମନୀଙ୍କ ସହିତ ମିଳିତ ହୋଇ ତାଙ୍କୁ ପରାସ୍ତ କଲେ ; କିନ୍ତୁ ବାହମନୀ ସନ୍ଧିରେ ଖିଲାପ କରିବାରୁ ଉତ୍କଳ ରାଜା ଓ ଖିମୁଣ୍ଡି ରାଜା ତାଙ୍କ ବିରୋଧରେ ମିଳିତ ଅଭିଯାନ କରି ପରାସ୍ତ ହେଲେ । କବିଡ଼ିଣ୍ଡିମ ଜୀବଦେବଙ୍କ 'ଭକ୍ତିଭାଗବତମ୍' ଅନୁଯାୟୀ ସେ ଚରିତ୍ରହୀନ ଥିବାରୁ ସାମନ୍ତମାନେ ତାଙ୍କୁ ଭଲ ପାଉ ନଥିଲେ, ସେଥିପାଇଁ ତାଙ୍କୁ ମଉଖାନୁ କୁହା ଯାଉଥିଲା । ତାଙ୍କ ପରେ ଉତ୍କଳରେ ଗଙ୍ଗବଂଶ ଧାରା ଲୋପ ପାଇଲା ।

ଗଙ୍ଗ ସମ୍ରାଟଙ୍କ ଅଧୀନରେ ସୈନ୍ୟାଧକ୍ଷ ଥିବା ସୂର୍ଯ୍ୟବଂଶୀ କପିଳେଶ୍ୱର ଦେବ ଉତ୍କଳ ଅଧିକାର କଲେ । ସେ ଚୋଡ଼ଗଙ୍ଗଙ୍କ ପରି ଓଡ଼ିଶାର ଜଣେ ଶକ୍ତିଶାଳୀ ରାଜା ଥିଲେ । ସେ ଦାକ୍ଷିଣାତ୍ୟର ମୁସଲମାନମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ତାଙ୍କ ସମୟରେ ଲକ୍ଷ୍ମୀନରସିଂହ ଭାନୁଙ୍କ ପୁତ୍ର ମଧୁକର୍ଣ୍ଣଭାନୁ ଖିମୁଣ୍ଡିରେ ରାଜତ୍ୱ କରୁଥିଲେ । କପିଳେଶ୍ୱର ଦେବଙ୍କ (ଖ୍ରୀ. ୧୩୯୨-୧୪୪୧) ସମୟରେ ଓଡ଼ିଶାରେ ବିଦ୍ରୋହ ହୋଇଥିଲା । ତା'ପରେ ସେ ମଉଭାନୁଙ୍କୁ ବାଣପୁରର ଜନୈକ ହରିଚନ୍ଦନଙ୍କ ଦ୍ୱାରା କୌଶଳରେ ନିହତ କରାଇ ଓଡ଼ିଶା ସିଂହାସନରେ ବସିଥିଲେ । ଓଡ଼ିଶା କପିଳେଶ୍ୱର ଦେବଙ୍କ ଅଧୀନ ହେଲେହେଁ କଳିଙ୍ଗ ଅଧୀନ ହୋଇ ନଥିଲା । କଳିଙ୍ଗର ରାଜାମାନେ ଏବଂ ଉତ୍କଳର ପୂର୍ବବର୍ତ୍ତୀ ରାଜାଙ୍କର କେତେକ ଅଧିକାରୀ ନଗରୀ କଟକରେ ଖିମୁଣ୍ଡିର ମଧୁକର୍ଣ୍ଣଭାନୁଙ୍କୁ ରାଜପଦରେ ଅଭିଷିକ୍ତ କରି ଆକ୍ରମଣକାରୀ କପିଳେଶ୍ୱରଙ୍କ ବିରୋଧରେ ଅଭିଯାନ ଚଳାଇ ତାଙ୍କୁ ପରାସ୍ତ କଲେ । ଏହାପରେ ମଧୁକର୍ଣ୍ଣଭାନୁ କେତୋଟି ପାର୍ବତ୍ୟ ଦୁର୍ଗ ପରିଦର୍ଶନ କରି ମୁଖଲିଙ୍ଗମ୍‌ରେ ଅଟକଲେ ଏବଂ ମଧୁକେଶ୍ୱର ମନ୍ଦିର ପୁନର୍ନିର୍ମାଣ କଲେ । ସେତେବେଳେ (୧୫ଶ ଶତକର ପ୍ରଥମଭାଗ) ରାଜମହେନ୍ଦ୍ରୀର ରେଡ୍‌ଡ଼ି ରାଜା ଓ ଓଡ଼ିଶାର ଗଜପତି ରାଜାଙ୍କ ମଧ୍ୟରେ ତୀବ୍ର ସଂଘର୍ଷ ଲାଗିଥିଲା ।

ମଧୁକର୍ଣ୍ଣଭାନୁଙ୍କ ପରେ ମୃତ୍ୟୁଞ୍ଜୟ ଭାନୁ ଖ୍ରୀ: ୧୪୨୩ରୁ ଖ୍ରୀ. ୧୪୫୭ ପର୍ଯ୍ୟନ୍ତ ଖିମୁଣ୍ଡିରେ ରାଜତ୍ୱ କଲେ । ସେ ଓ ତାଙ୍କର ଉତ୍ତରାଧିକାରୀମାନେ ମୁଖଲିଙ୍ଗ ନିକଟସ୍ଥ ନଗରୀ କଟକରେ ରହୁଥିଲେ (ଯାହାକି କଳିଙ୍ଗ ନଗର ନାମରେ ପ୍ରାଚୀନ ରାଜଧାନୀ ଥିଲା) । କପିଳେଶ୍ୱର ଦେବ ତାଙ୍କ ରାଜତ୍ୱର ଦଶମ ବର୍ଷରେ ଖିମୁଣ୍ଡି ଆକ୍ରମଣ କରିଥିଲେ । ଶ୍ରୀକୂର୍ମମ୍‌ର ଲେଖରୁ ଜଣାପଡ଼େ ଯେ ସେ ତାଙ୍କ ରାଜତ୍ୱର ପଞ୍ଚବିଂଶ ବର୍ଷରେ (ଖ୍ରୀ: ୧୪୫୫) ଏବଂ ଦ୍ୱାବିଂଶ ବର୍ଷରେ (ଖ୍ରୀ. ୧୪୬୨) ଦକ୍ଷିଣ ଓଡ଼ିଶା ଏବଂ ସପ୍ତବିଂଶ ବର୍ଷରେ ସୀମାଚଳମ୍ ମନ୍ଦିର ଦର୍ଶନ କରିଥିଲେ । କପିଳେଶ୍ୱର ଦେବଙ୍କ ସହିତ ମୃତ୍ୟୁଞ୍ଜୟଙ୍କର ଶାନ୍ତିଚୁକ୍ତି ସ୍ଥାପିତ ହେଲା । ଫଳରେ କପିଳେଶ୍ୱର ଦେବ କଳିଙ୍ଗର ରାଜା ହେବା ସ୍ଥଳେ ମୃତ୍ୟୁଞ୍ଜୟ ଭାନୁ ଖିମୁଣ୍ଡିର ଜଣେ ସାଧାରଣ ରାଜା ଭାବରେ ରହିଲେ ।

ପରସ୍ପରର ମିଳିତ ଚୁକ୍ତି ଅନୁଯାୟୀ ମୃତ୍ୟୁଞ୍ଜୟ ଭାନୁ ଦାକ୍ଷିଣାତ୍ୟରେ ମୁସଲମାନମାନଙ୍କ ବିରୋଧରେ ଯୁଦ୍ଧ କରିବାପାଇଁ ବିରାଟ ସୈନ୍ୟବାହିନୀ ନେଇ ତାଙ୍କ ସହ ଯୋଗ ଦେଇଥିଲେ ।

ମୃତ୍ୟୁଞ୍ଜୟଙ୍କ ପୁତ୍ର ହମ୍ବିର ମାଧବସୁନ୍ଦର ଗଜପତି ଖିମୁଣ୍ଡି ସିଂହାସନରେ ଅଧିଷ୍ଠିତ ହେଲେ (ଖ୍ରୀ: ୧୪୬୭) । ସେ ସମଗ୍ର ଦକ୍ଷିଣ ଭାରତରେ ଜଣେ ସଙ୍ଗଙ୍କ ଭାବରେ ସୁପରିଚିତ ଥିଲେ । ସେ କଳିଙ୍ଗର କିଛି ଅଂଶ ଅଧିକାର କରିଥିଲେ । ସେ ଗଜପତି ପୁରୁଷୋତ୍ତମ ଦେବଙ୍କ ବିରୋଧରେ ଅଭିଯାନ ଚଳାଇଥିଲେ; କିନ୍ତୁ ଅଳ୍ପକାଳ ପରେ ଶାନ୍ତି ଚୁକ୍ତି ସମ୍ପାଦିତ ହେଲା । ଫଳରେ ଖୁର୍ଦ୍ଦା ନିକଟବର୍ତ୍ତୀ ଚଟିଗଡ଼ଠାରୁ ସୀମାଚଳ ପର୍ଯ୍ୟନ୍ତ ଭୂଖଣ୍ଡ ଖିମୁଣ୍ଡି ରାଜାଙ୍କ ଅଧୀନରେ ରହିଲା । ମାଧବସୁନ୍ଦରଙ୍କ ପରେ ତାଙ୍କ ପୁତ୍ର ଚନ୍ଦ୍ରମୌଳି ଗଜପତି (ଖ୍ରୀ. ୧୪୯୪-୧୫୨୭) ଏବଂ ତାଙ୍କ ପରେ ପୁତ୍ର ସ୍ୱର୍ଣ୍ଣଲିଙ୍ଗ ଭାନୁ ଖିମୁଣ୍ଡିର ରାଜା ହେଲେ (ଖ୍ରୀ ୧୫୨୭-୧୫୬୭) । ଗଜପତି ପୁରୁଷୋତ୍ତମ ଦେବଙ୍କ ସହିତ ତାଙ୍କୁ ସଂଗ୍ରାମର ସମ୍ମୁଖୀନ ହେବାକୁ ହୋଇଥିଲା । ପ୍ରତାପରୁଦ୍ର ଦେବଙ୍କ ସମୟରେ ଓଡ଼ିଶାର ଗଜପତି ରାଜାଙ୍କ ସାମ୍ରାଜ୍ୟ ଦକ୍ଷିଣରେ କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାଙ୍କ ପୁତ୍ର ବୀରଭଦ୍ର ଗଜପତି ବିଜୟ ନଗର ରାଜା କୃଷ୍ଣଦେବ ରାୟଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ।

ସ୍ୱର୍ଣ୍ଣଲିଙ୍ଗ ଭାନୁଙ୍କ ପୁତ୍ର ଶିବଲିଙ୍ଗ ଭାନୁଙ୍କ (ଖ୍ରୀ. ୧୫୬୭-୯୦) ପରେ କୃଷ୍ଣ ଶ୍ରୀଚନ୍ଦନ ନାମରେ ଜଣେ ବିଖ୍ୟାତ ସଂସ୍କୃତ କବି ସଂସ୍କୃତରେ 'ଅଦ୍ଭୂତ' ରଚନା କରିଥିଲେ । ରଚନାର ଶେଷ ଭାଗରେ ଗଙ୍ଗ ରାଜାଙ୍କର ଏକ ବଂଶାବଳୀ ଦିଆଯାଇଛି । ଖିମୁଣ୍ଡି ରାଜା ଏହାର ଟୀକା ରଚନା କରିଥିଲେ । ସଂସ୍କୃତ ନାଟକ 'ମଣିମାଳା' ସେହି କବିଙ୍କ ଦ୍ୱାରା ରଚିତ । କବି ଭୀମଦେବ ଓରଫ୍ ଧର୍ମରାଜ ଓରଫ୍ ପଦ୍ମନାଭ ଦେବଙ୍କର ସଚିବ ଥିଲେ ।

କପିଳେଶ୍ୱର ଦେବଙ୍କଠାରୁ ଖିମୁଣ୍ଡିର ରାଜାମାନେ ଓଡ଼ିଶାର ଗଜପତି ରାଜାମାନଙ୍କର ମିତ୍ର ଭାବରେ ଥିଲେ, ଫଳରେ ସେମାନେ ପ୍ରତାପରୁଦ୍ର ଦେବଙ୍କୁ କୃଷ୍ଣଦେବ ରାୟଙ୍କ ବିରୋଧରେ ବହୁ ସାହାଯ୍ୟ କରିଥିଲେ । ସେତେବେଳେ କର୍ଣ୍ଣାଟ ଓ ଉତ୍କଳ ରାଜାଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ତତ୍କାଳୀନ ପାରଳାଖିମୁଣ୍ଡି ରାଜା ସକ୍ରିୟ ଅଂଶ ଗ୍ରହଣ କରିଥିବା ଅନୁମାନ କରାଯାଏ ।

'ପାରଳାଖିମୁଣ୍ଡି ବଂଶାବଳୀ' ଅନୁଯାୟୀ ଶୁଭଲିଙ୍ଗ ଭାନୁ (ବା ଶିବଲିଙ୍ଗ ଭାନୁ) ପାରଳାଖିମୁଣ୍ଡି ଶାଖାର ପ୍ରତିଷ୍ଠାତା ଥିଲେ । 'ଅଦ୍ଭୂତ'ରୁ ଜଣାଯାଏ ଯେ ବଡ଼ ଖିମୁଣ୍ଡି ଓ ସାନ ଖିମୁଣ୍ଡିର ଗଙ୍ଗରାଜାମାନେ ଶୁଭଲିଙ୍ଗ ଭାନୁଙ୍କ ଶାଖାର ଅନ୍ତର୍ଭୁକ୍ତ । ରାଜା ଏକାଧାରରେ ଜଣେ ଯୋଦ୍ଧା ଓ ପଣ୍ଡିତ ଥିଲେ । ଶୁଭଲିଙ୍ଗ ତାଙ୍କର ଭ୍ରାତା ରାମଚନ୍ଦ୍ର ଅନଙ୍ଗଭୀମ କେଶରୀଙ୍କ ସହ ମିଳିତ ହୋଇ ପ୍ରତାପରୁଦ୍ର ଦେବଙ୍କ ମୃତ୍ୟୁ ପରେ ଓଡ଼ିଶାର ବହୁ ଅଞ୍ଚଳ ନିଜ ଅଧିକାରକୁ ଆଣିଥିଲେ (କିଛିକାଳ ପାଇଁ) । ଦୁଇ ଭ୍ରାତାଙ୍କ ମଧ୍ୟରେ ପୈତୃକ ରାଜ୍ୟ ଦୁଇ ଭାଗରେ. ବିଭକ୍ତ ହୋଇଥିଲା । ଶୁଭଲିଙ୍ଗଙ୍କ ଭାଗରେ ପଡ଼ିଲା ନଗରୀ କଟକ, ଶ୍ରୀକାକୁଲମ୍ ଓ ଗୁଣପୁର ତାଲୁକ ସହ ପାରଳାଖିମୁଣ୍ଡି ଏବଂ ରାମଚନ୍ଦ୍ରଙ୍କ ଭାଗରେ

ପଡ଼ିଲା ବଡ଼ ଖିମୁଣ୍ଡି ଓ ସାନ ଖିମୁଣ୍ଡି । ଟିକ୍‌କାଲିର ରାଧାକାନ୍ତ ମନ୍ଦିରରେ ସୁବର୍ଣ୍ଣ ଦେବଙ୍କର (ସୁବର୍ଣ୍ଣ ଲିଙ୍ଗଭାନୁ) ଏକ ଶିଳାଲେଖ ରହିଛି ।

ଶିବଲିଙ୍ଗ ଭାନୁଙ୍କ ପରେ ସୁବର୍ଣ୍ଣକେଶରୀ ଗୋବିନ୍ଦଦେବ ଗଜପତି ନାରାୟଣ ଦେବ (ଖ୍ରୀ: ୧୫୯୦-୧୬୩୦) ଏବଂ ତାଙ୍କ ପରେ ମୁକୁନ୍ଦରୁଦ୍ର ଗଜପତି ନାରାୟଣ ଦେବ (ଖ୍ରୀ. ୧୬୩୦-୧୬୫୬) ରାଜା ହେଲେ । ଜ୍ୟେଷ୍ଠ ପୁତ୍ର ମୁକୁନ୍ଦ ଗଜପତି (ଖ୍ରୀ. ୧୬୫୬-୧୬୭୪) ତାଙ୍କ ପରେ ସିଂହାସନ ଆରୋହଣ କଲେ । ଏହାଙ୍କ ସମୟରେ ନଗରୀ କଟକରୁ ପୁରୁଣାପାଟଣାକୁ ସଦର ମହକୁମା ଉଠିଗଲା ଏବଂ ବଂଶଧାରା ନଦୀର ଉପନଦୀ ମହେନ୍ଦ୍ର-ତନୟା କୂଳରେ ନୀଳକଣ୍ଠେଶ୍ୱର ମନ୍ଦିର ନିର୍ମିତ ହେଲା ।

ଭେଙ୍ଗିର ପୂର୍ବଚାଲୁକ୍ୟ ବଂଶର ଏକ ଶାଖା ଚାଳୁବଳେନ୍ଦ୍ର ବଂଶରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଜନ୍ମଗ୍ରହଣ କରିଥିଲେ । ସେ ମୁସଲମାନ ମାନଙ୍କ ବିରୋଧରେ ବିଭିନ୍ନ ସମର ପ୍ରାଙ୍ଗଣରେ ନିଜର ବୀରତ୍ୱର ପରିଚୟ ଦେଇଥିଲେ ଏବଂ ଆକବରଙ୍କ ସହ ମିଳିତ ସନ୍ଧି କରି ବଙ୍ଗର ଆଫଗାନଙ୍କ ବିରୋଧରେ ସଫଳତାର ସହ ଯୁଦ୍ଧ କରିଥିଲେ । ମୁକୁନ୍ଦଦେବଙ୍କ ବଂଶ ଖିମୁଣ୍ଡିର ଗଙ୍ଗବଂଶ ରାଜାଙ୍କ ସହିତ ସମ୍ପୃକ୍ତ ଥିଲେ । ସେଥିପାଇଁ ମୁକୁନ୍ଦଦେବ ପାରଳାଖିମୁଣ୍ଡିରେ ଆଶ୍ରୟ ନେଇଥିଲେ ।

ମୁକୁନ୍ଦ ଗଜପତିଙ୍କ ପରେ ତାଙ୍କ ପୁତ୍ର ଅନନ୍ତ ପଦ୍ମନାଭ ଗଜପତି ନାରାୟଣ ଦେବ (ଖ୍ରୀ: ୧୬୭୪-୧୬୮୬) ଏବଂ ତାଙ୍କ ପୁତ୍ର ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବ (ଖ୍ରୀ. ୧୬୮୬-୧୭୦୨) ରାଜା ହେଲେ । ତାଙ୍କ ପିତାଙ୍କ ରାଜତ୍ୱ କାଳରେ ମୁସଲମାନମାନଙ୍କ ଯୋଗୁଁ ରାଜ୍ୟରେ ଗଣ୍ଡଗୋଳ ଦେଖାଯାଇଥିଲା । ଜଗନ୍ନାଥଙ୍କର ୧୮ ଜଣ ପୁତ୍ରଙ୍କ ମଧ୍ୟରୁ ଦୁଇଜଣଙ୍କ ବ୍ୟତୀତ ଅନ୍ୟମାନଙ୍କୁ କୌଶଳରେ ଆକ୍ରମଣକାରୀ ସୈନ୍ୟମାନେ ହତ୍ୟା କରିଥିଲେ । ଜୀବିତ ପୁତ୍ରଙ୍କ ମଧ୍ୟରେ ଜ୍ୟେଷ୍ଠ ନରହରି ନାରାୟଣ ଦେବ (ଖ୍ରୀ ୧୭୦୨) ମୁସଲମାନ ବାହିନୀର ମଲ୍ଲିକ ଖାଁଙ୍କୁ ହତ୍ୟା କରିଥିଲେ । ତାଙ୍କର ଖଣ୍ଡା 'ମଲ୍ଲିକ ମର୍ଦ୍ଦନ' ଖଣ୍ଡା ନାମରେ ପରିଚିତ । ତାଙ୍କର ପୁତ୍ର ବୀର ପଦ୍ମନାଭ ନାରାୟଣ ଦେବ ଖ୍ରୀ. ୧୭୨୯ରୁ ୧୭୪୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ନିଃସନ୍ତାନ ଥିବାରୁ ତାଙ୍କର ଭ୍ରାତା ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ ଖ୍ରୀ. ୧୭୪୮ରୁ ୧୭୬୬ ପର୍ଯ୍ୟନ୍ତ ପାରଳାଖିମୁଣ୍ଡିରେ ରାଜତ୍ୱ କଲେ । ସେ ଜଣେ ବଡ଼ ପଣ୍ଡିତ ଓ ଜ୍ଞାନୀ ବ୍ୟକ୍ତି ଥିଲେ । ଏହାଙ୍କ ସମୟରେ ମରହଟ୍ଟା, ପିଣ୍ଡାରି ଓ ଜାଠମାନେ ପାରଳାଖିମୁଣ୍ଡି ସହର ଓ ଗାଁ ଗଣ୍ଡା ଲୁଣ୍ଠନ କରି ଆତଙ୍କ ସୃଷ୍ଟି କରିଥିଲେ । ରାଜଧାନୀ ପଠପଟନମ୍‌ରୁ ପାରଳାଖିମୁଣ୍ଡିର ରେଲଷ୍ଟେସନ୍ ନିକଟକୁ ଉଠାଇ ଅଣାଗଲା (୧୮) ।

ଏହି ହେଉଛି ସ୍ଥୂଳତଃ ପାରଳାଖିମୁଣ୍ଡି ସହ ଗଙ୍ଗଭୂମିର ଇତିହାସ ଓ ରାଜନୈତିକ ପରିସ୍ଥିତିର ଚିତ୍ର ।

(୧୮) S. N. Rajaguru, H. O. G. Part II, 1972, PP. 72-105

# ଧର୍ମ, ସାହିତ୍ୟ ଓ ସଂସ୍କୃତି

ଦ୍ୱାଦଶ ଶତାବ୍ଦୀରେ ଦକ୍ଷିଣ ଭାରତର ଶ୍ରୀ ବିଷ୍ଣୁସ୍ୱାମୀ, ଶ୍ରୀ ରାମାନୁଜାଚାର୍ଯ୍ୟ, ଶ୍ରୀ ନିମ୍ବାର୍କାଚାର୍ଯ୍ୟ ଓ ଶ୍ରୀ ମଧ୍ୱାଚାର୍ଯ୍ୟ ଏହି ଚାରିଜଣ ବିଭିନ୍ନ ବୈଷ୍ଣବ ସମ୍ପ୍ରଦାୟ ପ୍ରବର୍ତ୍ତନ କରିଥିଲେ । ସେମାନେ ସ୍ୱ ସ୍ୱ ମତର ପ୍ରଚାର ପାଇଁ ଉତ୍କଳ ରାଜାଙ୍କ ଆନୁକୂଲ୍ୟରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ମଠ ସ୍ଥାପନ କରିଥିଲେ ।

ବିଶ୍ୱବିଖ୍ୟାତ କବି ଜୟଦେବଙ୍କ ଆବିର୍ଭାବ ସମୟକୁ ବିଶିଷ୍ଟାଦ୍ୱୈତବାଦୀ ଶ୍ରୀ ରାମାନୁଜାଚାର୍ଯ୍ୟଙ୍କ ଧର୍ମମତ ଉତ୍କଳରେ ପ୍ରସାର ଲାଭ କରିଥିଲା । ଗଙ୍ଗସମ୍ରାଟ୍ ଚୋଡ଼ଗଙ୍ଗ ଦେବ ତାଙ୍କ ପ୍ରଭାବରେ ପୂର୍ବପୁରୁଷଙ୍କ ଦ୍ୱାରା ବ୍ୟବହୃତ 'ପରମ ମାହେଶ୍ୱର' ପଦବୀ ତ୍ୟାଗ କରି 'ପରମବୈଷ୍ଣବ' ରୂପେ ଘୋଷିତ ହୋଇଥିଲେ । ଶ୍ରୀକ୍ଷେତ୍ର ପୁରୀରେ ଶ୍ରୀ ଜଗନ୍ନାଥ ମନ୍ଦିର ଏବଂ ବ୍ରହ୍ମଗିରି ନିକଟରେ ଶ୍ରୀ ଆଲବାରନାଥ (ଶ୍ରୀମନ୍ ନାରାୟଣ) ମନ୍ଦିର ନିର୍ମାଣ କରିବା ସଙ୍ଗେ ସଙ୍ଗେ ଶ୍ରୀ କୂର୍ମନାଥଙ୍କ ପାଇଁ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ସେବକ ନିଯୁକ୍ତ କରିଥିଲେ । ଏଥିରୁ ଚୋଡ଼ଗଙ୍ଗ ଦେବଙ୍କ ଉପରେ ରାମାନୁଜଙ୍କ ପ୍ରଭାବ ସ୍ପଷ୍ଟ ପ୍ରତୀତ ହୋଇଥାଏ । ଘୁମୁସରର ଭଞ୍ଜବଂଶୀୟ ରାଜା ଶ୍ରୀ ଜୟଭଞ୍ଜ ଦେବ ମଧ୍ୟ ଶ୍ରୀବୈଷ୍ଣବ ମତ ଗ୍ରହଣ କରିଥିଲେ (୧୯) ।

ଦ୍ୱାଦଶ ଶତାବ୍ଦୀର ପ୍ରଥମଭାଗରୁ '**କୂର୍ମପାଟକ**' ଦକ୍ଷିଣ ଓଡ଼ିଶାର ଏକ ପ୍ରଧାନ ବୈଷ୍ଣବକ୍ଷେତ୍ର ରୂପେ ଖ୍ୟାତିଲାଭ କରିଥିବାର ଲେଖଗତ ପ୍ରମାଣ ରହିଛି । ସେଠାରେ ଗୀତଗୋବିନ୍ଦକାର ଜୟଦେବଙ୍କର ସମସାମୟିକ ଚାରିଜଣ ଗଙ୍ଗବଂଶୀୟ ସମ୍ରାଟଙ୍କର (ଚୋଡ଼ଗଙ୍ଗ, ମଧୁକାର୍ଣ୍ଣବ, ରାଘବ ଓ ରାଜରାଜ ଦେବ) ରାଜତ୍ୱ କାଳର ୨୯ଟି ଲେଖ ଉତ୍କୀର୍ଣ୍ଣ ହୋଇଥିଲା । ଜୟଦେବ ତାଙ୍କର ସମସାମୟିକ ଗଙ୍ଗସମ୍ରାଟ୍ ରାଘବଙ୍କର (ଖ୍ରୀ: ୧୧୫୭-୧୧୭୦) ରାଜସଭାର ଖ୍ୟାତନାମା ପଣ୍ଡିତ ଥିଲେ । ଶ୍ରୀ କେଦାରନାଥ ମହାପାତ୍ରଙ୍କ ମତରେ ସେ ସନ୍ନ୍ୟାସ ଗ୍ରହଣ କରି ଦକ୍ଷିଣ ଓଡ଼ିଶାର ବୈଷ୍ଣବତୀର୍ଥ ଶ୍ରୀକୂର୍ମମ୍‌ରେ କିଛିକାଳ ଅବସ୍ଥାନ କରି ଚୈତନ୍ୟଙ୍କ ପରି ନୀଳାଚଳ କ୍ଷେତ୍ର ପୁରୀରେ ନିଜର ଶେଷ ଜୀବନ ଅତିବାହିତ କରିଥିଲେ (୨୦) । ଭାରତୀୟ ତଥା ଉତ୍କଳୀୟ ଧର୍ମ, ସାହିତ୍ୟ, ସଙ୍ଗୀତ ଓ କଳାରେ ଜୟଦେବଙ୍କର ଗୀତଗୋବିନ୍ଦର ପ୍ରଭାବ ଯେ ଅଖଣ୍ଡ, ଅସପତ୍ନ ଓ ଯୁଗାନ୍ତକାରୀ ଏଥିରେ ଦ୍ୱିମତ ନାହିଁ (ପ୍ରସ୍ତୁତ ଓ ପରବର୍ତ୍ତୀ ଛତ୍ରମାନଙ୍କରେ ଏ ସମ୍ପର୍କୀୟ ବିସ୍ତୃତ ଆଲୋଚନା ଦ୍ରଷ୍ଟବ୍ୟ) ।

ଶ୍ରୀ ବୈଷ୍ଣବମାନେ ଲକ୍ଷ୍ମୀନାରାୟଣଙ୍କର ଉପାସନା କରୁଥିଲେ । ଭୌମ ରାଜାଙ୍କ ଶାସନ କାଳରୁ କମଳା ବା ଲକ୍ଷ୍ମୀ ଆରାଧ୍ୟା ଦେବୀ ରୂପେ ସୁପ୍ରତିଷ୍ଠିତା ଥିଲେ । ଜୟଦେବ

(୧୯) କେଦାରନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ୧୯୭୩, ପୃ-୮୨

(୨୦) ତତ୍ରୈବ, ପୃ-୨୪୭-୨୪୮

କମଳା (ଲକ୍ଷ୍ମୀ) ଓ ନିଜ ଆରାଧ୍ୟା ଶ୍ରୀରାଧାଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ପାଇଁ ଗୀତଗୋବିନ୍ଦ ଆଦ୍ୟରେ ଦଶାବତାର କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବତା ଶ୍ରୀ ଜଗନ୍ନାଥଙ୍କୁ ସ୍ମରଣ କରି ପରେ ଶ୍ରୀକୃଷ୍ଣଙ୍କୁ ଶ୍ରିତ-କମଳା-କୁଚମଣ୍ଡଳ, ପଦ୍ମାପୟୋଧରତଟୀ ପରିରମ୍ଭଲଗ୍ନ, କାଶ୍ମୀର-ମୁଦ୍ରିତ-ମୁର ମଧୁସୂଦନ ରୂପେ ଚିତ୍ରାୟିତ କରିଛନ୍ତି ।

ଆଚାର୍ଯ୍ୟ ନିମ୍ବାର୍କ ଶ୍ରୀକୃଷ୍ଣଙ୍କୁ ଶ୍ରୀପତି, ରମାପତି ଓ ରମା-ମାନସ-ହଂସ ରୂପେ ବିଶେଷିତ କଲେ ମଧ୍ୟ ରାଧାଙ୍କୁ ଶ୍ରୀକୃଷ୍ଣଙ୍କର ବାମାଙ୍ଗ ବିଳାସିନୀ ଓ ପ୍ରେମଦାୟିନୀ ରୂପେ ସ୍ଥାନ ଦେଇଥିଲେ । ସ୍ୱକୀୟ ଧର୍ମମତ ପ୍ରଚାର କରିବା ପାଇଁ ଅନ୍ୟାନ୍ୟ ଆଚାର୍ଯ୍ୟଙ୍କ ପରି ନିମ୍ବାର୍କ ଶ୍ରୀକ୍ଷେତ୍ରରେ ମଠ ପ୍ରତିଷ୍ଠା କରିଥିଲେ । ତାଙ୍କ ସମ୍ପ୍ରଦାୟର ଚାରୋଟି ମଠ ମଧ୍ୟରେ ପୁରୀ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ସମ୍ମୁଖସ୍ଥ ରାଧାବଲ୍ଲଭ ମଠ ପ୍ରାଚୀନତମ । ଐତିହାସିକ ଓ ସମୀକ୍ଷକମାନେ ଜୟଦେବଙ୍କୁ ନିମ୍ବାର୍କପନ୍ଥୀ ରୂପେ ଗ୍ରହଣ କରନ୍ତି । ବିଖ୍ୟାତ କବି ଓ ପଣ୍ଡିତ ଗୋବର୍ଦ୍ଧନାଚାର୍ଯ୍ୟ ତାଙ୍କର 'ଆର୍ଯ୍ୟା ସପ୍ତଶତୀ'ରେ ରାଧାକୃଷ୍ଣଙ୍କର ପ୍ରେମ ସମ୍ପର୍କରେ ସ୍ୱରଚିତ ପାଞ୍ଚଟି ଶ୍ଳୋକ ସନ୍ନିବିଷ୍ଟ କରିଥିଲେ । ପୂର୍ବର ସାହିତ୍ୟିକ ପରମ୍ପରା ଓ ଅନୁକୂଳ ପରିବେଶ ମଧ୍ୟରେ ଜୟଦେବ ରାଧାକୃଷ୍ଣଙ୍କର ରତିକେଳି ପ୍ରସଙ୍ଗକୁ ଲୋକପ୍ରିୟ ଧାର୍ମିକ ରଙ୍ଗ ଦେବାକୁ ପ୍ରୟାସ କରିଥିଲେ ।

ଶ୍ରୀ କେଦାରନାଥ ମହାପାତ୍ରଙ୍କ ମତାନୁଯାୟୀ ଗୀତଗୋବିନ୍ଦର ପ୍ରସାର ଓ ଲୋକପ୍ରିୟତା ଫଳରେ ଉତ୍କଳରେ ଶ୍ରୀକୃଷ୍ଣ ଉପାସନା କ୍ରମଶଃ ପ୍ରସାର ଲାଭ କରିଥିଲା (୨୧) । ମାଦଳା ପାଞ୍ଜିରୁ ଜଣାଯାଏ ଯେ ଗୀତଗୋବିନ୍ଦର ଲୋକପ୍ରିୟତା ହେତୁ ଗଙ୍ଗସମ୍ରାଟ୍ ନରସିଂହ ଶ୍ରୀ ଜଗନ୍ନାଥଙ୍କ ସମକ୍ଷରେ ପ୍ରତ୍ୟହ ଗୀତଗୋବିନ୍ଦ ଗାନକୁ ମନ୍ଦିରର ଏକ ସେବା ରୂପେ ପ୍ରଚଳନ କରିଥିଲେ (୨୨) । କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟ 'ଗୋପାଳାର୍ଚ୍ଚନ ବିଧି' ବା 'ଗୋପାଳାର୍ଚ୍ଚନ ପଦ୍ଧତି' ନାମରେ ଏକ ଧର୍ମଶାସ୍ତ୍ର ସଂକଳନ କରିଥିଲେ । ଏଥିରେ ଶ୍ରୀକୃଷ୍ଣ, ଗୋବିନ୍ଦ ଓ ଗୋପୀଜନବଲ୍ଲଭ ଭାବରେ ଶ୍ରୀ ଜଗନ୍ନାଥଙ୍କର ସେବା ପୂଜାକୁ ଶୃଙ୍ଖଳିତ ରୂପେ ଲିପିବଦ୍ଧ କରାଯାଇଛି । ଏହି ଧର୍ମଶାସ୍ତ୍ର ଅଦ୍ୟାବଧି ଜଗନ୍ନାଥ ମନ୍ଦିରରେ ଅନୁସୃତ ହୋଇ ଆସୁଛି ।

ପୁରୀରେ ଜଗନ୍ନାଥ ମନ୍ଦିର ଠାରୁ ଆରମ୍ଭ କରି ଉତ୍କଳର ବିଭିନ୍ନ ମନ୍ଦିର ଗାତ୍ରରେ ଦଶାବତାର ମୂର୍ତ୍ତି ପରିଦୃଷ୍ଟ ହୁଏ । ଜୟଦେବଙ୍କର ଗୀତଗୋବିନ୍ଦ ସହିତ ପ୍ରାଚୀନ, ରୀତି ଓ ସଙ୍ଗୀତ ଯୁଗର ଅଧିକାଂଶ ଓଡ଼ିଆ କବିଙ୍କ ରଚନାରେ ଦଶାବତାର ବର୍ଣ୍ଣନା ମଧ୍ୟ ଦେଖାଯାଏ । ଗୀତଗୋବିନ୍ଦ ରଚିତ ହେବା ପୂର୍ବରୁ ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନରେ ଦଶାବତାର ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବାରୁ ଏହା ଦଶାବତାର କ୍ଷେତ୍ର ନାମରେ ପରିଚିତ ଥିଲା । ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳରେ ଦୁଇଟି ଲେଖରେ (୧୨ଶ ଶତାବ୍ଦୀ) ଶ୍ରୀକୂର୍ମ ଅବତାରଙ୍କ ନାମାନୁସାରେ ପ୍ରତିଷ୍ଠିତ 'ଶ୍ରୀ କୂର୍ମନାଥ' ଏବଂ ଶ୍ରୀ ନରସିଂହ

(୨୧) ତତ୍ରୈବ, ପୃ-୮୪

(୨୨) ମାଦଳା ପାଞ୍ଜି, ସମ୍ପା: ଡଃ. ଆର୍ତ୍ତବଲ୍ଲଭ ମହାନ୍ତି ପୃ-୩୬୬

ଅବତାରଙ୍କ ଅର୍ଚ୍ଚନା ପାଇଁ ନିର୍ମିତ 'ଶ୍ରୀ ନରସିଂହ ନାଥ'ଙ୍କ ଉଲ୍ଲେଖ ଦେଖାଯାଏ । ଶ୍ରୀ ନରସିଂହ ନାଥଙ୍କ ସେବା ପୂଜାରେ ରାମାନୁଜ ମତାବଲମ୍ବୀ ଶ୍ରୀବୈଷ୍ଣବମାନେ ନିଯୁକ୍ତ ଥିଲେ (୧୩) ।

ମହାନଦୀ ତୀରବର୍ତ୍ତୀ ଗନ୍ଧରାଢ଼ି ନାମକ ସ୍ଥାନରେ ୯ମ ଶତାବ୍ଦୀରେ ପରମ ବୈଷ୍ଣବ ଭକ୍ତିକୁଳତିଳକ ଶତ୍ରୁଭଞ୍ଜ ନୀଳମାଧବ ଓ ସିଦ୍ଧେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ନୀଳ ମାଧବ ମନ୍ଦିର ଗାତ୍ରରେ ଦଶାବତାର ମୂର୍ତ୍ତି ଖଚିତ ଥିଲା ।

ଦଶାବତାର ବର୍ଣ୍ଣନାରେ ଜୟଦେବ ଶ୍ରୀକୃଷ୍ଣଙ୍କୁ ଏକ ଅବତାର ରୂପରେ ବର୍ଣ୍ଣନା ନ କରି 'ଦଶାକୃତିକୃତ୍' ବା ଅବତାରୀ ଭାବରେ ପ୍ରତିଷ୍ଠିତ କରିଥିଲେ । ଶ୍ରୀଯୁକ୍ତ ମହାପାତ୍ରଙ୍କ ମତରେ ଏ ସ୍ତୁତିର ବ୍ୟାପକ ପ୍ରଚାର ଫଳରେ ବିଷ୍ଣୁଙ୍କ (ମାଧବ) ପରିବର୍ତ୍ତେ ଶ୍ରୀକୃଷ୍ଣ ଉପାସନା ସମାଜରେ ଲୋକପ୍ରିୟତା ଲାଭ କଲା (୧୪) ।

ନବମ ଶତାବ୍ଦୀର ପ୍ରାରମ୍ଭ କାଳରେ ଗଞ୍ଜାମରେ **ମାଧବ** ମୂର୍ତ୍ତିର ପ୍ରତିଷ୍ଠା ଓ ପୂଜା ପ୍ରଚଳିତ ହୋଇଥିବାର ପ୍ରମାଣ ଏକ ତାମ୍ର ଶାସନରୁ ଜଣାଯାଏ । ଗଞ୍ଜାମ ଅଞ୍ଚଳରେ ଅବସ୍ଥିତ 'ଶ୍ୱେତକ' ରାଜ୍ୟରେ (ବର୍ତ୍ତମାନର ଟିକଲି ଓ ଖିମୁଣ୍ଡି ଅଞ୍ଚଳ) ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ରାଜା ଇନ୍ଦ୍ରବର୍ମନ୍ ଦେବଙ୍କ ପାରଳାଖିମୁଣ୍ଡିରୁ ପ୍ରାପ୍ତ ଏକ ତାମ୍ର ଶାସନରୁ ଜଣାଯାଏ ଯେ ସେ 'ଲୋକ ମାଧବ' ନାମକ ବିଷ୍ଣୁମୂର୍ତ୍ତି ଓ 'ଶ୍ରୀ ସ୍ୱୟମ୍ଭୁକେଶର' ନାମକ ଶିବ ବିଗ୍ରହ ପୂଜା ଓ ବ୍ରାହ୍ମଣମାନଙ୍କ ଭୋଗ ପାଇଁ କିଛି ଭୂମି ଦାନ କରିଥିଲେ (୧୫) । ଖ୍ରୀ. ୮୯୧ରେ ପ୍ରଦତ୍ତ ଏକ ଦାନପତ୍ରରେ (୧୬) ଗଙ୍ଗ ବଂଶୀୟ ରାଜା ଅନନ୍ତ ବର୍ମନ୍‌ଙ୍କ ରାଣୀ ଓ ଯୁବରାଜ ରାଜେନ୍ଦ୍ର ବର୍ମନ୍‌ଙ୍କ ମାତା ଲୋକ ମହାଦେବୀଙ୍କ ନାମର ଉଲ୍ଲେଖ ଦେଖାଯାଏ । ରାଣୀ ନିଜର ସ୍ମୃତି ରକ୍ଷା ପାଇଁ 'ଶ୍ରୀ ଲୋକମାଧବ' ନାମକ ମାଧବ ମୂର୍ତ୍ତି ଗୋଟିଏ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ଲୋକ ମହାଦେବୀଙ୍କ ପ୍ରଦତ୍ତ ଅରଲ ଗ୍ରାମ ପୂର୍ବରୁ ପାରଳାଖିମୁଣ୍ଡି ରାଜ୍ୟ ଅନ୍ତର୍ଭୁକ୍ତ ମହେନ୍ଦ୍ରତନୟା ତୀରବର୍ତ୍ତୀ ପାଟପଟମ୍ ବା ପୁରୁଣା ପାଟଣା ଅଞ୍ଚଳରେ ଅବସ୍ଥିତ ଥିଲା ।

ଦ୍ୱାଦଶ ଶତାବ୍ଦୀ ବେଳକୁ କେବଳ ଉତ୍କଳରେ ନୁହେଁ, କଳିଙ୍ଗରେ (ଉତ୍କଳର ଦକ୍ଷିଣ ସୀମାନ୍ତ ଅଞ୍ଚଳ) ମଧ୍ୟ ମାଧବ ପୂଜା ବିଶେଷ ପ୍ରସାର ଲାଭ କରିଥିଲା । ପ୍ରମାଣ ସ୍ୱରୂପ ଚୋଡ଼ଗଙ୍ଗ ଦେବଙ୍କ ନାମାନୁସାରେ 'ଚୋଡ଼ଗଙ୍ଗ ମାଧବ' ନାମକ ବିଷ୍ଣୁମୂର୍ତ୍ତି ସ୍ଥାପିତ ହୋଇଥିବାର ଗୁଡ଼ିଏ ସ୍ତମ୍ଭଲେଖରୁ ଜଣାଯାଏ । ସ୍ତମ୍ଭ ଗୁଡ଼ିକ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାର ବିଜୟ ନଗର ତାଲୁକସ୍ଥ ରେଲିବାଲ୍‌ସା ନାମକ ଗ୍ରାମରେ ଦେଖା ଯାଉଥିବାରୁ ସେଠାରେ ମାଧବ ମନ୍ଦିରଟି ନିର୍ମିତ ହୋଇଥିବା ପ୍ରମାଣିତ ହୁଏ । ସେଥିମଧ୍ୟରୁ

(୧୩) ତତ୍ରୈବ, ପୃ-୧୦୩

(୧୪) ତତ୍ରୈବ, ପୃ-୧୧୦

(୧୫) କେ. ନା. ମ. ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ,ପୃ -୧୧୪ରୁ ଉଦ୍ଧୃତ ।

(୧୬) ତତ୍ରୈବ

ଗୋଟିଏ ପ୍ରସ୍ତ ଲେଖରେ ଚୋଡ଼ଗଙ୍ଗ ମାଧବଙ୍କର ଓଡ଼ିଆ ମିଶା ତେଲୁଗୁ ଭାଷାରେ ଲିଖିତ ପୂଜା ପ୍ରଣାଳୀରୁ ଦେବତାଙ୍କ ଦ୍ରବ, ବଳି ଓ ଅର୍ଚ୍ଚନ ପାଇଁ ବାଦ୍ୟକାର, ପୂଜାରୀ ଓ ବଣ୍ଟୁ ପ୍ରଭୃତି ସେବକ ନିଯୁକ୍ତ ହୋଇଥିବାର ଜଣାଯାଏ (୨୭) ।

ଗଙ୍ଗ ସାମ୍ରାଜ୍ୟର ପ୍ରତିଷ୍ଠାକାଳରୁ ଓଡ଼ିଶା ଓ ଆନ୍ଧ୍ର ମଧ୍ୟରେ ଘନିଷ୍ଠ ସାଂସ୍କୃତିକ ସମ୍ପର୍କ ସ୍ଥାପିତ ହୋଇଥିଲା । ଗଙ୍ଗ ସମ୍ରାଟ ନରସିଂହ ଦେବ କୃଷ୍ଣାନଦୀ ପର୍ଯ୍ୟନ୍ତ ରାଜ୍ୟର ଦକ୍ଷିଣ ସୀମା ବଢ଼ାଇ କୃଷ୍ଣାନଦୀ ତୀରବର୍ତ୍ତୀ ଶ୍ରୀକାକୁଲମ୍‌ର 'ଆନ୍ଧ୍ରବିଷ୍ଣୁ' ମନ୍ଦିରର ଜୀର୍ଣ୍ଣ ସଂସ୍କାର କରିଥିଲେ । ମଧ୍ୱାଚାର୍ଯ୍ୟଙ୍କ ପ୍ରଧାନ ଶିଷ୍ୟ ଶ୍ରୀ ନରହରି ତୀର୍ଥ (୨୮) ଶ୍ରୀକୃଷ୍ଣ-ଉପାସନାର ପ୍ରଧାନ ସମର୍ଥକ ଥିବାରୁ ଶ୍ରୀକ୍ଷେତ୍ରର ଜଗନ୍ନାଥ ମନ୍ଦିର ପରି ଆନ୍ଧ୍ରବିଷ୍ଣୁ ମନ୍ଦିରରେ ଗୀତଗୋବିନ୍ଦ ଗାନର ବ୍ୟବସ୍ଥା କରିଥିଲେ । ତାଙ୍କ ଯୋଗୁଁ ଆନ୍ଧ୍ରରେ ଗୀତଗୋବିନ୍ଦ ପ୍ରସାର ଲାଭ କରିଥିଲା । ଶ୍ରୀକାକୁଲମ୍‌ବାସୀ ତାଙ୍କର ଶିଷ୍ୟ ଗୋପାଳକୃଷ୍ଣ ଭାରତୀ ଗୀତଗୋବିନ୍ଦ ଅନୁକରଣରେ ଶ୍ରୀମଦ୍‌ଭାଗବତକୁ ୧୦୮ଟି ର ନୃତ୍ୟୋପଯୋଗୀ ସଙ୍ଗୀତ ରୂପରେ ରଚନା କରିଥିଲେ । ସେହି ନୃତ୍ୟକୁ 'ଗୋପାଳକୃଷ୍ଣ ବୃତ୍ତି' ବୋଲି କୁହାଯାଏ (୨୯) ।

୧୭ଶ ଓ ୧୮ଶ ଶତାବ୍ଦୀରେ ନୃତ୍ୟ ଓ ସଙ୍ଗୀତ ଚର୍ଚ୍ଚା ପାଇଁ ବିଶେଷ ପ୍ରସିଦ୍ଧି ଅର୍ଜନ କରିଥିବା ଶ୍ରୀକାକୁଲମ୍ ନିକଟବର୍ତ୍ତୀ 'କୁଚପୁଡ଼ି' ଗ୍ରାମରେ ସଦାନନ୍ଦ ନାରାୟଣ ତୀର୍ଥ ଜନ୍ମଲାଭ କରିଥିଲେ । ସଙ୍ଗୀତରେ ତାଙ୍କର ଅସାଧାରଣ ପ୍ରବେଶ ଥିଲା । ସେ ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ଗୀତଗୋବିନ୍ଦ ଦ୍ୱାରା ପ୍ରଭାବିତ ହୋଇ ତା'ର ଅନୁକରଣରେ ସଂସ୍କୃତରେ 'ଶ୍ରୀକୃଷ୍ଣଲୀଳା ତରଙ୍ଗିଣୀ' ଶୀର୍ଷକ ଦ୍ୱାଦଶ ତରଙ୍ଗ ବିଶିଷ୍ଟ ଏକ ଗୀତିକାବ୍ୟ ରଚନା କରିଥିଲେ । ଏହାର ପ୍ରଥମ ତରଙ୍ଗରେ ସେ ଜଗନ୍ନାଥଙ୍କର ସ୍ତୁତି ଗାନ କରିଛନ୍ତି । ତାଙ୍କର ଶିଷ୍ୟ ସାହିତ୍ୟ ସଙ୍ଗୀତଜ୍ଞ ସିଦ୍ଧେନ୍ଦ୍ରଯୋଗୀ ତେଲୁଗୁ ଭାଷାରେ ଗୀତଗୋବିନ୍ଦ ଗ୍ରସ୍ଥାରେ 'ଭାମାକଲାପମ୍' ନାମକ ଗୀତି କାବ୍ୟ ରଚନା କରି କୁଚପୁଡ଼ି ଠାରେ ଗୀତଗୋବିନ୍ଦର ଦଶାବତାର ନୃତ୍ୟ ସଂଗଠିତ କରିଥିଲେ । ଏହି ନୃତ୍ୟ ଆନ୍ଧ୍ରର ବହୁ ଦେବ ମନ୍ଦିରରେ କ୍ରମଶଃ ପ୍ରଚଳିତ ହୋଇଥିଲା । ପେଡ଼ ପୁଲିବାରୁ ରଙ୍ଗଦାସ ନାମକ ଜଣେ ଆନ୍ଧ୍ର କବି ତେଲୁଗୁ ଭାଷାରେ 'ଦଶାବତାର ଶବଦମ୍' ନାମକ ନାଟ୍ୟ ପ୍ରଚଳନ କରିଥିଲେ । ବିଖ୍ୟାତ ସଙ୍ଗୀତଜ୍ଞ ତ୍ୟାଗରାଜଙ୍କ ରଚିତ 'ପ୍ରହ୍ଲାଦ ଭକ୍ତ ବିଜୟମ୍' (ଗୀତିନାଟ୍ୟ), 'ନୌକା ଚରିତମ୍' ଓ ତେଲୁଗୁ କୀର୍ତ୍ତନାବଳୀରେ ଗୀତଗୋବିନ୍ଦର ପ୍ରଭାବ ପରିଲକ୍ଷିତ ହୁଏ (୩୦) ।

---

(୨୭) କେଦାର ନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ ପୃ-୧୧୫

(୨୮) ଶ୍ରୀ ତାରିଣୀ ଚରଣ ପାତ୍ର, "ଓଡ଼ିଶୀ ସଙ୍ଗୀତର ପରମ୍ପରା", ଓଡ଼ିଶୀ ସଙ୍ଗୀତ, ଉତ୍କଳ ପାଠକ ସଂସଦ, କଟକ ପୃ-୨

(୨୯) କେଦାର ନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ ପୃ-୨୦୯

(୩୦) ତତ୍ରୈବ, ପୃ-୨୧୦

ନରହରି ତୀର୍ଥ ଆନ୍ଧ୍ର ପରି କର୍ଣ୍ଣାଟରେ ମଧ୍ୟ ଗୀତଗୋବିନ୍ଦ ଗାନ ପ୍ରବର୍ତ୍ତନ କରିଥିଲେ । ମନ୍ଦିର ମାନଙ୍କରେ ଗୀତ ହେଉଥିବା କନ୍ନଡ଼ ଭାଷାରେ ରଚିତ 'ଦେବର ନାମ ସଙ୍ଗୀତ' ଗୁଡ଼ିକରେ ଗୀତଗୋବିନ୍ଦର ପ୍ରଭାବ ଅତି ସ୍ପଷ୍ଟ । ଗୀତଗୋବିନ୍ଦ ଯୋଗୁଁ ଆନ୍ଧ୍ର ସହିତ ଗଞ୍ଜାମର ପାରଳାଖେମୁଣ୍ଡିର ସାଂସ୍କୃତିକ ସମ୍ପର୍କ ଏକାନ୍ତ ନିବିଡ଼ ହୋଇଥିଲା (୩୧) । ଚଉତିଶା, ଚଉପଦୀ ଓ ଓଡ଼ିଶୀ ଛାନ୍ଦ କାବ୍ୟ ଉପରେ ଗୀତଗୋବିନ୍ଦର ପ୍ରଭାବ ଲକ୍ଷ୍ୟ କରି ଡଃ ମାନସିଂହ କହିଛନ୍ତି—"ଗୀତଗୋବିନ୍ଦ ସହିତ ଚଉତିଶା ଓ ଓଡ଼ିଶୀ ଛାନ୍ଦ କାବ୍ୟ ମାନଙ୍କର କୁଟୁମ୍ବିତା ଅନସ୍ୱୀକାର୍ଯ୍ୟ" (୩୨) ।

## ଧାତୁ ଓ ପ୍ରସ୍ତରରେ ମୂର୍ତ୍ତି ଏବଂ ତାଳପତ୍ର ଓ ଭିତ୍ତିରେ ଚିତ୍ର

ଶ୍ରୀ କେଦାର ନାଥ ମହାପାତ୍ରଙ୍କ ମତରେ ଗୀତଗୋବିନ୍ଦର ଲୋକପ୍ରିୟତା ଓ ବହୁଳ ପ୍ରଚାର ଫଳରେ ପ୍ରଥମେ ଶ୍ରୀ ଗୋପୀନାଥ (କୃଷ୍ଣ) ମୂର୍ତ୍ତି ଓ ପରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଉପାସନା ଦ୍ରୁତ ଗତିରେ ପ୍ରସାର ଲାଭ କରିବାରୁ ଏ ଦେଶର ପ୍ରସ୍ତର ତଥା ଧାତୁରେ ପ୍ରତିମା ନିର୍ମାଣ ପ୍ରଣାଳୀର ବିକାଶ ସାଧିତ ହୋଇଥିଲା ।

ପ୍ରସ୍ତର ଓ ଧାତୁ ଶିଳ୍ପୀମାନଙ୍କ ପରି କୌଳିକ ପରମ୍ପରା କ୍ରମେ ଚିତ୍ରକର ଓ ଲିପିକାର ଭାବରେ ଜୀବିକା ଅର୍ଜନ କରୁଥିବା ଲୋକମାନେ ପ୍ରସିଦ୍ଧ ଗୀତଗୋବିନ୍ଦ, ଲୋକପ୍ରିୟ ଓଡ଼ିଆ ଭକ୍ତିକାବ୍ୟ ଓ ଆଳଙ୍କାରିକ କାବ୍ୟ (ଶିଶୁ ଶଙ୍କରଙ୍କର 'ଉଷାଭିଳାଷ' ଓ ଉପେନ୍ଦ୍ର ଭଞ୍ଜଙ୍କ 'ଚିତ୍ରକାବ୍ୟ ବନ୍ଧୋଦୟ'), ସଙ୍ଗୀତଶାସ୍ତ୍ର (କାଳୀଚରଣ ପଟ୍ଟନାୟକଙ୍କ ସମ୍ପାଦିତ 'ରାଗଚନ୍ଦ୍ର', 'ଓଡ଼ିଶୀମେଳ ରାଗଲକ୍ଷଣ ଗୀତ') ମନୋଜ୍ଞ ପ୍ରତିଲିପି, ନାନା ରଙ୍ଗରେ ରଞ୍ଜିତ ଚିତ୍ରାବଳୀ ମାଧ୍ୟମରେ ଏଗୁଡ଼ିକର କାହାଣୀ ଓ ଭାବରାଜି ପ୍ରକଟନ ନିମିତ୍ତ ସ୍ୱତଃସ୍ଫୂର୍ତ୍ତ ଉଦ୍ୟମ ଚଳାଇଥିଲେ । ବିଜୟା ଦଶମୀ ବା ଦଶହରା ଦିନ ଏ ପ୍ରକାର ଚିତ୍ର ସମ୍ବଳିତ ଗୀତଗୋବିନ୍ଦ ପୋଥି କିମ୍ବା ଏହାର ଦଶାବତାର ଚିତ୍ରାବଳୀ ବା ସଚିତ୍ର ଅନ୍ୟ ଲୋକପ୍ରିୟ କାବ୍ୟ ରାଜା, ସାମନ୍ତ ଓ ସମାଜର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ଉପହାର ଦେବା ଏ ଦେଶର ଗୋଟିଏ ପ୍ରଥା ହୋଇଯାଇଥିଲା । ତାଳପତ୍ରରେ ପ୍ରସ୍ତୁତ ଗୀତଗୋବିନ୍ଦର ମାଳା, କ୍ଷୁଦ୍ର ମତ୍ସ୍ୟାକୃତି ଗୀତଗୋବିନ୍ଦ ପୋଥି, ବାଉଁଶ ପତ୍ରରେ ଗୀତଗୋବିନ୍ଦର ପ୍ରତିଲିପି, ଦଶାବତାର ଚିତ୍ରାବଳୀ ଓ ଗୀତଗୋବିନ୍ଦ ଖଣ୍ଡୁଆ (ଜଗନ୍ନାଥ ମନ୍ଦିରରେ ପ୍ରଚଳିତ ବସ୍ତ୍ର) ପ୍ରଭୃତି ଶିଳ୍ପକଳା ଗୀତଗୋବିନ୍ଦର ସ୍ୱତଃସ୍ଫୂର୍ତ୍ତ ପ୍ରଭାବର ବୈଚିତ୍ର୍ୟମୟ ନିଦର୍ଶନ (୩୩) ।

ଗୀତଗୋବିନ୍ଦ ହେତୁ ଶ୍ରୀକୃଷ୍ଣଙ୍କର ଦଶାବତାର ଓଡ଼ିଶାରେ ବ୍ୟାପକ ଭାବରେ ପ୍ରଚାରିତ ହୋଇଥିଲା । ସ୍ଥାପତ୍ୟ ଓ ଆଲେଖ୍ୟ କଳାରେ ଦଶାବତାର ସ୍ଥାନ ପାଇବା ସଙ୍ଗେ ସଙ୍ଗେ

---

(୩୧) ତତ୍ରୈବ; ପୃ-୨୧୧-୨୧୨

(୩୨) ମାୟାଧର ମାନସିଂହ, ଓଡ଼ିଆ ସାହିତ୍ୟର ଇତିହାସ, ୧ମ ସଂ, ପୃ-୧୩୬

(୩୩) କେଦାରନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ, ପୃ-୧୮୧

ଦଶାବତାର ଶାଢ଼ୀ, ଦଶାବତାର ମୁଦ, ଦଶାବତାର ମାଳା ଇତ୍ୟାଦିର ପ୍ରଚଳନ ଥିବାର ପ୍ରମାଣ ସାରଳା ଦାସଙ୍କର ମହାଭାରତରୁ ମିଳେ (୩୪) ।

ପୂର୍ବରୁ ନିର୍ମିତ ହୋଇଥିବା ମନ୍ଦିର, ମଠ, ମଣ୍ଡପ, ରାଜନବର ଓ ଅଭିଜାତ ସାମନ୍ତ ଶ୍ରେଣୀର ବାସଗୃହର ଭିତ୍ତିରେ ବିଭିନ୍ନ ରଙ୍ଗର ଦଶାବତାର ଚିତ୍ର, ରାମାୟଣ ଓ ମହାଭାରତର ଚିତ୍ରାବଳୀ ଓଡ଼ିଶୀ ଆଲେଖ୍ୟକଳାର ଏକ ଉଜ୍ଜ୍ୱଳ ପରମ୍ପରା । ସଙ୍ଗୀତ ଓ ଆଲେଖ୍ୟ (ଚିତ୍ର) କଳାର ପୀଠ ପାରଳାଖେମୁଣ୍ଡିର ମନ୍ଦିର, ରାଜପ୍ରାସାଦ ଓ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କ ଗୃହଭିତ୍ତିରେ ଏବେ ବି ଏ ପରମ୍ପରାର ସଙ୍କେତ ଅତି ଉଜ୍ଜ୍ୱଳ ।

## ସଙ୍ଗୀତ ଚର୍ଚ୍ଚା ଓ ଦେବଦାସୀ ପ୍ରଥା

ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କ ସମକ୍ଷରେ ନୃତ୍ୟ, ଗୀତ ଓ ବାଦ୍ୟ ପାଇଁ ଦେବଦାସୀ ପ୍ରଥାର ପ୍ରଚଳନ ଏବଂ ଓଡ଼ିଶାର ଅନ୍ୟ ଜଗନ୍ନାଥ ମନ୍ଦିର ମାନଙ୍କରେ ତା'ର ଅନୁକରଣ ଲକ୍ଷ୍ୟ କଲେ ଓଡ଼ିଶାରେ ପାରମ୍ପରିକ ସଙ୍ଗୀତ ଚର୍ଚ୍ଚାର ପ୍ରତ୍ୟକ୍ଷ ପ୍ରମାଣ ମିଳିଥାଏ । ଏ ସମ୍ପର୍କରେ ଗଙ୍ଗସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ ଆଦେଶରେ ଉତ୍କୀର୍ଣ୍ଣ ଏକ ଲେଖ ବିଶେଷ ଉଲ୍ଲେଖଯୋଗ୍ୟ । ଶ୍ରୀ କେଦାରନାଥ ମହାପାତ୍ର ଏ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି ଯେ 'ବଂଶଧାରା ନଦୀତଟବର୍ତ୍ତୀ କଳିଙ୍ଗନଗର ବା ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିରରେ ଉତ୍କୀର୍ଣ୍ଣ ଏକ ଲେଖରୁ ଜଣାଯାଏ ଯେ ଉତ୍କଳରେ ଗଙ୍ଗସାମ୍ରାଜ୍ୟର ପ୍ରତିଷ୍ଠାତା ଶ୍ରୀ ଚୋଳଗଙ୍ଗ ଦେବ 'ତ୍ରିକଳିଙ୍ଗ ଭୋଗ' ନାମକ ଏକ ଭୋଗ ସମୟରେ ଦେବଙ୍କ ସମ୍ମୁଖରେ ନୃତ୍ୟ ପ୍ରଦର୍ଶନ, ବାଦ୍ୟବାଦନ ଓ ଗୀତଗାନ ପାଇଁ ଯାଜକକୁଳ ସମ୍ଭୂତ ଭାର୍ଯ୍ୟା, କନ୍ୟା ଓ ଭାଇମାନଙ୍କୁ ନର୍ତ୍ତକ, ଦେବଗଣିକା (ଦେବଦାସୀ), ବାଦ୍ୟକାର ଓ ଗାୟକ ରୂପେ ଆଚନ୍ଦ୍ର ତାରକା ଚିରସ୍ଥାୟୀ ଭାବରେ ନିଯୁକ୍ତ କରିଥିଲେ (୩୫) । ସେ ପୁଣି କହିଛନ୍ତି, ଉତ୍କଳରେ ସଙ୍ଗୀତ ଚର୍ଚ୍ଚାର ଇତିହାସ ପାଇଁ ଏ ଲେଖଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । × × × ଏଥିରେ ନର୍ତ୍ତକ, ଦେବଗଣିକା, ବାଦ୍ୟକାର ଓ ଗାବ(ୟ)କ ପଦଗୁଡ଼ିକ ସ୍ପଷ୍ଟ ଭାବରେ ଖୋଦିତ ହୋଇଥିବାରୁ ମଧୁକେଶ୍ୱର ମନ୍ଦିରରେ ୧୧୪୫ ଖ୍ରୀଷ୍ଟାବ୍ଦ ପୂର୍ବରୁ ସଙ୍ଗୀତ ସେବା ପାଇଁ ସେମାନଙ୍କର ନିଯୋଗ ଅକାଟ୍ୟ ଭାବରେ ପ୍ରମାଣିତ ହୁଏ । ଚୋଳଗଙ୍ଗ ଦେବ ପୁରୀରେ ଶ୍ରୀ ଜଗନ୍ନାଥଦେବଙ୍କ ପାଇଁ ବର୍ତ୍ତମାନ ମନ୍ଦିର ନିର୍ମାଣ କଲାପରେ × × × ମଧୁକେଶ୍ୱର ମନ୍ଦିର ପରି ଏଠାରେ ମଧ୍ୟ ସ୍ଥାୟୀ ଭାବରେ ନୃତ୍ୟ, ବାଦ୍ୟ ଓ ଗୀତ ପାଇଁ ଯଥାକ୍ରମେ ଦେବଗଣିକା (ଦେବଦାସୀ) ବାଦ୍ୟକାର ଓ ଗାୟକ ନିଯୁକ୍ତ କରିଥିବେ (୩୬) ।

ଖେମୁଣ୍ଡି ରାଜା ନାରାୟଣ ଦେବ ଗଜପତିଙ୍କ ନାମରେ ବିରଚିତ ମହେଶ୍ୱର ମହାପାତ୍ରଙ୍କ 'ଅଭିନୟ ଚନ୍ଦ୍ରିକା'ରେ ଦେବଦାସୀ ନୃତ୍ୟ ଓ ନୃତ୍ୟ କୌମୁଦୀ ତାଳପତ୍ର ପୋଥି

---

(୩୪) ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଓଡ଼ିଆ ସାହିତ୍ୟରେ ଗୀତଗୋବିନ୍ଦର ପ୍ରଭାବ, ଝଙ୍କାର, ୨୧ଶ ବର୍ଷ, ୧ମ ସଂଖ୍ୟା, ପୃ-୯୬୧-୯୬୨

(୩୫) ଶ୍ରୀ କେଦାରନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ, ୧୯୭୩, ପୃ-୪୯

(୩୬) ଶ୍ରୀ କେଦାର ନାଥ ମହାପାତ୍ର, ଶ୍ରୀ ଜୟଦେବ ଓ ଗୀତ ଗୋବିନ୍ଦ, ପୃ-୪୯

ପାଣ୍ଡୁଲିପି ଆକାରରେ ରହିଥିବାର ଉଲ୍ଲେଖ ରହିଛି । ଏଥିରୁ ଓଡ଼ିଶାରେ ଦେବଦାସୀ-ନୃତ୍ୟର ପ୍ରଚଳନ ଓ ତା'ର ପ୍ରାଚୀନତାର ସଙ୍କେତ ମିଳେ (୩୭) । 'ଓଡ଼ିଶୀ ସଙ୍ଗୀତର ପରମ୍ପରା' ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଶ୍ରୀ ତାରିଣୀ ଚରଣ **ପାତ୍ର** କହନ୍ତି ଯେ ଓଡ଼ିଶାର ରାଜା ଦ୍ୱିତୀୟ ନରସିଂହ ଦେବଙ୍କ ସମୟରେ ଶ୍ରୀକୂର୍ମରେ ନରହରି ତୀର୍ଥ ନାମରେ ଜଣେ ସଙ୍ଗୀତଜ୍ଞ ସନ୍ନ୍ୟାସୀ ଥିଲେ । ତାଙ୍କର ଶିଷ୍ୟ ଆନନ୍ଦ ତୀର୍ଥ ମଧ୍ୟ ଜଣେ ଉଚ୍ଚକୋଟୀର କବି ଓ ସଙ୍ଗୀତଜ୍ଞ ଥିଲେ । ସେ ସମୟରେ ଉତ୍କଳରେ ଦେବଦାସୀ ପ୍ରଥା ଆରମ୍ଭ ହୋଇଥିଲା । ସେମାନେ ମନ୍ଦିରମାନଙ୍କରେ ନୃତ୍ୟ-ଗୀତ ପରିବେଷଣ କରୁଥିଲେ । ଏବେ ମଧ୍ୟ ଜଗନ୍ନାଥ ମନ୍ଦିରରେ ସେମାନେ ନୃତ୍ୟ, ଗୀତ ପରିବେଷଣ କରନ୍ତି । ଉକ୍ତ ଦେବଦାସୀମାନେ ଓଡ଼ିଶାରେ 'ମାହାରି' ନାମରେ ପରିଚିତ (୩୮) ।

ଏହି ହେଉଛି ଗଙ୍ଗଭୂମିର ଐତିହାସିକ, ଧର୍ମ, ସାହିତ୍ୟ ଓ ସାଂସ୍କୃତିକ ପରମ୍ପରା । ପାରଳାଖେମୁଣ୍ଡି ଗଙ୍ଗଭୂମିର ଏକ ଉଲ୍ଲେଖଯୋଗ୍ୟ ଅଂଶ ହୋଇଥିବାରୁ ଏହି ପରମ୍ପରାର ଉଜ୍ଜ୍ୱଳ ପଦଚିହ୍ନ ତା'ର ଧର୍ମ, ସାହିତ୍ୟ, ସଙ୍ଗୀତ ଓ ଆଲେଖ୍ୟ କଳାରେ ରହିଯିବା ସ୍ୱାଭାବିକ । ଏହାର ବୈଷ୍ଣବଧର୍ମ-ପରମ୍ପରା ପରବର୍ତ୍ତୀ କାଳରେ କପରି ଚୈତନ୍ୟ, ରାୟ ରାମାନନ୍ଦ ଓ ସେମାନଙ୍କର ଶିଷ୍ୟ-ପ୍ରଶିଷ୍ୟଙ୍କ ଦ୍ୱାରା ପରିପୁଷ୍ଟ ହୋଇଛି, ସେ ସମ୍ପର୍କରେ ଯଥାସ୍ଥାନରେ ବିଶଦ ଆଲୋଚନା କରାଯାଇଛି ।

---

(୩୭) ଆଗ୍ରହୀ ତାରିଣୀ ଚରଣ ପାତ୍ର **ଓଡ଼ିଶୀ ସଙ୍ଗୀତ ପ୍ରକାଶ**, ପୃ-୨୩

(୩୮) ତତ୍ରୈବ, "ଓଡ଼ିଶୀ ସଙ୍ଗୀତର ପରମ୍ପରା", **ଓଡ଼ିଶୀ ସଙ୍ଗୀତ**, ପୃ-୬

# ପ୍ରଥମ ପରିଚ୍ଛେଦ

## ଦେଶ ଓ କାଳ

**କବିଙ୍କର ଆବିର୍ଭାବ ଓ ତିରୋଭାବ କାଳ :**

କବି ଗୋପାଳକୃଷ୍ଣଙ୍କର ସମସାମୟିକ ଅନ୍ୟ ବୟୋଜ୍ୟେଷ୍ଠ ବିଖ୍ୟାତ କବି ଓ ଗୀତିକାର ହେଉଛନ୍ତି କବିସୂର୍ଯ୍ୟ ବଳଦେବ ରଥ । ନିକଟ ଅତୀତର ପ୍ରମାଣ ଅନୁଯାୟୀ ବଳଦେବଙ୍କର ଆବିର୍ଭାବ କାଳ ହେଉଛି ପ୍ରାୟ ଖ୍ରୀ: ୧୭୭୯ (୧) ଏବଂ ତିରୋଭାବ କାଳ ହେଉଛି ଖ୍ରୀ: ୧୮୪୫ । ଓଡ଼ିଶାର ଅନ୍ୟ ଲୋକପ୍ରିୟ ଗୀତିକାର ବନମାଳୀ ଏମାନଙ୍କ ଅପେକ୍ଷା ବୟୋଜ୍ୟେଷ୍ଠ । ତାଙ୍କର ଜନ୍ମକାଳ ହେଉଛି ଖ୍ରୀ: ୧୭୪୩ ଏବଂ ତିରୋଭାବ କାଳ ଖ୍ରୀ: ୧୭୮୬ । ବନମାଳୀଙ୍କର ଅପ୍ରକଟର କିଞ୍ଚିତ୍ ପୂର୍ବରୁ ଆମର ବିଖ୍ୟାତ କବି ଗୋପାଳକୃଷ୍ଣଙ୍କର ଆବିର୍ଭାବ ଘଟେ ।

ଗୋପାଳକୃଷ୍ଣଙ୍କର ଜନ୍ମକାଳ ସମ୍ପର୍କରେ ବିଭିନ୍ନ ଲେଖକଙ୍କର ବିଭିନ୍ନ ମତ ଲକ୍ଷିତ ହୁଏ । ତାରିଣୀ ଚରଣ ରଥଙ୍କର 'ଉତ୍କଳ ସାହିତ୍ୟ ଇତିହାସ'ରେ (୧ମ ସଂ, ଖ୍ରୀ: ୧୯୧୬) ଉଲ୍ଲେଖ ଅଛି ଯେ କବିଙ୍କର ଜନ୍ମ କାଳ ହେଉଛି ଖ୍ରୀ: ୧୭୮୫ ଓ ତିରୋଭାବ କାଳ ଖ୍ରୀ: ୧୮୫୬ । ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣରେ (ଖ୍ରୀ: ୧୯୨୭) ଅପ୍ରକଟ କାଳ ଖ୍ରୀ: ୧୮୫୭ ବୋଲି ଉଲ୍ଲେଖ ଅଛି । ବ୍ୟାସ କବି ଫକୀରମୋହନ ତାଙ୍କର 'ଗୋପାଳକୃଷ୍ଣ' ଶୀର୍ଷକ ପ୍ରବନ୍ଧରେ (୨) କବିଙ୍କର ଜନ୍ମ ୧୭୦୭ ଶକାବ୍ଦ (ଖ୍ରୀ: ୧୭୮୫), ଆଷାଢ଼ ଶୁକ୍ଳ

---

(୧) ଖ୍ରୀ: ୧୯୭୧, ଜୁନ୍ ସଂଖ୍ୟା ଝଙ୍କାରରେ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ପ୍ରକାଶିତ ପ୍ରବନ୍ଧ 'ବଳଦେବଙ୍କ ଜନ୍ମକାଳ' ଅନୁଯାୟୀ ବଳଦେବଙ୍କର ଜନ୍ମ ଖ୍ରୀ: ୧୭୭୮ଠାରୁ ଖ୍ରୀ: ୧୭୮୦ ମଧ୍ୟରେ କୌଣସି ଗୋଟିଏ ସାଲ ହୋଇପାରେ । ଶ୍ରୀ ମିଶ୍ରଙ୍କର ପ୍ରମାଣ ଭିତ୍ତିରେ ଶ୍ରୀ ଦାଶରଥି ଦାସ ବଳଦେବଙ୍କର ଜନ୍ମକାଳ ଖ୍ରୀ ୧୭୭୯ ବୋଲି ଗ୍ରହଣ କରିଛନ୍ତି ।

ଶ୍ରୀ ଦାଶରଥି ଦାସ, କବିସୂର୍ଯ୍ୟ କାବ୍ୟବିଭା, ୧୯୭୮, ପୃ ୧୮-୧୯

(୨) ଫକୀର ମୋହନ ଗ୍ରନ୍ଥାବଳୀ, ୧ମଖଣ୍ଡ, ୧ମସଂ., ପୃ ୧୦୭୦

ପ୍ରତିପଦରେ ଓ ତିରୋଭାବ ୧୭୭୮ ଶକାବ୍ଦରେ (ଖ୍ରୀ: ୧୮୪୭) ବୋଲି ଉଲ୍ଲେଖ କରିଛନ୍ତି । ଜଗବନ୍ଧୁ ସିଂହଙ୍କର 'ପ୍ରାଚୀନ ଉତ୍କଳ'ରେ କବିଙ୍କର ଜନ୍ମ ୧୭୦୭ ଶକାବ୍ଦ, ଆଷାଢ଼ ୧୧ଦିନ, ଶୁକ୍ଳ ପ୍ରତିପଦ ଓ ତିରୋଭାବ ୧୭୭୮ ଶକାବ୍ଦ (ଖ୍ରୀ: ୧୮୫୬) ବୋଲି ଉଲ୍ଲେଖ ଅଛି (୩) ।

'ଗୋପାଳକୃଷ୍ଣ ପଦ୍ୟାବଳୀ'ର (ଖ୍ରୀ: ୧୯୩୫) ସମ୍ପାଦକ ରାମକୃଷ୍ଣ ପଟ୍ଟନାୟକ କବିଙ୍କର ସଂକ୍ଷିପ୍ତ ଜୀବନୀ ଆଲୋଚନା କରିବାକୁ ଯାଇ କେବଳ ତାଙ୍କର ତିରୋଭାବ କାଳର (ଖ୍ରୀ: ୧୮୬୨, ଫାଲ୍‌ଗୁନ, ଶୁକ୍ଳ ୨ଦିନ) ଉଲ୍ଲେଖ କରିଛନ୍ତି; ଜନ୍ମକାଳ ସମ୍ପର୍କରେ କିଛି ସୂଚନା ଦେଇନାହାନ୍ତି (୪) । କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳ-କୃଷ୍ଣ ପଦ୍ୟାବଳୀରେ କବିଙ୍କର ସଂକ୍ଷିପ୍ତ ଜୀବନୀ ରାମକୃଷ୍ଣ ସମ୍ପାଦିତ ପଦ୍ୟାବଳୀର ଅବିକଳ ଅନୁକରଣ । ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀର (୧୯୫୯) ସମ୍ପାଦକ ବାବାଜୀ ବୈଷ୍ଣବ ଚରଣ ଦାସ କବିଙ୍କର ଜନ୍ମକାଳ ଖ୍ରୀ: ୧୭୭୭ ଆଶ୍ୱିନ, ଶୁକ୍ଳ ନବମୀ ବୋଲି ଉଲ୍ଲେଖ କରିଛନ୍ତି । ତିରୋଭାବକାଳ ସମ୍ପର୍କରେ ସେ ରାମକୃଷ୍ଣଙ୍କ ସହ ଏକମତ । 'ଗୋପାଳକୃଷ୍ଣ ଗ୍ରନ୍ଥାବଳୀ' (୧ମ ଭାଗ)ର (ଖ୍ରୀ: ୧୯୬୯) ସମ୍ପାଦକ ସରୋଜ କୁମାର ପାଣିଗ୍ରାହୀ ବାବାଜୀ ବୈଷ୍ଣବ ଚରଣଙ୍କ କାଳ-ସଙ୍କେତକୁ ଅବିକଳ ଗ୍ରହଣ କରିଛନ୍ତି ।

ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ତାଙ୍କର 'କଳା ଓ କଳାକାର' ପୁସ୍ତକ ସନ୍ନିବେଶିତ 'ଭକ୍ତକବି ଗୋପାଳକୃଷ୍ଣ' ଶୀର୍ଷକ ପ୍ରବନ୍ଧର ଆରମ୍ଭରେ କବିଙ୍କର କାଳ ଖ୍ରୀ: ୧୭୮୫-୧୮୫୭ ବା ୧୮୯୨ ବୋଲି ସୂଚିତ କରିଛନ୍ତି (୫), କିନ୍ତୁ ପ୍ରବନ୍ଧର ଅନ୍ୟ ଏକ ସ୍ଥାନରେ ଉଲ୍ଲେଖ କରିଛନ୍ତି ଯେ ୧୮୬୨ ଖ୍ରୀଷ୍ଟାବ୍ଦରେ (ମତାନ୍ତରରେ ଖ୍ରୀ: ୧୮୭୧) ତାଙ୍କର ଦେହାନ୍ତ ହୋଇଥିଲା । ଶ୍ରୀ ମହାନ୍ତି କବିଙ୍କର ତିରୋଭାବ କାଳ ସମ୍ପର୍କରେ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇନାହାନ୍ତି ।

କବିଙ୍କ ବଂଶଧର ସ୍ୱର୍ଗତ ଚକ୍ରପାଣି ପଟ୍ଟନାୟକଙ୍କ ଦୈନିକ ପଞ୍ଜିର (Diary) ବିବରଣୀ ଭିତ୍ତିରେ ଲିଖିତ ତାଙ୍କର ନାତି ରାଧାରମଣଙ୍କ ବିବରଣୀ (ପାଣ୍ଡୁଲିପି) ଅନୁଯାୟୀ କବିଙ୍କର ଜନ୍ମସାଲ ହେଉଛି ଖ୍ରୀ: ୧୭୮୪, ଆଷାଢ଼ ଶୁକ୍ଳ ପ୍ରତିପଦ, ତିରୋଭାବକାଳ : ଖ୍ରୀ: ୧୮୬୨, ଫାଲ୍‌ଗୁନ, ଶୁକ୍ଳ ଦ୍ୱିତୀୟା । କବିଙ୍କର ଅପ୍ରକଟ କାଳ ସମ୍ପର୍କରେ ରାମକୃଷ୍ଣ, ବୈଷ୍ଣବଚରଣ, ସରୋଜକୁମାର ଓ ରାଧାରମଣ ଏକମତ, କିନ୍ତୁ ଜନ୍ମକାଳ ସମ୍ପର୍କରେ ମୁଁ ରାଧାରମଣଙ୍କର ବିବରଣୀର କାଳ ସଙ୍କେତକୁ ଅନ୍ୟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ଆପାତତଃ

(୩) ଜଗବନ୍ଧୁ ସିଂହ, ପ୍ରାଚୀନ ଉତ୍କଳ, ୨ୟ ମୁଦ୍ରଣ, ଓ ସା. ଏ,-୧୯୬୪

(୪) ଗୋ କୃ. ପ., ୩ୟ ସଂ., ୧୯୩୫, ସମ୍ପା. ରା, କୃ. ପଟ୍ଟନାୟକ, ସଂକ୍ଷିପ୍ତ ଜୀବନୀ, ପ୍ର. କୃ. ସି. ନାରେନ୍ଦ୍ର

(୫) ଡଃ ଜାନକୀବଲ୍ଲଭ ମହାନ୍ତି, କଳା ଓ କଳାକାର, ପୃ. ୧୦୨-୧୦୪

ଗ୍ରହଣ କରୁଛୁ । କାରଣ କବିଙ୍କର ଜନ୍ମ ପତ୍ରିକା (ଜାତକ) ନଷ୍ଟ ହୋଇଯାଇଛୁ, ପରୀକ୍ଷା କରି ଦେଖିବାର ଅନ୍ୟ ଉପାୟ ନାହିଁ ।

ବୈଷ୍ଣବଚରଣଙ୍କ ଉଲ୍ଲେଖ ଅନୁଯାୟୀ ଖ୍ରୀ: ୧୭୭୭ କବିଙ୍କ ଜନ୍ମସାଲ ହେବା ବିଶ୍ୱାସଯୋଗ୍ୟ ନୁହେଁ, କାରଣ ଗୋପାଳକୃଷ୍ଣ କବିସ୍ପର୍ଦ୍ଧୀ ବଳଦେବ ରଥଙ୍କ ଅପେକ୍ଷା ବୟଃକନିଷ୍ଠ ଏବଂ ରଥଙ୍କର ଜନ୍ମସାଲ ଖ୍ରୀ: ୧୭୭୮ ଠାରୁ ଖ୍ରୀ: ୧୭୮୦ ମଧ୍ୟରେ ପଡ଼ୁଛି । ରାମକୃଷ୍ଣ ପଟ୍ଟନାୟକ ଗୋପାଳକୃଷ୍ଣ ପଦ୍ୟାବଳୀର ଭୂମିକାରେ କବିଙ୍କ ଅପ୍ରକଟ କାଳ ଫାଲ୍‌ଗୁନ, ଶୁକ୍ଳ ଦ୍ୱିତୀୟା ବୋଲି କହି ତା ୩।୭।୧୮୬୨ ବୋଲି ଉଲ୍ଲେଖ କରିଛନ୍ତି । ଏହି ତାରିଖର ଉଲ୍ଲେଖରେ ମୁଦ୍ରଣଜନିତ ତ୍ରୁଟି ରହିଛି, କାରଣ ଫାଲ୍‌ଗୁନ ବେଳକୁ ଫେବୃୟାରୀ ହେବାର କଥା, କିନ୍ତୁ ତାରିଖରେ ବର୍ଷର ସପ୍ତମ ମାସ ଅର୍ଥାତ୍ ଜୁଲାଇ ବୋଲି ଉଲ୍ଲେଖ ଅଛି । ଏହି ମୁଦ୍ରାପ୍ରମାଦର ଅନୁକୃତି ନିର୍ବିଘ୍ନରେ କୃପାସିନ୍ଧୁ ନରେନ୍ଦ୍ରଙ୍କ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ଦେଖା ଦେଇଛି । 'ଭକ୍ତକବି ଗୋପାଳକୃଷ୍ଣ' ପୁସ୍ତକର ଲେଖକ ଫକୀରମୋହନ ଦାସ ତିଥି ଅନୁଯାୟୀ ଏହି ତାରିଖର ତ୍ରୁଟି ସମ୍ପର୍କରେ କିଛି ଉଲ୍ଲେଖ କରିନାହାନ୍ତି (୭) । ବର୍ତ୍ତମାନ କବିଙ୍କ ପରିବାରରେ ଫାଲ୍‌ଗୁନ ଶୁକ୍ଳ ଦ୍ୱିତୀୟା କବିଙ୍କର ତିରୋଭାବ ତିଥିରୂପେ ପାଳିତ ହେଉଛି । ରାମକୃଷ୍ଣ ପଟ୍ଟନାୟକ କବିଙ୍କ ଜନ୍ମସାଲ ସମ୍ପର୍କରେ ସ୍ୱ ସମ୍ପାଦିତ 'ଗୋପାଳକୃଷ୍ଣ ପଦ୍ୟାବଳୀ'ରେ ଉଲ୍ଲେଖ କରିନାହାନ୍ତି, କିନ୍ତୁ ତାଙ୍କଠାରୁ ଶୁଣି କବିଙ୍କ ଭଣଜା ପରିବାରର ଦୟାନିଧି ପଟ୍ଟନାୟକ ଲେଖିଥିବା ପତ୍ର କଥା ଉଲ୍ଲେଖ କରି ଫକୀରମୋହନ ଦାସ ତାଙ୍କର 'ଭକ୍ତକବି ଗୋପାଳକୃଷ୍ଣ'ରେ ଲେଖିଛନ୍ତି ଯେ, କବିଙ୍କ ଜନ୍ମ ଖ୍ରୀ: ୧୭୮୪ ଓ ତିରୋଭାବ ଖ୍ରୀ: ୧୮୬୨, ଫାଲ୍‌ଗୁନ,ଶୁକ୍ଳ ଦ୍ୱିତୀୟା ତିଥିରେ ।

ତାରିଣୀ ଚରଣ ରଥ, ଫକୀରମୋହନ ସେନାପତି, ଜଗବନ୍ଧୁ ସିଂହ ଓ ଡଃ ଜାନକୀବଲ୍ଲଭ ମହାନ୍ତି କବିଙ୍କର ଜନ୍ମ ସମ୍ବତ୍ସର ଖ୍ରୀ: ୧୭୮୫ ବୋଲି ଉଲ୍ଲେଖ କରିଥିବା ସ୍ଥଳେ ରାଧାରମଣ ପଟ୍ଟନାୟକ ଓ ଫକୀର ମୋହନ ଦାସ ଖ୍ରୀ: ୧୭୮୪ ବୋଲି ସୂଚିତ କରିଛନ୍ତି । ୧୭୮୪ ଓ ୧୭୮୫ ମଧ୍ୟରେ କାଳଗତ ବ୍ୟବଧାନ ଖୁବ କମ୍ । ଖ୍ରୀ: ୧୭୮୪ କବିଙ୍କ ପରିବାରରେ ଡିନପୁରୁଷ ଧରି ଗୃହୀତ ହୋଇ ଆସୁଥିବାରୁ ୧୭୮୪କୁ କବିଙ୍କର ଜନ୍ମକାଳ ଓ ଖ୍ରୀ: ୧୮୬୨କୁ ତିରୋଭାବକାଳ ରୂପେ ବର୍ତ୍ତମାନ ପାଇଁ (ଅନ୍ୟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ) ଗ୍ରହଣ କରାଯାଇପାରେ ।

## ରାଜନୈତିକ ଓ ଶାସନଗତ ପରିସ୍ଥିତି—

ଯେଉଁ ସମୟରେ କବିଙ୍କର ଆବିର୍ଭାବ ହୋଇଥିଲା, ସେତେବେଳେ ଓଡ଼ିଶାରେ ମରହଟ୍ଟା ମାନଙ୍କର ଶାସନ ଚାଲିଥାଏ । ଇଂରେଜମାନେ ମରହଟ୍ଟା ଓ ବଙ୍ଗ ନବାବଙ୍କ ମଧ୍ୟରେ ଛକାପଞ୍ଝାରେ ରହି • ଓଡ଼ିଶା ଆକ୍ରମଣ ପାଇଁ ଦୀର୍ଘ କାଳର ଅପେକ୍ଷାରେ ରହିଥାନ୍ତି । ଗଞ୍ଜାମ ଜିଲ୍ଲା ଓ ବିଶାଖା ପାଟଣା ସେତେବେଳେ ମାନ୍ଦ୍ରାଜ

(୭) ଫକୀର ମୋହନ ଦାସ, ଭକ୍ତକବି ଗୋପାଳକୃଷ୍ଣ (ଜୀବନୀଖଣ୍ଡ), ୧ମ ସ

ସରକାରର ଅନ୍ତର୍ଭୁକ୍ତ, ଯାହା ମାନ୍ଦ୍ରାଜର ଉତ୍ତର ସରକାର ନାମରେ ପରିଚିତ । ଖ୍ରୀ: ୧୭୬୫ରେ ନିଜାମ୍-ଉଲ୍-ମୁଲକ ଦକ୍ଷିଣ ଓଡ଼ିଶାର ଅଧିକାରୀ ହୋଇଥିଲେ । ଉତ୍ତର ସରକାରର ଚିକାକୋଲ ସରକାର ପରେ ଭିଜାଗାପଟ୍ଟମ୍ ଓ ଗଞ୍ଜାମ ଜିଲ୍ଲାରେ ବିଭକ୍ତ ହେଲା । ଖ୍ରୀ: ୧୭୬୮ରୁ ଗଞ୍ଜାମ ଓ ଭିଜାଗାପଟ୍ଟମ୍ ଅଞ୍ଚଳ ଇଷ୍ଟ୍ ଇଣ୍ଡିଆ କମ୍ପାନୀଙ୍କ ଅଧିକାରକୁ ଆସିଯାଇଥିଲା । ଗଞ୍ଜାମର ପାରଳାଖିମୁଣ୍ଡିର ରାଜା ଜଗନ୍ନାଥ ନାରାୟଣ ଦେବ (୧୭୪୮-୧୭୭୧) (୭) କମ୍ପାନୀ ସରକାରର ଅଧୀନ ହେବାକୁ ପସନ୍ଦ କରୁନଥିଲେ । ସେ ନିଜାମ ଅଲ୍ଲିଙ୍କଠାରୁ ଏକ ସନନ୍ଦ ଆଣି ନିଜକୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଠାରୁ ସ୍ୱାଧୀନ ବୋଲି ଦାବୀ କରିଥିଲେ । କାରଣ ମରହଟ୍ଟା ସମର୍ଥିତ ଖୋର୍ଦ୍ଧା ରାଜା ବୀରକିଶୋର ଦେବଙ୍କ (୧୨) (ବୀରକେଶରୀ ଦେବ ?) (୮) ବିପକ୍ଷରେ ସେ ଖୋର୍ଦ୍ଧା ଆକ୍ରମଣ କରିବା ପୂର୍ବରୁ ଇଂରେଜମାନଙ୍କ ଠାରୁ ସାହାଯ୍ୟ ମାଗି ନିରାଶ ହୋଇଥିଲେ (ଫ୍ରେଞ୍ଚ୍ ଓ ଇଂରେଜଙ୍କ ମଧ୍ୟରେ ସଂଘର୍ଷ ଚାଲିଥିବା ସମୟରେ ବୋଧହୁଏ ସେ ଫ୍ରେଞ୍ଚ୍‌ଙ୍କ ସହ ହାତ ମିଳାଇଥିବାରୁ) । ସେଥିପାଇଁ ସେ ଇଂରେଜ ଆଧିପତ୍ୟକୁ ଅସ୍ୱୀକାର କରି ଅଶାନ୍ତି ଘଟାଇଥିଲେ ଏବଂ ଖ୍ରୀ: ୧୭୬୬ରେ ଇଂରେଜମାନଙ୍କର କଲିକତାରୁ ମାନ୍ଦ୍ରାଜ ଯାଉଥିବା କାସିଦ୍‌କୁ (ଡାକବାଲା) ହଇରାଣ କରୁଥିଲେ । ନିଜାମ ଅଲ୍ଲିଙ୍କ ସହିତ ଇଂରେଜଙ୍କର କଳହ ପରେ ଖ୍ରୀ: ୧୭୬୮ରେ ଏକ ସନ୍ଧି ହେଲା । ନିଜାମ ଅଲ୍ଲି ପାରଳା ରାଜା ଜଗନ୍ନାଥ ନାରାୟଣ ଦେବ ଓ ଅନ୍ୟ ରାଜାମାନଙ୍କୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀଙ୍କ ଆଧିପତ୍ୟ ମାନିବାକୁ ନିର୍ଦ୍ଦେଶ ଦେଇଥିଲେ ।

ଜଗନ୍ନାଥ ନାରାୟଣ ଦେବ ପାରଳାଖିମୁଣ୍ଡି ରାଜବଂଶର ଜଣେ ସ୍ୱାଧୀନଚେତା ଶକ୍ତିଶାଳୀ ରାଜା, ଯୋଦ୍ଧା ଓ କୂଟନୀତିଜ୍ଞ ଥିବାରୁ ପୂର୍ବରୁ ମରହଟ୍ଟା ଓ ପରେ ଇଂରେଜମାନଙ୍କ କର୍ତ୍ତୃତ୍ୱ ସ୍ୱୀକାର କରିବାକୁ ପ୍ରସ୍ତୁତ ନହେବା ସ୍ୱାଭାବିକ । ମରହଟ୍ଟାଙ୍କ ଶାସନ ସମୟରେ ସେ ତାଙ୍କ ବଂଶର ଅତୀତ ଗୌରବର ପୁନରୁଦ୍ଧାର ପାଇଁ ଲାଗିପଡ଼ିଥିଲେ (ଯେଉଁ ଗଜପତି ରାଜାମାନେ ଉତ୍କଳ ସହିତ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ସାର୍ବଭୌମ ଅଧିକାର ପାଇଥିଲେ) । ସେ ଅଣ ହିନ୍ଦୁ (ମୁସଲମାନ) ମାନଙ୍କ ଧ୍ୱଂସମୂଳକ ନୀତିରୁ ପବିତ୍ର ପୁରୀ ଜଗନ୍ନାଥ ମନ୍ଦିରକୁ ରକ୍ଷାକରିବା ପାଇଁ ପ୍ରବଳ ଉଦ୍ୟମ ଚଳାଇଥିଲେ । ଇଂରେଜମାନଙ୍କ ସହ ହାତ ମିଳାଇଥିବା ବିଜୟନଗରମ୍‌ର ସୀତାରାମ ରାଜୁ ଓ ଜଗନ୍ନାଥ ନାରାୟଣ ଦେବଙ୍କ ମଧ୍ୟରେ ଦୁଇ ତିନଥର ଯୁଦ୍ଧ ହୋଇଥିଲା । (୯)

ଖ୍ରୀ: ୧୭୬୮ରୁ ଗଞ୍ଜାମ ଓ ଭିଜାଗାପଟ୍ଟମ୍ ଅଞ୍ଚଳ ଇଂରେଜମାନଙ୍କ ଅଧିକାରକୁ ଆସିଥିଲେ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ ଆଧିପତ୍ୟ ସ୍ଥାପନ କରି ପାରିନଥିଲେ ।

---

(୭) A. Eschmann etc, The Cult of Jagannath And the Regional Tradition of Orissa. P. 363

(୮) Ibid, P. 363.

(୯) S. N. Rajaguru, H. O. G. Part II, P. 124.

ଏହାର ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଦୁର୍ଗମ ଜଙ୍ଗଲ ପୂର୍ଣ୍ଣ ହୋଇଥିବାରୁ ସୈନ୍ୟମାନେ କିଛି କରି ପାରୁ ନ ଥିଲେ, ବରଂ ବିଶେଷ କ୍ଷତିଗ୍ରସ୍ତ ହେଉଥିଲେ । ପୂର୍ବ ଆନୁଗତ୍ୟ ହେତୁ ଶବର ଓ କନ୍ଧ ପ୍ରଜାମାନେ ରାଜାଙ୍କୁ ଯେତେ ମାନୁଥିଲେ, କମ୍ପାନୀ ସରକାରଙ୍କୁ ସେତେ ମାନୁ ନଥିଲେ । ସରକାରୀ କର୍ମଚାରୀଙ୍କର ଅସାଧୁତା, ପ୍ରାକୃତିକ ଓ ଅନ୍ୟାନ୍ୟ କାରଣରୁ ରାଜସ୍ୱ ଅନାଦାୟରେ ଜମିଦାରି ନିଲାମ ହେବା, କଚେରୀରେ ରାଜାମାନଙ୍କୁ ସମ୍ମାନ ପ୍ରଦର୍ଶନରେ ଅବହେଳା ଏବଂ ସରକାର ପକ୍ଷର ପୋଲିସ୍ ନିଯୁକ୍ତିରେ ରାଜାମାନଙ୍କର ଅସନ୍ତୋଷ ଥିଲା ସେମାନଙ୍କର ବିଦ୍ରୋହର କାରଣ । ରାଜସ୍ୱ ବନ୍ଦ କରିବା, କଚେରୀରେ ହାଜର ହେବାପାଇଁ ଅସ୍ୱୀକାର କରିବା ଥିଲା ରାଜାମାନଙ୍କର ଆଧିପତ୍ୟ ଅସ୍ୱୀକାରର ଉପାୟ । ସେମାନଙ୍କୁ ଦମନ କରିବାପାଇଁ ଯେତେବେଳେ ସୈନ୍ୟମାନେ ଆସୁଥିଲେ, ସେମାନେ ଆହୁରି ପ୍ରତିହିଂସାଶୀଳ ହୋଇ ବିଦ୍ରୋହର ନିଆଁ ଜାଳି ଦେଉଥିଲେ । ଗଞ୍ଜାମର ମହୁରୀ ଓ ଘୁମୁସର ବିଦ୍ରୋହ ତା'ର ଜ୍ୱଳନ୍ତ ପ୍ରମାଣ । (୧୦) ।

ଏହି ଭଳି ରାଜନୈତିକ ଓ ଶାସନଗତ ଅସ୍ଥିରତାରେ ସମଗ୍ର ଦେଶରେ ଯେତେବେଳେ ଅଶାନ୍ତି ଓ ବିଦ୍ରୋହ ଲାଗି ରହିଥିଲା, ସେତେବେଳେ ଗୋପାଳକୃଷ୍ଣଙ୍କର ଆବିର୍ଭାବ ହୋଇଥିଲା ପାରଳାରେ । ଓଡ଼ିଶା ତଥା ଭାରତରେ ରାଜନୈତିକ ଅସ୍ଥିରତା, ଶାସନଗତ ଅବ୍ୟବସ୍ଥା ଓ ପରିବର୍ତ୍ତନ କେବେ କଳା, ସାହିତ୍ୟ, ଧର୍ମ ଓ ସଂସ୍କୃତିର ବିକାଶରେ ପ୍ରତିବନ୍ଧକ ହୋଇ ଠିଆ ହୋଇନାହିଁ । ଏ ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସୁଦ୍ଧା ଓଡ଼ିଶାର କବି ରାଜା, ଜମିଦାର ଓ ଧନାଢ୍ୟ ବ୍ୟକ୍ତିମାନଙ୍କର ପୃଷ୍ଠପୋଷକତାରୁ ବଞ୍ଚିତ ହୋଇନାହାନ୍ତି । ଦୀର୍ଘକାଳ ଧରି ଉତ୍କଳ ଓ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଧର୍ମ, ସାହିତ୍ୟ, ନୃତ୍ୟ, ସଙ୍ଗୀତ ଓ ନାନା ଶାସ୍ତ୍ରଚର୍ଚ୍ଚାର ପୀଠସ୍ଥଳ । ବିଶେଷତଃ ଜଗନ୍ନାଥ ପୀଠ ପୁରୀ ଏ ପରମ୍ପରାର ଏକ ଅଲିଭା ଶିଖା ପ୍ରଜ୍ୱଳିତ କରିଥିବାରୁ ଯୁଗେ ଯୁଗେ ଭାରତର ପ୍ରତ୍ୟେକ କୋଣରୁ ଧର୍ମପ୍ରଚାରକ, ପରିବ୍ରାଜକ, ସନ୍ନ୍ୟାସୀ, ପଣ୍ଡିତ, ଭକ୍ତ ଓ ତୀର୍ଥଯାତ୍ରୀ ଏଠାକୁ ଆସି ନିଜକୁ କୃତକୃତ୍ୟ ମନେକରିବା ସଙ୍ଗେ ସଙ୍ଗେ କେହି କେହି ନିଜ ନିଜର ମଠ ସ୍ଥାପନ କରି ଯାଇଛନ୍ତି । ପୁରୀ ରାଜଦରବାର ଓ ରାଜସଭା ବିଜ୍ଞ ପାରିଷଦ, କବି ଓ ପଣ୍ଡିତ-ଅଧ୍ୟୁଷିତ ଥିବାରୁ ଉତ୍କଳ ତଥା ଭାରତରେ ଖ୍ୟାତି ଲାଭ କରିଥିଲା । ରାଜସଭାରେ ଉତ୍କଳ ତଥା ଭାରତର ବିଖ୍ୟାତ ପଣ୍ଡିତ, ଶାସ୍ତ୍ରବିତ୍ ଓ ଧର୍ମ ପ୍ରଚାରକମାନେ ନିଜ ନିଜର ପାଣ୍ଡିତ୍ୟର ପରୀକ୍ଷା ଦେଇ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ନୀଳାଚଳ କ୍ଷେତ୍ର ଏବଂ ପୁରୀ ରାଜସଭା ଓ ପଣ୍ଡିତସଭା ସମଗ୍ର ଓଡ଼ିଶା ତଥା ଓଡ଼ିଆଭାଷାଭାଷୀ ଅଞ୍ଚଳ ପାଇଁ ଥିଲା ଏକ ଜ୍ୱଳନ୍ତ ଆଦର୍ଶ ଓ ବିଦ୍ୟା ପରୀକ୍ଷାର କ୍ଷେତ୍ର । ଓଡ଼ିଶାର ରାଜା, ସାମନ୍ତ ଓ ଜମିଦାରମାନେ ନିଜ ନିଜ ଅଞ୍ଚଳରେ ଜଗନ୍ନାଥ (ଦଧିବାମନ) ଓ ଅନ୍ୟାନ୍ୟ ଦେବମନ୍ଦିର ପ୍ରତିଷ୍ଠା କରି ଧର୍ମ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ, ସଙ୍ଗୀତ, ଓ ନାନା ଶାସ୍ତ୍ର ଆଲୋଚନା ପାଇଁ ଉପଯୁକ୍ତ ପଣ୍ଡିତ ଓ ସଙ୍ଗୀତଜ୍ଞମାନଙ୍କୁ ନିଯୁକ୍ତ କରୁଥିଲେ । ଅନ୍ୟ

(୧୦) ଡଃ ହରେକୃଷ୍ଣ ମହତାବ, ଓଡ଼ିଶା ଇତିହାସ, ୧ମ ପ୍ରକାଣ୍ଡ, ୧୯୪୮, ପୃ. ୨୪୬-୨୬୮

ଅଞ୍ଚଳରୁ କବି ଓ ପଣ୍ଡିତମାନେ ଆସି ପହଞ୍ଚିଲେ ସେମାନଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେସଙ୍ଗେ ଜ୍ଞାନ ଓ ପ୍ରତିଭା ପରୀକ୍ଷା କରି ଉପଢୌକନ ଦେଇ ବିଦାୟ ଦେଉଥିଲେ ।

ରାଜସଭାରେ ଏହି ଗୌରବ ଅର୍ଜନ ପାଇଁ ସେତେବେଳେ ଗ୍ରାମେ ଗ୍ରାମେ ସଂସ୍କୃତଭାଷା, ସାହିତ୍ୟ, ଶାସ୍ତ୍ର ଓ ପୁରାଣର ଚର୍ଚ୍ଚା ହେଉଥିଲା । ଲୋକମାନଙ୍କର ବିଦ୍ୟା ପ୍ରତି ଆଦର ବଢ଼ିଥିଲା । ରାଜାମାନେ ମଧ୍ୟ ସଂସ୍କୃତ, ଓଡ଼ିଆ ସାହିତ୍ୟ ଓ ସଙ୍ଗୀତରେ ପ୍ରବୀଣତା ଅର୍ଜନ କରିବାକୁ ଗୌରବ ମନେ କରୁଥିଲେ ଏବଂ କେହି କେହି ମଧ୍ୟ କାବ୍ୟ, ସଙ୍ଗୀତ ରଚନା କରି ଖ୍ୟାତି ଅର୍ଜନ କରୁଥିଲେ । ଘୁମୁସର ରାଜଦରବାରରେ ରାଜା ଧନଞ୍ଜୟ ଭଞ୍ଜ, ଦିବିଜୟ ଭଞ୍ଜ ବିଶେଷତଃ ଉପେନ୍ଦ୍ର ଭଞ୍ଜ ଆମ ଓଡ଼ିଶାର ବହୁ ସାହିତ୍ୟ-ସଙ୍ଗୀତ-ଶାସ୍ତ୍ରପ୍ରେମୀ ରାଜାମାନଙ୍କର ଆଦର୍ଶ ଥିଲେ । ତା’ ଛଡ଼ା ବାଣପୁରର ରାଜା ରଘୁନାଥ ହରିଚନ୍ଦନ (୧୭ଶ ଶତାବ୍ଦୀର ମଧ୍ୟଭାଗ), ବାଙ୍କିର ରାଜା ପଦ୍ମନାଭ ଶ୍ରୀଚନ୍ଦନ, ଟିକଟି ରାଜା ବିଶ୍ୱମ୍ଭର ରାଜେନ୍ଦ୍ର, ଦୀନବନ୍ଧୁ ରାଜ ହରିଚନ୍ଦନ, ଶ୍ୟାମସୁନ୍ଦର ଭଞ୍ଜ, ସୁରଙ୍ଗିର ରାଜା ଚନ୍ଦ୍ର ଚୂଡ଼ାମଣି ହରିଚନ୍ଦନ, ବଳରାମପୁରର ରାଜା ଗୋପୀନାଥ ଧୀର ଜଗଦ୍ଦେବ, ଜଳନ୍ତରର ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟ (୧୧) ଶରଣ ରାଜ୍ୟ ଆଠଗଡ଼ର ରାଜା ବାଲୁକେଶ୍ୱର ହରିଚନ୍ଦନ, ମଞ୍ଜୁଷା ରାଜା ଜଗନ୍ନାଥ ରାଜମଣିଦେବ, ପାରଳା ରାଜା ପ୍ରତାପରୁଦ୍ର ଗଜପତି ନାରାୟଣଦେବ, ଜଗନ୍ନାଥ ନାରାୟଣ, ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଭୃତି କବି ଭାବରେ ଏବଂ ସାହିତ୍ୟ, ସଙ୍ଗୀତ ଓ ଶାସ୍ତ୍ରଚର୍ଚ୍ଚାର ଗୁଣଗ୍ରାହୀ ପୃଷ୍ଠପୋଷକ ଭାବରେ ଖ୍ୟାତି ଅର୍ଜନ କରି ଯାଇଛନ୍ତି । ଏତଦ୍‌ବ୍ୟତୀତ ବଡ଼ଖେମୁଣ୍ଡି, ଧରାକୋଟ, ଖଲ୍ଲିକୋଟ ଓ ତରଳା ରାଜବଂଶର ଓଡ଼ିଆ ସାହିତ୍ୟକୁ ଦାନ କମ୍ ନୁହେଁ ।

ପାରଳାରାଜ୍ୟ ବିଭିନ୍ନ ସମୟରେ ବହୁ ରାଜନୈତିକ ଅସ୍ଥିରତା, ଅଶାନ୍ତି ଓ ବିଦ୍ରୋହ ମଧ୍ୟରେ ଗତି କରିଥିଲେ ମଧ୍ୟ ରାଜସଭାରେ ଶାସ୍ତ୍ରଜ୍ଞ ପଣ୍ଡିତମାନେ ନିଯୁକ୍ତ ହୋଇ ଶାସ୍ତ୍ରାଲୋଚନାର ପରମ୍ପରା ରକ୍ଷା କରିଥିଲେ । ପାରଳା ରାଜବଂଶର ବିଭିନ୍ନ ରାଜା ସଙ୍ଗୀତ ଓ ସାହିତ୍ୟର ବିକାଶରେ ପୃଷ୍ଠପୋଷକତା ପ୍ରଦର୍ଶନ କରିଆସିଛନ୍ତି ଏବଂ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ମନ୍ଦିର ମଧ୍ୟ ପ୍ରତିଷ୍ଠା କରିଛନ୍ତି ।

ଏହି ରାଜବଂଶର ଜଗନ୍ନାଥ ନାରାୟଣଦେବ [ଖ୍ରୀ: ୧୭୫୧-୧୭୭୦] ଜଣେ ଶକ୍ତିଶାଳୀ ଯୋଦ୍ଧା ଓ ସ୍ୱାଧୀନଚେତା ରାଜା ଥିଲେ । ଏତଦ୍‌ବ୍ୟତୀତ ସେ ଥିଲେ ପ୍ରସିଦ୍ଧ ପଣ୍ଡିତ,

(୧୧) ଜଳନ୍ତରର ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟଙ୍କ ରାଜସଭା ବହୁ ଆନ୍ଧ୍ର ଓ ଉତ୍କଳୀୟ ପଣ୍ଡିତମାନଙ୍କର ଆଶ୍ରୟସ୍ଥଳ ଥିଲା । ତୈଲଙ୍ଗୀ ସଙ୍ଗୀତ-ଶାସ୍ତ୍ରଜ୍ଞ ବହୁଲୋକ ସେତେବେଳେ ତାଙ୍କ ରାଜଧାନୀକୁ ଅଳଂକୃତ କରୁଥିଲେ । ସଙ୍ଗୀତ ଆଲୋଚନା ପାଇଁ ସେ ଗଡ଼ ମଧ୍ୟରେ ପର୍ବତ ପାଦଦେଶରେ କେତକୀ ନିକୁଞ୍ଜ, ନାଗେଶ୍ୱର ଉଦ୍ୟାନ, ବିଚିତ୍ର ଦୀର୍ଘିକାମାନ ପ୍ରସ୍ତୁତ କରିଥିଲେ ।

ପଣ୍ଡିତ କୁଳମଣି ଦାଶ, କ. ସୂ. ଗ୍ରଂ., ୪ର୍ଥ ମୁଦ୍ରଣ, ପୃ. ୫୦

କବି ଓ ସଙ୍ଗୀତଜ୍ଞ । ସେ 'ବୃନ୍ଦାବନ ଚନ୍ଦ୍ର ବିହାର', 'ପ୍ରଭାବତୀ ପରିଣୟ' କାବ୍ୟ ଏବଂ ସଂସ୍କୃତରେ 'ଅଳଙ୍କାର ଚନ୍ଦ୍ରିକା' ଓ 'ରାମଚନ୍ଦ୍ରୋଦୟ' ରଚନା କରିଥିଲେ । ସେ ବୈଷ୍ଣବ ମତରେ ଦୀକ୍ଷିତ ହୋଇ ପୁରୀ ରାଧାକାନ୍ତ ମଠର ମହନ୍ତଙ୍କୁ ଗୁରୁରୂପେ ଗ୍ରହଣ କରିଥିଲେ । ସେ ବୃନ୍ଦାବନରେ ତିନିବର୍ଷ ଅତିବାହିତ କରି ପାରଳା ପ୍ରତ୍ୟାବର୍ତ୍ତନ କରିଥିଲେ ଏବଂ ଧର୍ମଚର୍ଚ୍ଚା ଓ ସାହିତ୍ୟସେବାରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରିଥିଲେ । 'ସଙ୍ଗୀତ ନାରାୟଣ'ର ଲେଖକ କବିରତ୍ନ ପୁରୁଷୋତ୍ତମ ମିଶ୍ର ଏହାଙ୍କ ରାଜସଭାର ଜଣେ ସମ୍ମାନିତ କବି ଓ ପଣ୍ଡିତ ଥିଲେ ଏବଂ ରାଜାଙ୍କର ସଙ୍ଗୀତ ଶିକ୍ଷକ ଥିଲେ । କବିରତ୍ନ ସଂସ୍କୃତକାବ୍ୟ ହଂସଦୂତ (ରୂପଗୋସ୍ୱାମୀ), ଅନର୍ଘ ରାଘବ (ମୁରାରି), ନୈଷଧ ଚରିତମ୍ ଇତ୍ୟାଦିର ଟୀକା ରଚନା କରିଥିଲେ । ଏହାଙ୍କର ଜନୈକ ଭ୍ରାତା ବ୍ୟାକରଣ, ଅଳଙ୍କାର, ସାଙ୍ଖ୍ୟ ଦର୍ଶନ, ଶ୍ରୁତି, ସ୍ମୃତି, ପୁରାଣ, ନାଟକ ଓ କୋଷ କାବ୍ୟର ଜଣେ ପ୍ରଖ୍ୟାତ ପଣ୍ଡିତ ଥିଲେ । କବିଭୂଷଣ ଗୋପୀନାଥ ପାତ୍ର ରଚନା କରିଥିଲେ 'କବି ଚିନ୍ତାମଣି' । ପାରଳାଖିମୁଣ୍ଡିର ରାଜଗୁରୁ ପରିବାରର ଲୋକନାଥ ତ୍ରିପାଠୀ ରଚନା କରିଥିଲେ 'କବିକଣ୍ଠହାର' (ଛାନ୍ଦିକ ପ୍ରୟୋଗର ଏକ ଅଭିଧାନ) (୧୨) ।

ଏହି ରାଜବଂଶର ପ୍ରତାପରୁଦ୍ର ନାରାୟଣ ଦେବ (ଜଗନ୍ନାଥ ନାରାୟଣ ଦେବଙ୍କ ପିତା) ପ୍ରଥମ ରାଜା ଥିଲେ ଯେ କି ଶ୍ରୀ ରାମାନୁଜ ସମ୍ପ୍ରଦାୟର ବୈଷ୍ଣବମତ ଗ୍ରହଣ କରିଥିଲେ ଏବଂ ରାଜପ୍ରାସାଦରେ ତାଂକର ଅଧିଷ୍ଠାତ୍ରୀ ଦେବତା 'ରାମସ୍ୱାମୀ'ଙ୍କୁ ପ୍ରତିଷ୍ଠିତ କରି ପାରଳାଖିମୁଣ୍ଡି ରାଜ୍ୟକୁ ତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ସେ ନିଜ ବଂଶର ଦେବତାଙ୍କ ନାମରେ 'ରାମ ସାଗର', 'ସୀତା ସାଗର', 'ଭରତ ସାଗର' ଓ 'ଲକ୍ଷ୍ମଣ ସାଗର' ନାମରେ ଚାରୋଟି ପ୍ରକାଣ୍ଡ ପୁଷ୍କରିଣୀ ଖୋଳିତ କରାଇଥିଲେ ଏବଂ ଗୁରୁ ପୀଠ ଭାବରେ ପାରଳାଖିମୁଣ୍ଡିରେ 'ସଦାରାମ ମନ୍ଦିର' ଓ ଗୃଢଗୁଡ଼ି ଅଗ୍ରହାରରେ 'ବାଲଜୀ' ମନ୍ଦିର ନିର୍ମାଣ କରାଇଥିଲେ । ଏହାଙ୍କ ଦରବାରରେ ରାଜଗୁରୁ ପରିବାରର ଗଦାଧର ତ୍ରିପାଠୀ ଓ ମଧୁ ତ୍ରିପାଠୀ ସଂସ୍କୃତରେ ବହୁ ସୁନ୍ଦର ସ୍ତୁତି ଓ ଶ୍ଳୋକ ରଚନା କରିଥିଲେ (୧୩) । ଏହାଛଡ଼ା ଅନ୍ୟ ସମ୍ଭ୍ରାନ୍ତ ଶ୍ରେଣୀର ବ୍ୟକ୍ତି ମଧ୍ୟ ନିଜ ସଭା ମଣ୍ଡପରେ ପଣ୍ଡିତମାନଙ୍କ ଦ୍ୱାରା ଶାସ୍ତ୍ରାଲୋଚନା କରାଇ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ ।

ଗଞ୍ଜାମ ଜିଲ୍ଲାର ଶରଣ ରାଜ୍ୟ ଆଠଗଡ଼, ପାରଳାଖିମୁଣ୍ଡି ଓ ମଞ୍ଜୁଷା ପ୍ରଭୃତିରେ ଚୈତନ୍ୟ ପ୍ରବର୍ତ୍ତିତ ଶୁଦ୍ଧାଭକ୍ତିର ବିଶେଷ ପ୍ରଚାର ହୋଇଥିଲା ଏବଂ ମଠ ଓ ମନ୍ଦିରମାନ ସ୍ଥାପିତ ହୋଇଥିଲା । ପାରଳାରେ ଶୁଦ୍ଧା ଭକ୍ତି ପ୍ରଚାରର ମୂଳ ପ୍ରେରଣା ହେଉଛନ୍ତି ରାୟ ରାମାନନ୍ଦ । ମଞ୍ଜୁଷା ଓ ଧୂମୁସରର ରାଜାମାନେ ରାୟ ରାମାନନ୍ଦଙ୍କର ଶିଷ୍ୟ

(୧୨) Sri S. N. Raja guru, H. O. G., vol. II, 1972. PP. 115, 138, 141, 143

(୧୩) Ibid, PP. 110, 111

ଓ ଅନୁଗତ ଥିଲେ । ଚୈତନ୍ୟଙ୍କର ଦାକ୍ଷିଣାତ୍ୟ ପଦଯାତ୍ରା ଶୁଦ୍ଧାଭକ୍ତିର ପ୍ରଚାର ଓ ନାମ ସଂକୀର୍ତ୍ତନକୁ ଅଧିକ ବ୍ୟାପକ କରିଥିଲା ।

ପ୍ରବାଦ ରହିଛି ଯେ, ଆଠଗଡ଼ ରାଜ୍ୟ ଜଣେ ବୈଷ୍ଣବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଆଠଗଡ଼ ରାଜବଂଶ ସେହି ପ୍ରାଚୀନ ବୈଷ୍ଣବ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ (୧୪) । ଗଞ୍ଜାମରେ ପ୍ରତିଷ୍ଠିତ ବିଭିନ୍ନ ଶୁଦ୍ଧାଭକ୍ତିମତର ମଠମାନଙ୍କ ମଧ୍ୟରୁ ଖାରଡ଼ା ଗ୍ରାମସ୍ଥ ରାଧାକାନ୍ତ ମଠ, ପାରଳାର ଚୈତନ୍ୟ ମଠ, କୋକଲ ମଠ (ପରିଚ୍ଛା ମଠ) ଉଲ୍ଲେଖଯୋଗ୍ୟ । ଖାରଡ଼ା ଓ ପୁଞ୍ଚି ଗ୍ରାମରେ ଶୁଦ୍ଧାଭକ୍ତି ସମ୍ବଳିତ ଗ୍ରନ୍ଥମାନଙ୍କର ପାଠାଗାର ରହିଛି ।

ପାରଳାଖେମୁଣ୍ଡି ସହର ଏବଂ ପାରଳାର ବିଭିନ୍ନ ଗ୍ରାମରେ ରାଧାକୃଷ୍ଣ ଉପାସନାର ବହୁ ମନ୍ଦିର ଏବେ ମଧ୍ୟ ପରିଦୃଷ୍ଟ ହୁଏ । ସେଗୁଡ଼ିକ ମଧ୍ୟରୁ ରସିକରାଜ ମନ୍ଦିର, ସାନ ରାଧାକାନ୍ତ ମନ୍ଦିର (ଶ୍ରୀକରଣ ସାହିରେ) (୧୫), ରାଜନଅର ପାର୍ଶ୍ୱବର୍ତ୍ତୀ ରାଧାକୃଷ୍ଣ ମନ୍ଦିର, ନୃସିଂହନାଥ ମନ୍ଦିର, ଜଗନ୍ନାଥ ମନ୍ଦିର ପାର୍ଶ୍ୱବର୍ତ୍ତୀ ବଡ଼ ରାଧାକାନ୍ତ ମନ୍ଦିର (ବଡ଼ ଦାଣ୍ଡରେ ସନ୍ତୁବତ୍ଃ କବିଙ୍କ ପୂର୍ବରୁ ପ୍ରତିଷ୍ଠିତ), କାଶୀନଗର ନିକଟବର୍ତ୍ତୀ ଲହରି ଗ୍ରାମର ଗୋପୀନାଥ ମନ୍ଦିର, ମେଳିଆପୁଟ ଗ୍ରାମର ରାଧାଗୋବିନ୍ଦ ମନ୍ଦିର (ପାରଳାଖେମୁଣ୍ଡି ଉତ୍ତର ପୂର୍ବକୁ ସାତ କି. ମି. ଦୂରରେ ଅବସ୍ଥିତ ଏହି ମନ୍ଦିରରେ ପଥର ଓ କାଠର ସୁନ୍ଦର କାରୁକାର୍ଯ୍ୟ ଏବେ ବି ରହିଛି), ପାରଳାଖେମୁଣ୍ଡି ନିକଟବର୍ତ୍ତୀ କେରାଣ୍ଡି ଗ୍ରାମର ରାଧାକୃଷ୍ଣ ମନ୍ଦିର (୧୬), ପୁଞ୍ଚିଗ୍ରାମ ଓ ଖାରଡ଼ାସ୍ଥ ରାଧାକୃଷ୍ଣ ମନ୍ଦିର ଉଲ୍ଲେଖଯୋଗ୍ୟ ।

## କବି ପରିଚିତି

ଗୋପାଳକୃଷ୍ଣଙ୍କ ପିତାଙ୍କ ନାମ ଶ୍ରୀ ବନବାସୀ ପଟ୍ଟନାୟକ ଓ ମାତାଙ୍କ ନାମ ଶ୍ରୀମତୀ ଲଳିତା ଦେଈ । ଏକ ଜନଶ୍ରୁତି ପ୍ରଚଳିତ ଅଛି ଯେ, ଏହାଙ୍କର ପୂର୍ବପୁରୁଷ ଯାଜପୁରର କଂସାକବାଟୀର (୧୭) ଗଜପତି ମହାରାଜାଙ୍କ ଗହଣରେ ପାରଳାଖେମୁଣ୍ଡି ରାଜ୍ୟକୁ ଚାଲିଆସିଥିଲେ । ଗୋପାଳକୃଷ୍ଣଙ୍କର ପିତା ପାରଳାଖେମୁଣ୍ଡି ରାଜ୍ୟର ଗଜପତି ମହାରାଜାଙ୍କର ପାଞ୍ଜିଆକରଣ ଭାବରେ ନିଯୁକ୍ତ ହୋଇ ରାଜକାର୍ଯ୍ୟରେ ନିଜର ଦକ୍ଷତା ଓ ସାଧୁଭାବର ପରିଚୟ ଦେଇଥିଲେ; ତାପରେ ଖୁରିଗାଁ ପ୍ରଭୃତି ଉଣେଇଶିଟି ଗ୍ରାମର କରଣିକ

(୧୪) ପଣ୍ଡିତ କୁଳମଣି ଦାଶ, ସମ୍ପା: କ. ସୂ. ଗ୍ରଂ., ୪ର୍ଥ ମୁଦ୍ରଣ, ପୃ ୫୧-୫୨)

(୧୫) ଶ୍ରୀକରଣ ସାହିରେ 'ସାନ ରାଧାକାନ୍ତ ମନ୍ଦିର' ଏବଂ କରଣ ସାହିରେ 'ରାଧାକୃଷ୍ଣ ମନ୍ଦିର' କବିଙ୍କ ତିରୋଧାନ ପରେ ପ୍ରତିଷ୍ଠିତ ହୋଇଛି ।

(୧୬) ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଗଙ୍ଗ ଇତିହାସ, ୨ୟ ଭାଗ, ପୃ. ୨୧୬

(୧୭) ଶ୍ରୀ ଫକୀର ମୋହନ ଦାସ, ଭକ୍ତକବି ଗୋପାଳକୃଷ୍ଣ ୧୯୬୩ ପୃ. ୩

ଅଧିକାର ପ୍ରାପ୍ତ ହୋଇ ଜମି ବାଡ଼ି ଓ ଜାଗିର ପାଇଥିଲେ । ବନବାସୀ ଚୈତନ୍ୟ-ପ୍ରବର୍ତ୍ତିତ ବୈଷ୍ଣବମତାବଲମ୍ବୀ ଥିବାରୁ ପ୍ରତ୍ୟହ, ରାଜକାର୍ଯ୍ୟ ସମାପନାନ୍ତେ, ଅନ୍ୟ ସମସ୍ତ ବୈଷ୍ଣବ ଆଚରଣ, ଯଥା : ଭଗବନ୍ତ ନାମ ସ୍ମରଣ, ଭଜନ, କୀର୍ତ୍ତନ ଓ ସାଧୁ ବୈଷ୍ଣବଙ୍କ ସେବାରେ ଅତିବାହିତ କରି ନିଜକୁ କୃତକୃତ୍ୟ ମନେ କରୁଥିଲେ । ତାଙ୍କର ଧର୍ମପତ୍ନୀ ଲଳିତା ଦେଈ ଏକାନ୍ତ ଧର୍ମପରାୟଣା ନାରୀ ଥିଲେ । ଇଷ୍ଟ ଦେବତା ରସିକ ରାଜ (ରସିକ ରାୟ)ଙ୍କର ସେବା ଥିଲା ତାଙ୍କ ପରିବାରର ଦୈନନ୍ଦିନ ବିଧି ।

ବନବାସୀଙ୍କର ତିନୋଟି ପୁତ୍ର ଓ ଗୋଟିଏ କନ୍ୟାଙ୍କ ମଧ୍ୟରେ ଗୋପାଳକୃଷ୍ଣ ଥିଲେ ବୟୋଜ୍ୟେଷ୍ଠ । ଶୈଶବରୁ କବିଙ୍କ ଭ୍ରାତା ଓ ଭଗିନୀମାନେ ପରଲୋକ ଗମନ କରିବାରୁ (୧୮) କବି ପିତାମାତାଙ୍କର ଅତ୍ୟଧିକ ଆଦର ଓ ଯତ୍ନରେ ଲାଳିତ ପାଳିତ ହୋଇଥିଲେ । ଫଳରେ ଶାସନର ଅଭାବରୁ କବିଙ୍କର ବାଲ୍ୟଜୀବନ ଚପଳତାମୟ ହୋଇ ପଡ଼ିଥିଲା ।

ସପ୍ତମ ବର୍ଷ ବୟସରେ ଗୋପାଳକୃଷ୍ଣ ବିଦ୍ୟାରମ୍ଭ କଲେ ମଧ୍ୟ ବିଦ୍ୟାପ୍ରତି ତିଳେ ମାତ୍ର ଶ୍ରଦ୍ଧା ପ୍ରଦର୍ଶନ କରି ନଥିଲେ । ଦଶମ ବର୍ଷ ଶେଷଯାଏ ସେ ଗୋରୁ ମହିଷଙ୍କ ପଛରେ ଗୋଡ଼ାଇ ଯାଇ ଚପଳ ବାଳକମାନଙ୍କ ସହିତ କ୍ରୀଡ଼ା ଆମୋଦରେ କାଳ ଅତିବାହିତ କରୁଥିଲେ । ଏହା ସତ୍ତ୍ୱେ ପିତାମାତାଙ୍କର ଶୁଦ୍ଧପୂତ ବୈଷ୍ଣବ ଆଚରଣ ତାଙ୍କର ବାଳ-ସୁଲଭ କୋମଳ ଚିତ୍ତରେ ଏକ ଉଚ୍ଚ ସଂସ୍କାରର ବୀଜ ପ୍ରୋତ୍ଥିତ କରୁଥିଲା । ବାଲ୍ୟକାଳରୁ ସେ ପିତାଙ୍କ ଦ୍ୱାରା କର୍ଣ୍ଣମନ୍ତ୍ରରେ ଦୀକ୍ଷିତ ହୋଇ ଥିବାରୁ କଣ୍ଠରେ ତୁଳସୀମାଳା ଓ କପାଳରେ ତିଳକାଦି ବୈଷ୍ଣବ ଚିହ୍ନ ଧାରଣ କରୁଥିଲେ ଏବଂ ରସିକ ରାଜଙ୍କର ଆଳତି ଦର୍ଶନ କରୁଥିଲେ । ଯେଉଁଠାରେ ଭଗବନ୍ତ ଲୀଳା ଓ ଚରିତ ଗାନ ତଥା ଚର୍ଚ୍ଚା ହେଉଥିଲା ସେଠାରେ ସେ କୌତୂହଳ ବଶତଃ ଉଲଗ୍ନ ଅବସ୍ଥାରେ ଉପସ୍ଥିତ ହୋଇ ନିବିଷ୍ଟ ଚିତ୍ତରେ ଶ୍ରବଣ କରୁଥିଲେ ।

କଥିତ ଅଛି ଯେ, ଏକ ନିର୍ଦ୍ଦିଷ୍ଟ ଘଟଣାରେ ତାଙ୍କର ବିଦ୍ୟା ଶିକ୍ଷା ପ୍ରତି ଶ୍ରଦ୍ଧା ଆସିଗଲା । ଘଟଣାଟି ହେଉଛି : 'ଥରେ କବିଙ୍କର ଗୃହ ସମ୍ମୁଖସ୍ଥ ପ୍ରତିବେଶୀ ଶ୍ରୀ ବେବର୍ତ୍ତା ପଟ୍ଟନାୟକଙ୍କର (୧୯) ସଭା ମଣ୍ଡପରେ ପଣ୍ଡିତମାନଙ୍କ ମଧ୍ୟରେ ଗୋସ୍ୱାମୀ ଗ୍ରନ୍ଥ ଓ ଶାସ୍ତ୍ର ଚର୍ଚ୍ଚା ଚାଲିଥିଲା । ସଭାରେ କବିଙ୍କର ପିତା ଉପସ୍ଥିତ ଥିଲେ । ଗୋପାଳକୃଷ୍ଣ ସେଠାକୁ ଯାଇ ପଣ୍ଡିତ ଓ ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କୁ ପ୍ରଣାମ କରି ପିତାଙ୍କ ଆଦେଶରେ ଉପବେଶନ କଲେ । ତାଙ୍କର ବାଳ ସୁଲଭ ଅଙ୍ଗଲାବଣ୍ୟ, ମୁଖଶୋଭା, ଶିଷ୍ଟାଚାର ଓ ନମ୍ରତା ପଣ୍ଡିତ-ମାନଙ୍କର ଦୃଷ୍ଟି ଆକର୍ଷଣ କଲା । କଥାପ୍ରସଙ୍ଗରେ ତାଙ୍କର ବିଦ୍ୟାଶିକ୍ଷା ପ୍ରତି ଅନାଦର କଥା ଶୁଣି ପଣ୍ଡିତମାନେ ଦୁଃଖ ପ୍ରକାଶ କରି ମୃଦୁ ଭର୍ତ୍ସନା କରନ୍ତେ ବାଳକ ଗୋପାଳକୃଷ୍ଣ

(୧୮) ଏଜନ, ପୃ. ୪

(୧୯) ଶ୍ରୀ ଦାସଙ୍କ ଉଲ୍ଲେଖ ଅନୁଯାୟୀ ବୈରାଗୀ ପଟ୍ଟନାୟକ, ଏଜନ ପୃ. ୫

ସଭାରେ ଲଜ୍ଜିତ ହୋଇ ପଡ଼ିଲେ । ପଣ୍ଡିତମାନଙ୍କର ମୃଦୁ ଭର୍ତ୍ସନା ତାଙ୍କ ପକ୍ଷରେ ଆଶୀର୍ବାଦ ସ୍ୱରୂପ ହୋଇଥିଲା । ସେହି ଦିନରୁ ସେ ବିଦ୍ୟାଶିକ୍ଷା ପ୍ରତି ମନୋଯୋଗୀ ହୋଇ ନିୟମାନୁସାରେ ଅଧ୍ୟୟନ ଓ ଅଭ୍ୟାସ କରିବାକୁ ଲାଗିଲେ । ଅଳ୍ପକାଳ ମଧ୍ୟରେ ପ୍ରାଥମିକ ଶିକ୍ଷା ଶେଷ କରି (ଖ୍ରୀ: ୧୭୯୬) ପାରମ୍ପରିକ ରୀତିରେ ଅମରକୋଷ ଓ କ୍ରମଦୀଶ୍ୱର ବ୍ୟାକରଣ ଶିକ୍ଷା କଲେ ଏବଂ ସଂସ୍କୃତ କାବ୍ୟ, ନାଟକ ଓ ଓଡ଼ିଆ ଗ୍ରନ୍ଥ ସାହିତ୍ୟ ଅଧ୍ୟୟନ କଲେ (ଖ୍ରୀ: ୧୮୦୪) । ତାଙ୍କର ସଂସ୍କୃତ ଗୁରୁଙ୍କ ନାମ ଥିଲା (ପାରଳା ଅଧିବାସୀ) ପଣ୍ଡିତ ବାଇକୋଳି ମହାପାତ୍ର । ତତ୍କାଳୀନ ପରମ୍ପରା ଅନୁଯାୟୀ କବି ଜ୍ୟୋତିଃଶାସ୍ତ୍ର ଓ ବୈଦ୍ୟଶାସ୍ତ୍ରରେ ମଧ୍ୟ ପ୍ରବେଶ ଲାଭ କରିଥିଲେ । ତାଙ୍କର ସଙ୍ଗାତ ଶ୍ରୀ କୂର୍ମନାଥ ବେବର୍ତ୍ତା (କବି, ସଙ୍ଗୀତଜ୍ଞ, ଗୋପାଳକୃଷ୍ଣଙ୍କ ଗୀତର ସଂଗ୍ରହକର୍ତ୍ତା ହରିବନ୍ଧୁ ବେବର୍ତ୍ତାଙ୍କ ପିତା) ଥିଲେ ଜଣେ ବୈଦ୍ୟଶାସ୍ତ୍ରୀ । ପିତା ତାଙ୍କର ବହୁ ଶାସ୍ତ୍ରଦର୍ଶୀ ଓ ରାଜକର୍ମଚାରୀ ଥିବାରୁ ଗଜପତି ମହାରାଜାଙ୍କର ସଭାପଣ୍ଡିତମାନଙ୍କ (୨୦) ସଂସ୍ପର୍ଶରେ ଆସି ଶାସ୍ତ୍ରାଲୋଚନାରେ ନିଜର ଜ୍ଞାନର ଉନ୍ନତି ଘଟାଇଥିଲେ । ପିତାଙ୍କ ସହିତ ରାଜଭବନକୁ ଯାଇ କ୍ରମଶଃ ରାଜକାର୍ଯ୍ୟ ଶିକ୍ଷା କରିବାକୁ ଲାଗିଲେ । ପ୍ରାୟ କୋଡ଼ିଏ ବର୍ଷ ବୟସରେ (ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ ଉଲ୍ଲେଖ ଅନୁଯାୟୀ ତେଇଶି ବର୍ଷରେ) ତାଙ୍କର ଶୁଭ ପରିଣୟ ହୋଇଥିଲା । ତାଂକର ଧର୍ମପତ୍ନୀଂକ ନାମ ହୀରାମଣି (କବି ଗୋପାଳକୃଷ୍ଣର ନାଟ୍ୟକାରଂକ ମତରେ ହୀରାମଣି, ରାଧାରମଣଂକ ମତରେ ଯଶୋଧାରା) ।

ମନ ସହିତ ସ୍ୱାସ୍ଥ୍ୟର ଉନ୍ନତି ପାଇଁ କବି ସକାଳେ ଓ ସନ୍ଧ୍ୟାବେଳେ ନିୟମିତ ବ୍ୟାୟାମ ଅଭ୍ୟାସ କରୁଥିଲେ । ସେ ଅଞ୍ଚଳର ଯୁବକମାନଂକର ଏହା ଏକ ଦୈନନ୍ଦିନ କାର୍ଯ୍ୟ ଥିଲା (୨୧) । କବି ପ୍ରଭାତରୁ ଶଯ୍ୟା ତ୍ୟାଗ କରି ସ୍ନାନାଦି ନିତ୍ୟକର୍ମ ଶେଷ କରୁଥିଲେ ଏବଂ ସଦ୍ୟ କ୍ଷୀର ପାନ କରି ବ୍ୟାୟାମରେ ଲାଗି ଯାଉଥିଲେ । ସନ୍ଧ୍ୟାରେ ମଧ୍ୟ ଦୁଇଦଣ୍ଡା

(୨୦) ଗୋପାଳକୃଷ୍ଣଂକର ସମସାମୟିକ ତଥା ସମବୟସ୍କ ବ୍ୟକ୍ତି ହେଉଛନ୍ତି: ପାରଳାର ଚନ୍ଦ୍ର ପଟ୍ଟନାୟକ, ରାମଚନ୍ଦ୍ର ରାଜଗୁରୁ, ଗୌରହରି ପରୀକ୍ଷା, ରଘୁନାଥ ପରୀକ୍ଷା, ନରସିଂହ ପଟ୍ଟନାୟକ, ଶ୍ରୀ କରଣ ଗୌରାଙ୍ଗ ପଟ୍ଟନାୟକ । ଏମାନେ ପରେ ପଣ୍ଡିତ ଓ ଗାୟକରୂପେ ଖ୍ୟାତି ଅର୍ଜନ କରିଥିଲେ ।

(୨୧) ଦେଶର ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ ଓଡ଼ିଆମାନଙ୍କୁ ବିଭିନ୍ନ ସମୟରେ ସଂଗ୍ରାମର ସମ୍ମୁଖୀନ ହେବାକୁ ପଡୁଥିବାରୁ ସାମରିକ ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ କୁସ୍ତି କସରତ କରିବାକୁ ହେଉଥିଲା । ସେଥିପାଇଁ ପ୍ରାୟ ଅଧିକାଂଶ ଗ୍ରାମରେ ମଲ୍ଲ ଓ ପାଇକ ଆଖଡ଼ା ଥିଲା । ପାଇକମାନଙ୍କର ସମର କୌଶଳ ଶିକ୍ଷା ସମ୍ପର୍କୀୟ ଗ୍ରନ୍ଥ ହେଉଛି 'ପାଇକ ଖେଦା' । ସେହି ପରମ୍ପରା ଅନୁସାରେ କବି ବ୍ୟାୟାମ ଅଭ୍ୟାସ କରୁଥିଲେ । କବିଙ୍କ ଗୃହରେ ତାଙ୍କ ମୂର୍ତ୍ତି ନିକଟରେ ଏବେ ମଧ୍ୟ କାଷ୍ଠ ନିର୍ମିତ ଦୁଇଟି ବ୍ୟାୟାମ ଉପକରଣ (Parallel-bar) ରଖା-ଯାଇଛି । ଏହାର ଆଲୋକଚିତ୍ର ଦ୍ରଷ୍ଟବ୍ୟ ।

ବ୍ୟାୟାମ କରୁଥିଲେ । ଅବସର ଅନ୍ୟ ସମସ୍ତ କାବ୍ୟ ନାଟକାଦି ଅଧ୍ୟୟନ ଓ ରାଜକାର୍ଯ୍ୟ ଶିକ୍ଷାରେ ମନୋଯୋଗ କରୁଥିଲେ । ଅଧ୍ୟୟନ ସହିତ ଗୋପାଳକୃଷ୍ଣ କାବ୍ୟ ସଙ୍ଗୀତାଦି ରଚନା କରି ନିଜର ନୈସର୍ଗିକ ପ୍ରତିଭାର ବିକାଶ ଘଟାଉଥିଲେ ।

ପିତାଙ୍କ ମୃତ୍ୟୁପରେ କବି ମହାରାଜାଙ୍କର କର୍ମଗୃଷ୍ଣ (କରଣିକ ବା ପାଞ୍ଜିଆ କରଣ) ପଦରେ ନିଯୁକ୍ତ ହେଲେ । ପାରଳା ରାଜା ପୁରୁଷୋତ୍ତମ ନାରାୟଣ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଜଗନ୍ନାଥ ଗଜପତି ନାରାୟଣ ଦେବ ରାଜା ହେଲେ । ଭୌଗୋଳିକ ଓ ଶାସନଗତ କାରଣରୁ ଗଞ୍ଜାମର ଘୁମୁସର ଓ ମହୁରି ପରି ପାରଳାଖିମୁଣ୍ଡିରେ ଦୀର୍ଘକାଳ ଧରି ବିଦ୍ରୋହ ଲାଗି ରହିଥିଲା ବିଶେଷତଃ ଜଗନ୍ନାଥ ଗଜପତି ନାରାୟଣ ଦେବଙ୍କ (ଲସ୍ତ) ସମୟରେ (କବିଙ୍କ ସମସାମୟିକ) ଏହା ଚରମ ସୀମା ପ୍ରାପ୍ତ ହେଲା । ସେହି ବିଦ୍ରୋହର ଏକ ବିଶଦ ଚିତ୍ର ଦେବା ଏଠାରେ ଅପ୍ରାସଙ୍ଗିକ ହେବନାହିଁ ।

**ପାରଳାଖିମୁଣ୍ଡି ବିଦ୍ରୋହ :**

ଜଗନ୍ନାଥ ଗଜପତି ନାରାୟଣ ଦେବ (ତୃତୀୟ)ଙ୍କ ପ୍ରପିତାମହ ଜଗନ୍ନାଥ ନାରାୟଣ ଦେବ (ଦ୍ୱିତୀୟ) ଖ୍ରୀ: ୧୭୭୦ରେ ପରଲୋକ ଗମନ କଲେ ଏବଂ ତାଙ୍କର ପୁତ୍ର ଗଜପତି ନାରାୟଣ ଦେବ ଖ୍ରୀ: ୧୭୭୧ରେ ସିଂହାସନରେ ଅଭିଷିକ୍ତ ହେଲେ । ଜଗନ୍ନାଥ ନାରାୟଣ ଦେବଙ୍କ ଜୀବିତ କାଳ ମଧ୍ୟରେ ଗଜପତି ନାରାୟଣ ଦେବ ଶାସନ, ସମର ଓ ବିଗ୍ରହ କ୍ଷେତ୍ରରେ ସକ୍ରିୟ ଭାଗ ନେଉଥିଲେ । ପିତା ପୁତ୍ର ଉଭୟ କମ୍ପାନୀ ସରକାରର ବିରୋଧୀ ଥିଲେ । ଖ୍ରୀ: ୧୭୬୮ରେ ଜଗନ୍ନାଥ ନାରାୟଣ ଦେବ କମ୍ପାନୀ ସୈନ୍ୟଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ଏବଂ ଗଜପତି ନାରାୟଣ ଦେବ ଇଂରେଜମାନଙ୍କ ଦ୍ୱାରା ପାରଳାଖିମୁଣ୍ଡିର ଜମିଦାର ଭାବରେ ଗୃହୀତ ହେଲେ; କିନ୍ତୁ ଇଂରେଜମାନଙ୍କ ସହିତ ବାରମ୍ବାର ସନ୍ଧି ଭଙ୍ଗ ଏବଂ ଚିକାକୋଲ୍‌ର କଲେକ୍ଟର୍‌ଙ୍କ ଆଦେଶର ଅବମାନନା ହେତୁ ପାରଳାଖିମୁଣ୍ଡି ଜମିଦାରୀରୁ ତାଙ୍କୁ ବଞ୍ଚିତ କରାଗଲା । ତାପରେ ସମଗ୍ର ଜମିଦାରୀ କଲେକ୍ଟର୍‌ଙ୍କ ଅଧୀନରେ ପରିଚାଳିତ ହେଲା ଏବଂ ଖିମୁଣ୍ଡି ରାଜବଂଶ ସମ୍ପର୍କୀୟ ଦୁର୍ଗାରାଜଙ୍କୁ ଖ୍ରୀ: ୧୭୯୯ରେ ମାନେଜର୍‌ର ଭାବରେ ନିଯୁକ୍ତ କରାଗଲା (୨୨) ।

ଖ୍ରୀ: ୧୭୯୯ ଓ ୧୮୦୦ରେ ପାରଳାଖିମୁଣ୍ଡି ଓ ଘୁମୁସରରେ ଗୋଳମାଳ ଲାଗି ରହିଲା । ଜମିଦାର ଗଜପତି ନାରାୟଣ ଦେବ ଓ ତାଙ୍କର ପୁତ୍ର ପୁରୁଷୋତ୍ତମ ଗଜପତି ନାରାୟଣ ଦେବଙ୍କୁ ମସୁଲିପଟ୍ଟମ୍‌କୁ ପଠାଇ ଦିଆଗଲା । ବିଦ୍ରୋହୀମାନେ ବାରଣସୀ ଓ ଖିମୁଣ୍ଡିରେ ଅବସ୍ଥାପିତ ସୈନ୍ୟଦଳକୁ ଆକ୍ରମଣ କଲେ ଏବଂ ଇଚ୍ଛାନୁସାରେ ଲୁଣ୍ଠନ କରି ଗାଁ ଗଣ୍ଡା ପୋଡ଼ିଦେବା ପାଇଁ ଆଗେଇଲେ । ଦୁର୍ଗାରାଜଙ୍କ ସହାୟତା ଓ ପରାମର୍ଶରେ କର୍ଣ୍ଣେଲ୍ ଉଗରସ୍‌ଙ୍କ ଦ୍ୱାରା ବିଦ୍ରୋହ ଦମନ କରାଯାଇଥିଲା (୨୩) ।

(୨୨) Sr. S. N. Rajaguru, H. O. G., Part. II, 1972, PP. 154/173.

(୨୩) Ibid, PP. 173-174.

ଖ୍ରୀ: ୧୮୦୨ରେ ଗଜପତି ନାରାୟଣ ଦେବଙ୍କ ପରଲୋକ ଗମନ ପରେ ତାଙ୍କ ପୁଅ ପୁରୁଷୋତ୍ତମ ଗଜପତି ନାରାୟଣ ଦେବ ସିଂହାସନର ଉତ୍ତରାଧିକାରୀ ହେଲେ । ମସୁଲି-ପଟ୍ଟମ୍‌ରେ କାରାରୁଦ୍ଧ ଥିବା ଅବସ୍ଥାରେ ଗଜପତି ନାରାୟଣ ଦେବଙ୍କର ତାଙ୍କ ସମ୍ପର୍କୀୟ ଭ୍ରାତା ଜଗନ୍ନାଥ ଦେବଙ୍କ ସହ କଳହ ଥିବାରୁ (ରାଜଗାଦି ପାଇଁ) ପାରଳାଖିମୁଣ୍ଡିର ବିଶିଷ୍ଟ ବ୍ୟକ୍ତିମାନେ ଦୁଇ ଦଳରେ ବିଭକ୍ତ ହୋଇଯାଇଥିଲେ । ଦଳେ ଗଜପତି ନାରାୟଣ ଦେବଙ୍କୁ ଗାଦିନସିନ୍ ହେବାକୁ ଚାହୁଁଥିବାବେଳେ ଅନ୍ୟ ଦଳକ ଜଗନ୍ନାଥ ଦେବଙ୍କୁ ଚାହୁଁଥିଲେ । ଚିକାକୋଲ୍‌ର କିଛି ଅଂଶ ଓ ଶ୍ରୀକୂର୍ମମ୍ ସେତେବେଳେ ଖିମୁଣ୍ଡି ଶାସନାଧୀନ ଥିଲା ।

ଖ୍ରୀ: ୧୭୯୮ରେ ଗଜପତି ନାରାୟଣ ଦେବଙ୍କର **ଅନିୟମିତ** ଆଚରଣ ସମ୍ପର୍କରେ ଶୁଣିପାରି କମ୍ପାନୀ ସରକାର ପାରଳାଖିମୁଣ୍ଡିରେ ଏକ ସାମରିକ ବାହିନୀ ମୁତୟନ କଲେ । ଖ୍ରୀ: ୧୭୯୮ରେ ଗଜପତି ନାରାୟଣ ଦେବଙ୍କୁ କାରାରୁଦ୍ଧ କରାଗଲା । ଏହାପରେ ପାରଳା-ଖିମୁଣ୍ଡିର ପାର୍ବତ୍ୟ ଜାତିର ଲୋକମାନେ (ଶବର) ସମତଳ ଅଞ୍ଚଳର ପାଇକମାନଙ୍କ ସହିତ ହାତ ମିଳାଇ ଅଶାନ୍ତି ସୃଷ୍ଟି କଲେ । ଏହି ପରିସ୍ଥିତିର ମୁକାବିଲା କରିବା ପାଇଁ ରେଭିନ୍ୟୁ ବୋର୍ଡ଼ର ସିନିଅର୍ ମେମ୍ବର୍ ଏବଂ ପରେ ମାନ୍ଦ୍ରାଜ ପ୍ରେସିଡେନ୍‌ସିର କାଉନ୍‌ସିଲର ସଭ୍ୟ ମି: ଜ: ଇ: ରସେଲ୍‌ଙ୍କୁ ପଠାଗଲା ।

ଦିନକୁ ଦିନ ପାରଳାଖିମୁଣ୍ଡି ଓ ପ୍ରତିବେଶୀ ଟେକ୍‌କାଲି, ହାଟବେଲି ତାଲୁକ ଭୂଭାଗରେ ବିଦ୍ରୋହୀମାନଙ୍କ ଦ୍ୱାରା ନୂଆ ନୂଆ ଧରଣର ଅତ୍ୟାଚାର ଚାଲିଲା । ଗାଁ ପୋଡ଼ି ଦିଆଗଲା, ଦିବା ଦ୍ୱିପ୍ରହରରେ ଶସ୍ୟ ଲୁଟି ହେଲା । ସରକାର ତରଫରୁ ଦଣ୍ଡ ଓ ମୃତ୍ୟୁର ଧମକ ଦିଆଗଲେ ମଧ୍ୟ କମ୍ପାନୀ ସରକାରଙ୍କୁ ଖଜଣା ନ ଦେବାକୁ ଲୋକଙ୍କୁ ନିର୍ଦ୍ଦେଶ ଦିଆଗଲା । ବିଦ୍ରୋହୀମାନଙ୍କୁ ସମର୍ଥନ କରୁ ନଥିବା ଲୋକେ ରାଜ୍ୟ ଛାଡ଼ି ଅନ୍ୟତ୍ର ଚାଲିଗଲେ । ସିଅନମାନେ ଦଳବଦ୍ଧ ହୋଇ ବିଦ୍ରୋହୀ ହୋଇଗଲେ ।

ଜଗନ୍ନାଥ ଦେବଙ୍କୁ (ଗଜପତି ଦେବଙ୍କର ସମ୍ପର୍କୀୟ ଭ୍ରାତା) କମ୍ପାନୀ "ସରକାର ଜମିଦାର ବୋଲି ଘୋଷଣା କରିଥିଲେ ମଧ୍ୟ କଲେକ୍ଟର୍ ତାଙ୍କର ଆନୁଗତ୍ୟରେ ସନ୍ଦେହ ପ୍ରକାଶ କରିବାରୁ ଖ୍ରୀ: ୧୭୮୦ରେ ତାହା ପ୍ରତ୍ୟାହାର କରିନେଲେ । ଶେଷରେ ଜଗନ୍ନାଥ ଦେବ ତାଙ୍କର ମୁଖା ଖୋଲି ଦେଇ ବିଦ୍ରୋହୀ ବିଘୋଷ୍ଠୀମାନଙ୍କ ସହ ଯୋଗଦେଲେ । ଏହି ସମୟରେ ବିଦ୍ରୋହୀମାନଙ୍କର ସଂଖ୍ୟା ପାଞ୍ଚ ହଜାର ଯାଏ ହୋଇଥିଲା ।

ବିଦ୍ରୋହ ଦମନ ପାଇଁ ଖ୍ରୀ: ୧୭୯୯ରେ ସୈନ୍ୟବାହିନୀ ହାରାମଣ୍ଡଳରେ ପହଞ୍ଚିଲା । କଲେକ୍ଟର୍ ମି. ସ୍ମିଥ୍ ଜଗନ୍ନାଥ ଦେବ ଓ ବିଦ୍ରୋହୀମାନଙ୍କୁ ବାଧ୍ୟତା ସ୍ୱୀକାର ପାଇଁ ପରାମର୍ଶ ଓ ସତର୍କବାଣୀ ଶୁଣାଇଲେ । ଏଥିରେ କିଛି ଫଳ ହେଲା ନାହିଁ, ବରଂ ବିଦ୍ରୋହୀ ଓ ସରକାରଙ୍କ ମଧ୍ୟରେ ପାର୍ଥକ୍ୟ ଆହୁରି ବଢ଼ିଲା । ସରକାର ପକ୍ଷର ଦୂତମାନଙ୍କୁ ବନ୍ଦୀ କରାଯାଇ ସେମାନଙ୍କର ଜିନିଷପତ୍ର ଲୁଣ୍ଠନ କରାଗଲା ।

ପ୍ରକୃତ ସମ୍ବାଦ ପାଇବା ମି. ସ୍କଟ୍‌ଙ୍କ ପକ୍ଷରେ ବିଶେଷ ଅସୁବିଧା ହେଲା । କାହାଠାରୁ ସାହାଯ୍ୟର ଭରସା ନ ରଖି ସେ ମସୁଲିପଟ୍ଟମ୍‌କୁ ପୁରୁଷୋତ୍ତମ ଦେବ ଓ ଯୁବରାଜଙ୍କୁ ଅଣାଇବାର ଆଦେଶ ଦେଲେ, କାରଣ ଗଜପତି ଦେବଙ୍କର ଭୟ ଥିଲା ଯେ, ସରକାର ଚୁପ ପକାଇ ଏମାନଙ୍କ ସାହାଯ୍ୟରେ ଜଗନ୍ନାଥ ଦେବଙ୍କୁ ଜମିଦାର ବୋଲି ଘୋଷଣା କରିପାରନ୍ତି ।

ଖିମୁଣ୍ଡି ନିକଟରେ ଶିବିର ପଡ଼ି ରହିଲା । ବିଦ୍ରୋହୀମାନେ ଟେକ୍‌କାଲି ଓ ହାବେଲିରେ ଲୁଣ୍ଠନ ଚଳାଇଲେ, ବହୁ ଗ୍ରାମ ପୋଡ଼ି ଛାରଖାର କରିଦେଲେ । ଶିବିର ଆଡ଼କୁ ଲକ୍ଷ୍ୟକରି ଗୁଳି ଫୁଟାଇଲେ ଏବଂ ଲେଫ୍‌ଟେନାଣ୍ଟ୍ ୟୁଙ୍ଗ୍‌ସନ୍‌ଙ୍କୁ (Lt. Youngson) ବନ୍ଦୀ ଭାବରେ ପାହାଡ଼କୁ ନେଇଗଲେ ।

ପୁରୁଷୋତ୍ତମ ଦେବ ଓ ଯୁବରାଜଙ୍କର ଉପସ୍ଥିତିରେ ସହସା ଏକ ପରିବର୍ତ୍ତନ ଦେଖାଗଲା । ବହୁ ମୁଖିଆ ଓ ମୁଖାସାଦାର ଯୁବରାଜଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କଲେ । ଯୁବରାଜଙ୍କ ପ୍ରଭାବରେ ବିଦ୍ରୋହୀ ନେତା ଲକ୍ଷ୍ମୀ ନରସୁ ପାତ୍ର (ଯେ ଲେ. ୟୁଙ୍ଗ୍‌ସନ୍‌ଙ୍କୁ ବନ୍ଦୀ କରିଥିଲା) ଗିରଫ ହେଲା । ଗଜପତି ଦେବଙ୍କ ପରିବାରକୁ ନଜରବନ୍ଦୀରେ ରଖିଥିବା ଜଗନ୍ନାଥ ଦେବ ଜେରଙ୍ଗି ବିଷୋୟୀଠାରେ ଆଶ୍ରୟ ନେଲେ ।

ବିଦ୍ରୋହୀ ଜଗନ୍ନାଥ ଦେବଙ୍କର ଗିରଫଦାରୀ ପାଇଁ ପୁରସ୍କାର ଘୋଷଣା କରାଗଲା । ସେପ୍‌ଟେମ୍ବର ମାସରେ ସେ ଜମିଦାରିର ପୂର୍ବାଞ୍ଚଳରେ ବହୁ ଗ୍ରାମ ଭସ୍ମସାତ୍ କଲେ । ତା'ପରେ ନିଜର ଅନୁଗତ ଲୋକମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ କଟକ ଚାଲିଗଲେ । ଶେଷରେ ଖ୍ରୀ: ୧୮୦୪ରେ ସେ ସୋରଡ଼ା ଜମିଦାରଙ୍କ ଦ୍ୱାରା ବନ୍ଦୀ ହୋଇ ସରକାରଙ୍କ ହାତରେ ପଡ଼ିଲେ ଏବଂ ମସୁଲିପଟ୍ଟମ୍‌କୁ ବନ୍ଦୀ ଭାବରେ ପ୍ରେରିତ ହେଲେ (୨୪) ।

ଗଜପତି ଦେବଙ୍କର ତିରୋଭାବ ପରେ ପୁରୁଷୋତ୍ତମ ନାରାୟଣ ଦେବ ଖିମୁଣ୍ଡିର ଜମିଦାର ଭାବରେ ଘୋଷିତ ହେଲେ । ତାଙ୍କ ଅନୁରୋଧ ଅନୁଯାୟୀ ଯୁବରାଜଙ୍କ ହାତରେ ଖିମୁଣ୍ଡିର ଶାସନ ଭାର ରହିଲା (୨୫) । ସେହି ବର୍ଷ ମଇ ମାସରେ ତାଙ୍କ ନାମରେ ଏକ ଚିରସ୍ଥାୟୀ ବନ୍ଦୋବସ୍ତ ପତ୍ର ପ୍ରସ୍ତୁତ କରାଗଲା ।

**ପାରଳାରେ ପୁନଶ୍ଚ ବିଦ୍ରୋହ :**

ଖ୍ରୀ: ୧୮୦୪ରେ ଖୋର୍ଦ୍ଧାର ବରମୂଲାଘାଟଠାରେ ଏକ ଯୁଦ୍ଧରେ ମରହଟ୍ଟାମାନେ ଇଂରେଜମାନଙ୍କ ଦ୍ୱାରା ପରାସ୍ତ ହେଲେ । ମଧ୍ୟପ୍ରଦେଶକୁ (ନାଗପୁର) ସେମାନଙ୍କର ଯାତ୍ରାପଥରେ ସେମାନେ ବହୁ ଗ୍ରାମ ଲୁଣ୍ଠନ କରି ନିଆଁ ଲଗାଇଦେଲେ । ଅତ୍ୟାଚାରୀ ମରହଟ୍ଟାଙ୍କ ହାତରେ ଖିମୁଣ୍ଡିର ଲୋକମାନେ ବହୁ କ୍ଷତି ସହିଲେ । ଏହି ସମୟରେ ବିଷୋୟୀମାନଙ୍କ ଉତ୍ତେଜନାରେ ପୁଣି ବିଦ୍ରୋହ ଆରମ୍ଭ ହୋଇଗଲା ।

---

(୨୪) Ibid, P. 193.

(୨୫) H. O. G. P. 194

ପୁରୁଷୋତ୍ତମ ଦେବ ତା ୨୧ । ୧୦ । ୧୮୦୫ରେ ପରଲୋକ ଗମନ କଲେ । ସେତେବେଳକୁ ଯାତ୍ରିଲା ସିଂହାସନର ଉତ୍ତରାଧିକାରୀ ଜଗନ୍ନାଥ ଗଜପତି ନାରାୟଣ ଦେବ (ତୃତୀୟ) ବର୍ଷକର ଶିଶୁ । ଫଳରେ ଜମିଦାରି କୋର୍ଟ ଅବ୍ ଓ୍ୱାର୍ଡ଼ସ ଅଧୀନରେ ରହିଲା । ଗଞ୍ଜାମ ଜିଲାର ରେକର୍ଡ଼ରୁ ଜଣାଯାଏ ଯେ, ଯୁବରାଜ (ନାବାଳକ ଜମିଦାରଙ୍କର ସମ୍ପର୍କୀୟ) ଜମିଦାରଙ୍କର ମାନେଜର ଭାବରେ ଏବଂ ନାବାଳକ ରାଜାଙ୍କର ଦୂର ସମ୍ପର୍କୀୟ ମାନଦାସ ବଡ଼ଜେନା ଅଭିଭାବକ ଭାବରେ ନିଯୁକ୍ତ ହେଲେ (୨୬) ।

ଯୁବରାଜ ଜଣେ ଚରିତ୍ରବାନ୍ ବ୍ୟକ୍ତି ଓ ଦକ୍ଷ ଶାସକ ଥିବାରୁ ଲୋକେ ତାଙ୍କ ପ୍ରତି ସମ୍ମାନ ଓ କୃତଜ୍ଞତା ପ୍ରକାଶ କରୁଥିଲେ । ତାଙ୍କର ସାତବର୍ଷର ଶାସନକାଳ ମଧ୍ୟରେ ଜମିଦାରିରେ ଶାନ୍ତି ଫେରି ଆସିଲା । କିନ୍ତୁ ବାରାଣସୀକୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ସେ ମାନେଜର ପଦରୁ ଇସ୍ତଫା ଦେଲେ । ଯେତେବେଳେ ପାରଳାଖେମୁଣ୍ଡି ତ୍ୟାଗ କଲେ, ସେତେବେଳେ ସେ ମୁଜମ୍‌ଦାର ଶ୍ରୀକଣ୍ଠ ପଟ୍ଟନାୟକ ଓ ଗୋପୀନାଥ ପଟ୍ଟନାୟକଙ୍କୁ ରାଜ୍ୟ ତତ୍ତ୍ୱାବଧାନର ଭାର ଅର୍ପଣ କରି ଯାଇଥିଲେ, କିନ୍ତୁ ବାରାଣସୀରେ ତାଙ୍କର ମୃତ୍ୟୁ ସମ୍ବାଦ ଜଣାଗଲା ପରେ କଲେକ୍ଟର୍ ଯୁବରାଜଙ୍କ ପୁତ୍ର ପଦ୍ମନାଭ ଦେବଙ୍କୁ ମାନେଜର ନିଯୁକ୍ତ କଲେ (୨୭), କିନ୍ତୁ ଏହି ନିଯୁକ୍ତିରେ ଲୋକମାନେ ପ୍ରତିବାଦ କରିଥିଲେ ।

ପାରଳାଖେମୁଣ୍ଡି ବିଦ୍ରୋହରେ ପଦ୍ମନାଭ ଦେବଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ସେ ପାରଳାଖେମୁଣ୍ଡିରେ ବହୁଦିନ ଧରି ରହିଥିଲେ । ତାଙ୍କର ଜମିଦାରି ପରିଚାଳନା ଅପ୍ରୀତିକର ହେବାରୁ ରାଜ୍ୟର ବିଷୋୟୀ ଓ ଦୋରାମାନେ ଭୟଙ୍କର ଗଣ୍ଡଗୋଳ ଆରମ୍ଭ କଲେ । ଗଞ୍ଜାମ ରେକର୍ଡ଼ରେ (୧୮୧୪) ଉଲ୍ଲେଖ ଅଛି ଯେ, ପଦ୍ମନାଭ ଦେବ ଲୋକଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରି ନାବାଳକ ଜମିଦାରଙ୍କର କ୍ଷମତା ଅନ୍ୟାୟ ଭାବରେ ଅଧିକାର କରୁଥିଲେ । ସ୍ୱର୍ଗତ ଜମିଦାରଙ୍କର ବିଧବା ପତ୍ନୀ ଗଜପତି ପାଟମହାଦେବୀ ଏବଂ ଜଗନ୍ନାଥ ଦେବଙ୍କର ପୁତ୍ର ଦୁର୍ଗାରାଜ ବିଦ୍ରୋହୀମାନଙ୍କୁ ଅଧିକ ଉତ୍ତେଜିତ କରିଥିଲେ । ଉପଦ୍ରବର ଦମନ ପାଇଁ କର୍ଣ୍ଣେଲ୍ ଫ୍ଲେଚର୍ ଗଞ୍ଜାମରେ ଥିବା ସୈନ୍ୟବାହିନୀର କମାଣ୍ଡର୍ ନିଯୁକ୍ତ ହେଲେ । ପଦ୍ମନାଭ ଦେବଙ୍କ ବିରୋଧରେ ହୋଇଥିବା ବିଷୋୟୀ ମାନଙ୍କର ଅଭିଯୋଗର ତଦନ୍ତ ପାଇଁ ମାଜିଷ୍ଟ୍ରେଟ୍ ମି. ଉଡ୍‌କକ୍ ଓ କଲେକ୍ଟର୍‌ଙ୍କୁ ପଠାଗଲା । ବିଦ୍ରୋହୀମାନଙ୍କର ମାଜିଷ୍ଟ୍ରେଟ୍ ଓ କଲେକ୍ଟର୍‌ଙ୍କ ସମ୍ପର୍କରେ ଦୁରଭିସନ୍ଧି ଥିଲେ ମଧ୍ୟ ସାକ୍ଷାତ୍ ସମୟରେ କୌଣସି ଗଣ୍ଡଗୋଳ ଘଟି ନଥିଲା । ସନ୍ଧି ବା ଚୁକ୍ତି ବିଚାରାଧୀନ ରଖାଯିବା ଫଳରେ ବିଦ୍ରୋହୀମାନେ ଆଉ ଆକ୍ରମଣ କଲେ ନାହିଁ । ଆପାତତଃ ଶାନ୍ତି ହେତୁ ସୈନ୍ୟବାହିନୀକୁ ସକ୍ରିୟ କରାଗଲା ନାହିଁ । ପଦ୍ମନାଭ ଦେବଙ୍କୁ ମାନେଜର ପଦରୁ ବହିଷ୍କାର କରାଗଲା ଏବଂ କାନକୋଟି ନରସିଂହ ରାଓଙ୍କୁ ତାଙ୍କ ସ୍ଥାନରେ ମାନେଜର ନିଯୁକ୍ତ କରାଗଲା, କିନ୍ତୁ ନାବାଳକ

(୨୬) Records of the Ganjam District, Vol. 741, PP. 45-59 H. O. G, Part II. P- 195ରେ ଉଦ୍ଧୃତ ।

(୨୭) H. O. G., P. 198

ଜମିଦାରଙ୍କ ମାତାଂକର ଅଭିଯୋଗ ଫଳରେ ସେ ଦୋଷୀ ସାବ୍ୟସ୍ତ ହୋଇ ଖ୍ରୀ: ୧୮୬୦ରେ କାର୍ଯ୍ୟରୁ ବିତାଡ଼ିତ ହେଲେ ।

ଖ୍ରୀ : ୧। ୧୫ରେ ପାଟମହାଦେବୀଙ୍କର ପରଲୋକ ହେଲା ଏବଂ ୧୮୧୬ରେ ନାବାଳକ ଜମିଦାରଙ୍କର ପାଇଁ ନୂତନ ଅଭିଭାବକ ନିଯୁକ୍ତ ହେଲେ । ଚଉଦ ବର୍ଷରେ ଜଗନ୍ନାଥ ନାରାୟଣ ଦେବଙ୍କର ବିବାହ ଅନୁଷ୍ଠିତ ହେଲା ।

ମରହଟ୍ଟା ସୈନ୍ୟବାହିନୀର ପ୍ରଶାଖା ପିଣ୍ଡାରମାନେ ସେମାନଂକର ମୁଖ୍ୟଂକ ଠାରୁ କୌଣସି ଆର୍ଥିକ ସମ୍ଭାବନା ନ ଦେଖି ଲୁଣ୍ଠନ ଓ ଧ୍ୱଂସର ଆଶ୍ରୟ ନେଇଥିଲେ । ପୂର୍ବବର୍ତ୍ତୀ ମାନେଜର ପଦ୍ମନାଭ ଦେବଂକ ଦ୍ୱାରା ପ୍ରବର୍ତ୍ତିତ ହୋଇ ଖ୍ରୀ : ୧୮୧୬ରେ ପିଣ୍ଡାରମାନେ ଚକ୍ରାମରେ ଦେଖାଦେଲେ । ସେମାନେ ଜୟପୁର ବାଟେ ରାଜ୍ୟରେ ପ୍ରବେଶ କରି ଯାବାପଥରେ ଲୁଣ୍ଠନ ଓ ପୋଡ଼ାଜଳା କରି ଉତ୍ତର ଆଡ଼କୁ ଅଗ୍ରସର ହେଲେ ।

କଲେକ୍ଟର୍ ମି. ସ୍ମିଥ୍ ଉଡ୍ ଂକ ବିବରଣୀରୁ ବିଷୋୟୀମାନଙ୍କର ବିଦ୍ରୋହ ଏବଂ ପଦ୍ମନାଭ ଦେବଂକ ପ୍ରତି ସେମାନଂକର ଋକ୍ତ ପ୍ରତିକ୍ରିୟାର ଅନେକ କୌତୂହଳଜନକ ତଥ୍ୟ ମିଳେ (୨୮) । ରାଜ୍ୟରେ ଶାନ୍ତିରକ୍ଷା ଉଦ୍ଦେଶ୍ୟରେ ପଦ୍ମନାଭ ଦେବଙ୍କୁ ସପରିବାର ଚିକାକୋଲକୁ ପଠାଇବା ପାଇଁ ସରକାର କଲେକ୍ଟରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ୧୮୧୭ରେ ତାଂକ ସପକ୍ଷରେ ଟେକ୍କାଲି କ୍ରୟ କରାଗଲା । ପଦ୍ମନାଭ ଦେବ ତାଂକର ଟେକ୍କାଲି ଜମିଦାରୀକୁ ଚାଲିଗଲେ ମଧ୍ୟ ତାଙ୍କର ଚକ୍ରାନ୍ତ ଯୋଗୁ ପାରଳାଖେମୁଣ୍ଡିରେ ପୁନଶ୍ଚ ଗଣ୍ଡଗୋଳ ଦେଖାଗଲା । ଖ୍ରୀ : ୧୮୧୭ର ଆରମ୍ଭରେ ଗୁଡ଼ିୟାପାଟି ଲଚନ୍ନା ନଗରୀ କଟକ ଓ ଅନ୍ୟ କେତୋଟି ଗାଁରେ ପୋଡ଼ା ଜଳା ଆରମ୍ଭ କଲେ । ବିଦ୍ରୋହୀ ନେତା ଲକ୍ଷ୍ମୀ ଦେଓ ଓ ଲାଚନ୍ନାଙ୍କୁ ଗିରଫ କରିବା ପାଇଁ ପୁରସ୍କାର ଘୋଷଣା କରାଗଲା । ଗଣ୍ଡଗୋଳରେ ପ୍ରତ୍ୟକ୍ଷ ସମ୍ପୃକ୍ତ ଥିବା ଦୁର୍ଗାରାଜଙ୍କୁ ଫାଶୀ ଦିଆଗଲା (୨୯) ।

ପାରଳାଖେମୁଣ୍ଡି ସମ୍ପର୍କରେ କମିଶନର୍ ମି. ଥାକରି (Mr. Thackery) ସରକାରଙ୍କୁ ଯେଉଁ ବିବରଣୀ ଦେଇଥିଲେ ତା'ର ମର୍ମ ହେଉଛି—ଟାଉନ୍ ପିଅନ୍ ଓ ବିଷୋୟୀଂକ ମଧ୍ୟରେ ସେତେବେଳେ ଦୁଇଟି ଦଳ ହୋଇ ଯାଇଥିଲେ । ସେମାନେ ହେଲେ : ପରସ୍ପର ବିରୋଧୀ ରାଣୀ ପାଟମହାଦେବୀଂକ ଦଳ ଓ ସୁଆଗୀ ମହାଦେବୀଂକ ଦଳ । ଜିରଙ୍ଗ ବିଷୋୟୀ, ଅନ୍ୟ ଚାରିଜଣ ବିଷୋୟୀ ଏବଂ ଦୁଇ ବା ତିନି ଶହ ଟାଉନ୍ ପିଅନ୍ ଗୋଟିଏ ଦଳ ଗଠନ କରିଥିଲେ । ରାଜା, ସୁଆଗୀ ମହାଦେବୀ ଓ ସେମାନଂକର ବିଶ୍ୱସ୍ତ ଭୃତ୍ୟମାନଂକର ଏହି ଦଳ ପ୍ରତି ସମର୍ଥନ ଥିଲା । ସେମାନେ ଜମିଦାରୀର ପରିଚାଳନା ଗ୍ରହଣ କରିଥିଲେ ମଧ୍ୟ ଅନ୍ୟ ଦଳ କୌଣସି ପରିବର୍ତ୍ତିତରେ କାଳେ ଗଣ୍ଡଗୋଳ ସୃଷ୍ଟି କରିବେ, ଏହି ଭୟ ସେମାନଂକର ଥିଲା । ରାଜାଂକର ବୟସ ସେତେବେଳକୁ ଷୋଳବର୍ଷ ହୋଇଥିଲା । କେତେମା ସୁଆଗୀ ମହାଦେବୀଂକ ପ୍ରତି ରାଜା ବିଶେଷ ଆକୃଷ୍ଟ ଥିଲେ ଏବଂ

(୨୮) H. O. G., Part II, P. 214.

(୨୯) Ibid, PP 223-224.

ପାଟ ମହାଦେବୀଙ୍କୁ ଘୃଣା କରୁଥିଲେ । ମାନେଜର ନରସିଂହ ରାଓ ଗୁମ୍ମା ବିଷୋୟୀ ଓ ତାଙ୍କର ଅନୁଗତ ମାନଙ୍କ ସମ୍ପର୍କରେ ସଂଶୟାକୁଳ ଥିଲେ । ଚିକାକୋଲ୍‌ରେ ଥିବା ପାଟ ମହାଦେବୀ, ଗୁମ୍ମା ବିଷୋୟୀ ( ପାର୍ବତ୍ୟ ସର୍ଦ୍ଦାରଙ୍କ ମଧ୍ୟରେ ସବୁଠାରୁ ଦୁର୍ଦ୍ଦାନ୍ତ ), ଅନ୍ୟ କେତେକ ବିଷୋୟୀ ଏବଂ ଗୁଡ଼ିଏ ଟାଉନ୍ ପିଅନ ଅନ୍ୟ ଦଳର ଅନ୍ତର୍ଭୁକ୍ତ ଥିଲେ । ଉଭୟ ଦଳ ପରସ୍ପରକୁ ଆକ୍ରମଣ କରିବାର ଧମକ ଦେଉଥିଲେ । ସେତେବେଳେ କୌଣସି ଗୋଟିଏ ଦଳର ପକ୍ଷ ନେବା ସରକାରଙ୍କ ପକ୍ଷରେ ବିପଦ ଜନକ ଥିଲା, କାରଣ ଏହା ଜାଣିବାମାତ୍ରେ ଅନ୍ୟ ବିରୋଧୀ ଦଳ ରାଜ୍ୟ ଲୁଣ୍ଠନ କରିବାର ଆଶଙ୍କା ଥିଲା । ନରସିଂହ ରାଓ ଉଭୟ ଦଳକୁ ଲାଞ୍ଚ ଓ ଗୁଡ଼ିଏ ପ୍ରତିଶ୍ରୁତି ଦେଇ କୌଣସି ପ୍ରକାର ଶାନ୍ତିର ବ୍ୟବସ୍ଥା କରୁଥିଲେ ମଧ୍ୟ ପ୍ରତିଶ୍ରୁତି ପାଳନ ତାଙ୍କ ପକ୍ଷରେ ଅସମ୍ଭବ ବ୍ୟାପାର ଥିଲା । ଦେଶର ପ୍ରକୃତି ଷଡ଼ଯନ୍ତ୍ର ପାଇଁ ଅନୁକୂଳ ଥିଲା । ପାହାଡ଼ିଆ ପିଅନ୍ ଓ ଟାଉନ୍ ପିଅନ୍‌ଙ୍କ ସଂଖ୍ୟା ବହୁତ, ସେମାନେ ଥିଲେ ବେପରୁଆ ଓ ଅବାଧ୍ୟ ।

ମି. ଥାକରଙ୍କ ବିବରଣୀରୁ ଏହା ସ୍ପଷ୍ଟ ହୁଏ ଯେ, ଇଂରେଜ ଅଫିସର୍‌ମାନେ ନିଜ ସ୍ୱାର୍ଥ ହାସଲ ପାଇଁ ପୂର୍ବ ଉପକୂଳର ଗଞ୍ଜାମ ଓ ବିଶାଖାପାଟଣାର ପାହାଡ଼ିଆ ଜାତିମାନଙ୍କ ସମ୍ପର୍କରେ ଏପରି ନୀତି ଅବଲମ୍ବନ କରିଥିଲେ, ଯାହା ଫଳରେ ଦେଶର ସାମରିକ ଶକ୍ତିର ମୁଖ୍ୟ ଅଂଶକୁ ବେପରୁଆ ରଖା ଯାଇଥିଲା । ଏହି ଲୋକ ହିଁ ଦେଶକୁ ଲୁଣ୍ଠନ କରିବାକୁ ସେମାନଙ୍କୁ ବାଧ୍ୟ କରିଥିଲା । କଂପାନୀର ସୈନ୍ୟବାହିନୀ ଶାନ୍ତିରକ୍ଷା ନାମରେ ହତଭାଗ୍ୟ ଜମିଦାର ମାନଙ୍କ ଖର୍ଚ୍ଚରେ ସନ୍ନିବିଷ୍ଟ ରହୁଥିଲେ । ଏହି କୌଶଳ ଦ୍ୱାରା ଜମିଦାରଙ୍କ ଅର୍ଥରେ ସେମାନେ ନିଜର ସୈନ୍ୟବାହିନୀ ଦୃଢ଼ ରଖୁଥିଲେ । ଏହାଦ୍ୱାରା ଇଂରେଜ-ମାନଙ୍କର ଶକ୍ତି ବଢ଼ୁଥିଲା, ଦେଶୀୟ ଜମିଦାର ମାନଙ୍କର ସାମରିକ ଶକ୍ତି ଦୁର୍ବଳ ହୋଇ ଯାଉଥିଲା । ପୂର୍ବ ଉପକୂଳର ପ୍ରାୟ ସବୁ ଜମିଦାରି ଅଞ୍ଚଳ ଏହି ସମୟରେ ପାରସ୍ପରିକ ବିରୋଧର ସମ୍ମୁଖୀନ ହୋଇଥିଲେ । କମ୍ପାନୀ ଶାସନର ଇତିହାସରୁ ଏହି କଳଙ୍କ କେବେ ପୋଛି ହୋଇ ପାରିବ ନାହିଁ (୩୦) ।

ଗଞ୍ଜାମ ଜିଲ୍ଲା ମାନୁଏଲ୍ (Ganjam District Manual) ଅନୁଯାୟୀ ରାଜା ଜଗନ୍ନାଥ ଗଜପତିଙ୍କର ନାବାଳକତ୍ୱ ଯାଇ ନଥିଲା । ସେତେବେଳେ ଏଗାର ଜଣ ପାହାଡ଼ିଆ ବିଷୋୟୀ ଥିଲେ, ଯେଉଁମାନଙ୍କର ଗୋଟିଏ ଗୋଟିଏ ଛୋଟ ଦୁର୍ଗ ଥିଲା । ରାଜ୍ୟର ପୋଲିସ ଭାବରେ ପାର୍ବତ୍ୟ ଅଧିବାସୀ ଶବରମାନଙ୍କର ଆଗମନ ଓ ଲୁଣ୍ଠନକୁ ପ୍ରତିହତ କରିବା ଥିଲା ସେମାନଙ୍କର କାମ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସେମାନଂକ ଅଧୀନରେ ଗୁଡ଼ିଏ ପିଅନ୍ ଥିଲେ ଏବଂ ସେମାନେ (ବିଷୋୟୀ ଓ ପିଅନ୍ ) ଜମି ଜାଗିର ପାଇଥିଲେ । ଏହା ଛଡ଼ା ଶହ ଶହ ଅବାଧ୍ୟ ଟାଉନ୍ ପିଅନ୍ ଥିଲେ । ନାବାଳକ ରାଜାଙ୍କର ଜେଜେମା ସୁଆଙ୍ଗୀ ମହାଦେବୀ ଏବଂ ବିଦ୍ରୋହୀ ଜମିଦାର ଗଜପତି ଦେବଙ୍କର ବିଧବା ପତ୍ନୀ

(୩୦) Ibid. PP.225-226.

ଗଜପତି ମହାଦେବୀ ରାଜ୍ୟରେ କ୍ଷମତା ପାଇଁ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ଥିଲେ । ପ୍ରତ୍ୟେକ ରାଣୀଙ୍କର ବିଷୋୟୀ ଓ ପିଅନ୍ ମାନଙ୍କର ଗୋଟିଏ ଗୋଟିଏ ଦଳ ଥିଲା । ରାଜ୍ୟ କଲେକ୍ଟର୍‌ଙ୍କ ପରିଚାଳନାଧୀନ ଥିଲେ ମଧ୍ୟ ସରକାରୀ ମାନେଜର ସୁବାରାଓ ଖ୍ରୀ: ୧୮୧୮ରେ ଅପରିଣାମଦର୍ଶୀ ଭାବରେ ଗଜପତି ପାଟ ମହାଦେବୀଙ୍କ ବିରୋଧରେ ସୁଆଗୀ ମହାଦେବୀ ଓ ସାହାଯ୍ୟକାରୀ ଗୁମ୍ମା ବିଷୋୟୀଙ୍କ ସହ ନିଜକୁ ମିଶାଇ ଦେଇଥିଲେ । ଏଥିରେ ଗଜପତି ପାଟ ମହାଦେବୀ ମାନେଜରଙ୍କ ଦଳ ହେତୁ ତୁଚ୍ଛ ପ୍ରତିପାଦିତ ହେବାରୁ ଜମିଦାରି ଛାଡ଼ି ଚିକାକୋଲ୍ ଚାଲିଗଲେ । ଗୋଟିଏ ଗଣ୍ଡଗୋଳରୁ ଅନ୍ୟ ଗଣ୍ଡଗୋଳ ଆରମ୍ଭ ହେଲା ।

ରାଜାଙ୍କ ଇଚ୍ଛାରେ ବିଷୋୟୀମାନେ ସେମାନଙ୍କର ଜାଗିରି ବା ମଖାସା ଭୋଗ କରୁଥିଲେ । ଏହି ଦୁଇ ଦଳ ମଧ୍ୟରେ ଯେଉଁ ଷଡ଼ଯନ୍ତ୍ର ଓ କଳହ ହୋଇଗଲା, ତା ଫଳରେ ରାୟଗଡ଼ାର ବିଷୋୟୀଙ୍କୁ ପଦଚ୍ୟୁତ କରାଯାଇ ତାଙ୍କ ସ୍ଥାନରେ ଗୁମ୍ମା ବିଷୋୟୀଙ୍କ ଭାଇ ଦଣ୍ଡସେନାକୁ ଅବସ୍ଥାପିତ କରାଗଲା । ସୁଆଗୀ ମହାଦେବୀଙ୍କ ପ୍ରଭାବରେ ଦଣ୍ଡସେନା ଯେତେବେଳେ ରାୟଗଡ଼ାରୁ ବିତାଡ଼ିତ ହେଲେ, ତା'ର ପ୍ରତିହିଂସା ସ୍ୱରୂପ ଖ୍ରୀ: ୧୮୧୮ରେ ଦଣ୍ଡସେନା ଓ ତାଙ୍କର ଲୋକମାନେ ଗାଁ ଗଣ୍ଡା ଲୁଣ୍ଠନ କରି ପୋଡ଼ିବାକୁ ଲାଗିଲେ ଏବଂ ଗଜପତି ମହାଦେବୀଙ୍କର ପ୍ରତ୍ୟାବର୍ତ୍ତନ ପାଇଁ ଦାବୀ କଲେ । ହତଭାଗ୍ୟ ରୟତ ମାନଙ୍କୁ ଲୁଣ୍ଠନ କରିବା ପାଇଁ ଏବଂ ବିଷୋୟୀ ଓ ପିଅନ୍ ମାନଙ୍କର ଲାଭ ପାଇଁ ଏହା ଥିଲା ଏକ ସୁନ୍ଦର ସୁବିଧାଭାବ ।

ସବ୍ କଲେକ୍ଟର୍ ମି: ବେସ୍ତାର୍ଡ଼ ଗଞ୍ଜାମର ପାହାଡ଼ିଆ ଜମିଦାରିମାନଙ୍କର ବିଶେଷ ଦାୟିତ୍ୱରେ ରହିଲେ । ପାରଳାଖେମୁଣ୍ଡି ହେଲା ତାଙ୍କର ସଦର ମହକୁମା, କିନ୍ତୁ ଶାନ୍ତି ସ୍ଥାପନ ପାଇଁ କୌଣସି ଫଳପ୍ରଦ ବ୍ୟବସ୍ଥା କରାଯାଇ ନଥିଲା । ଥାକରଙ୍କ ମୃତ୍ୟୁପରେ ମି: ବେସ୍ତାର୍ଡ଼୍ କଲେକ୍ଟର୍ ଦାୟିତ୍ୱରେ ରହିଲେ । ଏ ଦେଶରେ ସେ ବହୁ ବର୍ଷ ରହିଥିବାରୁ ଓଡ଼ିଆ ଭାଷାରେ ଦକ୍ଷତା ଲାଭ କରିଥିଲେ । ପାରଳାଖେମୁଣ୍ଡିରେ ଦୁଇଟି ପରସ୍ପର ବିବଦମାନ ଦଳ ଥିବା ପର୍ଯ୍ୟନ୍ତ ଶାନ୍ତି କିମ୍ବା ଆପୋଷ ନିଷ୍ପତ୍ତି ଦୁହିଁଙ୍କର ଚିନ୍ତାର ଅଗୋଚର ଥିଲା । ଖ୍ରୀ: ୧୮୨୦ ଓ ୧୮୨୧ରେ ମି: ବେସ୍ତାର୍ଡ଼୍‌ଙ୍କ ଚେଷ୍ଟା ସତ୍ତ୍ୱେ ବିଷୋୟୀ ଓ ଟାଉନ୍ ପିଅନ୍‌ଙ୍କ ମଧ୍ୟରେ ଗଣ୍ଡଗୋଳ ତଥାପି ଲାଗି ରହିଲା ।

ଖ୍ରୀ: ୧୮୨୦ରୁ ୧୮୩୦ ମଧ୍ୟରେ ଗଜପତି ପାଟ ମହାଦେବୀ ଓ ସୁଆଗୀ ମହାଦେବୀଙ୍କ ମଧ୍ୟରେ ସଂଘର୍ଷ ଅପ୍ରତିହତ ଭାବରେ ଚାଲିଲା । ସେମାନେ ଯଥାକ୍ରମେ ଗୁମ୍ମା ବିଷୋୟୀ ଓ ଜିରାଙ୍ଗ ବିଷୋୟୀଙ୍କ ଦଳ ଦ୍ୱାରା ସମର୍ଥିତ ହେଉଥିଲେ । ସଂଘର୍ଷର ଅବସାନ ଘଟିବା ଦୂରେ ଥାଉ; ବରଂ ଶାସନ କ୍ଷେତ୍ରରେ ଗୁରୁତର ଜଟିଳତା ଦେଖାଗଲା । ତେଣୁ ଦୁଇ ରାଣୀ ଓ ସେମାନଙ୍କ ଅନୁଗାମୀଙ୍କର ସମ୍ପୃକ୍ତି ପ୍ରଭାବକୁ ବାଦ ଦେଇ ଜମିଦାରିର ପ୍ରତ୍ୟକ୍ଷ ପରିଚାଳନା ଭାର ହାତକୁ ନେବା ପାଇଁ କଲେକ୍ଟର୍‌ଙ୍କୁ ନିର୍ଦ୍ଦେଶ ଦିଆଗଲା ପୁଣି ସର୍ବସାଧାରଣରେ ନୋଟିସ୍ ଦିଆଗଲା ଯେ, ରାଜାଙ୍କର ନାବାଳକତ୍ୱ ଚାଲିଗଲା ପରେ ତାଙ୍କୁ ଜମିଦାରିର ଦାୟିତ୍ୱ ଦିଆଯିବ (୩୧) ।

ଇତ୍ୟବସରରେ ନାବାଳକ ରାଜା ମାନେଜର ନରସିଂହ ରାଓଙ୍କୁ ବହିଷ୍କାର କରିବା ପାଇଁ ନିଜ ଇଚ୍ଛା ପ୍ରକାଶ କଲେ । ମାନେଜର ନିଜ ଇଚ୍ଛାରେ କାର୍ଯ୍ୟରୁ ଇସ୍ତଫା ପ୍ରଦାନ କଲେ । ଏହାପରେ ରାଜା ଘୋଷଣା କଲେ ଯେ ସେ ଜମିଦାରୀର ପରିଚାଳନା ନିଜ ହାତକୁ ନେବେ (୩୧) ।

ଖ୍ରୀ: ୧୮୬୦, ସେପ୍ଟେମ୍ବର ମାସରେ ଗଜପତି ପାଟ ମହାଦେବୀ ଚିକାକୋଲରୁ ଖିମୁଣ୍ଡି ଆସିବାପାଇଁ ଅନୁମତି ପାଇଲେ ! ଏଥିରୁ ପ୍ରମାଣିତ ହୁଏ ଯେ, ଇଂରେଜ ଅଫିସରମାନେ ଜାଣି ଶୁଣି ଖିମୁଣ୍ଡିରେ ଆଉ ଏକ ଅସୁବିଧା ସୃଷ୍ଟି କଲେ । ପାଟ ମହାଦେବୀଙ୍କ ଉପସ୍ଥିତି ପାରଳାଖିମୁଣ୍ଡିରେ ନୂତନ ସଂଘର୍ଷ ସୃଷ୍ଟି ପାଇଁ କ୍ଷେତ୍ର ପ୍ରସ୍ତୁତ କଲା । ବିରୋଧୀମାନେ ପରସ୍ପର ମଧ୍ୟରେ ଶତ୍ରୁତା କରିବାକୁ ସୁଯୋଗ ପାଇଲେ ଏବଂ ଦୁଇ ଦଳର ପିଅନ୍ ପୂର୍ବପରି ପାରସ୍ପରିକ ବିଦ୍ୱେଷରେ ମାତି ରହିଲେ । ମି: ବେୟାର୍ଡ୍ ଉଭୟ ଦଳ ମଧ୍ୟରେ ଥିବା ବିବାଦ ସମାଧାନ କରିବାକୁ ବୃଥା ଚେଷ୍ଟା କରିଥିଲେ । ତାଙ୍କ ମତାନୁଯାୟୀ ରାଜାଙ୍କ ଦଳ ଥିଲା ଦୁର୍ବଳ ଓ ଗଜପତି ପାଟମହାଦେବୀଙ୍କର ଦଳ ଥିଲା ସବୁଠାରୁ ଶକ୍ତିଶାଳୀ ।

ଦୁଇ ବିରୋଧୀ ଦଳର କଳହ ବଢ଼ି ଚାଲିଲା । ୧୮୬୧ରେ ଜମା ଆଦାୟ କମିଗଲା । ସାତଟି ଜଗୀରଯୁକ୍ତ ଗାଁକୁ ପୋଡ଼ି ଦିଆଗଲା । ପରିସ୍ଥିତିର ରିପୋର୍ଟ ଦେବାକୁ ଯାଇ ମି: ବେୟାର୍ଡ୍ ତାଙ୍କର ରିପୋର୍ଟରେ କହିଛନ୍ତି ଯେ ରାଜା ଦାୟିତ୍ୱ ଗ୍ରହଣ କରି ଦେବାନ୍ ନିତ୍ୟାନନ୍ଦ ପାଢ଼ୀଙ୍କ ଉପରେ ପୂରା କ୍ଷମତା ନ୍ୟସ୍ତ କଲେ । ସେ କିନ୍ତୁ ଶକ୍ତିଶାଳୀ ଦଳ ପ୍ରତି ବିଶେଷ ଶାନ୍ତିପ୍ରଦ ବ୍ୟବସ୍ଥା ଗ୍ରହଣ କଲେ ନାହିଁ । ଟାଉନ୍ ପିଅନ୍‌ମାନେ ତାଙ୍କର ଏ ଦୁର୍ବଳତା ଲକ୍ଷ୍ୟ କରି ସବୁ ଦିଗରେ ପୋଡ଼ା ଜଳା ଆରମ୍ଭ କରିଦେଲେ । ରାଜାଙ୍କ ଥାନା ଉପରେ ଆକ୍ରମଣ ହେଲା । ସବୁ ଅସନ୍ତୁଷ୍ଟ ଲୋକ ଖିମୁଣ୍ଡି ନିକଟବର୍ତ୍ତୀ ଏକ ବଗିଚାରେ ଏକତ୍ରିତ ହୋଇ ନୂଆ ଦେବାନ୍‌ଙ୍କ କବଳରୁ ମୁକ୍ତ ହେବାପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସେମାନଙ୍କର ପରାମର୍ଶ ଅନୁସାରେ ରାଜା ଅନିଚ୍ଛା ସତ୍ତ୍ୱେ ଦେବାନ୍‌ଙ୍କୁ ସଙ୍ଗେ ସଙ୍ଗେ ବହିଷ୍କାର ଆଦେଶ ଦେଲେ (୩୨) ।

ନିତ୍ୟାନନ୍ଦ ପାଢ଼ୀଂକର ବହିଷ୍କାର ପରେ ସମସ୍ଥାନମ୍‌ର ମଜୁମ୍‌ଦାର ଗୋପୀନାଥ ପଟ୍ଟନାୟକଂକ ଉପରେ ରାଜ୍ୟ ପରିଚାଳନାର ଦାୟିତ୍ୱ ନ୍ୟସ୍ତ ହେଲା । କଲେକ୍ଟରଂକ ତରଫରୁ ତାଙ୍କୁ ମଧ୍ୟ ପୋଲିସର ମୁଖ୍ୟ ଭାବରେ ନିଯୁକ୍ତ କରାଗଲା । ମାନ୍ଦ୍ରାଜର ଗଭର୍ଣ୍ଣର୍ ସାର୍ ଟମାସ୍ ମୁନ୍‌ରୋଂକର ପରିଦର୍ଶନ ସମୟରେ ଖିମୁଣ୍ଡିର ଅବସ୍ଥା ଶାନ୍ତ ଥିଲା, ଯଦିଓ ରାଣୀଂକ ମଧ୍ୟରେ ଦଳଗତ ମନୋଭାବ ସେହିପରି ଅତୁଟ ଥିଲା । ଗଜପତି ପାଟ ମହାଦେବୀଂକର ଲକ୍ଷ୍ୟ ଥିଲା : ବ୍ୟକ୍ତିଗତ ନିୟନ୍ତ୍ରଣ ଓ ରାଜ୍ୟ ପରିଚାଳନା ବ୍ୟାପାରରେ

(୩୧) Ibid, PP. 228-230

(୩୨) Ibid, PP. 230-232

ନିର୍ଦ୍ଦେଶ ଦାନ । ସୁଆଗୀ ମହାଦେବୀ ପଦ୍ମନାଭ ଦେବଙ୍କୁ ମାନେଜର ଭାବରେ ପୁଣି ନିଯୁକ୍ତ କରିବାକୁ ସାର୍ ଟମାସ୍ ମୁନ୍‌ରୋଙ୍କୁ ବିଷୋପ୍ତୀଂକ ନାମରେ ଚଠି ପ୍ରେରଣ କରିଥିଲେ । ପଦ୍ମନାଭ ଦେବ ମଧ୍ୟ ବ୍ୟକ୍ତିଗତ ଭାବରେ ଏହି ଘଟଣା ଉପରେ ଜୋର ଦେଇ ରାଜାଂକର ମଙ୍ଗଳ ପାଇଁ ନିଜର ବ୍ୟଗ୍ରତା ପ୍ରକାଶ କରିଥିଲେ । ରାଜାଂକର ନାବାଳକତ୍ୱ ସମୟରେ ଯେଉଁ ଅର୍ଥ ଜମା ରହୁଥିଲା, ତାକୁ ହାତ କରିବା ପାଇଁ ପଦ୍ମନାଭ ଦେବଙ୍କ ପକ୍ଷରେ ଏକ ସୁଯୋଗ ଜୁଟିବାର ଆଶଙ୍କା କରି କଲେକ୍ଟର୍ ଓ ସବ୍ କଲେକ୍ଟର୍ ରାଜ୍ୟ ପରିଚାଳନାକୁ ତାଙ୍କର ଫେରି ଆସିବା ଚାହୁଁ ନଥିଲେ । ସାର୍ ଟମାସ୍ ମୁନ୍‌ରୋ ମଜୁମ୍‌ଦାର ଗୋପୀନାଥ ପଟ୍ଟନାୟକଙ୍କ ହସ୍ତରେ ରାଜ୍ୟ ଶାସନ ଛାଡ଼ିଦେବାକୁ ଦୃଢ଼ମନା ହୋଇଥିଲେ । କ୍ଷମତା ପ୍ରାପ୍ତ ବ୍ୟକ୍ତି ଓ ସେମାନଙ୍କୁ ବିତାଡ଼ିତ କରିବାପାଇଁ ଚେଷ୍ଟିତ ଥିବା ବ୍ୟକ୍ତିମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ଯୋଗୁଁ ସାଧାରଣ ଲୋକ ବହୁ ଯନ୍ତ୍ରଣା ଭୋଗିଥିଲେ । ଖ୍ରୀ: ୧୮୨୩ରେ ଯେଉଁ ଅତ୍ୟାଚାର ହୋଇଥିଲା ତା'ର ମୂଳରେ ଥିଲେ ମାନେଜର ଗୋପୀନାଥ ପଟ୍ଟନାୟକ ଓ ରେକନା ଚନ୍ଦ୍ରୁ (ଟାଉନ୍ ପିଅନ୍‌ମାନଙ୍କର ସର୍ଦ୍ଦାରଙ୍କର ମୁଖିଆ) । ପ୍ରତିପକ୍ଷର ଗୃହ ଲୁଣ୍ଠନ ଓ ଗୃହ ଦାହ ଅପରାଧରେ ସେମାନଙ୍କୁ ଫୌଜଦାରୀ ଅଦାଲତକୁ ପଠାଯାଇଥିଲା (୩୩) ।

ବିବାଦ ଏଡ଼ାଇ ଜମିଦାରିରେ ଶାନ୍ତି ସ୍ଥାପନ ନିମିତ୍ତ ପ୍ରାପ୍ତବୟସ୍କ ହେବା ପୂର୍ବରୁ ନାବାଳକ ରାଜା ଜଗନ୍ନାଥ ନାରାୟଣ ଦେବଙ୍କୁ ରାଜ୍ୟ ଦେଇ ଦେବାପାଇଁ ସରକାର ଦୃଢ଼ ପ୍ରତିଜ୍ଞ ହୋଇଥିଲେ । ଖ୍ରୀ: ୧୮୨୧ରେ ତାଙ୍କୁ ପାରଳା ସିଂହାସନରେ ଅଭିଷିକ୍ତ କରାଯାଇଥିଲା । କିନ୍ତୁ ସେ ନାମକୁ ମାତ୍ର ରାଜା ହୋଇଥିଲେ । ଶାସନରେ ତାଙ୍କର ସେପରି ଦୂର ଦୃଷ୍ଟି, ଅଭିଜ୍ଞତା ବା ଦକ୍ଷତା ନଥିଲା, ପରନ୍ତୁ ସେ ଥିଲେ ବିଳାସପ୍ରିୟ, ଅତ୍ୟନ୍ତ ଇନ୍ଦ୍ରିୟସୁଖ ପରାୟଣ । ଖ୍ରୀ: ୧୮୨୩ରେ ଯୁବ ଜମିଦାରଙ୍କ ଆଚରଣ ସମ୍ପର୍କରେ ସରକାରଙ୍କୁ ପଠାଯାଇଥିବା ରିପୋର୍ଟରୁ ଜଣାପଡ଼େ ଯେ ଜମିଦାର ଆଳସ୍ୟପରାୟଣ ଥିଲେ । ଭୃତ୍ୟମାନେ ତାଙ୍କୁ ପ୍ରତାରିତ କରୁଥିଲେ । ଆଦାୟ ହୋଇଥିବା ଅର୍ଥ ବ୍ୟକ୍ତିଗତ ବିଳାସବ୍ୟସନ ପାଇଁ ବ୍ୟୟ କରୁଥିଲେ । ପିଅନ୍ ଓ ଭୃତ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ବୃଦ୍ଧି ପାଇଥିଲା । କଲେକ୍ଟର୍ ପଦ୍ମନାଭ ଦେବଙ୍କୁ ପୁଣି ମାନେଜର ଭାବରେ ନିଯୁକ୍ତ କରିଥିଲେ (୩୪) । ଫଳରେ ବିବଦମାନା ସୁଆଗୀ ମହାଦେବୀ ଓ ରାଜପଥ ପାଟ ମହାଦେବୀ ନିଜ ନିଜର ସମର୍ଥକ ତଥା ସାହାଯ୍ୟକାରୀ ପାତ୍ର ଓ ପରିଚାଳକଙ୍କ ଦ୍ୱାରା ଶାସନରେ ହସ୍ତକ୍ଷେପ କରୁଥିଲେ । ଗୁମ୍ଫା ବିଷୋୟୀଙ୍କ ଅଧୀନରେ ପରିଚାଳିତ ଶକ୍ତିଶାଳୀ ଦଳକୁ ମାନେଜର ଗୋପୀନାଥ ପଟ୍ଟନାୟକ ଉତ୍ତେଜିତ କରୁଥିଲେ । ପାରଳାଖେମୁଣ୍ଡିର ଦୁର୍ଦ୍ଦାନ୍ତ ପିଅନ୍‌ମାନେ ସେମାନଙ୍କର ପରିବାରବର୍ଗଙ୍କୁ ଅନ୍ୟତ୍ର ପଠାଇ ଦେଇ ପୋଡ଼ା

(୩୩) Ibid, PP. 232-234

(୩୪) The Ganjam Records, vol.3905 (As quoted in H.O.G., II, P. 234)

ଜଳା ଓ ଲୁଟ୍‌ତରାଜ ଆରମ୍ଭ କଲେ । ଖ୍ରୀ: ୧୮୨୨ରୁ ୧୮୩୦ ପର୍ଯ୍ୟନ୍ତ ପାରଳାଖିମୁଣ୍ଡିର ଜମିଦାରୀ ଏହିପରି ଅଶାନ୍ତ ଅବସ୍ଥାରେ ରହିଥିଲା ଏବଂ ଜମିଦାରୀ ବିକଳ୍ପ ଭାବରେ ଗୋପୀନାଥ ପଟ୍ଟନାୟକ ଓ ପଦ୍ମନାଭ ଦେବଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସେମାନେ ଥିଲେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ (୩୫) ।

ପଦ୍ମନାଭ ଦେବ ମାନେଜର ଭାବରେ ଯେତେବେଳେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ, ସେତେବେଳେ ରାଜ୍ୟରେ ଅଶାନ୍ତି ପ୍ରବଳତର ହୋଇଥିଲା । ଏପରି ପରିବେଶ ସୃଷ୍ଟି କରାଯାଇଥିଲା : ଯେଉଁଥିରେ ରାଜା ଶାସନରେ ଅଭିଜ୍ଞତା ଓ ଦକ୍ଷତା ଅର୍ଜନ କରିବା ତ ଦୂରର କଥା ତୋଷାମଦକାରୀଙ୍କ ଦ୍ୱାରା ତାଙ୍କୁ ଏକ ପ୍ରକାର ବିଳାସ ବ୍ୟସନରେ ବୁଡ଼ାଇ ରଖା ଯାଇଥିଲା । ରାଜବଂଶର ବିବାଦ, ରାଜାଙ୍କର ଇନ୍ଦ୍ରିୟାସକ୍ତି ଓ ଅସାମର୍ଥ୍ୟର ସୁଯୋଗ ନେଇ ପଦ୍ମନାଭ ଦେବ ମନମୁଖୀ ଶାସନ ଚଳାଇଲେ, ଏପରିକି ରାଜାଙ୍କର ଆଦେଶକୁ ତିଳେମାତ୍ର ଭ୍ରୂକ୍ଷେପ କଲେ ନାହିଁ । ମାନେଜରଙ୍କ ଏ କାର୍ଯ୍ୟରେ ରାଜ୍ୟର ବିଷୋୟୀ ଓ ଦୋରାମାନେ ଅଧିକ ଅସନ୍ତୁଷ୍ଟ ହୋଇ ଅଶାନ୍ତିର ସୂତ୍ରପାତ କଲେ । ପାଟ ମହାଦେବୀଙ୍କ ସମର୍ଥନକାରୀ ପାତ୍ର ଗୋପୀନାଥ ପଟ୍ଟନାୟକ ଥିଲେ ଏହି ବିଦ୍ରୋହୀମାନଂକର ଗୋପନ ପରାମର୍ଶଦାତା ଏବଂ ଅବସ୍ଥା ଚକ୍ରରେ ଯୁବ କବି ଗୋପାଳକୃଷ୍ଣ ଏହି ବିଦ୍ରୋହର ଥିଲେ ସମର୍ଥକ । ପଦ୍ମନାଭ ଦେବଂକ ଔଦ୍ଧତ୍ୟପୂର୍ଣ୍ଣ ବ୍ୟବହାରରେ ରାଜା

(୩୫) (a) In order to secure the peace of the Zemindari it was determined to deliver the country over at once to the minor Raja Jagannath Narayan Deo, without waiting for his coming of age.

(b) The young Raja was incapable and sensual, and Gopinath Patnayak, the new manager, gave offence to the more powerful party under the Guma Bissoyi. The town peons, who were the bullies of Parlakimedi moved away their families and commenced burning and plundering. The Zemindary continued in a disturbed state between 1822 and 1830, and the country was alternatively managed by Gopinath Patnayak, Padmanabhava Deo and the rival factions, who met and fought out their quarrels in the streets of Kimedi.

T. J. Maltby, ed. by G. D. Leman, M. C. S., The Ganjam District Manual, Madras, 1918; P. 144

ଅସନ୍ତୁଷ୍ଟ ହୋଇ ମାନେଜର ପଦରୁ ତାଙ୍କୁ ବହିଷ୍କୃତ କରିବା ପାଇଁ ଗଞ୍ଜାମର ତତ୍କାଳୀନ କଲେକ୍ଟରଙ୍କୁ ନିବେଦନ କରିଥିଲେ, ଫଳରେ ପଦ୍ମନାଭ ଦେବଂକର ପଦଚ୍ୟୁତି ଘଟିଥିଲା ।

କରଣମାନଂକର ବିଶେଷତଃ ଗୋପୀନାଥ ପଟ୍ଟନାୟକ ଓ ଗୋପାଳକୃଷ୍ଣଂକ ପରାମର୍ଶରେ ଏହା ଘଟିଛି ବୋଲି ପଦ୍ମନାଭ ଦେବ ସନ୍ଦେହ କରି ସେ ଦୁଇଜଣ ଓ ପାରଳା ଅଧିବାସୀ ଅନ୍ୟ କରଣମାନଂକ ପ୍ରତି କ୍ରୋଧାନ୍ୱିତ ଥିଲେ । କାହାରି କାହାରି ମତରେ ସ୍ୱାର୍ଥଲିପ୍ସୁ କର୍ମଚାରୀମାନେ ଗୋପୀନାଥ ଓ ଗୋପାଳକୃଷ୍ଣଙ୍କୁ ମାରିଦେବାକୁ ଷଡଯନ୍ତ୍ର କରିଥିଲେ (୩୬) । ରାଜ୍ୟରେ ବିଦ୍ରୋହ, ଧ୍ୱଂସ ଓ ଲୁଣ୍ଠତରାଜ କାମ ପୂର୍ବପରି ଲାଗି ରହିଲା । ରାଜସ୍ୱ ଠିକ୍ ଭାବରେ ଆଦାୟ ହୋଇ ପାରିଲା ନାହିଁ । କମ୍ପାନୀ ସରକାରଙ୍କ ପାଖରେ ଯଥା ସମୟରେ ପେସ୍‌କସ୍ ଦାଖଲ କରାଯାଇ ପାରିଲା ନାହିଁ । ଫଳରେ ଖ୍ରୀ: ୧୮୨୯ରେ ରାଜ୍ୟକୁ ପେସ୍‌କସ୍ ବାକି ହେତୁ ଜବତ କରାଗଲା । ରାଜ୍ୟ ଶାସନରେ ରାଜାଂକର ଅଯୋଗ୍ୟତା ଓ ଅସାମର୍ଥ୍ୟ କଂପାନୀ ସରକାର ଉପଲବ୍ଧି କରିପାରି ଖ୍ରୀ:୧୮୩୦ରେ ପୁଣି ଥରେ ରାଜ୍ୟକୁ ହାତକୁ ନେଇ କୋର୍ଟ ଅବ୍ ୱାର୍ଡସ୍ ଅଧୀନରେ ପରିଚାଳନା କଲେ (୩୭) ।

'ଗଞ୍ଜାମ ରେକର୍ଡସ୍'ରେ ଉଲ୍ଲେଖ ଅଛି ଯେ ତା ୧୫-୫-୧୮୩୦ରେ ଜମିଦାର ଓ ମହାଦେବୀ ରାଜ୍ୟ ପରିଚାଳନାରେ ଅକ୍ଷମ ହୋଇ ଏହାକୁ ହାତକୁ ନେବାପାଇଁ ସରକାରଙ୍କୁ ଅନୁରୋଧ କଲେ । କଲେକ୍ଟର୍ ଜମିଦାର, ମହାଦେବୀ ଓ ଗଜପତି ପାଟ ମହାଦେବୀଙ୍କୁ ଏକ ସଭାକୁ ଡକାଇଲେ । କିନ୍ତୁ ସୁବିଧାବାଦୀ ଲୋକଙ୍କ ଦ୍ୱାରା କଲେକ୍ଟରଙ୍କ ପ୍ରଚେଷ୍ଟା ବ୍ୟର୍ଥ ହେଲା, ସେଥିପାଇଁ ସେ ଜମିଦାରକୁ କୋର୍ଟ ଅବ୍ ୱାର୍ଡସ୍ ଅଧୀନରେ ରଖିବା ପାଇଁ ସୂଚନା ଦେଲେ । ଦୁଇମାସ ପରେ କଲେକ୍ଟର୍ ଜମିଦାରୀର ଦାୟିତ୍ୱ ନେଲେ ଏବଂ ପଦ୍ମନାଭ ଦେବଙ୍କୁ ଏହାର ମାନେଜର ଭାବରେ ନିଯୁକ୍ତ କଲେ । ତା'ପରେ ଜମିଦାର ପ୍ରତିବେଶୀ ଜମିଦାରୀ ତରଳାରେ ଯାଇ ବାସ କଲେ । ତାଙ୍କର କେତେକ ବନ୍ଧୁ ବିଦ୍ରୋହାତ୍ମକ ମନୋବୃତ୍ତି ପୋଷଣ କରିବାରୁ ପୁଣି

(୩୬) ଗୋ. କୃ. ଗ୍ରଂ, ପ୍ରଥମ ଭାଗ, ସଂପା: ସ. କୁ. ପା., ସଂକ୍ଷିପ୍ତ ଜୀବନୀ, ପୃ. ୫

(୩୭) The revenues of the country naturally suffered, and in 1929 the Zemindary was attached for arrears. The work of plunder and destruction however still continued and the Raja was gradually lapsing into a state of imbecility, the result of self-indulgence. The Zemindary was at length once more resumed by Government in 1830, and its affairs placed under the court of wards. G. D. M. P. 144

ପାରଳାକୁ ଫେରି ଆସିବା ପାଇଁ ଆଦିଷ୍ଟ ହେଲେ । ବୋର୍ଡ଼ ଅଫ୍ ରେଭିନ୍ୟୁଙ୍କ ଦ୍ୱାରା କ୍ଷମତା ପ୍ରାପ୍ତ ହୋଇ କଲେକ୍ଟର୍ ଗଜପତି ପାଟ ମହାଦେବୀଙ୍କୁ ପୁରୀରେ ବାସ କରିବା ପାଇଁ ଆଦେଶ ଦେଲେ (୩୮) । କିନ୍ତୁ ପୂର୍ବ ପଦଚ୍ୟୁତ ମାନେଜର ପଦ୍ମନାଭ ଦେବଙ୍କୁ ସରକାର ପୁନଶ୍ଚ ମାନେଜର ଭାବରେ ନିଯୁକ୍ତ କରି ବଡ଼ ଭୁଲ କଲେ । ଏଥିରେ ତାଙ୍କଠାରୁ ପ୍ରତିଶୋଧର ଆଶଙ୍କା କରି ପ୍ରାୟ ପଚିଶ ଜଣ ପର୍ଯ୍ୟନ୍ତ କରଣ ଓ କଟକିଆ ବ୍ରାହ୍ମଣ କର୍ମଚାରୀ ପାରଳା ଛାଡ଼ି ଗଞ୍ଜାମ ଓ ଗୁଣୁପୁର ଆଡ଼େ ଚାଲିଯାଇଥିଲେ । ପଳାତକ ମାନଙ୍କ ମଧ୍ୟରେ ଗୋପାଳ-କୃଷ୍ଣ ଥିଲେ ଅନ୍ୟତମ । ରାଜ୍ୟରେ ବିଦ୍ରୋହ ଓ ଅଶାନ୍ତି ସତ୍ତ୍ୱେ ପରେ ପଦ୍ମନାଭ ଦେବ କରଣମାନଙ୍କ କାର୍ଯ୍ୟ ଦକ୍ଷତା ହୃଦୟଙ୍ଗମ କରିପାରି ମହାରାଜାଙ୍କ ନିର୍ଦ୍ଦେଶ କ୍ରମେ ରାଜ୍ୟକୁ ଫେରି ଆସିବାକୁ ସେମାନଙ୍କୁ ଅଭୟ ଦେଇଥିଲେ ଏବଂ ସ୍ୱ ସ୍ୱ କାର୍ଯ୍ୟରେ ନିଯୁକ୍ତି ଆଦେଶ ଦେଇଥିଲେ । ଫଳରେ ପଳାତକମାନେ ପାରଳାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । କିନ୍ତୁ ପଦ୍ମନାଭ ଦେବଙ୍କୁ ସେମାନେ ପୂର୍ଣ୍ଣ ବିଶ୍ୱାସ କରି ପାରିଲେ ନାହିଁ । ପଦ୍ମନାଭ ଦେବ ପୂର୍ବପରି ଦାୟିତ୍ୱହୀନ ହୋଇପଡ଼ିଲେ । ତାଙ୍କ ବିରୋଧରେ ବିଷୋୟୀ, ଦୋରା ଓ ସିଅନ୍-ମାନଙ୍କ ଷଡ଼ଯନ୍ତ୍ର ଖ୍ରୀ: ୧୮୩୪ରେ ପୁଣି ଏକ ବିଦ୍ରୋହ ରୂପ ନେଲା (୩୯) । ଖ୍ରୀ: ୧୮୩୨ରେ ରାଜାଙ୍କର ମାନେଜର ଥିବା ଗୋପୀନାଥ ପଟ୍ଟନାୟକଙ୍କ ଗୋପନ ପରାମର୍ଶ ବିଦ୍ରୋହରେ ଇନ୍ଧନ ଯୋଗାଇଲା । ଅନେକ ଲୋକ ଧ୍ୱଂସ ଓ ଲୁଣ୍ଠନ କାର୍ଯ୍ୟରେ ଲାଗି ରହିଲେ । ସେମାନଙ୍କର ସର୍ଦ୍ଦାର ଥିଲା ଗୋଦାୟା ପାଢ଼ୀ କୃଷ୍ଣ ନାମ ଦୋରା (୪୦) ।

ବିଦ୍ରୋହରେ (ଫିରୁରି) ଶବରମାନଙ୍କ ଯୋଗୁଁ ବହୁ ରଯ୍ୟତଙ୍କର ମୃତ୍ୟୁ ଘଟିଲା । ବିଦ୍ରୋହୀମାନେ ସେମାନଙ୍କର ସମ୍ପତ୍ତି ଓ ଗୃହ ପାଳିତ ପଶୁ ଲୁଣ୍ଠନ କଲେ । ସ୍ତ୍ରୀଲୋକ-ମାନଙ୍କ ଉପରେ ପ୍ରକାଶ୍ୟ ଅତ୍ୟାଚାର ଚାଲିଲା । ନିଜର ସ୍ତ୍ରୀ ଓ କନ୍ୟାଙ୍କ ପ୍ରତି ଘଟିଥିବା ଅସମ୍ମାନ ହେତୁ ଚାଷୀମାନେ ରାଜ୍ୟ ତ୍ୟାଗ କଲେ । ପଦ୍ମନାଭ ଦେବ ନିଜର ମନ୍ଦ ଆଚରଣ ଓ ବ୍ୟବହାର ହେତୁ ଦୁଇଥର କାର୍ଯ୍ୟରୁ ବହିଷ୍କୃତ ହୋଇ ପୁଣି ନିଯୁକ୍ତ ହୋଇଥିଲେ । ଖ୍ରୀ : ୧୮୩୨ ରେ ତାଙ୍କର ମୃତ୍ୟୁ ହେଲା । କଲେକ୍ଟର୍ ତାଙ୍କ ସ୍ଥାନରେ ତଲୀ ଜଗନ୍ନାଥ ରାଓଙ୍କୁ ପାରଳାଖିମୁଣ୍ଡିର ମାନେଜର ଭାବରେ ନିଯୁକ୍ତ କଲେ (୪୧) । ମହୁରୀ ଓ ଆଠଗଡ଼ରେ ପ୍ରଶାସନିକ ଦକ୍ଷତାର ପରିଚୟ ଦେଇଥିବା କବିସୂର୍ଯ୍ୟ ବଳଦେବ ରଥ ରାଜ ଅଭିଭାବକ ଭାବରେ ନିଯୁକ୍ତ ହେଲେ ।

କବି ସୂର୍ଯ୍ୟ ଗ୍ରନ୍ଥାବଳୀର ସମ୍ପାଦକ ପଣ୍ଡିତ କୁଳମଣି ଦାଶଙ୍କ ବିବରଣୀ ଅନୁଯାୟୀ ଗଞ୍ଜାମର ତତ୍କାଳୀନ କଲେକ୍ଟର୍ ମିଷ୍ଟର ବେୟାର୍ଡ୍ଙ୍କ (Robert Bayard Esq.

(୩୮) H. O. G., Part II, PP. 235-236
(୩୯) G. D. M., Madras, 1918. P. 144
(୪୦) Ibid, P. 144
(୪୧) Letters from the Revenue Department dated 31-1-1832
H. O. G. PP. 237-238.

Collector, 1827-1830) ସମ୍ଭବତଃ ମାନେଜର ପଦ୍ମନାଭ ଦେବ କବିସୂର୍ଯ୍ୟଙ୍କୁ ଅପ୍ରାପ୍ତ ବୟସ୍କ ରାଜାଙ୍କର ଗୃହଶିକ୍ଷକ (Guardian tutor) ରୂପେ ନିଯୁକ୍ତ କରି ପାରଳାଖେମୁଣ୍ଡିକୁ ଡକାଇ ନେଲେ । ଓଡ଼ିଆ ଭାଷାରେ ପଣ୍ଡିତ ବେୟାର୍ଡ଼ ସାହେବ କବିସୂର୍ଯ୍ୟଙ୍କ ନିଯୁକ୍ତିରେ ଆନନ୍ଦ ପ୍ରକାଶ କରି ତାଙ୍କୁ କାର୍ଯ୍ୟରେ ଶୀଘ୍ର ଯୋଗ ଦେବାକୁ ଅନୁରୋଧ କଲେ । ପାରଳାର ଘୋର ଅଶାନ୍ତ ସମୟରେ କବିସୂର୍ଯ୍ୟ କାର୍ଯ୍ୟରେ ଯୋଗ ଦେଲେ । × × × ବଳଦେବ ଏହି ଦୁଃସମୟରେ ରାଜାଙ୍କୁ ପ୍ରାୟ ପାଞ୍ଚବର୍ଷ କାଳ ଅତି ସତର୍କତାର ସହିତ ରକ୍ଷା କରିଥିଲେ ଏବଂ ବିଦ୍ରୋହ ଦମନରେ ସ୍ଥାନୀୟ କର୍ମଚାରୀଙ୍କୁ ସାହାଯ୍ୟ କରିଥିଲେ (୪୨) ।

କିନ୍ତୁ ଶ୍ରୀ ଦାଶରଥି ଦାସ ପଣ୍ଡିତଙ୍କର ଏ ମତ ଖଣ୍ଡନ କରି କହନ୍ତି ଯେ ମିଷ୍ଟର ବେୟାର୍ଡ଼ଙ୍କ ପରାମର୍ଶ କ୍ରମେ ପଦ୍ମନାଭ ଦେବ ବଳଦେବଙ୍କୁ ଜଗନ୍ନାଥ ଦେବଙ୍କର ଗୃହ ଶିକ୍ଷକ ରୂପେ କେବେ ଡକାଇ ଆଣି ନଥିଲେ, କେଉଁ କର୍ତ୍ତୃତ୍ୱରେ ସେ ଡକାଇ ନେବେ ? ରାଜ୍ୟ ଯେତେବେଳେ କୋର୍ଟ ଅଫ୍ ୱାର୍ଡ଼ସ୍ ଅଧୀନକୁ ଆସିଲା, କଲେକ୍ଟର୍ ରାଜ୍ୟର ସର୍ବୋଚ୍ଚ ଶାସନ କର୍ତ୍ତା, ସେ ବା କାହିଁକି କେବଳ ପରାମର୍ଶ ଦେବାକୁ ଯିବେ ? ପୁଣି ମିଷ୍ଟର ବେୟାର୍ଡ଼ ଖ୍ରୀ : ୧୮୩୦, ଜାନୁୟାରୀ ୧୧ ତାରିଖ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାର କଲେକ୍ଟର୍ ଦାୟିତ୍ୱରେ ଥିଲେ, ତାଙ୍କ ପରେ ୧୮୩୦ ଖ୍ରୀଷ୍ଟାବ୍ଦରେ ଜଣକ ପରେ ଜଣେ ଚାରିଜଣ କଲେକ୍ଟର୍ ଗଞ୍ଜାମ ଜିଲ୍ଲାର ଦାୟିତ୍ୱ ଗ୍ରହଣ କରିଥିଲେ (ସାମୁଏଲ୍ ସ୍ମିଥ୍, ହେନେରି ଲ୍ୟାକନ୍, ଜେମ୍ସ୍ ଫ୍ରେଜର୍ ଓ ରବର୍ଟ ଇଡ଼େନ୍) । ଏମାନଙ୍କ ମଧ୍ୟରୁ କେହି ଜଣେ କବି ସୂର୍ଯ୍ୟଙ୍କୁ ପାରଳାର ରାଜ ଅଭିଭାବକ ଭାବରେ ନିଯୁକ୍ତି ଦେଇଥିଲେ । ସେ ଗୃହ ଶିକ୍ଷକ ହୋଇ ପାରଳା ଯାଇ ନଥିଲେ, ଯାଇଥିଲେ ମାନେଜର ବା ପରିଚାଳକ (ଶାସନକର୍ତ୍ତା) ରୂପେ (୪୩) ।

କିନ୍ତୁ କବିସୂର୍ଯ୍ୟ ମାନେଜର ବା ଶାସନକର୍ତ୍ତା ରୂପେ ନିଯୁକ୍ତ ନ ହୋଇ ରାଜ ଅଭିଭାବକ (Guardian) ଭାବରେ ନିଯୁକ୍ତ ହୋଇଥିବା ଅଧିକ ସ୍ପଷ୍ଟ । ଶ୍ରୀ ଦାଶରଥି ଦାସ ତାଙ୍କ ପୁସ୍ତକର (କବିସୂର୍ଯ୍ୟ କାବ୍ୟବିଭା) ୩୨ ଓ ୩୩ ପୃଷ୍ଠାରେ ଉଦ୍ଧାର କରିଥିବା ରସେଲ୍‌ଙ୍କ ରିପୋର୍ଟ ତା'ର ପ୍ରମାଣ । (କିନ୍ତୁ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କର ଗଙ୍ଗ ଇତିହାସ, ଦ୍ୱିତୀୟ ଭାଗରେ କବିସୂର୍ଯ୍ୟଙ୍କ ନିଯୁକ୍ତି ସମ୍ପର୍କରେ କୌଣସି ଉଲ୍ଲେଖ ଦେଖାଯାଏ ନାହିଁ) ।

କବିସୂର୍ଯ୍ୟ ବଳଦେବ ରଥ ରାଜ ଅଭିଭାବକ ଭାବରେ କାର୍ଯ୍ୟରେ ଯୋଗଦେବା ପରେ ମଧ୍ୟ ରାଜ୍ୟରେ ଘଟିଥିବା ବିଦ୍ରୋହ ଓ ଅଶାନ୍ତି ସେହିପରି ଲାଗି ରହିଛି । ବିଦ୍ରୋହୀ ନେତା ଗୋପୀନାଥ ପଟ୍ଟନାୟକ ଓ ତାଙ୍କର ସମର୍ଥକ କବି ଗୋପାଳକୃଷ୍ଣ କବିସୂର୍ଯ୍ୟଙ୍କ ପ୍ରତି ଅଶ୍ରଦ୍ଧା ପ୍ରକାଶ କରିନାହାନ୍ତି । କବିସୂର୍ଯ୍ୟ ରାଜ ଅଭିଭାବକ ଭାବରେ ବିଦ୍ରୋହୀମାନଙ୍କ ସମ୍ପର୍କରେ

(୪୨) କ. ସ. ଗ୍ରଂ., ସମ୍ପା: ପଣ୍ଡିତ କୁଳମଣି ଦାଶ ୧୯୪୭, ଜୀବନ ବୃତ୍ତାନ୍ତ, ପୃ. ୭୮।୭୯

(୪୩) ଶ୍ରୀ ଦାଶରଥି ଦାସ, କବିସୂର୍ଯ୍ୟ କାବ୍ୟ ବିଭା, ୧ମ ପ୍ରକାଶ, ୧୯୬୮, ପୃ. ୩୧

ସରକାରଙ୍କୁ କୌଣସି ସମ୍ବାଦ ଦେଇନାହାନ୍ତି (ବୋଧହୁଏ ପ୍ରଜା ବିଦ୍ରୋହର ଯଥାର୍ଥତା ଉପଲବ୍ଧି କରି) । ବିଦ୍ରୋହାଗ୍ନି ପ୍ରବଳତର ହୋଇଛି । ରାଜସ୍ୱ ଆଦାୟ ହୋଇପାରିନାହିଁ । ଫଳରେ କଂପାନୀ ସରକାର ଦୃଢ଼ହସ୍ତରେ ବିଦ୍ରୋହ ଦମନ କରିବାକୁ ସାମରିକ ପଦକ୍ଷେପ ଗ୍ରହଣ କରିଛନ୍ତି । ମାନ୍ଦ୍ରାଜ ରେଭିନ୍ୟୁ ବୋର୍ଡ଼ର ସିନିଅର୍ ମେମ୍ବର ଜର୍ଜ ରସେଲ୍ ସ୍ପେଶାଲ୍ କମିଶନର ଭାବରେ ନିଯୁକ୍ତ ହୋଇ ଖ୍ରୀ : ୧୮୩୨, ଡିସେମ୍ବର ମାସରେ ପାରଳାରେ ସୈନ୍ୟ ବାହିନୀ ସହ ଉପସ୍ଥିତ ହୁଅନ୍ତି । ବିଦ୍ରୋହ ଦମନ ନିମିତ୍ତ ୧୮୩୩ରେ ସାମରିକ ଆଇନ୍ ଜାରି କରନ୍ତି । ରାଜ ଅଭିଭାବକ ଭାବରେ ନିଯୁକ୍ତ ହୋଇଥିବା କବିସୂର୍ଯ୍ୟଙ୍କ ଠାରୁ ସେ ବିଦ୍ରୋହୀମାନଙ୍କ ବିରୁଦ୍ଧରେ କୌଣସି ସମ୍ବାଦ ପାଇ ନଥିବାରୁ ତାଙ୍କ ଉପରେ କ୍ଷୁବ୍ଧ ହୋଇଛନ୍ତି । ରସେଲ୍ ବିଦ୍ରୋହ ଦମନ କରିବାକୁ ଯାଇ ପୂର୍ବ ମାନେଜର ଗୋପୀନାଥ ପଟ୍ଟନାୟକ ଓ ରେଖନା ଚନ୍ଦ୍ରତୁଙ୍କୁ (ପାରଳାଖିମୁଣ୍ଡିର ଟାଉନ୍ ପିଅନ୍ ମାନଙ୍କର ସର୍ଦ୍ଦାର) ବନ୍ଦୀ କଲେ ଏବଂ ୧୮୩୩ରେ ସୈନ୍ୟବାହିନୀ ଦ୍ୱାରା ଗୁମ୍ମା ଦୁର୍ଗ ଅଧିକାର କଲେ । ଜିରଙ୍ଗ ଓ ଅନ୍ୟ ଦୁର୍ଗ ଗୁଡ଼ିକୁ ଆୟତ୍ତ କରାଗଲା । ରାୟଗଡ଼ା ଓ ଲବଣ୍ୟକୋଟର ବିକ୍ଷୋଭୀମାନେ ଅନ୍ୟ ତେରଜଣ ଯୋଦ୍ଧାଙ୍କ ସହ ଧରା ପଡ଼ି ଫାଶୀ ପାଇଲେ । ଚିକା-କୋଲର୍ ସ୍ପେଶାଲ୍ କମିଶନ୍‌ଙ୍କ ବିଚାରରେ ପଚିଶ ଜଣ ବନ୍ଦୀଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦିଆଗଲା । ବିକ୍ଷୋଭୀମାନଙ୍କ ମଧ୍ୟରେ ଥିବା ଯୋଗସୂତ୍ର କୌଶଳ ସହକାରେ ଛିନ୍ନ କରି ଦିଆଗଲା । ୧୦୩ ଜଣ ଟାଉନ୍ ପିଅନ୍‌ଙ୍କୁ ରାଜବନ୍ଦୀ ଭାବରେ ବିଚାର ପାଇଁ ଭେଲୋର୍ ପଠାଇ ଦିଆଗଲା । ପାରଳାଖିମୁଣ୍ଡିରେ ଟାଉନ୍ ପିଅନ୍ ମାନଙ୍କର ସଂଖ୍ୟା କମାଇ ଦିଆଯାଇ କେବଳ ୨୦୦ ଜଣଙ୍କୁ ଚାକରୀରେ ରଖାଗଲା । ଯେଉଁମାନେ ସରକାରଙ୍କୁ ସାହାଯ୍ୟ କରିଥିଲେ ସେମାନଙ୍କ ମଧ୍ୟରେ ପତିତ ଜମି ବାଣ୍ଟି ଦିଆଗଲା (୪୪) । ରାଜ-ଅଭିଭାବକ ପଦରୁ କବିସୂର୍ଯ୍ୟ ବହିଷ୍କାର ଆଦେଶ ପାଇଲେ । ଏହାର ପ୍ରମାଣ ସ୍ୱରୂପ ଖ୍ରୀ: ୧୮୩୬ର ରସେଲ୍‌ଙ୍କ ରିପୋର୍ଟ୍ ଦ୍ରଷ୍ଟବ୍ୟ (୪୫) । କବିସୂର୍ଯ୍ୟ ଆଠଗଡ଼ରୁ ମନ୍ଦିରା

---

(୪୪) H. O. G., II, PP. 239-241

(୪୫) In respect to the future administration of the Zamidari [Parala Kimedy] I am decidedly of the opinion that it should be kept, as at present, under the immediate management of the collector, and the Principal Native officer employed under him, as well as the guardian should be men totally unconnected with Kimedy and its politics. From the individual, (Kaweesooria Roygooroovco) who had lately filled the later situation. I never received thes lightest in formation and there is every reson to believe that

ଏବଂ ମନ୍ଦୁଖିରୁ ପାରଳାଖିମୁଣ୍ଡି ଯାଇ କମ୍ପାନୀ ସରକାରଙ୍କର ବିଶ୍ୱାସଭାଜନ ହୋଇ ନପାରି ଶାସନ କ୍ଷେତ୍ରରୁ ବିଦାୟ ଗ୍ରହଣ କରିବାକୁ ବାଧ୍ୟ ହୋଇଛନ୍ତି (୪୬) । •

ସାମରିକ ବ୍ୟବସ୍ଥା ଫଳରେ ରାଜ୍ୟରେ ବିଦ୍ରୋହର ଅବସାନ ଘଟିଲା । ଅରାଜକତା ଦୂର ହୋଇ ଧୀରେ ଧୀରେ ଶାନ୍ତି ଦେଖାଗଲା । ସରକାରଙ୍କ କ୍ଷମତା ପ୍ରତି ଲୋକେ ଭୟ ଓ ସମ୍ମାନ ପ୍ରଦର୍ଶନ କଲେ ।

କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ସମଧର୍ମୀ ହେଲେ ମଧ୍ୟ ପାରଳା ରହଣି କାଳରେ କବିସୂର୍ଯ୍ୟଙ୍କ ସହ ତାଙ୍କର ପ୍ରତ୍ୟକ୍ଷ ଆଳାପ ଓ ସମ୍ପର୍କର କିଛି ପ୍ରମାଣ ନାହିଁ । ପାରଳାର ତତ୍କାଳୀନ ପରିସ୍ଥିତି ହେତୁ ବୋଧହୁଏ ଏହା ସମ୍ଭବ ହୋଇ ପାରିନାହିଁ । ତେବେ ଗୋପାଳକୃଷ୍ଣ ବୟୋଜ୍ୟେଷ୍ଠ କବିସୂର୍ଯ୍ୟଙ୍କ ପ୍ରତିଭାକୁ ସମ୍ମାନ ପ୍ରଦର୍ଶନ କରିଛନ୍ତି କେତୋଟି ଗୀତରେ, ଯେଉଁଥିରେ ସେ କବିସୂର୍ଯ୍ୟଙ୍କ ଚଉପଦୀ-ବୃତ୍ତର ଉଲ୍ଲେଖ କରିଛନ୍ତି ।

ଜଗନ୍ନାଥ ଗଜପତି ନାରାୟଣ ଦେବ ବିଦ୍ରୋହ ଓ ଅଶାନ୍ତି ମଧ୍ୟରେ ଦିନାତିପାତ କରିଥିଲେ ମଧ୍ୟ ବଡ଼ କାବ୍ୟ ଓ ସଙ୍ଗୀତ ପ୍ରିୟ ଥିଲେ । ତାଙ୍କର ପୃଷ୍ଠପୋଷକତାରେ ତାଙ୍କର ଅନ୍ୟ ସଭାକବି ପଦ୍ମନାଭ ପରୀକ୍ଷା ଓ ରଘୁନାଥ ପରୀକ୍ଷାଙ୍କ (ସଙ୍ଗୀତ ଲେଖକ) ସହ ଗୋପାଳକୃଷ୍ଣ ନିଜର ପ୍ରତିଭାର ବିକାଶ ଘଟାଇ ଥିଲେ । ପଦ୍ମନାଭ ପରୀକ୍ଷା 'ଗୋପୀନାଥ ବଲ୍ଲଭ' ନାମକ ପ୍ରଥମ ଓଡ଼ିଆ ନାଟକ ରଚନା କରିଥିଲେ । ରଘୁନାଥ ପରୀକ୍ଷା ପୁରୀର ଗଜପତି ରାଜାଙ୍କ ଦ୍ୱାରା 'କବିଚନ୍ଦ୍ର' ଉପାଧିରେ ଭୂଷିତ ହୋଇଥିଲେ (୪୭) ।

**କବି ପ୍ରସଙ୍ଗ :**

ଗୋପାଳକୃଷ୍ଣଙ୍କର ଅଧ୍ୟୟନ ନିରବଚ୍ଛିନ୍ନ ଭାବରେ ଚାଲିଥାଏ ଏବଂ ସମୟେ ସମୟେ ସେ କବିତା ଗୋଟିଏ ଗୋଟିଏ ରଚନା କରୁଥାନ୍ତି । ଗଞ୍ଜାମର ନିସର୍ଗ ସୁଷମା କବିଙ୍କ ସାରସ୍ୱତ ସାଧନାର ଏକାନ୍ତ ଅନୁକୂଳ ହୋଇଥିଲା । ଗୁଣଗ୍ରାହୀ ତଥା ବିଦ୍ୟୋତ୍ସାହୀ ବ୍ୟକ୍ତି ଓ କବିଙ୍କ ସାହଚର୍ଯ୍ୟ ତଥା ପ୍ରେରଣା ତାଙ୍କର ରଚନା ପ୍ରବାହକୁ ବେଗବତୀ କରିଥିଲା ।

ପଳାତକ ଅବସ୍ଥାରେ ସେ ଗଞ୍ଜା ଗ୍ରାମସ୍ଥ ଶ୍ରୀ କରଣ ପଟ୍ଟନାୟକ, କୃଷ୍ଣ ବିଳାସ ଓ ଗୁଣ୍ଡିଚା ଚମ୍ପୂର କବି ଭକ୍ତିବାକ୍ ଚକ୍ରପାଣି ପଟ୍ଟନାୟକ ଏବଂ ଅନ୍ୟ ସମବୟସ୍କ କବିମାନଙ୍କ

---

he is far from being true either to his rajah or to us. Before leaving northward I considered it my duty to recommend that he should be removed and his place should be supplied by some person in whom the collector could rely. •

ଶ୍ରୀ ଦାଶରଥି ଦାସ କବିସୂର୍ଯ୍ୟ କାବ୍ୟବିଭା, ପୃ. ୩୩-୩୪ରୁ ଉଦ୍ଧୃତ

(୪୬) କବିସୂର୍ଯ୍ୟ କାବ୍ୟବିଭା, ପୃ. ୩୩-୩୪

(୪୭) H. O. G. II, P, 245.

ସମ୍ପର୍କରେ ଆସିଥିଲେ । କବିଙ୍କ ସମ୍ପର୍କରେ ଏକ ଜନଶ୍ରୁତି ପ୍ରଚଳିତ ଅଛି । ଜନଶ୍ରୁତିଟି ହେଉଛି—ଏକଦା ସନ୍ଧ୍ୟାରେ ମଳୟର ମୃଦୁ ହିଲ୍ଲୋଳରେ ସ୍ୱଚ୍ଛନୀରା ଋଷିକୁଲ୍ୟା ନଦୀର ଶୋଭା ସନ୍ଦର୍ଶନ ନିମିତ୍ତ ସମଧର୍ମୀ ବନ୍ଧୁଙ୍କ ସହ ଯାଉଥିବାବେଳେ ମସ୍ତକୋପରି ପୂର୍ଣ୍ଣକୁମ୍ଭ ଧାରଣୀ ସ୍ୱର୍ଣ୍ଣଭୂଷଣମଣ୍ଡିତା ଏକ ଲାବଣ୍ୟମୟୀ ବୈଶ୍ୟଜାତୀୟା ଯୁବତୀକୁ ଦର୍ଶନ କରି(୪୭) ଗୋଟିଏ କବିତା ରଚନା କରିବା ପାଇଁ ପରସ୍ପର ଅନୁରୁଦ୍ଧ ହୋଇଥିଲେ । ପରଦିନ ଶ୍ରୀ କରଣ ପଟ୍ଟନାୟକଙ୍କ ଦ୍ୱାରା ଗୋପାଳକୃଷ୍ଣଙ୍କ କବିତା ଭାବ ଓ ସମସ୍ତ ଦୃଷ୍ଟିରୁ ଶ୍ରେଷ୍ଠ ବିବେଚିତ ହୋଇଥିଲା । ସେହି ସଙ୍ଗୀତଟି ହେଉଛି :—

'ସ୍କନ୍ଧରେ ଦେଇ ବନ୍ଧୁ ନ ଯାରେ;
ଉହି ଜିତେନ୍ଦ୍ରିୟ ଚାଉ-ହିଜାରେ ।'

ଏହା ଗୋପାଳକୃଷ୍ଣଙ୍କର ପ୍ରଥମ ସଙ୍ଗୀତ ବୋଲି କଥିତ । ଚକ୍ରପାଣି ପଟ୍ଟନାୟକ ଗୋପାଳକୃଷ୍ଣଙ୍କର କୃତିତ୍ୱରେ ମୁଗ୍ଧ ହୋଇ ଉତ୍ସାହବାଣୀ ଶୁଣାଇ ଥିଲେ—ବାବୁ ! ଆପଣ କବିତା ଲେଖା କେବେ ଛାଡ଼ିବେ ନାହିଁ,କବିତାରେ ଆପଣଙ୍କୁ ପ୍ରଶଂସା ମିଳିବ (୪୮) ।

ସେହିଦିନଠାରୁ କବି ଶୃଙ୍ଗାରଧର୍ମୀ ଗ୍ରାମ୍ୟରସର କବିତାମାନ ଲେଖି ଚାଲିଲେ । ମହାରାଜାଙ୍କର ପ୍ରିୟତମା ଆମ୍ବୀୟାଙ୍କ ଅକାଳମୃତ୍ୟୁ ଉପଲକ୍ଷେ ସେ କାରୁଣ୍ୟ ବ୍ୟଞ୍ଜକ ଏକ ସୁନ୍ଦର କବିତା ଲେଖିଥିଲେ (ଦୋଷ ନ ମଣି ପୀରତି ଚିନ୍ତାମଣି ଦଗିବ ଦେଇ ନେଲି ଛଡ଼ାଇ) । କିନ୍ତୁ ଗ୍ରାମ୍ୟରସର କବିତା ଅନୁଭୂତି, ଭାବ ଓ ଭାଷା ଦୃଷ୍ଟିରୁ ଉନ୍ନତ କଳା-ସୃଷ୍ଟିର ନିଦର୍ଶନ ହେଲେ ମଧ୍ୟ ତତ୍କାଳୀନ ଆଚାରଧର୍ମୀ ପ୍ରୌଢ଼ ଓ ବୈଷ୍ଣବ ମତ ବିଶ୍ୱାସୀମାନଙ୍କ ଦୃଷ୍ଟିରେ ନିକୃଷ୍ଟତର ଥିଲା । ତତ୍କାଳୀନ ଦୀନବନ୍ଧୁ ପଟ୍ଟନାୟକ ନାମକ ଜନୈକ ପଣ୍ଡିତ ଭକ୍ତ ଗୋପାଳକୃଷ୍ଣଙ୍କର 'ଜୀବନ ବନ୍ଧୁ ମାଗୁଣି ମାଗୁଛିରେ ଏଥିକି' ନାମକ ଗ୍ରାମ୍ୟରସର କବିତା ଆମୂଳଚୂଳ ପାଠ କରି ସସ୍ନେହ ଆକ୍ଷେପୋକ୍ତି କରି-ଥିଲେ ଯେ ଗୋପାଳକୃଷ୍ଣଙ୍କର ଏ ଅବଧି କୈଶୋରସୁଲଭ ଚାପଲ୍ୟ ଯାଇନାହିଁ । ପଣ୍ଡିତଙ୍କ ଆକ୍ଷେପୋକ୍ତି ଫଳରେ ଗୋପାଳକୃଷ୍ଣଙ୍କର କବିତାର ଧାରା ବଦଳି ଗଲା । ସେହିଦିନ ଠାରୁ ସେ ଗ୍ରାମ୍ୟରସର କବିତା ବାଦ ଦେଇ ପ୍ରେମମୂର୍ତ୍ତି ରାଧାକୃଷ୍ଣଙ୍କର ଲୀଳାମାଧୁର୍ଯ୍ୟ-ସମ୍ବଳିତ କବିତା ରଚନାରେ ମନୋନିବେଶ କଲେ । ସେ ଧରାକୋଟ ତାଲୁକ ଅନ୍ତର୍ଗତ ପୁଟ୍ଟୁଗ୍ରାମ ନିବାସୀ ଶ୍ରୀ ଲୋକନାଥ ଦାସ ଗୋସ୍ୱାମୀଙ୍କ (ଯାହାଙ୍କର ଅନ୍ୟନାମ ଶ୍ରୀ ବିନାୟକ ଦାସ ଗୋସ୍ୱାମୀ) ଠାରୁ ବୈଷ୍ଣବଧର୍ମର ଦୀକ୍ଷା ଗ୍ରହଣ କରିଥିଲେ (୪୯) । ପାରଳାଖେମୁଣ୍ଡି ଅନ୍ତର୍ଗତ

(୪୭) ଶ୍ରୀ ସରୋଜ କୁମାର ପାଣିଗ୍ରାହୀ, ଗୋ. କୃ. ଗ୍ରଂ., ୧ମ ଭାଗ, ସଂକ୍ଷିପ୍ତ ଜୀବନୀ, ପୃ. ୭

(୪୮) ଗୋ. କୃ. ପ., ନୂତନ ସଂ., କୃ. ନ., ମୁଖବନ୍ଧ, ପୃ. ୧

(୪୯) କୁଳଦେବତା ଶ୍ରୀ ରସିକ ରାଜଙ୍କର ଓ କୁଳଗୁରୁ ପୀଠ ଧରାକୋଟସ୍ଥ ପୁଟ୍ଟୁପୀଠ ସେବା ଗୋ. କୃ. ଙ୍କ ପରିବାରର ବଂଶ ପରମ୍ପରାଗତ ନିୟମରୂପେ ବହୁ ପୂର୍ବରୁ ଚାଲି ଆସୁଛି । ଏବେ ମଧ୍ୟ କବିଙ୍କ ବଂଶଧରମାନେ ଏହି ଶ୍ୟାମାନନ୍ଦୀ ଗାଦି ପୁଟ୍ଟୁପୀଠରୁ ଗୁରୁମନ୍ତ୍ରାଦି ଗ୍ରହଣ କରୁଛନ୍ତି । ଧରାକୋଟର ପୁଟ୍ଟୁଗ୍ରାମ ଓ ପା. ଖି. କରଣ ସାହିରେ

ଖାରଡାଗ୍ରାମସ୍ଥ ରାଧାକାନ୍ତ ମଠର ମହାନ୍ତଙ୍କୁ ସେ ଶିକ୍ଷାଗୁରୁ ରୂପେ ଗ୍ରହଣ କରି ପ୍ରତ୍ୟହ ବୈଷ୍ଣବ ଗୋସ୍ୱାମୀ ବିଶେଷତଃ ରୂପ ଗୋସ୍ୱାମୀଙ୍କର ଗ୍ରନ୍ଥମାନ ଅଧ୍ୟୟନ କରୁଥାନ୍ତି । ରୂପ ଗୋସ୍ୱାମୀ ୨୪ ଶ୍ଳୋକ ବିଶିଷ୍ଟ 'ଗୁଚ୍ଛପୁଷ୍ପାଞ୍ଜଳିରେ' ପ୍ରେମମୟୀ ରାଧାଙ୍କର ଅଙ୍ଗପ୍ରତ୍ୟଙ୍ଗର ଅପୂର୍ବ ସୁଷମା ବର୍ଣ୍ଣନା କରିଛନ୍ତି । କବି ତାହା ଶ୍ରଦ୍ଧାର ସହ ପ୍ରତ୍ୟହ ପାଠ କରି ଦିନେ ବିଭିନ୍ନ ରାଗରେ କେତୋଟି ଶ୍ଳୋକ ନିଜସ୍ୱଭଙ୍ଗୀରେ ଅନୁବାଦ କରି ମଠ ମନ୍ଦିରରେ ଶୟନ କଲେ । କଥିତ ଅଛି : ନିଶାଭାଗରେ ଜଣେ ବୈଷ୍ଣବ ଚନ୍ଦ୍ରଧାରୀ ପୁରୁଷ (ଅନ୍ୟ ମତରେ ଶ୍ରୀ ଚୈତନ୍ୟ) ତାଙ୍କୁ ଦର୍ଶନ ଦେଇ କହିଲେ, "ଗୁଚ୍ଛପୁଷ୍ପାଞ୍ଜଳିର ରଚୟିତା ରୂପ ଗୋସ୍ୱାମୀ ହେଉଛନ୍ତି ରାଧାଙ୍କର ସଖୀ ରୂପମଞ୍ଜରୀଙ୍କର ଆବେଶାବତାର, ବୈଷ୍ଣବୀୟ ଅଧିକାର ଲାଭ ନ କରି ରାଧାଙ୍କର ଅଙ୍ଗସୁଷମା ବର୍ଣ୍ଣିତ 'ଗୁଚ୍ଛପୁଷ୍ପାଞ୍ଜଳି' ପାଠ ଓ ଭାଷାନୁବାଦ କରିବା ଠିକ୍ ହେଉନାହିଁ । ପ୍ରଥମେ ରାଧାକୃଷ୍ଣଙ୍କର ମିଳିତାବତାର ଶ୍ରୀ ଚୈତନ୍ୟଙ୍କର (ଗୌରାଙ୍ଗ) ପ୍ରଶସ୍ତିମୂଳକ ଗାନ ରଚନା କରି ଅଧିକାରିତ୍ୱ ଲାଭପରେ ରାଧାକୃଷ୍ଣଙ୍କର ବ୍ରଜଲୀଳାର ନିଗୂଢ଼ ପ୍ରସଙ୍ଗ ବର୍ଣ୍ଣନା କରିପାର । ମହାମନ୍ତ୍ରରେ (୫୦) ତୁମେ ଦୀକ୍ଷିତ ହୋଇଛ, କିନ୍ତୁ ଅଷ୍ଟାଦଶାକ୍ଷରୀ ମନ୍ତ୍ରରାଜ ତୁମେ ଗୁରୁ ମୁଖରୁ ଶ୍ରବଣ କରିନାହିଁ । ଶ୍ରୀ ଗୁରୁଙ୍କ ଠାରୁ ମନ୍ତ୍ରରାଜ ଗ୍ରହଣ କରି ବ୍ରଜରସର ଅଧିକାର ଲାଭ କର ।"

---

ଥିବା ଶ୍ରୀ ଶ୍ରୀ ରସିକରାଜଙ୍କ ମୂର୍ତ୍ତି ଦୁଇଟି କବିଙ୍କ କୁଳଗୁରୁ ଶ୍ରୀ ଗୋବର୍ଦ୍ଧନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ । କବିଙ୍କ ପୂର୍ବପୁରୁଷଙ୍କ ଦ୍ୱାରା ରସିକରାଜ ମନ୍ଦିର ନିର୍ମିତ ହୋଇ ପୂଜା ପାଇଁ ଜମିବାଡ଼ି ଖଞ୍ଜା ଯାଇ ଅଦ୍ୟାବଧି ତାଙ୍କର ସେବାପୂଜା ନିୟମିତ ଚାଲିଛି । ଗୋ. କୃ. ଏହି ପୁଞ୍ଜିଗ୍ରାମସ୍ଥ ଗୁରୁପୀଠରୁ ଦୀକ୍ଷା ଗ୍ରହଣ କରିଥିଲେ । ତାଙ୍କର ଗୁରୁ ପରମ୍ପରା ସମ୍ପର୍କରେ ନିମ୍ନୋକ୍ତ ଶ୍ଳୋକ ପ୍ରଚଳିତ ଅଛି, ଯଥା—

ପ୍ରଥମଂ ଶ୍ରୀ ଗୁରୁଂ ଧ୍ୟାୟେ ବନ୍ଦେ ଶ୍ରୀଲୋକନାଥାଖ୍ୟମ୍ ।
ତଦ୍ ଗୁରୁଂ ତୁଳସୀଂ ଭଜେ ତଦ୍ ଗୁରୁଂ ବ୍ରଜଦାସାଖ୍ୟମ୍ ।
ଗୋବର୍ଦ୍ଧନମତଃପରଂ ତଦ୍ ଗୁରୁଂ ନୟନାନନ୍ଦମ୍ ।
ରସିକାନନ୍ଦକଂ ତତଃ ଶ୍ୟାମାନନ୍ଦଂ ତତୋ ଧ୍ୟାୟେ ।

ବର୍ତ୍ତମାନ ଶ୍ରୀ ଶ୍ୟାମସୁନ୍ଦର ଦାସ ଗୋସ୍ୱାମୀ ପଦ୍ୟାଳଙ୍କାର ହେଉଛନ୍ତି ପୁଞ୍ଜିପୀଠର ଅଧୀଶ । ଏଥିରୁ ସ୍ପଷ୍ଟ ହୁଏ ଯେ କବିଙ୍କ ବଂଶର ସମସ୍ତେ ଶ୍ରୀ ରୂପାନୁଗ ବୈଷ୍ଣବାଚାର୍ଯ୍ୟ ଶ୍ରୀ ଶ୍ୟାମାନନ୍ଦ ପରିବାରର ଅନ୍ତର୍ଭୁକ୍ତ ।

ଶ୍ରୀ ଫକୀର ମୋହନ ଦାସ, ଭକ୍ତ କବି ଗୋପାଳକୃଷ୍ଣ. ପୃ. ୧୭-୨୦

(୫୦) ମହାମନ୍ତ୍ର :

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେହରେ ।
ହରେରାମ ହରେରାମ ରାମ ରାମ ହରେହରେ ।

ଏ ପ୍ରକାର ଅନୁଜ୍ଞା ବାକ୍ୟ ଶୁଣାଇ ସେହି ବୈଷ୍ଣବ ଚକ୍ରଧାରୀ ପୁରୁଷ ଅନ୍ତର୍ହିତ ହୁଅନ୍ତେ ଗୋପାଳକୃଷ୍ଣଙ୍କର ମଧୁର ସ୍ୱପ୍ନ ଭାଙ୍ଗିଗଲା । ସ୍ୱପ୍ନ ବୃତ୍ତାନ୍ତରେ ସେ ତନ୍ମୟ ହୋଇ ଭାବାବେଶରେ ଲେଖିଥିଲେ—

"ଏଡ଼େ ଭାଗ୍ୟ ମୋର ହେବକି,
ହେବ ବୃନ୍ଦାବନେଶ୍ୱରୀ ସେବକି ?"

ସ୍ୱପ୍ନ ଘଟଣା ପରେ ପରେ ପ୍ରାତଃକାଳୀନ କର୍ମ ଶେଷ କରି ଆନନ୍ଦିତ ଚିତ୍ତରେ କବି ନିଜର ଦୀକ୍ଷାଗୁରୁ ଲୋକନାଥ ଦାସ ଗୋସ୍ୱାମୀଙ୍କ ନିକଟକୁ ଯିବାପାଇଁ ବାହାରିଥାନ୍ତି, ଶୁଣିବାକୁ ପାଇଲେ ଯେ ଗୁରୁଦେବ ପାରଳାଖେମୁଣ୍ଡି ଆସିଛନ୍ତି । ସେ ପାରଳା ଯାତ୍ରା କରି ତାଙ୍କର ପ୍ରତିବେଶୀ ବେବର୍ତ୍ତା ପଟ୍ଟନାୟକଙ୍କ ଭାଗବତ ମନ୍ଦିରରେ ଗୁରୁଦେବଙ୍କର ଦର୍ଶନ ଲାଭ କଲେ । ଗୁରୁଦେବଙ୍କ ପାଦରେ ସାଷ୍ଟାଙ୍ଗ ପ୍ରଣାମ କରି ଉତ୍କଣ୍ଠିତ ଚିତ୍ତରେ ସ୍ୱପ୍ନ ବୃତ୍ତାନ୍ତ ଜଣାଇବାରୁ ସେ (ଗୁରୁଦେବ) ଏକାନ୍ତ ଆନନ୍ଦିତ ହୋଇ ସ୍ନେହରେ ତାଙ୍କୁ ଆଲିଙ୍ଗନ କରି ମନ୍ତ୍ରରାଜ ଓ ଯୁଗଳମନ୍ତ୍ର ଦାନ କଲେ । କବି 'ଶ୍ରୀ ଗୁରୁ ପଞ୍ଚକ' ନାମକ ସ୍ତୋତ୍ର ରଚନା କରି ନିଜର ଭକ୍ତିର ନିଦର୍ଶନ ସ୍ୱରୂପ ଗୁରୁଦେବଙ୍କର ପୂତ କରକମଳରେ ଅର୍ପଣ କଲେ । ସେହି ପବିତ୍ର ଦିବସଟି ଭଗବତ୍ ଲୀଳା ସମ୍ପର୍କିତ ଆଲୋଚନାରେ ଅତିବାହିତ ହେଲା । ପରଦିନ ଗୁରୁଦେବଙ୍କ ନାମରେ ଭଣିତ ସଂସ୍କୃତଭାଷାରେ ରଚିତ 'ଶ୍ରୀ ରାଧାନାମ ନକ୍ଷତ୍ରମାଳା' ନାମକ ସ୍ତୋତ୍ର ତାଙ୍କୁ (ଗୁରୁଦେବଙ୍କୁ) ସମର୍ପଣ କରି କବି ଖାରଡାସ୍ଥ ରାଧାକାନ୍ତ ମଠକୁ ପ୍ରତ୍ୟାବର୍ତ୍ତନ କଲେ ।

କବିଙ୍କର ଶିକ୍ଷାଗୁରୁ ଖାରଡ଼ାମଠର ମହନ୍ତ ଏ ସ୍ୱପ୍ନ ବୃତ୍ତାନ୍ତ ଓ ମନ୍ତ୍ରରାଜ ଦୀକ୍ଷା ଗ୍ରହଣାଦି ସମ୍ବାଦ ଶୁଣି ଏକାନ୍ତ ପ୍ରୀତ ହେଲେ । କବି ପରେ ପରେ ଦୀକ୍ଷାଗୁରୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ୧୦୮ ପଦଯୁକ୍ତ 'ପ୍ରାର୍ଥନା ରତ୍ନାଞ୍ଜଳି' ଶୀର୍ଷକ ଆତ୍ମନିବେଦନାତ୍ମକ ସ୍ତୋତ୍ରଟି ରଚନା କରିଥିଲେ । ସ୍ୱପ୍ନ-ନିର୍ଦ୍ଦେଶାନୁସାରେ କବି ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଶ୍ରୀ ଚୈତନ୍ୟ ଲୀଳା ସମ୍ପର୍କିତ କେତୋଟି ପଦ ରଚନା କରିଥିଲେ (୫୧) । ସେ ସଂସ୍କୃତ 'ମୁକୁନ୍ଦ ମୁକ୍ତାବଳୀ'ର ଅନୁବାଦ କରିବା ସଙ୍ଗେ ସଙ୍ଗେ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କର ୧୦୪ ଶ୍ଳୋକ ବିଶିଷ୍ଟ 'ସଂକଳ୍ପ କଳ୍ପଦ୍ରୁମ'ର ଗୋଟିଏ ଶ୍ଳୋକର ଭାବ-ଚ୍ଛାୟାରେ ପ୍ରାର୍ଥନାସଙ୍ଗୀତ ରଚନା କରିଛନ୍ତି । ଅନୁବାଦ ସଙ୍ଗେ ସଙ୍ଗେ ସଂସ୍କୃତଭାଷାରେ ରଚିତ ତାଙ୍କର ସ୍ତବ ଓ ସ୍ତୋତ୍ର ଗୁଡ଼ିକ ବୈଷ୍ଣବମାନଙ୍କର ଅତି ଆଦରର ବସ୍ତୁ ।

ପାଣ୍ଡିତ୍ୟ, ଭକ୍ତିମତ୍ତା ଓ ପ୍ରତିଭାର ଚମତ୍କାର ସମନ୍ୱୟ ଦେଖାଯାଏ ଗୋପାଳକୃଷ୍ଣଙ୍କ ରଚନାବଳୀରେ । ଶ୍ରୀ ଚୈତନ୍ୟ ପ୍ରବର୍ତ୍ତିତ ଶୁଦ୍ଧାଭକ୍ତି ମତରେ କବି ଦୀକ୍ଷିତ ହେଲେ ମଧ୍ୟ ରଚନାଗୁଡ଼ିକରେ ସାମ୍ପ୍ରଦାୟିକ ସଂକୀର୍ଣ୍ଣତା କେଉଁଠି ପରିଲକ୍ଷିତ ହୁଏ ନାହିଁ । ସାମ୍ପ୍ରଦାୟିକ ପରମ୍ପରା ଅନୁସାରେ ସଂସ୍କୃତ ଓ ଓଡ଼ିଆରେ ବହୁ କବିତା (ଶ୍ରୀଗୁରୁ ପଞ୍ଚକ, ନିତ୍ୟ

(୫୧) (କ) ଶଚୀନନ୍ଦନ ପାହି ପ୍ରଭୋ ଦୟାନିଧେ !
(ଖ) ଶ୍ରୀ ଗୌରଚନ୍ଦ୍ର ପଦ ବନ୍ଦରେ ମାନସ !

ନିର୍ଣ୍ଣୟ, ଶ୍ରୀ ରାଧାନକ୍ଷତ୍ର ମାଳା ସ୍ତୋତ୍ର, ଶ୍ରୀ ଶ୍ରୀ ବୃଷଭାନୁଜା ପ୍ରେମ ନାମାବଳୀ, ଦଶନାମ ସ୍ତୋତ୍ରଂ, ଶ୍ରୀ ରାଧାଷ୍ଟକ, ଶ୍ରୀ ରାଧା ପ୍ରମୋଦାନନ୍ଦ ସ୍ତୋତ୍ରଂ, ଶ୍ରୀ ଶ୍ରୀ ଗୋବିନ୍ଦନାମାମୃତ ଲହରୀ, ଶ୍ରୀ ଶ୍ରୀ ହରିକୁସୁମ ସ୍ତବକ ଇତ୍ୟାଦି) ରଚନା କଲେ ମଧ୍ୟ ସେ ଗୁଡ଼ିକ କବିତ୍ୱ ବର୍ଜିତ ନୁହନ୍ତି, ବରଂ ତନ୍ମଧ୍ୟରୁ କେତୋଟି ସଙ୍ଗୀତ, ଯଥା : ଅନୁସରିତ ପ୍ରଭୋ ! କାଳ ଯାକ ଗଲା ସରିତ, ଏଡ଼େ ଭାଗ୍ୟ ମୋର ହେବକି ?, ଗଲାବେଳେ ମୋ ଜୀବ ଶ୍ରୀରାଧେ ଦଶା ଯିବ, ଭଜମନ ବ୍ରଜବନ ଦ୍ୱିଜରାଜଙ୍କୁ, ରସମାନସ ରାଧିକେଶ ଜାର ରସ କଥାରେ, ଶରଧାରେ ଧାଇଁ ଶ୍ରୀରାଧା କୃଷ୍ଣ ବନକୁ ଜୀବନ ଦେଖି ଯା ପ୍ରଭୃତି ସାହିତ୍ୟିକ ଓ ସାଙ୍ଗୀତିକ ମାଧୁର୍ଯ୍ୟ ଦୃଷ୍ଟିରୁ ବିଶେଷ ଲୋକ ପ୍ରିୟତା ଅର୍ଜନ କରିଛନ୍ତି ।

ସଂସ୍କୃତରେ ରଚିତ ଗୋସ୍ୱାମୀ ଗ୍ରନ୍ଥ (ରୂପ ଗୋସ୍ୱାମୀଙ୍କର ଭକ୍ତିରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି, ଲଳିତ ମାଧବ, ବିଦଗ୍ଧମାଧବ, ଜୀବ ଗୋସ୍ୱାମୀଙ୍କର ଷଟ୍‌ସନ୍ଦର୍ଭ, ସନାତନ ଗୋସ୍ୱାମୀଙ୍କର ବୃହଦ୍ ଭାଗବତାମୃତମ୍, କୃଷ୍ଣଦାସ କବିରାଜଙ୍କର ଶ୍ରୀ ଶ୍ରୀ ଗୋବିନ୍ଦଲୀଳାମୃତମ୍, ରଘୁନାଥ ଦାସ ଗୋସ୍ୱାମୀଙ୍କର ବିଳାପ କୁସୁମାଞ୍ଜଳି), ଲୀଳାଶୁକଙ୍କର ଶ୍ରୀକୃଷ୍ଣକର୍ଣ୍ଣାମୃତମ୍, ବ୍ରହ୍ମସଂହିତା, ବୈଷ୍ଣବ ଧର୍ମର ଅନ୍ୟ ପ୍ରାମାଣିକ ଗ୍ରନ୍ଥ ଶ୍ରୀମଦ୍‌-ଭାଗବତ, ପୁରୁଷୋତ୍ତମ ତାପନୀ, ଗୋପାଳ ତାପନୀ, ରାଧା ତାପନୀ ପ୍ରଭୃତି କାବ୍ୟ, ନାଟକ ଓ ପୁରାଣରେ ଏବଂ ପ୍ରାଚୀନ ଓଡ଼ିଆ ସାହିତ୍ୟରେ କବିଙ୍କର ଗଭୀର ପ୍ରବେଶ ଥିବାର ଅନୁମିତ ହୁଏ । ଦେଶୀ ଭାଷା କ୍ଷେତ୍ରରେ ଓଡ଼ିଆ ସହିତ ତେଲୁଗୁ, ବଙ୍ଗଳା ଓ ବ୍ରଜବୁଲିରେ ମଧ୍ୟ କବିଙ୍କର ପ୍ରବେଶ ଥିବା ଅନୁମାନ କରାଯାଏ, ବିଶେଷତଃ ଗୀତଗୁଡ଼ିକର ରାଗରାଗିଣୀ କ୍ଷେତ୍ରରେ ତେଲେଙ୍ଗୀୟ ସ୍ୱରଚର୍ଚ୍ଚାର ପ୍ରଭାବ ଏବଂ ପଦାବଳୀ ରଚନା କ୍ଷେତ୍ରରେ ବଙ୍ଗଳାର ଚଣ୍ଡୀଦାସ, ଗୋବିନ୍ଦ ଦାସ ପ୍ରଭୃତିଙ୍କ ବଙ୍ଗଳା ତଥା ବ୍ରଜବୁଲି ପଦାବଳୀର ପ୍ରଭାବ ଅସ୍ୱୀକାର କରିହେବ ନାହିଁ । ସାହିତ୍ୟ ସହିତ ସଙ୍ଗୀତ ଶାସ୍ତ୍ରରେ କବିଂକର ଅସାଧାରଣ ଜ୍ଞାନର ପରିଚୟ ବିଭିନ୍ନ ଗୀତର ରାଗରାଗିଣୀ ନିର୍ଦ୍ଦେଶ ଓ ଭାବ ତଥା ରସାନୁରୂପ ରାଗରାଗିଣୀର ପ୍ରୟୋଗରୁ ମିଳିଥାଏ । ରାଧାକୃଷ୍ଣଂକର ମଧୁର ପ୍ରେମଲୀଳା, ବାତ୍ସଲ୍ୟଭାବ, ସାମ୍ପ୍ରଦାୟିକ ନୀତି ଓ ଗ୍ରାମ୍ୟରସର ଅଭିବ୍ୟକ୍ତି ନିମିତ୍ତ କବି ବିଭିନ୍ନ ସାହିତ୍ୟ-ରୂପ, ଯଥା : ଚଉତିଶା, କୋଇଲି, ବୋଲି, ବଚନିକା, ଚଟାଉ, ଅଷ୍ଟକ, ଚତୁଷ୍ପଦୀ, ଛାନ୍ଦ ଓ ବିରୁଦର ଆଶ୍ରୟ ନେଇଛନ୍ତି ।

ବୈଷ୍ଣବୀୟ ସାହିତ୍ୟ ଶାସ୍ତ୍ର (ଉଜ୍ଜ୍ୱଳ ନୀଳମଣି) ପରମ୍ପରାରେ କବି ବୃନ୍ଦାବନରେ ରାଧାକୃଷ୍ଣଙ୍କର ଚିନ୍ମୟ ପ୍ରେମଲୀଳା ସମ୍ପର୍କିତ ଯେଉଁ ଅଜସ୍ର ସଙ୍ଗୀତ ରଚନା କରିଛନ୍ତି, ଭାବ, ଭାଷା, ଛନ୍ଦ ଓ ପ୍ରେରଣା ଦୃଷ୍ଟିରୁ ସେଗୁଡ଼ିକ ଓଡ଼ିଆ ସାହିତ୍ୟରେ ଏକ ପ୍ରକାର କାଳାତୀତର ମର୍ଯ୍ୟାଦା ଲାଭ କରିଛନ୍ତି । ଉପାସ୍ୟଙ୍କଠାରେ ସ୍ୱତଃସ୍ଫୂର୍ତ୍ତ ଆତ୍ମନିବେଦନ, ହ୍ଲାଦିନୀ ଶକ୍ତିରୂପା ମହାଭାବମୟୀ ରାଧାଙ୍କ ତୃପ୍ତି ନିମିତ୍ତ କବିପ୍ରାଣର ମଞ୍ଜରୀଭାବ (ଦାସୀଭାବ) ଲୋଲୁପତା, ବୈଚିତ୍ର୍ୟମୟୀ ଲୀଳା ଧ୍ୟାନରେ କବିପ୍ରାଣର ଏକରୂପତା ତଥା ତନ୍ମୟତାରେ କବିଙ୍କର ଅମଳିନ ପ୍ରତିଭାର ସ୍ୱାକ୍ଷର ରହିଛି !

ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ସମ୍ପାଦକ ବାବାଜୀ ବୈଷ୍ଣବଚରଣ ଦାସ ଗୋସ୍ୱାମୀଙ୍କ ମତାନୁଯାୟୀ ପ୍ରୀତି ଚିନ୍ତାମଣି, ନାମ ଚିନ୍ତାମଣି, ପ୍ରେମ କଳ୍ପଲତା, ରାଧାଗୋବିନ୍ଦ

ଲୀଳାମୃତ ଆଦି କବିଙ୍କ ରଚିତ ଛାନ୍ଦଗ୍ରନ୍ଥ ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । କବିଙ୍କ ରଚିତ ଅନ୍ୟ କେତୋଟି ଅପ୍ରକାଶିତ କ୍ଷୁଦ୍ର ରଚନାର ନାମ :- ବ୍ରଜଭ୍ରମଣାମୃତ, ଶ୍ରୀ ଶ୍ରୀ ବୃନ୍ଦାବନ ପରିକ୍ରମା, ପ୍ରେମଭକ୍ତି ଚନ୍ଦ୍ରିକା ଓ ସ୍ୱପ୍ନ ବିଳାସ (୬୨) ।

ଯଶୋଲାଭର ବାସନା ରଖି ଗୋପାଳକୃଷ୍ଣ କିଛି ଲେଖୁ ନ ଥିଲେ । ଭଗବତ୍ ପ୍ରେରଣାରେ ସ୍ୱତଃସ୍ଫୂର୍ତ୍ତି ଭାବରେ ତାଙ୍କର ମନରେ ଯେତେବେଳେ ଯେଉଁ ଭାବର ଉଦ୍ରେକ ହେଉଥିଲା ସେ ଗୃହ ଭିତ୍ତିରେ ଖଡ଼ି ସାହାଯ୍ୟରେ ଲେଖୁଥିଲେ କିମ୍ବା ତାଳପତ୍ରରେ ଲେଖି ନିକଟସ୍ଥ ଲୋକଙ୍କୁ ଦେଉଥିଲେ । କବିଙ୍କ ରଚନାର ମୁଗ୍ଧ ଗ୍ରାହକ ହରିବନ୍ଧୁ ବେବର୍ତ୍ତା ଭିତ୍ତିରେ ଲିଖିତ ବହୁ ସଙ୍ଗୀତ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ତାଙ୍କର ତାଳପତ୍ର ଲିଖିତ ଗୀତ ଗୁଡ଼ିକ ସଂଗ୍ରହ କରି ରଖୁଥିଲେ । ସ୍ୱରଚିତ ଗୀତଗୁଡ଼ିକୁ ପୋଥିରେ ସଂଗ୍ରହ କରି ରଖିବାର ମନୋବୃତ୍ତି ବା ଅଭ୍ୟାସ କବିଙ୍କର ନ ଥିଲା । ରାମକୃଷ୍ଣ ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ସଙ୍ଗୀତ ଗୁଡ଼ିକ 'ସମୁଦ୍ରପେଟୀ' କବି ହରିବନ୍ଧୁ ବା ବେବର୍ତ୍ତା ହରିବନ୍ଧୁ ପଟ୍ଟନାୟକଂକ ସଯତ୍ନ ସଂଗ୍ରହର ଫଳ । 'ହରିବନ୍ଧୁ ପଦ୍ୟାବଳୀ'ର ସମ୍ପାଦକ ଶ୍ୟାମସୁନ୍ଦର ବେବର୍ତ୍ତା ହରିବନ୍ଧୁଙ୍କ ସଂକ୍ଷିପ୍ତ ଜୀବନ ଚରିତରେ ଗୋପାଳକୃଷ୍ଣଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କର ସୂଚନା ଦେଇ ଲେଖିଛନ୍ତି, 'କବି ଗୋପାଳକୃଷ୍ଣଙ୍କର ସମଗ୍ର କବିତା ରଚିତ ହେବା କ୍ଷଣି ତାହାଙ୍କର ସଙ୍ଗୀତପୁତ୍ର (ଗୋପାଳ କୃଷ୍ଣଙ୍କର ସଙ୍ଗୀତ ଥିଲେ କୂର୍ମନାଥ ବେବର୍ତ୍ତା ବୈଦ୍ୟଶାସ୍ତ୍ରୀ, ତାଙ୍କର ପୁତ୍ର ହରିବନ୍ଧୁ) ଏହି ହରିବନ୍ଧୁଙ୍କ ହସ୍ତଗତ ହୋଇ ଏହାଙ୍କଠାରେ ସଞ୍ଚିତ ହେଉଥିଲା ଏବଂ ଯେ କୌଣସି ବ୍ୟକ୍ତି କବି ଗୋପାଳକୃଷ୍ଣଙ୍କ ବିରଚିତ କବିତା ପାଠ କରିବା ଲାଗି ତାହାଙ୍କୁ କୌଣସି ଗୀତ ମାଗନ୍ତି, ତେବେ କବି ତାହାଙ୍କ ସଙ୍ଗୀତ ପୁତ୍ର ହରିବନ୍ଧୁଙ୍କୁ ଲକ୍ଷ୍ୟ କରି 'ଆମ୍ଭ ସମୁଦ୍ର ପେଟୀକୁ ମାଗ' ବୋଲି କହୁଥିଲେ (୬୩) । କବିଙ୍କ ଅନ୍ତଃପୁରସ୍ଥ ଭିତ୍ତିରେ ଲିଖିତ ବହୁ ଗୀତ ହରିବନ୍ଧୁଙ୍କ ଦ୍ୱାରା ଉଦ୍ଧୃତ ହୋଇ ନ ପାରି ନଷ୍ଟ ହୋଇ ଯାଇଛି । ସ୍ଥାନାନ୍ତରିତ ଗୀତଗୁଡ଼ିକ ଆଉ ଫେରି ଆସି ନାହିଁ (୬୪) । ଶ୍ରୀ ଫକୀର ମୋହନ ଦାସ ତାଙ୍କର 'ଭକ୍ତକବି ଗୋପାଳ-

---

(୬୨) ଏ ଅପ୍ରକାଶିତ ଛାନ୍ଦଗ୍ରନ୍ଥ ଓ କ୍ଷୁଦ୍ର ରଚନା ଗୁଡ଼ିକ ସମ୍ପର୍କରେ କବିଙ୍କ ବଂଶଧରଙ୍କଠାରୁ କୌଣସି ସୂଚନା ମିଳି ନାହିଁ ।

(୬୩) ହରିବନ୍ଧୁ ପଦ୍ୟାବଳୀ, ୧ମ ମୁଦ୍ରଣ, ସମ୍ପା: ଶ୍ୟାମସୁନ୍ଦର ବେବର୍ତ୍ତା, ୧୯୩୩, ହରିବନ୍ଧୁ ବେବର୍ତ୍ତାଙ୍କ ସଂକ୍ଷିପ୍ତ ଜୀବନ ଚରିତ, ପୃ. ୩

(୬୪) ଭିତ୍ତିରେ ଲିଖିତ ଉଦ୍ଧାର କରା ଯାଇ ନଥିବା ବହୁ ସଙ୍ଗୀତ ଯେ ଲୋକଲୋଚନର ଅଗୋଚରରେ ରହି ଯାଇଛି, ଏ ପ୍ରକାର ଅନୁମାନ ଅମୂଳକ ନୁହେଁ । ବର୍ତ୍ତମାନର ବଂଶଧରମାନଂକଠାରୁ ଜଣାଯାଏ ଯେ କବିଙ୍କୁ ପ୍ରାୟ ୬୦ ବର୍ଷ ହେବା ସମୟରେ ହରିବନ୍ଧୁ ଥିଲେ ବାର ବର୍ଷର ବାଳକ । ଗୋ. କୃ. ତାଙ୍କୁ ଖୁବ ସ୍ନେହ କରୁଥିଲେ । ହରିବନ୍ଧୁ ବୃଦ୍ଧ କବିଂକର ଅନୁସରଣିଆ ହୋଇ ତାଂକ ସଙ୍ଗରେ ଇତସ୍ତତଃ ଯାଉଥିଲେ । ତାଂକ ରଚିତ ଗୀତ ସଂଗ୍ରହ କରି ରଖିବା ଥିଲା ତାଂକର ଏକ

କୃଷ୍ଣରେ' ଲେଖିଛନ୍ତି ଯେ କବିଙ୍କ ବଂଶଧରଙ୍କ ମଧ୍ୟରୁ କେହି ବୃନ୍ଦାବନ ଦର୍ଶନରେ ଯାଇ ଗୋପାଳକୃଷ୍ଣ ପଦ୍ୟାବଳୀ ପୋଥିଟି ଛାଡ଼ି ଦେଇ ଚାଲି ଆସିଲେ (ପୃ. ୫୦-୫୧)। ଗୋପାଳକୃଷ୍ଣ ନିଜ ରଚନା ପୋଥିରେ ସଞ୍ଚିତ କରି ରଖି ନ ଥିବାରୁ (ହରିବନ୍ଧୁଙ୍କ ସଂଗ୍ରହକୁ ଛାଡ଼ି ଦେଲେ) ଗୋପାଳକୃଷ୍ଣ ପଦ୍ୟାବଳୀ ପୋଥି ଆସିଲା କେଉଁଠୁ ? ପୁଣି ବୃନ୍ଦାବନ ନିଆ ଗଲା କାହିଁକି ? ଯଦି ବା ନିଆ ଯାଇଥାଏ ଛାଡ଼ି ଆସିବାର ପ୍ରଶ୍ନ ଉଠୁଛି କେଉଁଠି ? ସଂଗ୍ରହ ପ୍ରିୟ ହରିବନ୍ଧୁ ବା କାହିଁକି ଗୋପାଳକୃଷ୍ଣ ପଦ୍ୟାବଳୀ ପୋଥି ହାତଛଡ଼ା କରିଥିବେ ? ତେଣୁ ଶ୍ରୀ ଦାସଙ୍କର ଉକ୍ତି ପ୍ରତ୍ୟୟଯୋଗ୍ୟ ନୁହେଁ ବୋଲି ମନେ ହୁଏ।

କାବ୍ୟ ଓ ସଙ୍ଗୀତ ରସଜ୍ଞ ମହାରାଜା ଜଗନ୍ନାଥ ନାରାୟଣ ଦେବ ଗୋପାଳକୃଷ୍ଣଙ୍କର ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ଜଗନ୍ନାଥପୁର ମଖାସା (ପୁରସ୍କାର ରୂପେ ପ୍ରାପ୍ତ ଜାଗିର ଜମି) ପ୍ରଦାନ କରିଥିଲେ ଏବଂ ରାଜବୃତ୍ତି ମାସିକ ଏକଶତ ଟଙ୍କା କରି ଦେଇଥିଲେ (୫୫)।

କେତେକ ଜଗନ୍ନାଥ ନାରାୟଣ ଦେବଙ୍କ ପରେ ତାଙ୍କ ପୁତ୍ର ପ୍ରତାପରୁଦ୍ର ନାରାୟଣ ଦେବ ରାଜପଦରେ ଅଭିଷିକ୍ତ ହୋଇଥିଲେ। ସେ ସଂସ୍କୃତ ଓ ଧର୍ମଶାସ୍ତ୍ରରେ ଜଣେ ବଡ଼ ପଣ୍ଡିତ ବ୍ୟକ୍ତି ଥିଲେ। ଶଂକର, ରାମାନୁଜ ଓ ଚୈତନ୍ୟଙ୍କ ଦର୍ଶନ ଅଧ୍ୟୟନ ପାଇଁ ସେ ନିଜର ବହୁ ସମୟ ବିନିଯୋଗ କରିଥିଲେ। ରାଜ ବଂଶର ପରମ୍ପରା ଅନୁସାରେ ପୁରୀ ରାଧାକାନ୍ତ ମଠର ମହନ୍ତଙ୍କୁ ଧର୍ମଗୁରୁଭାବରେ ଗ୍ରହଣ କରି ଚୈତନ୍ୟ ପ୍ରବର୍ତ୍ତିତ ବୈଷ୍ଣବ ମତ ଗ୍ରହଣ କରିବାର କଥା ହେଲେ ମଧ୍ୟ ପ୍ରତାପରୁଦ୍ର ଶୈବଧର୍ମର ଜଣେ ନିଷ୍ଠାପର ଅନୁଯାୟୀ ଥିଲେ। ଭାରତୀୟ ଦର୍ଶନରେ ତାଙ୍କର ଉଚ୍ଚକୋଟିର ପାଣ୍ଡିତ୍ୟ ଓ ତା'ର ସମୀକ୍ଷାମୂଳକ ଅଧ୍ୟୟନ ହେତୁ ପଣ୍ଡିତମାନେ ତାଙ୍କୁ ସମ୍ମାନିତ କରୁଥିଲେ ମଧ୍ୟ ଧର୍ମ ସମ୍ପର୍କରେ ତାଙ୍କ ସହିତ ଆଲୋଚନା କରିବା ପାଇଁ ସାହସ କରୁ ନଥିଲେ। ରାଜା ହେଲେ ମଧ୍ୟ ରସିକତା ପ୍ରତି ତାଙ୍କର ବିତୃଷ୍ଣା ଜାତ ହୋଇଥିଲା (୫୬)। ସେ ଗୋପାଳକୃଷ୍ଣଙ୍କ ପ୍ରତିଭାର ଥିଲେ ଜଣେ ମୁଗ୍ଧଗ୍ରାହକ ଓ ପୃଷ୍ଠପୋଷକ। କଥିତ ଅଛି ଯେ ଗୋପାଳକୃଷ୍ଣଙ୍କୁ ସେ 'କବି କଳହଂସ' ଓ 'ବସନ୍ତ କୋକିଳ' ଉପାଧିରେ ଭୂଷିତ କରିବା ସଙ୍ଗେ ସଙ୍ଗେ

---

ଆନନ୍ଦ। ପାରଳା ଅଞ୍ଚଳରେ ପ୍ରଚଳିତ ପ୍ରଥା ଅନୁସାରେ ଦଶହରା ଦିନ ସଂଗୃହୀତ ପୋଥିର ଡୋର ଫିଟାଇ ଝାଡ଼ି ବନ୍ଧା ଯାଏ। ଉକ୍ତ ଦିବସରେ କବିଙ୍କ ରଚିତ ସଙ୍ଗୀତ ପୋଥି ଫିଟାଇ କୀଟଦଷ୍ଟ ହେତୁ ନଷ୍ଟ ହେବା ଦେଖି ବହୁ ଦୁଃଖ ପ୍ରକାଶ କରନ୍ତି। ଏହିପରି ଭାବରେ କବିଙ୍କର ବହୁଗୀତ ଲୋପ ହୋଇ ଯାଇଛି।

ଗୋ: କୃ. ପ., ୩ୟ ସଂ, ୧୯୫୫, ସଂପା: ସ. କୃ. ପଟ୍ଟନାୟକ, ଭୂମିକା, ପୃ. ୪ ଏବଂ କବିଙ୍କ ବଂଶଧରମାନଙ୍କଠାରୁ ଶ୍ରୁତ ବିବରଣୀ।

(୫୫) ଫକୀର ମୋହନ ଗ୍ରନ୍ଥାବଳୀ ପୃ. ୧୬୭୩, ଶଶଧର ପଟ୍ଟନାୟକଙ୍କ ରଚିତ 'ଭକ୍ତକବି ଗୋପାଳକୃଷ୍ଣ' ନାଟକ, ପୃ ୭୩, ଫକୀରମୋହନ ଦାସଙ୍କ 'ଭକ୍ତକବି ଗୋପାଳକୃଷ୍ଣ' ପୃ. ୮

(୫୬) H. O. G., II, P. 253.

ଏକୋଇଶିଟି ଗ୍ରାମର କରଣିକ ଦାୟିତ୍ୱ ଅର୍ପଣ କରି ତାଙ୍କର ରାଜକାର୍ଯ୍ୟ ସମ୍ମାନର ଉନ୍ନତି ଘଟାଇ ଥିଲେ । ଜନଶ୍ରୁତି ଅଛି ଯେ କବି ଯେତେବେଳେ ରାଜକାର୍ଯ୍ୟ ସମାପ୍ତ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ, ରାଜାଙ୍କ ନିର୍ଦ୍ଦେଶରେ ସେବକ ଯୋଡ଼ି ମଶାଲ ଜାଳି ତାଙ୍କ ଆଗେ ଆଗେ ଯାଉଥିଲା । କବି ଗୁଣଗ୍ରାହୀ ପ୍ରତାପରୁଦ୍ରଂକ ନାମରେ କେତୋଟି ସଙ୍ଗୀତ ଭଣିତ କରିଛନ୍ତି । ଇନ୍ଦୁ ନାମ୍ନୀ ଜଣେ ଦେବଦାସୀର ଗାନ ଓ ନୃତ୍ୟହେତୁ ପାରଳାଖିମୁଣ୍ଡି ଅଞ୍ଚଳରେ ତାଂକ ସଙ୍ଗୀତର ବିଶେଷ ପ୍ରଚାର ହୋଇଥିଲା ବୋଲି ଜନଶ୍ରୁତି ଅଛି (୫୭) ।

ଗୋପାଳକୃଷ୍ଣ ପୁତ୍ରକନ୍ୟାଂକର ସଂସାର ମଧ୍ୟରେ ଭଗବନ୍ତ ନାମ ସ୍ମରଣ, ଚିନ୍ତନ ଓ ସାରସ୍ୱତ ସାଧନାରେ କାଳାତିପାତ କରୁଥିଲେ । ଭଗବନ୍ତ ନିବେଦିତପ୍ରାଣ ହୋଇଥିବାରୁ ସଂସାରର ଦୁଃଖ ସନ୍ତାପ ମଧ୍ୟରେ ସେ ଯେଉଁ ଜୀବନ ଯାପନ କରୁଥିଲେ, ତାହା ହେଉଛି ସ୍ଥିତପ୍ରଜ୍ଞର ଜୀବନ । କବି ଚାରୋଟି ପୁତ୍ର ଓ ଚାରୋଟି କନ୍ୟାର ଜନକ ହେବାର ସୌଭାଗ୍ୟ ଲାଭ କରିଥିଲେ । ପୁତ୍ରମାନଂକର ନାମ ଯଥାକ୍ରମେ ଗୌରଚନ୍ଦ୍ର, ହରିବନ୍ଧୁ, କରୁଣାନିଧି ଓ ନୃସିଂହ ଚରଣ ଏବଂ କନ୍ୟାମାନଂକର ନାମ ଲଳିତାମା, ଗୋପିମା, ଝିଅମା ଓ ଅମିମା । ପୁତ୍ରମାନେ କବିଙ୍କ ପରି ଭଗବନ୍ତ ପରାୟଣ ଥିଲେ । କବିଙ୍କର ମଧ୍ୟମ ପୁତ୍ର ହରିବନ୍ଧୁ ମଧ୍ୟ ଜଣେ କବି ଥିଲେ ଏବଂ ତାଙ୍କ ପ୍ରଣୀତ କେତୋଟି କବିତା ଇତସ୍ତତଃ ପରିଲକ୍ଷିତ ହୁଏ । ତୃତୀୟ ପୁତ୍ର କରୁଣାନିଧିଙ୍କର ଅକାଳ ବିୟୋଗ ଓ ଅଳ୍ପବୟସରେ ଗୋଟିଏ କନ୍ୟାର ବୈଧବ୍ୟ କବିଙ୍କ ପ୍ରାଣରେ କ୍ଷୋଭ ସଞ୍ଚାର କରିଥିଲେ ମଧ୍ୟ ତାହା ଆଧ୍ୟାତ୍ମିକତାରେ ମୂର୍ଚ୍ଛିତ ହୋଇଥିଲା । କବିଙ୍କ ବାର୍ଦ୍ଧକ୍ୟାବସ୍ଥାରେ ପୁତ୍ରମାନଙ୍କର ବିୟୋଗ ଘଟି ଯାଇଥିଲା ବୋଲି ତାଙ୍କର ବଂଶଧରମାନେ କହନ୍ତି (୫୮) ।

କବି ପ୍ରତ୍ୟହ ପ୍ରାତଃକାଳରେ ଦୈନନ୍ଦିନ ଓ ଇଷ୍ଟଦେବଙ୍କ ପୂଜା ଶେଷରେ କୃଷ୍ଣ ଦାସ କବିରାଜଙ୍କ ବିଖ୍ୟାତ 'ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ' ଗ୍ରନ୍ଥ ଶୁଦ୍ଧ ଚିତ୍ତରେ ପାଠ କରୁଥିଲେ । କବିଙ୍କର ପ୍ରାଣ ଗୋପୀଭାବାପନ୍ନ (ମଞ୍ଜରୀ ସୁଲଭ) ଓ ଭଗବନ୍ତ ନିବେଦିତ ହୋଇଥିବାରୁ ସାଂସାରିକ ଐଶ୍ୱର୍ଯ୍ୟ ଭାବନାରୁ ସେ ନିଜକୁ ମୁକ୍ତ କରି ଭକ୍ତିରସାପ୍ଲୁତ ଚିତ୍ତରେ ମାଧୁର୍ଯ୍ୟଭାବର ଆସ୍ୱାଦନରେ ଆନନ୍ଦ ଲାଭ କରୁଥିଲେ । ସେ ବୈଷ୍ଣବ ଆଚାର ଅନୁଯାୟୀ ମସ୍ତକ ମୁଣ୍ଡନ କରି ଶିଖା ଧାରଣ କରୁଥିଲେ । ତାଙ୍କର ଗୁରୁ ପ୍ରଦତ୍ତ ନାମ ଥିଲା 'ଗୋବିନ୍ଦ ଶରଣ ଦାସ' ଏବଂ ସିଦ୍ଧନାମ ଥିଲା 'ଗୁଞ୍ଜମଞ୍ଜରୀ' । ସେ ଭଗବନ୍ତ ପ୍ରସାଦ ଓ ସାତ୍ତ୍ୱିକ ଆହାର ବ୍ୟତୀତ ଅନ୍ୟ ଆହାର ସ୍ପର୍ଶ କରୁନଥିଲେ । କବି ନବଦ୍ୱୀପ ଓ ଗୟାଧାମକୁ ତୀର୍ଥଯାତ୍ରାରେ ଯାଇଥିଲେ ।

ଗୋପାଳକୃଷ୍ଣ ଦୀର୍ଘ ଅଠସ୍ତରି ବର୍ଷକାଳ ଜୀବିତ ଥିଲେ । ଯୌବନରେ ବ୍ୟାୟାମ ଅଭ୍ୟାସ, ପୁଷ୍ଟିକର ସାତ୍ତ୍ୱିକ ଆହାର ଭୋଜନ, ସଚ୍ଚିନ୍ତା ଓ ଭଗବନ୍ତ ନିବେଦିତପ୍ରାଣ

(୫୭) ସ. କୁ. ପା., ଗୋ. କୃ. ଗ୍ରଂ, କବିଂକ ସଂକ୍ଷିପ୍ତ ଜୀବନୀ, ପୃ. ୭

(୫୮) ଶ୍ରୀ ଫକୀରମୋହନ ଦାସଙ୍କ ଉଲ୍ଲେଖ ଅନୁଯାୟୀ କେବଳ ଗୌରଚନ୍ଦ୍ର କବିଙ୍କ ଅପ୍ରକଟ ସମୟକୁ ଜୀବିତ ଥିଲେ । 'ଭକ୍ତ କବି ଗୋପାଳକୃଷ୍ଣ' ପୃ. ୭

ହେତୁ ଦୀର୍ଘ ଜୀବନ କାଳ ମଧ୍ୟରେ କବିଙ୍କୁ କୌଣସି ରୋଗବ୍ୟାଧି ସ୍ପର୍ଶ କରି ନଥିଲା । ତିରୋଭାବର ଦୁଇଦିନ ପୂର୍ବରୁ କବି ସାମାନ୍ୟ ଜ୍ୱରରେ ପୀଡ଼ିତ ଥିଲେ ।

ସୂର୍ଯ୍ୟଙ୍କର ଉତ୍ତରାୟଣରେ ଓଡ଼ିଆ ଜାତିର ଏହି ପ୍ରିୟ କବି ଖ୍ରୀ: ୧୮୬୨, ଫେବୃୟାରୀ ୩ ତାରିଖ, ଫାଲ୍‌ଗୁନ ଶୁକ୍ଳପକ୍ଷ, ଦ୍ୱିତୀୟା ଦିବସର ପୂର୍ବାହ୍ନରେ ତୁଳସୀ ମାଳା ହସ୍ତରେ ପଦ୍ମାସନରେ ଉପବେଶନ କରି ଭଗବତ୍‌ ଲୀଳା ସ୍ମରଣ କରୁ କରୁ ଗୃହ ଭିତ୍ତିରେ ଅଙ୍ଗାରରେ ପଦଟିଏ ଲେଖି (ଜୀବ ଯିବାକୁ ହୋଇଲା ସଜ, ରାଧାଗୋବିନ୍ଦ ଭଜ) ନଶ୍ୱର ଦେହ ତ୍ୟାଗ କରିଥିଲେ । କବିଙ୍କ ପୂର୍ବ ନିର୍ଦ୍ଦେଶାନୁସାରେ ବୈଷ୍ଣବ ମତରେ ମୃତ୍ୟୁର ଚତୁର୍ଦ୍ଦଶ ଦିବସରେ ଖୋରଦ୍ଧାସ୍ଥ ରାଧାକାନ୍ତ ମଠରେ ମହୋତ୍ସବ ପାଳନ କରାଯାଇ ଥିଲା । କିନ୍ତୁ କବିଙ୍କର ବର୍ତ୍ତମାନ ଜୀବିତ ବଂଶଧରଙ୍କ ମତରେ ମୃତ୍ୟୁପରେ ବୈଦିକ ମତରେ ତାଙ୍କର ଔର୍ଦ୍ଧ୍ୱଦୈହିକ କ୍ରିୟା କରା ଯାଇଥିଲା, ବୈଷ୍ଣବ ମତରେ ନୁହେଁ ।

ଆଜି ସହର ଓ ଗାଁ ଗଣ୍ଡାରେ ପାଠାଗାରର ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଛି । ଊନବିଂଶ ଶତାବ୍ଦୀରେ ଆମର ଏହି ପ୍ରିୟ କବି ପାଠାଗାରର ଉପାଦେୟତା ଉପଲବ୍‌ଧି କରି ଦୁଇଟି ପାଠାଗାର ସ୍ଥାପନ କରି ଯାଇଥିଲେ, ଯଥା—ଖୋରଦ୍ଧା ଗ୍ରାମସ୍ଥ 'ଶ୍ରୀ ରାଧାକାନ୍ତ ପୁସ୍ତକ ଭଣ୍ଡାର' ଏବଂ ଧରାକୋଟର ପୁଞ୍ଜି ଗ୍ରାମସ୍ଥ 'ଶ୍ରୀ ଶ୍ରୀ ବିନାୟକ ପାଠାଗାର' (ଦୀକ୍ଷାଗୁରୁଙ୍କ ନାମାନୁସାରେ ନାମିତ) ।

କବିଙ୍କ ବୃନ୍ଦାବନ ପ୍ରାପ୍ତିର କିୟତ୍‌କାଳ ପରେ (ବାରବର୍ଷ ପରେ) ଜଣେ ସ୍ଥାନୀୟ ଶିଳ୍ପୀ କବିଙ୍କର ଏକ କାଷ୍ଠମୂର୍ତ୍ତି (ପଦ୍ମାସନାସୀନ) ନିର୍ମାଣ କରିଥିଲେ । କବିଙ୍କ ବଂଶଧରମାନେ ସେହି ମୂର୍ତ୍ତିଟିକୁ ପ୍ରତ୍ୟହ ପୂଜା କରୁଛନ୍ତି । ବୈଷ୍ଣବ ମତାବଲମ୍ବୀମାନେ କବିଙ୍କୁ ଏକ ମହାପୁରୁଷ ରୂପେ ସମ୍ମାନ ପ୍ରଦର୍ଶନ କରନ୍ତି (୫୯) ।

ରାସକୃଷ୍ଣ ପଟ୍ଟନାୟକ ଓ କୃଷ୍ଣ ନରେନ୍ଦ୍ରଙ୍କ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଏବଂ ଚକ୍ରପାଣି ପଟ୍ଟନାୟକଙ୍କ ଦୈନିକ ପଞ୍ଜି ଲିଖିତ ବିବରଣୀ ଅନୁଯାୟୀ କବିଙ୍କ ବଂଶଲତା ଏଠାରେ ପ୍ରଦତ୍ତ ହୋଇଛି ।

---

(୫୯) କବିଙ୍କ ମୂର୍ତ୍ତିର ଶିଳ୍ପୀଙ୍କ ନାମ ହେଉଛି କବିଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରିଥିବା ଦାରୁଖାନା ଚଟିଆ ବୃନ୍ଦାବନ ଚନ୍ଦ୍ର ପଟ୍ଟନାୟକ । ଗୋପାଳକୃଷ୍ଣଙ୍କ ତିରୋଧାନ ସମୟକୁ ସେ ପ୍ରାୟ ଅଠର ବର୍ଷର ଯୁବକ । କବିଙ୍କ ତିରୋଭାବର କିଛି ବର୍ଷ ପରେ ଶିଳ୍ପୀ ପାଳଧୁଆ କାଠ ଓ ସୋଲରେ କବିଙ୍କର ମୂର୍ତ୍ତି ନିର୍ମାଣ କରିଥିଲେ । ମୂର୍ତ୍ତି ଉପରେ କାଗଜ କନା ମଡ଼ାଯାଇ ଖଡ଼ି ପଥର ଚୂର୍ଣ୍ଣ ବୋଳାଯାଇ ରଙ୍ଗ କରା ଯାଇଛି । ମୂର୍ତ୍ତିଟି କବିଙ୍କ ଗୃହର ରାସ୍ତା ପାର୍ଶ୍ୱସ୍ଥ ଏକ କ୍ଷୁଦ୍ର କକ୍ଷରେ ରଖାଯାଇ ଅନ୍ୟ ଦେବତାଙ୍କ ସହ ପୂଜା କରା-ଯାଉଛି । ରସିକ ରାଜଙ୍କଠାରୁ ବାଲଭୋଗ ଅଣାଯାଇ କକ୍ଷରେ ପ୍ରତିଷ୍ଠିତ ବିମାନସ୍ଥ ପୀଠ ଦେବତାଙ୍କ ପୂଜା ପରେ ପାରମ୍ପରିକ ମନ୍ତ୍ରପାଠ କରାଯାଇ କବିଙ୍କୁ ଅର୍ପଣ କରାଯାଏ ।

ମୂର୍ତ୍ତି ନିର୍ମାଣ ବିଷୟରେ ଶ୍ରୀ ଫକୀର ମୋହନ ଦାସ ଯେଉଁ ବିବରଣୀ ଦେଇଛନ୍ତି ତାହା ପୃଥକ । 'ଭକ୍ତ କବି ଗୋପାଳକୃଷ୍ଣ', ପୃ. ୫୬

## ବଂଶଲତା

ଶ୍ରୀ ମାନ୍ଧାତା ପଟ୍ଟନାୟକ

× × ×

ଶ୍ରୀ ନନ୍ଦକିଶୋର ପଟ୍ଟନାୟକ ✳

ଶ୍ରୀ ଭାସ୍କର ପଟ୍ଟନାୟକ

ଶ୍ରୀ ବଂଶୀଧାରୀ ପଟ୍ଟନାୟକ

ଶ୍ରୀ ବନବାସୀ ପଟ୍ଟନାୟକ (ସ୍ତ୍ରୀ ଲଳିତା) — ଶ୍ରୀ ବ୍ରଜବାସୀ ପଟ୍ଟନାୟକ (ନିଃସନ୍ତାନ)

କବି ଶ୍ରୀ ଗୋପାଳକୃଷ୍ଣ ପଟ୍ଟନାୟକ (ସ୍ତ୍ରୀ ହୀରାମଣୀ) — ଚନ୍ଦ୍ରମା — ରାଧାମା — ଦୁଆଣ — କୃଷ୍ଣପ୍ରିୟା

ଗୌରଚନ୍ଦ୍ର (ସ୍ତ୍ରୀ:ସୁନାମା) — ହରବନ୍ଧୁ (ସ୍ତ୍ରୀ:ପୌର୍ଣ୍ଣମାସୀ) (କନ୍ୟା:ସାନାମା) — କରୁଣାନିଧି (ବାଲ୍ୟମୃତ) — ନୃସିଂହଚରଣ (ନିଃସନ୍ତାନ) — ଲଳିତାମା — ଗୋଷ୍ଠମା — ହିଅମା — ଆମିମା

ଗୋପୀନାଥ — ବୈଷ୍ଣବଚରଣ (ସ୍ତ୍ରୀ:ରାଧାମଣି)

ଗୋପୀନାଥଙ୍କ ସନ୍ତାନ: ରାମକୃଷ୍ଣ (ସ୍ତ୍ରୀ:ଗୋଷ୍ଠମା) — ନୀଳମଣି (ସ୍ତ୍ରୀ:ରତ୍ନମଣି) — ସୂର୍ଯ୍ୟନାରାୟଣ (ସ୍ତ୍ରୀ:କେଶରମଣି)

ବୈଷ୍ଣବଚରଣଙ୍କ ସନ୍ତାନ: ବନବାସୀ (ସ୍ତ୍ରୀ:ଝରମା) (ଅପୁତ୍ରିକ) — ଗୋବିନ୍ଦଚନ୍ଦ୍ର (ସ୍ତ୍ରୀ:ପୁଟିମା) — ଚକ୍ରପାଣି (ସ୍ତ୍ରୀ:ସୁନାମା)

ରାମକୃଷ୍ଣ → ଚାରିପୁତ୍ର

ସୂର୍ଯ୍ୟନାରାୟଣ → ଛ ପୁତ୍ର

ଗୋବିନ୍ଦଚନ୍ଦ୍ର → ଗଦାଧର

ଗଦାଧର ଓ ଚକ୍ରପାଣିଙ୍କ ରେଖାରୁ: ବ୍ରଜବନ୍ଧୁ — କୃଷ୍ଣଚନ୍ଦ୍ରମା — ଗୋପାଳକୃଷ୍ଣ — ବ୍ରଜବନ୍ଧୁ

ବ୍ରଜବନ୍ଧୁ → ପାଞ୍ଚପୁତ୍ର; କୃଷ୍ଣଚନ୍ଦ୍ରମା → ପାଞ୍ଚପୁତ୍ର; ଗୋପାଳକୃଷ୍ଣ → ଦୁଇପୁତ୍ର

ରାଧାରମଣ — ରାଧାନନ୍ଦ — ରାଧାଚରଣ

✳ ଶ୍ରୀ ଫକୀର ମୋହନ ଦାସଙ୍କ ଉଲ୍ଲେଖ ଅନୁଯାୟୀ 'କିଶୋର ପଟ୍ଟନାୟକ' ।

# ଦ୍ୱିତୀୟ ପରିଚ୍ଛେଦ

## (କ) ସଙ୍ଗୀତ ଶାସ୍ତ୍ର ଓ ସଙ୍ଗୀତ ରଚନାର ପରମ୍ପରା

[ ବୈଦିକ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ]

ଗୋପାଳକୃଷ୍ଣ ଚଉତିଶା, କୋଇଲି, ବୋଲି, ଚନ୍ଦ୍ରିକା, ଚଉପଦୀ, ଅଷ୍ଟକ, ଚତୁଷ୍ପଦୀ, ଛାନ୍ଦ ଓ ବରୁଦ ପ୍ରଭୃତି ନାନା ସାହିତ୍ୟ ରୂପର ଅଭିବ୍ୟକ୍ତିରେ ନିଜର ଶ୍ରମ ଓ ଶକ୍ତି ବିନିଯୋଗ କରିଥିଲେ ମଧ୍ୟ ରାଧାକୃଷ୍ଣଙ୍କ ମଧୁର ପ୍ରେମଲୀଳା, ବାତ୍ସଲ୍ୟଭାବ, ଭକ୍ତି ଓ ଆଦିରସ ସମ୍ପର୍କିତ ସଙ୍ଗୀତ ବା ଚଉପଦୀ ଗୁଡ଼ିକରେ ତାଙ୍କର ପ୍ରତିଭାର ଅମଳିନ ସ୍ୱାକ୍ଷର ରହିଛି। ଭାବ ତଥା ରସାନୁରୂପ ନାନାବିଧ ରାଗରାଗିଣୀ ଏବଂ ତାଳର ନିର୍ଦ୍ଦେଶରୁ ନାନାବିଧ କାବ୍ୟ ଓ ଶାସ୍ତ୍ରଜ୍ଞାନ ସହିତ ସଙ୍ଗୀତ ଶାସ୍ତ୍ରରେ କବିସୂର୍ଯ୍ୟ ବଳଦେବଙ୍କ ପରି ଯେ କବିଙ୍କର ଅସାଧାରଣ ପ୍ରବେଶ ଥିଲା ଏଥିରେ ସନ୍ଦେହ ନାହିଁ। ଭାରତର ବିଖ୍ୟାତ କବି, ଗୀତିକାର ଓ ସଙ୍ଗୀତଜ୍ଞଙ୍କ ପଛରେ ସାହିତ୍ୟ ଓ ସଙ୍ଗୀତ ଶାସ୍ତ୍ରର ତଥା ସୃଷ୍ଟିର ଯେଉଁ ଉଜ୍ଜ୍ୱଳ ପରମ୍ପରା ରହିଛି, କବି ଗୋପାଳକୃଷ୍ଣ ସେହି ପରମ୍ପରାର ଅନ୍ୟତମ ଯୋଗ୍ୟ ଦାୟାଦ କହିଲେ ଅତ୍ୟୁକ୍ତି ହେବ ନାହିଁ। କବିଙ୍କର ସୃଷ୍ଟିର ସ୍ୱାଦ ଓ ଯଥାର୍ଥ ମୂଲ୍ୟାୟନ ନିମିତ୍ତ ତା'ର ପୃଷ୍ଠଭୂମି ରୂପେ ଭାରତୀୟ ସଙ୍ଗୀତ ଶାସ୍ତ୍ର ଓ ସଙ୍ଗୀତ (ପଦ, ଗୀତ, ଗାନ) ରଚନାର ପରମ୍ପରା ସମ୍ପର୍କରେ ସୂଚନା ଦେବା ପ୍ରୟୋଜନ ମନେ ହୁଏ।

**ପଞ୍ଚମବେଦ :**

ଏହି (ଭାରତୀୟ) ସଙ୍ଗୀତ ବେଦସମ୍ଭୂତ; ଏହାକୁ ପଞ୍ଚମ ବେଦ ବୋଲି କୁହାଯାଏ (୧)।

ଭାରତୀୟ ସଙ୍ଗୀତରେ ଦୁଇଟି ରୂପ ଯଥା—ମାର୍ଗ ଓ ଦେଶୀ। ଏହା ପୂର୍ବରୁ ଗାନ୍ଧର୍ବ ସଙ୍ଗୀତର ପ୍ରଚଳନ ଭାରତରେ ଥିଲା। ଆଚାର୍ଯ୍ୟ ଭରତ ଓ ମତଙ୍ଗ ପ୍ରଭୃତି ଋଷି ମାର୍ଗ ଓ

---

(୧) ପୁରା ଚତୁର୍ଣ୍ଣାଂ ବେଦାନାଂ ସାରମାକୃଷ୍ୟ ପଦ୍ମଭୂଃ।
ଇଦଂ ତୁ ପଞ୍ଚମଂ ବେଦଂ ସଙ୍ଗୀତାଖ୍ୟମକଳ୍ପୟତ୍। ୩।

କବି ରତ୍ନ ପୁରୁଷୋତ୍ତମ ମିଶ୍ର (ଗଜପତି ନାରାୟଣ ଦେବଙ୍କ ନାମରେ ରଚିତ) ସଙ୍ଗୀତ ନାରାୟଣଃ, ୧ମପ., ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ୧୯୬୭,

ଦେଶୀ ସଙ୍ଗୀତର ଅନୁଶୀଳନ କରି ତା'ର ପ୍ରଚାର କରିଥିଲେ । ଆଚାର୍ଯ୍ୟ ମତଙ୍ଗ ତାଙ୍କର ସଙ୍ଗୀତଶାସ୍ତ୍ର ସମ୍ପର୍କିତ ଗ୍ରନ୍ଥ 'ବୃହଦ୍ଦେଶୀ'ରେ କହିଛନ୍ତି—

ଆଳାପାଦିସନ୍ନିବଦ୍ଧୋ
ଯଃ ସ ମାର୍ଗଃ ପ୍ରକୀର୍ତ୍ତିତଃ ।
ଆଳାପାଦିବିହୀନସ୍ତୁ
ସ ଚ ଦେଶୀ ପ୍ରକୀର୍ତ୍ତିତଃ ।

ଅର୍ଥାତ୍ ଆଳାପାଦି ବିଧି ସମ୍ମତ ଓ ବନ୍ଧନ ଧାତୁ ବା ପଦ ସମନ୍ୱିତ ସଙ୍ଗୀତର ନାମ ମାର୍ଗ ସଙ୍ଗୀତ । ଯେଉଁ ସଙ୍ଗୀତରେ ଏ ସବୁ ଆଳାପାଦିର ନିୟମ ନାହିଁ, ଯାହା ସ୍ୱଚ୍ଛନ୍ଦରେ ଆନନ୍ଦରେ ସର୍ବସାଧାରଣଙ୍କ ଦ୍ୱାରା ଗାନ କରାଯାଏ, ତାହା ଦେଶୀ ସଙ୍ଗୀତ ।

ସଙ୍ଗୀତ ନାରାୟଣରେ ଉଲ୍ଲେଖ ଅଛି—

ମାର୍ଗଦେଶୀବିଭେଦେନ ସଙ୍ଗୀତଂ ଭବତି ଦ୍ୱିଧା । ୧ । ୧୧

ଅର୍ଥାତ୍ ମାର୍ଗ ଓ ଦେଶୀ ଭେଦରେ ସଂଗୀତ ଦୁଇ ପ୍ରକାର ।

**ସାମ :**

'ସାମବେଦ' ଭାରତୀୟ ସଙ୍ଗୀତର ଆଦି ଉତ୍ସ । ଗୀତିରୂପ ବେଦମନ୍ତ୍ରକୁ 'ସାମ' କୁହାଯାଏ । ଜୈମିନି ଋଷି ସାମର ଲକ୍ଷଣ ସମ୍ପର୍କରେ କହିଛନ୍ତି, 'ଗୀତେଷୁ ସାମାଖ୍ୟା,' ଅର୍ଥାତ୍ ଗୀତିମାନ ମନ୍ତ୍ରର ନାମ 'ସାମ' । ପୁଣି 'ଜୈମିନୀୟ ମୀମାଂସା ସୂତ୍ର'ରେ ରହିଛି ଯେ ପାଦବନ୍ଧ ଓ ଅର୍ଥଯୁକ୍ତ ଛନ୍ଦୋବଦ୍ଧ ମନ୍ତ୍ରଗୁଡ଼ିକ ହେଉଛନ୍ତି ଋକ୍, ଗୀତି ରୂପେ ରଚିତ ମନ୍ତ୍ରଗୁଡ଼ିକ 'ସାମ' ଏବଂ ଛନ୍ଦଃ ଓ ଗୀତିବର୍ଜିତ ଗଦ୍ୟମନ୍ତ୍ର ଗୁଡ଼ିକ ଯଜୁଃ (୨) ।

ସାମବେଦରେ ସହସ୍ର ପ୍ରକାର ଗୀତିର ଉପାସ୍ୟ ନିର୍ଦ୍ଦିଷ୍ଟ ହୋଇଛି । ଯଜ୍ଞରେ 'ସାମ' ମନ୍ତ୍ର ଦ୍ୱାରା ଦେବ ସ୍ତୁତି କରିବାକୁ ହୁଏ; ସାମ ମନ୍ତ୍ର ଋକ ମନ୍ତ୍ରର ସଂସ୍କାରକ । ସାମଗାନ ବିଧି ଏବଂ ଭିନ୍ନ ଭିନ୍ନ ସାମର ଭିନ୍ନ ଭିନ୍ନ ନାମ ଓ ଛନ୍ଦ ପ୍ରଭୃତିର ଆଲୋଚନା ସାୟଣାଚାର୍ଯ୍ୟକୃତ ସାମଭାଷ୍ୟର ଅନୁକ୍ରମଣିକାରେ ମିଳେ । ଛାନ୍ଦୋଗ୍ୟ ଓ କେନ ଏହି ଦୁଇଟି ସାମବେଦର ପ୍ରଧାନ ଉପନିଷଦ ।

ସାମବେଦର ମନ୍ତ୍ରଗୁଡ଼ିକ ପ୍ରଧାନତଃ ଗାୟତ୍ରୀ, ତ୍ରିଷ୍ଟୁପ୍ ଓ ଜଗତୀ ଛନ୍ଦରେ ରଚିତ । ତିନି ମାତ୍ରାରେ ଉଚ୍ଚାରିତ ପ୍ଳୁତ ସ୍ୱର ଏଥିରେ ବାରମ୍ବାର ଦେଖାଯାଏ । ବେଦରେ ବୀଣା ପ୍ରଭୃତି ନାନା ପ୍ରକାର ବାଦ୍ୟ ଯନ୍ତ୍ରର ଉଲ୍ଲେଖ ରହିଛି । ସେ ସବୁ ଯନ୍ତ୍ର ସାହାଯ୍ୟରେ

---

(୨) ପାଦବନ୍ଧେନାର୍ଥେନ ଚୋପେତାଃ ବୃତ୍ତବଦ୍ଧା ମନ୍ତ୍ରାଃ ଋଚଃ । ଗୀତିରୂପାଃ ମନ୍ତ୍ରାଃ ସାମାନି । ବୃତ୍ତଗୀତିବର୍ଜିତତ୍ୱେନ ପ୍ରଶ୍ଳିଷ୍ଟଃ ପଠିତାଃ ମନ୍ତ୍ରାଃ ଯଜୂଂଷି ।

ସାମବେଦ (ସାୟଣଭାଷ୍ୟାନୁସାରେ ଅନୂଦିତ), ଅନୁ : ସ୍ୱାମୀ ଜଗଦୀଶ୍ୱରାନନ୍ଦ, ରାମକୃଷ୍ଣ ଧର୍ମଚକ୍ର, ବେଲୁଡ଼, ୧୩୬୬, ଅବତରଣିକା, ପୃ. ୧୯

ଋଷିମାନେ ବେଦମନ୍ତ୍ର ଗାନ କରୁଥିଲେ । 'ସଙ୍ଗୀତ ରତ୍ନାକର'ର ଟୀକାକାର କଲ୍ଲିନାଥ ବୈଦିକ ଅଶ୍ୱମେଧ ଯଜ୍ଞରେ ବୀଣାବାଦକ ଓ ଗାୟକ ବ୍ରାହ୍ମଣ କଥା ଉଲ୍ଲେଖ କରିଛନ୍ତି । ସଂହିତା ଓ ପୁରାଣ ପ୍ରଭୃତିରେ ସାମ ସଙ୍ଗୀତର ପ୍ରତିଶବ୍ଦ ରୂପେ ଗାଥା, ଗାନ, ଉଦ୍‌ଗାନ, ସ୍ତୋମ ପ୍ରଭୃତି ଶବ୍ଦର ଉଲ୍ଲେଖ ରହିଛି ।

ବୈଦିକ ଯୁଗର 'ସାମ' ଗାୟକମାନେ ସମ୍ପ୍ରଦାୟ ଭେଦରେ କେହି କେହି ତିନି ସ୍ୱର, କେହି କେହି ପାଞ୍ଚ ସ୍ୱର, କେହି ଛ' ବା କେହି କେହି ସପ୍ତ ସ୍ୱରର ବ୍ୟବହାର କରୁଥିଲେ । ସେ ସମୟରେ ସପ୍ତ ସ୍ୱରର ନାମ ଥିଲା : କ୍ରୁଷ୍ଟ, ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ମନ୍ଦ୍ର ଓ ଅତିସ୍ୱାର୍ଯ୍ୟ । ସାୟଣାଚାର୍ଯ୍ୟ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ ଓ ସପ୍ତମ : ଏ ପ୍ରକାର ନାମକରଣ କରିଛନ୍ତି । ସାୟଣଙ୍କର ବହୁ ପୂର୍ବବର୍ତ୍ତୀ ନାରଦ ତାଙ୍କର 'ଶିକ୍ଷା' ଗ୍ରନ୍ଥରେ (ପରବର୍ତ୍ତୀ କାଳରେ ଶିକ୍ଷା ସଂଗ୍ରହ ନାମରେ ପରିଚିତ) ଷଡ୍‌ଜାଦି ସପ୍ତ ସ୍ୱରର ନାମ ନିର୍ଦ୍ଦିଷ୍ଟ କରି ଯାଇଛନ୍ତି, ଯଥା—

ଷଡ୍‌ଜଶ୍ଚ ଋଷଭଶ୍ଚ ଗାନ୍ଧାରୋ ମଧ୍ୟମ ସ୍ତଥା ।
ପଞ୍ଚମୋ ଧୈବତଶ୍ଚୈବ ନିଷାଦଃ ସପ୍ତମଃ ସ୍ୱରଃ ।

ଭରତମୁନି ନାରଦ ପ୍ରଣୀତ ସଙ୍ଗୀତ ଶାସ୍ତ୍ରର ସଙ୍ଗ୍ରାହକ ।

**ସଙ୍ଗୀତ ମକରନ୍ଦ :**

ଭାରତୀୟ ସଙ୍ଗୀତର ତଥ୍ୟ ଓ ତତ୍ତ୍ୱ ବିଷୟରେ ଅନ୍ୟ ଏକ ପ୍ରାମାଣିକ ଗ୍ରନ୍ଥର ନାମ 'ସଙ୍ଗୀତ ମକରନ୍ଦ' । ଏ ଗ୍ରନ୍ଥର ପ୍ରଣେତା ହେଉଛନ୍ତି 'ନାରଦ' ନାମଧାରୀ ଜଣେ ଆଚାର୍ଯ୍ୟ । ତା' ପରେ ପରେ ବହୁ ଆଚାର୍ଯ୍ୟ ଓ ଟୀକା-ଭାଷ୍ୟ-ପ୍ରଣେତା ଭାରତୀୟ ସଙ୍ଗୀତ ସମ୍ପର୍କରେ ଗଭୀର ଆଲୋଚନା କରି ଯାଇଛନ୍ତି । ସେମାନେ ସଙ୍ଗୀତର ଯେଉଁ ପ୍ରତିରୂପ ଗଠନ କରି ଯାଇଥିଲେ, ଦ୍ୱାଦଶ ଶତକର ବିଶ୍ୱବିଖ୍ୟାତ କବି ଜୟଦେବଙ୍କର ଶ୍ରୀ ଗୀତଗୋବିନ୍ଦରେ ତା'ର ଉଜ୍ଜ୍ୱଳ ଆଲେଖ୍ୟ ରହିଛି (୩) ।

**ଜୟଦେବ ଓ ଗୀତଗୋବିନ୍ଦ : ପ୍ରବନ୍ଧ ଗୀତ :**

ଜୟଦେବ ନିଜର ଗୀତ ଗୋବିନ୍ଦକୁ 'ପ୍ରବନ୍ଧ ସଙ୍ଗୀତ' ବୋଲି କହିଛନ୍ତି । ପ୍ରବନ୍ଧ ଗୀତ 'ନିବଦ୍ଧ ଗୀତ'ର (୪) ଅନ୍ତର୍ଭୁକ୍ତ । ନିବଦ୍ଧର ଅର୍ଥ ଧାତୁବଦ୍ଧ ଗାନ । ନିବଦ୍ଧ ଗୀତ ତିନି

(୩) ୧୧ଶ ଶତାବ୍ଦୀରେ ମଧ୍ୟ କ୍ଷେମେନ୍ଦ୍ର ତାଙ୍କର 'ଦଶାବତାର ଚରିତ'ରେ ପ୍ରାକୃତ (ଅପଭ୍ରଂଶ) ଛନ୍ଦରେ ରଚିତ ଦୁଇଟି ଗୀତ ଉଲ୍ଲେଖ କରିଛନ୍ତି ।
ଡଃ ସୁକୁମାର ସେନ History of Braja Buli literature, Ist edn., Calcutta University, P. 484.

(୪) ସଙ୍ଗୀତ ଦୁଇପ୍ରକାର : ନିବଦ୍ଧ ଓ ଅନିବଦ୍ଧ ।
ନିବଦ୍ଧ :— ବଦ୍ଧଂ ଧାତୁଭିରଙ୍ଗୈଶ୍ଚ ନିବଦ୍ଧମଭିଧୀୟତେ ।
ଶୁଦ୍ଧଂ ଛାୟାଲଗଂ କ୍ଷୁଦ୍ରମିତି ତଚ୍ଚ ତ୍ରିଧା ମତମ୍ । (ସଙ୍ଗୀତ ନାରାୟଣ)

ପ୍ରକାର, ଯଥା—ଶୁଦ୍ଧ, ସାଳଗ (ଛାୟାଲଗ) ଓ ସଙ୍କୀର୍ଣ୍ଣ ଅଥବା ପ୍ରବନ୍ଧ, ବସ୍ତୁ ଓ ରୂପକ। 'ପ୍ରବନ୍ଧ' ଗାନ (୫) 'ଶୁଦ୍ଧ' ଗୀତର (୬) ଅନ୍ତର୍ଭୁକ୍ତ।

ଶୁଦ୍ଧ ବା ପ୍ରବନ୍ଧ ଗୀତର ଗୃଣଧାତୁ ଓ ଛ' ଅଙ୍ଗ। ଧାତୁର (୭) ଅର୍ଥ ହେଉଛି ଅବୟବ ବା ନାଦାତ୍ମକ ସ୍ୱର। ଧାତୁ ଗୁଡ଼ିକର ନାମ ହେଉଛି : ଉଦ୍‌ଗ୍ରାହକ, ମେଳାପକ,




(୫) ପ୍ରବନ୍ଧ :—ନିବଦ୍ଧଃ ଷଡ଼୍‌ଭିରଙ୍ଗୈଶ୍ଚ ଚତୁର୍ଭିର୍ଧାତୁଭିଶ୍ଚ ଯଃ
ସ୍ୱରୋଦଃ ସ ପ୍ରବନ୍ଧଃ ସ୍ୟାତ୍ ଇତ୍ୟୁକ୍ତଂ ତଜ୍ଜ୍ଞକାନ ତୁ ॥
ଷଡ଼ଙ୍ଗାନୀତି ଚେଦ୍ ବ୍ରୂମଃ ସ୍ୱରଶ୍ଚ ବିରୁଦଂ ପଦମ୍।
ତେନକ ପାଟ ତାଳୌ ଚେତ୍ୟେତାନ୍ୟଙ୍ଗାନି ଷଟ୍ ପୁନଃ (ଚତୁର୍ଦ୍ଦଣ୍ଡୀ ପ୍ରକାଶିକା)

(୬) ଶୁଦ୍ଧ:—ଆଳାପୈର୍ଧାତୁଭିଷ୍ଟାଙ୍ଗୈଃ ସଂଯୁକ୍ତଂ ଶୁଦ୍ଧମୁଚ୍ୟତେ। (ସଙ୍ଗୀତ ନାରାୟଣ)

(୭) ଧାତୁ:—ଧାତୁର୍ନାମ ପ୍ରବନ୍ଧ୍ୟାବୟବଃ ସ ଚତୁର୍ବିଧଃ।
ଉଦ୍‌ଗ୍ରାହଃ ପ୍ରଥମସ୍ତତ୍ର ତତୋ ମେଳାପକଃ।
ଧ୍ରୁବୋ ଆଭୋଗଶ୍ଚ ............... । (ଚତୁର୍ଦ୍ଦଣ୍ଡୀ ପ୍ରକାଶିକା)
ଉଦ୍‌ଗ୍ରାହ—ପ୍ରବନ୍ଧର ଆଦ୍ୟମ ଭାଗ, ମେଳାପକ—ଉଦ୍‌ଗ୍ରାହ ଓ ଧ୍ରୁବର ମଧ୍ୟବର୍ତ୍ତୀ ଭାଗ, ଧ୍ରୁବ—ତୃତୀୟଭାଗ, ଆଭୋଗ—ଅନ୍ତିମଭାଗ।
ଶ୍ରୀ ନୀଳମାଧବ ପାଣିଗ୍ରାହୀ "ଦୀନକୃଷ୍ଣଙ୍କ ଛାୟା ଲଗେ ଗୀତର ପ୍ରକୃତ ଅର୍ଥ" ପ୍ରବନ୍ଧରୁ (ଝଙ୍କାର, ୧ମବର୍ଷ, ୧ମସଂଖ୍ୟା) ଶ୍ଲୋକ ଗୁଡ଼ିକ ଉଦ୍ଧୃତ।

ଧ୍ରୁବ ଓ ଆଭୋଗ । ଧ୍ରୁବ ଓ ଆଭୋଗ ମଧ୍ୟରେ କେହି କେହି 'ଅନ୍ତରା' ନାମକ ଗୋଟିଏ ଧାତୁର ନାମୋଲ୍ଲେଖ କରି ପଞ୍ଚ ଧାତୁ କଥା କହନ୍ତି । ଛ'ଟି ଅଙ୍ଗର ନାମ : ସ୍ୱର, ବିରୁଦ, ପଦ, ତେନ (ତେନକ), ପାଟ (ପାଠ) ଓ ତାଳ । ସା, ରି, ଗ, ମ ଇତ୍ୟାଦି ଆଳାପ ହେଉଛି 'ସ୍ୱର' । ପ୍ରଶଂସା ବା ଗୁଣବାଚକ ଗୀତ ହେଉଛି 'ବିରୁଦ' । ଅର୍ଥ ପ୍ରକାଶ କରୁଥିବା କଥାକୁ 'ପଦ' କୁହାଯାଏ । ସଙ୍ଗୀତର ସମଗ୍ର ଅଂଶ ମଧ୍ୟ ପଦ । ମଙ୍ଗଳବାଚକ ଶବ୍ଦକୁ ତେନ କୁହାଯାଏ । ସଙ୍ଗୀତରେ ବ୍ୟବହୃତ ବାଦ୍ୟର ବୋଲ ହେଉଛି 'ପାଟ' ବା 'ପାଠ' । ପରିମିତ ସମୟରେ ଯତି ବା ବିରାମକୁ ତାଳ (କାଳ ବିଭାଗ) କୁହାଯାଏ ।

ଶୁଦ୍ଧ ପ୍ରବନ୍ଧଗୀତ ପାଞ୍ଚଜାତିରେ (ସଙ୍ଗୀତ ରତ୍ନାକର ମତରେ) ବିଭକ୍ତ, ଯଥା— ମେଦିନୀ, ନନ୍ଦିନୀ, ଦୀପନୀ, ପାବନୀ (ଭାବନୀ) ଓ ତାରାବଳୀ । ସ୍ୱର, ବିରୁଦ ଓ ପଦ ଆଦି ଛ' ଅଙ୍ଗଯୁକ୍ତ ଗାନ ହେଉଛି ମେଦିନୀ; ସ୍ୱର, ପଦ, ତେନ, ପାଟ (ପାଠ) ଓ ତାଳ ଏହି ପଞ୍ଚାଙ୍ଗ-ଯୁକ୍ତ ଗାନ ନନ୍ଦିନୀ; ସ୍ୱର, ପଦ, ତେନ ଓ ତାଳଯୁକ୍ତ ଗାନ ଦୀପନୀ; ସ୍ୱର, ପଦ ଓ ତାଳଯୁକ୍ତ ଗାନ ପାବନୀ ଏବଂ ପଦ ଓ ତାଳ ଯୁକ୍ତ ଗାନକୁ ତାରାବଳୀ କୁହାଯାଏ (୮) ।

ଜୟଦେବ ଗୀତଗୋବିନ୍ଦକୁ ପ୍ରବନ୍ଧଗୀତ ବୋଲି କହିଥିଲେ ମଧ୍ୟ ଏଥିରେ ନିର୍ଦ୍ଦିଷ୍ଟ ଧାତୁ ଓ ଅଙ୍ଗ ସଂଖ୍ୟା ନ ଥିବାରୁ ଏହା ପ୍ରବନ୍ଧ (ଶୁଦ୍ଧ) ଗୀତ ଶ୍ରେଣୀସ୍ଥ ନୁହେଁ । ପ୍ରକୃଷ୍ଟ ବନ୍ଧ (ଗ୍ରନ୍ଥ, ସନ୍ଦର୍ଭ, ରଚନା) ପ୍ରବନ୍ଧ ଅର୍ଥରେ ଏହାକୁ କେବଳ ପ୍ରବନ୍ଧଧର୍ମୀ କୁହାଯାଇ ପାରେ । ଏହା ସ୍ୱରତାଳ ସମନ୍ୱିତ ଗୀତମୟ ରଚନା । ବିଭିନ୍ନ ଧାତୁ ଓ ଆଳାପ ସଂଯୋଗ ଘଟି ନଥିବାରୁ ଏହା ଶୁଦ୍ଧଗୀତ ନୁହେଁ । ଏହାର ତାଳ ଓ ଧାତୁଯୁକ୍ତ ରଚନା ହେତୁ ଏହାକୁ କ୍ଷୁଦ୍ରଗୀତ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ; କିନ୍ତୁ ଏହା ଧ୍ରୁବପ୍ରଭୃତି ପାଞ୍ଚାଳୀ ବିଭାଗୀୟ ନୁହେଁ, ଅଧ୍ରୁବା ପାଞ୍ଚାଳୀ ବିଭାଗୀୟ ଗୀତ (୯) ।

କିନ୍ତୁ ଗୀତଗୋବିନ୍ଦର ଗୀତଗୁଡ଼ିକର ଛନ୍ଦ ପ୍ରାକୃତ ଅଲଙ୍କାର ସାହିତ୍ୟର ଅନୁଗାମୀ, ସଂସ୍କୃତର ନୁହେଁ, ଏପରିକି ଗୀତଗୋବିନ୍ଦର ଭାଷା ଅବିମିଶ୍ର ସଂସ୍କୃତ ନୁହେଁ, ଏଥିରେ ଅନେକ ପ୍ରାକୃତ ଶବ୍ଦ ସ୍ଥାନ ପାଇଛି (୧୦) ।

ଗୀତ ଗୋବିନ୍ଦରେ ଅଶୀଟି ଶ୍ଳୋକ ଓ ଚବିଶଟି ଗୀତ ଅଛି । ୭୭ଟି ଶ୍ଳୋକ ବିଭିନ୍ନ ବୃତ୍ତଛନ୍ଦରେ, ଗୋଟିଏ ଶ୍ଳୋକ ଜାତି ଛନ୍ଦରେ ଏବଂ ଅବଶିଷ୍ଟ ଦୁଇଟି ଶ୍ଳୋକ

---

(୮) 'ଚତୁର୍ଦ୍ଦଣ୍ଡୀ' କାରଙ୍କ ମତରେ ଉଦ୍‌ଗ୍ରାହ ଓ ଧ୍ରୁବ ହେଉଛି ପ୍ରବନ୍ଧର ଦୁଇଟି ଅପରିହାର୍ଯ୍ୟ ଧାତୁ । ବିନା ସ୍ୱର ଓ ତାଳରେ ପ୍ରବନ୍ଧ ରଚନା କଥା ଚିନ୍ତା କରିହୁଏ ନାହିଁ । (ଏଜନ, ପୃ. ୮୫୭)

(୯) କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଶ୍ରୀ ଗୀତଗୋବିନ୍ଦ (ଓଡ଼ିଆ ଅନୁବାଦ), ୧ମ ସଂ., ଦାଶରଥିଦର୍ଶ, କଟକ, ୧୯୬୦, ପୃ. ୩୦୩-୩୦୭ (ମୁଖବନ୍ଧ)

(୧୦) ଶ୍ରୀ ଦୀନେଶ ଚନ୍ଦ୍ର ସେନ, ଶ୍ରୀ ଖଗେନ୍ଦ୍ର ନାଥ ମିତ୍ର, ସଂପା: ବୈଷ୍ଣବ ପଦାବଳୀ (ଚୟନ), ପ୍ରଥମ ସଂସ୍କରଣର ଭୂମିକା, କଲିକତା ବିଶ୍ୱବିଦ୍ୟାଳୟ, ୧୯୬୧, ପୃ.୩.

ଓ ଚବିଶିଟି ଗୀତ ଅପଭ୍ରଂଶ ଛନ୍ଦରେ ରଚିତ ହୋଇଛି । କେତୋଟି ବୃତ୍ତ ଛନ୍ଦ ଉପରେ ଅପଭ୍ରଂଶ ଛନ୍ଦ ଅଙ୍କିତର ପ୍ରଭାବ ପଡ଼ିଛି । ଦୃଷ୍ଟାନ୍ତ ସ୍ୱରୂପ ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛନ୍ଦରେ ରଚିତ ଗୀତଗୋବିନ୍ଦର ନିମ୍ନୋକ୍ତ ଶ୍ଳୋକ ଦ୍ରଷ୍ଟବ୍ୟ—

'ବେଦାନୁଦ୍ଧରତେ । ଜଗନ୍ତି ବହତେ । ଭୂଗୋଳ ମୁଦ୍‌ବିଭ୍ରତେ,
ଦୈତ୍ୟଂ ଦାରୟତେ । ବଳିଂ ଛଳୟତେ । କ୍ଷତ୍ରକ୍ଷୟଂ କୁର୍ବତେ ।'

ଶ୍ଳୋକଟିରେ ମଧ୍ୟାନୁପ୍ରାସ ଓ ଯତି ସାହାଯ୍ୟରେ ଗୋଟିଏ ଗୋଟିଏ ପଙ୍‌କ୍ତିକୁ ଚାରି ଭାଗରେ ଭାଗ କରାଯାଇ ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛନ୍ଦରେ ଏକ ପ୍ରକାର ତରଙ୍ଗ ବୈଚିତ୍ର୍ୟ ସୃଷ୍ଟି କରା ଯାଇଛି । ଏଥିରେ ଯେଉଁ ମିତ୍ରାକ୍ଷରତା ଓ ଯତି ପ୍ରାଧାନ୍ୟ ପରିଲକ୍ଷିତ ହେଉଛି, ତାହା ଅପଭ୍ରଂଶ ଛନ୍ଦ ଓ ପରବର୍ତ୍ତୀ ପ୍ରାଦେଶିକ ଭାଷା ଛନ୍ଦର ବୈଶିଷ୍ଟ୍ୟ (୧୧) ।

ଗୀତଗୋବିନ୍ଦର ଶ୍ଳୋକଗୁଡ଼ିକୁ ଛାଡ଼ିଦେଲେ ଚବିଶିଟି ଗୀତ ଅପଭ୍ରଂଶ ମାତ୍ରା ଛନ୍ଦରେ ରଚିତ । ଏଗୁଡ଼ିକୁ ଚାରିଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ପ୍ରଥମ ଶ୍ରେଣୀର ଛନ୍ଦଗୁଡ଼ିକ ଜାତି ଛନ୍ଦ ବା ମାତ୍ରା ଛନ୍ଦ ଆଦର୍ଶରେ ରଚିତ ହୋଇଛି । ଚବିଶିଟି ଗୀତ ମଧ୍ୟରୁ ଉଣେଇଶିଟି ଗୀତ ଏ ପ୍ରକାର ଛନ୍ଦରେ ରଚିତ । ଏ ପ୍ରକାର ଛନ୍ଦରେ ଗୋଟିଏ ଗୋଟିଏ ପଙ୍‌କ୍ତି (ଚରଣ) ଚାରିମାତ୍ରାର 'ଗଣ' ଦ୍ୱାରା ବିଭକ୍ତ । ଅପଭ୍ରଂଶ ରଚନା ଯୁଗରେ ଉଚ୍ଚାରଣରେ 'ସ୍ୱରାଘାତ' ପ୍ରାଧାନ୍ୟ ଲାଭ କରିବାରୁ କବିତା ଆବୃତ୍ତି ସମୟରେ ଏକ ପ୍ରକାର ଝୁଙ୍କ ଦେଖାଦେଇ ପଦ୍ୟର ପଙ୍‌କ୍ତିକୁ କେତୋଟି କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବିଭକ୍ତ କରିଥିଲା । ମିତ୍ରାକ୍ଷର ପ୍ରବର୍ତ୍ତିତ ହେବା ଫଳରେ ପଙ୍‌କ୍ତିର ଅଂଶ ଗୁଡ଼ିକ ଆହୁରି ସ୍ପଷ୍ଟ ହୋଇ ଉଠିଲା । ଗୋଟିଏ ପ୍ରକାର ଜାତି ଛନ୍ଦରେ ଏହି ଝୁଙ୍କ, ଯତି ଓ ଚାରି ମାତ୍ରାର 'ଗଣ' ବିଶେଷ ପ୍ରାଧାନ୍ୟ ଲାଭ କରିଥିଲା । ସଂସ୍କୃତ ଛନ୍ଦ ଶାସ୍ତ୍ରରେ ଏହି ଛନ୍ଦ ଗୋଷ୍ଠୀର ନାମ 'ମାତ୍ରା-ସମକ ଛନ୍ଦ' । ଗୀତଗୋବିନ୍ଦର ଏହି ପ୍ରଥମ ଶ୍ରେଣୀର ଅନ୍ତର୍ଭୁକ୍ତ ଗୀତଗୁଡ଼ିକ 'ମାତ୍ରାସମକ ଛନ୍ଦ' ଆଦର୍ଶରେ ରଚିତ ଏବଂ ଗୋଟିଏ ପ୍ରକାର ମାତ୍ରାସମକ ଛନ୍ଦର ନାମ 'ପାଦାକୁଳକ' (୧୨) । ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ଛନ୍ଦ ଗୁଡ଼ିକ ଯଥାକ୍ରମେ 'ପାଞ୍ଚ ମାତ୍ରାର'(୧୩) ଓ 'ସାତ ମାତ୍ରା'ର ଗଣ ଦ୍ୱାରା ଗଠିତ । ଚତୁର୍ଥ ଶ୍ରେଣୀର ଅପଭ୍ରଂଶ

---

(୧୧) ଅଧ୍ୟାପକ ସୁଧୀଭୂଷଣ ଭଟ୍ଟାଚାର୍ଯ୍ୟ, ଶ୍ରୀ ଗୀତଗୋବିନ୍ଦେ ଛନ୍ଦ, କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ, ୪ର୍ଥସଂ, ଭୂମିକା, ପୃ. ୨୩୦-୨୩୨

(୧୨) (କ) ଏଜନ, ପୃ. ୨୩୨-୨୩୩

(ଖ) କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ମତରେ ଗୀତ ଗୋବିନ୍ଦର ଗୀତ ପଦାକୁଳକ ବା ପଦ୍ଝଟିକାର ଅନୁକୂଳ ରଚନା ଏବଂ କ୍ଷୁଦ୍ର ଗୀତ ପର୍ଯ୍ୟାୟର ନିବଦ୍ଧ ସଙ୍ଗୀତ । ଶ୍ରୀ ଗୀତ ଗୋବିନ୍ଦ ମୁଖବନ୍ଧ: ପୃ. ୩୧୧

(୧୩) ବିଦଧି ଯଦ । କଞ୍ଚିଦପି । ଦନ୍ତରୁଚି । କୌମୁଦୀ । ହରତି ଦର । ତିମିର ମତି । ଘୋରମ୍ । କବି ଜୟଦେବ ଓ ଶ୍ରୀ ଗୀତ ଗୋବିନ୍ଦ, ଭୂମିକା, ପୃ. ୨୩୬

ଛନ୍ଦ ଗୁଡ଼ିକ ବିଭିନ୍ନ ମାତ୍ରା-ଦୈର୍ଘ୍ୟର ଗଣ ଦ୍ୱାରା ଗଠିତ ହୋଇଥିବାରୁ ଏ ଗୁଡ଼ିକୁ 'ମିଶ୍ରଛନ୍ଦ' କୁହାଯାଏ । ଗୀତଗୋବିନ୍ଦର ଦୁଇଟି ଗୀତରେ ଏହି ଛନ୍ଦର ପ୍ରୟୋଗ ଦେଖାଯାଏ । ଏଥି ମଧ୍ୟରୁ ଚତୁଷ୍ପାଦ ଛନ୍ଦ ପ୍ରୟୋଗରେ କବିଙ୍କର ଅପୂର୍ବ କୁଶଳତା ଲକ୍ଷିତ ହୁଏ । ଏଥିରେ କ-ଙ୍କ-କ-ଖ ଏହି ଭାବରେ ମିତ୍ରାକ୍ଷରର ବିନ୍ୟାସ ହୋଇଛି (୧୪); ଏହାକୁ ଅକ୍ଷରଛନ୍ଦ ମଧ୍ୟ କୁହାଯାଇପାରେ । ପ୍ରାକୃତ ଓ ଅପଭ୍ରଂଶ ଛନ୍ଦରେ ଏ ପ୍ରକାର ଯତି-ବିଭକ୍ତ କ୍ଷୁଦ୍ର କ୍ଷୁଦ୍ର ଗଣ ବା ପର୍ବର ସୂତ୍ରପାତ ହୋଇଥିଲା ।

ଏହି ଭାବରେ ଆଲୋଚନା କଲେ ଜଣାଯିବ ଯେ ଜୟଦେବ ସଂସ୍କୃତ ଛନ୍ଦ ଓ ସଙ୍ଗୀତ ଶାସ୍ତ୍ରର ଶିକ୍ଷା ଦ୍ୱାରା ଯେପରି ପ୍ରଭାବିତ ହୋଇଥିଲେ, କାଳୋପଯୋଗୀ ଅପଭ୍ରଂଶ ଯୁଗର ରୁଚିକୁ ମଧ୍ୟ ଗ୍ରହଣ କରି ସଂସ୍କୃତ ସଙ୍ଗୀତଶାସ୍ତ୍ର, ଛନ୍ଦ ଏବଂ ପ୍ରାକୃତ ଓ ଅପଭ୍ରଂଶ ସଙ୍ଗୀତ ପରମ୍ପରା ଓ ଛନ୍ଦର ଚମତ୍କାର ସମନ୍ୱୟ ସମ୍ପାଦନ କରି ଗୀତ ରଚନାରେ ଅନାଗତ ନବଯୁଗ ପ୍ରତି ବହୁ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ କରିଥିଲେ । ସେଥିପାଇଁ ତାଙ୍କର ରଚନାରେ ପ୍ରାଚୀନ କାବ୍ୟର ପ୍ରଭାବ ଓ ଅପଭ୍ରଂଶୋତ୍ତର ପ୍ରାଦେଶିକ ସାହିତ୍ୟର ସଙ୍କେତ ଦେଖିବାକୁ ମିଳେ (୧୫) । ଗୀତ ଓ କାବ୍ୟ ରଚନାରେ ଓଡ଼ିଶା, ବଙ୍ଗ, ମିଥିଳା ଓ ମହାରାଷ୍ଟ୍ରର ବିଭିନ୍ନ ଯୁଗର କବିମାନେ ଜୟଦେବଙ୍କର ଗୀତଗୋବିନ୍ଦର ଛନ୍ଦ, ରାଗ ଓ କାନ୍ତକୋମଳ ଶବ୍ଦବିନ୍ୟାସ ଦ୍ୱାରା କି ଗଭୀର ଭାବରେ ପ୍ରଭାବିତ, ସେମାନଙ୍କର ରଚନା ତା'ର ଜ୍ୱଳନ୍ତ ସାକ୍ଷ୍ୟ ବହନ କରେ ।

ଜୟଦେବଙ୍କର ଆବିର୍ଭାବ କାଳ ଦ୍ୱାଦଶ ଶତକ ବେଳକୁ ଓଡ଼ିଆ ଭାଷା ଓ ସାହିତ୍ୟର କିଞ୍ଚିତ୍ ବିକାଶ ଲକ୍ଷିତ ହେଲାଣି । ଏକାଦଶ ଶତାବ୍ଦୀ ପୂର୍ବରୁ ରଚିତ 'ବୌଦ୍ଧଗାନ ଓ ଦୋହା'ରେ ବ୍ୟବହୃତ ରାଗ ଗୁଡ଼ିକ, ଯଥା—କାମୋଦୀ, ଗୁର୍ଜ୍ଜରୀ, ଦେଶାକ୍ଷ, ଭୈରବୀ, ପଟ୍ଟମଞ୍ଜରୀ ଇତ୍ୟାଦି ପରବର୍ତ୍ତୀ କାଳରେ ଓଡ଼ିଆ କାବ୍ୟକବିତାର ରଚନାରେ ବ୍ୟବହୃତ ହୋଇଛି ।

---

(୧୪) ଦହତି । ଶିଶିର । ମୟୂଖେ । (୩+୩+୫)=୧୧ ମାତ୍ରା
ମରଣ । ମନୁକ । ଶେରତି । (୩+୩+୩)= ୯ ମାତ୍ରା
ପତତି । ମଦନ । ବିଶି-ାଖେ । (୩+୫+୨)=୧୦ ମାତ୍ରା
ବିଲପତି । ବିକଲତି । ଶ୍ୱେତତି । (୪+୪+୫)=୧୩ ମାତ୍ରା
ଗୀ. ଗୋ. ୫ମ ସର୍ଗ, ୧୦।୩, କବି ଜୟଦେବ ଓ ଶ୍ରୀ ଗୀ. ଗୋ. ପୃ. ୨୩୯

(୧୫) କ) ଶ୍ରୀ ସୁଧୀଭୂଷଣ ଭଟ୍ଟାଚାର୍ଯ୍ୟ, "ଶ୍ରୀ ଗୀତଗୋବିନ୍ଦେ ଛନ୍ଦ", କବି ଜୟଦେବ ଓ ଶ୍ରୀଗୀତଗୋବିନ୍ଦ, ଭୂମିକା, ପୃ. ୬୪୧

ଖ) ଭାରତୀୟ ସଙ୍ଗୀତ ଶାସ୍ତ୍ରର ପରମ୍ପରା ସମ୍ପର୍କରେ ମୁଁ ମୁଖ୍ୟତଃ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ 'କବି ଜୟଦେବ ଓ ଶ୍ରୀ ଶ୍ରୀଗୀତଗୋବିନ୍ଦ'ର ମୁଖବନ୍ଧର କେତୋଟି ପ୍ରବନ୍ଧରୁ ବିଶେଷ ସାହାଯ୍ୟ ଗ୍ରହଣ କରିଛି ।

## ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚା :

ଆୟୁର୍ବେଦ, ସ୍ମୃତି, ଦର୍ଶନ, ତନ୍ତ୍ର, ଜ୍ୟୋତିଷ ଓ ଅଳଙ୍କାର ସହିତ ଛନ୍ଦ, ରାଗରାଗିଣୀ ଓ ଅନ୍ୟାନ୍ୟ କଳା ସମ୍ପର୍କିତ ଉଚ୍ଚାଙ୍ଗ ସଂସ୍କୃତ ରଚନାର ପରମ୍ପରା (ତନ୍ତ୍ର, କାବ୍ୟକବିତା, ଗୀତିମୂଳକ) ଓଡ଼ିଶାରେ ଦୀର୍ଘକାଳରୁ ଗଢ଼ି ଆସିଛି । ଏଥିରୁ ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚା ଓ ଶାସ୍ତ୍ର ଜ୍ଞାନର ଗମ୍ଭୀରତା ସମ୍ପର୍କରେ ଅନୁମାନ କରାଯାଇପାରେ । ଗୀତଗୋବିନ୍ଦ ହେଉଛି ତା'ର ଦୀପ୍ତ ଦୃଷ୍ଟାନ୍ତ । ଜୟଦେବଙ୍କ ପରବର୍ତ୍ତୀ ଓଡ଼ିଆ କାବ୍ୟ କବିତା, ସଙ୍ଗୀତ ଓ ଚଉପଦୀ ମାନଙ୍କରେ ଗୀତଗୋବିନ୍ଦର ଶୃଙ୍ଗାର ରସ ବର୍ଣ୍ଣନା, କଳ୍ପନା, ପଦବିନ୍ୟାସର ପ୍ରଭାବ ସ୍ପଷ୍ଟ ଅନୁଭୂତ ହେବା ସଙ୍ଗେ ସଙ୍ଗେ ସେଥିରେ ଥିବା ରାଗରାଗିଣୀର ପ୍ରଭାବ ପ୍ରଭୂତ ଭାବରେ ଅନୁଭୂତ ହୁଏ । ଗୀତଗୋବିନ୍ଦରେ ଥିବା ରାମକେରୀ, ଗୁର୍ଜରୀ, ବସନ୍ତ, ମାଳବ, ବିଭାସ ଓ ବରାଡ଼ି ରାଗମାନ ଗୀତ-ଗୌରବୋଜ୍ଜ୍ୱଳ ଭ୍ରମନ ସାହିତ୍ୟରେ ବହୁଳ ଭାବରେ ବ୍ୟବହୃତ ହୋଇଛି । ଓଡ଼ିଆ କାବ୍ୟ କବିତା ଓ ସଙ୍ଗୀତରେ ସଂସ୍କୃତ ଛନ୍ଦ ଅପେକ୍ଷା ପ୍ରାକୃତ ଓ ଅପଭ୍ରଂଶ ରାଗରାଗିଣୀର ପ୍ରଭାବ ଅଧିକ ପରିଦୃଷ୍ଟ ହୁଏ ।

ଓଡ଼ିଆ କାବ୍ୟ କବିତା, ସଙ୍ଗୀତ ଓ ଚୌପଦୀର ଛନ୍ଦ ଓ ରାଗରାଗିଣୀ ବିଚାର ଅବସରରେ ପିଙ୍ଗଳ ଛନ୍ଦଃସୂତ୍ର, ପ୍ରାକୃତ ପିଙ୍ଗଳ, ପ୍ରାକୃତ ସର୍ବସ୍ୱ (ଓଡ଼ିଶାର କବି ମାର୍କଣ୍ଡ ଦାସ), ସଙ୍ଗୀତ ରତ୍ନାକର (ଶାର୍ଙ୍ଗଦେବ), ଛନ୍ଦୋମଞ୍ଜରୀ (ଗଙ୍ଗାଦାସ), ବୃତ୍ତ ରତ୍ନାକର, ସଙ୍ଗୀତ ପାରିଜାତ (ଅହୋବଳ, ଖ୍ରୀ: ୧୬୬୫, ମତାନ୍ତରେ ୧୬୫୮ରୁ ୧୭୦୭), ସଙ୍ଗୀତ ମକରନ୍ଦ, ରାଗତତ୍ତ୍ୱ ବିବୋଧ (ଶ୍ରୀନିବାସ ପଣ୍ଡିତ), ସଙ୍ଗୀତ ସଂହିତା ପ୍ରଭୃତି ଭାରତ ବିଖ୍ୟାତ ଛନ୍ଦ ଓ ସଙ୍ଗୀତ ଶାସ୍ତ୍ର ପ୍ରଧାନ ଗ୍ରନ୍ଥଗୁଡ଼ିକ ସମୀକ୍ଷକର ଦୃଷ୍ଟି ଆକର୍ଷଣ କରେ । ଓଡ଼ିଶାର କବି, ସଙ୍ଗୀତଜ୍ଞ ଏବଂ ଛନ୍ଦ ତଥା ସଙ୍ଗୀତ ଶାସ୍ତ୍ର ପ୍ରଣେତାମାନେ ପୂର୍ବୋକ୍ତ ଗ୍ରନ୍ଥ ଗୁଡ଼ିକ ଦ୍ୱାରା ଯେ ବିଶେଷ ପ୍ରଭାବିତ ଏଥିରେ ସନ୍ଦେହ ନାହିଁ (୧୬) । ଏତଦ୍‌ବ୍ୟତୀତ ଓଡ଼ିଶାର କୃଷ୍ଣଦାସ ବଡ଼ଜେନା ମହାପାତ୍ରଙ୍କର ଗୀତ ପ୍ରକାଶ (ଖ୍ରୀ: ୧୫୭୫ ପୂର୍ବରୁ ସଂସ୍କୃତରେ ରଚିତ), ହଳଧର ମିଶ୍ରଙ୍କର ସଙ୍ଗୀତ କଳ୍ପଲତା (୧୭ଶ ଶତାବ୍ଦୀ), ଯଦୁମଣି ରାଉତ ରାୟଙ୍କର ଗୀତ ପ୍ରକାଶବୋଲ (ତାଙ୍କ କବି କଳ୍ପଦ୍ରୁମ ଅନ୍ତର୍ଭୁକ୍ତ ଓଡ଼ିଆ ସଙ୍ଗୀତ ଗ୍ରନ୍ଥ), ଦାମୋଦର ମିଶ୍ରଙ୍କର 'ରାଗଦର୍ପଣ, ପୁରୁଷୋତ୍ତମ ମିଶ୍ରଙ୍କର ସଙ୍ଗୀତ ନାରାୟଣ (୧୭ଶ ଶତକର ମଧ୍ୟଭାଗ), ପାରଳା ରାଜା ଜଗନ୍ନାଥ ନାରାୟଣ ଦେବଙ୍କର ସଙ୍ଗୀତ କୌମୁଦୀ, ହରି ନାୟକଙ୍କର ସଙ୍ଗୀତ ସାର, ଚତୁର୍ଦ୍ଦଶୀ ପ୍ରକାଶିକା (୧୭ଶ ଶତାବ୍ଦୀ), ପଟିଆ ରାଜାଙ୍କର ରସରତ୍ନାକର ଚନ୍ଦ୍ରିକା, କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କର ଲକ୍ଷଣ ଚନ୍ଦ୍ରୋଦୟ, କବିଭୂଷଣ ଗୋପୀନାଥ ପାତ୍ରଙ୍କର

---

(୧୬) ଅଧିକ ଜାଣିବା ନିମନ୍ତେ ରାୟବାହାଦୂର ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ 'ଲାବଣ୍ୟବତୀ'ର ମୁଖବନ୍ଧ ଏବଂ ଅଧ୍ୟାପକ ଶ୍ରୀ ଗୌରୀ କୁମାର ବ୍ରହ୍ମାଙ୍କ ଲିଖିତ 'ଓଡ଼ିଆ କବିତାର ଛନ୍ଦ' ପୁସ୍ତକ ଦ୍ରଷ୍ଟବ୍ୟ ।

କବି ଚିନ୍ତାମଣି (୧୭), ସୁରଙ୍ଗୀ ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନଙ୍କର ସଙ୍ଗୀତ ସର୍ବସ୍ୱ, ତିଗିରିଆର ରାଜା ଯଦୁନାଥ ରସ୍ତୁସିଂହଙ୍କର ଅଭିନୟ ଦର୍ପଣ, ମହେଶ୍ୱର ମହାପାତ୍ରଙ୍କର ଅଭିନୟ ଚନ୍ଦ୍ରିକା, ରଘୁନାଥ ରଥଙ୍କର ନାଟ୍ୟମନୋରମା (୧୬୯୭), ନାରାୟଣ ମିଶ୍ରଙ୍କର ସଙ୍ଗୀତ ସରଣୀ ପ୍ରଭୃତି ଓଡ଼ିଶାରେ ସଙ୍ଗୀତ ଓ ନାଟ୍ୟଶାସ୍ତ୍ରାଲୋଚନା ଅନୁରାଗର ପ୍ରକୃତ ସାକ୍ଷ୍ୟ ବହନ କରନ୍ତି (୧୮)। ତା'ଛଡ଼ା ଛାନ୍ଦ, ଚଉତିଶା ଓ ଚଉପଦୀ କବିମାନେ ସେମାନଙ୍କର ରଚନାରେ ଯେପରି ବିବିଧ ସଙ୍ଗୀତର (ପ୍ରବନ୍ଧ) ନାମ, ରାଗ, ବୃତ୍ତ, ବାଣୀ ଓ ତାଳ ଆଦିର ଏବଂ ବାଦ୍ୟ ଯନ୍ତ୍ରର ନାମ ଉଲ୍ଲେଖ କରିଛନ୍ତି, ତାହା ସେମାନଙ୍କ ସଙ୍ଗୀତ-ଶାସ୍ତ୍ର ଜ୍ଞାନର ପରିଚୟ ଦିଏ। ରାସ ନୃତ୍ୟ ଓ ଅନ୍ୟ ନୃତ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଅଭିମନ୍ୟୁଙ୍କ ପ୍ରେମ ଚିନ୍ତାମଣି (ଅପ୍ରକାଶିତ), ତାଙ୍କ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପ୍ରେମ ତରଙ୍ଗିଣୀ ଏବଂ ଦୀନକୃଷ୍ଣଙ୍କର ଜଗମୋହନ ଛାନ୍ଦ ଓ ରସକଲ୍ଲୋଳରୁ ଦୃଷ୍ଟାନ୍ତମାନ ଉଦ୍ଧାର କରାଯାଇପାରେ, ଯଥା—

(୧) **ଅନିବର୍ଦ୍ଧ ନିର୍ବନ୍ଧ** ଯେ ଦୁଇମତ। (ଶୁଦ୍ଧ : ଅନିବଦ୍ଧ, ନିବଦ୍ଧ)
ଗୀତ ଗାନ କରେ ସଖୀ ଯଥୋଚିତ।
**ମାତୁ ଧାତୁ ଅଙ୍ଗ ଆଳାପ** ମତରେ।
ସୁଚିହ୍ନ ବନ୍ଧ ବିଧାନ ଯେ ପ୍ରକାରେ।
**ତାଳ** ହୁଏ ପୁଣ କାଳ କ୍ରିୟାମାନ।
**ଗୁରୁ** ଲଘୁ **ପ୍ଲୁତ ବୃତ୍ତ** ଯେ **ବିରାମ**। (ଶୁଦ୍ଧ : ଦ୍ରୁତ)
**ଆଢ ଯତି ମଠ ନିଃସାର ଝମ୍ପକ**। (ଶୁଦ୍ଧ : ମଣ୍ଠ)
ପୁଣି **ତିଅଡ଼ା** ଜାଣ **ଆଡ ରୂପକ**। (ଶୁଦ୍ଧ : ଅଡ୍ଡ)
**ଏକତାଳୀ** ପ୍ରାନ୍ତେ ସୂଚେ ଏ **ପ୍ରଜ୍ୱଳ**। (ଶୁଦ୍ଧ : ସୁଢ଼େ, ପ୍ରଣାଳୀ)
**ମନ୍ତ୍ରୁ ଲକ୍ଷଣା ଧ୍ରୁବ ଲକ୍ଷଣା** ଭଲ। (ଶୁଦ୍ଧ:କାହାରି ମତରେ ମନ୍ତ୍ରୁ ସ୍ଥାନରେ ମଣ୍ଠ)

(ପ୍ରେମତରଙ୍ଗିଣୀ, ୨୯ । ୮-୧୨)

(୨) **'ଛ' ରାଗ ଛତିଶି ରାଗିଣୀ**ରେ ଗାନସ୍ତୁରେ,
**ସପ୍ତସ୍ୱର ଆଳାପ** ତ ବହୁତ ପ୍ରକାରେ।
**ଏକାଦଶ ବିକର୍ତ୍ତୀ** ଯେ ଦ୍ୱାବିଂଶ ପ୍ରକାର,

---

(୧୭) ଡଃ କାହ୍ନୁଚରଣ ମିଶ୍ର, ଆଲୋଚନା ମାଳା, ସଂଶୋଧିତ ସଂ: ପୃ. ୧୬୨-୧୬୫

(୧୮) ଏତଦ୍‌ବ୍ୟତୀତ ଏ ସମ୍ପର୍କରେ ସଙ୍ଗୀତଜ୍ଞ ରଘୁନାଥ ପୃଷ୍ଟିଙ୍କର 'ରାଗଚନ୍ଦ୍ର' (କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ସମ୍ପାଦିତ), ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ସଙ୍ଗୀତ ସଦାନନ୍ଦ, ସଙ୍ଗୀତ ମୁକ୍ତାବଳୀ, ରାଗ, ତାଳ ଓ ସଙ୍ଗୀତ ସଂଗ୍ରହ ସମ୍ପର୍କିତ ବହୁ ଗ୍ରନ୍ଥ ସ୍ମରଣକୁ ଆସେ।

ଶ୍ରୀ ବ୍ରହ୍ମାନନ୍ଦ ଦାସ, ସୃଷ୍ଟି ଓ କୃଷ୍ଟି (୧ମ ଭାଗ) ପୃ. ୨୩-୨୪

ତାନ ମାନ ଧରି ବାର ପଞ୍ଚାଶ ପ୍ରକାର ।
ଏକୋଇଶ ମୂର୍ଚ୍ଛାଳୀ ପଞ୍ଚଦଶ ଘେନ,
ଅଭିମନ୍ୟୁ ମାଗୁଅଛୁ ଶ୍ରୀରାଧା ଚରଣ ।
(ପ୍ରେମ ଚନ୍ଦ୍ରାମଣି ୬୪ । ୩୬-୩୮)

(୩) କହିଁ ନାଦ କହିଁ ଶ୍ରୁତି ସ୍ୱର ।
କହିଁ ମୂର୍ଚ୍ଛନା ତାନ ନିକର ।।
କହିଁ ଜାତି ଗ୍ରାମ ରାଗ ରାଗି ।
କୃଷ୍ଣ ଆଜ୍ଞାକୁ ନାହାନ୍ତି ଜଗି ।।
କହିଁ ତାଳ ଗ୍ରହ ଲୟ ମାନ ।
କଳାମାନ ହୋଇଅଛୁ ଶୂନ୍ୟ ।।
(ରସକଲ୍ଲୋଳ, ୧୬ । ୩୦-୩୧)

(୪) ବିବିଧ ପ୍ରକାରେ ସଙ୍ଗୀତ ।
ମାର୍ଗ ଦେଶୀ ମିଶି ହେଉଥାଇ ବହୁତ ।
(ଜଗମୋହନ ଗ୍ରନ୍ଥ, ୨ । ୩୬)

(୫) କେତେବେଳେ ପ୍ରବନ୍ଧ ଗାବନ୍ତି ।
କେତେବେଳେ ଛାୟାଲଗେ ପ୍ରୀତ ।
କେତେବେଳେ ଚିତ୍ରପଦ ଆଦି ।
କେତେ କହିବ ତାହା ସମ୍ପାଦି ।
(ରସକଲ୍ଲୋଳ, ୧୮ । ୨୮-୨୯)

ଦୀନକୃଷ୍ଣ ରସକଲ୍ଲୋଳରେ ବୀଣା, ମର୍ଦ୍ଦଳ, ରବା, ତାଳ, ଉପାଙ୍ଗ, ବଂଶୀ, ସ୍ୱରମଣ୍ଡଳ, ତାଳମର୍ଦ୍ଦଳ (୧୬ । ୨-୩), ଘଣ୍ଟ, ମର୍ଦ୍ଦଳ, ଏକ ସର ଦୋସର କାହାଳୀ (୬।୫), ତତ, ଆନକ, ସୁଷୀର, ଘନ ଆଦି ଚତୁର୍ବିଧ ବାଦ୍ୟଯନ୍ତ୍ର ଏବଂ ଯଦୁମଣି ମହାପାତ୍ର 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ର ତୃତୀୟ ଓ ଅଷ୍ଟମଗ୍ରନ୍ଥରେ (୧୯) ବିଭିନ୍ନ ରାଗ ଓ ତାଳର ଉଲ୍ଲେଖ କରିଛନ୍ତି । ଏଗୁଡ଼ିକ ଓଡ଼ିଆ ଗ୍ରନ୍ଥ କବିମାନଙ୍କର ସଙ୍ଗୀତଶାସ୍ତ୍ରରେ ବ୍ୟୁତ୍ପତ୍ତିର ପ୍ରମାଣ ।

(୧୯) (କ) ମର୍ଦ୍ଦଳବିଦ୍ୟା ବିନୋଦିନୀ ଶ୍ରୀପ୍ରିୟଙ୍କ ନିଧିମାନଙ୍କ ଗୃହି ଉଚ୍ଚରେ ।
ଆଡ଼ରେ ଏକତାଳୀ ପର ଘଟିବ ସଙ୍ଗୀତ ନାରାୟଣ କରେ ।
କହିଲ । ବାଣୀ ରାଗୀ ରାଗେ ତହିଁକି ।
ମୁନିବରବାଣୀ ଦେଶାକ୍ଷ ବୁଝାଇ ପ୍ରଥା କଥା କହୁ କାହିଁକି ।
ଇଙ୍ଗିତ ରଚନେ ଭଙ୍ଗୀ ଯେ ବଚନେ ରାଗେ ରାଗିଣୀକୁ ଭର୍ତ୍ସିଲ ।
ଯତ ସରମାନେ ଗୁମାନ ଯାହାର ଯତ ସରମାନେ ଭର୍ତ୍ସିଲ ।
ଧନାଶ୍ରୀ । କର ଧର ଅଛୁ ଆୟୁଧ ।
ଶତେ ତାଳ ଯେ ପାଣିରେ ପକାଇବ ତା ସଙ୍ଗେ ବିରତୁ ବିରୋଧ ।
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ୮।୧୪-୧୫)

'ଗୀତଗୋବିନ୍ଦ'ର ଗୀତର ଛନ୍ଦ ଓ ରାଗ ମୁଖ୍ୟତଃ ପ୍ରାକୃତ ଅଳଙ୍କାର ସାହିତ୍ୟ ଓ ଛନ୍ଦର ଅନୁଗାମୀ ପରି ଓଡ଼ିଆ ଗ୍ରନ୍ଥ ସାହିତ୍ୟ ଓ ଗୀତର ରାଗରାଗିଣୀ ମୁଖ୍ୟତଃ ପ୍ରାକୃତ ଛନ୍ଦର ଅନୁସରଣ କରିଛି । ପୁଣି ଓଡ଼ିଆ ଗ୍ରନ୍ଥ ସାହିତ୍ୟରେ ପଦ୍ୟ ଛନ୍ଦ ଓ ସଙ୍ଗୀତ ଛନ୍ଦର ଅପୂର୍ବ ସମନ୍ୱୟ ଦେଖିବାକୁ ମିଳେ । ଆଲୋଚନା ପ୍ରସଙ୍ଗରେ ଏଠାରେ ଓଡ଼ିଆ ଛନ୍ଦ, ରାଗରାଗିଣୀ, ବୃତ୍ତ ଓ ବାଣୀ ସମ୍ପର୍କରେ ସୂଚନା ଦେବା ପ୍ରୟୋଜନ ମନେ ହୁଏ ।

**ଓଡ଼ିଆ ଛନ୍ଦ, ରାଗରାଗିଣୀ, ବୃତ୍ତ ଓ ବାଣୀ :**

ସଂସ୍କୃତ ସାହିତ୍ୟରେ 'ଛନ୍ଦ' ଶବ୍ଦ ଅତି ପ୍ରାଚୀନ କାଳରୁ ବ୍ୟବହୃତ ହୋଇ ଆସିଛି । ଛନ୍ଦ ବିନା ବୈଦିକ ସୂକ୍ତ ଓ ସଂସ୍କୃତ ଶ୍ଳୋକ ଶୁଦ୍ଧ ଭାବରେ ଆବୃତ୍ତି କରିହେବ ନାହିଁ । ସେଥିପାଇଁ ବେଦର ଛ'ଟି ଅଙ୍ଗ ମଧ୍ୟରୁ 'ଛନ୍ଦ' ହେଉଛି ପଞ୍ଚମ ଅଙ୍ଗ, ଏହା ହେଉଛି ବେଦର ପାଦ (୧୦) । ପିଙ୍ଗଳଛନ୍ଦଃସୂତ୍ର ଅନୁଯାୟୀ ଛନ୍ଦ ଦୁଇ ଭାଗରେ ବିଭକ୍ତ, ଯଥା– ବୈଦିକ ଓ ଲୌକିକ । ସଂସ୍କୃତ ଛନ୍ଦ ଗୁଡ଼ିକ ଲୌକିକ ବିଭାଗର ଅନ୍ତର୍ଭୁକ୍ତ । ଏ ଗୁଡ଼ିକ ପ୍ରତ୍ୟକ୍ଷ ଭାବରେ ବୈଦିକ ଛନ୍ଦରୁ ସୃଷ୍ଟ ନୁହନ୍ତି । ବୈଦିକ ଛନ୍ଦ ଗୁଡ଼ିକର ଅନୁକରଣରେ କାଳକ୍ରମେ ଯୋଗ ବିଯୋଗ ଦ୍ୱାରା ସଂସ୍କୃତ ଛନ୍ଦ (ଲୌକିକ ଛନ୍ଦ) ଗୁଡ଼ିକର ସୃଷ୍ଟି ହେବା ଅନୁମାନ କରାଯାଏ । ପ୍ରାଚୀନ ଓଡ଼ିଆ କବିମାନେ ଓଡ଼ିଆ ଭାଷାର ଉଚ୍ଚାରଣ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେଇ ନୂତନ ଛନ୍ଦ ସୃଷ୍ଟି କରିଥାଇ ପାରନ୍ତି । ତେବେ ଓଡ଼ିଆ ଛନ୍ଦ ଗୁଡ଼ିକ ସଂସ୍କୃତ ବୃତ୍ତ (ପଦ୍ୟ ଛନ୍ଦ) ଓ ସଙ୍ଗୀତ ଶାସ୍ତ୍ରର ରାଗ-ରାଗିଣୀ, ପ୍ରାକୃତ ଛନ୍ଦ ଏବଂ ଲୋକଗୀତ (ତଗଡମାଳ) ଓ ପ୍ରତିବେଶୀ ଭାଷାଭାଷୀ ମାନଙ୍କର ଗୀତ ଦ୍ୱାରା ସୃଷ୍ଟ ହୋଇଥିବା ଅନୁମିତ ହୁଏ ।

'ପ୍ରବନ୍ଧାବଳୀ'ର ଲେଖକ ଶ୍ୟାମ ସୁନ୍ଦର ରାଜଗୁରୁ ଓ ପଣ୍ଡିତ ଗୋପୀନାଥ ନନ୍ଦ ପ୍ରାକୃତ ଜରିଆରେ ଓଡ଼ିଆ ରାଗରାଗିଣୀର ଉତ୍ପତ୍ତି ସମ୍ପର୍କରେ ମତ ପ୍ରକାଶ କରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଓ ପଣ୍ଡିତ ବିନାୟକ ମିଶ୍ରଙ୍କର ଓଡ଼ିଆ ଛନ୍ଦ ସମ୍ପର୍କିତ ଆଲୋଚନା ଦିଗ-ନିର୍ଦ୍ଦେଶ ମୂଳକ ହେଲେ ମଧ୍ୟ ବ୍ୟାପକ ନୁହେଁ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ (ସଙ୍ଗୀତରେ ସ୍ୱର, ସଙ୍ଗୀତ ପରିଚୟ), ଶ୍ୟାମସୁନ୍ଦର ଧୀର (ଉତ୍କଳ ସଙ୍ଗୀତ ପଦ୍ଧତି) ଓ ଧୀରେନ୍ଦ୍ର ନାଥ ପଟ୍ଟନାୟକ ଉତ୍କଳୀୟ ସଙ୍ଗୀତ ପଦ୍ଧତି ଓ ରାଗରାଗିଣୀ ସମ୍ପର୍କରେ ଆଲୋଚନା କରିଛନ୍ତି । ସାମ୍ପ୍ରତିକ କାଳରେ ଅଧ୍ୟାପକ

---

(୯) ଶଙ୍କର ପରିକରେ ପଡ଼ି ରହିଲେ ଯୋଗ ଆଶାବରୀ ଗଉଡ଼ୀ ।
ଲଳିତ ବସନ୍ତ ଭୈରବ ଦେବାରୁ ବହିବ କୋଳାହଳ ପୁରୀ ।
ମାଳବରେ ଯେ । ହୋଇବ ଶଙ୍କରାଭରଣ ।
ବିଷ ଆହାରୀ ହୋଇବୁ ନ ଭେଟିଲେ ମୋହନ ମଙ୍ଗଳ କଲ୍ୟାଣ
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ୩।୧୫)

(୧୦) 'ଛନ୍ଦଃ ପାଦୌ ତୁ ବେଦସ୍ୟ' (ପାଣିନି)

ଗୌରୀ କୁମାର ବ୍ରହ୍ମା, ଅଧ୍ୟାପକ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓଡ଼ିଆ କାବ୍ୟ କବିତାର ଛନ୍ଦ ସମ୍ପର୍କରେ ଏବେ ଦୁଇଟି ପୁସ୍ତକ ପ୍ରକାଶ କରିଛନ୍ତି, କିନ୍ତୁ ଓଡ଼ିଆ ଛନ୍ଦ ଓ ରାଗରାଗିଣୀ ସମ୍ପର୍କରେ ଗବେଷଣା ଓ ତୁଳନାତ୍ମକ ଆଲୋଚନା ପାଇଁ ଆନୁଷଙ୍ଗିକ ଉପାଦାନର ଅଭାବ ଏମାନେ ଉପଲବ୍‌ଧି କରି ସୀମିତ ପରିସରରେ ଯତ୍କିଞ୍ଚିତ ଆଲୋଚନା କରିଛନ୍ତି । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ ଛନ୍ଦ ଓ ରାଗରାଗିଣୀର ଉତ୍ପତ୍ତି ସମ୍ପର୍କୀୟ ବିଚାରର ଦୁରୂହତା ଉପଲବ୍‌ଧି କରି କହିଛନ୍ତି—"ଦୁଃଖର କଥା, ଛାନ୍ଦ ଓ ଗୀତର ରାଗରାଗିଣୀ ବିଷୟରେ ଯଥାଯଥ ଅନୁଶୀଳନ, ଆଲୋଚନା ଏପର୍ଯ୍ୟନ୍ତ ଆମର ଏହି ଉତ୍କଳଖଣ୍ଡରେ ହୋଇ ନଥିବାରୁ ଲୋକେ ନିଜ ଇଚ୍ଛା ଅନୁସାରେ ମନ ମଉଜ ଗାନ କରି ବିଷମ ବିଭ୍ରାଟ ଉପସ୍ଥାପିତ କରାଉଛନ୍ତି । ଏ ବିଷୟରେ ପ୍ରକୃତ ଓ ପ୍ରକୃଷ୍ଟ ଆଲୋଚନା କରିବାକୁ ହେଲେ ବୈଦିକ ସୂକ୍ତ, ବୌଦ୍ଧ ଓ ଜୈନ ସ୍ତୋତ୍ର ଗୀତ, ସଂସ୍କୃତ ଓ ପ୍ରାକୃତ କାବ୍ୟକବିତା, ପୃଥ୍ୱୀରାଜ ରାସୋ, ମରହଟ୍ଟୀ ନାମ ଦାସ ପ୍ରଭୃତ ପ୍ରାଚୀନ କବିଙ୍କର କୃତି; ଚଣ୍ଡୀଦାସ, ବିଦ୍ୟାପତି, ସୁର ଦାସ, ମୀରାବାଈ, କବୀର ପ୍ରଭୃତିଙ୍କ ହିନ୍ଦୀ କବିତା; ପ୍ରାଚୀନ ଉତ୍କଳ କାବ୍ୟ କବିତା ଓ ଗୀତ ପ୍ରଭୃତି, ବୈଦିକ ଶିକ୍ଷା, ପିଙ୍ଗଳ ଛନ୍ଦ ସୂତ୍ର, ପ୍ରାକୃତ ପିଙ୍ଗଳ, ଅନ୍ୟାନ୍ୟ ଛାନ୍ଦଗ୍ରନ୍ଥ ତଥା ସଂସ୍କୃତ, ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ସଙ୍ଗୀତ ଶାସ୍ତ୍ର ସହିତ ଶ୍ରମ ଓ ଅଭିନିବେଶ ସହ ଆଲୋଚନା କଲେ ତଥ୍ୟ ସମ୍ଭବତଃ ନିର୍ଣ୍ଣୀତ ହେବ (୨୧)" । ଓଡ଼ିଆ ଛନ୍ଦ ଓ ରାଗରାଗିଣୀର ନିର୍ଣ୍ଣୟ ପାଇଁ ଡଃ ମହାନ୍ତିଙ୍କ ଏ ଉକ୍ତି ଏକାନ୍ତ ଯୁକ୍ତିଯୁକ୍ତ । ଛନ୍ଦ ଓ ରାଗରାଗିଣୀର ବିଚାର ପାଇଁ ସେ ଓଡ଼ିଶା ଓ ଓଡ଼ିଶା ବାହାରର ଉପାଦାନର ତୁଳନାତ୍ମକ ବିଚାର ପାଇଁ ସୂଚନା ଦେଇଛନ୍ତି ।

ଡକ୍ଟର ମହାନ୍ତିଙ୍କ ମତରେ 'ଛନ୍ଦ' ଶବ୍ଦରୁ ଛାନ୍ଦ ଶବ୍ଦ ନିଷ୍ପନ୍ନ । ଶ୍ରୀ ବ୍ରହ୍ମା କହନ୍ତି— "ଛନ୍ଦ ଶବ୍ଦଟି ଚ ଦ ଆହ୍ଲାଦନେ" ଧାତୁରୁ ନିଷ୍ପନ୍ନ । ସାଧାରଣରେ ଗଦ୍ୟଠାରୁ ଭିନ୍ନ ଭାବରେ ଯାହା ରଚିତ ହୁଏ, ଆବୃତ୍ତି କାଳରେ ମଧୁର ସ୍ୱର ସଂଯୋଗ ହେତୁ ଯାହା ମନରେ ଆହ୍ଲାଦନ ସୃଷ୍ଟି କରେ ତାହାହିଁ ଛନ୍ଦ । ଏହି ଛନ୍ଦ ଶବ୍ଦରୁ 'ଛାନ୍ଦ' ଶବ୍ଦ ଉତ୍ପନ୍ନ ହୋଇଛି " (୨୨) ।

ଚାରିପାଦରେ ରଚିତ ଶ୍ଳୋକର ନାମ ପଦ୍ୟ । 'ବୃତ୍ତ' ଓ 'ଜାତି' ଭେଦରେ ପଦ୍ୟ ଦୁଇଭାଗରେ ବିଭକ୍ତ । ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର ପ୍ରତ୍ୟେକ ପାଦରେ ସନ୍ନିବିଷ୍ଟ ହେଲେ ତାହାକୁ 'ବୃତ୍ତ ଛନ୍ଦ' କୁହାଯାଏ, କିନ୍ତୁ ବିଭିନ୍ନ ପାଦରେ ଅକ୍ଷର ସଂଖ୍ୟାର ସମତା ଉପରେ ଗୁରୁତ୍ୱ ଦିଆ ନ ଯାଇ ବର୍ଣ୍ଣମାନଙ୍କର ମାତ୍ରା ସଂଖ୍ୟାର ସମତା ଉପରେ ଦୃଷ୍ଟି ଦିଆଗଲେ 'ଜାତି' ଛନ୍ଦ ହୁଏ (୨୩) । ସମବୃତ୍ତ, ଅର୍ଦ୍ଧସମବୃତ୍ତ ଓ ବିଷମବୃତ୍ତ

(୨୧) ଲାବଣ୍ୟବତୀ (୧ମ ଭାଗ), ସମ୍ପା: ଆର୍ତ୍ତବଲ୍ଲଭ ମହାନ୍ତି, ମୁଖବନ୍ଧ, ପୃ. ୧୫୧

(୨୨) ଶ୍ରୀ ଗୌରୀ କୁମାର ବ୍ରହ୍ମା, ଓଡ଼ିଆ କବିତାର ଛନ୍ଦ (୧ମ ଭାଗ), ପୃ. ୧୧-୧୨

(୨୩) ପଦ୍ୟଂ ଚତୁଷ୍ପଦୀ ତଚ୍ଚ ବୃତ୍ତଂ ଜାତିରିତି ଦ୍ୱିଧା ।
ବୃତ୍ତଂ ଅକ୍ଷରସଂଖ୍ୟାତଂ ଜାତିର୍ମାତ୍ରାକୃତା ଭବେତ୍ । (ଛନ୍ଦୋମଞ୍ଜରୀ)

ନାମରେ ବୃତ୍ତଛନ୍ଦ ତିନି ଭାଗରେ ବିଭକ୍ତ । ଯେଉଁଠି ଚାରିପାଦର ଅକ୍ଷର ସଂଖ୍ୟା ସମାନ ତାହା ସମବୃତ୍ତ; ଯେଉଁଠି ପ୍ରଥମ ଓ ତୃତୀୟ, ଦ୍ୱିତୀୟ ଓ ଚତୁର୍ଥ ପାଦର ଅକ୍ଷର ସଂଖ୍ୟା ସମାନ ତାହା ଅର୍ଦ୍ଧସମବୃତ୍ତ । ପାଦମାନଙ୍କର ଅକ୍ଷର ସଂଖ୍ୟା ସମାନ ନହେଲେ ବିଷମବୃତ୍ତ ହୁଏ ।

ଓଡ଼ିଆ ଛାନ୍ଦ ଓ ସଙ୍ଗୀତରେ ଛନ୍ଦ ବଦଳରେ ରାଗ, ବୃତ୍ତ ଓ ଗାନରୀତିକୁ 'ବାଣୀ' ନାମରେ ଉଲ୍ଲେଖ କରାଯାଇଥାଏ । ଛନ୍ଦ ଓ ରାଗ ଏକ ବିଷୟ ନୁହେଁ । ରାଗ ହେଉଛି ଭାବାତ୍ମକ ଓ ବ୍ୟାପକ, କିନ୍ତୁ ଛନ୍ଦ ତାଳ ବିଷୟକ ତଥା ସଙ୍କୀର୍ଣ୍ଣ । ରାଗକୁ ଭିନ୍ନ ଭିନ୍ନ ଛନ୍ଦ ବା ତାଳରେ ଗାନ କରାଯାଇପାରେ । ରାଗକୁ ଅକ୍ଷର ଦ୍ୱାରା ନିୟମିତ କରିବା ଏକ ପ୍ରକାର ପାଗଳାମି (୨୪) । ସ୍ୱର ସୃଷ୍ଟି କରି ଚିତ୍ତକୁ ରଞ୍ଜିତ କଲେ 'ରାଗ' ରୂପରେ ପରିଣତ ହୁଏ । ପୁଣି ରାଗଜନକ ଧ୍ୱନିକୁ ସ୍ୱର କୁହାଯାଏ (ରାଗ ଜନକୋ ଧ୍ୱନିଃ ସ୍ୱରଃ) । ଶ୍ରୋତାମାନଙ୍କର ଚିତ୍ତକୁ ସ୍ୱତଃ ରଞ୍ଜିତ କରେ ବୋଲି ତାର ନାମ ସ୍ୱର (ସ୍ୱତୋ ରଞ୍ଜୟତେ ଶ୍ରୋତୃଚିତ୍ତଂ ସ ସ୍ୱର ଉଚ୍ୟତେ) । ଏହି ସ୍ୱର ହେଉଛି ସଙ୍ଗୀତର ପ୍ରାଣ । ଶାର୍ଙ୍ଗଦେବ କହନ୍ତି : ସପ୍ତକର ପ୍ରତ୍ୟେକ ସ୍ୱର ଏକ ଏକ ସ୍ୱତନ୍ତ୍ର ରସ ପ୍ରକାଶ କରିଥାନ୍ତି । ସ୍ୱର ଗୁଡ଼ିକର ପୁଣି ବର୍ଣ୍ଣ (ରଙ୍ଗ) ଓ କାଳ ସହିତ ନିବିଡ଼ ସମ୍ପର୍କ ରହିଛି । ବିଭିନ୍ନ ସ୍ୱରର ସମନ୍ୱୟରେ ବିଭିନ୍ନ ରସ-ପ୍ରକାଶକ ରାଗରାଗିଣୀ ଗଠିତ ହୋଇଛି (୨୫) ।

ପ୍ରଧାନତଃ ଛଅଗୋଟି ରାଗର ଉଲ୍ଲେଖ ରହିଛି, ଯଥା—ହିନ୍ଦୋଳ, ଦୀପକ, ମେଘ, ଭୈରବ, ଶ୍ରୀ ଓ ମାଳକଂସ । ବିଭିନ୍ନ ରାଗ ବିଭିନ୍ନ ଋତୁରେ ଗୀତ ହେବାର ନିୟମ ଅଛି, ତଥା—ହିନ୍ଦୋଳ ରାଗ ବସନ୍ତ ଋତୁ, ଦୀପକ ଗ୍ରୀଷ୍ମ ଋତୁ, ମେଘ ବର୍ଷା ଋତୁ, ଭୈରବ ଶରଦ ଋତୁ, ଶ୍ରୀ ହେମନ୍ତ ଋତୁ, ଓ ମାଳକଂସ ଶିଶିର ଋତୁ । ପ୍ରତ୍ୟେକ ରାଗର ପାଞ୍ଚଟି ରାଗିଣୀ, ଆଠଟି ଉପରାଗ ଓ ଆଠଟି ଉପରାଗିଣୀ ଅଛି । ରାଗରାଗିଣୀର ନାମକରଣ ସମ୍ପର୍କରେ ଶାସ୍ତ୍ରକାରଙ୍କ ମଧ୍ୟରେ ମତର ସମତା ଦେଖାଯାଏ, କିନ୍ତୁ ଉପରାଗ ଓ ଉପ-ରାଗିଣୀ ଗୁଡ଼ିକର ନାମକରଣ ସମ୍ପର୍କରେ ମତାନୈକ୍ୟ ଲକ୍ଷିତ ହୁଏ । ସେଥିପାଇଁ ଏ କ୍ଷେତ୍ରରେ ବିଭିନ୍ନ ଦେଶରେ ପ୍ରଚଳିତ ପରମ୍ପରା ଗ୍ରହଣ କରିବାକୁ ହେବ (୨୬) ।

ଓଡ଼ିଆ କବିମାନେ ସଂସ୍କୃତରେ ରଚିତ ସଙ୍ଗୀତ ଶାସ୍ତ୍ରରୁ ରାଗରାଗିଣୀର ନାମ ଗ୍ରହଣ କରି ସେମାନଙ୍କର ରଚନାର ରାଗ ଗୁଡ଼ିକର ନାମକରଣ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ : ଶ୍ରୀ ରାଗର ରାଗିଣୀ ହେଉଛି ବସନ୍ତ, ଉପରାଗ ମାଳବ; ଦୀପକ ରାଗର ରାଗିଣୀ କାମୋଦୀ, ଉପରାଗିଣୀ ମଙ୍ଗଳ ଗୁର୍ଜ୍ଜରୀ; ଭୈରବ ରାଗର ରାଗିଣୀ ଭୈରବୀ; ହିନ୍ଦୋଳ ରାଗର ରାଗିଣୀ ଦେଶାକ୍ଷ, ଉପରାଗ ମଙ୍ଗଳ । ଏହି ରାଗିଣୀ, ଉପରାଗ ଓ ଉପରାଗିଣୀ ଗୁଡ଼ିକ ଓଡ଼ିଆ ଗ୍ରନ୍ଥ ରଚନାରେ ଗୋଟିଏ ଗୋଟିଏ ଛନ୍ଦ ବା ରାଗ ଅର୍ଥରେ ବ୍ୟବହୃତ

(୨୪) ଲାବଣ୍ୟବତୀ, ମୁଖବନ୍ଧ ପୃ. ୧୪୭

(୨୫) କାଳୀଚରଣ ପଟ୍ଟନାୟକ, ସଙ୍ଗୀତରେ ସ୍ୱର, ଓଡ଼ିଆ ସାହିତ୍ୟ ଏକାଡେମୀ ପୃ. ୫-୮

(୨୬) ଲାବଣ୍ୟବତୀ, ମୁଖବନ୍ଧ, ପୃ. ୧୪୮-୧୪୯ ।

ହୋଇଛନ୍ତି । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ସଂସ୍କୃତ ସଙ୍ଗୀତ ଶାସ୍ତ୍ରର ରାଗ ଓ ଓଡ଼ିଆ ରଚନା ବିଶେଷତଃ ଛନ୍ଦ ସାହିତ୍ୟର ରାଗ ଏକ ନୁହେଁ । ବରଂ ସଂସ୍କୃତରେ 'ବୃତ୍ତ' ଶବ୍ଦ ଯେପରି ବ୍ୟାପକ ଅର୍ଥରେ ବ୍ୟବହୃତ, ସେହି ଅର୍ଥରେ ଓଡ଼ିଆ ସାହିତ୍ୟରେ 'ରାଗ' ଶବ୍ଦର ପ୍ରୟୋଗ ହୋଇଛି ବୋଲି ବୁଝିବାକୁ ହେବ । ତେଣୁ ଓଡ଼ିଆ ସାହିତ୍ୟର ରାଗ ସଂସ୍କୃତ ସାହିତ୍ୟର ବୃତ୍ତ ବା ଛନ୍ଦ ଏକାର୍ଥବାଚକ ।

**ଏକ ଏକ ବୃତ୍ତର ନାନା ଭେଦ :**

ସଂସ୍କୃତରେ ବୃତ୍ତ ଛନ୍ଦରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର ପ୍ରତ୍ୟେକ ପାଦରେ ରଖାଗଲେ ମଧ୍ୟ ଗୋଟିଏ ଗୋଟିଏ ବୃତ୍ତର ଅନେକ ପ୍ରକାର ଭେଦ ରହିଛି । ଗଣ ନିୟମାନୁଯାୟୀ ଆବୃତ୍ତି କ୍ରମ ଦୃଷ୍ଟିରୁ ସେଗୁଡ଼ିକ ବହୁଭାଗରେ ବିଭକ୍ତ ଓ ସ୍ୱତନ୍ତ୍ର । ଓଡ଼ିଆ ରାଗ ବା ବୃତ୍ତରେ ଗଣ ନିୟମ ନଥିଲେ ମଧ୍ୟ ଗୋଟିଏ ଗୋଟିଏ ବୃତ୍ତର ନାନା ପ୍ରକାର ଭେଦ ରହିଛି । ଦୃଷ୍ଟାନ୍ତ ସ୍ୱରୂପ ଓଡ଼ିଆ ଚତୁର୍ଦ୍ଦଶାକ୍ଷରୀ ଓ ଦ୍ୱାଦଶାକ୍ଷରୀ ପ୍ରଭୃତି ବୃତ୍ତ । ଚତୁର୍ଦ୍ଦଶାକ୍ଷରୀ ବୃତ୍ତ ଗୋଟିଏ ଭଙ୍ଗୀରେ ଗାନ କରାଯାଇ ପାରୁଥିଲେ ମଧ୍ୟ ବୈଚିତ୍ର୍ୟ, ଶ୍ରବଣ ସୌଖ୍ୟ ଓ ରସର ଉପଲବ୍ଧି ପାଇଁ ନାନାଭଙ୍ଗୀରେ ଗାଇବା ନିମିତ୍ତ କବିମାନେ ନିର୍ଦ୍ଦେଶ ଦେଇ-ଆଁନ୍ତି । ଫଳରେ ପାଦର ଅକ୍ଷର ସଂଖ୍ୟା ସମାନ ହେଲେ ମଧ୍ୟ କେବଳ ଗାନଭଙ୍ଗୀର ଭିନ୍ନତା ହେତୁ ଭିନ୍ନ ଭିନ୍ନ ବୃତ୍ତ ବା ରାଗ ନାମର ଉଲ୍ଲେଖ ରହିଥାଏ, ଯଥା—ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ଗୋଟିଏ ରାଗ ମଙ୍ଗଳ, ଅନ୍ୟ ଗୁଡ଼ିକ ହେଉଛନ୍ତି : ନଳିନୀ ଗୌଡ଼ା, ଭୈରବ, ଆଶାବରୀ, ମାଳବ, କଳସା, ପଟହମଞ୍ଜରୀ, ମଙ୍ଗଳଗୁର୍ଜ୍ଜରୀ ଇତ୍ୟାଦି ( ଲାବଣ୍ୟବତୀରେ ଦ୍ରଷ୍ଟବ୍ୟ ) ସେହିପରି ଦ୍ୱାଦଶାକ୍ଷରୀ ବୃତ୍ତର ବିଭିନ୍ନ ଗାନଭଙ୍ଗୀ ସୂଚକ ରାଗ ରହିଛି, ଯଥା— ବିଭାସଗୁର୍ଜ୍ଜରୀ, କଳହଂସକେଦାର, ଆଶାବରୀ, ଭୂପାଳ ଓ କେଦାର କାମୋଦୀ ପ୍ରଭୃତି ।

ବୌଦ୍ଧଗାନ ଓ ଦୋହାଠାରୁ ଆରମ୍ଭ କରି ସାରଳା ମହାଭାରତ, ଦାଣ୍ଡୀରାମାୟଣ, ଅଚ୍ୟୁତାନନ୍ଦଙ୍କ ହରିବଂଶ, ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭ ପୁରାଣ ଏବଂ ଅର୍ଜ୍ଜୁନ ଦାସଙ୍କ ରାମବିଭା ଓ ନରସିଂହ ସେଣଙ୍କ ପରିମଳା ପ୍ରଭୃତି ଛନ୍ଦ ରଚନାମାନଙ୍କରେ ପଦର ପାଦ ଗୁଡ଼ିକର ଅକ୍ଷର ସମତା ଲକ୍ଷିତ ହୁଏ ନାହିଁ । ପୁରାଣ-ସାହିତ୍ୟ ସଙ୍ଗେ ସଙ୍ଗେ କ୍ରମଶଃ ଓଡ଼ିଆ ଛନ୍ଦ ସାହିତ୍ୟର ବିକାଶ ଘଟେ ଏବଂ ନାନାପ୍ରକାର ରାଗ ଓ ରାଗିଣୀର ସୃଷ୍ଟି ତଥା ପ୍ରୟୋଗ ହେତୁ ଓଡ଼ିଆ ପଦ୍ୟ ସାହିତ୍ୟର ସାଙ୍ଗୀତିକ ମାଧୁର୍ଯ୍ୟ ବଢ଼ିଉଠେ । ପଞ୍ଚସଖା ଯୁଗ ପରେ ପରେ ଯେପରି ଓଡ଼ିଆ ସାହିତ୍ୟରେ ପଦଗୁଡ଼ିକର ଅକ୍ଷର ସଂଖ୍ୟା ନିର୍ଦ୍ଦିଷ୍ଟ ହେଲା ଓ ରାଗରାଗିଣୀ ଗୁଡ଼ିକ ଶୃଙ୍ଖଳିତ ହେଲା, ପୂର୍ବରୁ ସେପରି ଦେଖା ଯାଇ ନଥିଲା ।

**ରାଗ, ବାଣୀ ଓ ବୃତ୍ତ :**

ଉପେନ୍ଦ୍ରଭଞ୍ଜ ପ୍ରଭୃତି ବିଭିନ୍ନ କବିମାନଙ୍କର କାବ୍ୟକବିତା ଓ ଚଉପଦୀମାନଙ୍କ ମୂଳରେ ରାଗ, ବାଣୀ ଓ ବୃତ୍ତର ନିର୍ଦ୍ଦେଶ ପରିଲକ୍ଷିତ ହୁଏ, ସ୍ଥାନେ ସ୍ଥାନେ ତାହାର ଉଲ୍ଲେଖ ମଧ୍ୟ ଥାଏ । ରାଗ ଯାହା, ବାଣୀ ଓ ବୃତ୍ତ ତାହା ନୁହେଁ, ଯଦିଓ କେତେକ କବି ଓ

ପ୍ରକାଶକ ବାଣୀ ଓ ବୃତ୍ତିକୁ ରାଗ ବୋଲି ମନେ କରି ପାଠକମାନଙ୍କୁ ବିଭ୍ରାନ୍ତ କରିଛନ୍ତି । ସଂସ୍କୃତ ସଙ୍ଗୀତଶାସ୍ତ୍ରରେ ବୃତ୍ତି ଓ ବାଣୀ ଯେଉଁ ଅର୍ଥରେ ବ୍ୟବହୃତ, ଓଡ଼ିଆରେ ସେ ଅର୍ଥରେ ବ୍ୟବହୃତ ନୁହନ୍ତି । ସଂସ୍କୃତ ଭାଷାରେ ଏକ ପ୍ରକାର ରାଗକୁ 'ବୃତ୍ତି' ଓ ତାଳ ଲୟଯୁକ୍ତ ସଙ୍ଗୀତ ସ୍ୱରକୁ 'ବାଣୀ' କହନ୍ତି । କୌଣସି ଗ୍ରନ୍ଥ ବା ସଙ୍ଗୀତର ରାଗ ସ୍ପଷ୍ଟ ଭାବରେ ନିର୍ଦ୍ଦିଷ୍ଟ କରିବା ପାଇଁ କୌଣସି ଗୋଟିଏ ବିଖ୍ୟାତ ଲୋକପ୍ରିୟ ରଚନାରେ ବ୍ୟବହୃତ ଛନ୍ଦର (ରାଗ) ଉଲ୍ଲେଖ କରାଗଲେ 'ବୃତ୍ତି' ବା 'ବାଣୀ' ଶବ୍ଦ ପ୍ରୟୋଗ କରାଯାଏ, ଯଥା—ରାଗ ବରାଡ଼ି, ଆଷାଢ଼ଶୁକ୍ଳ ବାଣୀରେ ଗାଇବ (ବି. ଚି., ୩୯ ଛାନ୍ଦ); ରାଗ ବଙ୍ଗଳାଶ୍ରୀ, ଉଦ୍ଧବ ଚଉତିଶା ବାଣୀରେ ଗାଇବ (ବି. ଚି., ୪୪ ଛାନ୍ଦ); ଗୋପୀଭାଷା ବୃତ୍ତେ ଗାଇବ, ଦଶା ଶ୍ରେଣୀ, ସପନ ଚେଢ଼ିଆ ବାଣୀରେ ଗାଇବ (ଲାବଣ୍ୟବତୀ, ୧୧ଶ ଛାନ୍ଦ) ଇତ୍ୟାଦି । ଏହି ଦୃଷ୍ଟାନ୍ତ ଗୁଡ଼ିକରୁ ସ୍ପଷ୍ଟ ହୁଏ ଯେ ରାଗ ଓ ବାଣୀ ଏକ ନୁହେଁ, ବାଣୀ ଏକ ଲୋକପ୍ରିୟ ଗାନଭଙ୍ଗୀର ସୂଚକ ମାତ୍ର । ଗୋଟିଏ ଗୋଟିଏ ରାଗ ନାନା ଭଙ୍ଗୀରେ ଗାନ କରାଯାଉଥିବାରୁ ତା'ର ନାନା ବାଣୀ ବା ବୃତ୍ତି ହୋଇପାରେ । 'ବାଣୀ'ର ଗାଇବା ରୀତି ଜଣା ନ ଥିଲେ ଗାଇବା ସମୟରେ ବିଶେଷ ଅସୁବିଧା ହୁଏ । ରାଗ ସହିତ ତାଳର ଉଲ୍ଲେଖ ଥିଲେ ନିର୍ଦ୍ଦିଷ୍ଟ ରାଗର ଗାନ ସହଜ ହୋଇଥାଏ; କିନ୍ତୁ କେବଳ ରାଗର ଉଲ୍ଲେଖ ଥିଲେ ତାହା ଗାଇବା କଷ୍ଟକର ହୋଇପଡ଼େ । ରାଗର ବାଣୀର ଉଲ୍ଲେଖ ଥିଲେ ତା'ର ଗାନର ବିଶିଷ୍ଟ ରୀତି ଜଣାପଡ଼େ ଏବଂ ତା'ର ଅକ୍ଷର ବିନ୍ୟାସ ସମ୍ପର୍କରେ ଆମେ ନିଶ୍ଚିତ ହେଉଁ (୨୭) । ରାଗ ଅକ୍ଷର ବିନ୍ୟାସର ବିଭିନ୍ନତା ହେତୁ ନାନା ରୂପ ଧାରଣ କରିପାରେ; କିନ୍ତୁ ଶୁଦ୍ଧରାଗ ଅକ୍ଷର ନିୟମରେ ନିୟନ୍ତ୍ରିତ ହେବା ଉଚିତ ନୁହେଁ ।

ଓଡ଼ିଶାର ଛାନ୍ଦ, ଚଉତିଶା ଓ ଚଉପଦୀର କବିମାନେ ଯେପରି ଥିଲେ ସଙ୍ଗୀତଜ୍ଞ, ସେହିପରି ଥିଲେ ରସଜ୍ଞ ଓ ସଂସ୍କୃତଜ୍ଞ । ସଙ୍ଗୀତ କଳାରେ ଦକ୍ଷତା ଥିବାରୁ ସେମାନଙ୍କ ପକ୍ଷରେ ସ୍ୱରର ରସବୋଧ ସହଜ ଥିଲା । କବିତ୍ୱ ଓ ସଙ୍ଗୀତ ଜ୍ଞାନ ଉଭୟରେ ପ୍ରବୀଣ ଥିବାରୁ ଧାତୁ (ସ୍ୱର) ଓ ମାତୁର (ସାହିତ୍ୟ) (୨୮) ଅପୂର୍ବ ସମନ୍ୱୟରେ ସେମାନେ ଛାନ୍ଦ, ଚଉତିଶା ଓ ଚଉପଦୀ ରଚନା କରିଥିଲେ । ସେମାନେ ଛାନ୍ଦର ରାଗ ନିର୍ଦ୍ଦେଶ ପ୍ରସଙ୍ଗରେ ସ୍ୱୀୟ ସଙ୍ଗୀତ ପ୍ରତିଭା ବଳରେ ଅନେକ ଗୁଡ଼ିଏ ଶ୍ରଦ୍ଧାସମନ୍ୱିତ ନୂତନ ରାଗରାଗିଣୀ ସୃଷ୍ଟି କରିଯାଇଛନ୍ତି, ଯେଉଁଥିରେ ଓଡ଼ିଶୀ ସ୍ୱତନ୍ତ୍ରତା ସ୍ପଷ୍ଟ ହୋଇ ଉଠିଛି । ସେ ଗୁଡ଼ିକୁ ବିଷମ ଛନ୍ଦ ବା ମିଶ୍ର ରାଗ କୁହାଯାଇପାରେ, ଯଥା—କଲ୍ୟାଣ + ଆହାରୀ = କଲ୍ୟାଣ ଆହାରୀ; ମଙ୍ଗଳ + ଗୁଜ୍ଜରୀ = ମଙ୍ଗଳ ଗୁଜ୍ଜରୀ, ସେହିପରି ବସନ୍ତ ବରାଡ଼ି; କେଦାର ଗୌଡ଼ା; ଚିନ୍ତା ଦେଶାକ୍ଷ, ଶୋକ କାମୋଦୀ ଓ ଚିନ୍ତା ଭୈରବ ପ୍ରଭୃତି । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଭାଷାରେ କହିବାକୁ ଗଲେ, "ଆମର ଛାନ୍ଦ ରଚୟିତାମାନେ ଥିଲେ ସଂସ୍କୃତ

(୨୭) ଶ୍ରୀ ବ୍ରହ୍ମା, ଓଡ଼ିଆ କବିତାର ଛନ୍ଦ, ପୃ. ୨୭।୨୮

(୨୮) କବିସୂର୍ଯ୍ୟ ଗୀତାବଳୀ, ସଂପାଦକ କାଳୀଚରଣ ପଟ୍ଟନାୟକ, ୧୯୬୮, ମୁଖବନ୍ଧ ।

ଭାଷା ପ୍ରବୀଣ । ଶ୍ଳୋକର ମାଧୁରୀ ଶ୍ଳୋକର ମୋହ ଏଡ଼ି ଦେଇ ପାରି ନଥିଲେ ସେମାନେ । × × × ଛାନ୍ଦ ଏବଂ ଭାଷା ଉଭୟଙ୍କୁ ସଙ୍ଗୀତ ବନ୍ଧନରେ ଶୃଙ୍ଖଳିତ କରିବାର ଅଭୂତପୂର୍ବ କଳ୍ପନା କରି ଆମର ସେହି ଜାତୀୟ ରକ୍ଷିତ ସନ୍ତାନ ଗଣ ପ୍ରସ୍ତୁତ କରି ଯାଇଛନ୍ତି ଛାନ୍ଦ । ଯେନା ଯାଇଛି ସଂସ୍କୃତ ଛାନ୍ଦର ଅକ୍ଷର ସଂଖ୍ୟା, ତହିଁରେ ମିଶା ଯାଇଛି ରସାନୁସାରୀ ସଙ୍ଗୀତର ସ୍ୱର । ତାହାକୁ ଶୃଙ୍ଖଳିତ କରିଛି, ଲୟ, ତାଳ-ମାତ୍ରା (୨୯) ।" ରସିକ ଛାନ୍ଦ କବିଙ୍କର ଶ୍ରଦ୍ଧା ସମନ୍ୱିତ ରାଗ ଗୁଡ଼ିକୁ ଲକ୍ଷ୍ୟ କରି କହିଛନ୍ତି "ଏ ଗୁଡ଼ିକ ଶାସ୍ତ୍ରୀୟ ରାଗର ନାମ ସହିତ ଭାବ ବା ରସର ଅଭୂତପୂର୍ବ ସଂଯୋଜନା (୩୦) ।"

ମିଶ୍ର ରାଗ ଗୁଡ଼ିକର ଗାନଭଙ୍ଗୀ ନିର୍ଣ୍ଣୟ ଅତିବ କଷ୍ଟକର ବ୍ୟାପାର, କିନ୍ତୁ ଏ ଗୁଡ଼ିକ ଓଡ଼ିଆ ପଦ୍ୟ ସାହିତ୍ୟକୁ ବିଶେଷ ସଙ୍ଗୀତ ମୁଖର କରିଛନ୍ତି । ଶ୍ରୀ ବ୍ରହ୍ମାଙ୍କ ଭାଷାରେ କହିଲେ, "ରାଗରାଗିଣୀର ଆତ୍ମା ସାଧାରଣ କଣ୍ଠରେ ଫୁଟାଇବା ପାଇଁ ଏ ଗୁଡ଼ିକର ବିଶେଷ ଆବଶ୍ୟକତା ଥାଏ (୩୧) ।

ଓଡ଼ିଆ ଛାନ୍ଦ ଓ ଚଉପଦୀମାନଙ୍କରେ ବ୍ୟବହୃତ ରାଗରାଗିଣୀ ଯେ କେବଳ ସଙ୍ଗୀତ ଶାସ୍ତ୍ର ଭିତ୍ତିରେ ସୃଷ୍ଟ ତା' ନୁହେଁ, ବିଭିନ୍ନ ଦେଶର ନାମାନୁସାରେ କେତେକ ରାଗରାଗିଣୀର ସୃଷ୍ଟି ହୋଇଛି, ଯଥା—ଗାନ୍ଧାର, ଗୁର୍ଜ୍ଜରୀ, ବଙ୍ଗଳାଶ୍ରୀ, କାମୋଦୀ, ଗୌଡ଼ୀ, କର୍ଣ୍ଣାଟୀ ପ୍ରଭୃତି ।ମୁସଲମାନ ବାଦଶାହଙ୍କ ଦରବାରରେ ହିନ୍ଦୁସଙ୍ଗୀତର ଚର୍ଚ୍ଚା ଫଳରେ କେତୋଟି ନୂତନ ରାଗରାଗିଣୀର ମଧ୍ୟ ସୃଷ୍ଟି ହୋଇଛି । ତା' ଛଡ଼ା ଚଉପଦୀ ଓ ଚମ୍ପୂର ରାଗରାଗିଣୀ ଉପରେ ଦକ୍ଷିଣୀ କର୍ଣ୍ଣାଟକ ସଙ୍ଗୀତ ପଦ୍ଧତିର ପ୍ରଭାବ କିଛି କମ୍ ନୁହେଁ । ଓଡ଼ିଶାରେ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ବହୁ ରାଗରାଗିଣୀର ସୃଷ୍ଟି ହୋଇଥିଲା । ଏ ରାଜାମାନେ ଦକ୍ଷିଣ ଦେଶରୁ (ବିଜୟ ନଗର) ଆସିଥିବାରୁ ଏବଂ ବିଦ୍ୟା ନଗର ବା ବିଜୟ ନଗର ପୁରୀ, ବାରାଣସୀ ଓ ମିଥିଳା ପରି ସଂସ୍କୃତ ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା ପାଇଁ ବିଶେଷ ପ୍ରସିଦ୍ଧ ଥିବାରୁ ଓଡ଼ିଆ ସଙ୍ଗୀତର ରାଗରାଗିଣୀ ଓ ସାହିତ୍ୟ ଉପରେ କର୍ଣ୍ଣାଟକ ସଙ୍ଗୀତ ପଦ୍ଧତି ଓ ଦକ୍ଷିଣୀ-ସଂସ୍କୃତିର ପ୍ରଭାବ ପଡ଼ିବା ଅତି ସ୍ୱାଭାବିକ । ଦୀର୍ଘକାଳ ଧରି ଆନ୍ଧ୍ର ଦେଶର ଅନ୍ତର୍ଭୁକ୍ତ ଥିବା ଗଞ୍ଜାମ ଅଞ୍ଚଳ, ବିଶେଷତଃ ଗଞ୍ଜାମର ପାରଳାଖେମୁଣ୍ଡି ଉପରେ ତେଲଙ୍ଗୀୟ ସଙ୍ଗୀତ, ସଂସ୍କୃତି ଓ ଭାଷାର ପ୍ରଭାବ ସବୁଠାରୁ ବେଶୀ । ସେଥିପାଇଁ ଏ ଅଞ୍ଚଳର କବିଙ୍କ ରଚନାରେ ତେଲଙ୍ଗୀୟ ଭାଷା ଓ ସଙ୍ଗୀତଧାରାର (କର୍ଣ୍ଣାଟକ ସଙ୍ଗୀତ ପଦ୍ଧତି) ବିଶେଷ ପ୍ରଭାବ ପଡ଼ିଛି (୩୨) । ଗୋପାଳକୃଷ୍ଣ ବା ସେଥିରୁ ବାଦ ଯିବେ କିପରି ?

---

(୨୯) ଓ (୩୦) ତତ୍ରୈବ

(୩୧) ଶ୍ରୀ ବ୍ରହ୍ମା, ଓଡ଼ିଆ କବିତାର ଛନ୍ଦ

(୩୨) (କ) ସଂଗୀତର ସ୍ୱର ଯୋଜନା ଦିଗରୁ ଦେଖିବାକୁ ଗଲେ ଆନ୍ଧ୍ର ସମ୍ପର୍କର ପ୍ରଭାବ କବିଙ୍କ ରଚିତ ଗୀତମାନଙ୍କରେ ସୁସ୍ପଷ୍ଟ । × × × ତେଲଙ୍ଗୀ ସଙ୍ଗୀତ ରୁଚି କେତେକ ଶବ୍ଦର ପ୍ରୟୋଗରେ ଲକ୍ଷିତ ହୁଏ ।

ଶ୍ରୀ କାଳୀଚରଣ ପଟ୍ଟନାୟକ, ସମ୍ପା: ଗୋ. କୃ. ପ. ୪ର୍ଥ ମୁଦ୍ରଣ, ୧୯୫୯, ପୃ. ଗ

ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ସମ୍ପାଦକ ବାବାଜୀ ବୈଷ୍ଣବ ଚରଣ ଦାସ ତାଙ୍କ ମୁଖବନ୍ଧରେ କହିଛନ୍ତି, "କବିବରଙ୍କ ବଂଶଧର ଶ୍ରୀମାନ୍ ରାମକୃଷ୍ଣ ପଟ୍ଟନାୟକ ତାଙ୍କ ପ୍ରକାଶିତ ଗୋପାଳକୃଷ୍ଣ ପଦ୍ୟାବଳୀ ଗ୍ରନ୍ଥରେ ଯେଉଁ ଯେଉଁ ରାଗ ଓ ତାଳ ସମ୍ବନ୍ଧ ସନ୍ନିବେଶିତ କରିଛନ୍ତି, ସେଥି ମଧ୍ୟରୁ ଅଧିକାଂଶ ତେଲୁଗୁ ମିଶ୍ରିତ । ତାହା ସେହି ପାରଳାଖେମୁଣ୍ଡି ଅଞ୍ଚଳରେ ପ୍ରଚଳିତ, ମାତ୍ର ସମଗ୍ର ଉତ୍କଳ ପ୍ରଦେଶରେ ନୁହେଁ (୩୩) ।" ଏପରିକି ସମ୍ପାଦକ ମହାଶୟ ଗୋପାଳକୃଷ୍ଣ ପଦ୍ୟାବଳୀର ସଙ୍ଗୀତ ଗୁଡ଼ିକର ତେଲୁଗୁ ମିଶ୍ରିତ ରାଗ ନାମ ପରିବର୍ତ୍ତନ କରି (୩୪) ତାଙ୍କର ରାସଲୀଳା ଅଭିନୟ ସମୟରେ ଅଭିନେତା ବାଳକମାନଙ୍କ ମୁଖରେ ଗାନ କରାଇଛନ୍ତି ଏବଂ ପରିବର୍ତ୍ତିତ ରାଗ ସହ ସଙ୍ଗୀତ ଗୁଡ଼ିକୁ ଗ୍ରନ୍ଥାବଳୀରେ ସନ୍ନିବେଶିତ କରିଛନ୍ତି ।

ଓଡ଼ିଶାର ଛାନ୍ଦ, ଚଉତିଶା ଓ ସଙ୍ଗୀତରେ ନିର୍ଦ୍ଦିଷ୍ଟ ରାଗରାଗିଣୀକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା – ଛାନ୍ଦ ସାହିତ୍ୟ ବା ପଦ୍ୟରେ ବ୍ୟବହୃତ ରାଗ, ସଙ୍ଗୀତ, ଚଉପଦୀ, ବୋଲି ଓ ଚଉତିଶା ଆଦିରେ ବ୍ୟବହୃତ ରାଗରାଗିଣୀ । ଗୋଟିଏ ଗୋଟିଏ ରାଗ ଉଭୟ ସଙ୍ଗୀତ ଓ ଛାନ୍ଦ ରଚନାରେ ମଧ୍ୟ ଦେଖାଯାଏ, ଯଥା ଶଙ୍କରାଭରଣ । ଯେଉଁ ରାଗ ଗୁଡ଼ିକ ବିଶେଷ ଭାବରେ ବ୍ୟବହୃତ ସେ ଗୁଡ଼ିକର ନାମ ହେଉଛି – କଳହଂସ କେଦାର, ବିହାସ କେଦାର, ଚକ୍ରକେଳି, ଗୁର୍ଜ୍ଜରୀ, ଭୂପାଳ, ରାମକେରୀ, କାଳୀ, ଚକ୍ରା ଦେଶାକ୍ଷ, ରସ କୋଇଲି, ବଙ୍ଗଳାଶ୍ରୀ, କାମୋଦୀ, ଗୈରୀ ଆଷାଢ଼ଶୁକ୍ଳ, ଶଙ୍କରାଭରଣ, ବସନ୍ତ, କନଡ଼ା, ପାହାଡ଼ିଆ କେଦାର, ଘଣ୍ଟାରବ, ଧନାଶ୍ରୀ କଳସା ବାଣୀ, ପୋଙ୍ଗ ଇତ୍ୟାଦି (୩୫) ।

**ଓଡ଼ିଆ ସାହିତ୍ୟରେ ସଙ୍ଗୀତ ଯୁଗ :**

ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଓଡ଼ିଶାରେ ଚଉପଦୀ ବା ସଙ୍ଗୀତ ରଚନାର ପରମ୍ପରା ଗଢ଼ି ଆସୁଥିଲେ ମଧ୍ୟ ତାଙ୍କଠାରୁ ରାଧାନାଥ ଯୁଗ ପର୍ଯ୍ୟନ୍ତ ସାହିତ୍ୟ ଯୁଗକୁ ସଙ୍ଗୀତ ଯୁଗ କୁହାଯାଏ । ନାନାବିଧ କାବ୍ୟ, ଗ୍ରନ୍ଥ ଓ ସଙ୍ଗୀତ ପ୍ରଣେତା ଦୀନକୃଷ୍ଣଙ୍କ (ସପ୍ତଦଶ ଶତକର

---

(ଖ) M. M. Chakravarty, Notes on Language and Literature of Orissa, Part III & IV, Oriya Songs and Religious Poems, Proceedings of the Asiatic Society Bengal, ed. Honorary Secretaries, January to December, 1898, PP. 337-378.

(୩୩) ଗୋ. କୃ. ଗ୍ରଂ, ସମ୍ପା: ବା. ବୈ. ଚ, ୧୯୫୯, ମୁଖବନ୍ଧ, ପୃ. ୬

(୩୪) ତେଲୁଗୁ 'ପାଳୁ ବରାଡ଼ି' ସ୍ଥାନରେ 'ଦୀର୍ଘ ବରାଡ଼ି', 'ମାଞ୍ଜି' ସ୍ଥାନରେ 'ମଞ୍ଜୁ କାମୋଦୀ', 'ରୀତ ଗୌଡ଼ା' ସ୍ଥାନରେ 'ନଳିନୀ ଗୌଡ଼ା' ଇତ୍ୟାଦି, ତତ୍ରୈବ, ପୃ. ୮

(୩୫) ଓଡ଼ିଆ କବିତାର ଛନ୍ଦ, ପୃ. ୩୧

ମଧ୍ୟଭାଗ) ପୂର୍ବରୁ ଓଡ଼ିଶାରେ ଶାସ୍ତ୍ରୀୟ ସଙ୍ଗୀତର ଚର୍ଚ୍ଚା ଗୁଳ ଥିଲା ଏବଂ ସଙ୍ଗୀତ ଶାସ୍ତ୍ରର ଅନୁଶାସନ ଅନୁଯାୟୀ ଓଡ଼ିଶାରେ ରାଗର ନିର୍ଦ୍ଦେଶ ସହ ବହୁ ସଙ୍ଗୀତ ରଚିତ ହେଉଥିଲା । ରାୟ ରାମାନନ୍ଦ, ମାଧବୀ ଦାସୀ, କହ୍ନେଇ ଖୁଣ୍ଟିଆ, ରସିକାନନ୍ଦ, ଚମ୍ପତି ରାୟ, ଗୋବିନ୍ଦ ଓ କୃଷ୍ଣ ଦାସ ପ୍ରଭୃତି ବ୍ରଜବୁଲିରେ ମଧ୍ୟ ଗୀତ ରଚନା କରିଥିଲେ । ଷୋଡ଼ଶ ଶତାବ୍ଦୀରେ କବି କୃଷ୍ଣଦାସ ବଡ଼ଜେନା ମହାପାତ୍ର 'ଗୀତ ପ୍ରକାଶ' ନାମକ ଏକ ସଙ୍ଗୀତ ଶାସ୍ତ୍ର ମୂଳକ ଗ୍ରନ୍ଥ ସଂସ୍କୃତରେ ରଚନା କରି ବାଦଶାହ ଆକବରଙ୍କ ଦରବାରରେ ସମ୍ମାନିତ ହୋଇଥିଲେ । ଏ ଗ୍ରନ୍ଥରେ କେତେକ ସଙ୍ଗୀତଜ୍ଞ ଓ ସଙ୍ଗୀତକାରଙ୍କର ନାମର ଉଲ୍ଲେଖ ଦେଖାଯାଏ (ଶାର୍ଙ୍ଗଦେବ, ଗଙ୍ଗାଧର ଗୁରୁ, ରାୟ ରାମାନନ୍ଦ, ଗୋବିନ୍ଦ ରାୟ, ଜୟଦେବ ପ୍ରଭୃତି) । ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଦୀନବନ୍ଧୁ ରାଜ ହରିଚନ୍ଦନ, ରଘୁନାଥ ରାଜ ହରିଚନ୍ଦନ, ବିଷ୍ଣୁ ଦାସ, ବନମାଳୀ ଦାସ ଓ ଧନଞ୍ଜୟ ଭଞ୍ଜ ପ୍ରଭୃତି ଚଉପଦୀ ବା ସଙ୍ଗୀତ ରଚନା କଲେ ମଧ୍ୟ ରୀତି କାବ୍ୟପରି ଉପେନ୍ଦ୍ରଙ୍କ ଉପରେ ଚଉପଦୀ ବା ସଙ୍ଗୀତ ସାହିତ୍ୟର ପିତୃତ୍ୱ ଅର୍ପଣ କରାଯିବା ସମୀଚୀନ । ଉପେନ୍ଦ୍ର ଉଭୟ ଛାନ୍ଦ ଓ ସଙ୍ଗୀତ ରଚନାରେ ନିଜର ଶ୍ରଦ୍ଧା ସମନ୍ୱିତ ବହୁ ନୂତନ ରାଗରାଗିଣୀ ସୃଷ୍ଟି କରି ନିଜର ପ୍ରତିଭା ଓ ରସିକତାର ପରିଚୟ ଦେଇଛନ୍ତି । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବହୁ ଚଉପଦୀ ବା ସଙ୍ଗୀତକାରଙ୍କର ଆବିର୍ଭାବ ଘଟିଛି (୩୬) । ସେମାନଙ୍କ ମଧ୍ୟରେ ବନମାଳୀ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ହରିବନ୍ଧୁ (ବେବର୍ତ୍ତା), ଗୌରହରି ପରିଚ୍ଛା, ଗୌର ଚରଣ, ପଦ୍ମନାଭ ପରିଚ୍ଛା, କବିଚନ୍ଦ୍ର ରଘୁନାଥ ପରିଚ୍ଛା, କବି ନୀଳକଣ୍ଠ, ହରେକୃଷ୍ଣ ମହାପାତ୍ର, ହରେକୃଷ୍ଣ ବେବର୍ତ୍ତା, ରାମକୃଷ୍ଣ ଓ ଯଦୁମଣିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଏକାଧାରରେ କବି, ବୈଷ୍ଣବ, ପ୍ରସିଦ୍ଧ ଗାୟକ ଓ ବାଦକ । ଏମାନଙ୍କର ସଙ୍ଗୀତ ମୁଖ୍ୟତଃ ରାଧାକୃଷ୍ଣଙ୍କର ପ୍ରେମଲୀଳା, ବାତ୍ସଲ୍ୟଭାବ ଏବଂ ଲୌକିକ ନାୟକ ନାୟିକାଙ୍କ ପ୍ରେମକୁ ଭିତ୍ତି କରି ରଚିତ ହୋଇଛି ।

ସଙ୍ଗୀତ ବା ଚଉପଦୀ ରଚନା ଓଡ଼ିଶାରେ ଗୀତିନାଟ୍ୟ, ଦକ୍ଷିଣୀ ନୃତ୍ୟ (ଗୋଟିପୁଅ ନୃତ୍ୟ), ଓଡ଼ିଶୀ ନୃତ୍ୟ ଓ ପାଲା ଅନୁଷ୍ଠାନର ଉତ୍ପତ୍ତି ଓ ସମୃଦ୍ଧିର କାରଣାତ୍ମକ ହୋଇଛି କହିଲେ ଚଳେ ! ଏହି ଅନୁଷ୍ଠାନ ଗୁଡ଼ିକ ଜରିଆରେ ଅଷ୍ଟାଦଶ ଓ ଊନବିଂଶ ଶତକରେ ଓଡ଼ିଶାରେ ସଙ୍ଗୀତ ଶାସ୍ତ୍ର ଓ ସଙ୍ଗୀତର ବିଶେଷ ଚର୍ଚ୍ଚା ହେବା ସଙ୍ଗେ ସଙ୍ଗେ ଉତ୍କଳରେ ସର୍ବତ୍ର ପ୍ରଚଳିତ ହୋଇ ପାରିଛି । ଗାୟକମାନେ ସ୍ୱର, ତାଳ, ଲୟ, ଭାବ, ରସ, ଅଳଙ୍କାର ଓ ଶିଳ୍ପଚାତୁର୍ଯ୍ୟପୂର୍ଣ୍ଣ ଚଉପଦୀ ଗୁଡ଼ିକ ଲକ୍ଷଣ ରୂପେ ଗାନ କରିଥାନ୍ତି ।

ଚଉପଦୀ ଓ ଚମ୍ପୂ ଗୀତ ଓଡ଼ିଶୀ ଗୀତ ନାମରେ କେବଳ ଓଡ଼ିଶା ବାହାରେ, ଭାରତରେ ଖ୍ୟାତି ଅର୍ଜନ କରିଛି ଏବଂ ଓଡ଼ିଶୀ ନୃତ୍ୟ ଜରିଆରେ ଓଡ଼ିଶୀ ଗୀତ ଭାରତ ତଥା

(୩୬) (କ) ଡଃ ମହାନ୍ତି, ଓଡ଼ିଆ ଗୀତି କାବ୍ୟ, ପୃ. ୭୭

(ଖ) ଅଧ୍ୟାପକ ବ୍ରହ୍ମାନନ୍ଦ ଦାସ, ସୃଷ୍ଟି ଓ କୃଷ୍ଟି, ପୃ.. ୧୯-୨୦

ପୃଥିବୀର ବିଭିନ୍ନ ଦେଶରେ ବର୍ତ୍ତମାନ ପ୍ରଚାର ଓ ପ୍ରଶଂସା ଲାଭ କରିଛି । ଓଡ଼ିଶାର ଖ୍ୟାତନାମା ନାଟ୍ୟକାର ଓ ସଙ୍ଗୀତ ଶିଳ୍ପୀ କାଳୀଚରଣ ପଟ୍ଟନାୟକ, ଧୀରେନ୍ଦ୍ର ନାଥ ପଟ୍ଟନାୟକ, ଲଳିତ କଳା ଏକାଡେମୀ (ଭୁବନେଶ୍ୱର), କଳାବିକାଶକେନ୍ଦ୍ର (କଟକ), ଅନ୍ୟ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କେନ୍ଦ୍ର ଏବଂ ଓଡ଼ିଶୀ ନୃତ୍ୟ ଶିଳ୍ପୀମାନେ ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟ ମହତ୍ତ୍ୱ ଲେଖା ତଥା ଅଭିନୟ କରିଆରେ ପ୍ରତିପାଦନ କରିଛନ୍ତି । ସଙ୍ଗୀତ ଶାସ୍ତ୍ରର ବିଧିବିଧାନ ଉପରେ ପ୍ରତିଷ୍ଠିତ ଓଡ଼ିଶୀ ସଙ୍ଗୀତ ଏକ ବିଶିଷ୍ଟ ପଦ୍ଧତିର ସଙ୍ଗୀତ ରୂପେ ସର୍ବଭାରତୀୟ ମର୍ଯ୍ୟାଦା ଲାଭ କରିଛି । ଏ ସଙ୍ଗୀତ ଗୁଡ଼ିକର ଏକ ଦିଗରେ ରହିଛି ଯେପରି ସ୍ୱର ମାଧୁର୍ଯ୍ୟ, ଅନ୍ୟ ଦିଗରେ ରହିଛି ସେପରି ଭାବର ଗୁମ୍ଫନ । ଏହାର ଭାବସମ୍ପଦ ଓ ଅନୁପ୍ରାସ ପରିପୂର୍ଣ୍ଣ ଶ୍ରବଣ ସୁଖକର ଭାଷା ଏହାକୁ ସାହିତ୍ୟିକ ମର୍ଯ୍ୟାଦା ଦାନ କରିଛି । ଭାରତର କର୍ଣ୍ଣାଟକ କିମ୍ବା ହିନ୍ଦୁସ୍ଥାନୀ ସଂଗୀତରେ ଏ ପ୍ରକାର ସାହିତ୍ୟିକ ମର୍ଯ୍ୟାଦା କ୍ୱଚିତ୍ ପରିଲକ୍ଷିତ ହୁଏ ।

ପୂର୍ବରୁ କଥିତ ହୋଇଛି ଯେ ଦକ୍ଷିଣ ଭାରତ ସହିତ ଓଡ଼ିଶାର ଦୀର୍ଘକାଳ ବ୍ୟାପୀ ସମ୍ପର୍କ ହେତୁ ଓଡ଼ିଶାର ଦକ୍ଷିଣାଞ୍ଚଳର କବି ଗୋପାଳକୃଷ୍ଣ, ପଦ୍ମନାଭ ପରିଚ୍ଛା, ଗୌରହରି ଓ ହରିବନ୍ଧୁ ପ୍ରଭୃତି ଦକ୍ଷିଣ ଭାରତୀୟ ସଙ୍ଗୀତ ପଦ୍ଧତି ବା କର୍ଣ୍ଣାଟକ ସଙ୍ଗୀତ ଦ୍ୱାରା (ରାଗରାଗିଣୀ ଓ ତାଳ ସହ) ପ୍ରଭାବିତ ହେବା ସ୍ୱାଭାବିକ; କିନ୍ତୁ ଓଡ଼ିଶାର ସଙ୍ଗୀତ ପରମ୍ପରା ଉତ୍ତର ଭାରତୀୟ ସଙ୍ଗୀତ ପଦ୍ଧତି ସହ ପୂର୍ବ ସମ୍ପର୍କଶୂନ୍ୟ ନୁହେଁ ।

ନାନା କାରଣରୁ ଊନବିଂଶ ଶତକର ଶେଷ ଭାଗରେ ଚଉପଦୀ ବା ଓଡ଼ିଶୀ ପ୍ରତି ଓଡ଼ିଶାର ଶିକ୍ଷିତ ସମ୍ପ୍ରଦାୟର ଅନୁରାଗ ଊଣା ପଡ଼ି ଯାଇଥିଲା । ପୂର୍ବ ପରମ୍ପରା ହେତୁ ଗଞ୍ଜାମ ଅଞ୍ଚଳ ଓ ପୁରୀ ଆଖଡ଼ା ଘରମାନଙ୍କରେ ଏହାର ଚର୍ଚ୍ଚା ସମାଜର ନିମ୍ନସ୍ତରର ଲୋକଙ୍କ ମଧ୍ୟରେ (୩୭) ଆବଦ୍ଧ ହୋଇ ଯାଇଥିଲା । ଅନ୍ୟ ଅଞ୍ଚଳ ଅପେକ୍ଷା ଗଞ୍ଜାମ ଅଞ୍ଚଳରେ ସଙ୍ଗୀତଚର୍ଚ୍ଚା ଉନ୍ନତ ଧରଣର ଥିଲା (୩୮) । ଦକ୍ଷିଣାଞ୍ଚଳର ଗାୟିକାମାନେ ସୁରଟ ଓ ବେହାଗ ରାଗିଣୀର ଗୀତମାନ ଗାଇବାରେ କୃତିତ୍ୱ ଅର୍ଜନ କରିଥିଲେ । ପୂର୍ବୋକ୍ତ ଆଲୋଚନାରୁ ଜଣାଯାଏ ଯେ ଗଞ୍ଜାମ ଓ ପୁରୀ ଅଞ୍ଚଳ ଚଉପଦୀ ବା ଉଚ୍ଚାଙ୍ଗ ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚା ଲାଗି ଦୀର୍ଘକାଳାବଧି ଖ୍ୟାତି ଅର୍ଜନ କରି ଆସିଛି । ନାନା ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଏହି ଅଞ୍ଚଳର ଗାୟକମାନେ ଓଡ଼ିଶୀ ସଙ୍ଗୀତର ବିଶିଷ୍ଟ ଗାନ-ପଦ୍ଧତିକୁ ରକ୍ଷା କରି ଆସିଛନ୍ତି । ଧ୍ରୁପଦ ସଙ୍ଗୀତ ଧର୍ମସାଧନାର ଅନ୍ତର୍ଭୁକ୍ତ ହୋଇଥିବାରୁ ପରମ୍ପରା କ୍ରମେ ଓଡ଼ିଶୀ ସଙ୍ଗୀତରେ 'ଧ୍ରୁପଦର' ପ୍ରଭାବ ଲକ୍ଷିତ ହୋଇ ଆସୁଛି (୩୯) ।

---

(୩୭) ବଂଶ ଶତାବ୍ଦୀର ଅବସ୍ଥା ସମ୍ପୂର୍ଣ୍ଣ ବଦଳି ଯାଇଛି । ଏହା ବର୍ତ୍ତମାନ ଶିକ୍ଷିତ ସମ୍ଭ୍ରାନ୍ତ ଗୋଷ୍ଠୀର ମର୍ଯ୍ୟାଦା ଲାଭ କରିଛି ।

(୩୮) ଡକ୍ଟର କାହ୍ନୁ ଚରଣ ମିଶ୍ର, ଆଲୋଚନା ମାଳା, ଦା. କ୍ଷି ରେ ସଙ୍ଗୀତ ଚର୍ଚ୍ଚା" ପ୍ରବନ୍ଧ, ପୃ ୧୪୪-୧୬୭

(୩୯) ଡଃ ମହାନ୍ତି, ଓଡ଼ିଆ ଗୀତିକାବ୍ୟ, ପୃ ୮୦-୮୧

ପୂର୍ବୋକ୍ତ ଆଲୋଚନାରୁ ଜଣାଯାଏ : କପରି ଗୋପାଳକୃଷ୍ଣଙ୍କ ସାଧନା ଓ ସୃଷ୍ଟି ପଛରେ ରହିଛି ଭାରତୀୟ ତଥା ଉତ୍କଳୀୟ ଛନ୍ଦ ଓ ସଙ୍ଗୀତ ଶାସ୍ତ୍ରର ଏକ ଉଜ୍ଜ୍ୱଳ ପରମ୍ପରା । ସଂସ୍କୃତ ସଙ୍ଗୀତଶାସ୍ତ୍ର, ଗୀତ, ବଙ୍ଗୀୟ ବୈଷ୍ଣବ ପଦାବଳୀ ଓ ବ୍ରଜବୁଲି ରଚନା ସହିତ ଦେଶୀୟ ଛନ୍ଦ, କାବ୍ୟ ଓ ସଙ୍ଗୀତ-ପରମ୍ପରା ମିଶ୍ରିତ ଗୋପାଳକୃଷ୍ଣଙ୍କ ସୃଷ୍ଟିରେ ନାନା ଛନ୍ଦ, ରାଗରାଗିଣୀ, ବାଣୀ ଓ ତାଳର ଉଲ୍ଲେଖ ପରିଦୃଷ୍ଟ ହୁଏ, ଯଥା—ମାଳବ ଗୌଡ଼ା, ତାଳ ଏକତାଳୀ; ଆଷାଢ଼ ଶୁକ୍ଳ, ଶୃଙ୍ଖଳା ବା ବରୁଦ ଛନ୍ଦ, ମଙ୍ଗଳ ଗୁର୍ଜ୍ଜରୀ (ଅପ୍ରାକୃତ ପ୍ରେମମୂର୍ତ୍ତି ଜନ୍ୟ ରାଧାଙ୍କର ଦଶା); ଚକ୍ରକେଦାର, ତାଳ ଝୁଲା; ଚକ୍ରା ଭୈରବ; କୁସୁମ କେଦାର, ଯୋଉ ବାଣୀ; ଲଳିତ କେଦାର; ଚକ୍ରା କେଦାର, ବୁଧେ ଶୁଣିମା ହେଉ ବାଣୀ; ମୁଖାବରୀ, ତାଳ ମିଶ୍ର ତାଳୀ; ଆନନ୍ଦ ଭୈରବୀ, ତାଳ ଆଦି ବା ସରିମାନ୍; ତୋଡ଼ି ପରଜ; କାରବାଣୀ; ଖମାଚ, ଆଦି ତାଳ; ଶଙ୍କରାଭରଣ, ଆଠ ତାଳୀ; କାଫି, ସୌରାଷ୍ଟ୍ର, ଏକ ତାଳୀ; କୌଶିକ, ପହ୍ୱପଟ; କଲ୍ୟାଣୀ, ତାଳ ଝୁମ୍ପା; ଜୌନପୁରି ତୋଡ଼ି, ଯତି ତାଳ; ଖରହରପ୍ରିୟା, ମିଶ୍ର ତାଳ; ନାଦ ନାମକ୍ରିୟା, ଏକ ତାଳୀ; ସାବେରୀ, ଆଠତାଳୀ; କର୍ଣ୍ଣାଟୀ, ତାଳ ସରିମାନ୍; ପଟହ୍ୱମଞ୍ଜରୀ, ଏକତାଳୀ; ଖମ୍ବାଜ, ତାଳ ଆଦି; ନାଟକୁରଙ୍ଗୀ, ଆଠତାଳୀ; ଗୁଣ୍ଡକରୀ, ତାଳ ରୂପକ; ସୁରଟ; ଆରବୀ, ତାଳ ରୂପକ, ମହ୍ଲାର, ତାଳ ତ୍ରିପୁଟା; ଦ୍ରାବିଡ଼ୀ, ଆଠତାଳୀ ଇତ୍ୟାଦି । ରାମକୃଷ୍ଣ ପଟ୍ଟନାୟକଙ୍କ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ସନ୍ନିବେଶିତ ରାଗ ଓ ତାଳ ଅଧିକାଂଶ ତେଲୁଗୁ ମିଶ୍ରିତ ବୋଲି ପୂର୍ବରୁ ସୂଚିତ ହୋଇଛି ।

ପାରଳାଖେମୁଣ୍ଡି ଅଞ୍ଚଳର ଗୀତ କବିଙ୍କ ରଚନାରେ ତୈଲଙ୍ଗୀୟ ପ୍ରଭାବର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଦେବାପାଇଁ ଗୋପାଳକୃଷ୍ଣଙ୍କର ସମସାମୟିକ ତଥା ବୟଃକନିଷ୍ଠ ଚାରିଜଣ ଜଣା ଶୁଣା କବିଙ୍କର ପରିଚୟ ଏବଂ ସେମାନଙ୍କର ସଙ୍ଗୀତଚର୍ଚ୍ଚା ଓ ଗୀତରଚନା ସମ୍ପର୍କରେ ପଦେ ଅଧେ ସୂଚନା ଦେବା ପ୍ରସଂଗ ଉପଯୋଗୀ ମନେହୁଏ । ସେମାନେ ହେଲେ କବିଚନ୍ଦ୍ର ରଘୁନାଥ ପରିଚ୍ଛା, ହରିବନ୍ଧୁ ଦେବର୍ତ୍ତା, ଗୌରହରି ପରିଚ୍ଛା ଓ ପଦ୍ମନାଭ ପରିଚ୍ଛା ।

କବିଚନ୍ଦ୍ର ରଘୁନାଥ ପରିଚ୍ଛା ଥିଲେ କର୍ଣ୍ଣାଟକ ସଙ୍ଗୀତର ଅନ୍ୟତମ ସ୍ରଷ୍ଟା ଏବଂ ଦକ୍ଷିଣ ଭାରତରେ ଲୋକପ୍ରିୟ ଓଡ଼ିଆ କବି । ପାରଳାର ପଦ୍ମନାଭ ରଙ୍ଗାଳୟ ମାଧ୍ୟମରେ ପାରଳାର କବି ଓ କୋବିଦମାନଙ୍କ ରଚିତ ସଙ୍ଗୀତ ନାଟକ ଆକାରରେ ପ୍ରଚାରିତ ହେଉଥିଲା । ଲିପିତତ୍ତ୍ୱବିତ୍ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ସଙ୍ଗୀତ ଅତୁଳନୀୟ । ଦକ୍ଷିଣ ଭାରତରେ ଅଦ୍ୟାପି ତାଙ୍କର ସଙ୍ଗୀତ କର୍ଣ୍ଣାଟକ ସଙ୍ଗୀତର ନିୟାମକ ରୂପେ ସ୍ୱୀକୃତି ଲାଭ କରିଛି (୪୦) । କବିଚନ୍ଦ୍ରଙ୍କର ରଚନା ଗୁଡ଼ିକ ହେଉଛି— ରାଧାମାଧବ ବିଳାସ, ରାଧାକୃଷ୍ଣ ଲୀଳା, ଶ୍ରୀ ରାମାୟଣ, ଗୋପୀନାଥବଲ୍ଲଭ ନାଟକ, ତାଳ ସର୍ବସାର ଓ ଲକ୍ଷଣ ଚନ୍ଦ୍ରୋଦୟ । ଶେଷୋକ୍ତ ଗ୍ରନ୍ଥ ହେଉଛି ଏକ ମୂଲ୍ୟବାନ ରଚନା ।

(୪୦) ଉପାନ୍ତରେ କବି ସମ୍ମିଳନୀ, ପା. ଖେ. ରେ କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ୧୮୩ତମ ଜୟନ୍ତୀ, ସମାଜ ତା ୧ । ୪ । ୭୮, ପୃ. ୭

ଏଥିରେ ସେ ଗଣ, ବର୍ଣ୍ଣ, ଅନୁପ୍ରାସ ଓ ଯତି, ଗଦ୍ୟପଦ୍ୟ, ଛନ୍ଦ, ବୃତ୍ତ, ଦଣ୍ଡକ, ନାଦ, ଶ୍ରୁତି ଓ ସ୍ୱର ନିରୂପଣ କରିଛନ୍ତି । ରାଗ ନିରୂପଣରେ ସିନ୍ଧୁଡ଼ା, ମାଳବ, ମାନଶ୍ରୀ ଓ ରାମକେରୀ ଇତ୍ୟାଦି ରାଗରାଗିଣୀର ଆଲୋଚନା ହୋଇଛି ।

ହରିବନ୍ଧୁ ପଦ୍ୟାବଳୀର (୪୧) କର୍ତ୍ତା ହରିବନ୍ଧୁ ବେବର୍ତ୍ତାଙ୍କର ସଙ୍ଗୀତ ଶାସ୍ତ୍ରରେ ଗଭୀର ପ୍ରବେଶ ଥିଲା । ସେ ଦାକ୍ଷିଣାତ୍ୟର ଧାରବାଡ଼ା ମାଧବ ରାଓ ନାମକ ଜଣେ ପ୍ରବୀଣ ଆନ୍ଧ୍ର ସଙ୍ଗୀତଜ୍ଞଙ୍କ ଠାରୁ ସଙ୍ଗୀତ ଗାନ ଓ ଯନ୍ତ୍ରବାଦନ ଶିକ୍ଷା କରି ବିଶେଷ ଦକ୍ଷତା ଅର୍ଜନ କରିଥିଲେ । ସେ ଏକ ସମୟରେ ପଞ୍ଚଯନ୍ତ୍ର, ସପ୍ତଯନ୍ତ୍ର ବାଦନ କରିପାରୁଥିଲେ । ତାଙ୍କର କବିତ୍ୱ, ସଙ୍ଗୀତଗାନ, ଓ ଯନ୍ତ୍ରବାଦନକୁଶଳତା ହେତୁ ସେ ପାରଳା ରାଜଦରବାରରେ ଆଦୃତ ଓ ସମ୍ମାନିତ ହୋଇଥିଲେ । ତାଙ୍କର ପଦ୍ୟାବଳୀରେ ରାଧାକୃଷ୍ଣ ଲୀଳା ଓ ଚୈତନ୍ୟ ଲୀଳାକୁ କେନ୍ଦ୍ର କରି ଅନେକ ସୁନ୍ଦର ଚୈପଦୀ ପ୍ରକାଶିତ ହୋଇଛି । ଗୋପାଳକୃଷ୍ଣଙ୍କ ଦ୍ୱାରା ବ୍ୟବହୃତ ଚୈପଦୀର ରାଗରାଗିଣୀ ଏହାଙ୍କର ପଦ୍ୟାବଳୀରେ ପରିଦୃଷ୍ଟ ହୁଏ । ତା ଛଡ଼ା କବି ଗୋପାଳକୃଷ୍ଣଙ୍କ ପରି ତେଲୁଗୁ ରାଗରାଗିଣୀ ଓ ତାଳର ଉଲ୍ଲେଖ ମଧ୍ୟ ବିଭିନ୍ନ ଚୈପଦୀର ଆରମ୍ଭରେ କହିଛନ୍ତି, ଯଥା—ନାରାୟଣା ନୀପ ଦାମୁଲୁ ନାମ୍ମିତି ପ୍ରତି, ଆତା ବାରିଷ୍ଟୁ ଆମ୍ମେରୁମା ମାସ୍ତେ ପ୍ରତି, ମୌ ସମାୟାନେ ନା ବୁର୍ଦ୍ଦିକ ପ୍ରତି, ନନ୍ନେ ନାମ୍ମି ନାନୁ ନାରଜା ନାସ୍ୱାନା ପ୍ରତି, ସ୍ୱା ବାଟେ ତାଲୁ ନାମ୍ମୀ ଇନାଡ଼ା ତାଲକେ ପ୍ରତି ଇତ୍ୟାଦି ।

ଅନ୍ୟମାନଙ୍କ ପରି ଅନ୍ୟ ବିଶିଷ୍ଟ ଗୀତକାର ଗୌରହରି ପରିଚ୍ଛାଙ୍କ ରଚନା ତେଲଙ୍ଗୀୟ ପ୍ରଭାବରୁ ମୁକ୍ତ ନୁହେଁ । ତାଙ୍କ ରଚନାବଳୀ 'ଗୌରହରି ଗ୍ରନ୍ଥାବଳୀ' ଶିରୋନାମାରେ ୧୯୬୬ରେ ଅର୍ତ୍ତନ୍ତ୍ରା ପଣ୍ଡାଙ୍କ ଦ୍ୱାରା ସଂଶୋଧିତ ହୋଇ ପ୍ରକାଶିତ ହୋଇଛି । କବି ରାଧାକୃଷ୍ଣ ପ୍ରେମଲୀଳାକୁ କେନ୍ଦ୍ର କରି ଅନେକ ଚୈପଦୀ ରଚନା କରିବା ସଙ୍ଗେ ସଂଗେ ସଂସ୍କୃତ ଶ୍ରୀମଦ୍ ଭାଗବତର ବସ୍ତ୍ରହରଣ ଓ ଗୀତଗୋବିନ୍ଦର ଅନୁବାଦ ବିଭିନ୍ନ ଚୈପଦୀରେ କରିଯାଇଛନ୍ତି, ପୁଣି କେତେକ ଚୈପଦୀର ସ୍ୱରଲିପି ନିଜେ ପ୍ରସ୍ତୁତ କରିଛନ୍ତି । ଏଥିରୁ ସଂଗୀତ ଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶର ପରିଚୟ ମିଳେ । ଗୋପାଳକୃଷ୍ଣ ଓ ହରିବନ୍ଧୁଙ୍କ ପରି କେତେକ ଚୈପଦୀର ଆରମ୍ଭରେ ତେଲୁଗୁ ରାଗ ଓ ବୃତ୍ତର ଉଲ୍ଲେଖ ରହିଛି, ଯଥା – ରାଗ ଏଡକୁଲ କାମୋଦୀ, ଆଦିତାଳ; ତାରାଲ ପୋତାମୁ ସାମି ପ୍ରତି, ତାଳ ଝୁଲୁଆ, ବନାବେ ପଲ୍ଲାବୀ ମୃଦୁ ବୃରଣା ପ୍ରତି; ଏନ୍ତାଦୁଣ୍ଡାଗୀଡ଼େ ପ୍ରତି; ରମାନା ପୌଦାସ୍ୱା ରାହା ପ୍ରତି; ରାଘୁ ନାହାନା ପିଲଚନା ପାଲୁକା ପ୍ରତି ଇତ୍ୟାଦି । କବିଙ୍କର ବଂଗଳା ଭାଷାରେ ପ୍ରବେଶ ଥିବାରୁ ସେ ଚୈତନ୍ୟଲୀଳା ସମ୍ପର୍କିତ ଦଣ୍ଡାତ୍ମିକା, ନିଶାନ୍ତଲୀଳା, ପ୍ରାତଃକାଳ ସେବା, ପୂର୍ବାହ୍ନଲୀଳା ଓ ଅପରାହ୍ନଲୀଳା ପ୍ରଭୃତି ବଂଗଳା ଭାଷାରେ ବର୍ଣ୍ଣନା କରିଛନ୍ତି ଏବଂ ଗୁରୋଟି ଭାଷାରେ ଗୋଟିଏ ଗୀତ (୪୨) ରଚନା କରିଛନ୍ତି ।

---

(୪୧) ହରିବନ୍ଧୁ ପଦ୍ୟାବଳୀ, ସମ୍ପା : ଶ୍ୟାମ ସୁନ୍ଦର ବେବର୍ତ୍ତୀ, ପ୍ରକା : ରାଜା କୃଷ୍ଣଚନ୍ଦ୍ର ଗ. ନା. ଦେବ, ୧୯୩୬

(୪୨) ପ୍ରାଣନାଥକେ ହାରାଲ୍ୟାଂ କସେର । ମାନେସ୍‌ରେ । ବୋଲ୍ କ ଉପାସ୍ କରିଗୋ । କେ ଜାନିବେ ଏମନ୍ ଘାତ ରାଡ଼୍ୟା ଆମାସ୍ ଯାବେ କତ । × × × ।

ବିଶିଷ୍ଟ ସଙ୍ଗୀତଜ୍ଞ ପଦ୍ମନାଭ ପଣିଗ୍ରାହୀ ରାଧାକୃଷ୍ଣ ପ୍ରେମ ବିଷୟକ ଅନେକ ଗୀତ ରଚନା କରିଛନ୍ତି । ସେ ସର୍ବପ୍ରଥମେ ତେଲେଙ୍ଗୀ ସଙ୍ଗୀତ ଓଡ଼ିଶାକୁ ବିଶେଷତଃ ପାରଳାକୁ ଆଣିଥିଲେ । ତେଲୁଗୁ ସଙ୍ଗୀତର କୃତି ଓ ପଲ୍ଲବୀ ରୀତି ଅବଲମ୍ବନରେ ସେ ଓଡ଼ିଆ ସଙ୍ଗୀତ ଲେଖିବାକୁ ଆରମ୍ଭ କରିଥିଲେ । ସେ ହେଉଛନ୍ତି ପ୍ରସିଦ୍ଧ 'ଗୀତ ରତ୍ନାକର'ର କବି । ତାଙ୍କ ସଙ୍ଗୀତ ଗୁଡ଼ିକ ଓଡ଼ିଶାରେ ବିଶେଷ ଲୋକପ୍ରିୟ (୪୩) ।

ଏଥିରୁ ପାରଳାଖେମୁଣ୍ଡି ଓ ଗଞ୍ଜାମ ଅଞ୍ଚଳରେ ସଙ୍ଗୀତ ଓ ସଙ୍ଗୀତଶାସ୍ତ୍ର ଚର୍ଚ୍ଚା, ଗୀତ କବିମାନଙ୍କର ସଂସ୍କୃତ ସହିତ ବିଭିନ୍ନ ଭାଷାରେ ପ୍ରବେଶ ଏବଂ ତୈଲଙ୍ଗୀୟ ସଙ୍ଗୀତ ରୀତି ଓ ସଙ୍ଗୀତର ପ୍ରଭାବ ସମ୍ପର୍କରେ ସ୍ପଷ୍ଟ ଜଣାଯାଏ ।

## (ଖ) ପ୍ରେମପ୍ରଧାନ ଲୌକିକ ଓ ବୈଷ୍ଣବ କାବ୍ୟର ପରମ୍ପରା

[ ବୈଦିକ, ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ]

ଓଡ଼ିଶାର ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଏକ ସମନ୍ୱୟାତ୍ମକ ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହେଲା ପରି ଏହାର ସାହିତ୍ୟରେ ମଧ୍ୟ ସେହି ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ । କି ଲୌକିକ ସାହିତ୍ୟ, କି ବୈଷ୍ଣବ ସାହିତ୍ୟ ଉଭୟ କ୍ଷେତ୍ରରେ ଏ ପରମ୍ପରାର ଅମଳିନ ସ୍ୱାକ୍ଷର ରହିଛି । ଗୋପାଳକୃଷ୍ଣଙ୍କ ରଚନାରେ ଏ ବୈଶିଷ୍ଟ୍ୟର ମୁଦ୍ରାଙ୍କ ଅତି ସ୍ପଷ୍ଟ ।

ଗୋପାଳକୃଷ୍ଣ ପାରମ୍ପରିକ ରୀତିରେ ଶୁଦ୍ଧାଭକ୍ତି ମତରେ ଦୀକ୍ଷିତ ହେଲେ ମଧ୍ୟ, ଅଧିକାଂଶ ରଚନାରେ ଜଣେ ନିଷ୍ଠାପର ବୈଷ୍ଣବର ବିଶ୍ୱାସ, ଚିନ୍ତାଧାରା ଓ ଆଚରଣ ପ୍ରତିବିମ୍ବିତ ହେଲେ ମଧ୍ୟ ତାଙ୍କର ସାମ୍ପ୍ରଦାୟିକ ବୈଷ୍ଣବୀୟ ଆବରଣ ତଳେ ଆମେ ତାଙ୍କର ବ୍ୟକ୍ତିତ୍ୱର ଯେଉଁ ସନ୍ଧାନ ପାଉଁ ତାହା ହେଉଛି ତାଙ୍କର ନୈସର୍ଗିକ ପ୍ରତିଭା ସମୁଜ୍ଜ୍ୱଳ କବିତ୍ୱ । ସ୍ୱକୀୟତାର ସ୍ୱାକ୍ଷର ଓ କବିମାନସର ବିମଳ ପ୍ରତିଚ୍ଛବି ବହନ କରିଥିବା ତାଙ୍କର ପଦାବଳୀ

---

ଜଗଜ୍ଜନ ମନୋହର ମୂର୍ତ୍ତି ନବୀନ କିଶୋର । ମୁରଲୀ ଖୁରଲୀ ଶେଖର । ଆର ଜନ୍ମେ ଥୋଇ ବାଡ଼ି କୈମୋସେ । ସ୍ତ୍ରୀ ଲେଲୁଡୁ ରାତ୍ରାୟୁ ମାଲାଲଛେ ଦାନାଣ୍ଡେ ଓଢାଣ୍ଡି । ( ଏହି ଅନେକ ଭାଷାମୟ ରଚନାକୁ 'କରମ୍ଭକ' କୁହାଯାଏ । )
ଗୌରହରି ଗ୍ରନ୍ଥାବଳୀ, ୧ମ ସଂ., ଚତୁର୍ଦ୍ଦଶ ଗୀତ, ପୃ. ୧୭

(୪୩) ଡଃ ମିଶ୍ର, ଆଲୋଚନା ମାଳା; ସଂଶୋଧିତ ସଂସ୍କରଣ, ପୃ. ୧୪୮-୧୪୯

ରିପର ବଳିଷ୍ଠ ପରମ୍ପରା ଉପରେ ପ୍ରତିଷ୍ଠିତ ତା'ର ସୂଚନା ପୂର୍ବରୁ ଦିଆଯାଇଛି । ଭାରତୀୟ ସଙ୍ଗୀତ ତଥା ଉତ୍କଳୀୟ ସଙ୍ଗୀତ ପରମ୍ପରା, ତେଲିଙ୍ଗୀୟ ବା କର୍ଣ୍ଣାଟକ ରାଗରାଗିଣୀର ପରମ୍ପରା, ଶୁଦ୍ଧାଭକ୍ତିର ବୈଷ୍ଣବମତ, ବୈଷ୍ଣବୀୟ ଅଳଙ୍କାର ତଥା ପଦାବଳୀ ରଚନା ଏବଂ ସଂସ୍କୃତ ଓ ଓଡ଼ିଆରେ ରଚିତ ଲୌକିକ ଗ୍ରନ୍ଥ ଓ ଗୀତିପଦ୍ୟର ପରମ୍ପରା—ଏଗୁଡ଼ିକର ଚମତ୍କାର ସମନ୍ୱୟ ଘଟିଛି ଗୋପାଳକୃଷ୍ଣଙ୍କ ରଚନାରେ । ଏହି ପରମ୍ପରାର ସଙ୍କେତ ମିଳିଥିଲା ଭକ୍ତକବି ଦୀନକୃଷ୍ଣ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଅମର ସୃଷ୍ଟି ସମ୍ପଦରେ ।

ଏହି ପରିଚ୍ଛେଦର ପ୍ରଥମ ଭାଗରେ (କ) ସଙ୍ଗୀତଶାସ୍ତ୍ର ଓ ସଙ୍ଗୀତ ରଚନାର ପରମ୍ପରା ସମ୍ପର୍କରେ ସୂଚନା ଦିଆଯାଇଛି । ଦ୍ୱିତୀୟ ଭାଗରେ (ଖ) ବୈଦିକ, ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ପ୍ରେମ ପ୍ରଧାନ ଲୌକିକ ଓ ବୈଷ୍ଣବ କାବ୍ୟର ପରମ୍ପରା ସମ୍ପର୍କରେ ଆଲୋଚନା କରାଯାଉଛି ।

## ଭାରତୀୟ ସାହିତ୍ୟରେ ପ୍ରେମ ଓ ଶୃଙ୍ଗାର :

ଗୋପାଳକୃଷ୍ଣ ତାଙ୍କର ପୂର୍ବବର୍ତ୍ତୀ ଛାନ୍ଦ ଓ ସଙ୍ଗୀତକାରଙ୍କ ପରି (ଦୀନକୃଷ୍ଣ, ଧନଞ୍ଜୟ, ବିଷ୍ଣୁଦାସ, ରଘୁନାଥ ହରିଚନ୍ଦନ, ଉପେନ୍ଦ୍ର ଓ ଅଭିମନ୍ୟୁ ପ୍ରଭୃତି) ପ୍ରଥମେ ଗ୍ରାମ୍ୟରସ ବା ଲୌକିକ ରସରେ ଗୁଡ଼ିଏ ଚଉପଦୀ ଓ ଚଉତିଶା ରଚନା କରିଥିଲେ । କବିଙ୍କର ଯୌବନ ଅବସ୍ଥା ଏବଂ ଏ ପ୍ରକାର ରଚନାର ପରମ୍ପରା ଦୃଷ୍ଟିରୁ ପ୍ରଥମେ ଲୌକିକ ବା ଗ୍ରାମ୍ୟରସରେ ରଚନା କରିବା ସ୍ୱାଭାବିକ । ଆମର ଛାନ୍ଦ, ଚଉତିଶା ଓ ଚଉପଦୀ ଗୁଡ଼ିକ ମୁଖ୍ୟତଃ ପ୍ରେମ ଓ ଶୃଙ୍ଗାରଧର୍ମୀ । ସମ୍ଭୋଗ (ମିଳନ) ଅପେକ୍ଷା ବିପ୍ରଲମ୍ଭର (ବିରହ) ଚିତ୍ର ଅଧିକ ମାତ୍ରାରେ ପରିଲକ୍ଷିତ ହୁଏ । ବୈଷ୍ଣବର ରାଧାକୃଷ୍ଣ ହୁଅନ୍ତୁ ବା ସାଧାରଣ ନାୟକ ନାୟିକା (ପ୍ରଣୟୀ, ପ୍ରଣୟିନୀ) ହୁଅନ୍ତୁ, ମାନବ ଚରିତ୍ରର ଏହି ବିଭାବ (ପ୍ରେମ ଓ ଶୃଙ୍ଗାର) ସବୁ ସାହିତ୍ୟରେ ସବୁକାଳରେ ନାନା ଭଙ୍ଗୀ, ରୂପ ଓ ସ୍ତର-ବୈଚିତ୍ର୍ୟ ମଧ୍ୟ ଦେଇ ଆତ୍ମପ୍ରକାଶ କରିଆସିଛି । ପ୍ରାଚୀନତମ ବୈଦିକ ସୂକ୍ତ, (ଋଗ୍ ବେଦର ଯମଯମୀ କଥୋପକଥନ, ୧୦-୧୦), ବିବାହ ସ୍ତୋତ୍ର (ଅଥର୍ବ ବେଦ, ୧୪) ଓ କୌଶିକ ସୂତ୍ର (ସ୍ତ୍ରୀ କର୍ମାଣି) ଠାରୁ ଆରମ୍ଭ କରି ପାଲି ଦୀଘ୍‌ଘନିକାୟ, ପୌରାଣିକ ସାହିତ୍ୟ, ଉଚ୍ଚାଙ୍ଗ ସଂସ୍କୃତ କାବ୍ୟ (ଅଶ୍ୱଘୋଷ ଓ କାଳିଦାସଙ୍କର), ଶତକ, ପ୍ରାକୃତ ସାହିତ୍ୟ ଏବଂ ପ୍ରାଦେଶିକ ସାହିତ୍ୟର ପ୍ରାଚୀନ ରୂପରେ ନାନାସ୍ତରରେ ଆମେ ଏହି ମାନବ ଚରିତ୍ର ସାର୍ବଜନୀନ ବିଭାବର ଚିତ୍ର ପାଉଁ । ଏହା କେଉଁଠି ସ୍ଥୂଳ, ନଗ୍ନ, ବାସ୍ତବ ରୂପ ଗ୍ରହଣ କରିଛି, କେଉଁଠି ବା ତ୍ୟାଗ, ସଂଯମ ଓ ନିଷ୍ଠା ମଧ୍ୟରେ ଉତ୍ତୁଙ୍ଗ ରୂପ ଲାଭ କରିଛି ।

## ବୈଦିକ ସାହିତ୍ୟରେ :

ମାନବ ପୁରୁରବା ଓ ଅପ୍‌ସରା ଉର୍ବଶୀଙ୍କର କଥୋପକଥନକୁ ନେଇ ଋଗ୍‌ବେଦରେ ସଂବାଦସୂକ୍ତ ରଚିତ ହୋଇଛି (ଋଗ୍‌ବେଦ, ୧୦.୯୫), ଏଥିରେ ପ୍ରେମାନୁଭୂତିର ଏକ ନିବିଡ଼ ଅଭିବ୍ୟକ୍ତି ରହିଛି । ତା'ଛଡ଼ା ଋଗ୍‌ବେଦରେ (୧୦.୧୦) ଭଉଣୀ ଯମୀର ଭାଇ ଯମ ସହିତ ମିଳିତ ହେବା ପାଇଁ (ମାନବ ଜାତିର ରକ୍ଷଣ ନିମିତ୍ତ) ତା' ପ୍ରାଣର ଦୁର୍ବାର

ବାସନା ଏକ ସୂତ୍ରରେ ପ୍ରତିଫଳିତ ହୋଇଛି । ଲାଳସାମୟୀ ବାକ୍ୟରେ ଭଗିନୀ ଭ୍ରାତାର ହୃଦୟକୁ ଜୟ କରିବାକୁ ଆପ୍ରାଣ ଉଦ୍ୟମ କରିଛି । ଋଗ୍‌ବେଦର ବିବାହ ସୂକ୍ତଗୁଡ଼ିକ (ଅଥର୍ବ ବେଦ, ୧୪.ରେ ଯା'ର ବିସ୍ତୃତ ସଂଗ୍ରହ ରହିଛି) ବିବାହ ଓ ସନ୍ତାନୋତ୍ପତ୍ତି ସମ୍ପର୍କରେ ପ୍ରାର୍ଥନା, ବଶୀକରଣ ଓ ସଙ୍ଗୀତରେ ପରିପୂର୍ଣ୍ଣ । ପରବର୍ତ୍ତୀ 'କୌଶିକ ସୂତ୍ର'ରେ ସ୍ତ୍ରୀ କର୍ମାଣି ଶୀର୍ଷକ ପ୍ରେମ-ଯାଦୁ ଓ ତା'ର ଚିକିତ୍ସାର ବହୁ ପ୍ରକାର ଭେଦର ଉଲ୍ଲେଖ ରହିଛି । ସେଥିପାଇଁ ବୈଦିକ ସଙ୍ଗୀତ ଓ ମନ୍ତ୍ରର ମୁକ୍ତ ବ୍ୟବହାର ପ୍ରଚଳିତ ଥିଲା (୪୪) ।

**ପାଲି ସାହିତ୍ୟରେ :**

ପାଲି ସାହିତ୍ୟର ଦୀଘ୍‌ଘନିକାୟରେ ସକ୍‌କର ପ୍ରଶ୍ନ ମାନବିକ ଭାବାବେଗ ପୂର୍ଣ୍ଣ ଏକ ସୁନ୍ଦର ପ୍ରେମ ଗୀତ । ଏହା ଏକ ପ୍ରାଚୀନ ଅବୌଦ୍ଧ ଗାଥା ବୋଲି ଅନୁମାନ କରାଯାଏ (୪୫) ।

**ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ :**

ଉଚ୍ଚାଙ୍ଗ ସଂସ୍କୃତ ସାହିତ୍ୟର ଉଷାକାଳରୁ କ୍ଷୟିଷ୍ଣୁ ଅବସ୍ଥା ପର୍ଯ୍ୟନ୍ତ ଆମେ ଦେଖୁଁ ଯେ କାବ୍ୟ, ନାଟକ, ଶତକ ଓ ଗାଥା ମାନଙ୍କରେ ପ୍ରେମ ଓ ଶୃଙ୍ଗାର ଏକ ପ୍ରଭାବଶାଳୀ ବିଷୟବସ୍ତୁ ରୂପେ ପ୍ରତିଷ୍ଠିତ ହୋଇ ଆସିଛି । ଅଶ୍ୱଘୋଷ (ସୌନ୍ଦରାନନ୍ଦ), ଭାସ (ଚାରୁଦତ୍ତ, ସ୍ୱପ୍ନ ବାସବଦତ୍ତା), କାଳିଦାସ (ରଘୁବଂଶ, କୁମାର ସମ୍ଭବମ୍, ବିକ୍ରମୋର୍ବଶୀୟମ୍, ଅଭିଜ୍ଞାନ-ଶାକୁନ୍ତଳମ୍), ଅମରୁ (ଅମରୁ ଶତକ), ଭର୍ତ୍ତୃହରି (ଶୃଙ୍ଗାର ଶତକ), ବାଣଭଟ୍ଟ (କାଦମ୍ବରୀ), ମୟୂର (ମୟୂରାଷ୍ଟକ), ଦଣ୍ଡୀ (ଦଶକୁମାର ଚରିତ), ସୁବନ୍ଧୁ (ବାସବଦତ୍ତା), ଶୂଦ୍ରକ (ମୃଚ୍ଛକଟିକ), ଭବଭୂତି (ମାଳତୀ-ମାଧବ), ଶ୍ରୀହର୍ଷଙ୍କ (ନୈଷଧ-ଚରିତମ୍) ଅମର କୃତି ମାନଙ୍କରୁ ତା'ର ଦୃଷ୍ଟାନ୍ତ ଦିଆ ଯାଇପାରେ । ବାଣଭଟ୍ଟ ଓ ମୟୂରଙ୍କ ପରେ କାବ୍ୟ ରୁଚିର ଯେତେବେଳେ ଅଧଃପତନ ଘଟିଛି ଏବଂ କାବ୍ୟ ରୂପରେ କୃତ୍ରିମତା ଦେଖାଦେଇଛି, ସେତେବେଳେ ପ୍ରେମ ଓ ଶୃଙ୍ଗାର କାମଶାସ୍ତ୍ରଭିତ୍ତିକ ହୋଇଯାଇ କୃତ୍ରିମ ଓ ସ୍ଥୂଳ ହୋଇ ପଡ଼ିଛି ।

**ଶତକ ଓ ଅଷ୍ଟକରେ :**

କାବ୍ୟ ଓ ନାଟକକୁ ଛାଡ଼ି ଦେଲେ ପ୍ରେମ ଓ ଶୃଙ୍ଗାରକୁ ଭିତ୍ତି କରି ବହୁ ଶତକ (ଅଷ୍ଟକ ମଧ୍ୟ) ରଚିତ ହୋଇଛି । ଶତକର ପ୍ରତ୍ୟେକ ଶ୍ଳୋକର ବୈଶିଷ୍ଟ୍ୟ ହେଉଛି : ଏଥିରେ ଏକ କ୍ଷୁଦ୍ର ଆଲେଖ୍ୟ ରୂପ ଗ୍ରହଣ କରିଥାଏ । ପ୍ରତ୍ୟେକ ଶ୍ଳୋକର ଭାବ ପ୍ରତ୍ୟେକ ଶ୍ଳୋକରୁ ବିଚ୍ଛିନ୍ନ ଓ ସ୍ୱତନ୍ତ୍ର ଏବଂ ଏହା ଭାବ, ଅଭିବ୍ୟକ୍ତି, ଚିତ୍ରକଳ୍ପର ଏକ ସମ୍ପୂର୍ଣ୍ଣ

(୪୪) S. K. De, Ancient Indian Erotics and Erotic Literature, Firma K. L. Mukhopadhyay, Calcutta, 1959, P.P. 1-4.

(୪୫) Ibid. P.9.

ପୃଥକ୍ ରୂପ; ଏହା ଭାବର ଏକ ନିର୍ଦ୍ଦିଷ୍ଟ ବିଭାବ କିମ୍ବା ନିର୍ଦ୍ଦିଷ୍ଟ ପରିସ୍ଥିତିର ଏକ ସମ୍ପୂର୍ଣ୍ଣ ଚିତ୍ରର ସୁନ୍ଦର ପ୍ରକାଶ । ଶତକର ଏହି ସ୍ୱୟଂ ସମ୍ପୂର୍ଣ୍ଣ ଶ୍ଳୋକ ଗୁଡ଼ିକରେ ଆମେ ପ୍ରେମର ଏକ ଏକ କ୍ଷୁଦ୍ର ଚିତ୍ର ପାଉଁ । ଏଥିରେ ଭାବ, ଅନୁଭୂତି ବ୍ୟକ୍ତିଗତ ହେବା ଅପେକ୍ଷା ଅଧିକ କଳାପୂର୍ଣ୍ଣ (artistic) ହୋଇଥାଏ । ସେଥିପାଇଁ ଆମେ ଏଥିରେ ନିର୍ଦ୍ଦିଷ୍ଟ ନାୟକ କିମ୍ବା ନାୟିକାର ବ୍ୟକ୍ତିଗତ ଭାବାନୁଭୂତିର ଚିତ୍ର ପାଇବା ଅପେକ୍ଷା ସାର୍ବଜନୀନ ନାୟକ କିମ୍ବା ନାୟିକାର ଅନୁଭୂତିର ଚିତ୍ର ପାଉଁ । ମେଘଦୂତ, ଘଟକର୍ପରଙ୍କ କାବ୍ୟ, ଗୀତ ଗୋବିନ୍ଦ ଓ ତା'ର ଅଗଣିତ ଅନୁକୃତିକୁ ଛାଡ଼ି ଦେଲେ ସଂସ୍କୃତ ପ୍ରେମକବିତା ଏକ ଶୃଙ୍ଖଳିତ ସୁପରିକଳ୍ପିତ କାବ୍ୟରୂପ ଗ୍ରହଣ ନକରି ଏହିପରି ଏକ ନିର୍ଦ୍ଦିଷ୍ଟ ଭାବଭିତ୍ତିକ ବା ନିର୍ଦ୍ଦିଷ୍ଟ ଶୃଙ୍ଗାର ଭିତ୍ତିକ ସୁନ୍ଦର ସ୍ୱୟଂ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଶ୍ଳୋକ୍ ରୂପ ଗ୍ରହଣ କରିଛି (୪୬) ।

**ଅମରୁ ଶତକ :**

ସଂସ୍କୃତ ଶତକମାନଙ୍କ ମଧ୍ୟରେ 'ଅମରୁ ଶତକ'ର ଏକ ବିଶିଷ୍ଟ ସ୍ଥାନ ରହିଛି । ଅନୁଭୂତିର ନିବିଡ଼ତା ଓ ଚିତ୍ରକଳ୍ପର ସୌନ୍ଦର୍ଯ୍ୟ ନେଇ ଅମରୁ ପ୍ରେମର ଅଗଣିତ ସ୍ୱରୂପ ବର୍ଣ୍ଣନା କରିଛନ୍ତି । ତାଙ୍କର ରଚନା ଅଯଥା ଅଳଙ୍କାରରେ ଭାରାକ୍ରାନ୍ତ ହୋଇନାହିଁ; ବରଂ ଏହାର ଗୀତଧର୍ମୀ ପଦ ଯୋଜନା ହେତୁ ପାଠକ ଏହାମଧ୍ୟରେ ଏକ ସହଜ ଓ ସ୍ୱାଭାବିକତାର ସ୍ପର୍ଶ ପାଏ । ଗୀତ ମାଧୁର୍ଯ୍ୟ ପୂର୍ଣ୍ଣ ଦୀର୍ଘ ଛନ୍ଦ ଓ କ୍ଷୁଦ୍ର ଶବ୍ଦ ଚିତ୍ରରେ ଅମରୁ ଅନ୍ୟମାନଙ୍କୁ ବଳି ଯାଇଛନ୍ତି । ଅଭିଳାଷ, ଆଶା, ତନ୍ମୟତା, ଈର୍ଷା, କ୍ରୋଧ, ହତାଶା ଓ ସାନ୍ତ୍ୱନା ଇତ୍ୟାଦି ଅଗଣିତ ଭାବ ଓ ପ୍ରବୃତ୍ତିକୁ ନେଇ ସେ ଯୌବନୋଦ୍ଦୀପ୍ତ ନିବିଡ଼ ପ୍ରେମର ଚିତ୍ର ଅଙ୍କନ କରିଛନ୍ତି । ତାଙ୍କର ଚିତ୍ର ଗୁଡ଼ିକର ଜୀବନ ଓ ବାସ୍ତବତା ସହିତ ନିକଟ ସମ୍ପର୍କ ରହିଛି । ସଂସ୍କୃତ ସାହିତ୍ୟରେ ଅମରୁ ହେଉଛନ୍ତି ଏକ ଅଭିନବ ବିକାଶର ଅଗ୍ରଦୂତ । ପରବର୍ତ୍ତୀ ପ୍ରେମ ଶତକ ଓ ସଂସ୍କୃତ ସଂଗ୍ରହ ଗ୍ରନ୍ଥ (ସୂକ୍ତି ସଂଗ୍ରହ) ମାନଙ୍କରେ କଳ୍ପନାର ଯେଉଁ କମନୀୟତା, ପ୍ରକାଶଭଙ୍ଗୀର ସମୁନ୍ନତି, ଭାବ ଓ ଅନୁଭୂତିର ସୂକ୍ଷ୍ମତା ପରିଲକ୍ଷିତ ହୋଇଛି, ତାହା ସେହି ବିକାଶର ସୁଫଳ (୪୭) ।

**ଗାହା ସତ୍ତସଈ :**

ସଂସ୍କୃତରେ ଅମରୁ ଏବଂ ପ୍ରାକୃତରେ ହାଳ ସାତବାହନ (ତୃତୀୟ ଶତକ) ତାଙ୍କର 'ଗାହା ସତ୍ତସଈ' (ଗାଥା ସପ୍ତଶତୀ) ପାଇଁ ଭାରତରେ ବିଖ୍ୟାତ । ଗାହା ସତ୍ତସଈ ପ୍ରାକୃତ ଭାଷାରେ ରଚିତ ପ୍ରେମ ସମ୍ପର୍କୀୟ ଏକ ଉଚ୍ଚାଙ୍ଗ କାବ୍ୟ ସଂକଳନ (୭୦୦ଟି ଶ୍ଳୋକର) । ଏଥିରେ ଯେଉଁ କବିମାନଙ୍କର ଶ୍ଳୋକର ସଂଗ୍ରହ ରହିଛି, ସେମାନେ କାଳିଦାସଙ୍କର ପୂର୍ବବର୍ତ୍ତୀ । ଏଥିରେ ଥିବା ଶ୍ଳୋକ ଗୁଡ଼ିକ ପ୍ରେମ ଓ ଶୃଙ୍ଗାରଧର୍ମୀ । ପ୍ରାକୃତ ଗାଥା ଗୁଡ଼ିକରେ ପ୍ରେମ ଓ ଶୃଙ୍ଗାରର ଏ ପ୍ରାଧାନ୍ୟରୁ ମନେ ହୁଏ : ଲୋକ ସାହିତ୍ୟରେ ଏହା ଏକ ମୁଖ୍ୟ ବିଷୟବସ୍ତୁ ଥିଲା । ସଂସ୍କୃତ ପ୍ରେମ କବିତା ପରି ଏହି ପ୍ରାକୃତ ପ୍ରେମ ଗାଥାର

(୪୬) Ibid, PP. 15-16
(୪୭) Ibid, P. 27

ସଂକଳନ ଅବଶ୍ୟ ଗତାନୁଗତିକ ଓ ପାରମ୍ପରିକ । ଅନୁମାନ କରାଯାଏ ଯେ ଲୋକ ସାହିତ୍ୟରେ ବିଛୁରିତ ଶୃଙ୍ଗାର ଓ ପ୍ରେମ (ଭାବ) ପ୍ରାକୃତ କବିତାରେ ଉଜ୍ଜୀବିତ ରହି ପରବର୍ତ୍ତୀ କାଳରେ ସଂସ୍କୃତ ଦରବାରୀ କାବ୍ୟରେ ପ୍ରବେଶ ଲାଭ କରି ଶେଷରେ ସମଗ୍ର ସଂସ୍କୃତ ସାହିତ୍ୟର ଏକ ସାର୍ବଜନୀନ ବିଷୟବସ୍ତୁ ହୋଇଛି (୪୮) । ଗତାନୁଗତିକ କୃତ୍ରିମ ଛନ୍ଦ ଓ ଭାଷାରେ ଗାଥାଗୁଡ଼ିକ ରଚିତ ହେଲେ ମଧ୍ୟ ସମାଜର ବିଭିନ୍ନ ଶ୍ରେଣୀର (ବିଶେଷତଃ ପାଳକ ବା କୃଷକ, ଶିଳ୍ପୀ, ବଣିକ ଇତ୍ୟାଦି) ଲୋକମାନଙ୍କର ବାସ୍ତବ ପ୍ରେମାନୁଭୂତି ଓ ଶୃଙ୍ଗାରର ଚିତ୍ର ମିଳେ । ଏଥିରେ ପ୍ରଥମ ଥର ପାଇଁ ଆମେ ପ୍ରେମର ବୈଚିତ୍ର୍ୟମୟୀ ରୂପର ମୁକ୍ତ, ସରଳ, ଅନ୍ତରଙ୍ଗ ଅଥଚ ଚମତ୍କାର ଅଭିବ୍ୟକ୍ତି ଲକ୍ଷ୍ୟ କରୁ ।

**ଭର୍ତ୍ତୃହରିଙ୍କର ଶୃଙ୍ଗାର ଶତକ :**

ଅମରୁଙ୍କର ପ୍ରେମ ଶତକରେ ଆମେ ଯେଉଁ ଧାରା ଦେଖୁ, ପରବର୍ତ୍ତୀ ପ୍ରେମ ଶତକ-ମାନଙ୍କରେ ଅଳ୍ପ ବହୁତେ ସେହି ଧାରା ଦେଖିବାକୁ ମିଳେ । ତନ୍ମଧ୍ୟରୁ ଭର୍ତ୍ତୃହରିଙ୍କର 'ଶୃଙ୍ଗାର ଶତକ' ପ୍ରାଚୀନତା, ସାହିତ୍ୟିକ ଚମତ୍କାରିତା ଏବଂ କବିଙ୍କର ରହସ୍ୟାଚ୍ଛନ୍ନ ବ୍ୟକ୍ତିତ୍ୱ ହେତୁ ପୃଥକ୍ ବାରି ହୋଇଯାଏ । ଅମରୁଙ୍କର ଶତକ ପରି ଭର୍ତ୍ତୃହରିଙ୍କର କ୍ଷୁଦ୍ର ଶ୍ଲୋକ ଗୁଡ଼ିକରେ ଶତ ଶତ ଉଜ୍ଜ୍ୱଳ ସ୍ମୃତି, ଆଶା, ପ୍ରବହମାନ ଚିନ୍ତା, ତରଙ୍ଗିତ ଅନୁଭୂତି, କୋମଳତା ଓ ଗମ୍ଭୀର ଦୁଃଖର ଛବି ମିଳେ । ତାଙ୍କର କଳ୍ପନା ସେଗୁଡ଼ିକୁ ରଙ୍ଗ, ଜୀବନ ଓ ସୌନ୍ଦର୍ଯ୍ୟ ମଣ୍ଡିତ କରିଛି । ପ୍ରକାଶର ଗମ୍ଭୀରତା, ପ୍ରସାର ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଭର୍ତ୍ତୃହରିଙ୍କର ରଚନା ଅମରୁଙ୍କ ଠାରୁ ନୂତନତର । ବାସ୍ତବ ଭାବାବେଗ, ଯଥାର୍ଥ ଅଭିବ୍ୟକ୍ତି ସେଗୁଡ଼ିକୁ ଏକ ବିଶେଷ ସୌନ୍ଦର୍ଯ୍ୟ ଦାନ କରିଛି ।

**ମୟୂରାଷ୍ଟକ :**

ଭର୍ତ୍ତୃହରିଙ୍କ ପରେ ମୟୂର କବିଙ୍କର 'ମୟୂରାଷ୍ଟକ' ଅତିମାତ୍ର ଶୃଙ୍ଗାରାତ୍ମକ ଭାବର ଆଠଟି ଶ୍ଲୋକ । ଏଥିରେ ଗୋପନ ମିଳନରୁ ପ୍ରତ୍ୟାବର୍ତ୍ତନ କରିଥିବା ଗୋଟିଏ ସୁନ୍ଦରୀ ଯୁବତୀର ଅଙ୍ଗଶୋଭା କବି ଗତାନୁଗତିକ ଆଳଙ୍କାରିକ ରୀତିରେ ବର୍ଣ୍ଣନା କରିଛନ୍ତି ।

**ପ୍ରାଥମିକ ଓ ପରବର୍ତ୍ତୀ ପ୍ରେମତତ୍ତ୍ୱର ବୈଶିଷ୍ଟ୍ୟ :**

ଏ ପର୍ଯ୍ୟନ୍ତ ସଂସ୍କୃତରେ (କାବ୍ୟ, ନାଟକ ଓ ଶତକ ପ୍ରଭୃତିରେ) ପ୍ରେମର ଯେଉଁ ଚିତ୍ର ପାଉ, କେବଳ ବ୍ୟାପକତା ଓ ଆଦର୍ଶ ଦୃଷ୍ଟିରୁ ନୁହେଁ, ବାସ୍ତବ ଓ ବୈଚିତ୍ର୍ୟ ଦୃଷ୍ଟିରୁ ତା'ର କଳ୍ପନା କରାଯାଇଛି । ପ୍ରତ୍ୟକ୍ଷ ଆବେଦନ ଥାଇ ବାସ୍ତବ ରୂପରେ ଏକ ନିର୍ଦ୍ଦିଷ୍ଟ ଭାବାବେଗ ବା ଅନୁଭୂତିର ଆଲେଖ୍ୟ ଏଥିରେ ମିଳେ । କବି ଦେହ ଓ ଆତ୍ମାକୁ ମିଳିତ ଭାବରେ ଗ୍ରହଣ କଲେ ମଧ୍ୟ ଭାବାବେଗର ପ୍ରୟୋଜନୀୟ ବାସ୍ତବତା ହେତୁ ଦେହ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ଏଠାରେ ପ୍ରେମ ଆତ୍ମ ନିଗ୍ରହ ଅପେକ୍ଷା ଆତ୍ମ-ପରିପୂର୍ତ୍ତିକୁ ବୁଝାଇଥାଏ । ଦେହ ଉପରେ ଗୁରୁତ୍ୱଦାନ କିଛି ଭିତ୍ତିହୀନ ବସ୍ତୁ ନୁହେଁ । ଦାନ୍ତେଙ୍କ

---

(୪୮) Ibid., P. 14

(Dante) ଦୃଷ୍ଟିରେ ବିଏଟ୍ରିସ୍‌ଙ୍କର ଦିବ୍ୟ ଦେହରେ ପରମ ବାସ୍ତବତା ପ୍ରତିବିମ୍ବିତ ହୋଇଥିଲା । ଏପରିକି ଇନ୍ଦ୍ରିୟ ଓ ମୃତ୍ତିକାର ସଂସ୍ପର୍ଶରୁ ସଂସ୍କୃତ କବିତାରେ ପ୍ରେମ ପୂର୍ଣ୍ଣ ଜୀବନ୍ତରୂପ ଧାରଣ କରିଥିଲା । କବିତାର ଆଙ୍ଗିକରେ କ୍ରମଶଃ କୃତ୍ରିମତା ଓ ରୁଚିରେ ଅଧଃପତନ ଦେଖାଯାଇଥିବାରୁ ପ୍ରାଚୀନ ଓ ପରବର୍ତ୍ତୀ ପ୍ରେମ କବିତା ମଧ୍ୟରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ପରବର୍ତ୍ତୀ ଭାରବି, ମାଘ, ଶ୍ରୀହର୍ଷ ଓ ସେମାନଙ୍କର ଅଗଣିତ ଅନୁପନ୍ଥୀ ଏପରିକି 'ଭାଣ' ରଚୟିତାମାନଙ୍କ ରଚନାରେ ପ୍ରେମ ଲୀଳାର ଯେପରି ବିସ୍ତୃତ ନଗ୍ନ ବର୍ଣ୍ଣନା ରହିଛି, ମାର୍ଜିତ ରୁଚି ଦୃଷ୍ଟିରୁ ତାହା ଏକାନ୍ତ ଅଶୋଭନୀୟ ଓ ଦୋଷଯୁକ୍ତ । ପ୍ରେମ ଚିତ୍ରର ଏହି ଇନ୍ଦ୍ରିୟାଭିମୁଖୀ ସ୍ଥୂଳତା ପଛରେ ଅବଶ୍ୟ ଦୀର୍ଘକାଳର କାବ୍ୟିକ ପରମ୍ପରା ରହିଛି (ଯେଉଁଥିରେ ନାରୀର ଅଙ୍ଗ ସୁଷମା ଏବଂ ପ୍ରେମ ସୁଖର ଉତ୍ତେଜକ ବର୍ଣ୍ଣନା ରହିଥାଏ) । ପରବର୍ତ୍ତୀ ପ୍ରେମ କବିତାରେ କବିମାନେ ନିଜ ନିଜର କାମଶାସ୍ତ୍ର ସମ୍ପର୍କୀୟ ଜ୍ଞାନର ଏକ ଆଟୋପ ପ୍ରଦର୍ଶନ କରିଛନ୍ତି ।

ସଂସ୍କୃତ ପ୍ରେମ କବିତାରେ ନାରୀ ସୌନ୍ଦର୍ଯ୍ୟର କାମୋଦ୍ଦୀପକ ବର୍ଣ୍ଣନା ଏବଂ ଭାବାବେଗ ରୂପରେ ପ୍ରେମର ବାସ୍ତବ ଦୃଷ୍ଟିଭଙ୍ଗୀ ଜନିତ ପ୍ରବଣତା ଭାରତୀୟ ଚିନ୍ତାଧାରା ଓ ନାରୀ ସୌନ୍ଦର୍ଯ୍ୟର ଆଦର୍ଶର ସଙ୍କେତ ବହନ କରେ । ବିସ୍ତୃତ ଭାବରେ ନାରୀର ପୂର୍ଣ୍ଣ ଦୈହିକ ସୌନ୍ଦର୍ଯ୍ୟର ବର୍ଣ୍ଣନା ସଂସ୍କୃତ କବିତାମାନଙ୍କରେ ରହିଛି; କିନ୍ତୁ ପରବର୍ତ୍ତୀ କବିତା-ମାନଙ୍କରେ ନାରୀ ସୌନ୍ଦର୍ଯ୍ୟର ଯୌନାବେଗପୂର୍ଣ୍ଣ ଆଡ଼ମ୍ବର, ଅଶ୍ଳୀଳତା ଓ ନଗ୍ନତାକୁ ସାହିତ୍ୟ ଶାସ୍ତ୍ରବିତ୍‌ମାନେ ନିନ୍ଦା କରିଥିଲେ ମଧ୍ୟ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ସେମାନେ ପାରମ୍ପରିକ ଶୈଳିକ ଅଶାଳୀନତାର ନିନ୍ଦା କରିନାହାନ୍ତି; ବରଂ ସେଥିରେ ଆଳଙ୍କାରିକ ତଥା ମନସ୍ତାତ୍ତ୍ୱିକ ପରିଚ୍ଛନ୍ନତା ପ୍ରଭାବ ବିସ୍ତାର କରିଛି ।

**ଚୌର ପଞ୍ଚାଶିକା :**

ପୂର୍ବ କଥିତ ଶୃଙ୍ଗାରଧର୍ମୀ ଭାଣ ଓ ବିହ୍ଲଣଙ୍କର 'ଚୌର ପଞ୍ଚାଶିକା'ରେ ଶୃଙ୍ଗାରାତ୍ମକ ପରିସ୍ଥିତିରେ ନାରୀ ସୌନ୍ଦର୍ଯ୍ୟର କାମୋଦ୍ଦୀପକ ବର୍ଣ୍ଣନା ରହିଛି । 'ଚୌର ପଞ୍ଚାଶିକା'ରେ ଗୁପ୍ତ ପ୍ରେମ ସମ୍ପର୍କରେ ପଚାଶଟି ଗୀତିଧର୍ମୀ ଶ୍ଳୋକ ରହିଛି । ଏଥିରେ ଗତାନୁଗତିକ ଭାବଧାରା, ଚିତ୍ରକଳ୍ପ (imagery) ଓ ପରିସ୍ଥିତି ସତ୍ତ୍ୱେ ବସନ୍ତ ତିଳକ ଛନ୍ଦରେ ଶ୍ଳୋକ ଗୁଡ଼ିକର ସରଳତା, ପ୍ରବହମାନତା (ଗତି), ପ୍ରକାଶର ପ୍ରାଞ୍ଜଳତା, ଅତୀତ ପ୍ରେମାନୁଭୂତିର ରସୋତ୍ତୀର୍ଣ୍ଣ ବର୍ଣ୍ଣନା ହେତୁ ରଚନାଟି ସଂସ୍କୃତ ସାହିତ୍ୟରେ ଅନନ୍ୟ ହୋଇ ପଡ଼ିଛି । କୃଷ୍ଣଙ୍କର 'ତାରା ଶଶାଙ୍କ'ର କେତୋଟି ଶ୍ଳୋକରେ ଆମେ ଚୌର ପଞ୍ଚାଶିକାର ପ୍ରଭାବ ଲକ୍ଷ୍ୟ କରୁ ।

ପରବର୍ତ୍ତୀ ବହୁ କବିଙ୍କ ରଚନାରେ ଶତକର ପରମ୍ପରା ଦେଖାଯାଏ, ଯଥା ଉତ୍ପ୍ରେକ୍ଷା ବଲ୍ଲଭ ତାଙ୍କର 'ସୁନ୍ଦରୀ ଶତକ'ରେ ଆର୍ଯ୍ୟାଛନ୍ଦରେ ଅତି କୃତ୍ରିମ ଭଙ୍ଗୀରେ ନାରୀ ସୌନ୍ଦର୍ଯ୍ୟର ପ୍ରଶଂସା ଗାନ କରିଛନ୍ତି । ବହୁ ଶୃଙ୍ଗାର ଶତକ ଅପ୍ରକାଶିତ ରହିଛି, କିନ୍ତୁ ପ୍ରକାଶିତ ଶୃଙ୍ଗାର ଶତକମାନଙ୍କ ମଧ୍ୟରେ କାମରାଜ ଦୀକ୍ଷିତଙ୍କର 'ଶୃଙ୍ଗାର କଳିକାତ୍ରିଶତୀ'

ଉଲ୍ଲେଖ ଯୋଗ୍ୟ । ରାମଚନ୍ଦ୍ର 'ରସିକ ରଞ୍ଜନ' ଓ ଜୈନ ସୋମ ପ୍ରଭ 'ଶୃଙ୍ଗାର ବୈରାଗ୍ୟ ତରଙ୍ଗିଣୀ' ରଚନା କରିଛନ୍ତି (୪୯) ।

**ଆର୍ଯ୍ୟା ସପ୍ତଶତୀ ଓ ଅନ୍ୟ ରଚନା :**

ଜୟଦେବଙ୍କର ସମସାମୟିକ ବଙ୍ଗଳାର ରାଜା ଲକ୍ଷ୍ମଣସେନଙ୍କର ଦରବାରର କବି ଗୋବର୍ଦ୍ଧନ ହାଲଙ୍କର 'ଗାହା ସତ୍ତସଈ' ଆଦର୍ଶରେ 'ଆର୍ଯ୍ୟା ସପ୍ତଶତୀ' ପ୍ରଣୟନ କରିଥିଲେ । ଏହାର ପରସ୍ପର ବିଚ୍ଛିନ୍ନ ସାତଶହଟି ଶ୍ଳୋକ ମୁଖ୍ୟତଃ ଶୃଙ୍ଗାର ପ୍ରଧାନ ଏବଂ ଶ୍ଳୋକ ଗୁଡ଼ିକ ବିଳମ୍ବିତ ସଂସ୍କୃତ 'ଆର୍ଯ୍ୟା' ଛନ୍ଦରେ ରଚିତ ହୋଇଛି । ଏ ଗୁଡ଼ିକରେ କବିତ୍ୱ ଅପେକ୍ଷା କାରୁକୌଶଳ ଅଧିକ ପରିଦୃଷ୍ଟ ହୁଏ । ଏଥିରେ 'ଗାହା ସତ୍ତସଈ'ର ସ୍ୱାଦ, ବାଗ୍ ବୈଦଗ୍ଧ ଓ ଉଲ୍ଲାସ ଲକ୍ଷିତ ହୁଏ ନା, କିନ୍ତୁ ଏହାର ଆଦର୍ଶରେ ରଚିତ ହୋଇଥିବା ବିହାରୀଲାଲଙ୍କର ହିନ୍ଦୀ ସତ୍ତସଈ ହିନ୍ଦୀ ସାହିତ୍ୟରେ ଉଚ୍ଚ ଆସନ ଅଧିକାର କରିଛି । ତେଲେଙ୍ଗା କବି ତଥା ଆଲଙ୍କାରିକ ଜଗନ୍ନାଥ ପଣ୍ଡିତଙ୍କର ସୁଲିଖିତ 'ଭାମିନୀ ବିଳାସ' ଅନ୍ୟୋକ୍ତି, ଶୃଙ୍ଗାର, କରୁଣ ଓ ଶାନ୍ତ ଏହି ଚାରିଭାଗରେ ବିଭକ୍ତ ହେଲେ ମଧ୍ୟ ପ୍ରେମ ଓ ଉପଦେଶ ଦିଗରେ ଏହାର ପ୍ରବଣତା ରହିଛି । ଅନୁଭୂତିର ଗଭୀରତା ଓ କଳ୍ପନାକୁଶଳତାର ଅଭାବ ଥିଲେ ମଧ୍ୟ ବହୁ ଶ୍ଳୋକର ପ୍ରାଞ୍ଜଳତା, ପ୍ରକାଶର ସ୍ୱଚ୍ଛନ୍ଦତା ଓ ଛବିଳ କଳ୍ପନା ସ୍ୱତନ୍ତ୍ର ବାର ହୋଇଯାଏ (୫୦) । ପ୍ରାୟ ଅଧିକାଂଶ ସଂସ୍କୃତ କବିଙ୍କ ରଚନା ଓ 'ପ୍ରେମ ଶତକ' ଗୁଡ଼ିକରେ ନାରୀର ଦୈହିକ ସୁଷମାର କାମୋଦ୍ଦୀପକ ବର୍ଣ୍ଣନା ଅଧିକ ପରିଲକ୍ଷିତ ହୁଏ । କିନ୍ତୁ ଭବଭୂତି ଦୈହିକ ସୌନ୍ଦର୍ଯ୍ୟର ଊର୍ଦ୍ଧ୍ୱରେ ଆତ୍ମିକ ସୌନ୍ଦର୍ଯ୍ୟର ଉତ୍କର୍ଷ ବର୍ଣ୍ଣନା କରିଛନ୍ତି ।

କାଳିଦାସଙ୍କର ବିଖ୍ୟାତ 'ମେଘଦୂତ'ର ଅନୁକରଣରେ, ପ୍ରେମ, ଶୃଙ୍ଗାର ଓ ଅନ୍ୟଭାବକୁ ମୂଳ କରି ବହୁ ଦୂତ କାବ୍ୟ (୫୧) ରଚିତ ହୋଇଛି । ଅଚେତନ ବସ୍ତୁ, ପଶୁପକ୍ଷୀ ଓ ପୌରାଣିକ ଚରିତ୍ର (ଉଦ୍ଧବ, ହନୁମାନ) ମାନଙ୍କୁ କାଳ୍ପନିକ ଯାହାର ଦୂତ ଭାବରେ କଳ୍ପନା କରାଯାଇଛି । ଏ ଗୁଡ଼ିକରେ କାଳିଦାସଙ୍କର କାବ୍ୟିକ ପ୍ରେରଣା କ୍ୱଚିତ୍ ଉପଲବ୍ଧ ହୁଏ । ଜୈନ ଓ ବୈଷ୍ଣବ କବିମାନେ ଏହି ଦୂତ କାବ୍ୟକୁ ଧାର୍ମିକ ଉପଦେଶ, ଚିନ୍ତା ଓ ପ୍ରଚାରର ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି ।

---

(୪୯) S. N. Dasgupta and S. K. De, A History of Sanskrit Literature, 2nd edn, University of Calcutta, 1962, P. 370

(୫୦) Ibid, PP. 371-372

(୫୧) ହଂସଦୂତ, ଚନ୍ଦ୍ର ଦୂତ, ପିକ ଦୂତ, ପବନ ଦୂତ, ପଦାଙ୍କ ଦୂତ, ତୁଳସୀ ଦୂତ, ପାନ୍ଥ ଦୂତ, କପି ଦୂତ, ଭ୍ରମର ଦୂତ, କାକ ଦୂତ, ଉଦ୍ଧବ ସନ୍ଦେଶ, ହଂସ ସନ୍ଦେଶ, ମନୋଦୂତ, ଭକ୍ତି ଦୂତ ଇତ୍ୟାଦି । ପ୍ରାଦେଶିକ ସାହିତ୍ୟମାନଙ୍କରେ ଏହାର (ଦୂତକାବ୍ୟର) ବହୁଳ ପ୍ରଭାବ ଲକ୍ଷିତ ହୁଏ । ଓଡ଼ିଶାରେ 'କୋଇଲି' ରଚନା ଏହି କାବ୍ୟ ରୂପର ଏକ ପ୍ରକାଶ ।

ବର୍ତ୍ତମାନ ଅର୍ଥରେ ପ୍ରେମ କବିତା ବା ପ୍ରେମଗୀତି କହିଲେ ଯାହା ବୁଝୁ, ସେ ଅର୍ଥରେ ସେତେବେଳେ କୌଣସି ଧାରାବାହିକ ସୁପରିକଳ୍ପିତ ପ୍ରେମଗୀତି ବା ପ୍ରେମ କବିତା ମିଳୁନା । ସ୍ୱତନ୍ତ୍ର ଏକକ ବିଚ୍ଛିନ୍ନ ଶ୍ଳୋକ ଗୁଡ଼ିକରେ ଯେଉଁ ପ୍ରେମ କବିତାର ସନ୍ଧାନ ପାଉ ସେଥିରେ ଆମେ ପ୍ରେମର ସରଳତା ସ୍ଥାନରେ ତା'ର ସୌନ୍ଦର୍ଯ୍ୟ, ପ୍ରତ୍ୟକ୍ଷ ସମୁନ୍ନତି ସ୍ଥାନରେ କଳ୍ପନାର ଇନ୍ଦ୍ରଜାଲ ଦେଖୁ । ଅନେକ ସମୟରେ ଏ ଗୁଡ଼ିକର ପ୍ରକୃତି ଓ ପ୍ରାକୃତିକ ଅନୁଭୂତି ଜନିତ ପୃଷ୍ଠଭୂମି ଥିଲେ ମଧ୍ୟ ଶବ୍ଦ ଓ ଭାବର ସୌନ୍ଦର୍ଯ୍ୟରେ ସେ ଗୁଡ଼ିକ ରୋମାଣ୍ଟିକ୍ ରୂପ ଧାରଣ କରିଥାନ୍ତି, କିନ୍ତୁ ପ୍ରାଣକୁ ସ୍ପନ୍ଦିତ କଲା ଭଳି ସୌନ୍ଦର୍ଯ୍ୟ ସେଥିରେ ନ ଥାଏ ।

ପରବର୍ତ୍ତୀ ପ୍ରେମ କବିତାରେ ତାତ୍ତ୍ୱିକ ଓ ମନସ୍ତାତ୍ତ୍ୱିକ ମାର୍ଜନା ପ୍ରଭାବ ବିସ୍ତାର କରିଛି । ଏପରିକି କ୍ଷୁଦ୍ର କ୍ଷୁଦ୍ର ଚିତ୍ର ଗୁଡ଼ିକରେ ଅନୁଭୂତିର ସୌନ୍ଦର୍ଯ୍ୟ ଓ ସ୍ପର୍ଶକାତରତା ଥିଲେ ମଧ୍ୟ ଭାବର ବାସ୍ତବତା ଓ ସମୃଦ୍ଧି ଗତାନୁଗତିକ ସାହିତ୍ୟିକ ପ୍ରଭାବ ହେତୁ ପ୍ରଚ୍ଛାଦିତ ହୋଇ ଯାଇଛି । ପ୍ରେମ କବିତା କୃତ୍ରିମତାରୁ ରକ୍ଷା ପାଇନାହିଁ । ଏକ ପ୍ରକାର ଭାବନା ଓ ଏକ ପ୍ରକାର ପରିବେଷଣ ହେତୁ ପ୍ରେମ କବିତା ସ୍ୱାତନ୍ତ୍ର୍ୟହୀନ ଓ କ୍ଳାନ୍ତିକର ହୋଇ ପଡ଼ିଛି ।

**ପ୍ରେମ କବିତାରେ ମାର୍ଜିତ କୃତ୍ରିମତା :**

ଶୈଳିକ ବିଶ୍ଳେଷଣ ଏବଂ କାମଶାସ୍ତ୍ର ଓ ସାହିତ୍ୟ ଶାସ୍ତ୍ରର ପଣ୍ଡିତମାନଙ୍କ ହେତୁ ପ୍ରେମର ପଦ୍ଧତି, ତା'ର ବିଭିନ୍ନ ପ୍ରଭାବ ଓ ତଥାକଥିତ ଏକ କାବ୍ୟିକ ରୀତିର ପ୍ରତିଷ୍ଠା ହୋଇଥିଲା (ଯା'ର ଧାରାବାହିକ କାବ୍ୟିକ ଭାଷା, ଉପମା ଓ ଆଭିଜାତ୍ୟ ରହିଛି) । ନାୟକ ନାୟିକାଙ୍କର ଅଗଣିତ ପ୍ରକାର ଭେଦ, ସେମାନଙ୍କର ସହାୟକ ଓ ସହାୟିକା, ଅନୁଭୂତି ଓ ଭଙ୍ଗୀବୈଚିତ୍ର୍ୟ, ସେମାନଙ୍କର ଦୈହିକ ଓ ମାନସିକ ସୌନ୍ଦର୍ଯ୍ୟ, ବିଭିନ୍ନ ମାନସିକ ଅବସ୍ଥା ଓ ପରିସ୍ଥିତି, ବିସ୍ତୃତ ବିଭାବ ସହ ପ୍ରେମର ସଂଜ୍ଞା, ବିଶ୍ଳେଷଣ ଓ ବିଭାଗୀକରଣ ହୋଇଛି ସତ; କିନ୍ତୁ ସେଥିରେ ଗତାନୁଗତିକତା ଓ ପାଣ୍ଡିତ୍ୟମନ୍ୟତା ଅଧିକ ପରିସ୍ଫୁଟ ହୋଇଛି । ପ୍ରେମ କବିତାର ଯେଉଁ ଭାବ ଓ ଶୈଳିକ ସୂତ୍ର ଗୁଡ଼ିକ ବ୍ୟବସ୍ଥିତ ହୁଏ, ତାହା ଅପରିବର୍ତ୍ତିତ କୌଶଳ ହୋଇ ରହିଯାଏ; ଫଳରେ ଭାବ ଓ ଅଭିବ୍ୟକ୍ତିରେ (ପ୍ରେମ କବିତାର) ଏକ ମାର୍ଜିତ କୃତ୍ରିମତାର ସୂତ୍ରପାତ ହୋଇଯାଇଛି । କିନ୍ତୁ ନିର୍ଦ୍ଦିଷ୍ଟ ନିୟମ ଓ ଅପରିବର୍ତ୍ତିତ କବି ସମୟ ପ୍ରସିଦ୍ଧି ସତ୍ତ୍ୱେ କବିମାନେ ସେମାନଙ୍କର ସୀମିତ ଓ ଗତାନୁଗତିକ ଉପାଦାନରୁ ମଧ୍ୟ ସୁନ୍ଦର କାବ୍ୟିକ ଆଲେଖ୍ୟ ସୃଷ୍ଟି କରି ପାରିଛନ୍ତି ।

ମହାକାବ୍ୟର ପ୍ରେମଚିତ୍ର ଯେପରି ଉତ୍କର୍ଷତାହୀନ, ସେହିପରି କ୍ଳାନ୍ତିକର; ବରଂ ସଂଗ୍ରହ ଗ୍ରନ୍ଥ (ପରସ୍ପର ଅସମ୍ପୃକ୍ତ ଶ୍ଳୋକ ଗୁଡ଼ିକର) ମାନଙ୍କରେ ଆମେ ସ୍ୱଳ୍ପ ହେଲେ ମଧ୍ୟ ସୌନ୍ଦର୍ଯ୍ୟର ଆନନ୍ଦପୂର୍ଣ୍ଣ ମୁହୂର୍ତ୍ତ ଖୋଜି ପାଇଛୁ । ସେଗୁଡ଼ିକ ତୁଚ୍ଛ ବିଷୟ ହେଲେ ମଧ୍ୟ ବେଶ ରୁଚିକର ଏବଂ ଛନ୍ଦ, ପଦ, ଧ୍ୱନି ଓ ଅର୍ଥର ରୁଚିକର ସ୍ପର୍ଶ ହେତୁ କାବ୍ୟ ସମୃଦ୍ଧିଶାଳୀ ହୋଇଛି ।

**ପ୍ରେମ କବିତା ଓ ପ୍ରକୃତି :**

ପ୍ରେମ କବିତା ' ଗୁଡ଼ିକରେ ପ୍ରାକୃତିକ ଦୃଶ୍ୟ ସମ୍ପର୍କରେ ଚମତ୍କାର ଭାବ ପ୍ରତିବିମ୍ବିତ ହୋଇଛି । ଏଥିପାଇଁ ସେଗୁଡ଼ିକର (ପ୍ରେମ କବିତା ଗୁଡ଼ିକର) କୃତ୍ରିମତା ଜନିତ ଅସ୍ୱସ୍ତି କେତେକ ପରିମାଣରେ ଅନୁଭୂତ ହୁଏନା । ମାନବିକ ଭାବାବେଗର ଅଭିବ୍ୟକ୍ତି ପାଇଁ ପ୍ରକୃତିର ଉପାଦାନ ଗୁଡ଼ିକ ବଡ଼ କୁଶଳତାର ସହିତ ସଂଗ୍ରଥିତ ହୋଇଛି । ମନୁଷ୍ୟ-ମାନଙ୍କର ଦୈନନ୍ଦିନ କ୍ରିୟାକଳାପରେ ଗ୍ରୀଷ୍ମମଣ୍ଡଳୀୟ ଗ୍ରୀଷ୍ମ ଓ ବର୍ଷାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବର୍ଷାଋତୁର ଆରମ୍ଭରେ ଦୂରଦେଶଗାମୀ ପଥିକ ଦୀର୍ଘକାଳର ଅନୁପସ୍ଥିତି ପରେ ପ୍ରାଣରେ କେତେ ଆଶା ଓ ଆବେଗର ତରଙ୍ଗ ତୋଳି ଗୃହକୁ ପ୍ରତ୍ୟାବର୍ତ୍ତନ କରେ ଏବଂ ପ୍ରତୀକ୍ଷମାଣା ଯୁବତୀ ସ୍ତ୍ରୀ କୋମଳ କରରେ ତାଂର ଘନକୃଷ୍ଣ ଚିକୁର ଦାମର ଅଗ୍ରଭାଗ ଉତ୍ତୋଳନ କରି ଉତ୍କଣ୍ଠାର ସହିତ ପ୍ରାବୃଟ-ଆକାଶର ଘନକୃଷ୍ଣ ବାରିଦମାଳାକୁ ଚାହିଁ ରହିଥାଏ । ଗ୍ରୀଷ୍ମକାଳରେ ଯେଉଁ ଯୁବତୀ ତୃଷାର୍ତ୍ତ ପଥିକମାନଙ୍କୁ ପଥପାର୍ଶ୍ୱର ଜଳସତ୍ର ମାନଙ୍କରେ ଜଳଦାନ କରେ, ସେହି ଜଳଦାନ କାରିଣୀ ଯୁବତୀକୁ (ପ୍ରପାପାଳିକା) କେନ୍ଦ୍ର କରି ବହୁ ପ୍ରେମ ଶ୍ଳୋକ ରଚିତ ହୋଇଛି (ହାଳ ଓ ଅନ୍ୟ-ମାନଙ୍କର ସଂଗ୍ରହ ଗ୍ରନ୍ଥରେ ଯେଉଁ ଗୁଡ଼ିକ ବିକ୍ଷିପ୍ତ ଭାବରେ ରହିଛି) । ବସନ୍ତର ଆମ୍ର ମଞ୍ଜରୀ, ମଳୟ, ଶରତ୍ତର ମଧୁମୟୀ ଜ୍ୟୋତ୍ସ୍ନା, କୁସୁମ ସମ୍ଭାର ଓ ଭ୍ରମରର ମଧୁ ଗୁଞ୍ଜନ ବହୁ କବିତାରେ ରସୋତ୍ତୀର୍ଣ୍ଣ ଭାବରେ ଅଙ୍କିତ ହୋଇଛି । ସଂସ୍କୃତ ପ୍ରେମ କବିତାର ଅଧିକାଂଶ ଉପମା ଓ ରୂପକ ପରିଚିତ ଦୃଶ୍ୟ ଓ ପାରିପାର୍ଶ୍ୱିକ ପ୍ରକୃତିରୁ ଗ୍ରହଣ କରା-ଯାଇଛି । ପ୍ରେମିକ ପକ୍ଷରେ ଛ'ଟି ଋତୁର ଅର୍ଥ କାଳିଦାସ (?) ସୁନ୍ଦର ଭାବରେ ତାଙ୍କର 'ଋତୁ ସଂହାର' କାବ୍ୟରେ ବ୍ୟାଖ୍ୟା କରିଛନ୍ତି । ସେ ତାଙ୍କର ଅମର କୃତି 'ମେଘଦୂତ'ରେ ପ୍ରକୃତିକୁ ମାନବିକ ଭାବାବେଗର ପୃଷ୍ଠଭୂମି ରୂପେ ଚମତ୍କାର ଭାବରେ ଚିତ୍ରଣ କରିଛନ୍ତି । ପୂର୍ବ ମେଘରେ କବି ମାନବିକ ଭାବାବେଗ ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରି ବାହ୍ୟ ପ୍ରକୃତିର ବର୍ଣ୍ଣନା କରିଛନ୍ତି । ଉତ୍ତର ମେଘରେ ବିରହୀ ପ୍ରେମିକ ଯକ୍ଷର ବିରହ ବ୍ୟଥା-କ୍ଲିଷ୍ଟ ହୃଦୟ ପାରିପାର୍ଶ୍ୱିକ ପ୍ରାକୃତିକ ସୌନ୍ଦର୍ଯ୍ୟର ପୃଷ୍ଠଭୂମିରେ ଚମତ୍କାର ଭାବରେ ଚର୍ଚ୍ଚିତ ହୋଇଛି । ପ୍ରକୃତିର କୁଞ୍ଜ ଓ ବାଟିକାର ପୃଷ୍ଠଭୂମିରେ ସଂସ୍କୃତ ନାଟକର ସୁନ୍ଦର କଳ୍ପନା ପ୍ରୋଜ୍ଜ୍ୱଳ ପ୍ରେମ-ଷଡ଼ଯନ୍ତ୍ରର ଚିତ୍ରଣ କରାଯାଇଛି ଏବଂ କଣ୍ୱଙ୍କର ତପୋବନ ଓ ଦଣ୍ଡକାକୁ ମାନବିକ ନାଟକାଭିନୟର ରଙ୍ଗସ୍ଥଳୀ ରୂପେ କଳ୍ପନା କରାଯାଇଛି । ସେହିପରି ପ୍ରାବୃଟ ଦିନର ଘନଘଟାଚ୍ଛନ୍ନ ଯମୁନା ତଟକୁ ରାଧାକୃଷ୍ଣଙ୍କର ପ୍ରେମର ପୃଷ୍ଠଭୂମି କରାଯାଇଛି ।

ସଂସ୍କୃତର ସର୍ବଶେଷ ଶୈଳ୍ପିକ ସିଦ୍ଧି ସମ୍ପନ୍ନ କବି ଜୟଦେବଙ୍କର 'ଗୀତଗୋବିନ୍ଦ' ଏଠାରେ ଉଲ୍ଲେଖଯୋଗ୍ୟ । ଆଙ୍ଗିକ ଓ ଆତ୍ମିକ ଉଭୟ ଦିଗରୁ ସଂସ୍କୃତ ପ୍ରେମକାବ୍ୟ ଜୟଦେବଙ୍କ ହସ୍ତରେ ଚୂଡ଼ାନ୍ତ ସିଦ୍ଧି ଲାଭ କରିଛି । ବିଷୟବସ୍ତୁରେ ବୈଚିତ୍ର୍ୟ ନଥିଲେ ମଧ୍ୟ କାନ୍ତକୋମଳ ପଦାବଳୀ, ଅପାର ସାଙ୍ଗୀତିକ ମାଧୁର୍ଯ୍ୟ, ମଞ୍ଜୁଳ ଭାବ ତଥା ରସ ସମ୍ପଦ

ହେତୁ ଏହା ଭାରତୀୟ ଗୀତ ତଥା ସଙ୍ଗୀତ ସାହିତ୍ୟରେ ଶୀର୍ଷସ୍ଥାନ ଅଧିକାର କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ବହୁ ଶତାବ୍ଦୀ ଧରି ପ୍ରେମଗୀତ, କାବ୍ୟ, ସଙ୍ଗୀତ ଓ ଗୀତନାଟ୍ୟ ଗୁଡ଼ିକୁ ପ୍ରଭାବିତ କରି ଆସିଛି ଏବଂ ବହୁ ଅନୁକୃତିର ନିୟାମକ ହୋଇଛି । ଏହାର ଶ୍ଳୋକ ଓ ମଧୁର ପଦାବଳୀରେ ପ୍ରେମର ସମସ୍ତ ଅନୁଭୂତି ଓ ପରିବେଶ ରତି ସ୍ଥାୟୀଭାବର ଉଦ୍ରେକ ମୁହୂର୍ତ୍ତରୁ ଶୃଙ୍ଗାରର ପରିପୂର୍ଣ୍ଣ ପ୍ରକାଶ ପର୍ଯ୍ୟନ୍ତ ଚିତ୍ରିତ ହୋଇଛି ଏବଂ ପ୍ରକୃତିର ମନୋଜ୍ଞ ପରିବେଶରେ ଏହା ସଂଘଟିତ ହୋଇଥିବାରୁ ଏହାର ସମଗ୍ର ପ୍ରଭାବ ଚମତ୍କାର ହୋଇ ଉଠିଛି ।

ଜୟଦେବଙ୍କର 'ଗୀତଗୋବିନ୍ଦ' ଓ ତାଙ୍କ ପୂର୍ବବର୍ତ୍ତୀ ଲୀଳାଶୁକଙ୍କର କୃଷ୍ଣକର୍ଣ୍ଣାମୃତମ୍‌ରେ ଭକ୍ତି ସହିତ ପ୍ରେମ ଓ ଶୃଙ୍ଗାରର ଯେଉଁ ଚିତ୍ର ପାଉଁ ଏବଂ ଶ୍ଳୋକ, ଗୀତକାବ୍ୟ ଓ ପଦାବଳୀର ଏହି ପରମ୍ପରା ଯେପରି ପରବର୍ତ୍ତୀ ବହୁ ଶତାବ୍ଦୀ ଧରି ଚୈତନ୍ୟଙ୍କ ପ୍ରବର୍ତ୍ତିତ ନବବୈଷ୍ଣବ ଧାରାକୁ ପ୍ରଭାବିତ କରି ଆସିଛି, ଏହା ସଂସ୍କୃତ ଓ ପ୍ରାଦେଶିକ ସାହିତ୍ୟମାନଙ୍କରେ ଆକସ୍ମିକ ନୁହେଁ; ବରଂ ଏହା ପୂର୍ବବର୍ତ୍ତୀ ବହୁ ଶତକ ଧରି ସଂସ୍କୃତ, ପ୍ରାକୃତ ଓ ସାମ୍ପ୍ରଦାୟିକ ସାହିତ୍ୟରେ (ବୌଦ୍ଧ, ଜୈନ, ଶୈବ, ତନ୍ତ୍ର ଓ ଶାକ୍ତ) କ୍ରମଶଃ ଲକ୍ଷିତ ହେଉଥିବା ଧାରାର ଏକ ମୂର୍ତ୍ତି ପ୍ରକାଶ । ବୈଷ୍ଣବ ସାହିତ୍ୟରେ ରାଧାକୃଷ୍ଣ ପ୍ରେମର ଯେଉଁ ବର୍ଣ୍ଣନା ରହିଛି ଏବଂ ପ୍ରେମ ବର୍ଣ୍ଣନାର କଳାକୌଶଳ ପର୍ଯ୍ୟନ୍ତ ସବୁ ଆମେ ପରବର୍ତ୍ତୀ କାବ୍ୟ କବିତା ମଧ୍ୟରେ ପାଉଁ । ତେବେ ପାର୍ଥକ୍ୟ ହେଉଛି ଏତିକି ଯେ ପୂର୍ବବର୍ତ୍ତୀ କବିମାନେ ସମ୍ଭୋଗ ଉପରେ ପ୍ରାଧାନ୍ୟ ଦେଇଥିବାରୁ ପ୍ରେମକୁ ଅନେକ ସ୍ଥାନରେ ସ୍ଥୂଳ କରି ଦେଇଛନ୍ତି, କିନ୍ତୁ ବୈଷ୍ଣବ କବିମାନେ ବିରହକୁ ପ୍ରଧାନ କରି ପ୍ରେମକୁ ସୂକ୍ଷ୍ମ ଓ ଅତଳସ୍ପର୍ଶୀ କରିଛନ୍ତି (୫୨) ।

### କାମଚର୍ଯ୍ୟା ଓ ଭାରତୀୟ ଦୃଷ୍ଟିଭଙ୍ଗୀ :

ଭାରତରେ କାମର ସଂଯତ ଚର୍ଯ୍ୟାକୁ ଧର୍ମର ଅନ୍ତର୍ଭୁକ୍ତ କରାଯାଇଛି ଏବଂ ଏହା ଆମର କଳା ଓ ଭାବ ଦୃଷ୍ଟିକୁ ପ୍ରରୋଚିତ କରିଆସିଛି । ବାତ୍ସାୟନ ତାଙ୍କର କାମଶାସ୍ତ୍ରରେ ଏହାକୁ ମାନବର ସର୍ବଶ୍ରେଷ୍ଠ ଆଦର୍ଶ ଭାବରେ ଉପସ୍ଥାପନ କରିଛନ୍ତି ଏବଂ ଯୌନକ୍ରିୟା ମୂଳରେ ଥିବା ସମସ୍ତ ମୌଳିକ ମନସ୍ତାତ୍ତ୍ୱିକ ନିୟମ ଗୁଡ଼ିକ ବ୍ୟାଖ୍ୟା କରି ବୁଝାଇଛନ୍ତି । ଏହା ଦମ୍ପତିଙ୍କର ଦୈହିକ, ବୌଦ୍ଧିକ ଓ ଭାବଗତ ପୂର୍ଣ୍ଣ ତୃପ୍ତି ବ୍ୟତୀତ କିଛି ନୁହେଁ । କାମସେବା ମୂଳରେ ଭାରତୀୟ ମାନଙ୍କର ମାନବିକ ଦୃଷ୍ଟିଭଙ୍ଗୀ ହେଉଛି ଅବିସ୍ମରଣୀୟ (୫୩), ସେଥିପାଇଁ ସାହିତ୍ୟ, ସଙ୍ଗୀତ, ଶିଳ୍ପ, ସ୍ଥାପତ୍ୟ ଓ ଧର୍ମ ସର୍ବତ୍ର ମାନବର ଏହି ସନାତନ

---

(୫୨) ଡଃ ଶଶିଭୂଷଣ ଦାଶଗୁପ୍ତ, ଶ୍ରୀରାଧାର କ୍ରମବିକାଶ, ୩ୟ ସଂ., ୧୩୭୦, ପୃ. ୧୪୮

(୫୩) K. R. Pisharoti, "Sex-life in Ancient India—Some Thoughts", A. B. O. R. I., Silver Jubilee Volume, Vol. No. XXIII

ପ୍ରବୃତ୍ତିର ପରିପ୍ରକାଶ ଦେଖାଯାଏ । ବୈଦିକ ଓ ପ୍ରାଚୀନ ସଂସ୍କୃତ ସାହିତ୍ୟରେ ପ୍ରେମ ଓ ଶୃଙ୍ଗାରର ଚିତ୍ର କପରି ରହିଛି, ତା'ର ସୂଚନା ପୂର୍ବରୁ ଦିଆଯାଇଛି । ସାମ୍ପ୍ରଦାୟିକ ସାହିତ୍ୟରେ ଏହାର ପ୍ରବର୍ତ୍ତନ କେବଳ ମାନବିକ ଦୃଷ୍ଟିକୋଣରୁ ଘଟିଛି । ଧର୍ମ କଥାକୁ ଲୋକପ୍ରିୟ କରିବାପାଇଁ ଜୈନ କଥାକାରମାନେ ନିଜର ଧର୍ମ କଥାରେ ଶୃଙ୍ଗାର ରସପୂର୍ଣ୍ଣ ପ୍ରେମାଖ୍ୟାନ ସନ୍ନିବେଶ କରି ସେଗୁଡ଼ିକୁ ଲୋକୋପଯୋଗୀ କରିଥିଲେ (୫୪), କାରଣ ବେଦ ଓ ବ୍ରାହ୍ମଣକୁ ପ୍ରମୁଖତା ଦାନ କରୁଥିବା ବ୍ରାହ୍ମଣମାନଙ୍କର ଅତିରଞ୍ଜିତ କଳ୍ପନାପୂର୍ଣ୍ଣ ପୌରାଣିକ କାହାଣୀ ଲୋକ ସାଧାରଣଙ୍କ ପକ୍ଷରେ ଅତି ନୀରସ ଥିଲା । ଶ୍ରୋତାଙ୍କ ପକ୍ଷରେ ଏହା ଚିତ୍ତାକର୍ଷକ ହେଲା ଏବଂ ଶେଷକୁ ଏପରି ହେଲା ଯେ ଏମାନଙ୍କ ରଚନାରେ (କଥା ଓ ଚରିତ) ମଦନ ମହୋତ୍ସବର ବର୍ଣ୍ଣନା, ବସନ୍ତ କ୍ରୀଡ଼ା ଆଦିର ପ୍ରେମପୂର୍ଣ୍ଣ ଚିତ୍ର, ନାୟିକାର କାମପୀଡ଼ା, ଶୀତଳ ଉପଚାର ଓ ଗୁପ୍ତ ପ୍ରେମ ପତ୍ରିକା ଆଦିର ବର୍ଣ୍ଣନା ଉପସ୍ଥିତ ହେଲା (୫୫) ।

ହାଲଙ୍କର 'ଗାହା ସତ୍ତସଈ'ରେ ସମାଜର ସାଧାରଣ ଶ୍ରେଣୀର ନରନାରୀଙ୍କ ପ୍ରେମର ବାସ୍ତବ ରସୋତ୍ତୀର୍ଣ୍ଣ ଗାଥା ରହିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କର ରାଧା ଓ ଗୋପୀଙ୍କ ସହିତ ବ୍ରଜଲୀଳା ସମ୍ପର୍କରେ କେତୋଟି ଗାଥା ରହିଛି । ଗୋଟିଏ ଗାଥାରେ ରହିଛି—ନୃତ୍ୟ ପ୍ରଶଂସା ଛଳରେ ପାର୍ଶ୍ୱଗତା କୌଣସି ନିପୁଣା ଗୋପୀ ସଦୃଶ ଗୋପୀଗଣରେ କପୋଳ ପ୍ରତିମାଗତ କୃଷ୍ଣଙ୍କୁ ଚୁମ୍ବନ କରୁଛି (୫୬) । ଆଉ ଗୋଟିଏ ଗାଥାରେ ରାଧାକୃଷ୍ଣଙ୍କର ମଧୁର ପ୍ରଣୟର ସୁନ୍ଦର ସଙ୍କେତ ରହିଛି, ଯଥା—ହେ କୃଷ୍ଣ ! ତୁମେ ମୁଖମାରୁତ ଦ୍ୱାରା ରାଧିକାଙ୍କର ମୁହଁରେ ଲାଗିଥିବା ଗୋରଜ (ଧୂଳିକଣା) ଅପନୟନ କରି ଏହି ବଲ୍ଲବୀ (ଗୋପୀ) ଓ ଅନ୍ୟ

---

(୫୪) 'ବସୁଦେବ ହିଣ୍ଡୀ'ର ଜୈନ ଲେଖକ କହନ୍ତି : ଧର୍ମ କଥାଗୁଡ଼ିକ ପ୍ରେମ କଥା ସହିତ ଯଥୋଚିତ ଭାବରେ ମିଶ୍ରିତ ହେବା ଉଚିତ ।
ଡଃ ଜଗଦୀଶ ଚନ୍ଦ୍ର ଜୈନ, ପ୍ରାକୃତ ସାହିତ୍ୟକା ଇତିହାସ, ପୃ ୩୬୩

(୫୫) ଜୈନ କଥାକାର ଉଦ୍ୟୋତନ ସୂରିଙ୍କ ମତରେ 'କଥା' ଗୋଟିଏ ନବବିବାହିତା ସ୍ତ୍ରୀ ସଦୃଶ ହେବା ଉଚିତ—
ସାଲଂକାର ସୁହୟା ଲଳିତ ପୟା ମଉୟ ମଞ୍ଜୁଲ୍ଲାଞ୍ଚ ।
ସହୟାଣ ଦେଇ ହରିସଂ ଉବ୍ଵୁଢ଼ା ନବବହୂଚେବ ।
(ମୁନି ଜିନ ବିଜୟଜୀ, କୁବଲୟ ମାଳା)

Dr. K. M. Munshi, Gujrat and its literature, Bharatiya Vidya Bhavan, 1954.

(୫୬) ଣଚଣ-ସଲହଣ-ଣିହେଣ ପାସ-ପରି ସଂଠିଆ ଣିଉଣ-ଗୋବୀ ।
ସରସ-ଗୋବ ଆଣଂ ଚୁମ୍ବଇ କବୋଲ-ପଡ଼ିମା-ଗଅଂ କଣ୍ହଂ ॥
ଡଃ ରାଧା ଗୋବିନ୍ଦ ବସାକ, ସମ୍ପା : ଗା. ସ. ଶ., ୨।୧୪ ପୃ. ୪୬

ସବୁ ନାରୀଙ୍କର ଗୌରବ ହରଣ କରିଛ (୫୭) । 'ଗାହା ସତ୍ତସଈ'ରେ ଲୌକିକ ନାୟକ ନାୟିକାଙ୍କର ପ୍ରେମର ଯେଉଁ ବୈଚିତ୍ର୍ୟମୟ ଚିତ୍ର ଦିଆଯାଇଛି, ଭାରତ ତଥା ଉତ୍କଳର ବହୁ ବୈଷ୍ଣବ କବିଙ୍କ ପଦାବଳୀ ତଥା କାବ୍ୟରେ ତା'ର ଅଦ୍ଭୁତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏହି ସାମଞ୍ଜସ୍ୟ ଲକ୍ଷ୍ୟ କଲେ ମନେ ହେବ : ଭାରତୀୟ ପ୍ରାଚୀନ ପ୍ରେମ କବିତାର ପ୍ରାକୃତ ନାୟିକା ଚମତ୍କାର ଭାବରେ ରାଧା ରୂପରେ ରୂପାନ୍ତରିତ ହୋଇଛି, 'ଗାହା-ସତ୍ତସଈ'ରୁ କେତୋଟି ଦୃଷ୍ଟାନ୍ତ ଦିଆଯାଉଛି । ମନ୍ଦ ସ୍ନେହ ନାୟକକୁ ଉତ୍କଟ ସ୍ନେହା ନାୟିକା ପ୍ରତି ଅନୁରକ୍ତ କରାଇବାକୁ ଦୂତୀ କହୁଛି—

ଉଚ୍ଛା-ପଇଣ୍ଣ-ଣଅଣୁପ୍ପଲା ତୁମଂ ସା ପଡ଼ିଚ୍ଛଏ ଏନ୍ତଂ ।
ଦାରଣିହିଏହିଂ ଦୋହିଂବି ମଙ୍ଗଲକଲସେହିଂ ବଥଣେହିଂ । (ଗା. ସ. ଶ., ୨।୪୦)

ଅର୍ଥାତ୍ ରାଜପଥ ଦିଗରେ ନୟନପଦ୍ମ ବିସ୍ତାରିତ ରଖି (ସେ ରମଣୀ) ତାର କୁଚ ଦ୍ୱୟକୁ ମଙ୍ଗଳ କଳସ ଦୁଇଟି ପରି ଦ୍ୱାର ଦେଶରେ ନିହିତ କରି ତୁମ ଆଗମନର ପ୍ରତୀକ୍ଷା କରିଛି । ବିଦଗ୍ଧ ଚିନ୍ତାମଣିର ଯୁଗଳ ସ୍ୱପ୍ନ ଦର୍ଶନ ଛାନ୍ଦରେ (୩୦ ଛାନ୍ଦ) ଶ୍ରୀକୃଷ୍ଣ ଯେତେବେଳେ ତନ୍ଦ୍ରାବିଜଡ଼ିତା ରାଧାଙ୍କ ଊରୁ ଧରି ଆନ୍ଦୋଳିତ କରିଛନ୍ତି, ରାଧାଙ୍କର ନିଦ୍ରାଭଙ୍ଗ ଶୋଭାକୁ ଲକ୍ଷ୍ୟ କରି ଅଭିମନ୍ୟୁ ଲେଖିଛନ୍ତି—

ନିଦ୍ରାମୁଦ୍ରା ଗଲା ଭାଙ୍ଗି ଅଳସ ଭାଙ୍ଗିବା ଭଙ୍ଗୀ
କୁଚ ମଙ୍ଗଳ କଳସ ଦେଖାଇଲା କି? (ବି. ଚି., ୩୦।୩୮)

ଅନ୍ୟତ୍ର କାମୁକ ନାୟକ ନାୟିକା ପ୍ରତି ଚାଟୂକ୍ତି ପ୍ରୟୋଗ କରି କହୁଛି—

ତୁହ ମୁହ ସାରିଚ୍ଛଂ ଣ ଲହଇତ୍ତି ସଂପୁଣ୍ଣ-ମଣ୍ଡଲୋ ବିହିଣା ।
ଅଣ୍ଣମଅଂବ୍ୱ ଘଡ଼ଇଉଂ ପୁଣୋବି ଖଣ୍ଡିଜ୍ଜଇ ମିଅଙ୍କୋ । (ଗା. ସ. ଶ., ୩।୭)

ଅର୍ଥାତ୍ ଚନ୍ଦ୍ର ଅଦ୍ୟାପି ତୁମର ମୁଖ ସାଦୃଶ୍ୟ ଲାଭ କରି ପାରିଲା ନାହିଁ, ଏହି କାରଣରୁ ବିଧାତା ସଂପୂର୍ଣ୍ଣ ମଣ୍ଡଳ ଚନ୍ଦ୍ରକୁ ପୁନର୍ବାର ଅନ୍ୟପ୍ରକାରେ ନିର୍ମାଣ କରିବା ଅଭିପ୍ରାୟରେ ଏକ ଏକ କଳା କରି ତାକୁ ଖଣ୍ଡିତ କରୁଛି । ବିଦଗ୍ଧ ଚିନ୍ତାମଣିରେ ରାଧାଙ୍କ ମୁଖଶୋଭା ବର୍ଣ୍ଣନା ପ୍ରସଙ୍ଗରେ ଅଭିମନ୍ୟୁ ଲେଖିଛନ୍ତି—

ମୁଖ-ସାନ୍ଦ୍ରକୁ ପୂର୍ଣ୍ଣଚନ୍ଦ୍ର ନ ଘଟି ଘଟିଲା ଦେହି ଚିନ୍ତା ବହି ।
କପାଳ, ତୁଳ ଅଧିକରେ ନୋହିଲା ।
ଦଣ୍ଡ ଦେଲା ଗଣ୍ଡ ଖଣ୍ଡ ନିଭାଗକୁ ଦେଲା ଚିବୁକ ରଚିକଲା । (ବି. ଚି., ୪।୧୭)

ପୁଣି ଅନ୍ୟତ୍ର ଦୂତୀ ନାୟିକା-ଅନୁରକ୍ତ ନାୟକକୁ ତିରସ୍କାର କରି କହୁଛି—

ସଚ୍ଚଂ ଜାଣଇ ଦଟ୍ଠୁଂ ସରିସମ୍ମି ଜଣମ୍ମି ଜୁଜ୍ଜଇ ରାଓ ।
ମରଉଣ ତୁମଂ ଭଣିସ୍ସଂ ମରଣଂ ବି ସଲାହଣିଜ୍ଜଂସେ । (ଗା. ସ. ଶ, ୧।୧୨)

---

(୫୭) ମୁହ ମାରୁଏଣ ତଂ କହ୍ନ ଗୋରଅଂ ରାହିଆଏଁ ଅବଣେନ୍ତୋ ।
ଏତାଣଁ ବଲବୀଣଂ ଅଣ୍ଣାଣଁ ବି ଗୋରଅଂ ହରସି ।
(ଶ୍ରୀରାଧାର କ୍ରମବିକାଶ, ପୃ. ୧୨୪ରୁ ଉଦ୍ଧୃତ)

ଅର୍ଥାତ୍ (ଆମର ସଖୀ) ପ୍ରକୃତରେ ଦେଖି ଜାଣେ ଯେ ସଦ୍‌ଗୁଣ ଜନଠାରେ ଅନୁରାଗ ଉପଯୁକ୍ତ ଅଟେ । ସେ ମରିଯାଉ, ମୁଁ ତୁମକୁ (ତାର ଜୀବନ ପାଇଁ) କିଛି କହିବି ନାହିଁ, ମରଣହିଁ ତା'ର ଶ୍ଳାଘନୀୟ । ବିଦଗ୍‌ଧ ଚନ୍ଦ୍ରାମଣିରେ ବିଶାଖା ରାଧାଙ୍କ ପ୍ରେମତତ୍ତ୍ୱ ବୁଝାଇବା ପ୍ରସଙ୍ଗରେ କହୁଛି—

ସମାନ ବୁଦ୍ଧି ବୟଃ ଶୋଭା ଗୁଣ ।
ସ୍ୱଚ୍ଛ ଆରଦ୍ର ସ୍ୱଭାବ ଲକ୍ଷଣ ।
ରସ-ରତ୍ନ-ଚିହ୍ନା ଗ୍ରାହିକା ଶକ୍ତି ।
ଏତେ ଲକ୍ଷଣେ ଯୁକ୍ତ ହେଉଁ ବ୍ୟକ୍ତି ।
ସଂଯୋଗ ସମ୍ବନ୍ଧୁ ଗୋ ।
ହୃଦେ ଉଦେ ହୋଏ ପ୍ରଣୟ ବନ୍ଧୁ ( ବି. ଚ., ୩୧୪ )

'ଗାହା ସତ୍ତସଈ'କୁ ଛାଡ଼ିଦେଲେ ପ୍ରାକୃତ ପିଙ୍ଗଳ, ଧର୍ମ ନିରପେକ୍ଷ ଅପଭ୍ରଂଶ ସାହିତ୍ୟ, ଗାହା ସତ୍ତସଈ ପରି ସଂସ୍କୃତର ବହୁ ସଂଗ୍ରହ ଗ୍ରନ୍ଥରେ (କବୀନ୍ଦ୍ର ବଚନ ସମୁଚ୍ଚୟ, ସଦୁକ୍ତି କର୍ଣ୍ଣାମୃତ, ସୁଭାଷିତାବଳୀ, ସଦୁକ୍ତି ମୁକ୍ତାବଳୀ, ଶାର୍ଙ୍ଗଧର ପଦ୍ଧତି ଓ ସୂକ୍ତି ରତ୍ନହାର ପ୍ରଭୃତି) ଯୁବତୀର ବୟଃସନ୍ଧି ବର୍ଣ୍ଣନାରୁ ଆରମ୍ଭ କରି ପ୍ରେମର ପ୍ରାୟ ସବୁ ଅବସ୍ଥାର ନାନାବିଧ ବର୍ଣ୍ଣନା ପରିଦୃଷ୍ଟ ହୁଏ । ଏଗୁଡ଼ିକ ସହିତ ପରବର୍ତ୍ତୀ ବୈଷ୍ଣବ ସାହିତ୍ୟର ନାୟିକା ରାଧାଙ୍କର ସୌନ୍ଦର୍ଯ୍ୟ ଓ ପ୍ରେମର ବିଭିନ୍ନ ଅବସ୍ଥା ଏବଂ ସଖୀମାନଙ୍କର ଦୌତ୍ୟ ଚିତ୍ରର ବହୁ ସାଦୃଶ୍ୟ ଓ ସାଧର୍ମ୍ୟ ଦେଖାଯାଏ । ଅପଭ୍ରଂଶ କାବ୍ୟରୁ ଦୃଷ୍ଟାନ୍ତ ଦିଆ ଯାଉଛି । ମିଳନର ଆକସ୍ମିକ ଭଙ୍ଗକୁ ଲକ୍ଷ୍ୟ କରି ନାୟିକା କହୁଛି—

ଅଙ୍ଗହିଁ ଅଙ୍ଗୁ ନ ମିଲଉ ହଲି
ଅହରେଁ ଅହରୁ ନ ପତ୍ତୁ ।
ପିଅକୋ ଅନ୍ତହେ ମୁହ-କମଲୁ
ଏମ୍ବଇ ସୁରଉ ସମତ୍ତୁ । (୪୮)

ଅର୍ଥାତ୍ ଅଙ୍ଗ ଅଙ୍ଗର ମିଳନ ହୋଇନାହିଁ, ଅଧର ଅଧରକୁ ସ୍ପର୍ଶ କରିନାହିଁ । ତାଙ୍କ (ନାୟକ) ମୁଖ କମଳ-ସୁଷମାର ମଧୁପାନ କରୁଁ କରୁଁ ମିଳନର ଅବସାନ ଘଟିଗଲା । ବିଦଗ୍‌ଧ ଚନ୍ଦ୍ରାମଣିର ଅଂଶ ଛାନ୍ଦରେ ରାଧାକୃଷ୍ଣଙ୍କର ସ୍ୱପ୍ନ-ମିଳନ-ଭଙ୍ଗ ଚିତ୍ର ସହିତ ଏହାକୁ ତୁଳନା କରାଯାଇପାରେ, ଯଥା—

ବନ୍ଧୁ ବନ୍ଧୁଲି ଅଧର ମଧୁ ମଧୁର ଭଣ୍ଡାର
ଦୁର୍ଲ୍ଲଭ ଲୋଭରେ ହରି ଚୁମ୍ବିବା ବେଳେ ।
ଯୋଗମାୟା ମାୟା ଦୂର କଲେ ହୋଇଲେ ଅନ୍ତର

(୪୮) Dr. K. M. Munshi, Gujrat and its Literature, PP 100-101

ହରି କରି ହରିଙ୍କି ସ୍ୱସ୍ଥାନେ ରଖିଲେ ।
ଶତକୋଟି ପଡ଼ୁ କୁଳିଶ ।
କାହାକୁହିଁ ହନେ ନୋହୁ ଏ ନାରି କ୍ଲେଶ । (ବି. ଚି., ୩୦।୫୦)

ପୁଣି ଅନ୍ୟତ୍ର ଚନ୍ଦ୍ର ଅପେକ୍ଷା ମୁଖ ସୁଷମାର ଉତ୍କର୍ଷ ବର୍ଣ୍ଣନା କରାଯାଇ କୁହାଯାଇଛି—

ନିଅ-ମୁହ- କରହିଁ ବି ମୁକ୍ତକର
ଅନ୍ଧାରଇ ପଡ଼ି ପେକ୍ଖଇ ।
ସସି-ମଣ୍ଡଳ-ଚନ୍ଦ୍ରମଏଁ ପୁଣୁ
କାହିଁ ନ ଦୂରେ ଦେକ୍ଖଇ । (୫୯)

ଅର୍ଥାତ୍ ଯୁବତୀଟି ଯେତେବେଳେ ନିଜର ମୁଖଚନ୍ଦ୍ର-ବକ୍ଷୁଶ୍ରିତ କିରଣରେ ଅନ୍ଧାରରେ ନିଜ ହାତ ଦେଖି ପାରୁଛି, ସେତେବେଳେ ଚନ୍ଦ୍ରକିରଣରେ କାହିଁକି ଦୂରକୁ ଦେଖି ପାରୁ-ନାହିଁ ? ଓଡ଼ିଆ ରୀତିକାବ୍ୟ ଓ ବୈଷ୍ଣବ ପଦାବଳୀରୁ ଏହି ଭାବ ସହ ସାଦୃଶ୍ୟ ଥିବା ବହୁ ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ ।

ପରବର୍ତ୍ତୀ କାଳରେ 'ପ୍ରାକୃତ ପିଙ୍ଗଳ' ଛନ୍ଦୋଗ୍ରନ୍ଥରେ ବହୁ ପ୍ରାକୃତ ଗାଥାର ଉଦ୍ଧୃତି ଦେଖାଯାଏ । ବହୁ ଗାଥାର ଭାବ ସହିତ ବୈଷ୍ଣବ କବିତାର ବର୍ଣ୍ଣନା ଓ ସ୍ୱରର ମେଳ ଆମ୍ଭେମାନେ ଲକ୍ଷ୍ୟ କରୁଁ । ନାରୀ-ସୌନ୍ଦର୍ଯ୍ୟ ଓ ନାରୀ ପ୍ରେମକୁ କେନ୍ଦ୍ର କରି 'ସଦୁକ୍ତି କର୍ଣ୍ଣାମୃତ'ରେ ବହୁ ଶ୍ଳୋକର ସନ୍ଧାନ ମିଳେ ଯେଉଁ ଗୁଡ଼ିକର ବୈଷ୍ଣବ କାବ୍ୟ ଓ ପଦାବଳୀ ବର୍ଣ୍ଣିତ ଭାବ ସହିତ ବହୁ ସାମଞ୍ଜସ୍ୟ ରହିଛି । ସଦୁକ୍ତି କର୍ଣ୍ଣାମୃତରୁ ରାଜଶେଖର କୃତ ଗୋଟିଏ ଶ୍ଳୋକ ଉଦ୍ଧାର କରାଯାଉଛି, ଯେଉଁଥିରେ କବି ଏକ ଉଦ୍ଭିନ୍ନ ଯୌବନା ନାରୀର ଅଙ୍ଗ ସୁଷମା ବର୍ଣ୍ଣନା କରିଛନ୍ତି, ଯଥା—

ପଦ୍‌ଭ୍ୟାଂ ମୁକ୍ତାସ୍ତରଳଗତୟଃ ସଂଶ୍ରିତା ଲୋଚନାଭ୍ୟାଂ ।
ଶ୍ରୋଣୀ ବିମ୍ବଂ ତ୍ୟଜତି ତନୁତାଂ ସେବତେ ମଧ୍ୟଭାଗଃ ।
ଧତ୍ତେ ବକ୍ଷଃ କୁଚସଚିବତାମଦ୍ୱିତୀୟଂ ଚ ବକ୍ତ୍ରମ୍ ।
ତଦ୍ ଗାତ୍ରାଣାଂ ଗୁଣ-ବିନିମୟଃ କଳ୍ପିତୋ ଯୌବନେନ । (ସ.କ., ୨।୨।୪)

ଅର୍ଥାତ୍ ପଦଯୁଗଳ ଚାଞ୍ଚଲ୍ୟ ପରିତ୍ୟାଗ କରିଛନ୍ତି, ଲୋଚନଦ୍ୱୟ ତା'ର ଆଶ୍ରୟ ନେଇଛନ୍ତି । ଶ୍ରୋଣୀ ବିମ୍ବ ତନୁତା ତ୍ୟାଗ କରିଛି, ମଧ୍ୟଭାଗ (କଟି ଦେଶ) ବର୍ତ୍ତମାନ ତା'ର ସେବା କରୁଛି । ବକ୍ଷ ବର୍ତ୍ତମାନ (ମୁଖକୁ ତ୍ୟାଗ କରି) କୁଚ ଯୁଗଳର ସଚିବତା ଗ୍ରହଣ କରିଛି, ଫଳରେ ମୁଖ ବର୍ତ୍ତମାନ ଅଦ୍ୱିତୀୟ । ଏହି ଭାବରେ ଯୌବନ ଆସି ତା'ର ଗାତ୍ର ସକଳର ଗୁଣ ବଦଳ କରିଦେଇଛି । ଉଦ୍ଧୃତ ଶ୍ଳୋକ ସହ ଆଂଶିକ ଭାବ ସାମ୍ୟ ବିଦଗ୍ଧ ଚିନ୍ତାମଣିରେ ଲକ୍ଷ୍ୟ କରାଯାଇପାରେ, ଯଥା—

---

(୫୯) ତତ୍ରୈବ

ସୁମତି ଗତିରୁ ଅତି ଚଞ୍ଚଳତା ଦୃଗଞ୍ଚଳକୁ ଆଶ୍ରେ କଲା ।
କଟି ଉନ୍ନତ ପ୍ରକଟି ଖୀରୁ ଗୃହୁ ଉରୁ ଗୁରୁତା ବଢ଼ାଇଲା । (୭୦) (ବି. ଚ., ୪।୧୧)

ଏହିପରି ସଂଗୃହିତ ଗ୍ରନ୍ଥମାନଙ୍କରୁ ତୁଳନାତ୍ମକ ଭାବରେ ବହୁ ଦୃଷ୍ଟାନ୍ତ ଦିଆଯାଇପାରେ ।

**ପ୍ରେମ ସମ୍ପୃକ୍ତ ଭକ୍ତି କାବ୍ୟର ଦୁଇଟି ସାହିତ୍ୟିକ ଧାରା :**

ପ୍ରେମ ସହିତ ସମ୍ପୃକ୍ତ ଭକ୍ତିକାବ୍ୟ ଦୁଇଟି ସାହିତ୍ୟିକ ଧାରାର ସଂକେତ ଦେଉଛି— ଗୋଟିଏ ହେଉଛି : ବର୍ଣ୍ଣନାତ୍ମକ ବା ଦାର୍ଶନିକ ଭାବମୂଳକ ବିସ୍ତୃତ ସ୍ତୋତ୍ର କାବ୍ୟର ଧାରା, ଅନ୍ୟଟି ହେଉଛି : ଉଚ୍ଚାଙ୍ଗ ଭାବ ଆବେଗାତ୍ମକ ଭକ୍ତିକାବ୍ୟ ଯେଉଁ ଗୁଡ଼ିକ ଶୃଙ୍ଗାରାତ୍ମକ ଉପାଦାନ, ଚିତ୍ରକଳ୍ପ ଓ ପ୍ରକାଶର ସ୍ୱରଗ୍ରାମ ମଧ୍ୟରେ ଗତି କରିଛନ୍ତି । ଉଭୟ ଧାରାରେ ନିଜସ୍ୱ ଦୃଷ୍ଟିଭଙ୍ଗୀ ରହିଛି । ଗୋଟିକରେ ଏହା ଧାର୍ମିକ ଚିନ୍ତାଛଳରେ ପ୍ରକାଶ ପାଇଛି, ଅନ୍ୟଟିରେ ଆକାର ଓ ରଙ୍ଗରେ (ସ୍ୱରୂପରେ) ପ୍ରକାଶିତ ହୋଇଛି । ପ୍ରାଚୀନ ଆସ୍ତିକତା-ମୂଳକ ଭକ୍ତିବାଦର ଉଚ୍ଚାଙ୍ଗ ପାରମ୍ପରିକ ସ୍ତୋତ୍ରଗୁଡ଼ିକରେ ଏକ ପ୍ରକାର ବୌଦ୍ଧିକ ସନ୍ତୋଷ ଓ ନୈତିକ ଆବେଦନ ଫୁଟି ଉଠିଛି ।

**ସଂସ୍କୃତ ଧର୍ମମୂଳକ କାବ୍ୟ ଏବଂ ପ୍ରେମ ଓ ଶୃଙ୍ଗାର :**

କିନ୍ତୁ ମଧ୍ୟଯୁଗର ଧର୍ମସମ୍ପ୍ରଦାୟ ଏବଂ ଭକ୍ତି ଆନ୍ଦୋଳନର ଆବେଗାତ୍ମକ ପ୍ରଭାବର ଫଳରେ ଭକ୍ତିମୂଳକ ରଚନା ଗୁଡ଼ିକର ମୌଳିକ ପ୍ରେରଣା ହେଲା ଏକପ୍ରକାର ପ୍ରେମ ବା ଶୃଙ୍ଗାରାତ୍ମକ ରହସ୍ୟବାଦ । ଏହାଦ୍ୱାରା ସଂସ୍କୃତ ଧର୍ମମୂଳକ କାବ୍ୟରେ ଏକ ନୂତନ ବିକାଶଧାରା ଲକ୍ଷିତ ହୋଇଛି । ଏହା ପ୍ରେମ ବା ଶୃଙ୍ଗାର ସାହିତ୍ୟ ସହ ନିବିଡ଼ ସମ୍ପର୍କ ସ୍ଥାପନ କରିଛି । ଏହି ଦୃଷ୍ଟିରୁ ସଙ୍ଗୀତ ପ୍ରଧାନ ଗୀତଗୋବିନ୍ଦକୁ ଏକ ଧର୍ମ ପ୍ରଧାନ କାବ୍ୟ ଏବଂ ପ୍ରେମ ବା ଶୃଙ୍ଗାର ପ୍ରଧାନ କାବ୍ୟ ରୂପେ ଗ୍ରହଣ କରାଯାଇପାରେ । ଏଥିରେ ଶକ୍ତିଶାଳୀ କାମ ବିଭାବ ଏକ ଗଭୀର ଧାର୍ମିକ ରୂପରେ ରୂପାନ୍ତରିତ ହୋଇଛି । ଏଥିରେ ଭକ୍ତିମୂଳକ ଦୃଷ୍ଟିଭଙ୍ଗୀ ଯେତେ ରହସ୍ୟାଚ୍ଛନ୍ନ ବୋଧ ହେଲେ ମଧ୍ୟ ଏଥିରୁ ଯେଉଁ ସାହିତ୍ୟିକ ଲାଭ ମିଳିଛି, ତାହା ଅସ୍ୱୀକାର କରି ହେବନାହିଁ । ରକ୍ଷଣଶୀଳ ପରମ୍ପରାର ସ୍ତୋତ୍ର ଗୁଡ଼ିକରେ ଲେଖକମାନଙ୍କର ଭକ୍ତି-ହୃଦୟର ପରିପ୍ରକାଶ ସମ୍ପର୍କରେ କିଛି କହିବାର ନାହିଁ, କିନ୍ତୁ ଏ ଗୁଡ଼ିକରେ କାବ୍ୟିକ ସୌନ୍ଦର୍ଯ୍ୟ କ୍ୱଚିତ୍ ପରିଲକ୍ଷିତ ହୁଏ । ପ୍ରେମିକ ତଥା ଧାର୍ମିକ ଭାବବାଦୀମାନଙ୍କ ଯୋଗୁଁ ଆମେ ଦେବତାମାନଙ୍କର ରୋମାଣ୍ଟିକ୍ କାହାଣୀର

---

(୭୦) ଏହା ସହିତ ବୈଷ୍ଣବଙ୍କ ଦ୍ୱାରା ଆଦୃତ ମୈଥିଳୀ କବି ବିଦ୍ୟାପତିଙ୍କର ରାଧାଙ୍କର ବୟଃସନ୍ଧି ବର୍ଣ୍ଣନା ତୁଳନୀୟ, ଯଥା—

ସୈସବ ଯୌବନ ଦରସନ ଭେଲ । ଦୁହୁଁ ପଥ ହେରଇତ ମନସିଜ ଗେଲ ।
ମଦନକ ଭାବ ପହିଲ ପରଚାର । ଭିନ ଜନ ଦେଲ ଭିନ ଅଧିକାର ।
କଟିକ ଗୌରବ ପାଓଲ ନିତମ୍ବ । ଏକକ ଖୀନ ଅଓକ ଅବଲମ୍ବ ।
ଚରଣ ଚପଲ ଗତି ଲୋଚନ ପାବ । ଲୋଚନକ ଧୈରଜ ପଦତଲ ଜାବ ।

ହରେକୃଷ୍ଣ ବନ୍ଦ୍ୟୋପାଧ୍ୟାୟ, ସଂପା : ବିଦ୍ୟାପତି-ଚଣ୍ଡୀଦାସ, ପୁନର୍ମୁଦ୍ରଣ, ୧୩୬୭

ଏକ ନୂତନ ବ୍ୟାଖ୍ୟା ଓ ନୂତନ ଦିଗନ୍ତର ସନ୍ଧାନ ପାଇଲେ ଏବଂ ନୂତନ ଭକ୍ତିଭାବର ସତୃଷ୍ଣତା, ବିସ୍ମୟ ଓ ତନ୍ମୟତା କାବ୍ୟକୁ ପାଣ୍ଡିତ୍ୟପୂର୍ଣ୍ଣ ଚିନ୍ତାଧାରାର ନୀରସ ଅନ୍ଧତାର ସ୍ତରରୁ ଅନୁଭୂତି ମୁଖର ଭାବ ଓ ଭାଷାର ଏକ ଛବିଳ ତଥା ଉଜ୍ଜ୍ୱଳ ଆଧ୍ୟାତ୍ମିକ ସ୍ତରକୁ ଉନ୍ନୀତ କଲା । ଭାରତରେ ବିଭିନ୍ନ ଧର୍ମ ସମ୍ପ୍ରଦାୟ ଓ ମତର ଯେଉଁ ବିଶାଳ ସ୍ତୋତ୍ର ସାହିତ୍ୟ (୭୯) ଦେଖାଯାଏ, ସେ ଗୁଡ଼ିକ ମଧ୍ୟରୁ ଅଧିକାଂଶର ଧାର୍ମିକ ତଥା ଆଧ୍ୟାତ୍ମିକ ମୂଲ୍ୟ ଛାଡ଼ିଦେଲେ ସାହିତ୍ୟିକ ମୂଲ୍ୟ କ୍ୱଚିତ୍ ପରିଲକ୍ଷିତ ହୁଏ; ଏପରିକି ଖ୍ରୀଷ୍ଟପୂର୍ବ ସଂସ୍କୃତ କାବ୍ୟର ପରମ୍ପରା ଅଧିକାଂଶ ପରବର୍ତ୍ତୀ ସ୍ତୋତ୍ରମାନଙ୍କରେ ଦେଖାଯାଇଛି (ସ୍ତୋତ୍ର ଗୁଡ଼ିକରେ ଚିତ୍ରବନ୍ଧ, ବକ୍ରୋକ୍ତି, ବର୍ଣ୍ଣାନୁକମ୍ପିକତା ଏବଂ ପ୍ରେମ ଓ ଶୃଙ୍ଗାରର ପ୍ରଭାବ ଲକ୍ଷିତ ହୁଏ) । ଜଣେ କବି (ଲକ୍ଷ୍ମଣ ଆଚାର୍ଯ୍ୟ) ଚଣ୍ଡୀଙ୍କର କୁଚର ସୌନ୍ଦର୍ଯ୍ୟ ପଚିଶଟି ଶ୍ଳୋକରେ (ଚଣ୍ଡୀକୁଚ ପଞ୍ଚାଶିକା) ବର୍ଣ୍ଣନା କରିବାକୁ କୁଣ୍ଠାବୋଧ କରିନାହାନ୍ତି ।

**ଧର୍ମ ଓ କବିତାରେ ମାନବିକତାର ସ୍ପର୍ଶ :**

ଗତାନୁଗତିକ ରୂପ ଓ ଭାଷାର ଅନୁସରଣ କରିଥିବା ଶୃଙ୍ଗାରାତ୍ମକ ଭକ୍ତିମୂଳକ ସ୍ତୋତ୍ର ଓ କ୍ଷୁଦ୍ର କବିତା ଗୁଡ଼ିକର ପଥ ପରିଷ୍କାର ହୋଇଯାଇଛି । ଏହି ରଚନା ଗୁଡ଼ିକ ମଧ୍ୟଯୁଗୀୟ ଭକ୍ତି ଆନ୍ଦୋଳନର ଏପରି ଗୋଟିଏ ସ୍ତରର ସୂଚନା ଦେଇଛି, ଯାହାକି ସଂପୂର୍ଣ୍ଣ ଆବେଗାତ୍ମକ ହୋଇଛି ଏବଂ ଏହା ଧାର୍ମିକ ଚିନ୍ତାଧାରାକୁ ରହସ୍ୟମୂଳକ ଭାବରେ ରୂପାନ୍ତରିତ କାମ ବିଭାବ ଉପରେ ପ୍ରତିଷ୍ଠିତ କରିଛି । ଏଥିରେ ଶୃଙ୍ଗାରାତ୍ମକ ଭାବାବେଗ ମାର୍ଜିତ ଓ ମହିମାନ୍ୱିତ ନିର୍ଯ୍ୟାସ ଭାବରେ ଗୃହୀତ ହୋଇଛି । ପୁରାଣ ବର୍ଣ୍ଣିତ କୃଷ୍ଣଙ୍କର ମଧୁମୟ କୈଶୋର ଜୀବନକୁ କେନ୍ଦ୍ର କରି ସମସ୍ତ ସାମ୍ପ୍ରଦାୟିକ ଶାଖାର ଭକ୍ତି ଆନ୍ଦୋଳନ ଗଢ଼ି ଉଠିଛି । ଶ୍ରୀମଦ୍ ଭାଗବତ ନବ ବୈଷ୍ଣବ ସମ୍ପ୍ରଦାୟ ଗୁଡ଼ିକର ଧର୍ମତତ୍ତ୍ୱର ମୂଳ ଉତ୍ସ ଏବଂ ନୂତନ ଭକ୍ତିମୂଳକ କବିତାର ମୂଳ ପ୍ରେରଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ନୂତନ ଦୃଷ୍ଟି ଭଙ୍ଗୀ ମାନବିକତାର ସ୍ପର୍ଶ ଦେଇ ଧର୍ମ ଓ କବିତାକୁ ପ୍ରାଣବନ୍ତ ଓ ଚିତ୍ତାକର୍ଷକ କରିଛି ଏବଂ ମାନବଚରିତ୍ରର ଏକ ଶକ୍ତିଶାଳୀ ପ୍ରବୃତ୍ତିକୁ ତନ୍ମୟତାର ମାଧ୍ୟମ ରୂପେ ଉନ୍ନୀତ କରିଛି । ଫଳରେ ଆଧ୍ୟାତ୍ମିକ ଜୀବନ ସରସ ଓ ସୌନ୍ଦର୍ଯ୍ୟ ମଣ୍ଡିତ ହୋଇଛି । ମନୁଷ୍ୟ ପ୍ରକୃତିର ଭାବ ଓ ରସବୋଧରେ (ସୌନ୍ଦର୍ଯ୍ୟବୋଧରେ) ଏହାର ଅସଲ ସତ୍ୟ ନିହିତ ଅଛି । ଏହା ପୂର୍ବର ଧାର୍ମିକ ଚିନ୍ତାଧାରାର ତତ୍ତ୍ୱ ଓ ଅନ୍ଧ ବିଶ୍ୱାସ ଜନିତ ବୌଦ୍ଧିକତା ବିପକ୍ଷରେ ଏକ ପ୍ରତିବାଦ କହିଲେ ଅଯୁକ୍ତି ହେବନାହିଁ (୭୬) ।

**ଭାବାତ୍ମକ ଭକ୍ତି ଆନ୍ଦୋଳନର ଅବଦାନ :**

କାଳକ୍ରମେ ଏହି ନୂତନ ଭକ୍ତି ଆନ୍ଦୋଳନର ମତବାଦ ଓ ତତ୍ତ୍ୱର ସୃଷ୍ଟି ହୋଇ-ଯାଇଛି । ସାମ୍ପ୍ରଦାୟିକ ଭକ୍ତିବାଦ, ଦର୍ଶନ ଓ ଧର୍ମ ମତ ସହିତ ତା'ର ଯଥୋଚିତ

(୭୯) ଶଙ୍କରଙ୍କ ବୈଦାନ୍ତିକ ସ୍ତୋତ୍ର, କାଶ୍ମୀରୀୟ ଶୈବସ୍ତୋତ୍ର, ଜୈନ ଓ ବୌଦ୍ଧ ମହାଯାନ ସ୍ତୋତ୍ର, ଦକ୍ଷିଣ ଭାରତର ବୈଷ୍ଣବ ଓ ଶୈବ ସ୍ତୋତ୍ର, ତାନ୍ତ୍ରିକ ଓ ବୈଷ୍ଣବ ସ୍ତୋତ୍ର ଇତ୍ୟାଦି ।

(୭୬) Dr. S. N. Dasgupta and Dr. S. K. De, H. S. L., P. 385

ଭାବାତ୍ମକ ବିଶ୍ଳେଷଣ ପଦ୍ଧତି, ତାର ମନସ୍ତତ୍ତ୍ୱ ଓ ଅଳଙ୍କାର ଶାସ୍ତ୍ରର ନବୀକରଣ, ପରିଭାଷାର ସୂକ୍ଷ୍ମତା, ଚିତ୍ରକଳ୍ପ ଓ ଅଭିଜାତ୍ୟର ବିସ୍ତୃତିକରଣ ଦେଖାଦେଇଛି । ଭକ୍ତିଭାବକୁ ସାହିତ୍ୟିକ ରସାସ୍ୱାଦନ ସହିତ ପ୍ରାୟ ସମାନ କରାଯିବାକୁ ଅଳଙ୍କାର ଓ କାମଶାସ୍ତ୍ରର ସମଗ୍ର ଉପାଦାନ କୌଶଳ ସହକାରେ ବ୍ୟବହୃତ ଓ ରଞ୍ଜିମନ୍ତ ହୋଇଛି; (୭୩) କିନ୍ତୁ ପ୍ରାଚୀନ ଅଳଙ୍କାର ଶାସ୍ତ୍ର ଭକ୍ତିକୁ ରସଭାବରେ ଗ୍ରହଣ କରିନାହିଁ । ଏହି ନୂତନ ପ୍ରୟୋଗ ଅଭିନବ, ଅନ୍ତରଙ୍ଗ ଓ ପ୍ରେରଣା ଦାୟକ ହୋଇଛି ଏବଂ ଭକ୍ତିମୂଳକ ତନ୍ମୟତାରେ ପ୍ରେମାନୁଭୂତ ଏହାର ଆଳଙ୍କାରିକ ଓ ମନସ୍ତାତ୍ତ୍ୱିକ ପରମ୍ପରା ଏବଂ ଆଧ୍ୟାତ୍ମିକ ଓ ଧାର୍ମିକ ସୂକ୍ଷ୍ମତା ଜନିତ ଗତାନୁଗତିକତାର ଊର୍ଦ୍ଧ୍ୱକୁ ଉନ୍ନୀତ ହୋଇଛି; ଏପରିକି ଏହାର ସୂକ୍ଷ୍ମ ଧର୍ମ ସମ୍ପର୍କୀୟ ମତବାଦ ଓ ସୂକ୍ଷ୍ମ ଗୂଢ଼ିକ ସାହିତ୍ୟିକ କଳ୍ପନା ଓ ଭାଷା ଉପରେ ସୁନ୍ଦର ପ୍ରଭାବ ପକାଇଛି । କାବ୍ୟ ଗୁଡ଼ିକରେ ହୁଏତ ସର୍ବଦା ସାହିତ୍ୟିକ ଚମତ୍କାରିତା ନ ମିଳିପାରେ, କିନ୍ତୁ ତନ୍ମୟତାର ବାସ୍ତବ ଅଭିବ୍ୟକ୍ତିରେ ଏହା ଯେଉଁ ମାନର ସଙ୍କେତ ଦିଏ, ତନ୍ମଧ୍ୟରେ କାବ୍ୟିକ ପ୍ରବୃତ୍ତିର ବର୍ତ୍ତମାନତା ଉପଲବ୍ଧ ହୋଇଥାଏ । ଭାବାତ୍ମକ ଭକ୍ତି ଆନ୍ଦୋଳନର ଏହା ଏକ ଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । (୭୪)

## ଏ ଦୃଷ୍ଟିଭଙ୍ଗୀର ଦୋଷଗୁଣ :

କିନ୍ତୁ ଏ ପ୍ରକାର ଦୃଷ୍ଟିଭଙ୍ଗୀର ଦୋଷଦୁର୍ବଳତା ଯେ ନ ରହିଲା ତାହା ନୁହେଁ । ପୌରାଣିକ କୃଷ୍ଣଙ୍କ ଉପରେ ପ୍ରାଧାନ୍ୟ ଦିଆଯିବା ଫଳରେ ବାସୁଦେବ କୃଷ୍ଣଙ୍କର ପ୍ରାଚୀନ ରୂପ ସମ୍ପୂର୍ଣ୍ଣ ରୂପାନ୍ତରିତ ହୋଇଗଲା । ଐଶ୍ୱରିକ ଜ୍ଞାନ ଓ ମାନବଭକ୍ତିର ପ୍ରାଚୀନ ମହାକାବ୍ୟ ସୁଲଭ ଧାରା ସ୍ଥାନରେ ଦେଖାଦେଲା ନୂତନ ରହସ୍ୟାବୃତ୍ତ ଆବେଗାତ୍ମକ ଧର୍ମଶାସ୍ତ୍ରର ଧାରା । ତେଣୁ ବାଳଗୋପାଳଙ୍କ ସମ୍ପର୍କରେ ସ୍ନିଗ୍ଧ ଉଲ୍ଲାସ ଓ ଲୀଳାମୟ କୃଷ୍ଣଙ୍କ ସମ୍ପର୍କରେ ଭାବୋନ୍ମାଦନା ପ୍ରକାଶ ପାଇଲା । ମଧ୍ୟଯୁଗୀୟ ଆଧ୍ୟାତ୍ମିକ ଭକ୍ତି, ଜ୍ଞାନ ଓ କର୍ମର ପ୍ରୟୋଜନ

(୭୩) ଅଭିନବ ଗୁପ୍ତ ଓ ଅନ୍ୟ ଆଳଙ୍କାରିକମାନେ 'ଶାନ୍ତ' ରସ ଅଧୀନରେ ଭକ୍ତି ପ୍ରସଙ୍ଗ ବିଚାର କରିଛନ୍ତି । ବୈଷ୍ଣବ ଆଳଙ୍କାରିକ ମାନେ ଶୃଙ୍ଗାରକୁ (ମଧୁର ବା ଉଜ୍ଜ୍ୱଳ) ମୁଖ୍ୟରସ ରୂପେ ଗ୍ରହଣ କରି ବାରଟି ରସ କଥା କହିଛନ୍ତି ଏବଂ ରସ ବିଚାରକୁ ନୂତନ ରୂପ ଦାନ କରିଛନ୍ତି । କବି କର୍ଣ୍ଣପୁର (ଅଳଙ୍କାର କୌସ୍ତୁଭ) ପ୍ରେମନ୍ ଓ ଭକ୍ତି ସହ ବାରଟି ରସ କଥା କହିଛନ୍ତି । ଅଦ୍ୱୈତବାଦୀ ମଧୁସୂଦନ ସରସ୍ୱତୀ (ଭଗବଦ୍ ଭକ୍ତି ରସାୟନ) ଆଳଙ୍କାରିକ ଦୃଷ୍ଟି କୋଣରୁ ଭକ୍ତିର ବିଚାର କରି ତାହାକୁ ଏକ ପୁରୁଷାର୍ଥ ବୋଲି କହିଛନ୍ତି ଏବଂ ଜ୍ଞାନ ଓ ଭକ୍ତି ମଧ୍ୟରେ ପାର୍ଥକ୍ୟ ଆନୟନ କରିଛନ୍ତି । ତାଙ୍କ ମତରେ 'ଭଗବଦାକାରତା' ହେଉଛି ଭକ୍ତି ।

Dr. V. Raghavan, The Number of Rasas, Adyar, 1940; PP. 129-134

(୭୪) Dr. S. N. Dasgupta & Dr. S. K. De, H. S. L., P.385

ତ୍ୟାଗ କରାଯାଇ ସ୍ୱଷ୍ଟରଯାନୁଭୂତି ଉପରେ ଗୁରୁତ୍ୱ ପ୍ରଦାନ କରାଗଲା । ସମସ୍ତ ପୂଜା ଓ ମୁକ୍ତିକୁ ଉପାସ୍ୟଙ୍କ ସହିତ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ସମ୍ପର୍କ ତଥା ବ୍ୟକ୍ତିଗତ ଚେତନା-ବିଜଡ଼ିତ ଭଗବନ୍ତ ଲୀଳା ମାଧୁର୍ଯ୍ୟର ଆସ୍ୱାଦନ ବ୍ୟତୀତ ଅନ୍ୟ କିଛି ମନେ କରାଗଲା ନାହିଁ । କିନ୍ତୁ କୃଷ୍ଣଙ୍କ ଲୀଳାରେ ଶୃଙ୍ଗାର ରସ ଉପରେ ଗୁରୁତ୍ୱ ଆରୋପ କରାଯିବାରୁ ଦୃଷ୍ଟିଭଙ୍ଗୀର ଯେତେ ଆଧିବିଦ୍ୟକ ବ୍ୟାଖ୍ୟା କରାଗଲେ ମଧ୍ୟ ଏହା ଏକାନ୍ତ ଉଦ୍ଦୀପନାମୟ ଐନ୍ଦ୍ରିକ-ଭକ୍ତିର (Sense-devotion) ନିକଟବର୍ତ୍ତୀ ଏବଂ ଅନେକ ସମୟରେ ବାସ୍ତବ ଇନ୍ଦ୍ରିୟ ପରତନ୍ତ୍ରତାରେ ପରିଣତ ହୋଇଥାଏ । ଏହାର ଆଧ୍ୟାତ୍ମିକ ମୂଲ୍ୟ ଯାହା ହେଉନା କାହିଁକି ଏହା ସାହିତ୍ୟରେ ବିଶେଷ ଫଳପ୍ରସୂ ହୋଇଛି; କିନ୍ତୁ ଅନେକ କ୍ଷେତ୍ରରେ ଏହାର ଅସ୍ୱାଭାବିକତା ଚରମ ସୀମାକୁ ଗତି କରିଛି ।

**ସାହିତ୍ୟରେ ଏହାର ସଂକେତ :**

ଏହି ପ୍ରବଣତାର ସଂକେତ ମିଳେ ଲୀଳାଶୁକ ବିଲ୍ୱମଙ୍ଗଳଙ୍କର 'କୃଷ୍ଣକର୍ଣ୍ଣାମୃତ'ରେ । କୃଷ୍ଣଙ୍କ ଚରିତ ଓ ଲୀଳା ସମ୍ପର୍କରେ ଏହା ଏକ ବର୍ଣ୍ଣନାତ୍ମକ କାବ୍ୟ ନୁହେଁ, ଏହା ପ୍ରେମିକ ଦେବତାଙ୍କ ଉଦ୍ଦେଶ୍ୟରେ ଏକ ଅନ୍ତରଙ୍ଗ ସ୍ତୁତି; ଶୃଙ୍ଗାରବ୍ୟଞ୍ଜକ ଶବ୍ଦ ଓ ଚିତ୍ରକଳ୍ପରେ ଏବଂ ଆତ୍ମନିବେଦନାତ୍ମକ ଭଙ୍ଗୀରେ ଏହା ରଚିତ । ଏହା କେତେକ ପରିମାଣରେ ମଧ୍ୟଯୁଗୀୟ ଖ୍ରୀଷ୍ଟୀୟ ଗୀତ ସହିତ ତୁଳନୀୟ, ଯେଉଁଥିରେ ଯୁବକ ଖ୍ରୀଷ୍ଟଙ୍କୁ ପ୍ରେମିକ ଭାବରେ ଲାଭ କରିବାକୁ ନିବିଡ଼ ଲାଳସା ପ୍ରକାଶ ପାଇଛି । ତନ୍ମଧ୍ୟରୁ ସୋଲେମନ୍‌ଙ୍କ ସଙ୍ଗୀତ (ମୁଁ ହେଉଛି ମୋର ପ୍ରେମିକଙ୍କର ଏବଂ ମୋର ପ୍ରେମିକ ହେଉଛନ୍ତି ମୋର) ହେଉଛି ତା'ର ପ୍ରକୃଷ୍ଟ ଦୃଷ୍ଟାନ୍ତ (୭୫) ।

'କୃଷ୍ଣକର୍ଣ୍ଣାମୃତ'ରେ ପରସ୍ପର ନିରପେକ୍ଷ ଶ୍ଳୋକ (ସ୍ତବକ) ପରିଦୃଷ୍ଟ ହେଲେ ମଧ୍ୟ ସୁନ୍ଦର ଦେବତାଙ୍କର ଦର୍ଶନ ପାଇଁ ଭକ୍ତକବିଙ୍କର ଦୀପ୍ତଲାଳସା, ଭକ୍ତିପୂର୍ଣ୍ଣ ଆଶାବିଶ୍ୱାସର ନିବିଡ଼ତା ଏବଂ ଲାଳସାର ପୂର୍ତ୍ତିରେ ତାଙ୍କର ଆନନ୍ଦ ଓ ବିସ୍ମୟ ଫଳରେ କାବ୍ୟରେ ଏପରି ଏକ ଅନ୍ତର୍ନିହିତ ଐକ୍ୟର ସଙ୍କେତ ମିଳେ, ଯାହା କାବ୍ୟକୁ ଏକ ସମଗ୍ରତାର ସୌନ୍ଦର୍ଯ୍ୟ ଦାନ କରିଛି । ଏହାର ସୌନ୍ଦର୍ଯ୍ୟ, ଶବ୍ଦର ସାଙ୍ଗୀତିକ ମାଧୁର୍ଯ୍ୟ ଏବଂ ଐନ୍ଦ୍ରିକ ଛବିର ପ୍ରଭାବ ନିବିଡ଼ ତନ୍ମୟତାରେ ଏହାକୁ ଗୀତିକଳ୍ପନାର ଏକ ପରିପୂର୍ଣ୍ଣ ରୂପ ଦାନ କରିଛି । ତାଙ୍କର ଭକ୍ତିପୂର୍ଣ୍ଣ ଅଭିବ୍ୟକ୍ତି ଏକ ସାମ୍ପ୍ରଦାୟିକ ପ୍ରଚେଷ୍ଟା ନୁହେଁ, କିନ୍ତୁ ଏକ ସହଜାତ ଶକ୍ତି, ଯାହା ଉପାସନା ଓ ବନ୍ଦନା ଦ୍ୱାରା ଲବ୍‌ଧ ହୋଇଛି । କାବ୍ୟଟି କେବଳ ମାଧୁର୍ଯ୍ୟ ପରିପୂର୍ଣ୍ଣ ଏକ ଉଲ୍ଲେଖନୀୟ କାବ୍ୟିକ ସୃଷ୍ଟି ନୁହେଁ, ଏହା ଭକ୍ତି-ତନ୍ମୟତାର ଏକ ଚମତ୍କାର ନିଦର୍ଶନ । ଏଥିରେ ଧର୍ମ ଉପଲକ୍ଷ୍ୟରେ ଶୃଙ୍ଗାରାତ୍ମକ ଉପାଦାନର ମଞ୍ଜୁଳ ପ୍ରୟୋଗ ରହିଛି ।

---

(୭୫) 'I am my Beloved's, and my Beloved is mine.'
Song of Solomon

**ଗୀତଗୋବିନ୍ଦ :**

ଲୀଳାଶୁକଙ୍କର କାବ୍ୟ ପରି କେତେକ ବିକ୍ଷିପ୍ତ ରଚନାକୁ ଛାଡ଼ିଦେଲେ ଜୟଦେବଙ୍କର ଗୀତଗୋବିନ୍ଦ ବିଷୟ ଦୃଷ୍ଟିରୁ କୃଷ୍ଣକର୍ଣ୍ଣାମୃତ ସହିତ ତୁଳନୀୟ । ଏହା ସେହି ଭକ୍ତି ପ୍ରବଣତାର ଆଉ ଏକ ବିଭାବ ପରିବେଷଣ କରିଛି । ଫଳରେ ଏହା ମଧ୍ୟକାଳୀନ ଭାରତର ସାହିତ୍ୟ ଓ ଧର୍ମର ଏକ ଉତ୍ସ ହୋଇ ପଡ଼ିଛି । କେବଳ ଏକ ଉଚ୍ଚାଙ୍ଗ କାବ୍ୟ ଭାବରେ ନୁହେଁ, ମଧ୍ୟଯୁଗୀୟ ବୈଷ୍ଣବ ଭକ୍ତିର ଏକ ମହାନ୍ ଧର୍ମଗ୍ରନ୍ଥ ଭାବରେ ମଧ୍ୟ ଏହା ଗୃହୀତ ହୋଇଛି ।

ଗୀତଗୋବିନ୍ଦ ଏକ ସ୍ତୁତି କାବ୍ୟ ନୁହେଁ, ଏହା ବୃନ୍ଦାବନରେ କୃଷ୍ଣଙ୍କର ବାସନ୍ତୀ-ରାସର (ଲୀଳା) ଏକ ଶୃଙ୍ଗାରଧର୍ମୀ କାବ୍ୟ । ଏହା ବାରଟି ସର୍ଗରେ ବିଭକ୍ତ ଏବଂ ପ୍ରତ୍ୟେକ ସର୍ଗର ବିଭାଗ ରହିଛି, ଯେଉଁଥିରେ ବିଭିନ୍ନ ରାଗର ପଦାବଳୀ ବା ସଙ୍ଗୀତ ସନ୍ନିବେଶ କରାଯାଇଛି । ଏହି ସଙ୍ଗୀତଗୁଡ଼ିକ କାବ୍ୟର ପ୍ରଧାନ ଅଂଶ (ସଙ୍ଗୀତ ପୂର୍ବରୁ ଗୋଟିଏ ଦୁଇଟି ଶ୍ଳୋକ ସଙ୍ଗୀତର ସୂଚନା ଭାବରେ ଯୋଗ କରାଯାଇଛି) । ସଙ୍ଗୀତ ଗୁଡ଼ିକ ରାଧା, କୃଷ୍ଣ ଓ ସଖୀ (ଦୂତୀଙ୍କ) ମୁଖରେ ନିର୍ଦ୍ଦିଷ୍ଟ ଭାବାବେଗର ଗୀତଧର୍ମୀ ପ୍ରକାଶ ଭାବରେ ରୂପ ଦିଆଯାଇଛି । ଗୀତନାଟ୍ୟ ରୂପରେ ବିକଶିତ ହୋଇଥିବା ଏହାର ବିଷୟବସ୍ତୁ ଅତି ସରଳ । ଏଥିରେ ଅନ୍ୟ ଗୋପୀଙ୍କ ସହିତ ଲୀଳାରତ କୃଷ୍ଣଙ୍କ ଠାରୁ ରାଧାଙ୍କର ବିଚ୍ଛେଦ, ତାଙ୍କର ମନୋବ୍ୟଥା, ଲାଳସା ଓ ଈର୍ଷା, ସଖୀର ମଧ୍ୟସ୍ଥତା, କୃଷ୍ଣଙ୍କର ପ୍ରତ୍ୟାବର୍ତ୍ତନ, ରାଧାଙ୍କର ଅନୁତାପ ଓ ପ୍ରଶାନ୍ତି ଏବଂ ଶେଷରେ ସେମାନଙ୍କର ମିଳନାନନ୍ଦର ମଞ୍ଜୁଳ ବର୍ଣ୍ଣନା କରାଯାଇଛି । ରାଧାକୃଷ୍ଣ କାହାଣୀର ଶୃଙ୍ଗାରାତ୍ମକ ବର୍ଣ୍ଣନା ସହିତ ବ୍ରହ୍ମବୈବର୍ତ୍ତ ପୁରାଣର ସାଦୃଶ୍ୟ ଥିଲେ ମଧ୍ୟ ଏହି ପୁରାଣଠାରେ କବି କେତେ ଦୂର ଋଣୀ, ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ଶ୍ରୀମଦ୍‌ଭାଗବତର କୃଷ୍ଣ-ଗୋପୀ କାହାଣୀ (ଯେଉଁଥିରେ ରାଧାଙ୍କ ନାମର ପ୍ରତ୍ୟକ୍ଷ ଉଲ୍ଲେଖ ନାହିଁ) ଏବଂ ବସନ୍ତ ରାସ ବଦଳରେ ଶରତ୍ ରାସ ପ୍ରସଙ୍ଗ ଜୟଦେବଙ୍କର ପ୍ରେରଣାର ଉତ୍ସ ହେବା ସମ୍ଭବପର ନୁହେଁ । ଜୟଦେବ ଓ ପରବର୍ତ୍ତୀ ମୈଥିଳୀ କବି ବିଦ୍ୟାପତି ବ୍ରହ୍ମବୈବର୍ତ୍ତପୁରାଣ, କୃଷ୍ଣକର୍ଣ୍ଣାମୃତ ଓ ଅନ୍ୟ କୌଣସି ଅଜ୍ଞାତ ଉତ୍ସରୁ ଶୃଙ୍ଗାରାତ୍ମକ ଭକ୍ତିଭାବନାର ପ୍ରେରଣା ଲାଭ କରିଥାଇ ପାରନ୍ତି । ଏପରିକି ଚୈତନ୍ୟଙ୍କ ସମୟରେ ଶ୍ରୀମଦ୍‌ଭାଗବତର ଭାବାବେଗ ବଙ୍ଗଦେଶରେ ପୂର୍ଣ୍ଣ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ବୈଷ୍ଣବ ଭକ୍ତିର ଅନ୍ୟରୂପର ସନ୍ଧାନ ମିଳିଛି, ଭାଗବତ ଉତ୍ସ ସହିତ ଯା'ର ବିଶେଷ ସାମଞ୍ଜସ୍ୟ ନାହିଁ । କିନ୍ତୁ ପରବର୍ତ୍ତୀ କାଳର ଚୈତନ୍ୟ ଆନ୍ଦୋଳନ ଜୟଦେବ ଓ ବିଦ୍ୟାପତିଙ୍କୁ ଚୈତନ୍ୟୀୟ ବୈଷ୍ଣବର ଅନ୍ତର୍ଭୁକ୍ତ କରିଛି । ଚୈତନ୍ୟ-ଆନ୍ଦୋଳନ ଜୟଦେବଙ୍କର ଗୀତଗୋବିନ୍ଦକୁ କେବଳ ଏକ ଉଚ୍ଚାଙ୍ଗ କାବ୍ୟିକ ବା ଭକ୍ତିମୂଳକ ରଚନା ଭାବରେ ଗ୍ରହଣ ନ କରି ଧର୍ମଶାସ୍ତ୍ର ଓ ରସଶାସ୍ତ୍ରର ସୂକ୍ଷ୍ମତାର ଦୃଷ୍ଟାନ୍ତ ଦେଇ ଏହାକୁ ଏକ ପ୍ରାମାଣିକ ଧର୍ମଗ୍ରନ୍ଥ ଭାବରେ ଗ୍ରହଣ କରିଛି । ଏହି ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ଗୀତଗୋବିନ୍ଦର ସାହିତ୍ୟିକ-ସୌଷ୍ଠବ ଜନିତ ମୂଲ୍ୟାୟନକୁ ଆଚ୍ଛାଦିତ କରି ନାହିଁ; କାରଣ ମନେ ରଖିବାକୁ ହେବ ଯେ ରୂପ ଗୋସ୍ୱାମୀଙ୍କର ରସଶାସ୍ତ୍ର (ଉଜ୍ଜ୍ୱଳ ନୀଳମଣି, ଭକ୍ତିରସାମୃତସିନ୍ଧୁ) ଓ କୃଷ୍ଣତତ୍ତ୍ୱ ପ୍ରଚାରର ତିନି ଶତାବ୍ଦୀ ପୂର୍ବରୁ

ଜୟଦେବ ଆବିର୍ଭୂତ ହୋଇଥିଲେ । ଜବି ଭାବରେ ଜୟଦେବଙ୍କର କୃତିତ୍ୱ ସର୍ବାଦୌ ସ୍ୱୀକାର୍ଯ୍ୟ । ଜୟଦେବ ଗୀତଗୋବିନ୍ଦରେ ଯେଉଁ ଦିବ୍ୟ ପ୍ରେମର ବର୍ଣ୍ଣନା କରିଛନ୍ତି, ତାହା ଏକ ନିବିଡ କାବ୍ୟିକ ଆବେଦନରେ ବିଶେଷ ମାନବିକତାର ସ୍ପର୍ଶ ଲାଭ କରିଛି (୭୭) ।

ଗୀତଗୋବିନ୍ଦ ଭାବାବେଗ ଓ ସାହିତ୍ୟିକ ଉପାଦାନ ଦୃଷ୍ଟିରୁ ସଂସ୍କୃତ ସାହିତ୍ୟରେ ଯେ ବିଶିଷ୍ଟ ସ୍ଥାନ ଅଧିକାର କରିଛି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଶ୍ରୀକୃଷ୍ଣଙ୍କର ସ୍ତୁତି ଓ ଉପାସନା ଉପରେ ଜୋର ଦେଇଥିଲେ ମଧ୍ୟ ଆକାର ଓ ପ୍ରବଣତା ଦୃଷ୍ଟିରୁ ଲୀଳାଶୁକଙ୍କର 'କୃଷ୍ଣକର୍ଣ୍ଣାମୃତ' ଯେପରି ଏକ ଭକ୍ତିମୂଳକ ବ୍ୟକ୍ତିତ୍ୱର ଅଭିବ୍ୟକ୍ତି, ଗୀତଗୋବିନ୍ଦ ସେପରି ନୁହେଁ । ଧର୍ମଗତ କୃତିତ୍ୱ ସହିତ ଗୀତଗୋବିନ୍ଦର ଭାଷାର ସୌନ୍ଦର୍ଯ୍ୟ, କୋମଳତା ଓ ସାଙ୍ଗୀତିକ ମାଧୁର୍ଯ୍ୟ ତୁଲ୍ୟ ଗୌରବର ଅଧିକାରୀ । ବିଷୟବସ୍ତୁରେ ନୂତନତ୍ୱ ନ ଥିଲେ ମଧ୍ୟ ତାର ଆଙ୍ଗିକ ଏକାନ୍ତ ମୌଳିକ ଓ ନିଜସ୍ୱ । ଅର୍ଦ୍ଧନାଟକୀୟ ରୂପରେ ଗଠିତ ହୋଇଥିଲେ ମଧ୍ୟ ତା'ର ଆତ୍ମା ହେଉଛି ପୂର୍ଣ୍ଣ ଗୀତିଧର୍ମୀ । ଦୃଷ୍ଟିଭଂଗୀରେ ଧର୍ମଭାବନା ରହିଥିବାରୁ କାବ୍ୟଟି ଧର୍ମ ନିରପେକ୍ଷ ନୁହେଁ । ଏଥିରେ ବିବରଣୀ, ବର୍ଣ୍ଣନା, ଆବୃତ୍ତି ଓ ସଙ୍ଗୀତଧର୍ମୀ ବକ୍ତବ୍ୟ ରହିଥିବାରୁ ସଂସ୍କୃତରେ ଏ ରୀତି ସମ୍ପୂର୍ଣ୍ଣ ନୂତନ । ଏଥିରେ କାମ-ବିଭାବ ଏକ ଉଲ୍ଲାସମୟ ଭକ୍ତିଭାବରେ ରୂପାନ୍ତରିତ ହୋଇଛି । ଏହା ସଂସ୍କୃତ କାବ୍ୟ ପରମ୍ପରାର ଦକ୍ଷିକ ଅନୁସରଣ କରିନାହିଁ; ବରଂ ଅପଭ୍ରଂଶ ଓ ଆଧୁନିକ ଭାରତୀୟ କବିତାର ନିକଟ ସାଦୃଶ୍ୟ ଲଭ କରିଛି । ସଂସ୍କୃତରେ ରଚିତ ହେଲେ ମଧ୍ୟ ଗୀତଗୋବିନ୍ଦର ପଦାବଳୀର ଅଭିବ୍ୟକ୍ତିରେ (ପ୍ରକାଶ ଭଙ୍ଗୀରେ) ଦେଶୀୟ ଭାଷାର ରୀତି ଲକ୍ଷିତ ହୁଏ । ତା'ର ଯତି (ମେଳ) ଯୁକ୍ତ ମଧୁର ଛନ୍ଦ ଓ ରାଗରାଗିଣୀ ଗୁଡ଼ିକର ସଂସ୍କୃତ ଛନ୍ଦ ସହିତ କୌଣସି ସମ୍ପର୍କ ନାହିଁ । ବଙ୍ଗଳା ଓ ମୈଥିଳୀ ସାହିତ୍ୟରେ ଅତି ପରିଚିତ 'ପଦାବଳୀ' ଶବ୍ଦ ସ୍ପଷ୍ଟ ଭାବରେ ଲୋକ ସାହିତ୍ୟରୁ ନିଆଯାଇଛି । ସଂସ୍କୃତ ସାହିତ୍ୟ ଯେତେବେଳେ ଅବକ୍ଷୟ ଅବସ୍ଥାରେ ପହଞ୍ଚିଥିଲା, ସେତେବେଳେ ସମ୍ଭବତଃ ଦେଶୀୟ ସାହିତ୍ୟର ସାଙ୍ଗୀତିକ ତଥା ଅତି ନାଟକୀୟ ପ୍ରବୃତ୍ତି (Melodramatic tendency) ଦ୍ୱାରା ପ୍ରଭାବିତ ହୋଇ ଗୀତଗୋବିନ୍ଦ ରଚିତ ହୋଇଛି । ଦେଶୀୟ ସାହିତ୍ୟର ବିକାଶ ଘଟୁଥିବାରୁ ସଂସ୍କୃତ ସାହିତ୍ୟରେ ତା'ର ପ୍ରତିକ୍ରିୟା ଦେଖାଯିବା ସ୍ୱାଭାବିକ ।

## ଗୀତଗୋବିନ୍ଦର ଅନୁକୃତି :

ଗୀତଗୋବିନ୍ଦକୁ ଅନୁକରଣ କରି ରାଧାକୃଷ୍ଣ, ରାମସୀତା ଓ ହରପାର୍ବତୀଙ୍କ ସମ୍ପର୍କରେ ଅନେକ କାବ୍ୟ ରଚିତ ହୋଇଛି, ଯେଉଁ ଗୁଡ଼ିକର ସାହିତ୍ୟିକ ମୂଲ୍ୟ ଖୁବ୍ କମ୍ । ବଲ୍ଲଭାଚାର୍ଯ୍ୟଙ୍କର ପୁତ୍ର ବିଠ୍‌ଠଲେଶ୍ୱର ତାଙ୍କର 'ଶୃଙ୍ଗାର ରସ ମଣ୍ଡନ'ରେ ଜୟଦେବ ଓ ରାୟରାମାନନ୍ଦଙ୍କ ପରି (ଜଗନ୍ନାଥ ବଲ୍ଲଭ ନାଟକରେ ଯେପରି କରାଯାଇଛି) ସଙ୍ଗୀତର ସମାବେଶ କରିଛନ୍ତି । ନାରାୟଣ ତୀର୍ଥଙ୍କର 'କୃଷ୍ଣଲୀଳା ତରଙ୍ଗିଣୀ' କୃଷ୍ଣଲୀଳା ସମ୍ପର୍କରେ ସଂସ୍କୃତରେ ଅନ୍ୟତମ ଶ୍ରେଷ୍ଠ ଗ୍ରନ୍ଥ । ବାରଟି ତରଙ୍ଗରେ ଶ୍ରୀକୃଷ୍ଣ ଜନ୍ମଠାରୁ ଦ୍ୱାରକାରେ

(୭୭) Dr. Dasgupta & Dr. De, H. S. L., PP. 391-392

ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ଏଥିରେ ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନା କରାଯାଇଛି । ଏବଂ ଲୀଳାଶୁକ ଓ ଜୟଦେବଙ୍କ ଅନୁକରଣରେ ଗୁଡ଼ିଏ ସଙ୍ଗୀତର ସମାବେଶ କରାଯାଇଛି ।

## ପରବର୍ତ୍ତୀ ରାଗଭକ୍ତି-ସମ୍ବଳିତ ଗ୍ରନ୍ଥ :

ପରବର୍ତ୍ତୀ କାଳରେ ରାଗଭକ୍ତି ସମ୍ପର୍କିତ କେତେଗୁଡ଼ିଏ ଗ୍ରନ୍ଥ (ଚୈତନ୍ୟ ଆନ୍ଦୋଳନର ପ୍ରାରମ୍ଭିକ ସ୍ତରରେ ବଙ୍ଗଦେଶରେ ଯା'ର ବହୁଳତା ଲକ୍ଷିତ ହୋଇଥିଲା) ରଚିତ ହୋଇଥିଲା, ଯା'ର ସାହିତ୍ୟିକ ମୂଲ୍ୟ ଅପେକ୍ଷା ତାତ୍ତ୍ୱିକ ମୂଲ୍ୟ ଅଧିକ । ଚୈତନ୍ୟଙ୍କର ନିକଟତମ ଶିଷ୍ୟ, ଚୈତନ୍ୟ ମତର ଅନ୍ୟତମ ପ୍ରାମାଣିକ ଶିକ୍ଷକ ରୂପ ଗୋସ୍ୱାମୀ ସଂସ୍କୃତରେ ଜଣେ କବି, ଆଲଙ୍କାରିକ ଓ ଭକ୍ତି ଭାବରେ ବିଶେଷ ଖ୍ୟାତି ଅର୍ଜନ କରିଛନ୍ତି । ସେ ତାଙ୍କର 'ପଦ୍ୟାବଳୀ'ରେ ପ୍ରାଚୀନ ଓ ନୂତନ ଭକ୍ତିମୂଳକ ଶ୍ଳୋକର ସଂକଳନ କରିଛନ୍ତି । ଏଥିରେ ଚୈତନ୍ୟ ସମ୍ପ୍ରଦାୟ ଦ୍ୱାରା ପ୍ରଚଳିତ କୃଷ୍ଣଙ୍କର ଭାବାବେଗ ମୂଳକ ଉପାସନାର ସାମାନ୍ୟ ପରିବର୍ତ୍ତନର ସୂଚନା ଦେଇଛନ୍ତି । ରୂପ ଗୋସ୍ୱାମୀଙ୍କ ରଚିତ ଓ ଜୀବ ଗୋସ୍ୱାମୀଙ୍କ ଦ୍ୱାରା ସଂଗୃହୀତ ତାଙ୍କର 'ସ୍ତବମାଳା'ର କେତେକ ଶ୍ଳୋକରେ ତାଙ୍କର କୃତିତ୍ୱର ତୁଳନା ଦେଖାଯାଏ ନାହିଁ । ଏଥିରେ ତାଙ୍କର ପାଣ୍ଡିତ୍ୟ, ଭକ୍ତିଭାବନା ଓ ସାହିତ୍ୟିକ କୃତିତ୍ୱର ପରିଚୟ ମିଳେ; କିନ୍ତୁ ତାଙ୍କର 'ମୁକୁନ୍ଦ ମୁକ୍ତାବଳୀ'ରେ କୃଷ୍ଣକର୍ଣ୍ଣାମୃତକୁ ଅନୁକରଣ କଲେ ମଧ୍ୟ କୃଷ୍ଣକର୍ଣ୍ଣାମୃତର ସୌନ୍ଦର୍ଯ୍ୟ ପରିଦୃଷ୍ଟ ହୁଏନା । 'ଗୋବିନ୍ଦ ବିରୁଦାବଳୀ'ରେ ସେ ନୂତନ ଛନ୍ଦଯୁକ୍ତ ଆଙ୍ଗିକ ସୃଷ୍ଟିରେ କୃତକାର୍ଯ୍ୟ ହୋଇ ପାରିନାହାନ୍ତି । କିନ୍ତୁ ତାଙ୍କର ରାସଲୀଳା ସମ୍ପର୍କୀୟ କବିତା, ତନ୍ମଧ୍ୟରେ ଥିବା 'ସ୍ୱୟଂ ଉତ୍ପ୍ରେକ୍ଷିତ ଲୀଳା' ଏବଂ ଗୀତାବଳୀରେ ସନ୍ନିବେଶିତ ସଙ୍ଗୀତ ଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ । ଏ ଗୁଡ଼ିକରେ ଗୀତଗୋବିନ୍ଦର ରୀତି ଓ ଭାଷାର ସାର୍ଥକ ଅନୁକରଣ ଲକ୍ଷିତ ହୁଏ । କିନ୍ତୁ ସ୍ତୋତ୍ର ଗୁଡ଼ିକରେ ତଥାପି ଅଳଙ୍କାରର ପ୍ରାଚୁର୍ଯ୍ୟ ଦେଖାଯାଏ । ତାଙ୍କର ବନ୍ଧୁ ଓ ସହାର୍ଥ ରଘୁନାଥ ଦାସଙ୍କର 'ସ୍ତବାବଳୀ' କଳା ଦୃଷ୍ଟିରୁ ନିମ୍ନକୋଟୀର ହେଲେ ମଧ୍ୟ ନିବିଡ଼ ଭକ୍ତିଭାବ ଦୃଷ୍ଟିରୁ ଅତି ଉଚ୍ଚକୋଟୀର । କିନ୍ତୁ ପ୍ରବୋଧାନନ୍ଦଙ୍କର 'ଚୈତନ୍ୟ ଚନ୍ଦ୍ରାମୃତ', ପରମାନନ୍ଦ ଦାସ କବି କର୍ଣ୍ଣପୁରଙ୍କର 'କୃଷ୍ଣାହ୍ନିକ କୌମୁଦୀ', କୃଷ୍ଣ ଦାସ କବିରାଜଙ୍କର 'ଗୋବିନ୍ଦ ଲୀଳାମୃତ' ଏବଂ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'ଗୌରାଙ୍ଗ ଲୀଳାମୃତ,' 'କୃଷ୍ଣ ଭାବନାମୃତ' ଓ ଚମତ୍କାର ଚନ୍ଦ୍ରିକା ପ୍ରଭୃତି ରଚନାର ଆବେଦନ ଏକାନ୍ତ ସୀମିତ । କୃଷ୍ଣଲୀଳାକୁ ଭିତ୍ତି କରି କେତୋଟି ଚମ୍ପୂ ଓ ନାଟକ ରଚିତ ହୋଇଥିଲା । ଏ କ୍ଷେତ୍ରରେ ରଘୁନାଥ ଦାସଙ୍କର 'ମୁକ୍ତା ଚରିତ' ଜୀବ ଗୋସ୍ୱାମୀଙ୍କର 'ଗୋପାଳ ଚମ୍ପୂ', କବି କର୍ଣ୍ଣପୁରଙ୍କର 'ଆନନ୍ଦ ବୃନ୍ଦାବନ ଚମ୍ପୂ' (ଆଲଙ୍କାରିକ କୃତ୍ରିମ ଶୈଳୀରେ ଲିଖିତ) ଏବଂ ରାମକୃଷ୍ଣଙ୍କର 'ଗୋପାଳକେଳି ଚନ୍ଦ୍ରିକା' (ନାଟକ), ଅନନ୍ତ ଦେବଙ୍କର 'କୃଷ୍ଣଭକ୍ତି ଚନ୍ଦ୍ରିକା' (ନାଟକ), ରୂପ ଗୋସ୍ୱାମୀଙ୍କର 'ବିଦଗ୍ଧ ମାଧବ' (ନାଟକ), 'ଲଳିତ ମାଧବ' (ନାଟକ), 'ଦାନକେଳି କୌମୁଦୀ' (ଭାଣିକା); ରାୟ ରାମାନନ୍ଦଙ୍କର 'ଜଗନ୍ନାଥ ବଲ୍ଲଭ' (ନାଟକ), ସର୍ବୋପରି ଚୈତନ୍ୟ ଲୀଳା ପ୍ରଧାନ କବି କର୍ଣ୍ଣପୁରଙ୍କର 'ଚୈତନ୍ୟ ଚନ୍ଦ୍ରୋଦୟ' (ନାଟକ) ଏଠାରେ

ଉଲ୍ଲେଖଯୋଗ୍ୟ (୭୭) । କଳା ଦୃଷ୍ଟିରୁ ଏ ଗୁଡ଼ିକ ଉଚ୍ଚକୋଟୀର ନହେଲେ ମଧ୍ଯ ବୈଷ୍ଣବ ଭକ୍ତ ଓ କବିମଣ୍ଡଳୀରେ ଏ ଗୁଡ଼ିକର ଆଦର କମ୍ ନୁହେଁ । ଚୈତନ୍ୟ ମତର ବିଶେଷ ପ୍ରଚାର ଘଟିଥିବା ବଙ୍ଗ, ବୃନ୍ଦାବନ ଓ ଓଡ଼ିଶାର ବୈଷ୍ଣବ କବିଙ୍କ ରଚନାରେ ସନାତନ, ରୂପ ଓ ଜୀବ ଗୋସ୍ୱାମୀଙ୍କ ରଚନା ସହିତ ଅନ୍ୟଗୁଡ଼ିକର ପ୍ରଭାବ ବିଶେଷ ଭାବରେ ପରିଦୃଷ୍ଟ ହୁଏ ।

ପରିଚ୍ଛେଦଟିର ଦ୍ୱିତୀୟ ଭାଗରେ ବୈଦିକ, ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ପ୍ରେମ ଓ ଶୃଙ୍ଗାରପ୍ରଧାନ ଲୌକିକ ଓ ବୈଷ୍ଣବ କାବ୍ୟର ପରମ୍ପରା ସମ୍ପର୍କରେ ସୂଚନା ଦିଆଗଲା । ପ୍ରେମ ଓ ଶୃଙ୍ଗାରପ୍ରଧାନ ଲୌକିକ ସଂସ୍କୃତ କାବ୍ୟ ଏବଂ ବୃନ୍ଦାବନର ଷଡ୍ ଗୋସ୍ୱାମୀ ବିଶେଷତଃ ରୂପ ଗୋସ୍ୱାମୀଙ୍କର ରଚନାର ପ୍ରଭାବ ଓ ପ୍ରେରଣା ଗୋପାଳକୃଷ୍ଣଙ୍କ ରଚନାରେ କିପରି ରହିଛି, ଅନ୍ୟତ୍ର ତାର ଆଲୋଚନା କରାଯିବ । ପରବର୍ତ୍ତୀ ପରିଚ୍ଛେଦରେ ପ୍ରାଦେଶିକ ସାହିତ୍ୟରେ (ତାମିଲ୍, କନ୍ନଡ଼, ମରାଠୀ, ତେଲୁଗୁ, ଗୁଜୁରାଟୀ, ହିନ୍ଦୀ, ବ୍ରଜବୁଲି, ବଙ୍ଗଳା, ଅସମିୟା ଓ ଓଡ଼ିଆ) ଏହି ପ୍ରେମ ଓ ଶୃଙ୍ଗାରପ୍ରଧାନ ଲୌକିକ ଓ ବୈଷ୍ଣବ କାବ୍ୟର ପରମ୍ପରା ଉପରେ ଆଲୋକପାତ କରାଯାଇଛି ।

(୭୭) H. S. L., PP. 397, 440, 468, 485.



# ତୃତୀୟ ପରିଚ୍ଛେଦ

## (କ) ଭକ୍ତି ଓ ପ୍ରେମପ୍ରଧାନ
## ଲୌକିକ ଓ ବୈଷ୍ଣବ ଗୀତିକାବ୍ୟର ପରମ୍ପରା

[ ତାମିଲ୍, କନ୍ନଡ଼, ମରାଠୀ, ମାଲୟାଲମ୍, ତେଲୁଗୁ, ଗୁଜୁରାଟୀ,
ହିନ୍ଦୀ ଓ ଅସମିୟା ସାହିତ୍ୟରେ ]

ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ବିଭିନ୍ନ ଶତକରେ ଭକ୍ତି ଓ ପ୍ରେମକୁ ଉପଜୀବ୍ୟ କରି ବହୁ କାବ୍ୟ ଓ ଗୀତ ରଚିତ ହୋଇଛି । ଊଣା ଅଧିକେ ଅଧିକାଂଶ ପ୍ରଦେଶରେ ବିଭିନ୍ନ ଶତକରେ ବୈଷ୍ଣବ ଧର୍ମର ପ୍ରଚାର ଘଟିଥିବାରୁ ବହୁ ବୈଷ୍ଣବ କବିଙ୍କର ଆବିର୍ଭାବ ଘଟିଛି ଏବଂ ଭକ୍ତି ଓ ଭଗବତ୍ ପ୍ରେମକୁ ଉପଜୀବ୍ୟ କରି ବୈଷ୍ଣବ କବିମାନେ ଅଜସ୍ର ଗୀତ ରଚନା କରି ଲୋକ ସାଧାରଣଙ୍କର ଧାର୍ମିକ ଚେତନାକୁ ଉଜ୍ଜୀବିତ କରିବା ସଙ୍ଗେ ସଙ୍ଗେ ଜୀବନ ଓ ଜଗତ୍‌ର ଅଗଣିତ ଦୁଃଖ ଓ ଘାତ ପ୍ରତିଘାତ ମଧ୍ୟରେ ଜୀବନକୁ ଅର୍ଥପୂର୍ଣ୍ଣ କରିବା ପାଇଁ ସେମାନଙ୍କ ପ୍ରାଣରେ ଗଭୀର ଆଶା, ବିଶ୍ୱାସ ଓ ସାନ୍ତ୍ୱନାର ଉତ୍ସ ଛୁଟାଇ ଆସିଛନ୍ତି । ପ୍ରାଦେଶିକ ସାହିତ୍ୟ ଗୁଡ଼ିକ ମଧ୍ୟରେ ଅପେକ୍ଷାକୃତ ପ୍ରାଚୀନତର ତାମିଲ୍ ସାହିତ୍ୟର ଭକ୍ତି ଓ ପ୍ରେମ-ଗୀତ ସମ୍ପର୍କରେ ପ୍ରଥମେ ବିଚାର କରାଯାଉଛି ।

**ତାମିଲ୍ ସାହିତ୍ୟରେ :**

ମଧ୍ୟଯୁଗରେ ଷଷ୍ଠ ଶତକଠାରୁ ତାମିଲ୍ ସାହିତ୍ୟରେ ଶୈବ ନାୟନମାର ଓ ବୈଷ୍ଣବ ଆଲବାର (ଭକ୍ତ)ମାନେ ଭକ୍ତିମୂଳକ ଗୀତ ରଚନା ଆରମ୍ଭ କରନ୍ତି । ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ପଲ୍ଲବ ରାଜାମାନେ ତାମିଲ୍ ଦେଶରେ ରାଜତ୍ୱ କରୁଥିଲେ । ଏମାନେ ସଂସ୍କୃତ ସାହିତ୍ୟର ପୃଷ୍ଠପୋଷକ ଥିବାରୁ ବହୁ ସଂସ୍କୃତ ରଚନା ତାମିଲ୍ ଭାଷାରେ ଅନୂଦିତ ହୋଇଥିଲା । ଏହି ସମୟରେ ଯେଉଁ ଭକ୍ତି ଓ ପ୍ରେମମୂଳକ ଗୀତ ଗୁଡ଼ିକ ଦେଖା ଯାଇଥିଲା, ସେଗୁଡ଼ିକର ରଚୟିତାମାନଙ୍କ ମଧ୍ୟରୁ ତ୍ରିଶଜଣ ଶୈବ ଓ ବାରଜଣ ଆଲବାରଙ୍କ ନାମ ଉଲ୍ଲେଖଯୋଗ୍ୟ । ଶୈବ ଓ ବୈଷ୍ଣବ ସାଧୁମାନେ ତାମିଲ୍ ଅଞ୍ଚଳର ବିଭିନ୍ନ ସ୍ଥାନ ଓ ମନ୍ଦିରମାନଙ୍କୁ ଯାଇ ସେମାନଙ୍କର ଧର୍ମ ଓ ଗୀତର ପ୍ରଚାର କରୁଥିଲେ । ସେମାନଙ୍କ ଦୃଷ୍ଟିରେ ଭଗବାନଙ୍କ ପ୍ରତି ଭକ୍ତି ହେଉଛି ଧର୍ମ । ଭକ୍ତି ଭାବର ତନ୍ମୟତାରେ ସେମାନେ

ଅଜସ୍ର ଗୀତ ରଚନା କରିଥିଲେ । ଗୀତ ଗୁଡ଼ିକରେ ଭାବର ଗମ୍ଭୀରତା ଓ ଅଦ୍ଭୁତ ଅଭିବ୍ୟକ୍ତିର ସ୍ୱାଚ୍ଛନ୍ଦ୍ୟ ପରିଲକ୍ଷିତ ହୁଏ । ଶୈବ ନାୟନମାରଙ୍କର ୭୦୦୦ ଗୀତକୁ 'ଥେବାରମ' କୁହାଯାଏ । ଏଗୁଡ଼ିକ ଦୀର୍ଘକାଳ ଧରି ମନ୍ଦିରମାନଙ୍କରେ ଗୀତ ହୋଇ ଆସୁଛି (୧) ।

ଆଲବାରମାନଙ୍କର ବୈଷ୍ଣବ ଗୀତର ସଂଗ୍ରହକୁ 'ନାଲୟିରଦିବ୍ୟପ୍ରବନ୍ଧମ୍' ବୋଲି କୁହାଯାଏ । ଏଥିରେ ଚାରିହଜାର ବୈଷ୍ଣବ ଗୀତର ସଂଗ୍ରହ ରହିଛି । ପ୍ରଥମ ହଜାର ଗୀତର (ସ୍ତୋତ୍ର) ନାମ 'ଥିରୁମୋଲ୍' । ପରମ ପ୍ରେମିକା ବୈଷ୍ଣବ ରମଣୀ ଆଣ୍ଡାଲ୍‌ଙ୍କ (ଅନ୍ୟ ନାମ ଗୋଦା) ସହିତ ସାତଜଣ ବୈଷ୍ଣବଙ୍କର ଗୀତ ଏଥିରେ ସଂଗୃହୀତ । ଦ୍ୱିତୀୟ ହଜାରକ ସ୍ତୋତ୍ରର ଲେଖକ ହେଉଛନ୍ତି କବି ଥିରୁମଙ୍ଗାଇ ଆଲବାର ଏବଂ ଏ ସଂଗ୍ରହର ନାମ 'ପେରିଆଥିରୁମୋଲ୍' । ତୃତୀୟ ହଜାରକ ଗୀତ ସଂଗ୍ରହର ନାମ 'ଇୟ୍ୟାଲ୍' । ବାରଜଣ ଆଲବାରଙ୍କ ମଧ୍ୟରୁ ପ୍ରଥମ ତିନିଜଣ (ଥିରୁମଙ୍ଗାଇ, ନାମାଲ୍ ପ୍ରଭୃତି) ଏହାର ଲେଖକ । ଚତୁର୍ଥ ହଜାରକର ନାମ 'ଥିରୁବୟୋମୋଲ୍' ଏବଂ ଏହାର କବି ହେଉଛନ୍ତି 'ନାମ୍ମ ଆଲବାର' । ଦାର୍ଶନିକ ଭାବର ଗମ୍ଭୀରତା ଓ ଆଧ୍ୟାତ୍ମିକ ଅନୁଭୂତି ପାଇଁ ଏହା ବିଖ୍ୟାତ ଏବଂ ଏହାକୁ ବେଦର ନିର୍ଯ୍ୟାସ ବୋଲି କୁହାଯାଏ (୨) ।

ଆଲବାରମାନେ ହେଉଛନ୍ତି ରହସ୍ୟବାଦୀ ଧାର୍ମିକ ବୈଷ୍ଣବ । ଏମାନେ ଭକ୍ତିକୁ ଅଧିକ ଉଦାର ଓ ସାର୍ବଜନୀନ କରି ନୂତନ ରୂପ ଦାନ କରିଥିଲେ । ଏମାନେ ଭଗବାନଙ୍କ ସ୍ୱରୂପ ସମ୍ପର୍କରେ ବୈଦିକ ଓ ଆଗମ ମତର ସମନ୍ୱୟ ସାଧନ କରିଛନ୍ତି ଏବଂ ତାଙ୍କର ନିକଟବର୍ତ୍ତୀ ହେବାପାଇଁ ପନ୍ଥା ସ୍ଥିର କରିଛନ୍ତି । ଆଲବାର ସାହିତ୍ୟରେ (ଗୀତ ସଂଗ୍ରହରେ) ପଞ୍ଚ ସ୍ୱରୂପରେ ଭଗବାନଙ୍କର ଗମ୍ଭୀର ଉପାସନାର ସଙ୍କେତ ରହିଛି । ଏ ଉପାସନାରେ କେବଳ ଭକ୍ତି ଓ ଭଗବତ୍ କର୍ମ ନୁହେଁ, ଭକ୍ତର ଶରଣାଗତି ବା ପ୍ରପତ୍ତି ( A radical surrender of oneself ) ପ୍ରୟୋଜନ । ଉପାସ୍ୟଙ୍କର ପଞ୍ଚ ସ୍ୱରୂପ ପାଞ୍ଚରାତ୍ର ଆଗମର ଏକ ବିଶେଷ ତତ୍ତ୍ୱ ଏବଂ ବୈଷ୍ଣବ ଆଲବାରମାନେ ଭଗବାନଙ୍କର ପଞ୍ଚ ସ୍ୱରୂପର ପ୍ରକାଶ, ଯଥା—ବାସୁଦେବ, ବ୍ୟୂହ, ବିଭବ (ଅବତାର), ଅନ୍ତର୍ଯ୍ୟାମୀ ଓ ଅର୍ଚ୍ଚାକୁ (ମୂର୍ତ୍ତିକୁ) ଗ୍ରହଣ କରିଥାନ୍ତି । ସମଗ୍ର ଦୃଷ୍ଟିରେ ଭଗବାନଙ୍କର ଅସ୍ତିତ୍ୱର ସାର୍ବଜନୀନ ଉପଲବ୍ଧି ନ ରହିଲେ ସେମାନଙ୍କ ଦୃଷ୍ଟିରେ ଭକ୍ତିର କିଛି ମୂଲ୍ୟ ନାହିଁ । ପ୍ରପତ୍ତି ବା ଶରଣାଗତି ଆଲବାର ମାନଙ୍କର ଏକକ ପଥ । ଭକ୍ତିରେ ଦୃଢ଼ତା, ବୁଦ୍ଧି (ସତ୍ୟ ମିଥ୍ୟା ନିର୍ଣ୍ଣୟ ପାଇଁ), ଶାସ୍ତ୍ର ଶିକ୍ଷା ଓ ସାଧୁ ସହବାସର ଆବଶ୍ୟକତା ଥିବାରୁ ପ୍ରପତ୍ତି ଭକ୍ତି ଠାରୁ ପୃଥକ୍, କାରଣ ପ୍ରପତ୍ତିରେ ଏ ସମସ୍ତର ପ୍ରୟୋଜନ ନାହିଁ । (ଜ୍ଞାନ, କର୍ମ ଓ ଭକ୍ତି ସାଧନର ଆବଶ୍ୟକତା ନାହିଁ), ଅଥଚ ଏହା ତା'ର ସାର୍ବଜନୀନ ପ୍ରୟୋଗ ହେତୁ ଭକ୍ତିର ଫଳକୁ ମଧ୍ୟ ତୁଲ୍ୟ

(୧) କର୍ଣ୍ଣାଟକ ସଙ୍ଗୀତ ଶୈବମାନଙ୍କର ଗୀତ 'ଥେବାରମ'ରୁ ଜାତ ବୋଲି ମତ ପ୍ରକାଶ ପାଏ ।

Indian Literature, ed. Dr. Nagendra, P.28.

(୨) ତତ୍ରୈବ, ପୃ. ୨୮

ଭାବରେ ଦାନ କରିପାରେ । ସେମାନଙ୍କର (ଆଳବାରମାନଙ୍କର) ବିଶ୍ୱାସ ହେଉଛି : ଯେ ଭଗବାନଙ୍କଠାରେ ସର୍ବତୋଭାବରେ ନିଜକୁ ସମର୍ପଣ କରେ, ତାଙ୍କର ପ୍ରେମ, ଶକ୍ତି ଓ ମହିମାରେ ଗଭୀର ବିଶ୍ୱାସ ସ୍ଥାପନ କରେ, ଭଗବାନ ତାକୁ ରକ୍ଷା କରନ୍ତି । ବୈଦିକ ସାହିତ୍ୟଠାରୁ (୩) ଆରମ୍ଭ କରି ଶ୍ରୀମଦ୍ ଭଗବଦ୍‌ଗୀତା ପର୍ଯ୍ୟନ୍ତ ଏହି ଶରଣାଗତି ବା ପ୍ରପତ୍ତି ତତ୍ତ୍ୱର ସଙ୍କେତ ପାଉଁ । ଭଗବାନଙ୍କଠାରେ ଜୀବର ସର୍ବତୋଭାବରେ ଶରଣାଗତି ସହିତ ଭଗବତ୍ ଅନୁକମ୍ପା ବା ଭଗବତ୍ପ୍ରସାଦ ବିଶେଷ ସମ୍ପୃକ୍ତ । ଭଗବତ୍ ପ୍ରସାଦ ହେତୁ ମନୁଷ୍ୟ ଦିବ୍ୟ ଭାବାପନ୍ନ ହୋଇଥାଏ ଏବଂ ଚରିତରେ ପରମ ଶାନ୍ତି ଓ ଆନନ୍ଦ ଲାଭ କରେ । ଭଗବତ୍ପ୍ରସାଦରୁ ଶରଣାଗତ ଜୀବର ଏହି ଦିବ୍ୟଜ୍ଞାନ ହୋଇଥାଏ ଯେ, ଭଗବାନ ଶରଣାଗତକୁ ରକ୍ଷା କରନ୍ତି । ତୈତ୍ତିରୀୟ ଆରଣ୍ୟକ (ନାରାୟଣାନୁବାକ୍, ୫.୧) ପରମାତ୍ମାଙ୍କଠାରେ ନିଜକୁ ସମର୍ପଣ କରିବା ସମ୍ପର୍କରେ ନିର୍ଦ୍ଦେଶ ଦେଇଛି ।

ଭଗବତ୍ ପ୍ରସାଦ ଲାଭ ନିମିତ୍ତ ପ୍ରପତ୍ତିର ଗୁରୁତ୍ୱ ସମ୍ପର୍କରେ ପାଞ୍ଚରାତ୍ର ଓ ବୈଖାନସ ଆଗମରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି । ସମସ୍ତ କ୍ରିୟାର ମୂଳ ହେଉଛି ଆତ୍ମସମର୍ପଣ । ପାଞ୍ଚରାତ୍ର ସମ୍ପ୍ରଦାୟ ଓ ତା'ର ସମସ୍ତ ଆଗମରେ ଶରଣାଗତିର ଷଡ଼୍‌ବିଧ ସାଧନା ସମ୍ପର୍କରେ କୁହାଯାଇଛି । ଅହିର୍ବୁଧ୍ନ୍ୟ ସଂହିତାରେ ଶରଣାଗତିର ପଞ୍ଚାଙ୍ଗ (୪) କଥା କୁହାଯାଇଛି ।

ପ୍ରଥମ ତିନିଜଣ ଆଳବାର ଭଗବଦ୍ ଦର୍ଶନ ପାଇଁ ଭକ୍ତି ଓ ଶରଣାଗତି କଥା କହିଛନ୍ତି, ଯେଉଁଥିରେ ତିନୋଟି ପ୍ରଣାଳୀ ରହିଛି । ତାହା ହେଉଛି—ପରାଜ୍ଞାନ, ପରାଭକ୍ତି ଓ ପରମଭକ୍ତି । ରାଜବଂଶୀୟ ଭକ୍ତ 'କୁଲଶେଖର' ଭକ୍ତିର ଶ୍ରେଷ୍ଠତ୍ୱ ସମ୍ପର୍କରେ କହିଛନ୍ତି ଯେ ଭକ୍ତି ଏପରି ବସ୍ତୁ ଯାହା ବିରହ, ସ୍ନେହ, ମଧୁର ଓ ବାତ୍ସଲ୍ୟ ଦ୍ୱାରା ଜ୍ଞାନ ଓ ଅନୁଭୂତିରେ ରୂପାନ୍ତରିତ ହୋଇଥାଏ । ଭଗବତ୍ପ୍ରେମରେ ଯେଉଁମାନେ ଆତ୍ମସମର୍ପଣ କରିଛନ୍ତି ସେମାନଙ୍କର ଉପାସନାରେ ତାଙ୍କର (ଭଗବାନଙ୍କର) ସୃଷ୍ଟି ପ୍ରତି ପ୍ରେମ ମଧ୍ୟ ଫୁଟି ଉଠେ । ଯେଉଁମାନେ ଭଗବାନଙ୍କର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱର ଉପାସକ, ସେହି ଭାଗବତ-ମାନେ ମଧ୍ୟ ପୂଜାର୍ହ ।

ପେରିୟର ଆଳବାର ବା ବିଷ୍ଣୁଚିତ୍ତ ବାତ୍ସଲ୍ୟ ଭାବରେ ତନ୍ମୟ ହୋଇ ଶ୍ରୀକୃଷ୍ଣଙ୍କର (ବିଷ୍ଣୁ, ନାରାୟଣ) ମୂର୍ତ୍ତିଟିଏ ନିଜ ଗୃହରେ ସ୍ଥାପନ କରି ପୂଜା କରୁଥିଲେ । ରାଜବଂଶୀୟ ଭକ୍ତ କୁଲଶେଖର ଦେବକୀ ଭାବରେ କୃଷ୍ଣଙ୍କ ସମ୍ପର୍କରେ ନାନାବାତ୍ସା ଗୀତ ଗାଇ ବାତ୍ସଲ୍ୟ

---

(୩) ଋଗ୍‌ବେଦରେ (୧୦. ୧୨୫. ୫) ଅଛି : ଭଗବାନ ନିଜର ଅନୁକମ୍ପା ହେତୁ ଆମ୍ଭାକୁ ପ୍ରତ୍ୟେକ ବସ୍ତୁ ଦାନ କରନ୍ତି ଏବଂ ତାହାକୁ ସନ୍ନ୍ୟାସୀ, ଶକ୍ତିଶାଳୀ ବ୍ୟକ୍ତି ଓ ବ୍ରହ୍ମବେତ୍ତା କୁହାଯାଏ ।

(୪) ଆନୁକୂଲ୍ୟସ୍ୟ ସଂକଳ୍ପଃ, ପ୍ରାତିକୂଲ୍ୟସ୍ୟ ବର୍ଜନମ୍, ଗୋପ୍ତୃତ୍ୱେ ବରଣଂ, ରକ୍ଷିଷ୍ୟତୀତି ବିଶ୍ୱାସଃ, କାର୍ପଣ୍ୟମ୍ । ଅହିର୍ବୁଧ୍ନ୍ୟ ସଂହିତା, ୩୭-୨୫-୨୬ ।

ଭାବରେ ତାଙ୍କର ପୂଜା କରୁଥିଲେ । ତାଙ୍କର ପୂଜା ଓ ପୂର୍ଣ୍ଣ ଆତ୍ମସମର୍ପଣ ମଧ୍ୟରେ ନିଜର କାମନା ବା ଅଭିଳାଷ ବୋଲି କିଛି ନ ଥିଲା । ବିଷ୍ଣୁଚିତ୍ତଙ୍କର ପାଳିତା କନ୍ୟା ବୈଷ୍ଣବ ରମଣୀ ଆଣ୍ଡାଲ୍‌ଙ୍କର ଗୀତରେ ଭଗବାନଙ୍କ ପ୍ରତି ଗଭୀର ପ୍ରେମର ସୂଚନା ମିଳେ । ନିଜର ଉପାସନା ଓ ଆଚାର୍ଯ୍ୟଙ୍କର ସହାୟତାରେ ଏହି ପ୍ରେମ ଚେତନା ଭଗବାନଙ୍କ ସହ ଅପାର୍ଥିବ ମିଳନର ଏକ ଉଦ୍ଧ୍ୱର୍ତମ ସ୍ତରରେ ରୂପାନ୍ତରିତ ହୋଇଛି (ପରମ ପ୍ରେମିକା ରାଧାଙ୍କର ପ୍ରେଷ୍ଠସନ୍ ପ୍ରେଷ୍ଠସାମପି ଶ୍ରୀକୃଷ୍ଣଙ୍କ ପ୍ରତି ଯେପରି) । ଭକ୍ତି ଏଠାରେ ପରମ ଭକ୍ତି, ପ୍ରେମ ବା ପ୍ରୀତିରେ ରୂପାନ୍ତରିତ (୫) ।

ରାୟ ରାମାନନ୍ଦଙ୍କ ପଦ, ବ୍ରଜବୁଲି ଓ ବଙ୍ଗଳାର ବୈଷ୍ଣବ ପଦାବଳୀ ଏବଂ ଉତ୍କଳର ବନମାଳୀ, ଗୋପାଳକୃଷ୍ଣ ପ୍ରଭୃତିଙ୍କ ପଦାବଳୀରେ ଭକ୍ତର ଭଗବତ୍ ପ୍ରସାଦରେ ଆସ୍ଥା, ଆତ୍ମସମର୍ପଣ ଓ ବାତ୍ସଲ୍ୟ ଭାବର ଚିତ୍ର ମିଳିବା ସଙ୍ଗେ ସଙ୍ଗେ ପରମପ୍ରେମ ମୂର୍ତ୍ତି ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତକବିମାନଙ୍କର ଏହି ଗୋପୀଭାବ ଓ ରାଧାଭାବର ପ୍ରତିଫଳନ ପରିଲକ୍ଷିତ ହୁଏ ।

ଆଲବାରଙ୍କ ରଚିତ ଗୀତ ମଧ୍ୟରେ ଶୁଦ୍ଧା ଭକ୍ତିର କାବ୍ୟ ଓ ଗୀତ ପରି ରାଗ ମାର୍ଗର ଭଜନର ପ୍ରାଚୁର୍ଯ୍ୟ ପରିଦୃଷ୍ଟ ହୁଏ । ଦିବ୍ୟ ଭାବାବେଶରେ କବିମାନେ ବିଷ୍ଣୁଙ୍କର ଯେଉଁ ସବୁ ବର୍ଣ୍ଣନା କରିଛନ୍ତି, ସେଥିରେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଲୀଳାର ନାନା ଉଲ୍ଲେଖ ରହିଛି । ଗୀତଗୁଡ଼ିକ ମଧ୍ୟରେ କୃଷ୍ଣପ୍ରିୟତମା ଜଣେ ପ୍ରଧାନା ଗୋପୀର ଉଲ୍ଲେଖ ରହିଛି, ତା'ର ନାମ 'ନାପିନ୍ନାଇ', ଯେ କି ଲକ୍ଷ୍ମୀଙ୍କର ଅବତାର (୬) । ବୃଷବଶୀକରଣ ଉତ୍ସବରେ ଶ୍ରୀକୃଷ୍ଣ ଉତ୍‌କ୍ଷିପ୍ତ ବୃଷକୁ ବଶୀଭୂତ କରି ଗୋପାଙ୍ଗନା ନାପିନ୍ନାଇକୁ ପ୍ରେମିକା ରୂପେ ଲାଭ କରିଥିବାର ଆଲବାର ଗୀତରେ ଉଲ୍ଲେଖ ଅଛି । ଏହି ନାପିନ୍ନାଇ କୃଷ୍ଣପ୍ରିୟା ରାଧାଙ୍କ ପରି ସୌନ୍ଦର୍ଯ୍ୟର ପ୍ରତିମା, ଗୌରୀ ଓ ଗଜଗାମିନୀ । ସେ ଗୋପୀମାନଙ୍କ ମଧ୍ୟରେ ଶ୍ରେଷ୍ଠା । ଶ୍ରୀକୃଷ୍ଣଙ୍କର ପ୍ରିୟତମା ହୋଇଥିବାରୁ ତାଙ୍କୁ ପରବର୍ତ୍ତୀ କାଳରେ ବୈଷ୍ଣବ ସାହିତ୍ୟର ରାଧା ମନେ କରାଯିବା କିଛି ଅସ୍ୱାଭାବିକ ନୁହେଁ (୭) ।

(୫) K. C. Varadachari, Some Contributions of Alvars to the Philosophy of Bhakti
A.B.O.R.I, Silver Jubilee Volume, No. XXIII, PP.621-630

(୬) O Lady Nappinnai, with tender breasts like unto little cups, with lips of red and slender waist, Lakshmi, awake from sleep.
J. S. M. Hooper : Hymns of the Alvars, Poem of Andal.
ଡଃ ଶଶିଭୂଷଣ ଦାଶଗୁପ୍ତ, ଶ୍ରୀରାଧାର କ୍ରମବିକାଶ, ପୃ. ୧୬୬ରୁ ଉଦ୍ଧୃତ ।

(୭) ଡଃ ଦାଶଗୁପ୍ତ, ଶ୍ରୀରାଧାର କ୍ରମବିକାଶ, ୩ୟ ସଂ., ପୃ. ୧୬୧-୧୬୩

**କନ୍ନଡ଼ ସାହିତ୍ୟରେ :**

ରାମାନୁଜ ଓ ମଧ୍ୱଙ୍କ ହେତୁ କନ୍ନଡ଼ରେ ଜନସାଧାରଣଙ୍କର କଲ୍ୟାଣ ପାଇଁ ଭକ୍ତିବାଦର ବିକାଶ ଘଟିଥିଲା । ସାମାଜିକ ଜୀବନରେ ତଳସ୍ତରର ଲୋକମାନଙ୍କ ଉପରେ ବ୍ରାହ୍ମଣ-ମାନଙ୍କର ଅଯଥା ଆଧିପତ୍ୟ ଏବଂ ସାମାଜିକ ଅନୈକ୍ୟରେ ବ୍ରାହ୍ମଣ ବାସବେଶ୍ୱର ଅସନ୍ତୁଷ୍ଟ ହୋଇ ଶୈବ ଆଗମ ଭିତ୍ତିରେ 'ବୀର ଶୈବ ମତ' ପ୍ରବର୍ତ୍ତନ କରିଥିଲେ । ଏଥିରେ ସେ ଉପାସ୍ୟ ଶିବଙ୍କ ପ୍ରତି ଭକ୍ତି, ବଚନ ଓ କର୍ତ୍ତବ୍ୟରେ ତ୍ୟାଗ ଏବଂ ଉପାସ୍ୟଙ୍କଠାରେ ପୂର୍ଣ୍ଣ ଆତ୍ମସମର୍ପଣ ଉପରେ ଗୁରୁତ୍ୱ ଦେଇଛନ୍ତି । ଦ୍ୱାଦଶ ଶତକରେ ଶିବ ଶରଣମାନେ (ବୀର ଶୈବ ମତର ଭକ୍ତ) ସରଳ ଭାଷାରେ ଅନେକ ଗୀତିଧର୍ମୀ ଗଦ୍ୟ ବଚନକା ରଚନା କରିଯାଇଛନ୍ତି । ସେଗୁଡ଼ିକ ସଙ୍ଗୀତ ରୂପରେ ଗାନ କରାଯାଉଥିଲା । ବର୍ତ୍ତମାନ ଶତକରେ ମଧ୍ୟ ସେଗୁଡ଼ିକର କାବ୍ୟିକ ସୌନ୍ଦର୍ଯ୍ୟ, ଛନ୍ଦ ଓ ସାଙ୍ଗୀତିକ ମାଧୁର୍ଯ୍ୟ ଲକ୍ଷ୍ୟ କରାଯାଏ ।

ମଧ୍ୱ ଓ ତାଙ୍କର ଅନୁଗାମୀମାନେ କନ୍ନଡ଼ ଭାଷାକୁ ତାଙ୍କର ପ୍ରଚାରର ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ମଧ୍ୱଙ୍କ ପରେ ତୃତୀୟ ଆଚାର୍ଯ୍ୟ ନରହରି ତୀର୍ଥ କନ୍ନଡ଼ରେ ବହୁ କୃଷ୍ଣ ସ୍ତୁତି ରଚନା କରିଯାଇଛନ୍ତି । ବିଷ୍ଣୁଙ୍କର ସେବକ 'ହରିଦାସ' ନାମରେ ପରିଚିତ । ମଧ୍ୱଙ୍କର ଅନୁଗାମୀମାନେ ବିଷ୍ଣୁଙ୍କର (କୃଷ୍ଣ) ଅନୁକମ୍ପା ଓ ତାଙ୍କର ଶ୍ରେଷ୍ଠତ୍ୱ ବହୁ ଗାଥା ଗୀତିରେ ପ୍ରକାଶ କରିଯାଇଛନ୍ତି, ଯେଉଁ ଗୁଡ଼ିକ କୀର୍ତ୍ତନ ନାମରେ ପରିଚିତ । କାବେରୀ ଠାରୁ କୃଷ୍ଣାନଦୀ ଅଞ୍ଚଳ ମଧ୍ୟରେ ଏହି କୀର୍ତ୍ତନ ପ୍ରେମୀ ହରିଦାସମାନେ ସେତେବେଳେ ବ୍ରାହ୍ମଣ-ମାନଙ୍କ ଦ୍ୱାରା ଘୃଣାରେ 'ଦାଶକୂଟ' ନାମରେ ଅଭିହିତ ହେଉଥିଲେ । ବୀର ଶୈବ-ମାନଙ୍କର ଗୀତିଧର୍ମୀ ଗଦ୍ୟ ବଚନକା ଓ ହରିଦାସ ମାନଙ୍କର ଦାଶକୂଟ କୀର୍ତ୍ତନ ଗୁଡ଼ିକ ମାନବିକ ମୂଲ୍ୟବୋଧ ତଥା ଅନୁଭୂତିରେ ଉଜ୍ଜ୍ୱଳ (ବୈଷ୍ଣବ କାବ୍ୟ ଓ ପଦାବଳୀ ପରି) । 'ଦାସ ଦର୍ଶନ' ଅନୁସାରେ ଆଶା ଓ ଆଲୋକର ଉଦୟରେ ମନର ଅନ୍ଧକାର ଦୂର ହୋଇଯାଏ ଓ ଜୀବନର ମୂଲ୍ୟ ଉପଲବ୍ଧ ହୁଏ । ମାନବ ଜନ୍ମକୁ କେବଳ ମାୟା ବୋଲି ନ ଭାବି ଏହାକୁ ଜୀବନରେ ପରମ ଦିବ୍ୟାନନ୍ଦ (ସୁଖ) ଲାଭର ମାଧ୍ୟମ ରୂପେ ଗ୍ରହଣ କରାଯାଏ ।

ହରିଦାସ ମାନଙ୍କ ମଧ୍ୟରେ ଲୋକପ୍ରିୟ ଭକ୍ତ ପୁରନ୍ଦର ଦାସ କହନ୍ତି, "ମନୁଷ୍ୟକୁ ଜୀବନରେ ଅହଂକାରଶୂନ୍ୟ ହୋଇ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ହେବ । ସଂସାରର ଅହଂକାର ଭିତରେ ସେ ରହିଥିଲେ ମଧ୍ୟ ପଦ୍ମ ପତ୍ରରେ ଜଳବିନ୍ଦୁ ପରି ତାକୁ ନିର୍ଲିପ୍ତ ରହିବାକୁ ପଡ଼ିବ ।" ସେ ଅବସ୍ଥାରେ ଇନ୍ଦ୍ରିୟ ଉତ୍ତେଜନା ତା ମନରେ କୌଣସି ବାଧା ଆଣି ପହଞ୍ଚାଇବ ନାହିଁ । କାରଣ ଜଗତରେ ପରିପୂର୍ଣ୍ଣ ସେହି ପରମ ପ୍ରେମ ତା'ର ସମସ୍ତ ରୂପରେ (ବନ୍ଧୁ ପ୍ରୀତି, ସନ୍ତାନବାତ୍ସଲ୍ୟ, ଭ୍ରାତୃ ପ୍ରେମ, ପତ୍ନୀ ପ୍ରେମ ଇତ୍ୟାଦି) ସେହି ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଧାବିତ ହେବ (୮) । ନିଃସନ୍ତାନ ଭକ୍ତ ବୈକୁଣ୍ଠ ଦାସ 'କେଶବ ସ୍ୱାମୀ'ଙ୍କୁ ଶିଶୁ ରୂପରେ ଦର୍ଶନ କରି ବାତ୍ସଲ୍ୟର ମାଧୁର୍ଯ୍ୟ ଆସ୍ୱାଦନ କରୁଥିଲେ ।

(୮) 'ସା ତ୍ୱ ପରମପ୍ରେମରୂପା', ନାରଦୀୟ ସୂକ୍ତ

ପୁରନ୍ଦର ଦାସଙ୍କର ଗୋଟିଏ ଗୀତରେ ଭଗବାନଙ୍କ ପ୍ରତି ତାଙ୍କର ଗୋପୀସୁଲଭ ପ୍ରେମ ପରିସ୍ଫୁଟ ହୋଇଛି । ସେ କହିଛନ୍ତି ଯେ ଭଗବାନ ବିଠ୍ଠଳଙ୍କୁ ସର୍ବ ଆଭରଣରେ ଭୂଷିତ କରି ତାଙ୍କୁ ବାହୁରେ ଆଶ୍ଳେଷ କରିବାକୁ ଚାହାନ୍ତି । ଅନ୍ୟ ଏକ ଗୀତରେ ସେ ମାତୃଭାବ ପ୍ରକାଶ କରି ଅଗଣାରୁ ବାହାରକୁ ଯିବା ପାଇଁ ଶିଶୁରୂପୀ ଭଗବାନ 'ରଙ୍ଗ'ଙ୍କୁ ବାରଣ କରିଛନ୍ତି, କାଳେ କେହି ତାଙ୍କୁ ଅପହରଣ କରି ନେଇଯିବ । ପୁଣି ଗୋଟିଏ ଗୀତରେ କହିଛନ୍ତି—"ଗୋବିନ୍ଦ, ଗୁରୁଣ୍ଡି ଗୁରୁଣ୍ଡି ଆସ, ପଦ୍ମନାଭ, ଦୟାକରି ମୋର ଘରକୁ ଆସ ।"

ପରମ ପ୍ରେମିକା (ଭକ୍ତ) ମହାଦେବୀୟକ୍କ ଭଗବାନଙ୍କୁ ସ୍ୱାମୀ ମନେ କରି କହିଛନ୍ତି, "ମୋର ସ୍ୱାମୀ ମୋ ଘରକୁ ଆସିଛନ୍ତି । ଭଉଣୀମାନେ, ସମସ୍ତେ ଗହଣାଗାଣ୍ଠିରେ ଭୂଷିତ ହୁଅ" । ବିରହିଣୀ ରାଧା ବା ଗୋପୀଙ୍କ ପରି ଅନ୍ୟ ଏକ ଗୀତରେ କହିଛନ୍ତି, "ହେ ଭ୍ରମରମାନେ, ମୁଁ ତୁମ ସମସ୍ତଙ୍କୁ ପ୍ରାର୍ଥନା କରୁଛି : ତୁମ୍ଭେମାନେ ମୋର ପ୍ରିୟ (ସ୍ୱାମୀ) 'ଚେନ୍ନମଲ୍ଲିକାର୍ଜୁନ'ଙ୍କୁ ଦେଖିଛ କି ? ମୋତେ ତାଙ୍କୁ ଦର୍ଶନ କରାଅ" । ଦାସମାନେ ନାନା ରୂପରେ (ସଖା, ପୁତ୍ର, ସ୍ୱାମୀ, ପ୍ରେମିକ) ଭଗବାନ ବିଷ୍ଣୁଙ୍କ (କୃଷ୍ଣ) ଲୀଳାରେ ନିଜକୁ ନିମଜ୍ଜିତ କରି ସାଯୁଜ୍ୟ, ସାମୀପ୍ୟ ଓ ସାଲୋକ୍ୟର ଅନୁଭୂତି ଲାଭ କରୁଥିଲେ (୯) ।

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ପରି କନ୍ନଡ଼ରେ ସଙ୍ଗୀତ, ଅଳଙ୍କାର ଓ ଶୃଙ୍ଗାର ରସ ପ୍ରଧାନ କାବ୍ୟ ମଧ୍ୟ ରଚିତ ହୋଇଛି । କୁମାର ବ୍ୟାସଙ୍କର ଭାରତ କାହାଣୀ ଏଠାରେ ଉଲ୍ଲେଖଯୋଗ୍ୟ । ଭାମିନୀ ଶତପଦୀ ଛନ୍ଦରେ କୃଷ୍ଣଙ୍କୁ ନାୟକ କରାଯାଇ ଏ କାବ୍ୟ ରଚିତ । ଏବେ ମଧ୍ୟ ସଙ୍ଗୀତଜ୍ଞମାନେ ଏହାର କବିତା ଗାନ କରିଥାନ୍ତି । ସେହିପରି ମଧୁର ସଙ୍ଗୀତ ପ୍ରଧାନ କବିତାରେ ଲକ୍ଷ୍ମୀଶ ତାଙ୍କର ଜୈମିନି ଭାରତ ରଚନା କରିଛନ୍ତି । ଏହା ଏତେ ଲୋକପ୍ରିୟ ଯେ ଆଜି ମଧ୍ୟ ଲୋକେ ଏହା ଗାନ କରିଥାନ୍ତି ।

**ମରାଠୀ ସାହିତ୍ୟରେ :**

ମରାଠୀ ସାହିତ୍ୟରେ ଯାଦବ (୧୧୮୯-୧୩୨୦) ଓ ବାହାମନୀ (୧୩୨୦-୧୬୦୦) ଶାସନ କାଳରେ ଭଗବାନ ଶ୍ରୀକୃଷ୍ଣ ଚରିତ ଓ ଲୀଳାକୁ ଭିତ୍ତି କରି ମହାନୁଭବ ଧର୍ମ ସମ୍ପ୍ରଦାୟର ସାଧକ କବିଙ୍କ ଦ୍ୱାରା ଗଦ୍ୟ ଓ ପଦ୍ୟରେ ବିଭିନ୍ନ ରଚନା ଆତ୍ମ ପ୍ରକାଶ କରିଥିଲା । ସାଧାରଣ ଭକ୍ତଙ୍କ ପାଇଁ ମ୍ହେଇଭଟ୍ଟ 'ଲୀଳା ଚରିତ' ଓ 'ଗୋବିନ୍ଦ ପ୍ରଭୁ ଚରିତ' ରଚନା କରିଥିଲେ । ଭଗବାନ କୃଷ୍ଣଙ୍କ ଚରିତକୁ ଭିତ୍ତି କରି ସାତଟି ଦୀର୍ଘ କାବ୍ୟ (ଓୱୀ ଛନ୍ଦରେ) ରଚିତ ହୋଇଥିଲା । ମହାନୁଭବ ସମ୍ପ୍ରଦାୟର ନାରୀ ଶିଷ୍ୟା ମହାଦୈସା

(୯) K. C. Kundangar, "Devotional Lyrics in Kannada Literature," A Volume of Studies in Indology, Ed. S. M. Katre, Oriental Book Agency, Poona, PP. 267-277

ବହୁ ଧାର୍ମିକ ସଙ୍ଗୀତ ରଚନା କରିଥିଲେ । ଏ ଗୁଡ଼ିକରେ ଭକ୍ତ ପ୍ରାଣର ସରଳ ଭକ୍ତି-ଉଚ୍ଛ୍ୱାସ ପରିଦୃଷ୍ଟ ହୁଏ ।

ଶ୍ରୀମଦ୍‌ଭଗବଦ୍‌ଗୀତାର ଜ୍ଞାନେଶ୍ୱରୀ ଭାଷ୍ୟକାର ସନ୍ଥ ଜ୍ଞାନେଶ୍ୱର ମରାଠୀ ସାହିତ୍ୟ ଓ ଦାର୍ଶନିକ ପ୍ରତିଭାର ସର୍ବଶ୍ରେଷ୍ଠ ନିଦର୍ଶନ । ଭାବଗାମ୍ଭୀର୍ଯ୍ୟ, ଭାଷାର କୋମଳତା, ଲାଳିତ୍ୟ ଓ ଚିତ୍ରକଳ୍ପର ବୈଚିତ୍ର୍ୟ ହେତୁ ଅତି ଲୋକପ୍ରିୟ ତାଙ୍କର 'ଅନୁଭବାମୃତ' ଓ 'ଜ୍ଞାନେଶ୍ୱରୀ' (ଶ୍ରୀଗୀତାର ମରାଠୀ ଭାଷ୍ୟ) ଶତାବ୍ଦୀ ଶତାବ୍ଦୀ ଧରି ମରାଠୀ ଚିନ୍ତାଧାରାକୁ ନିୟନ୍ତ୍ରିତ ତଥା ପରିବର୍ତ୍ତିତ କରି ଆସିଛି । ଗୀତାର 'ଭକ୍ତିଯୋଗ' ଭିତ୍ତିରେ ଈଶ୍ୱରଙ୍କ ସମକ୍ଷରେ ସମାଜର ବିଭିନ୍ନ ଶ୍ରେଣୀର ସମତାର ଉଦ୍‌ଘୋଷଣା ମହାରାଷ୍ଟ୍ରର ବିଭିନ୍ନ ଜାତି ଓ ଗୋଷ୍ଠୀ ଚିତ୍ତରେ ଆଲୋଡ଼ନ ସୃଷ୍ଟି କରିଥିଲା । ବିଭିନ୍ନ ଗୋଷ୍ଠୀରୁ ବହୁ ସାଧୁ, ଗାୟକ ବାହାରି ଜ୍ଞାନଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଭକ୍ତିର ମହିମା ପ୍ରଚାର କଲେ, ଫଳରେ 'ଓ୍ୱାରକରି ପନ୍ଥ' ନାମରେ ଏକ ଭକ୍ତି ମତର ଆବିର୍ଭାବ ହୋଇଥିଲା ।

ବାହମନୀ ଶାସନ କାଳରେ ମୁସଲମାନ ମାନଙ୍କର ପ୍ରବଳ ଅତ୍ୟାଚାର ଓ ଧର୍ମାନ୍ତର ବିଭୀଷିକା ମଧ୍ୟରେ କେବଳ ଧାର୍ମିକ ଚେତନାହିଁ ଲୋକମାନଙ୍କର ମନର ବଳକୁ ରକ୍ଷା କରିଥିଲା । ଏହି ସମୟରେ ଏକନାଥ ଶ୍ରୀମଦ୍‌ଭାଗବତର ଏକାଦଶ ସ୍କନ୍ଧର ଭାଷ୍ୟ ରଚନା କରିଥିଲେ ଏବଂ ଭାଗବତ ଧର୍ମ ପ୍ରଚାର କରି ଭକ୍ତି ଧର୍ମ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରିଥିଲେ । ଭାଗବତ ଧର୍ମର ଶେଷ ବ୍ୟାଖ୍ୟାକାର ହେଉଛନ୍ତି ସପ୍ତଦଶ ଶତାବ୍ଦୀର ସନ୍ଥ ତୁକାରାମ । ଗୀତି ମାଧୁର୍ଯ୍ୟପୂର୍ଣ୍ଣ ତାଙ୍କର 'ଅଭଙ୍ଗ' ଗୁଡ଼ିକରେ ଭକ୍ତିମାର୍ଗର ନିର୍ଯ୍ୟାସ ରହିଛି । ଭକ୍ତି ଗୀତି ଗୁଡ଼ିକରେ ଭଗବାନଙ୍କ ପ୍ରତି ତାଙ୍କର ବ୍ୟକ୍ତିଗତ ଭାବାବେଗର ଯେପରି ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ରହିଛି, ମରାଠୀ କବିତାରେ ତା'ର ତୁଳନା ନାହିଁ । ତାଙ୍କର ମାନବିକ ଦୃଷ୍ଟିଭଙ୍ଗୀ, ଭକ୍ତିସୁଲଭ ନମ୍ରମନସ୍କତା ଓ ଭାଷାର ପ୍ରାଞ୍ଜଳତା ହେତୁ ଅଭଙ୍ଗ ଗୁଡ଼ିକ ଲୋକ ଚିତ୍ତରେ ସ୍ଥାୟୀ ମୁଦ୍ରା ଅଙ୍କନ କରିଛି ।

ପେଶବାଙ୍କ ରାଜତ୍ୱ କାଳର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ହରିବିଜୟ, ରାମବିଜୟ ଓ ପାଣ୍ଡବ ପ୍ରତାପ ପ୍ରଭୃତି ଭକ୍ତିମୂଳକ ବର୍ଣ୍ଣନାତ୍ମକ କାବ୍ୟ ରଚନା କରିଥିଲେ । ଏହି ସମୟରେ ସଂସ୍କୃତ କାବ୍ୟ, ପୁରାଣ ଓ ଧର୍ମ ଶାସ୍ତ୍ରର ଅନ୍ୟତମ ପଣ୍ଡିତ ମୋରୋପନ୍ତ (ମୟୂର ପଣ୍ଡିତ) ଚିତ୍ତାକର୍ଷକ ଶୈଳୀରେ ସୁବୋଧ ଭାଷାରେ ଭାଗବତ, ହରିବଂଶ ଓ ରାମାୟଣର ପ୍ରସିଦ୍ଧ କାହାଣୀକୁ ଭିତ୍ତି କରି ପଦ୍ୟ କାହାଣୀ (Verse Stories) ରଚନା କରିଥିଲେ । ସେ ତାଙ୍କର 'କୃଷ୍ଣ ବିଜୟ'ରେ ଶ୍ରୀକୃଷ୍ଣ ଚରିତ ଏବଂ 'ମନ୍ତ୍ର ଭାଗବତ'ରେ ଭାଗବତର କାହାଣୀ ବର୍ଣ୍ଣନା କରିଛନ୍ତି । ତା'ଛଡ଼ା କେତେକ ପଦ୍ୟ ରଚନାରେ ତାଙ୍କର ଚିତ୍ରବନ୍ଧ ଶୈଳୀ (ବର୍ଣ୍ଣମାଳାନୁକ୍ରମିକ ଓ ଅନ୍ୟ ପ୍ରକାର) ପରିଲକ୍ଷିତ ହୁଏ (ଓଡ଼ିଶାର ରୀତିକବିମାନଙ୍କ ରଚନା ପରି) (୧୦) ।

(୧୦) Dr. Nagendra, Indian Literature ( Marathi ), PP. 238-251

**ମଲୟାଲମ୍ ସାହିତ୍ୟରେ :**

ପ୍ରାଚୀନ ଶୁଦ୍ଧ ମଲୟାଲମ୍ ଭାଷାରେ (ପଟ) ରଚିତ ସଙ୍ଗୀତ-ଗୁଡ଼ିକ (ଭଦ୍ରକାଳୀ ପଟ୍ଟୁ, ଥିୟାଟ୍ଟୁ ପଟ୍ଟୁ, ପୁଲୁବନ ପଟ୍ଟୁ, ଶାସ୍ତକାଳୀ ପଟ୍ଟୁ, ତୋଟ୍ଟମ ପଟ୍ଟୁ) କେରଳର ବିଭିନ୍ନ ସାମାଜିକ ଉତ୍ସବ ଓ ଧର୍ମ କାର୍ଯ୍ୟରେ ଗାନ କରାଯାଉଥିଲା । ପଞ୍ଚଦଶ ଶତକରେ ରାଜା ଉଦୟବର୍ମଙ୍କର ଜଣେ ଭକ୍ତକବି କୃଷ୍ଣଙ୍କ ଜନ୍ମରୁ ମହାପ୍ରସ୍ଥାଣ ପର୍ଯ୍ୟନ୍ତ ଭାଗବତର ବିଷୟବସ୍ତୁ ଅବଲମ୍ବନରେ 'କୃଷ୍ଣ ଗାଥା' ରଚନା କରିଥିଲେ । ମଲୟାଲମ୍ ଓ ସଂସ୍କୃତ ଶବ୍ଦର ମିଶ୍ରଣ ଫଳରେ ଜାତ ହୋଇଥିବା 'ମଣି ପ୍ରବାଳମ୍' ନାମକ ସାହିତ୍ୟିକ ଭାଷାରେ ଏ ଗାଥା ରଚିତ । ଗାଥାର ପାରମ୍ପରିକ ଅର୍ଥ ସଙ୍ଗୀତ; କିନ୍ତୁ ମଲୟାଲମ୍ ଭାଷାରେ ଗାଥା ଏକ ପ୍ରକାର ଛନ୍ଦକୁ ବୁଝାଏ, ଯା'ର ନାମ ମଞ୍ଜରୀ । ପ୍ରଚଳିତ ଲୋକବୋଧ ମଲୟାଲମ୍ ଓ ସଂସ୍କୃତ ଶବ୍ଦର ମିଶ୍ରଣରେ ଏ ଗାଥାରେ ୪୭ଟି କାହାଣୀ ରଚିତ ହୋଇଛି । ଏଥିରେ ନାନାବିଧ ରସ ମୁଖ୍ୟତଃ ଶୃଙ୍ଗାର ରସ ପ୍ରଧାନ ଅଳଙ୍କାରପୂର୍ଣ୍ଣ ବର୍ଣ୍ଣନା ଶୈଳୀ (ଓଡ଼ିଆ ରୀତିକାବ୍ୟ ପରି) ଲକ୍ଷିତ ହୁଏ । ରାସକ୍ରୀଡ଼ା ପ୍ରସଙ୍ଗର କେତେକ ଅଂଶରେ କବି ସଂଯମର ସୀମା ଅତିକ୍ରମ କରିଛନ୍ତି ।

ଷୋଡ଼ଶ ଶତାବ୍ଦୀରେ ଏଲୁତ୍ତାଚାନ ମଲୟାଲମ୍ ସାହିତ୍ୟରେ ଏକପ୍ରକାର ଲୋକପ୍ରିୟ ପଦ୍ୟରୂପ ପ୍ରବର୍ତ୍ତନ କରିଥିଲେ, ଯା'ର ନାମ 'କିଲିପ୍‌ପଟ୍ଟୁ' ଅର୍ଥାତ୍ ଶୁଆ ଗୀତ । ଏଥିରେ କେକ, କାକଳି, କଳକଣ୍ଠ ଓ ଅନ୍ୟାନ୍ୟ ଏହି ଛନ୍ଦ ଗୁଡ଼ିକୁ କବି ନିଜର ପ୍ରଚେଷ୍ଟା ବଳରେ ଲୋକପ୍ରିୟ କରି ପାରିଥିଲେ । ଏହି ଛନ୍ଦ ଗୁଡ଼ିକ ଯୋଗୁଁ କିଲିପ୍‌ପଟ୍ଟୁର ସାଙ୍ଗୀତିକ ଆବେଦନ ବଢି ଉଠିଥିଲା । ଏଲୁତ୍ତାଚାନ ସଂସ୍କୃତ ଓ ତାମିଲ ଭାଷାରେ ଜଣେ ପଣ୍ଡିତ ଓ ପ୍ରତିଭାଶାଳୀ ବ୍ୟକ୍ତି ଥିଲେ । ସେ ଅଧ୍ୟାତ୍ମ ରାମାୟଣ, ଭାରତମ୍ ଓ ଭାଗବତମ୍ ରଚନା କରିବା ସଙ୍ଗେ ସଙ୍ଗେ ଭାଷାଭାଗବତମ୍ ଓ ହରିନାମ ସଂକୀର୍ତ୍ତନମ୍ ମଧ୍ୟ ରଚନା କରିଛନ୍ତି ।

ମଲୟାଲମ୍‌ରେ ଅଟ୍ଟକଥା ହେଉଛି ଆଉ ଏକ ପ୍ରକାର ରଚନା, ଯାହା କେରଳର ବିଖ୍ୟାତ ଲୋକନୃତ୍ୟ କଥାକଳିରେ (କଥାଭିନୟ) ବ୍ୟବହୃତ ହୁଏ । ଜୟଦେବଙ୍କର ଗୀତଗୋବିନ୍ଦ ଆଦର୍ଶରେ ଏ ଗୁଡ଼ିକ ରଚିତ । ଗୀତଗୋବିନ୍ଦରେ ଶ୍ଳୋକ ଓ ଗୀତ ଥିଲା ପରି ଏଥିରେ କବିଙ୍କର ବାକ୍ୟ ଶ୍ଳୋକ ଆକାରରେ ଓ ଚରିତ୍ରମାନଙ୍କର ବାକ୍ୟ ସଙ୍ଗୀତ ରୂପରେ ରଚିତ । ଅଟ୍ଟକଥା ମଧ୍ୟରେ ପ୍ରଥମେ 'କୃଷ୍ଣନାଟମ୍' ଏବଂ କୃଷ୍ଣନାଟମ୍ ଆଦର୍ଶରେ 'ରାମନାଟମ୍' ରଚିତ ହୋଇଥିଲା (୧୧) ।

**ତେଲୁଗୁ ସାହିତ୍ୟରେ :**

ଆନ୍ଧ୍ରରେ (ତେଲେଙ୍ଗାନା) ପ୍ରେମପ୍ରଧାନ ବିଖ୍ୟାତ ମହାକାବ୍ୟ, ପ୍ରବନ୍ଧ (ରୀତିକାବ୍ୟ) ଓ ଶତକ ମାନ ରଚିତ ହୋଇଛି । ତେଲୁଗୁ ଭାଷାରେ ରଚିତ ପଞ୍ଚମହାକାବ୍ୟ ମଧ୍ୟରେ ବିଜୟ ନଗର ରାଜା କୃଷ୍ଣଦେବ ରାୟଙ୍କର 'ଆମୁକ୍ତ ମାଲ୍ୟଦା' ବା 'ବିଷ୍ଣୁଚିତ୍ତିୟମ୍'

---

(୧୧) ତତ୍ରୈବ, ପୃ. ୧୯୫-୨୧୮

ଏକ ଉଲ୍ଲେଖଯୋଗ୍ୟ ମହାକାବ୍ୟ । କୃଷ୍ଣଦେବ ରାୟ ବୈଷ୍ଣବ ଧର୍ମର ପୁନରଭ୍ୟୁଦୟ କାଳରେ ଜୀବିତ ଥିଲେ ଏବଂ ନିଜେ ଥିଲେ ଜଣେ ବୈଷ୍ଣବ । 'ଆମୁକ୍ତ ମାଲ୍ୟଦା'ର ରଚନା ମୂଳରେ ରହିଛି ବୈଷ୍ଣବୀୟ ପ୍ରେରଣା । ଦକ୍ଷିଣ ଦେଶର କୌଣସି ବୈଷ୍ଣବ ମନ୍ଦିରର ଦେବତା ଓ ମାଲ୍ୟ ପ୍ରଦାନ କରୁଥିବା ଗୋଟିଏ ବାଳିକାର ପ୍ରେମକୁ ଭିତ୍ତି କରି ଏ ମହାକାବ୍ୟ ରଚିତ (୧୨) ।

ସପ୍ତଦଶ ଶତାବ୍ଦୀର ଶେଷ ଓ ଅଷ୍ଟାଦଶ ଶତାବ୍ଦୀରେ ଆନ୍ଧ୍ରର ବିଭିନ୍ନ ପ୍ରତିଷ୍ଠିତ ଦେବତା ଓ ଅନ୍ୟ ବିଷୟକୁ କେନ୍ଦ୍ର କରି ବହୁ 'ଶତକମ୍' ରଚିତ ହୋଇଥିଲା । 'ଭଦ୍ରାଦ୍ରି ରାମଶତକମ୍', 'ଆନ୍ଧ୍ରନାୟକ ଶତକମ୍' ଓ 'ସିଂହାଦ୍ରି ନାରସିଂହ ଶତକମ୍' ଗୁଡ଼ିକ ଭକ୍ତି ପ୍ରଧାନ । ବୃହସ୍ପତିଙ୍କ ପତ୍ନୀ ତାରା ଓ ଶିଷ୍ୟ ଚନ୍ଦ୍ରଙ୍କ ପ୍ରେମ ପ୍ରସଙ୍ଗକୁ ଭିତ୍ତି କରି ମଦୁରାର ଶେଷଦେବ ଭେଙ୍କଟ ପତି (୧୮ଶ ଶତକ) 'ତାରା ଶଶାଙ୍କ ବିଜୟମ୍' ନାମରେ ଏକ ଲୋକପ୍ରିୟ ପ୍ରବନ୍ଧ (କାବ୍ୟ) ରଚନା କରିଥିଲେ ।

କଞ୍ଚରେନ୍ଲ ଗୋପାନ୍ନା ତେଲୁଗୁରେ ବହୁ 'କୀର୍ତ୍ତିନମ୍' ସଙ୍ଗୀତ ରଚନା କରିଥିଲେ ଏବଂ ବିଭିନ୍ନ ରାଗ ଓ ତାଳରେ ଏ ଗୁଡ଼ିକ ଆନ୍ଧ୍ରରେ ଗୀତ ହେଉଥିଲା । ୧୬ଶ ଶତକରେ ତାଞ୍ଜୋରର କବି କ୍ଷେତ୍ରୟାଙ୍କର ଶୃଙ୍ଗାର ବ୍ୟଞ୍ଜକ 'ମୁଭ୍ଭ ଗୋପାଳ ପଦମ୍' ଗୀତଗୋବିନ୍ଦ ଢାଞ୍ଚାରେ ରଚିତ ହୋଇଥିଲା । ଉଚ୍ଚାଙ୍ଗ ସଙ୍ଗୀତ ଶିଳ୍ପୀମାନେ କ୍ଷେତ୍ରୟାଙ୍କର ଏ ପଦମ୍ ଶ୍ରଦ୍ଧାର ସହି ଗାନ କରନ୍ତି ।

ଅଷ୍ଟାଦଶ ଶତକରେ ତାଞ୍ଜୋର ତଥା ଭାରତର ବିଖ୍ୟାତ ରାମଭକ୍ତ ସଙ୍ଗୀତଜ୍ଞ ତ୍ୟାଗରାଜ ରାମଚନ୍ଦ୍ରଙ୍କୁ ଲକ୍ଷ୍ୟ କରି ଦୈନନ୍ଦିନ କଥିତ ତେଲୁଗୁ ଭାଷାରେ ବହୁତ ସଙ୍ଗୀତ ରଚନା କରିଛନ୍ତି । ସଙ୍ଗୀତ ଗୁଡ଼ିକରେ ଉଚ୍ଚ ସାହିତ୍ୟିକ ମୂଲ୍ୟ ନ ଥିଲେ ମଧ୍ୟ ସେ ଗୁଡ଼ିକ କାବ୍ୟିକ ମାଧୁର୍ଯ୍ୟରୁ ବଞ୍ଚିତ ନୁହନ୍ତି । ସଙ୍ଗୀତଜ୍ଞ ମାନେ କର୍ଣ୍ଣାଟକ ସଙ୍ଗୀତ ଶୈଳୀର ଅନୁସରଣରେ ତାଙ୍କର ସଙ୍ଗୀତ ଗୁଡ଼ିକୁ ଗାନ କରିଥାନ୍ତି । ଆନ୍ଧ୍ରରେ ଅନ୍ୟ ବହୁ ପ୍ରକାର ସଙ୍ଗୀତ, ଯଥା ଯାବଳୀ (ପ୍ରେମ ପ୍ରଧାନ ସଙ୍ଗୀତ), ତତ୍ତ୍ୱମ୍, ଲଲପାଟ (ନାନାବାୟା ଗୀତ) ମଙ୍ଗଳ କାରତି, ମେଲୁ କୋଲୁପୁ (ପ୍ରଭାତ ଜାଗରଣ ସଙ୍ଗୀତ) ପ୍ରଭୃତି ରଚିତ ହୋଇଥିଲେ ମଧ୍ୟ ଏ ଗୁଡ଼ିକ ସାହିତ୍ୟିକ ମୂଲ୍ୟରୁ ବଞ୍ଚିତ ।

ତେଲୁଗୁରେ ରଚିତ ଯକ୍ଷଗାନମ୍‌ରୁ (ଯକୁପାଟ) ଭାଗବତମ୍, ବୀଥିନାଟକମ୍, ବର୍ଣ୍ଣନାତ୍ମକ ଗୀତ (ପଦମ୍) ଓ ହରିକଥାର ସୃଷ୍ଟି ହୋଇଛି । ଏତନ୍ମଧ୍ୟରୁ ହରିକଥା ତାମିଲରେ 'କାଲକ୍ଷେପମ୍' ଓ ମରାଠୀରେ 'ଅଭଙ୍ଗ' ନାମରେ ପରିଚିତ । ଓଡ଼ିଶାରେ ଲୀଳା ଓ ଯାତ୍ରା ଅଭିନୀତ ହେଲା ପରି ଆନ୍ଧ୍ରରେ 'ଭାଗବତମ୍'ର ଅଭିନୟ ହୁଏ ଏବଂ ଏ ପର୍ଯ୍ୟନ୍ତ ଭାଗବତ ଦଳ ଓ ଭାରତ ନାଟ୍ୟମ୍ ଦଳ ସୁରକ୍ଷିତ ଅବସ୍ଥାରେ ରହିଛି (୧୩) ।

(୧୨) P. T. Raju, Telugu Literature, International Book House, Bombay 1944.

(୧୩) ତଦେବ

## ଗୁଜୁରାଟୀ ସାହିତ୍ୟରେ :

ଗୁଜୁରାଟରେ ଭୋଜରାଜ (୧୦ମ ଓ ୧୧ଶ ଶତକ) ଓ ଜୈନସାଧୁ ସ୍ୱାମୀ ହେମଚନ୍ଦ୍ରଙ୍କ (୧୧ଶ ଓ ୧୨ଶ ଶତକ) ପରି ଭାରତ ବିଖ୍ୟାତ ସଂସ୍କୃତ କବି ଓ ଆଲଙ୍କାରିକଙ୍କର ଆବିର୍ଭାବ ହେତୁ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶରେ ବହୁ ଉଲ୍ଲେଖଯୋଗ୍ୟ ସାହିତ୍ୟ କୃତି ପ୍ରକାଶ ଲାଭ କରିଥିଲା । ଜୈନ ସାଧୁମାନେ ପ୍ରାକୃତ ଓ ଅପଭ୍ରଂଶରେ ରଚିତ କଥା ଓ ଚରିତକୁ ଲୋକପ୍ରିୟ କରିବା ପାଇଁ ପ୍ରେମକୁ କୈନ୍ଦ୍ରିକ ବସ୍ତୁ ରୂପେ ଗ୍ରହଣ କରିଥିଲେ । କଥା, ଚରିତ ଓ କାବ୍ୟରେ (ମହାକାବ୍ୟ, କାବ୍ୟ, ଖଣ୍ଡକାବ୍ୟ ଇତ୍ୟାଦି) ପ୍ରେମ ଓ ଶୃଙ୍ଗାରର ପ୍ରାଧାନ୍ୟ ହେତୁ ଭୋଜରାଜ 'ଶୃଙ୍ଗାର'କୁ ମୂଳ କରି ତାଙ୍କର ସାହିତ୍ୟିକ ମତବାଦକୁ 'ଶୃଙ୍ଗାର ପ୍ରକାଶ'ରେ ପ୍ରତିଷ୍ଠିତ କରିଥିଲେ । ହେମଚନ୍ଦ୍ରଙ୍କର ଛନ୍ଦୋନୁ-ଶାସନ ଓ କାବ୍ୟାନୁଶାସନରେ ଅପଭ୍ରଂଶ ସାହିତ୍ୟର ବହୁ ଉଦ୍ଧୃତି ପରିଦୃଷ୍ଟ ହୁଏ—ଯେଉଁ ଗୁଡ଼ିକ ଶୃଙ୍ଗାର ଓ ପ୍ରେମମୂଳକ (୧୪) । ସଂସ୍କୃତ ମହାକାବ୍ୟ (ରଘୁବଂଶ, ନୈଷଧ ଚରିତମ୍ ଆଦର୍ଶରେ 'ମୁଞ୍ଜ ପ୍ରବନ୍ଧ', 'କୀର୍ତ୍ତି କୌମୁଦୀ, 'ସୁରଥୋତ୍ସବ', 'ନରନାରାୟଣାନନ୍ଦ' ଶୀର୍ଷକ ବୀରରସ ଓ ଶୃଙ୍ଗାର ପ୍ରଧାନ ମହାକାବ୍ୟ ରଚିତ ହୋଇଥିଲା (୧୧ଶ ଶତକରୁ ୧୩ଶ ଶତକ ମଧ୍ୟରେ) । ଗୁପ୍ତରାଜାଙ୍କ ଶାସନ କାଳରେ ପ୍ରବର୍ତ୍ତିତ ହୋଇଥିବା ବିଷ୍ଣୁ ପୂଜା ଓ ଭାଗବତ ଧର୍ମ ଗୁଜୁରାଟରେ ସ୍ୱଳ୍ପ ଲୋକଙ୍କ ଦ୍ୱାରା ଆଦୃତ ହୋଇଥିଲା । ହେମଚନ୍ଦ୍ର ତାଙ୍କର କାବ୍ୟାନୁଶାସନରେ ରାଧାକୃଷ୍ଣ ଲୀଳା ସୂଚିତ କରୁଥିବା ଦୁଇଟି ଶୃଙ୍ଗାର ବ୍ୟଞ୍ଜକ ଶ୍ଳୋକ ଉଦ୍ଧାର କରିଛନ୍ତି (୧୫) ।

ଅପଭ୍ରଂଶ ରଚନା ପରେ ଗୁଜୁରାଟୀ ଭାଷାରେ କ୍ରମଶଃ ରଚନାମାନ ପରିଦୃଷ୍ଟ ହେଲା । ରାସକୁ କେନ୍ଦ୍ର କରି ଗୁଜୁରାଟରେ ପ୍ରାଚୀନତମ ଲୋକ ସାହିତ୍ୟ ଗଢ଼ି ଉଠିଛି । ଏଥିରେ ସ୍ତ୍ରୀ ପୁରୁଷ ପ୍ରେମ ଓ ଶୃଙ୍ଗାର ସମ୍ପର୍କୀୟ ଲୋକଗୀତ ଗାନ କରି ତାଳାନୁସାରେ ବୃତ୍ତାକାରେ ବୁଲନ୍ତି । 'ସପ୍ତକ୍ଷେତ୍ରୀ ରାସ' (୧୨୭୧) ହେଉଛି ଏକ ପ୍ରାଚୀନ ଗୁଜୁରାଟୀ ଗ୍ରନ୍ଥ । ବସନ୍ତରେ ପ୍ରେମ ବିଜୟ ବା ରାଧାକୃଷ୍ଣ ପ୍ରେମ ସମ୍ବଳିତ ବିଷୟରେ କାବ୍ୟମାନ ରଚିତ ହୋଇଛି ।

ବିଭିନ୍ନ ଭାଷାରେ (ହିନ୍ଦୀ, ବଙ୍ଗଳା, ଓଡ଼ିଆ ଇତ୍ୟାଦି) ବର୍ଷର ପ୍ରତ୍ୟେକ ମାସକୁ କେନ୍ଦ୍ର କରି ଯେପରି ବିରହିଣୀ ନାରୀର ବିଚ୍ଛେଦ ବେଦନାର ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତିମୂଳକ

---

(୧୪) ଦ୍ୱିତୀୟ ପରିଚ୍ଛେଦରେ (ଖ) ଅପଭ୍ରଂଶ ସାହିତ୍ୟର ପ୍ରେମ ଓ ଶୃଙ୍ଗାର ମୂଳକ ଉଦ୍ଧୃତି ଦ୍ରଷ୍ଟବ୍ୟ ।

(୧୫) କନକକଳସସ୍ୱଚ୍ଛେ ରାଧାପୟୋଧରମଣ୍ଡଳେ
ନବଜଳଧରଶ୍ୟାମାମାତ୍ମଦ୍ୟୁତିଂ ପ୍ରତିବିମ୍ବିତାମ୍ ।
ଅସିତସିଚୟପ୍ରାନ୍ତଭ୍ରାନ୍ତ୍ୟା ମୁହୁର୍ମୁହୁରୁତ୍କ୍ଷିପ-
ନ୍ଜୟତି ଜନିତବ୍ରୀଡ଼ାହାସଃ ପ୍ରିୟାହସିତୋ ହରିଃ ।

Dr. K. M. Munshi, Gujrat and its Literature, P. 125

ବାରମାସୀ ରଚିତ ହୋଇଛି, ଗୁଜୁରାଟୀରେ ସେହିପରି 'ନେମିନାଥ ଚତୁଷ୍ପଦିକା' (୧୩ଶ ଶତକ) ହେଉଛି ଏକ ପ୍ରେମ ପ୍ରଧାନ ପ୍ରାଚୀନ ବିରହ ଗାଥା । ପ୍ରେମିକ ନେମିନାଥଙ୍କ ଠାରୁ ବିଚ୍ଛିନ୍ନ ହୋଇଥିବା 'ରାଜଲଦେବୀ'ଙ୍କର ଏହା କରୁଣ ବିଳାପ (୧୬) । ପ୍ରାଚୀନ ଗୁଜୁରାଟୀର ପ୍ରସିଦ୍ଧ ଲେଖକ ସୋମ ସୁନ୍ଦର (୧୪ଶ ଓ ୧୫ଶ) ତାଙ୍କର 'ରଙ୍ଗ ସାଗର ନେମିଫାଗ' ଓ 'ବସନ୍ତ ବିଳାସ'ରେ ଯଥାକ୍ରମେ କାମୋଦ୍ଦୀପକ ବସନ୍ତ ଓ ବସନ୍ତ-ବିରହିଣୀ ଯୁବତୀର ବିଚ୍ଛେଦ ବେଦନାର ଚମତ୍କାର ଚିତ୍ର ଆଙ୍କିଛନ୍ତି । 'ରାସକ'ର କବି ତରୁଣୀ (ଗୋପାଙ୍ଗନା) ମାନଙ୍କର ଲୋଭନୀୟ ଶ୍ରୀକୃଷ୍ଣ ଓ ଲାଳସାଦୀପ୍ତ କଟାକ୍ଷ ମାନଙ୍କର କାମୋଦ୍ଦୀପକ ବର୍ଣ୍ଣନା ଦେଇଛନ୍ତି (୧୭) । ରାସକର ଗୀତ ମାଧୁର୍ଯ୍ୟ ଓ ସଙ୍ଗୀତଧର୍ମିତା ବିଶେଷ ଉପଭୋଗ୍ୟ ।

ଚତୁର୍ଦ୍ଦଶ ଶତକରେ ଜୟଦେବଙ୍କ ଗୀତଗୋବିନ୍ଦ, ଭାଗବତ ଓ ବୋପଦେବଙ୍କ ହରିଲୀଳାମୃତର ବିଶେଷ ପ୍ରଭାବ ଗୁଜୁରାଟରେ ଦେଖା ଦେଇଥିଲା । ନୃସିଂହ ନାରାୟଣ ସୂନୁ 'ବିଷ୍ଣୁଭକ୍ତି ଚନ୍ଦ୍ରୋଦୟ' ଏବଂ ଭାଲଣ 'କୃଷ୍ଣ ବାଲଚରିତ' ରଚନା କରିଥିଲେ । ଶ୍ରୀକୃଷ୍ଣ ଚରିତରେ ଯଶୋଦାଙ୍କର ବାତ୍ସଲ୍ୟ ମମତା ଚିତ୍ରରେ ଭାବ ଓ ଭାଷାର ମାଧୁର୍ଯ୍ୟ ଲକ୍ଷ୍ୟ କରିବାର ବିଷୟ (୧୮) ।

---

(୧୬) ଭାଦ୍ରବି ଭରିୟା ସର ପିକ୍‌ଖେଵି ସକରୁଣ ରୋଅଇ ରାଜଲଦେଵୀ ।
ହା ଏକ ଲଡୀ ମଇ ଜର ଧାର କମଉକ୍ଷେପସି କରୁଣା ସାର ।
ଭଣଇ ସଖି ରାଜଲ ମନ ରୋଇ ନୀଠୁର ନେମି ନ ଅପ୍‌ପଣୁ ହୋଇ ।
ସିଞ୍ଚୟ ତରୁବର ପରିପଲବଂତ ଗିରିବର ପୁଣ କଢ଼ ଡେରହୁଂତ ।
ତତ୍ରୈବ, ପୃ. ୧୩୮

(୧୭) ଅଣ ଭରି ନମନ୍ତ ତରୁଣୀ କରୁଣୀ ବରୁଣୀ ଚରଣ ସଞ୍ଚାରିରେ ।
ଝୁଲଇ ଚମକତ ଝମକତ ନେଉର, କେଉର କଟକ ବିଶାଳାରେ ।
ବେଣିଯ ବିଯୁଣି ମିଂଷତରି, ଭୁଂତରି ରହିଉ ସିରି ନାଗ ।
ଅଧର ରଙ୍ଗ ପରବାଳୀୟ, ଆଳୟ ନାବଇଂ ଭାଗ । ତତ୍ରୈବ, ପୃ. ୧୪୦

(୧୮) ମୀଠ୍‌ଡା ମାଭ୍‌ଜାରେ, ମାରେ ମନ୍ଦିର ଅଞ୍ଚୋ;
ପ୍ରେମେ ପୀରସୁଂ ପରମାନନ୍ଦ, କୁର୍ଦ୍ଦନେ ଦୂଧ ଶୋଗଦୋ ।
ମଥୁରା ଶକ୍ତି ପ୍ୟାମା ଘଣୀ, ବାଧ୍ୟୁଁ ଛେ ଅତି ତେଜରେ;
ସଚ୍ଚ ଜାଣ ଜୋ ମାର ସରଖୁଁ, କୋ ନହିଂ ଆଣେ ହେଜ ।

ଅର୍ଥାତ୍—ମୋର ଧନ, ମାଭଜା, ଘରକୁ ଆ, ଶ୍ରଦ୍ଧାରେ ମୁଁ ତତେ ଦୁଧ ଭାତ ଦେବି । ମଥୁରାକୁ ଗଲା ଦିନୁ ତୁ ଧନୀ ଓ ଶକ୍ତିଶାଳୀ ହୋଇଛୁ; କିନ୍ତୁ ବିଶ୍ୱାସ କର, ମୁଁ ତତେ ଯେତେ ଭଲପାଏଁ, ଆଉ କେହି ସେପରି ପାଆନ୍ତି ନାହିଁ ।

ତତ୍ରୈବ, ପୃ. ୧୬୧-୧୬୨

ଷୋଡ଼ଶ ଶତକରେ ପ୍ରାଦେଶିକ ଭାଷାରେ ପୁରାଣ ରଚନା ଫଳରେ ଭକ୍ତିତତ୍ତ୍ୱର ବିଶେଷ ପ୍ରଚାର ଘଟିଲା ଏବଂ ଦେବତା ବିଶେଷତଃ ଶ୍ରୀକୃଷ୍ଣଙ୍କ ପ୍ରତି ଗଭୀର ଭକ୍ତିଭାବ ପ୍ରକାଶ ପାଇଲା । ଏହି ନବଭକ୍ତି ଆନ୍ଦୋଳନରେ ଉପାସ୍ୟଙ୍କ ପ୍ରତି ମାନବ ସୁଲଭ ଗଭୀର ପ୍ରେମ ଲକ୍ଷ୍ୟ କରିବାର ବିଷୟ । ପୁରାଣର ମହିମାମୟୀ ଲକ୍ଷ୍ମୀ ଓ ରୁକ୍ମିଣୀଙ୍କ ସ୍ଥାନରେ ସାଧକ-ଭକ୍ତର କଳ୍ପନା ଅନୁସାରେ ଅଧିକ ମାନବୀୟିତ ଶ୍ରୀକୃଷ୍ଣଙ୍କର ପ୍ରେମମୟୀ ପ୍ରିୟତମା ରାଧାଙ୍କର ପ୍ରାଧାନ୍ୟ ପ୍ରକଟିତ ହୋଇଥିଲା । ବୃନ୍ଦାବନ କୁଞ୍ଜକୁ କେନ୍ଦ୍ର କରି ମଧ୍ୱାଚାର୍ଯ୍ୟଙ୍କ ଶିଷ୍ୟ ମାଧବେନ୍ଦ୍ର ପୁରୀଙ୍କ ହେତୁ ଭକ୍ତିଧର୍ମ ସଜୀବ ଓ ବିକଶିତ ହୋଇ ଉଠିଲା । ଷୋଡ଼ଶ ଶତକରେ ବୃନ୍ଦାବନରୁ ଭକ୍ତିଧାରା ଗୁଜୁରାଟରେ ପ୍ରବାହିତ ହୋଇଥିଲା । ମୀରାବାଇ (୧୫୫୦) ଓ ନରସିଂହ ମେହେଟା (୧୫୦୦-୧୫୮୦) ଏହି ଭକ୍ତିଧାରା ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ମୀରାବାଈଙ୍କର ଭଜନ ଗୁଡ଼ିକ ଅପରି ମଧୁର, କୋମଳ ଓ ନିବିଡ଼ ଅନୁଭୂତି ମୁଖର, ତାହା ପ୍ରତ୍ୟେକ ମୁଗ୍ଧ ଶ୍ରୋତା ଜାଣନ୍ତି । ପ୍ରିୟତମ ଶ୍ରୀକୃଷ୍ଣ ତାଙ୍କ ଜୀବନର ସବୁ, ସେ ତାଙ୍କର ଦାସୀ, ପ୍ରେମିକା । ଏହି ଐକାନ୍ତିକ ବିଶ୍ୱାସ ଓ ଆତ୍ମସମର୍ପଣ ଭାବ ତାଙ୍କର ଭଜନ ଗୁଡ଼ିକରେ ପରିସ୍ଫୁଟ । ପ୍ରିୟତମ ଶ୍ରୀକୃଷ୍ଣଙ୍କ ନିକଟରେ ମୀରା ପ୍ରାଣର ଐକାନ୍ତିକ ସ୍ୱତଃସ୍ଫୁର୍ତ୍ତି ଆତ୍ମନିବେଦନ, ନିବିଡ଼ ପ୍ରେମାନୁଭୂତି, ତାଙ୍କର ସରଳ ସହଜ ନୈସର୍ଗିକ ପ୍ରକାଶଭଙ୍ଗୀ ଓ ଗୀତିମାଧୁର୍ଯ୍ୟ ଶ୍ରୋତାର ହୃଦୟ ଓ ଆତ୍ମାରେ ଦିବ୍ୟ ସ୍ପନ୍ଦନ ଖେଳାଇ ଦିଏ (୧୯) ।

ବଲ୍ଲଭାଚାର୍ଯ୍ୟଙ୍କର ପୁଷ୍ଟିମାର୍ଗର ପ୍ରଭାବ ଗୁଜୁରାଟୀ ଲେଖକ ଗୋପାଳ ଦାସଙ୍କ ଉପରେ ପଡ଼ିଥିଲା, ଯେ କି 'ବଲ୍ଲଭାଖ୍ୟାନ' ରଚନା କରିଥିଲେ । ଷୋଡ଼ଶ ଶତାବ୍ଦୀର ଅନ୍ୟତମ ପ୍ରଖ୍ୟାତ କବି ହେଉଛନ୍ତି ନରସିଂହ ମେହେଟା, ସମଗ୍ର ଭାରତରେ ଯାହାଙ୍କର ଖ୍ୟାତି ସପ୍ତଦଶ ଶତକ ବେଳକୁ ବଢ଼ିଯାଇଥିଲା । ସେ 'ଶୃଙ୍ଗାରମାଳା' ଶିରୋନାମାରେ ସାତଶହ ସଙ୍ଗୀତ ରଚନା କରିଥିଲେ । ବୃନ୍ଦାବନର ପ୍ରେମ ତଥା ଶୃଙ୍ଗାରାତ୍ମକ ଭକ୍ତିରେ ତାଙ୍କର

---

(୧୯) (କ) ମେରେ ତୋ ଗିରିଧର ଗୋପାଲ ଦୁସରା ନ କୋଈ ।
ଯାକେ ସିର ମୋର ମୁକୁଟ ମେରେ ପତି ସୋଈ ।

(ଖ) ପିୟାବିନା ରହ୍ୟୋ ନ ଜାଈ ।
ତନମନ ମେରେ ପିୟା ପରବାରୁ
ବାରବାର ବଲି ଜାଈ ।

(ଗ) ମହାରେ ଜନମ ମରଣକେ ସାଥୀ, ଥାଁନେ ନହିଁ ବିସରୁ ଦିନରାତି ।

(ଘ) ମୀରାକୋ ପ୍ରଭୁ ସାଁଚୀ ଦାସୀ ବନାଓ ।

(ଙ) ଦରସ ବିନୁ ଦୂଖ ନ ଲଗେ ନୈନ
ଜବ୍‌ସେ ତୁମ ବିଛରେ ପ୍ରିୟ ପ୍ୟାରେ
କବହୁଁ ନ ପାୟୋଁ ଚୈନ ।
(ମୀରା ଭଜନ)

କଲ୍ପନା ମୁଖର ହୋଇଉଠିଛି । ମନ୍ମୟଧର୍ମିତା ହେଉଛି ତାଙ୍କର ପଦଗୁଡ଼ିକର ଅନ୍ତଃସ୍ୱର । ତାଙ୍କର ଅନ୍ୟ ରଚନା ହେଉଛି 'ରସ ସହସ୍ର ପଦ' ଏବଂ ପ୍ରଭାତିଆ ଭକ୍ତି ଓ ଗାନ । ତାଙ୍କର ପଦାବଳୀ ତାଙ୍କର ଅନୁଭୂତି, ବିଶ୍ୱାସ ଓ ପ୍ରେରଣାର ଶାଶ୍ୱତ ଉତ୍ସ । ସପ୍ତଦଶ ଶତକରେ ବରୋଦାର ପ୍ରେମାନନ୍ଦ ମହାଭାରତ, ରାମାୟଣ ଓ ଭାଗବତର କାହାଣୀ ଅବଲମ୍ବନରେ ବହୁ ଆଖ୍ୟାନ ରଚନା କରିଛନ୍ତି । ରତ୍ନେଶ୍ୱର (୧୭ଶ ଶତାବ୍ଦୀ) ଭାଗବତ ଓ ରାଧାକୃଷ୍ଣ ମହିମା (ଗୀତିଧର୍ମୀ) ରଚନା କରିଛନ୍ତି ।

ଷୋଡ଼ଶ ଶତକରେ ଗୁଜୁରାଟୀରେ ବହୁ ପ୍ରେମ ଓ ଶୃଙ୍ଗାର ପ୍ରଧାନ କଥା (ବିଦ୍ୟା ବିଳାସ), ନାଟକ, ରାସ (ମାଧବ କାମକୁଣ୍ଡଳା ରାସ, ରୂପଚନ୍ଦ୍ର ରାସ, ସୁରସୁନ୍ଦରୀ ରାସ) ଓ ଚଉପାଇ ରଚିତ ହୋଇଛି । ଶୃଙ୍ଗାର ଧର୍ମୀ 'ଶୁକ ସପ୍ତତି' ଓ ବିହ୍ଲଣଙ୍କର 'ଚୌରପଞ୍ଚାଶିକା'ର ମଧ୍ୟ ଅନୁବାଦ ହୋଇଛି (୨୦) ।

**ହିନ୍ଦୀ ସାହିତ୍ୟରେ :**

ହିନ୍ଦୀ ସାହିତ୍ୟରେ ନିର୍ଗୁଣ କାବ୍ୟ ପରମ୍ପରାର (୧୪ଶ ଶତାବ୍ଦୀରୁ ୧୭ଶ ଶତାବ୍ଦୀ) ଅନ୍ୟ ଏକ ଶାଖା ହେଉଛି ସୁଫି କାବ୍ୟ ପରମ୍ପରା । ଲୋକପ୍ରିୟ ବାସ୍ତବ ହିନ୍ଦୁ କାହାଣୀ ଅବଲମ୍ବନରେ ସୁଫି ମୁସଲମାନ କବିମାନେ ସେମାନଙ୍କ କାବ୍ୟ ସୃଷ୍ଟିରେ ମାନବିକ ଅନୁଭୂତିର ଉଚ୍ଚାଙ୍ଗ ଚିତ୍ର ଆଙ୍କିଛନ୍ତି । ଆଦର୍ଶ ମାନବିକ ପ୍ରେମ ଅଧିକାଂଶ କାବ୍ୟର କେନ୍ଦ୍ରିକ ବସ୍ତୁ । ରଚନା ଗୁଡ଼ିକ ମଧ୍ୟରେ 'ସ୍ୱପ୍ନାବତୀ', 'ମୁଗ୍ଧାବତୀ' (କବି କୁତବନ), 'ମଧୁ ମାଲତୀ' (କବି ମନ୍‌ଝନ୍), 'ପଦ୍ମାବତ୍' (ମାଲିକ ମହମ୍ମଦ ଜାୟସୀ) ଓ 'ଚିତ୍ରାବଳୀ' ପ୍ରଭୃତି କାବ୍ୟର ନାମ ଉଲ୍ଲେଖଯୋଗ୍ୟ । ଉଚ୍ଚାଙ୍ଗ ଚରିତ୍ର ଚିତ୍ରଣ, ଜୀବନର ଶାଶ୍ୱତ ବିଭାବର ସଙ୍କେତ ଓ ଘଟଣାର ଚମତ୍କାର ସନ୍ନିକରଣ କୌଶଳ ହେତୁ ଜାୟସୀଙ୍କର 'ପଦ୍ମାବତ୍' ହିନ୍ଦୁ ଆଦର୍ଶ ଓ ଭାରତୀୟ ମହାକାବ୍ୟ ପରମ୍ପରାର ଏକ ଉଚ୍ଚକୋଟୀର ଐତିହାସିକ କାବ୍ୟ । 'ଚିତ୍ରାବଳୀ' କାବ୍ୟରେ ପାର୍ଥିବ ପ୍ରେମ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି ।

ତାପରେ ହିନ୍ଦୀ ସାହିତ୍ୟର ପୂର୍ବ ମଧ୍ୟ କାଳରେ (ଭକ୍ତିକାଳ) ସଗୁଣ ଭକ୍ତି କାବ୍ୟର ଏକ ବଳିଷ୍ଠ ପରମ୍ପରା ଦେଖାଦେଇଛି । ଦାକ୍ଷିଣାତ୍ୟରେ ଭକ୍ତିବାଦର ବିକାଶ ଘଟି ପରେ ଉତ୍ତର ଭାରତରେ ତା'ର ବ୍ୟାପକ ପ୍ରଚାର ଘଟିଥିଲା । ଭାଗବତ ଧର୍ମ ବା ବୈଷ୍ଣବ ଧର୍ମର ବିକାଶ କ୍ଷେତ୍ରରେ ରାମାନୁଜ, ମଧ୍ୱ, ବିଷ୍ଣୁ ସ୍ୱାମୀ ଓ ନିମ୍ବାର୍କଙ୍କ ନାମ ଉଲ୍ଲେଖଯୋଗ୍ୟ । ପରେ ସ୍ୱାମୀ ରାମାନନ୍ଦ, ଚୈତନ୍ୟ ଓ ବଲ୍ଲଭାଚାର୍ଯ୍ୟଙ୍କ ହେତୁ ଉତ୍ତର ଭାରତରେ ନବ ବୈଷ୍ଣବ ଧାରାର ପ୍ଲାବନ ଦେଖା ଦେଇଥିଲା । ଚୈତନ୍ୟ ମଧ୍ୱ (ଦ୍ୱୈତବାଦ) ଓ

---

(୨୦) Dr. K. M. Munshi, Gujrat and its Literature, Bombay, 1954, PP. 220, 245, 253

ନିମ୍ବାର୍କଙ୍କ (ଦ୍ୱୈତାଦ୍ୱୈତବାଦ) ମତ ଦ୍ୱାରା ପ୍ରଭାବିତ ହୋଇ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଉପାସନା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ ଏବଂ ବଲ୍ଲଭାଚାର୍ଯ୍ୟ ବିଷ୍ଣୁ ସ୍ୱାମୀ (ଶୁଦ୍ଧା-ଦ୍ୱୈତବାଦ) ଓ ନିମ୍ବାର୍କଙ୍କ ଦାର୍ଶନିକ ଭାବ ଦ୍ୱାରା ପ୍ରଭାବିତ ହୋଇ ଭକ୍ତି ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ତାଙ୍କ ଦ୍ୱାରା ପୁଷ୍ଟିମାର୍ଗ (କୃଷ୍ଣଙ୍କର ଭକ୍ତ ପ୍ରତି ଦୟା ଓ ଆନୁକୂଲ୍ୟ ହେଉଛି ପୁଷ୍ଟି) ପ୍ରବର୍ତ୍ତିତ ହୋଇଥିଲା । ରାମାନୁଜଙ୍କର ବିଶିଷ୍ଟାଦ୍ୱୈତ ମତବାଦର ପରିବର୍ତ୍ତିତ ତଥା ବିସ୍ତୃତ ରୂପ ସ୍ୱାମୀ ରାମାନନ୍ଦଙ୍କ ଦ୍ୱାରା ରାମଭକ୍ତି ରୂପରେ ପ୍ରକାଶ ଲାଭ କଲା । ଚୈତନ୍ୟ ଓ ବଲ୍ଲଭାଚାର୍ଯ୍ୟଙ୍କ ଦ୍ୱାରା କୃଷ୍ଣ ଭକ୍ତିର ପ୍ରଚାର ଘଟିଲା । ଫଳରେ ସଗୁଣ ମତର ଭିତ୍ତି ଉପରେ ରାମକାବ୍ୟ ଓ କୃଷ୍ଣ କାବ୍ୟର ପରମ୍ପରା ଦେଖାଗଲା ।

ଆଚାର୍ଯ୍ୟ କେଶବ ଦାସ ରୀତି ପରମ୍ପରାର ଜଣେ ପଣ୍ଡିତ କବି । ସେ 'ରାମ ଚନ୍ଦ୍ରିକା' ରଚନା କରିବା ସଙ୍ଗେ ସଙ୍ଗେ 'ରସିକ ପ୍ରିୟା', 'କବି ପ୍ରିୟା' ଓ 'ବୀରସିଂହ ଦେବ ଚରିତ' ଇତ୍ୟାଦି ଶୃଙ୍ଗାରଧର୍ମୀ କାବ୍ୟ ରଚନା କରିଛନ୍ତି । ଗଭୀର ପ୍ରେମ ଓ ବିଶ୍ୱାସ ଉପରେ ପ୍ରତିଷ୍ଠିତ ରାମ ଭକ୍ତିକୁ ଗୋସ୍ୱାମୀ ତୁଳସୀ ଦାସ ତାଙ୍କର ବିଖ୍ୟାତ 'ରାମ ଚରିତ ମାନସ'ରେ ପ୍ରତିଷ୍ଠିତ କରିଛନ୍ତି । ବୈଷ୍ଣବଙ୍କର କୃଷ୍ଣ ପ୍ରେମ ଭକ୍ତିର ପ୍ରଭାବ ଫଳରେ ଦାର୍ଶନିକ ପୃଷ୍ଠଭୂମି ସତ୍ତ୍ୱେ ରାମଭକ୍ତିରେ ପ୍ରେମ ବିଭାବ ପରିସ୍ଫୁଟ ହୋଇଛି । ଫଳରେ କର୍ତ୍ତବ୍ୟ ପ୍ରତି ନିବେଦିତ ପ୍ରାଣ ରାମଚନ୍ଦ୍ରଙ୍କ ମଧ୍ୟ ପ୍ରେମ ଲୀଳାର ନାୟକ ରୂପେ ଚିତ୍ରଣ କରାଯାଇଛି । 'ସ୍ୱ ସୁଖୀ ଶାଖା'ର (ଭକ୍ତିର ଅନ୍ୟ ନାମ) ପ୍ରବର୍ତ୍ତକ ରାମଚରଣ ଦାସ ଏ ଭାବର ପ୍ରଚାରକ । ତାଙ୍କ ମତର ଭକ୍ତମାନେ ରାଧାବଲ୍ଲଭୀୟ ସମ୍ପ୍ରଦାୟ ପରି ନାରୀ ଭାବରେ ନିଜକୁ ସଜ୍ଜିତ କରି ସୀତାଙ୍କ ସପତ୍ନୀ ମନେ କରନ୍ତି ।

ହିନ୍ଦୀରେ କୃଷ୍ଣଭକ୍ତି କାବ୍ୟ ରଚନାର ମୂଳ ପ୍ରେରଣା ହେଉଛନ୍ତି ପୁଷ୍ଟିମାର୍ଗର ପ୍ରବର୍ତ୍ତକ ବଲ୍ଲଭାଚାର୍ଯ୍ୟ । କୃଷ୍ଣଙ୍କର ପ୍ରେମ ଓ ଅନୁକମ୍ପାର ସୌଭାଗ୍ୟ ଲାଭ କରିଥିବା ଗୋପୀମାନେ ହେଉଛନ୍ତି ପୁଷ୍ଟିମାର୍ଗର ଆଦିଗୁରୁ । ଭକ୍ତି ଓ ଉପାସନା କ୍ଷେତ୍ରରେ ବଲ୍ଲଭ ଶ୍ରୀକୃଷ୍ଣଙ୍କର ପ୍ରେମ ଲୀଳାକୁ ଉଚ୍ଚ ସ୍ଥାନ ଦେଇଥିଲେ । ସଂସ୍କୃତରେ ବିଖ୍ୟାତ ପଣ୍ଡିତ ପ୍ରତିଭାଶାଳୀ କବି ବିଦ୍ୟାପତି କୃଷ୍ଣ କାବ୍ୟ ପରମ୍ପରାର ସର୍ବଶ୍ରେଷ୍ଠ କବି (ହିନ୍ଦୀରେ) । ତାଙ୍କର ରାଧାକୃଷ୍ଣ ପ୍ରେମ ଚିତ୍ରରେ ଐନ୍ଦ୍ରିକ ଲାଳସା ପ୍ରାଧାନ୍ୟ ଲାଭ କରିଛି । ବଲ୍ଲଭ ସମ୍ପ୍ରଦାୟର ସର୍ବଶ୍ରେଷ୍ଠ କବି ହେଉଛନ୍ତି ସୂର ଦାସ । ମୀରାବାଈଙ୍କ ପରି ତାଙ୍କର ସଙ୍ଗୀତ ସମଗ୍ର ଭାରତରେ ଲୋକପ୍ରିୟତା ଅର୍ଜନ କରିଛି । ବାଳକୃଷ୍ଣଙ୍କର ଉପାସକ ସୂର ଦାସ ତାଙ୍କର ଗୀତାବଳୀରେ ଶ୍ରୀକୃଷ୍ଣ ଲୀଳା ଚିତ୍ର ପ୍ରତି ଅନ୍ତରର ଶ୍ରଦ୍ଧା ପ୍ରଦର୍ଶନ କରିଛନ୍ତି । ସେ ହେଉଛନ୍ତି ସ୍ନେହ ଓ ପ୍ରେମର କବି । କୃଷ୍ଣଙ୍କର ବ୍ୟକ୍ତିତ୍ୱରେ ସେ ମାଧୁର୍ଯ୍ୟ ଓ ପ୍ରେମ ଯୋଗ କରିବା ସଙ୍ଗେ ସଙ୍ଗେ ମଧୁର ମାନବିକତାକୁ ଆଧ୍ୟାତ୍ମିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ କରିଛନ୍ତି । କୃଷ୍ଣଙ୍କର ଶୈଶବ ଲୀଳା ଆଲେଖ୍ୟରେ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ, ଋତୁ ଓ ନଖ ଶିଖର ଶୃଙ୍ଗାର ଧର୍ମୀ ବର୍ଣ୍ଣନା, ରାଧା ଓ କୃଷ୍ଣଙ୍କର ପାରସ୍ପରିକ ଲାଳସା, ବିପ୍ରଲମ୍ଭ ଶୃଙ୍ଗାର (ଭ୍ରମର ଗୀତରେ ଯେପରି ପରିବେଷିତ) ପ୍ରଭୃତି

ବିଭିନ୍ନ ଦୃଷ୍ଟିରୁ ଶୂର ଦାସଙ୍କର ଗୀତର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ ବିଗ୍ଭର କରାଯାଇପାରେ (୨୧) । ବିଠଲ ଦାସଙ୍କର 'ଅଷ୍ଟ ଛାପ ସମ୍ପ୍ରଦାୟର ଆଠଜଣ କବିଙ୍କ ମଧ୍ୟରେ ଶୂର ଦାସ ପ୍ରଥମ । ସେମାନଙ୍କ ମଧ୍ୟରୁ କେତେକ ଗୋପୀ, ରାଧା ଓ କୃଷ୍ଣଙ୍କର ବୃନ୍ଦାବନଲୀଳା, ଭ୍ରମର ଗୀତ ଓ ପ୍ରେମତତ୍ତ୍ୱ ବର୍ଣ୍ଣନା କରିଛନ୍ତି । ଆଉ କେହି କେହି ଶୈଶବ ଓ ବାଲ୍ୟଲୀଳା ବର୍ଣ୍ଣନା କରିଛନ୍ତି (୨୨) ।

ନିବିଡ଼ ପ୍ରେମାନୁଭୂତି ଓ ମାଧୁର୍ଯ୍ୟ ରସର ସ୍ୱାକ୍ଷର ବହନ କରିଥିବା ମୀରାଙ୍କର ଉଚ୍ଚାଙ୍ଗ ଭଜନ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ଯନ୍ତ୍ରଣାବିକଳ ମୀରାଙ୍କର ବ୍ୟକ୍ତିଗତ ଲାଳସାମୟୀ ଭାବାବେଗର ନିର୍ଭରଣ ନୈସର୍ଗିକ ଆତ୍ମନିଷ୍ଠ କାବ୍ୟିକ ଅଭିବ୍ୟକ୍ତି ଅନାୟାସ କ୍ୱଚିତ୍ ପରିଦୃଷ୍ଟ ହୁଏ । କୃଷ୍ଣ କାବ୍ୟ ରଚନା କ୍ଷେତ୍ରରେ ରାଧାବଲ୍ଲଭୀୟ ସମ୍ପ୍ରଦାୟର ଗୁରୁ ଗୋସ୍ୱାମୀ ହିତ ହରିବଂଶ ତାଙ୍କର 'ହିତ ଚଉରାଶୀ' ପଦ ସଂଗ୍ରହ (ବ୍ରଜ ଭାଷାରେ) ପାଇଁ ଉଚ୍ଚ ସ୍ଥାନ ଅଧିକାର କରିଛନ୍ତି । ତାଙ୍କ ଦୃଷ୍ଟିରେ କୃଷ୍ଣ ନୁହନ୍ତି, ରାଧା ହେଉଛନ୍ତି ପ୍ରେଷ୍ଠସନ୍ ପ୍ରେୟସାମପି । ଭକ୍ତମାନେ ନାରୀ ରୂପରେ ଭୂଷିତ ହୋଇ ରାଧାଙ୍କର ବାନ୍ଧବୀ (ସଖୀ) ଭାବରେ ନିଜକୁ ପରିଚିତ କରାନ୍ତି । ଅନୁଭୂତିର ଆନ୍ତରିକତା ଓ ତନ୍ମୟତାର ସ୍ୱାକ୍ଷର ବହନ କରିଥିବା ମୁସଲମାନ କବି 'ରସଖାନ୍'ଙ୍କର କୃଷ୍ଣଭକ୍ତି ସମ୍ପର୍କୀୟ ରଚନା କୃଷ୍ଣଭକ୍ତଙ୍କ ଦ୍ୱାରା ବିଶେଷ ଆଦୃତ ।

ଏ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ କୃଷ୍ଣଭକ୍ତିର ଶୁଦ୍ଧ ମଧୁରଭାବ ଷୋଡ଼ଶ ଶତାବ୍ଦୀ ବେଳକୁ ପାର୍ଥିବ ରଙ୍ଗରେ ରଞ୍ଜିତ ହୋଇଛି । ରଚନାର ମୁଖ୍ୟରସ ଯାହା ବା ଭକ୍ତି ହେଉ, ତାହା ଶୃଙ୍ଗାରିକତାର ସ୍ପର୍ଶରୁ ରକ୍ଷା ପାଇନାହିଁ । ସପ୍ତଦଶ ଶତାବ୍ଦୀ ପରେ କୃଷ୍ଣ ଓ ଗୋପୀ ନାମରେ ପ୍ରଣୟ ପାର୍ଥିବ ଭାବ-ପ୍ରଧାନ ହୋଇ ପଡ଼ିଛି । ଫଳରେ ବିଷୟ ଓ

(୨୧) ଶୂର ଦାସଙ୍କର ଗୀତର ନମୁନା :—

ନାଚର ମନ ଗଣ୍ଡ ଅରୁଝାଇ ।
ଅତି ବିରହ ତନୁ ଭଇ ବ୍ୟାକୁଲ, ଘର ନ ମୈଁକୁ ସୁହାଇ ॥
ସ୍ୟାମ ସୁନ୍ଦର ମଦନ ମୋହନ, ମୋହନୀ ସୀ ଲାଇ ।
ଚିତ୍ତ ଚଞ୍ଚଲ କୁଁଵରି ରାଧା, ଖାନ-ପାନ ଭୁଲାଇ ॥
କବହୁଁ ବିହଁସି ଯତି, କବହୁଁ ବିଲପତି, ସକୁଚି ରହତି ଲଜାଇ ।
ମାତୁ-ପିତୁ କୌ ତ୍ରାସ ମାନତି, ମନ ବିନା ଭଇ ବାଇ ॥
ଜନନି ସୌଁ ଦୋହନୀ ମାଁଗତି, ବେଗି ଦୈରି ମାଇ ।
ସୂର ପ୍ରଭୁକୌଁ ଖରିକ ମିଲି ହୌଁ, ଗଏ ମୋହିଁ ବୁଲାଇ ॥ ୭୭୮
ଶ୍ରୀ ରାଧାକୃଷ୍ଣ ମିଲାପ, ସୂର-ସାଗର (ଦଶମ ସ୍କନ୍ଧ) ୨ୟ ଖ., ସମ୍ପା : ନନ୍ଦ ଦୁଲାରେ ବାଜପେୟୀ, ପୃ. ୪୭୮

(୨୨) ଅଷ୍ଟ ଛାପଙ୍କର ନାମ :—ଶୂର ଦାସ, ନନ୍ଦ ଦାସ, କୃଷ୍ଣ ଦାସ, ପରମାନନ୍ଦ ଦାସ, କୁମ୍ଭନ ଦାସ, ଚତୁର୍ଭୁଜ ଦାସ, ଛୀତ ସ୍ୱାମୀ, ଗୋବିନ୍ଦ ସ୍ୱାମୀ ।

ପ୍ରକାଶଭଙ୍ଗୀ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇ ଯାଇଛି ଏବଂ ରଚନା ଅଳଙ୍କାର, ଛନ୍ଦ ଓ ରୀତି ସର୍ବସ୍ୱ ହୋଇ ପୂର୍ବର ବସ୍ତୁ, ରସ ଓ ଚରିତ୍ରର ଆଲେଖ୍ୟଗତ ସ୍ୱାଭାବିକ ସୌନ୍ଦର୍ଯ୍ୟ ହରାଇଛି ।

ମୋଗଲ ଶକ୍ତିର ପତନ ପରେ ପରେ ପରାଜିତ ଅବସନ୍ନ ଭାରତୀୟ ଓ ମୁସଲମାନ ମାନଙ୍କର ସଙ୍କୀର୍ଣ୍ଣ ଭୁରୁଣ୍ଡ ଜୀବନ ଏକ ଅବକ୍ଷୟର ସଙ୍କେତ ବହନ କରି ସାହିତ୍ୟରେ ତା'ର ପ୍ରତିଫଳନ ଘଟାଇଥିଲା । ଏକ ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀ, ଐନ୍ଦ୍ରିକ ସୁଖର ଉପଲବ୍‌ଧି, ଦେହଜ ପ୍ରେମ ଓ ଶୃଙ୍ଗାରର ନଗ୍ନ ଆଲେଖ୍ୟ, କାବ୍ୟରେ କୃତ୍ରିମ ଶିଳ୍ପଗୁରୁତ୍ୱ—ଏହି ହେଲା ହିନ୍ଦୀର ରୀତିକାଳୀନ ସାହିତ୍ୟର ଲକ୍ଷଣ । ବିଭିନ୍ନ କବି କାବ୍ୟର ବିଭିନ୍ନ ବିଭାବ, ଶୃଙ୍ଗାର ଓ ଅଳଙ୍କାର ଉପରେ ତାତ୍ତ୍ୱିକ ଗ୍ରନ୍ଥମାନ ପ୍ରଣୟନ କରିଯାଇଛନ୍ତି । ଏମାନଙ୍କ ମଧ୍ୟରେ ଦେବ (ରସ ରହସ୍ୟ), ସୁରତି ମିଶ୍ର (କାବ୍ୟ ସିଦ୍ଧାନ୍ତ), ରସିକ ଗୋବିନ୍ଦ, ସୋମନାଥ, କେଶବ (ରସିକ ପ୍ରିୟା), ମତିରାମ (ରସରାଜ), କବି କର୍ଣ୍ଣେଶ (ଶ୍ରୁତି ଭୂଷଣ) ଓ ରସିକ ସୁମତିଙ୍କ (ଅଳଙ୍କାର ଚନ୍ଦ୍ରୋଦୟ) ନାମ ଉଲ୍ଲେଖ ଯୋଗ୍ୟ । ରୀତି ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହୋଇ ନ ଥିବା ଶୃଙ୍ଗାରୀ କବି ଘନାନନ୍ଦ ଓ ରସଖାନ୍‌ଙ୍କର ପ୍ରଣୟ ଚିତ୍ର ସ୍ୱାଭାବିକ । ନାୟକ ନାୟିକାଙ୍କ ବିଚ୍ଛେଦ ଚିତ୍ରରେ ଏମାନେ ସ୍ୱକୀୟ ଅନୁଭୂତିକୁ ରୂପଦାନ କରିଛନ୍ତି । ଘନା-ନନ୍ଦଙ୍କର ପ୍ରଧାନ ରଚନା ହେଉଛି : ସୁଜନ ସାଗର, ରସକେଳିବଲ୍ଲୀ ଓ କୃପାକନ୍ଦ । ରୀତି କବିମାନଙ୍କ ମଧ୍ୟରେ (କଥାପ୍ରଧାନ କାବ୍ୟକାର) ଯୋଧରାଜ (ହମିର ରାସୋ), ହରନାରାୟଣ (ମାଧବାନନ୍ଦ କାମକନ୍ଦଳ), ବ୍ରଜବାସୀ ଦାସ (ବ୍ରଜ ବିଳାସ , ମଧୁସୂଦନ (ରାମେଶ୍ୱମେଧ), ପଦ୍ମାକର (ରାମ ରସାୟନ) ଓ ଚନ୍ଦ୍ର ଶେଖରଙ୍କର (ହମିର ହଠ) ନାମ ଉଲ୍ଲେଖ ଯୋଗ୍ୟ । ପଦ୍ୟରେ ଦାନଲୀଳା, ମାନଲୀଳା ହୋଲି ଓ ଝୁଲ ପ୍ରଭୃତି କେତେକ କଥନିକାପ୍ରଧାନ ପ୍ରବନ୍ଧ ଦେଖାଯାଏ (୨୩) ।

**ଅସମୀୟା ସାହିତ୍ୟରେ :**

ଉତ୍ତର ଭାରତର ବୈଷ୍ଣବ ଚିନ୍ତାଧାରାର ବ୍ୟତିକ୍ରମ ସ୍ୱରୂପ ଅସମୀୟା ବୈଷ୍ଣବ କବିମାନେ କୃଷ୍ଣ ଓ ତାଙ୍କର ଭକ୍ତଙ୍କ ମଧ୍ୟରେ ଦାସ୍ୟ ଓ ବାତ୍ସଲ୍ୟ ଭାବ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଆସାମର ବୈଷ୍ଣବ ଆନ୍ଦୋଳନର ସ୍ରଷ୍ଟା ଶଙ୍କରଦେବ ଶ୍ରୀକୃଷ୍ଣଙ୍କ ପ୍ରତି ଦାସ୍ୟ ଭକ୍ତି ଉପରେ ତାଙ୍କର ମତ ଓ ପ୍ରଚାରକୁ ପ୍ରତିଷ୍ଠିତ କରିଥିଲେ ଏବଂ ଭାଗବତ ଥିଲା ତାଙ୍କ ମତବାଦର ମୂଳ ପ୍ରେରଣା । ତାଙ୍କର ରଚନା ଗୁଡ଼ିକ ମଧ୍ୟରେ 'ଭାଗବତ ପୁରାଣ', 'ବୈଷ୍ଣବାମୃତ' ଓ 'କୀର୍ତ୍ତନ ଘୋଷ'ର ନାମ ଉଲ୍ଲେଖଯୋଗ୍ୟ । ସେ ବ୍ରଜବୁଲି ଓ ଅସମୀୟା ମିଶ୍ରିତ ଭାଷାରେ କୋମଳ ଭାବ ଓ କାବ୍ୟିକ ସୌନ୍ଦର୍ଯ୍ୟ ସମ୍ପନ୍ନ ଜନପ୍ରିୟ 'ବରଗୀତ' ରଚନା କରିଛନ୍ତି । ଶଙ୍କର ଦେବଙ୍କ ଶିଷ୍ୟ ମାଧବ ଦେବ 'ନାମଘୋଷ', 'ଭକ୍ତିରତ୍ନାବଳୀ' (ସଂସ୍କୃତରୁ ଅନୂଦିତ) ଓ 'ବରଗୀତ' ପାଇଁ ପ୍ରସିଦ୍ଧ । ତାଙ୍କର

(୨୩) Dr. Savitri Sinha, "Hindi", Indian Literature, ed. Dr. Nagendra PP. 592-642

'ବରଗୀତ'ରେ ଶ୍ରୀକୃଷ୍ଣଙ୍କ ବାଲ୍ୟ ଲୀଳାର ବାତ୍ସଲ୍ୟ-ମଧୁର ଛବି ଏକାନ୍ତ ପ୍ରାଣସ୍ପର୍ଶୀ (ଓଡ଼ିଶାର କବି ଅଭିମନ୍ୟୁ, ବନମାଳୀ ଓ ଗୋପାଳକୃଷ୍ଣଙ୍କର ବାତ୍ସଲ୍ୟଭାବ ସମ୍ବଳିତ ଛାନ୍ଦ ଓ ଗୀତପରି) ! ଦ୍ୱିଜ କଳାପଚନ୍ଦ୍ରଙ୍କ 'ରାଧା ଚରିତ' ପ୍ରଚଳିତ ରାଧାକୃଷ୍ଣ ପ୍ରସଙ୍ଗର ଏକ ବ୍ୟତିକ୍ରମ । ଏଥିରେ ରାଧାଙ୍କ ଚରିତ୍ରରେ ଶ୍ରୀକୃଷ୍ଣଙ୍କ ପ୍ରତି ନିଷ୍କାମ ଭକ୍ତି ଏବଂ ସମସ୍ତ ତ୍ୟାଗ ଓ ଯନ୍ତ୍ରଣାର ଅଗ୍ନିଦାହ ମଧ୍ୟରେ ଆତ୍ମସମର୍ପଣ ଭାବ ଉଜ୍ଜ୍ୱଳ ବର୍ଣ୍ଣବିଭାରେ ଉଦ୍ଭାସିତ । ସାଙ୍ଗୀତିକ ମାଧୁର୍ଯ୍ୟ ହେତୁ ଅନନ୍ତ ଅତାଙ୍କର ରାମାୟଣ (ରାମ କୀର୍ତ୍ତନ) ଆସାମରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଛି (୬୪) ।

## (ଖ) ଭକ୍ତି ଓ ପ୍ରେମ ପ୍ରଧାନ

# ଲୌକିକ ଓ ବୈଷ୍ଣବ ଗୀତ କାବ୍ୟର ପରମ୍ପରା

[ମୈଥିଳୀ, ବ୍ରଜବୁଲି, ବଙ୍ଗଳା ଓ ଓଡ଼ିଆ ସାହିତ୍ୟରେ]

### ମୈଥିଳୀ, ବ୍ରଜବୁଲି ଓ ବଙ୍ଗଳା ସାହିତ୍ୟ :

ଚୈତନ୍ୟଙ୍କ ଆବିର୍ଭାବ ଏବଂ ବଙ୍ଗ, ବୃନ୍ଦାବନ ଓ ଓଡ଼ିଶାରେ ବୈଷ୍ଣବ ଧର୍ମର ବ୍ୟାପକ ପ୍ରଚାର ଫଳରେ ବୈଷ୍ଣବ ସାହିତ୍ୟ କିପରି ଋଦ୍ଧିମନ୍ତ ହୋଇଥିଲା ବଙ୍ଗ ଓ ଓଡ଼ିଶାର ବୈଷ୍ଣବ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ସହଜରେ ଜଣାଯାଏ । ବଙ୍ଗଦେଶରେ ଯେଉଁ ବିପୁଳ ପଦାବଳୀ ସାହିତ୍ୟ ଦେଖାଯାଏ ତାହା ସଂସ୍କୃତ ସାହିତ୍ୟର ଗୀତି ପ୍ରବୃତ୍ତିର ଏକ ସୁଫଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାଗବତ ପୁରାଣ, ଗୀତଗୋବିନ୍ଦ, କୃଷ୍ଣକର୍ଣ୍ଣାମୃତ ଓ ସଂସ୍କୃତର କେତେକ ସଂଗ୍ରହ ଗ୍ରନ୍ଥ (କବୀନ୍ଦ୍ର ବଚନ ସମୁଚ୍ଚୟ, ପ୍ରଭୃତି) ରୂପ ଓ ବସ୍ତୁ ଦୃଷ୍ଟିରୁ ପଦାବଳୀ ସାହିତ୍ୟ ଉପରେ ଗଭୀର ପ୍ରଭାବ ପକାଇ ଆସିଛି । ବଙ୍ଗଳାର ବୈଷ୍ଣବ ପଦାବଳୀ ମଧ୍ୟରୁ କେତେକ ବ୍ରଜବୁଲି ଏବଂ ଅନ୍ୟ ଗୁଡ଼ିକ ବଙ୍ଗଳାରେ ଲିଖିତ । ଚୈତନ୍ୟଙ୍କର ସାଧନା ଓ ଦିବ୍ୟ ଜୀବନଧାରା ତାଙ୍କ ସମସ୍ତର ଓ ପରବର୍ତ୍ତୀ ତିନି ଶତାବ୍ଦୀ ଧରି ବହୁ ବୈଷ୍ଣବ କବିଙ୍କୁ ପଦାବଳୀ ରଚନାର ପ୍ରେରଣା ଦେଇଆସିଛି । କିନ୍ତୁ ବଙ୍ଗୀୟ ବୈଷ୍ଣବ କବିଙ୍କ ନିକଟରେ ପଦାବଳୀ ରଚନାର ପ୍ରଧାନ ଓ ମୂଳ ପ୍ରେରଣା ଆସିଥିଲା ମୈଥିଳୀ କବି ବିଦ୍ୟାପତିଙ୍କ ଠାରୁ ।

---

(୬୪) Birinchi Kumar Barua, Assamese Literature, P. E. N. Books, PP. 16-24, 28-29.

## ବ୍ରଜବୁଲି :

ବ୍ରଜବୁଲି ପାଲି, ଗାଥା ଭାଷା, ସାହିତ୍ୟିକ ପ୍ରାକୃତ ଓ ଅପଭ୍ରଂଶ ପରି ଏକ ମିଶ୍ରିତ କୃତ୍ରିମ ଭାଷା (୨୫) । ଅନ୍ୟ ଯେ କୌଣସି କୃତ୍ରିମ ଭାଷାର ସାହିତ୍ୟ ପରି ବ୍ରଜବୁଲି ପଦାବଳୀ ଅତି ସମୃଦ୍ଧିଶାଳୀ । ମିଥିଳା ସହ ପ୍ରତ୍ୟକ୍ଷ ସମ୍ପର୍କ ଫଳରେ ବଙ୍ଗୀୟ ବୈଷ୍ଣବଙ୍କ ଦ୍ୱାରା ଏ ଭାଷା ଓ ସାହିତ୍ୟର ବିକାଶ ଘଟିଛି । ବିଦ୍ୟାପତିଙ୍କର ମୈଥିଳୀ ସଙ୍ଗୀତ ସମ୍ଭୃତ ଉଦ୍ଭଟ କବିତାର ସାର୍ଥକ ଉତ୍ତରାଧିକାରୀ । ନ୍ୟାୟ ଓ ସ୍ମୃତି ଶାସ୍ତ୍ର ଅଧ୍ୟୟନ ପାଇଁ ମିଥିଳା-ଗାମୀ ଛାତ୍ରମାନେ ଫେରିଲା ବେଳକୁ ବିଦ୍ୟାପତି ଓ ତାଙ୍କ ପୂର୍ବ କବିଙ୍କର ଦେଶୀ ଭାଷାରେ ରଚିତ ମୂଳକାତ ପ୍ରେମ ମୂଳକ ମଧୁର ସଙ୍ଗୀତ ଆଣିଥିଲେ । ସଙ୍ଗୀତ ଗୁଡ଼ିକର ଅତ୍ୟଧିକ ଗୀତ ମାଧୁର୍ଯ୍ୟ, ଭାଷାର କୋମଳତା ଓ ସଂକ୍ଷିପ୍ତତା ହେତୁ ବଙ୍ଗର ପଣ୍ଡିତ କବିମାନେ ସେଗୁଡ଼ିକର ଆଦର୍ଶରେ (ଛନ୍ଦ ଓ ଭାଷା) ସଙ୍ଗୀତ ରଚନା କରିବାକୁ ଲାଗିଲେ । ସମଗ୍ର ଭାବରେ କୃଷ୍ଣ କାହାଣୀକୁ ଭିତ୍ତି କରି ମୈଥିଳୀ ସଙ୍ଗୀତ ଗୁଡ଼ିକ ରଚିତ ନୁହେଁ, କିନ୍ତୁ ବଙ୍ଗ ଦେଶରେ ବ୍ରଜବୁଲିର ଉତ୍ପତ୍ତି ଚୈତନ୍ୟଙ୍କର ଆବିର୍ଭାବ ଓ ବୈଷ୍ଣବ ଧର୍ମର ପୁନର୍ଜୀବନ ସହ ସମକାଳୀନତା ଲାଭ କରିଥିଲା । ସୁତରାଂ ମୈଥିଳୀ ସଙ୍ଗୀତର ଆଦର୍ଶରେ ରଚିତ ବ୍ରଜବୁଲି ଗୀତଗୁଡ଼ିକ (୨୬) କେବଳ କୃଷ୍ଣ କାହାଣୀ ଅବଲମ୍ବନରେ ଗଢ଼ି ଉଠିଥିଲା (୧୫ଶ ଶତାବ୍ଦୀର ଶେଷ ଓ ୧୬ଶ ଶତାବ୍ଦୀର ଆରମ୍ଭରେ) । ଚୈତନ୍ୟଙ୍କର ସଖା ଓ ଶିଷ୍ୟମାନେ ପ୍ରଥମ ବ୍ରଜବୁଲି ଲେଖକ ଏବଂ ବଙ୍ଗର ବୈଷ୍ଣବ ପଦାବଳୀ ସାହିତ୍ୟ ନବ ବୈଷ୍ଣବଙ୍କର (Neo-Vaisnavites) ସାଧନାର ଫଳ ।

ବୈଷ୍ଣବ ପଦାବଳୀ ସାହିତ୍ୟ ବହୁ ବ୍ରଜବୁଲି ଗୀତରେ ପରିପୂର୍ଣ୍ଣ । ବିଖ୍ୟାତ ପଦ ସଂଗ୍ରହ ଗ୍ରନ୍ଥ କ୍ଷଣଦାଗୀତ ଚିନ୍ତାମଣି, ପଦାମୃତ ସମୁଦ୍ର, ପଦ କଳ୍ପତରୁ (ମୂଳ ନାମ ଗୀତ କଳ୍ପତରୁ ଯାହା ବଙ୍ଗୀୟ ବୈଷ୍ଣବ ଧର୍ମଗୀତର ବେଦ), କୀର୍ତ୍ତନାନନ୍ଦ, ସଙ୍କୀର୍ତ୍ତନାମୃତ, ଭକ୍ତିରତ୍ନାକର, ପଦକଳ୍ପ ଲତିକା, ଗୌର ପଦତରଙ୍ଗିଣୀ, ପଦରତ୍ନାବଳୀ, ପଦରସ ସାର ଓ ପଦ ରତ୍ନାକରରେ ତା'ର ସନ୍ଧାନ ମିଳିପାରିବ । ବ୍ରଜବୁଲି ପଦର କବିମାନଙ୍କ ମଧ୍ୟରେ ଯଶୋରାଜ ଖାଁ, ରାୟ ରାମାନନ୍ଦ, ମୁରାରି ଗୁପ୍ତ, ମାଧବୀ ଦାସ, ଜ୍ଞାନ ଦାସ, ବଳରାମ ଦାସ (ପ୍ରଥମ), ନରୋତ୍ତମ ଦାସ, ଗୋବିନ୍ଦ ଦାସ କବିରାଜ, ରାୟ ଶେଖର, କବି ବଲ୍ଲଭ, ଯଦୁ ନନ୍ଦନ ଦାସ (ଦ୍ୱିତୀୟ), ଜଗଦାନନ୍ଦ ଦାସ, ବଳଦେବ ଦାସ (ବିଦ୍ୟାଭୂଷଣ) ଓ ପ୍ରତାପରୁଦ୍ର

---

(୨୫) Dr. Sukumar Sen, History of Brajabuli Literature, Calcutta University, 1935, P. 1.

(୨୬) ବ୍ରଜବୁଲି ଭାଷାରେ ସ୍ୱରବର୍ଣ୍ଣର ଦୈର୍ଘ୍ୟ, ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣର ବୈଚିତ୍ର୍ୟ, ଦୋଳାୟିତ ଛନ୍ଦ, ବହୁ ବିଚିତ୍ର ଶବ୍ଦାବଳୀ, ସରଳ ସହଜ ଭାଷଣ ପଦ୍ଧତି—ଏ ସବୁ ବୈଶିଷ୍ଟ୍ୟ ଥିବାରୁ ଶିକ୍ଷିତ ଲେଖକମାନେ ଏହାକୁ ଗୀତି କବିତାର ଯୋଗ୍ୟ ବାହନ ରୂପେ ଗ୍ରହଣ କରିଥିଲେ । ବଙ୍ଗଳା ଓ ବ୍ରଜବୁଲି ଗୀତରେ ଧ୍ୱନି ଚାପଲ୍ୟ ଓ ସ୍ୱର ମାଧୁର୍ଯ୍ୟ ପ୍ରକାଶିତ । ତତ୍ରୈବ, ପୃ. ୯୨

ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ପୂର୍ବୋକ୍ତ ପଦ ସଂଗ୍ରହ ଗ୍ରନ୍ଥମାନଙ୍କରେ ବ୍ରଜବୁଲି ସହିତ ବଙ୍ଗଳା ଭାଷାର ବହୁ ପଦ ସଂଗୃହୀତ ହୋଇଛି ।

**ଭକ୍ତିବାଦର ଦୁଇଟି ଧାରା :**

ପଞ୍ଚଦଶ ଶତାବ୍ଦୀଠାରୁ ଭକ୍ତିବାଦର ଦୁଇଟି ବଶିଷ୍ଟ ଧାରା ପ୍ରବାହିତ ହୁଏ—ଗୋଟିଏ ସ୍ୱାମୀ ରାମାନନ୍ଦଙ୍କର, ଅନ୍ୟଟି ମାଧବେନ୍ଦ୍ର ପୁରୀଙ୍କର । ଜାତିଭେଦ ଅସ୍ୱୀକାର କରି ଅଦ୍ୱୈତବାଦ ଉପରେ ନିଜର ମତ ପ୍ରତିଷ୍ଠିତ କରି ସ୍ୱାମୀ ରାମାନନ୍ଦ ବାରାଣସୀ ଅଞ୍ଚଳରେ ନିଜ ଭକ୍ତି ଧର୍ମ ପ୍ରଚାର କରନ୍ତି । ପଞ୍ଜାବ ଓ ସିନ୍ଧୁର ସୁଫି ସମ୍ପ୍ରଦାୟଭୁକ୍ତ କବିମାନେ ମାତୃଭାଷାରେ ଗାନ ରଚନା କରି ନିଜର ମତକୁ ଲୋକପ୍ରିୟ କଲା ପରି ସ୍ୱାମୀ ରାମାନନ୍ଦ ସମସ୍ତଙ୍କ ନିକଟରେ ନିଜର ନୂତନ ଭକ୍ତିଭାବର ଆବେଦନ ପହଞ୍ଚାଇବା ପାଇଁ ମାତୃଭାଷାରେ ନିଜର ଗାନ ଓ ଗାଥା ଗୁଡ଼ିକ ରଚନା କଲେ । ପୂର୍ବାଞ୍ଚଳରେ ଭକ୍ତି ଧର୍ମର ଯେଉଁ ଧାରା ପ୍ରବାହିତ ହେଲା, ସେଥିରେ ଭକ୍ତିରସ ପ୍ରଧାନତଃ ବାତ୍ସଲ୍ୟ ଭାବକୁ ଆଶ୍ରୟ କରି ପ୍ରକାଶିତ ହେଲା ଏବଂ ବାଳଗୋପାଳ ଉପାସନା ପ୍ରବର୍ତ୍ତିତ ହେଲା । ଜଣେ ବୈଦାନ୍ତିକ ସନ୍ନ୍ୟାସୀ ହୋଇ ମଧ୍ୟ ମାଧବେନ୍ଦ୍ର ପୁରୀ (୧୫ଶ ଶତାବ୍ଦୀର ଶେଷ) ଏ ଭକ୍ତିମାର୍ଗର ପ୍ରଧାନ ପ୍ରବର୍ତ୍ତକ ଥିଲେ । ମାଧବେନ୍ଦ୍ର ମଥୁରାରେ ବହୁ ପ୍ରାଚୀନ ମୂର୍ତ୍ତି ଉଦ୍ଧାର କରି କୃଷ୍ଣଗୋପାଳଙ୍କ ପୂଜା ପ୍ରତିଷ୍ଠିତ କରି ବୈଷ୍ଣବ ଧର୍ମର କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଚୈତନ୍ୟ ମଥୁରାରେ କୃଷ୍ଣଙ୍କର ଲୀଳାସ୍ଥାନ ଗୁଡ଼ିକ ସ୍ଥିର କରାଇ ତାଙ୍କର ଶିଷ୍ୟ ସନାତନ ଓ ରୂପ ଗୋସ୍ୱାମୀଙ୍କ ସାହାଯ୍ୟରେ ମାଧବେନ୍ଦ୍ରଙ୍କ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିଥିଲେ । ମାଧବେନ୍ଦ୍ର ପୁରୀଙ୍କ ପ୍ରଧାନ ଶିଷ୍ୟ ଈଶ୍ୱର ପୁରୀ ଚୈତନ୍ୟଙ୍କର ଗୁରୁ ଥିଲେ ଏବଂ ଚୈତନ୍ୟଙ୍କର ସଖା ଅଦ୍ୱୈତ ଓ ନିତ୍ୟାନନ୍ଦ ମାଧବେନ୍ଦ୍ରଙ୍କର କୃପା ଲାଭ କରିଥିଲେ । ମାଧବେନ୍ଦ୍ର ଥିଲେ ଦକ୍ଷିଣ ଓ ଉତ୍ତର ଭାରତର ଭକ୍ତି ଧାରାର ସଂଯୋଗ ସାଧକ । ଚୈତନ୍ୟଙ୍କ ଉପରେ ମାଧବେନ୍ଦ୍ରଙ୍କର ପ୍ରଭାବ ଥିଲା ଅସୀମ । ଚୈତନ୍ୟଙ୍କର ପରବର୍ତ୍ତୀ ଜୀବନରେ ପ୍ରେମିକାର ବିରହ ବ୍ୟଥାର ଯେଉଁ ନିବିଡ଼ ପରିଚୟ ମିଳେ ତାହା ମାଧବେନ୍ଦ୍ରଙ୍କର ପରବର୍ତ୍ତୀ ଜୀବନରେ ଲକ୍ଷିତ ହୋଇଥିଲା (୨୭) । ବଙ୍ଗୀୟ ବୈଷ୍ଣବ ସାଧକମାନେ ଶ୍ରୀମଦ୍ ଭାଗବତରୁ ଭକ୍ତି ଓ ପ୍ରେମର (ଶୁଦ୍ଧ ପ୍ରେମ) ଯେଉଁ ସଙ୍କେତ ପାଇଲେ ଦକ୍ଷିଣ ଭାରତ ଥିଲା ତା'ର ଉତ୍ସ-ମୁଖ । ଗୌଡ଼ଦେଶରେ ଅବସ୍ଥାପିତ କର୍ଣ୍ଣାଟ ବ୍ରାହ୍ମଣ ରୂପ ଓ ସନାତନ ଚୈତନ୍ୟଙ୍କ ସହ ସାକ୍ଷାତ୍ର ପୂର୍ବରୁ ଭାଗବତର ବୈଷ୍ଣବ ସାଧନା ଦିଗ ପ୍ରତି ଆକୃଷ୍ଟ ହୋଇଥିଲେ । ୧୫ଶ ଶତକର ଶେଷ ଭାଗରେ ବଙ୍ଗର ଦୁଇ ବୈଷ୍ଣବ ତୀର୍ଥ ଶାନ୍ତିପୁର ଓ ନବଦ୍ୱୀପରେ ଭାଗବତର ବହୁଳ ଚର୍ଚ୍ଚା ହେଉଥିଲା ।

---

(୨୭) ମୃତ୍ୟୁ ଶଯ୍ୟାରେ ମାଧବେନ୍ଦ୍ରଙ୍କ ରଚିତ ଶ୍ଲୋକ ହେଉଛି :—

ଅୟି ଦୀନଦୟାର୍ଦ୍ର-ନାଥ ହେ   ମଥୁରାନାଥ କଦାବଲୋକ୍ୟସେ ।
ହୃଦୟଂ ତ୍ୱଦଲୋକକାତରଂ   ଦୟିତ ଭ୍ରାମ୍ୟତି କିଂ କରୋମି ଅହମ୍ ।।

( ପଦ୍ୟାବଳୀ, ୩୩୪ )

Dr. Sukumar Sen, H. B. L. Pub, Cal. University, P.13

**ଚୈତନ୍ୟ :**

ଚୈତନ୍ୟ ଲୋକମାନଙ୍କର କଲ୍ୟାଣ ପାଇଁ ସଂକୀର୍ତ୍ତନ ମାଧ୍ୟମରେ ଭଗବଦ୍ଭ ଉପାସନାର ମାର୍ଗ ପ୍ରସ୍ତୁତ କରିଦେଲେ । ଏଥିରେ ଯୁଗ ଯୁଗ ଧରି ସମାଜର ନାନା ସଂସ୍କାରରେ ଆବଦ୍ଧ ମନୁଷ୍ୟ ତାର ସାମାଜିକ, ସାଂସ୍କୃତିକ ଓ ଜାତିଗତ ମୁକ୍ତିର ସନ୍ଧାନ ପାଇପାରିଲା । ଦାକ୍ଷିଣାତ୍ୟ ଭ୍ରମଣ ସମୟରେ ଚୈତନ୍ୟ ରାଜାନୁଗ ପନ୍ଥୀ ପରମ ଭାଗବତ ରାୟ ରାମାନନ୍ଦଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ବ୍ରହ୍ମ ସଂହିତା ଓ କୃଷ୍ଣକର୍ଣ୍ଣାମୃତମ୍ (ବଙ୍ଗର ପରବର୍ତ୍ତୀ ବୈଷ୍ଣବ ଧର୍ମର ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ) ଏହି ଦୁଇଟି ଉପାଦେୟ ଗ୍ରନ୍ଥ ସଂଗ୍ରହ କରିଥିଲେ । ପୁରୀବାସ-କାଳରେ ବିରହ ବ୍ୟଥିତ ଚୈତନ୍ୟ ଗଦାଧର ପଣ୍ଡିତ ଓ ସ୍ୱରୂପ ଦାମୋଦରଙ୍କ ମୁଖରୁ ଯଥାକ୍ରମେ ଶ୍ରୀମଦ୍‌ଭାଗବତ ଓ ଜୟଦେବଙ୍କର ଗୀତଗୋବିନ୍ଦର କୃଷ୍ଣଲୀଳା ସମ୍ପର୍କୀୟ କାନ୍ତକୋମଳ ପଦାବଳୀ ଶ୍ରବଣ କରି ବେଦନାର ଉପଶମ କରୁଥିଲେ । ସାମ୍ବତ୍ସରିକ ପୁରୀ ରଥଯାତ୍ରା ସମୟରେ ବଙ୍ଗ ଓ ଓଡ଼ିଶାର ବୈଷ୍ଣବମାନଙ୍କର ମିଳନ ଉଭୟ ରାଜ୍ୟର ସମ୍ପର୍କକୁ ଘନିଷ୍ଠତର କରୁଥିଲା । ଚୈତନ୍ୟ ତାଙ୍କର ଅନୁରାଗୀ ଭକ୍ତଙ୍କ ମଧ୍ୟରେ ଅବତାର ରୂପେ ସମ୍ମାନିତ ହୋଇଥିଲେ ଏବଂ ଅଦ୍ୱୈତ ପ୍ରଭୃତି ତାଙ୍କର ପରମ ଶିଷ୍ୟମାନେ ଚୈତନ୍ୟଙ୍କୁ (ଗୌରାଙ୍ଗ) ଈଶ୍ୱରଙ୍କର ଅବତାର ରୂପେ ଘୋଷଣା କରି ତାଙ୍କର ପୂଜା ପ୍ରଚଳନ କରିବା ସଙ୍ଗେ ସଙ୍ଗେ ତାଙ୍କ ନାମରେ ଗୀତ ରଚନା କରି କୀର୍ତ୍ତନର ପ୍ରବର୍ତ୍ତନ କଲେ ।

**ସନାତନ ଗୋସ୍ୱାମୀ ଓ ରୂପ ଗୋସ୍ୱାମୀ :**

ସନାତନ ଓ ରୂପ ଚୈତନ୍ୟ ଓ ନିତ୍ୟାନନ୍ଦଙ୍କର ଈଶ୍ୱରତ୍ୱ ମାନିନେଇ ବୃନ୍ଦାବନରେ ବୈଷ୍ଣବ ଶାସ୍ତ୍ରବିଧିର ଶିକ୍ଷାକ୍ଷେତ୍ର ସ୍ଥାପନ କରି ଭାଗବତ ଅଧ୍ୟୟନ ଉପରେ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ରାଧାକୃଷ୍ଣଙ୍କର ଯୁଗଳ ଉପାସନା (୪) ସର୍ବସମ୍ମତ କରିବା ପାଇଁ ସଂସ୍କୃତରେ ନାଟକ, କାବ୍ୟ, ଦର୍ଶନ ଓ ଅଳଙ୍କାର ଶାସ୍ତ୍ର ରଚନା କରିଥିଲେ । ବୃନ୍ଦାବନର ଅନ୍ୟ ବୈଷ୍ଣବ ଗୋସ୍ୱାମୀମାନେ ରୂପ ସନାତନ ଅନୁସରଣରେ ଚୈତନ୍ୟଙ୍କୁ ରାଧାକୃଷ୍ଣଙ୍କର ଯୁଗଳ ଅବତାର ଭାବରେ ଗ୍ରହଣ କରିଥିଲେ ।

**ଲୋକ ସାଧାରଣଙ୍କର ମାନସିକ ମୁକ୍ତି; ଗୀତ-ଉଚ୍ଛ୍ୱାସପୂର୍ଣ୍ଣ ପଦାବଳୀ :**

ଚୈତନ୍ୟଙ୍କର ଆବିର୍ଭାବ ଓ ନବବୈଷ୍ଣବ ମତର ପ୍ରଚାର ଫଳରେ ମାନବ ଜୀବନ ପ୍ରତି ଏକ ନୂତନ ଆଗ୍ରହ ଏବଂ ଶିଳ୍ପ ସୃଷ୍ଟି କ୍ଷେତ୍ରରେ ନୂତନ ଉତ୍ସାହ ଓ ଉଦ୍ଦୀପନା ଖେଳି ଯାଇଥିଲା । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଚୈତନ୍ୟଙ୍କର ନବଧର୍ମମତ ପ୍ରଚାରିତ ହେବାରୁ ଲୋକ ସାଧାରଣ ସମାଜରେ ମାନସିକ ମୁକ୍ତିର ସନ୍ଧାନ ପାଇଲେ ଏବଂ ଚୈତନ୍ୟଙ୍କର ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସଙ୍କ ଗାନ ଶ୍ରବଣ-ଶ୍ରଦ୍ଧା ଭକ୍ତମାନଙ୍କ

(୪) Padmasri P. Acharya, "On the Worship of the Images of Radha-Krsna." Souvenir on Jayadeva, PP.58-63

ହୃଦୟରେ ରସାସ୍ୱାଦନର ବୀଜ ପ୍ରୋଥିତ କରିଥିଲା । ଫଳରେ ବଙ୍ଗ ସାହିତ୍ୟରେ ଗୀତି-ଉଚ୍ଛ୍ୱାସପୂର୍ଣ୍ଣ ଅଜସ୍ର ପ୍ରାଣସ୍ପର୍ଶୀ ପଦାବଳୀର ଉତ୍ସ ଖୋଲି ଯାଇଥିଲା (୫) । ବୈଷ୍ଣବ କାବ୍ୟ ଓ ପଦାବଳୀର ରସୋପଲବ୍ଧି ପାଇଁ ସଂସ୍କୃତକୁ ଛାଡ଼ିଦେଲେ ବଙ୍ଗଳାରେ ମଧ୍ୟ ବୈଷ୍ଣବୀୟ ଅଳଙ୍କାର ଶାସ୍ତ୍ର ରଚିତ ହୋଇଛି । ଭକ୍ତମାନେ ଚୈତନ୍ୟଙ୍କୁ ଈଶ୍ୱରଙ୍କର ଅବତାରର ସମ୍ମାନ ଦେଇଥିବାରୁ ତାଙ୍କର ଜୀବନୀ ଓ ଲୀଳା ସମ୍ପର୍କରେ ସଂସ୍କୃତ ଓ ବଙ୍ଗଳାରେ ବହୁ ଗ୍ରନ୍ଥ ଓ ପଦାବଳୀ ରଚିତ ହୋଇଯାଇଛି ।

**ବୈଷ୍ଣବ ଗାନର ପ୍ରଧାନ ବିଷୟବସ୍ତୁ :**

ବୈଷ୍ଣବ ଗୀତଗୁଡ଼ିକର ପ୍ରଧାନ ବିଷୟବସ୍ତୁ ହେଉଛି : ଗୋପୀ, ରାଧା, ବ୍ରଜବାଳକ, ପିତା ନନ୍ଦ ଓ ଜନନୀ ଯଶୋଦାଙ୍କ ସହ ଶ୍ରୀକୃଷ୍ଣଙ୍କର ଯମୁନା ତୀରରେ ବ୍ରଜଲୀଳା ଯାହା ବ୍ରହ୍ମଙ୍କର ନିତ୍ୟ ଲୀଳାର ରୂପକ ମାତ୍ର । ଜୀବ ହେଉଛି ବ୍ରହ୍ମ ସ୍ୱରୂପ, ବ୍ରହ୍ମଙ୍କର ପ୍ରକାଶ ମାତ୍ର । ବ୍ରହ୍ମଙ୍କ ପ୍ରତି ଜୀବର ପ୍ରେମ ନୈସର୍ଗିକ । ସେ ଯେଉଁ ଆନନ୍ଦ ଅନୁଭବ କରେ ତାହା ଦିବ୍ୟ ପ୍ରେମର ପ୍ରତିଛବି ମାତ୍ର । ବ୍ରହ୍ମ ସହିତ ଜୀବ ଯେତେବେଳେ ନିଜର ସମ୍ପର୍କ ହୃଦୟଙ୍ଗମ କରି ପାରି ଭଗବାନଙ୍କର ଶାଶ୍ୱତ ଲୀଳାମଣ୍ଡଳରେ ଯୋଗ ଦିଏ, ସେତେବେଳେ ଏହି ସଂସାର ମଧ୍ୟରେ ସେ ଶାଶ୍ୱତ ସ୍ୱର୍ଗୀୟ ଆନନ୍ଦ ଉପଲବ୍ଧି କରେ । ସେତେବେଳେ ଜୀବ ଦୃଷ୍ଟିରେ ତାର ସମସ୍ତ ମାନବିକ ଓ ସାମାଜିକ ସମ୍ପର୍କ ନୂତନ ଅର୍ଥ ଲାଭ କରେ ଏବଂ ସେ ବ୍ରହ୍ମଙ୍କର ନିତ୍ୟଲୀଳାମଣ୍ଡଳରେ ପ୍ରବେଶ କରିପାରେ । ବୈଷ୍ଣବ ତତ୍ତ୍ୱବିତ୍‌ମାନେ ଜୀବ ଓ ବ୍ରହ୍ମ ଶବ୍ଦ ବେଶୀ ବ୍ୟବହାର ନ କରି ବ୍ରହ୍ମ ପାଇଁ କୃଷ୍ଣ ଓ ଜୀବ ପାଇଁ ଗୋପୀ ଶବ୍ଦ ବ୍ୟବହାର କରିଛନ୍ତି । ସକ୍ରିୟ ବ୍ରହ୍ମ ବା ଉପଭୋକ୍ତା ହେଉଛନ୍ତି କୃଷ୍ଣ ଏବଂ ନିଷ୍କ୍ରିୟ ବ୍ରହ୍ମ ବା ଉପଭୁକ୍ତ ହେଉଛନ୍ତି ରାଧା । ଜୀବ ନିଷ୍କ୍ରିୟ ବ୍ରହ୍ମ ସ୍ୱରୂପ । ରାଧା ଗୋପୀମାନଙ୍କ ମଧ୍ୟରେ ଶ୍ରେଷ୍ଠା ହୋଇଥିବାରୁ ଜୀବର ପରମତତ୍ତ୍ୱ ହେଉଛି ରାଧାତତ୍ତ୍ୱ (୬) ।

**ପ୍ରେମ ଓ ରସ :**

ପରମ ଆନନ୍ଦ ସ୍ୱରୂପକୁ ଶବ୍ଦରେ ସୁବୋଧ ଭାବରେ ପ୍ରକାଶ କରିବାକୁ ହେଲେ ମାନବିକ ଆନନ୍ଦର ସର୍ବୋଚ୍ଚ ରୂପ ଯୁବକ ଯୁବତୀଙ୍କର ପ୍ରେମର ସାଦୃଶ୍ୟ ଛଳରେ ପ୍ରକାଶ କରିବାକୁ ହେବ । ବିବାହିତ ଦମ୍ପତିଙ୍କ ପ୍ରେମରେ (ସ୍ୱକୀୟାରେ) ପରକୀୟାର ଉତ୍କଣ୍ଠା ଓ ନିବିଡ଼ତାର ଅଭାବ ଥିବାରୁ ବୈଷ୍ଣବ ଦାର୍ଶନିକ ମାନେ ରାଧାକୃଷ୍ଣ ପ୍ରେମର ସ୍ୱରୂପ ବୁଝାଇବାକୁ ଯାଇ 'ପରକୀୟା' ଶବ୍ଦର ସାହାଯ୍ୟ ନେଇଥାନ୍ତି । ସମସ୍ତ ପ୍ରକାର ମାନବିକ ସ୍ନେହ ଦିବ୍ୟ ପ୍ରେମର ବିଭିନ୍ନ ସ୍ତରର ପ୍ରତିରୂପ ମାତ୍ର । ପରମ ପୁରୁଷଙ୍କ ପ୍ରତି ଭକ୍ତର ବିଭିନ୍ନ ଦୃଷ୍ଟିଭଙ୍ଗୀ ଅନୁସାରେ ଦିବ୍ୟପ୍ରେମର ବିଭାଗୀକରଣ କରାଯାଇ ଥାଏ । ଦିବ୍ୟ ପ୍ରେମର ଏହି ମାନବୀୟ

(୫) ଡକ୍ଟର ସୁକୁମାର ସେନ, ବାଂଲାର ସାହିତ୍ୟ ଇତିହାସ, ୧୯୬୫, ପୃ. ୭୧-୮୩

(୬) (କ) Dr. Sen, H. B. L, PP. 14-15

(ଖ) ଏହି ସନ୍ଦର୍ଭର ପରିଶିଷ୍ଟ (ଏକ) ଦ୍ରଷ୍ଟବ୍ୟ ।

ବିଶ୍ଳିବ ରସ ରୂପେ ପରିଚିତ ହୁଏ । ବୈଷ୍ଣବ ଆଳଙ୍କାରିକ ଏହି ରସକୁ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି, ଯଥା—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର । ଶାନ୍ତରସକୁ ଛାଡ଼ିଦେଲେ ଅନ୍ୟରସ ଗୁଡ଼ିକରେ ଭଗବାନଙ୍କ ସହିତ ଜୀବର ବ୍ୟକ୍ତିଗତ ସମ୍ପର୍କର ବ୍ୟଞ୍ଜନା ରହିଛି(୭) ।

ଚୈତନ୍ୟଙ୍କର ବୈଷ୍ଣବଧର୍ମ ପ୍ରତି ଅବିସ୍ମରଣୀୟ ଦାନ ହେଉଛି 'ଉନ୍ନତ ଉଜ୍ଜ୍ୱଳରସା ସଭକ୍ତିଶ୍ରୀ' ବା ରସରୂପା ଭକ୍ତି ! ପ୍ରିୟତମ ଭଗବାନଙ୍କୁ କାନ୍ତ ଭାବରେ ଉପାସନା ବା ଭଜନ କରିବାହିଁ ଶୁଦ୍ଧା ଭକ୍ତିର ବୈଷ୍ଣବ ମତର ନିର୍ଯ୍ୟାସ ।

## କାମ ଓ ପ୍ରେମ : ରାଧା ଓ କୃଷ୍ଣ :

କାମ ଓ ପ୍ରେମ ମୂଳତଃ ଏକ (୮) । ଏ କାମ ହେଉଛି ରାଗାତ୍ମିକା ପ୍ରେମ । ଦୈହିକ ସମ୍ଭୋଗ ବାସନା ପ୍ରବଳ ହେଲେ ତାହା ହୁଏ ମଣିଷର ଶତ୍ରୁ । ସ୍ୱାଭାବିକ ଅବସ୍ଥାରେ ତାହା ଜୀବନର ଅନୁକୂଳ ବୃତ୍ତି, ଦେହଧର୍ମ ଅନୁକରଣକାରୀ ଅଥଚ କମନୀୟ ଭାବକଳ୍ପନାରେ ସମୃଦ୍ଧ ସ୍ନିଗ୍ଧ ରୂପରେ ତାହା ମାନବୀୟ ପ୍ରେମ ଏବଂ ଦେହାତୀତ ଦିବ୍ୟ ପ୍ରୀତିରେ ତାହା ଭଗବତ୍ ପ୍ରେମ (୯) । କାମକୁ ଜୟ କରିବା ସବୁ ସାଧନାର ମୂଳବସ୍ତୁ । ଶୁଦ୍ଧାଭକ୍ତିର ବୈଷ୍ଣବ ସାଧନାରେ କାମ ଦୈହିକ ସ୍ପର୍ଶ ଶୂନ୍ୟ ବିଶୁଦ୍ଧ ଭାବ ମାତ୍ରରେ ରୂପାନ୍ତରିତ । ଏହା ହେଉଛି ପଞ୍ଚମ ପୁରୁଷାର୍ଥ । ବୈଷ୍ଣବ ସାଧକ ଦୃଷ୍ଟିରେ ଶ୍ରୀକୃଷ୍ଣ ଅପ୍ରାକୃତ ଚିନ୍ମୟ ପ୍ରେମର ମୂର୍ତ୍ତିମନ୍ତ ବିଗ୍ରହ । ଯେ ପ୍ରେମ, ସେ ହେଉଛନ୍ତି କୃଷ୍ଣ । 'ଭାବ ବୃନ୍ଦାବନରେ କାନ୍ତ କୃଷ୍ଣଙ୍କ ସହିତ କାନ୍ତାସ୍ୱରୂପ ଭକ୍ତର ବିପ୍ରଲମ୍ଭ ସମ୍ଭୋଗାତ୍ମକ ନିରବଚ୍ଛିନ୍ନ ପ୍ରେମାନନ୍ଦ ଉପଲବ୍ଧି ଗୌଡ଼ୀୟ ବୈଷ୍ଣବଙ୍କର ଏକମାତ୍ର କାମ୍ୟ । ରାଧାଭାବରେ ଭାବିତ ଜୀବାତ୍ମା ପରମାତ୍ମା କୃଷ୍ଣଙ୍କ ସହିତ ଯେତେବେଳେ ଅନ୍ତର୍ବୃନ୍ଦାବନରେ ବିଳାସ କରେ ସେତେବେଳେ ଦ୍ୱୈତ ଭାବର କ୍ଷଣିକ ଅବସାନ ଘଟେ (୧୦)' । ଚୈତନ୍ୟ ଏହି ରାଧାଭାବରେ ଭାବିତ ଥିଲେ । ସେ ଥିଲେ ବିପ୍ରଲମ୍ଭ ଶୃଙ୍ଗାରର ମୂର୍ତ୍ତିମନ୍ତ ବିଗ୍ରହ ।

## ଅଲୌକିକ ମଧୁରା ରତି ଓ ମଧୁର ରସ :

ବୈଷ୍ଣବ ଆଳଙ୍କାରିକ ରୂପ ଗୋସ୍ୱାମୀ ଓ କବି କର୍ଣ୍ଣପୁର ପ୍ରଭୃତି ଲୌକିକ ଆଳଙ୍କାରିକଙ୍କର ବ୍ୟତିକ୍ରମ ଘଟାଇ ରତି, ଭକ୍ତିରସ, ଶୃଙ୍ଗାର ବା ମଧୁର ରସର ଚମତ୍କାର

---

(୭) Dr. Sen, H. B. L., PP. 15—16

(୮) (କ) ପ୍ରେମୈବ ଗୋପରାମାଣାଂ କାମ ଇତ୍ୟଗମତ୍ ପ୍ରଥାମ୍ ।
ଗୌତମୀୟତନ୍ତ୍ର

(ଖ) ଆସାଂ ପ୍ରେମବିଶେଷୋଽୟଂ ପ୍ରାପ୍ତଃକାମପି ମାଧୁରୀମ୍ ।
ତତ୍ କ୍ରୀଡ଼ାନନ୍ଦାନତ୍ୱାତ୍ କାମ ଇତ୍ୟୁଚ୍ୟତେ ବୁଧୈଃ ॥
ରୂ. ଗୋ. ଭକ୍ତିରସାମୃତସିନ୍ଧୁ, ଶ୍ଳୋ. ୨୮୪

(୯) ଖଗେନ୍ଦ୍ରନାଥ ମିତ୍ର, ସଂପା : ବୈଷ୍ଣବ ପଦାବଳୀ (ଚୟନ), ୪ର୍ଥ ସଂ.ର ଭୂମିକା, ପୃ.୯

(୧୦) ତତ୍ରୈବ, ପୃ. ୯

ବିଶ୍ଳେଷଣ କରିଛନ୍ତି । ସେମାନେ ରତିର (୧୧) ଅର୍ଥ ସଂପ୍ରସାରିତ କରି ଅନ୍ୟଭାବରେ ତା'ର ରସନିଷ୍ପତ୍ତି ଦେଖାଇଛନ୍ତି (୧୨) । ବୈଷ୍ଣବ ରତି ଲୌକିକ ନୁହେଁ । ତା'ର ଦୃଷ୍ଟିରେ ଭଗବାନ ଶ୍ରୀକୃଷ୍ଣ ପ୍ରିୟତମ ହୋଇଥିବାରୁ ତା'ର ରତିକୁ କୃଷ୍ଣରତି କୁହାଯାଏ । ଏହି ରତିର ରସ ରୂପ ପାଞ୍ଚଟି ହେଲେ ମଧ୍ୟ ସ୍ୱରୂପତଃ ରସ ଗୋଟିଏ ମାତ୍ର, ତାହା ହେଉଛି ଭକ୍ତିରସ (୧୩) । ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତ ମନର ପାଞ୍ଚପ୍ରକାର ରତି ଅନୁସାରେ ପାଞ୍ଚପ୍ରକାର ରସନିଷ୍ପତ୍ତି ହୋଇଥାଏ, ଯଥା—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର (ଶୃଙ୍ଗାର, ଶୁଚି ବା ଉଜ୍ଜ୍ୱଳ) । ମଧୁର ରସରେ 'ପ୍ରେଷ୍ଠ ସନ୍ ପ୍ରେୟସାମପି' ଭଗବାନ କାନ୍ତ, ଭକ୍ତ କାନ୍ତା । ଶାନ୍ତର କୃଷ୍ଣୈକପ୍ରାଣତା, ଦାସ୍ୟର ସେବା, ସଖ୍ୟର ବିଶ୍ରମ୍ଭ, ବାତ୍ସଲ୍ୟର ଲାଳନ ଓ ମଧୁରର କାନ୍ତଭାବ—ଏହି ପାଞ୍ଚଟିର ନିବିଡ଼ ମିଳନରେ ମଧୁର ରସର ଉତ୍ପତ୍ତି । ଏହାର ସ୍ଥାୟୀଭାବ ମଧୁରା ନାମକ ରତି । ତିନିପ୍ରକାର ମଧୁରା ରତି ମଧ୍ୟରେ (ସାଧାରଣୀ, ସମଞ୍ଜସା ଓ ସମର୍ଥା) ସମର୍ଥା ରତି ସର୍ବଶ୍ରେଷ୍ଠ । ବୈଷ୍ଣବୀୟ ଶୃଙ୍ଗାର ରସ ବା ମଧୁର ରସରେ ବୃନ୍ଦାବନ ଲୀଳାରେ ସ୍ଥାୟୀଭାବ ହେଉଛି ସମର୍ଥା ନାମକ ମଧୁରା ରତି । ଏଠାରେ ନାୟକ ଶ୍ରୀକୃଷ୍ଣ, ନାୟିକା ରାଧା, ପ୍ରତିନାୟିକା ଚନ୍ଦ୍ରାବଳୀ । ନାୟିକା ଏଠାରେ ପରକୀୟା (ପ୍ରକଟ ଲୀଳା ଦୃଷ୍ଟିରୁ) । ରସର ବସ୍ତୁର ସମ୍ପର୍କରେ ନାୟିକାର ବିଭିନ୍ନ ମାନସିକ ଅବସ୍ଥା ଓ ବିଭାବର ବସ୍ତୁର କରିଯାଏ, ଯଥା ଅଭିସାରିକା, ବାସକ ସଜ୍ଜା, ବିରହୋତ୍କଣ୍ଠିତା, ବିପ୍ରଲବ୍ଧା, ଖଣ୍ଡିତା, କଳହାନ୍ତରିତା, ପ୍ରୋଷିତଭର୍ତ୍ତୃକା ଓ ସ୍ୱାଧୀନ ଭର୍ତ୍ତୃକା । ପୁଣି ବୈଷ୍ଣବ ଆଲଙ୍କାରିକମାନେ ମଧୁର (ଶୃଙ୍ଗାର) ରସର ବିଭିନ୍ନ ବିଭାଗ ଓ ଉପବିଭାଗୀକରଣରେ ନିଜର ସୂକ୍ଷ୍ମ ବିଶ୍ଳେଷଣୀ ପ୍ରତିଭାର ପରିଚୟ ଦେଇଛନ୍ତି । ଶୃଙ୍ଗାର ଦୁଇଭାଗରେ ବିଭକ୍ତ, ଯଥା ସମ୍ଭୋଗ ଓ ବିପ୍ରଲମ୍ଭ । ସମ୍ଭୋଗର ଚାରୋଟି ରୂପ, ଯଥା ସଂକ୍ଷିପ୍ତ, ସଂକୀର୍ଣ୍ଣ, ସମ୍ପନ୍ନ ଓ ସମୃଦ୍ଧିମାନ୍ ଏବଂ ବିପ୍ରଲମ୍ଭର ଚାରୋଟି ରୂପ ହେଉଛି ପୂର୍ବରାଗ, ମାନ, ପ୍ରେମ ବୈଚିତ୍ତ୍ୟ ଓ ପ୍ରବାସ ।

## ବୈଷ୍ଣବ ପଦାବଳୀ ବୈଷ୍ଣବତତ୍ତ୍ୱର ରସଭାଷ୍ୟ :

ଏହି ତାତ୍ତ୍ୱିକ ଭୂମି ଉପରେ ପ୍ରତିଷ୍ଠିତ ଶ୍ରୀକୃଷ୍ଣଙ୍କ ବ୍ରଜଲୀଳାର ପ୍ରାଣସ୍ପର୍ଶୀ ଅଲେଖ୍ୟ ଅଙ୍କନରେ ସମଗ୍ର ବୈଷ୍ଣବ ପଦାବଳୀ ମୁଖର ହୋଇ ଉଠିଛି । ବୈଷ୍ଣବ ପଦାବଳୀ ବୈଷ୍ଣବ ତତ୍ତ୍ୱର ରସଭାଷ୍ୟ । ବୈଷ୍ଣବତତ୍ତ୍ୱ ସହିତ ଯେଉଁ ଶ୍ରଦ୍ଧାଳୁ ପାଠକମାନଙ୍କର ଘନିଷ୍ଠ ପରିଚୟ ରହିଛି, ସେମାନଙ୍କ ପକ୍ଷରେ ଏହାର ଆସ୍ୱାଦ ସମ୍ଭବ ।

---

(୧୧) ବିଶ୍ୱନାଥ କବିରାଜ, ସାହିତ୍ୟ ଦର୍ପଣ, ୩ । ୧୭୬

(୧୨) ଶ୍ରୀ ଗଙ୍ଗାଧର ବଳ, "ବୈଷ୍ଣବ କାବ୍ୟରେ ପ୍ରେମ ଓ ରସତତ୍ତ୍ୱ," ଝଙ୍କାର, ୩୨ଶ ବର୍ଷ ଏବଂ "ବୈଷ୍ଣବ କାବ୍ୟରେ ରସତତ୍ତ୍ୱ", ସପ୍ତର୍ଷି, ୯ମ ବର୍ଷ, ୭ମ ସଂଖ୍ୟା, ସମ୍ବଲପୁର ବିଶ୍ୱବିଦ୍ୟାଳୟ ପତ୍ରିକା ।

(୧୩) ରୂ. ଗୋ, ଭକ୍ତିରସାମୃତସିନ୍ଧୁଃ

ବୈଷ୍ଣବ ପଦାବଳୀକୁ ସ୍ଥୂଳତଃ ଚାରିଭାଗରେ ବିଭକ୍ତ କରାଯାଇପାରେ, ଯଥା—

(କ) ଶ୍ରୀକୃଷ୍ଣ ଓ ତାଙ୍କର ଅବତାର ଉଦ୍ଦେଶ୍ୟରେ ପ୍ରାର୍ଥନା ବା ଉଦ୍‌ବୋଧନ; ଗୁରୁ ଓ ବୈଷ୍ଣବ ସାଧୁଙ୍କର (ମହାଜନଙ୍କର) ବନ୍ଦନା, ପ୍ରାର୍ଥନା ବା ଉଦ୍‌ବୋଧନ-ଗୀତ ।

(ଖ) ଶ୍ରୀକୃଷ୍ଣଙ୍କର ବାଲ୍ୟ ଲୀଳା ଓ କ୍ରୀଡ଼ା ସାଥୀଙ୍କ ସହ ଗୋଚାରଣ । କ୍ରୀଡ଼ା ସାଥୀଙ୍କ ସହ ଚୈତନ୍ୟଙ୍କର (ଗୌରାଙ୍ଗଙ୍କର) ବାଲ୍ୟଲୀଳା ସମ୍ପର୍କୀୟ ଗୀତ ।

(ଗ) ଶ୍ରୀକୃଷ୍ଣ ଓ ଚୈତନ୍ୟଙ୍କର ଜନ୍ମ ଓ ଶୈଶବଲୀଳା-ଗୀତ ।

(ଘ) ରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କର ପ୍ରେମ ସମ୍ବଳିତ ଗୀତ । ଗଦାଧରଙ୍କ ସହିତ ଚୈତନ୍ୟଙ୍କ ଲୀଳା ଭିତ୍ତିକ ଗୀତ (ବଙ୍ଗୀୟ ବୈଷ୍ଣବ ମାନଙ୍କର ଏକ ସମ୍ପ୍ରଦାୟ ଯେହେତୁ ଗଦାଧରଙ୍କୁ ରାଧାଙ୍କର ଅବତାର ବୋଲି କହନ୍ତି ।) *

**ଚୈତନ୍ୟ ସମ୍ପର୍କୀୟ ଗ୍ରନ୍ଥ :**

ଚୈତନ୍ୟଙ୍କର ଜୀବନୀ ଓ ଲୀଳା ସମ୍ପର୍କୀୟ ଗ୍ରନ୍ଥ ଗୁଡ଼ିକ ହେଉଛି—ମୁରାରି ଗୁପ୍ତଙ୍କର 'କଡ଼ଚା' (ଚୈତନ୍ୟଙ୍କର ବାଲ୍ୟଲୀଳା); ରଘୁନାଥ ଦାସଙ୍କର 'ଚୈତନ୍ୟସ୍ତବ କଳ୍ପବୃକ୍ଷ' (ସଂସ୍କୃତ); ୧୬ଶ ଶତାବ୍ଦୀର ପରମାନନ୍ଦ ସେନ କବି କର୍ଣ୍ଣପୁରଙ୍କର 'ଚୈତନ୍ୟ ଚନ୍ଦ୍ରୋଦୟ ନାଟକ' (ସଂସ୍କୃତ), 'ଚୈତନ୍ୟ ଚରିତାମୃତ' (ଆଖ୍ୟାୟିକା ମହାକାବ୍ୟ), 'ଚୈତନ୍ୟ ଗଣୋଦ୍ଦେଶ ଦୀପିକା' (ସଂସ୍କୃତ); ବୃନ୍ଦାବନ ଦାସଙ୍କର 'ଚୈତନ୍ୟମଙ୍ଗଳ' ବଙ୍ଗଳା, (ବର୍ତ୍ତମାନର ନାମ ଚୈତନ୍ୟ ଭାଗବତ); କୃଷ୍ଣ ଦାସ କବିରାଜଙ୍କର 'ଚୈତନ୍ୟ ଚରିତାମୃତ' (ଚୈତନ୍ୟତତ୍ତ୍ୱ ଓ ବ୍ରଜଲୀଳା ଆଧାରରେ ଗଢ଼ା ବୈଷ୍ଣବ ରସତତ୍ତ୍ୱର ସାରମର୍ମ, ଗୌଡ଼ୀୟ ବୈଷ୍ଣବ ଧର୍ମର ବେଦ); ଲୋଚନ ଦାସଙ୍କର 'ଚୈତନ୍ୟ ମଙ୍ଗଳ'; ଚୂଡ଼ାମଣି ଦାସଙ୍କର 'ଗୌରାଙ୍ଗ ବିଜୟ'; ଜୟାନନ୍ଦଙ୍କର ଚୈତନ୍ୟ ମଙ୍ଗଳ; ପ୍ରେମ ଦାସଙ୍କର 'ଚୈତନ୍ୟ ଚନ୍ଦ୍ରୋଦୟ କୌମୁଦୀ'; ଭଗୀରଥ ବନ୍ଧୁଙ୍କର 'ଚୈତନ୍ୟ ସଂହିତା' । ଷୋଡ଼ଶ ଶତାବ୍ଦୀର ଶେଷ ଓ ପରବର୍ତ୍ତୀ ଶତାବ୍ଦୀରେ ମଙ୍ଗଳ କାବ୍ୟ ଓ ପାଞ୍ଚାଳୀ କାବ୍ୟର ବନ୍ଦନା ଭାଗରେ ବିଭିନ୍ନ ଦେବତାଙ୍କ ମଧ୍ୟରେ ଚୈତନ୍ୟ ବନ୍ଦନା କରାଯାଇଛି । ସଙ୍କୀର୍ତ୍ତନ ଉତ୍ସବ ଆସରରେ ଚୈତନ୍ୟ ଓ ନିତ୍ୟାନନ୍ଦଙ୍କର ବନ୍ଦନା କରାଯାଏ ଏବଂ ଏହି ବନ୍ଦନାଗୁଡ଼ିକୁ ଗୌରଚନ୍ଦ୍ରିକା କୁହାଯାଏ (୧୪) ।

**ପଦାବଳୀର ଇତିହାସରେ ତିନୋଟି ସ୍ତର :**

ପଦାବଳୀ ରଚନା ଓ ଗାନଶ୍ରବଣ ବୈଷ୍ଣବ ସାଧନାର ଅଙ୍ଗ ହୋଇଥିବାରୁ ବୈଷ୍ଣବ ସମାଜରେ ଏହାର ସବୁଠାରୁ ବେଶୀ ଆଦର । ପଦକର୍ତ୍ତାମାନେ ପ୍ରାଚୀନ ପଦାବଳୀର କବିମାନଙ୍କୁ ମହାଜନ ବୋଲି କହିଥାନ୍ତି । ବୈଷ୍ଣବ ପଦାବଳୀ ଇତିହାସରେ ତିନୋଟି ପ୍ରଧାନ ସ୍ତର ଦେଖାଯାଏ ଯଥା—(କ) ଚୈତନ୍ୟ ପୂର୍ବବର୍ତ୍ତୀ, (ଖ) ଚୈତନ୍ୟଙ୍କ

* (Dr. Sen, H. B. L.)

(୧୪) ଡଃ ସୁକୁମାର ସେନ, ବାଂଲାର ସାହିତ୍ୟ ଇତିହାସ, ୧୯୬୫ ପୃ ୮୪-୯୧

ସମକାଳୀନ (୧୬ଶ ଶତାବ୍ଦୀ), (ଗ) ଚୈତନ୍ୟ ପରବର୍ତ୍ତୀ । ଚୈତନ୍ୟ ପୂର୍ବବର୍ତ୍ତୀ ସ୍ତରର ପଦକର୍ତ୍ତା ହେଉଛନ୍ତି, ଜୟଦେବ, ବିଦ୍ୟାପତି ଓ ଚଣ୍ଡୀ ଦାସ । ବିଦ୍ୟାପତିଙ୍କ ପଦାବଳୀ ପ୍ରତି ଚୈତନ୍ୟଙ୍କର ଆଗ୍ରହ ତାଙ୍କର ପଦାବଳୀକୁ ବୈଷ୍ଣବଙ୍କ ନିକଟରେ ପ୍ରିୟତର କରିଥିଲା । ଚୈତନ୍ୟ ପରବର୍ତ୍ତୀ ପଦାବଳୀକୁ ତିନି ଉପସ୍ତରରେ ବିଭକ୍ତ କରାଯାଇପାରେ, ଯଥା— (୧) ଖ୍ରୀ: ୧୫୫୦ ଠାରୁ ୧୬୫୦, (୨) ଖ୍ରୀ: ୧୬୫୦ ଠାରୁ ୧୭୫୦ ଏବଂ (୩) ଖ୍ରୀ: ୧୭୫୦ ଠାରୁ ଊନବିଂଶ ଶତକର ପ୍ରାରମ୍ଭ । ପ୍ରଥମ ଉପସ୍ତରର ମୁଖ୍ୟ ପଦ ରଚୟିତାମାନେ ଥିଲେ ଚୈତନ୍ୟଙ୍କର ପ୍ରତ୍ୟକ୍ଷ ଶିଷ୍ୟ, ଭକ୍ତର ଶିଷ୍ୟ ଓ ଅନୁଶିଷ୍ୟ, କେତେକ ନିତ୍ୟାନନ୍ଦଙ୍କ ପତ୍ନୀ ଜାହ୍ନବୀ ବା ପୁତ୍ର ବୀରଭଦ୍ରଙ୍କର ଶିଷ୍ୟ ଓ ପ୍ରଶିଷ୍ୟ; କେହି କେହି ନରହରି ଦାସଙ୍କର ବା ରଘୁନନ୍ଦନଙ୍କର ଶିଷ୍ୟ, ପ୍ରଶିଷ୍ୟ । ଅନେକେ ଥିଲେ ଶ୍ରୀନିବାସ ଆଚାର୍ଯ୍ୟ ଅଥବା ନରୋତ୍ତମ ଦାସଙ୍କର ଶିଷ୍ୟ ଓ ପ୍ରଶିଷ୍ୟ ।

ପ୍ରଥମ ଉପସ୍ତରର ପଦକର୍ତ୍ତା ହେଉଛନ୍ତି : ନରୋତ୍ତମ ଦାସ, ଶ୍ୟାମାନନ୍ଦ, ଗୋବିନ୍ଦ ଦାସ (କବିରାଜ ଓ ଚକ୍ରବର୍ତ୍ତୀ), ଯଦୁନାଥ, ଯଦୁନନ୍ଦନ, ବଲ୍ଲଭ, କାନାଇ, ରାୟଶେଖର, ଭୂପତି, ଶ୍ୟାମ ଦାସ, ଘନଶ୍ୟାମ । ଦ୍ୱିତୀୟ ଉପସ୍ତରର କବି ହେଉଛନ୍ତି ବିପ୍ରଦାସ ଘୋଷ, ନସିର ମାମୁଦ, ଘନରାମ ଦାସ, ଜଗଦାନନ୍ଦ, ଯାଦବେନ୍ଦ୍ର, ବୃନ୍ଦାବନ, ପ୍ରେମ ଦାସ, ରାଧାମୋହନ । ତୃତୀୟ ଉପସ୍ତରର କବି ହେଉଛନ୍ତି ଚନ୍ଦ୍ରଶେଖର, ଶଶି, ତିନିଗୁରିଜଣ ବଳରାମ, ଚାରି ପାଞ୍ଚଜଣ ବଲ୍ଲଭ ।

## ବ୍ରଜଲୀଳା ଓ ନିତ୍ୟଲୀଳା :

ପ୍ରାରମ୍ଭରେ ରାଧାକୃଷ୍ଣଙ୍କର ପ୍ରେମଲୀଳାକୁ ନେଇ ବୈଷ୍ଣବ ପଦାବଳୀ ରଚିତ ହେଉଥିଲା । ଜୟଦେବଙ୍କ ପୂର୍ବରୁ ଏହା ଥିଲା ଆଦିରସାପ୍ଲୁତ । ଗୀତଗୋବିନ୍ଦରେ ଶୃଙ୍ଗାର ସହ ଭକ୍ତି ରସର କିଞ୍ଚିତ୍ ସୂଚନା ରହିଛି । ଜୟଦେବଙ୍କ ପରେ ଲିଖିତ ପଦାବଳୀ ବୈଷ୍ଣବ ଅଲଙ୍କାର ଶାସ୍ତ୍ର ନିର୍ଦ୍ଦେଶିତ ପଥ ଅନୁସରଣରେ ରଚିତ । ଚୈତନ୍ୟଙ୍କ ସମୟରୁ ବୈଷ୍ଣବ ଧର୍ମରେ ମଧୁର ରସର ମହତ୍ତ୍ୱ ପ୍ରତିଷ୍ଠିତ ହେବାରୁ କୃଷ୍ଣଲୀଳାର ପ୍ରେମ କାହାଣୀ ରୂପ ଗୋସ୍ୱାମୀଙ୍କର ଭକ୍ତିରସାମୃତସିନ୍ଧୁ ଓ ଉଜ୍ଜ୍ୱଳ ନୀଳମଣି ରଚନା ହେତୁ ମର୍ଯ୍ୟାଦା ତଥା ମହିମାମଣ୍ଡିତ ହେଲା । ରୂପ ଗୋସ୍ୱାମୀ କୃଷ୍ଣଲୀଳାର ଦୁଇଟି ଭାଗ ସୂଚିତ କଲେ, ଯଥା— ବ୍ରଜଲୀଳା ଓ ନିତ୍ୟଲୀଳା । ବ୍ରଜଲୀଳା ଶ୍ରୀକୃଷ୍ଣଙ୍କର ସ୍ୱବିଳାସ (ନୈମିତ୍ତିକ ବିଳାସ) ହୋଇଥିବାରୁ ସେ କୃଷ୍ଣଙ୍କୁ ଅବତାରର ଊର୍ଦ୍ଧ୍ୱରେ ସ୍ଥାନ ଦେଇଥିଲେ । ଗୋଲୋକରେ ତାଙ୍କର ନିତ୍ୟଲୀଳା; କୃଷ୍ଣ ସେଠି ଚିର କିଶୋର । ବ୍ରଜଲୀଳା ପରି ସେଠାରେ ଶୈଶବ ଲୀଳା ନାହିଁ । ରୂପ ଗୋସ୍ୱାମୀ ପୂର୍ବର ପ୍ରଚଳିତ ବ୍ରଜଲୀଳା ବିଷୟରୁ ରୁଚି ବିଗର୍ହିତ ଭାବ ଓ ଘଟଣା ବାଦ ଦେଇ ମାର୍ଜିତ କଲେ । ତାଙ୍କ ଦ୍ୱାରା ସୂଚିତ ନିତ୍ୟଲୀଳା ଅନୁସାରେ କୃଷ୍ଣ ଦାସ କବିରାଜ ତାଙ୍କର 'ଗୋବିନ୍ଦ ଲୀଳାମୃତ' ମହାକାବ୍ୟରେ ଗୋଲୋକରେ ରାଧାକୃଷ୍ଣଙ୍କର ଅଷ୍ଟ ପ୍ରହରଲୀଳା ବର୍ଣ୍ଣନା କଲେ । ଏହାପରେ ବୈଷ୍ଣବ

ପଦକର୍ତ୍ତାମାନେ ରୂପ ଗୋସ୍ୱାମୀ ଓ କୃଷ୍ଣ ଦାସ କବିରାଜଙ୍କ ଅନୁସରଣରେ ଯଥାକ୍ରମେ ବ୍ରଜଲୀଳା ଓ ନିତ୍ୟଲୀଳା ସମ୍ପର୍କୀୟ ପଦମାନ ରଚନା କଲେ । ନିତ୍ୟଲୀଳା ବସ୍ତୁ ସମ୍ପର୍କରେ ରଚିତ ପଦାବଳୀର ନାମ ଦଣ୍ଡାତ୍ମିକା, ଯାହା ସଂକୀର୍ତ୍ତନ ଅନୁଷ୍ଠାନରେ (ଅଷ୍ଟପ୍ରହର ବା ଚବିଶି ପ୍ରହର) ଗୀତ ହୁଏ (୧୫) ।

## ବିଭିନ୍ନ ଶତକର ପଦାବଳୀ; ପଦାବଳୀର ବିଷୟବସ୍ତୁ :

ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧର କେତେକ ପଦକର୍ତ୍ତା କୃଷ୍ଣଙ୍କ ପ୍ରତି ରାଧାଙ୍କର ଗଭୀର ଐକାନ୍ତିକ ପ୍ରେମକୁ ପ୍ରାଣର ସ୍ପର୍ଶ ଦେଇ ବର୍ଣ୍ଣନା କରିଛନ୍ତି । ଚୈତନ୍ୟଙ୍କର ପ୍ରଗାଢ଼ ଭଗବଦ୍ ପ୍ରେମ ଓ ରାଧାକୃଷ୍ଣ ପ୍ରେମ କାହାଣୀର ଆଧ୍ୟାତ୍ମିକ ଦୃଷ୍ଟି ଭଙ୍ଗୀରେ ଅନୁପ୍ରାଣିତ ହୋଇ ତାଙ୍କର ଅନୁରାଗୀ ଶିଷ୍ୟ ପ୍ରଶିଷ୍ୟମାନେ ପଦାବଳୀର ଯଥାର୍ଥ ଅନୁଶୀଳନ କରିଥିଲେ । କିନ୍ତୁ ଉପାସନା ପଦ୍ଧତିରେ ଯେତେବେଳେ ନିୟମବଦ୍ଧତା ଆସିଲା ଓ ରୂପ ଗୋସ୍ୱାମୀ ପ୍ରଭୃତି ବୈଷ୍ଣବ ସାହିତ୍ୟ ରଚନାକୁ ଶୃଙ୍ଖଳାବଦ୍ଧ କଲେ ସେହିଦିନଠାରୁ ବୈଷ୍ଣବ ଗୀତର ସ୍ୱାଭାବିକତା ଓ ସ୍ୱତଃସ୍ଫୂର୍ତ୍ତି ହ୍ରାସ ପାଇଲା । ଫଳରେ ପରବର୍ତ୍ତୀ କାଳରେ ବୈଷ୍ଣବ ପଦାବଳୀ ପୁନରାବୃତ୍ତି ଦୋଷରେ ଦୁଷ୍ଟ ହେଲା ।

ରୂପ ଗୋସ୍ୱାମୀଙ୍କ ପରେ ପଦାବଳୀର କବିମାନେ କଳଙ୍କ ଭଜନ, ରାଈରାଜା ଓ ସୁବଳ ମିଳନ ପ୍ରଭୃତି ନୂତନ ବିଷୟ ଯୋଗ କଲେ । ଜୟଦେବଙ୍କ ସମୟରୁ ମିଥିଳାରେ ଓ ବଙ୍ଗଳାରେ ପ୍ରଚଳିତ ଥିବା ପଦାବଳୀ ଗାନ ରୀତିର ଆଦର୍ଶରେ ନରୋତ୍ତମ ଦାସ ବର୍ତ୍ତମାନ ପ୍ରଚଳିତ ପଦାବଳୀ କୀର୍ତ୍ତନ ପଦ୍ଧତି ପ୍ରବର୍ତ୍ତନ କଲେ (୧୫କ) ।

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରୁ ଆରମ୍ଭ ହୋଇଥିବା ପଦାବଳୀର ସଂକଳନ (ସୂଚନା ପୂର୍ବରୁ ଦିଆଯାଇଛି) ମଧ୍ୟରୁ ରାମଗୋପାଳ ଦାସଙ୍କର 'ରସକଳ୍ପବଲ୍ଲୀ' (ଖ୍ରୀ: ୧୬୭୦), ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'କ୍ଷଣଦାଗୀତ ଚିନ୍ତାମଣି' (ଖ୍ରୀ: ୧୭୦୪), ରାଧାମୋହନ ଠାକୁରଙ୍କର 'ପଦାମୃତ ସମୁଦ୍ର' ଏବଂ ବୈଷ୍ଣବ ଦାସଂକର 'ବୃହତ୍ ପଦକଳ୍ପତରୁ' (ସତୀଶ ଚନ୍ଦ୍ର ରାୟ ସମ୍ପାଦିତ) ଏହି ଚାରୋଟି ଶ୍ରେଷ୍ଠ । ପଦାବଳୀର ବିଷୟବସ୍ତୁ ସୀମିତ ଓ ଭାବ ସୁନିର୍ଦ୍ଦିଷ୍ଟ ହୋଇଥିବାରୁ ବହୁ ପୁନରୁକ୍ତି ଦେଖାଯାଏ । କେତେକ ପଦାବଳୀର ଭାବ କୃତ୍ରିମ ଓ ଭାଷା ଦୁର୍ବଳ । ବୈଷ୍ଣବ ପଦାବଳୀର ରସର ପୂର୍ଣ୍ଣ ଆସ୍ୱାଦନ ପାଇଁ ଯେପରି ଗାନ ଶ୍ରବଣ କରିବାକୁ ହେବ, ସେହିପରି ବୈଷ୍ଣବ ଅଳଂକାର ଶାସ୍ତ୍ର ସୂଚିତ ବ୍ରଜଲୀଳାର ବିଷୟ, ଭାବ ଓ ରସ ପରିଣତି ସମ୍ପର୍କରେ ଅବହିତ ହେବାକୁ ହେବ । ପ୍ରାଚୀନ ପଦାବଳୀ ସଂଗ୍ରହରେ କୃଷ୍ଣଲୀଳା ବିଷୟ ଓ ଭାବ ଅନୁଯାୟୀ ଦୁଇଟି ପର୍ଯ୍ୟାୟରେ ବିନ୍ୟସ୍ତ ହୋଇଛି । ଗୋଟିଏ ହେଉଛି: ପିତାମାତା, ସଖା ଓ ଗୋପୀଙ୍କ ସହିତ କୃଷ୍ଣଙ୍କର ବିବିଧ ଲୀଳା; ଅନ୍ୟଟି ରାଧାଂକ ସହିତ ନିଭୃତ ପ୍ରେମଲୀଳା । ପ୍ରଥମ ପର୍ଯ୍ୟାୟର ବିଷୟ ଗୁଡ଼ିକ ହେଉଛି : ଶ୍ରୀକୃଷ୍ଣଂକ ଜନ୍ମ ଓ

(୧୫ଓ୧୫କ) ବୈଷ୍ଣବ ପଦାବଳୀ (ଚୟନ), ୭ମ ସଂ.ର ଭୂମିକା, ପୃ: ୫୩-୫୫

ନନ୍ଦୋତ୍ସବ, ରାଧାଙ୍କର ଜନ୍ମୋତ୍ସବ, କୃଷ୍ଣଙ୍କର ଶୈଶବ ଲୀଳା, ବାଲ୍ୟଲୀଳା, କୌମାର ଲୀଳା, ଗୋଷ୍ଠଲୀଳା, ଗୋବର୍ଦ୍ଧନ ଧାରଣ, ଶରତ୍ର ରାସ, ବସନ୍ତ ରାସ, ହୋରି, ଦାନଲୀଳା, ନୌକା ଲୀଳା, ଦୋଳ, ଝୁଲଣ, କାଳୀୟ ଦମନ, ଅକ୍ରୂର ଆଗମନ, କୃଷ୍ଣଙ୍କ ମଥୁରା ଯାତ୍ରା, ବ୍ରଜନାରୀଙ୍କ ବିରହ ବେଦନା । ଦ୍ୱିତୀୟ ପର୍ଯ୍ୟାୟର ବିଷୟ : ରାଧାଙ୍କର ପୂର୍ବରାଗ, କୃଷ୍ଣଂକର ପୂର୍ବରାଗ, ରାଧା ଓ କୃଷ୍ଣଙ୍କର ପାରସ୍ପରିକ ରୂପାନୁରାଗ, ରାଧାଙ୍କର ଅଭିସାର ଆୟୋଜନ, ମିଳନ ବେଶ ଧାରଣ (ବାସକ ସଜ୍ଜା), ବିଭିନ୍ନ ଋତୁରେ ଓ ସମୟରେ ଅଭିସାର, କୃଷ୍ଣଙ୍କର ଅନାଗମନରେ ରାଧାଙ୍କର ଦୁଃଖ (ଖଣ୍ଡିତା), ମାନ, କୃଷ୍ଣଙ୍କୁ ପ୍ରତ୍ୟାଖ୍ୟାନ (କଳହାନ୍ତରିତା), ଦୌତ୍ୟ, ପ୍ରେମ ବୈଚିତ୍ର୍ୟ (ଗାଢ଼ ଅନୁରାଗ), ଆକ୍ଷେପାନୁରାଗ, ରସୋଦ୍‌ଗାର, ଜତ୍ୟରାସ, କୃଷ୍ଣଙ୍କର ବିରହ ଆଶଙ୍କା, କୃଷ୍ଣଙ୍କର ମଥୁରାଗମନ କାଳରେ ବିଚ୍ଛେଦ ଦୁଃଖ, ବିରହ ସନ୍ତାପ, ବୈକ୍ଲବ୍ୟ, ପ୍ରଳାପ, ସ୍ୱପ୍ନରସୋଦ୍‌ଗାର, ଭାବୋଲ୍ଲାସ (୧୬) ।

ଶ୍ରୀକୃଷ୍ଣଙ୍କ ବ୍ରଜଲୀଳା ବୈଷ୍ଣବ ପଦାବଳୀର ବିଷୟ ହେଲେ ମଧ୍ୟ ରାଧାକୃଷ୍ଣଙ୍କର ବିଚିତ୍ର ପ୍ରଣୟଲୀଳା ତନ୍ମଧ୍ୟରେ ମୁଖ୍ୟ, କୃଷ୍ଣଙ୍କର ଶୈଶବ ଓ ବାଲ୍ୟଲୀଳା ଗୌଣ । 'ବୈଷ୍ଣବ ପଦାବଳୀର ପଟ ଗୋଟିଏ ମାତ୍ର ମୂର୍ତ୍ତି ଦ୍ୱାରା ଅଧିକୃତ; ସେ ମୂର୍ତ୍ତି ପରମ ପ୍ରେମିକା ବିରହିଣୀ ରାଧାଙ୍କର (୧୭) ।'

## କେତେକ ବିଶିଷ୍ଟ ପଦକର୍ତ୍ତା :

ମୈଥିଳୀ, ବ୍ରଜବୁଲି ଓ ବଙ୍ଗଳାର ବିଭିନ୍ନ ପଦକର୍ତ୍ତାଙ୍କ ନାମ ପୂର୍ବରୁ ଉଲ୍ଲେଖ କରାଯାଇଛି । ଏଠାରେ କେତେଜଣ ବିଶିଷ୍ଟ ପଦକର୍ତ୍ତାଙ୍କ ସମ୍ପର୍କରେ ସୂଚନା ଦିଆ ଯାଉଛି ।

**ବିଦ୍ୟାପତି** — ଉତ୍ତର ଭାରତରେ ଦେଶୀୟ ଭାଷାରେ ଗୀତ ରଚନା କରି ସର୍ବଭାରତୀୟ ଖ୍ୟାତି ଅର୍ଜନ କରିବାରେ ବିଦ୍ୟାପତି ପ୍ରଥମ । ତାଙ୍କ କାଳରେ ସେ ହେଉଛନ୍ତି ଶ୍ରେଷ୍ଠ କବି ଓ ସଙ୍ଗୀତଜ୍ଞ । ସମଗ୍ର ଉତ୍ତର ଭାରତୀୟ ପାଠକ ଚିତ୍ତରେ ତାଙ୍କର ମୈଥିଳୀ ଗୀତ ବା ପଦାବଳୀ ଆଲୋଡ଼ନ ସୃଷ୍ଟି କରିଛି । ମୈଥିଳୀ ପ୍ରେମ ସଙ୍ଗୀତ ବା ଗୀତ ଗୁଡ଼ିକରେ ତାଙ୍କର ପ୍ରତିଭାର ପୂର୍ଣ୍ଣ ବିକାଶ ଘଟିଛି । ରାଧାକୃଷ୍ଣଙ୍କ ପ୍ରେମର ବିଭିନ୍ନ ବିଭବକୁ ନେଇ ଗୀତ ରଚନା କଲେ ମଧ୍ୟ ସେ ବୈଷ୍ଣବ ନ ଥିଲେ । ତାଙ୍କର ରାଧାକୃଷ୍ଣ ପଦାବଳୀ ବୈଷ୍ଣବଭାବ ପ୍ରଣୋଦିତ ନୁହେଁ । ଚୈତନ୍ୟ ଏବଂ ସମସାମୟିକ ଓ ତତ୍ପରବର୍ତ୍ତୀ ବହୁ ବୈଷ୍ଣବ ବିଦ୍ୟାପତିଙ୍କର ଏହି ପ୍ରେମଗୀତିକୁ ବୈଷ୍ଣବ ପ୍ରେମଗୀତିର ମର୍ଯ୍ୟାଦା ଦେଲେ ମଧ୍ୟ ଏ ଗୁଡ଼ିକ ବୈଷ୍ଣବ ପ୍ରେମଗୀତ ନୁହନ୍ତି । ସେ ରାଧାକୃଷ୍ଣଙ୍କ ଉପରେ ଦେବତ୍ୱ ଆରୋପ ନ କରି ମାନବୀୟ ଭୂମିକାରେ ମାନବ ସୁଲଭ ସମସ୍ତ ଭାବ, ଆବେଗ, ସୁଖ ଦୁଃଖ, ବିରହ ଓ ମିଳନ ମଧ୍ୟରେ ପ୍ରଣୟୀ ପ୍ରଣୟିନୀ ଚିତ୍ତର ପ୍ରାଣସ୍ପର୍ଶୀ ଆଲେଖ୍ୟ ଅଙ୍କନ କରିଛନ୍ତି । ସର୍ବଦେଶର ସର୍ବକାଳର ପ୍ରେମିକ ପ୍ରେମିକାଙ୍କ ରୂପଟି ରାଧାକୃଷ୍ଣଙ୍କର ପ୍ରଣୟ ମୁକୁରରେ ତାଙ୍କର

---

(୧୬) ବୈଷ୍ଣବ ପଦାବଳୀ (ଚୟନ), ପୃ ୫୪-୫୫

(୧୭) ଏଜନ ପୃ ୫୦

ଗୀତ ଗୁଡ଼ିକରେ ପ୍ରତିଫଳିତ । ତାଂକର ସବୁ ପଦରେ ପ୍ରେମିକ ପ୍ରେମିକାଂକର ବହିଃ ଓ ଅନ୍ତର୍ଜଗତର ସୌନ୍ଦର୍ଯ୍ୟ ଅପୂର୍ବ ଭାବରେ ପରିସ୍ଫୁଟ ହୋଇଛି । ତାଂକର ଉପମା, ଅନୁପ୍ରାସ, ମଞ୍ଜୁଳ ପଦବିନ୍ୟାସ ଓ ବର୍ଣ୍ଣନାଭଙ୍ଗୀ ରସଜ୍ଞଂକ ଦ୍ୱାରା ବିଶେଷ ସମାଦୃତ । ସେ ରସ ଓ ଅଲଂକାର ଶାସ୍ତ୍ରରେ ଅସାମାନ୍ୟ ପାଣ୍ଡିତ୍ୟ ଅର୍ଜନ କରିଥିଲେ ମଧ୍ୟ ତାଂକର ପଦ ରଚନା ପାଣ୍ଡିତ୍ୟଭାରାକ୍ରାନ୍ତ ନୁହେଁ । ସେ ଥିଲେ ସୌନ୍ଦର୍ଯ୍ୟର କବି । ତାଂକର ନାୟକ ନାୟିକାଂକର ଅଙ୍ଗ ସୌଷ୍ଠବ, ଲୀଳାୟିତ ଗତିଭଙ୍ଗୀ ଓ ହୃଦୟ ସ୍ପନ୍ଦନର ବର୍ଣ୍ଣନା ତ ଲୋଭନୀୟ, କିନ୍ତୁ ତାଠାରୁ ଅତି ଲୋଭନୀୟ ଅତି ପ୍ରାଣସ୍ପର୍ଶୀ ତାଂକର ବିରହ ଗୀତ ଗୁଡ଼ିକ, ଯେଉଁ ଗୁଡ଼ିକରେ ରହିଛି ସର୍ବକାଳୀନ ଆବେଦନ । ଗୋଟିଏ ଗୀତରୁ ଦୃଷ୍ଟାନ୍ତ ଦିଆ ଯାଉଛି—

ଚୀର ଚନ୍ଦନ ଉରେ ହାର ନ ଦେଲା,
ସୋ ଅବ ନଦୀ ଗିରି ଆଁତର ଭେଲ ।
ପିୟାକ ଗରବେ ହମ କାହୁକ ନା ଗଣଲ ।
ସୋ ପିୟା ବିନା ମୋହେ କୋ କି ନା କହଲ ।
ବଡ଼ ଦୁଃଖ ରହଲ ମରମେ ।
ପିୟା ବିଛୁରଲ ଯଦି କି ଆର ଜୀବନେ ।

(ବିଦ୍ୟାପତି-ଚଣ୍ଡୀଦାସ ପଦାବଳୀ)

ପୁଣି ଅନ୍ୟତ୍ର ବିରହିଣୀ ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—

ସାଗରେ ତେଜବ ପରାଣ, ଆନ ଜନମେ ହୋବ କାନ ।
କାନୁ ହୋୟବ ଯବ ରାଧା, ତବ ଜାନବ ବିରହକ ବାଧା ।

( ବିଦ୍ୟାପତି-ଚଣ୍ଡୀଦାସ ପଦାବଳୀ)

ରସ ସମ୍ପର୍କରେ ବିଦ୍ୟାପତି ବାତ୍ସାୟନଙ୍କର ଅନୁଗତ । ଏହି ବିଖ୍ୟାତ କବିଙ୍କର ପଦାଙ୍କ ଅନୁସରଣ କରି ତାଙ୍କର ଚରିକଳ୍ପ, ଆଙ୍ଗିକ, ଶୈଳୀ ଓ ଛନ୍ଦର ଅନୁସରଣରେ ବହୁ ମୈଥିଳୀ ଓ ବ୍ରଜବୁଲି ଗୀତ ରଚିତ ହୋଇଛି । ବିଖ୍ୟାତ ପଦକର୍ତ୍ତା ଗୋବିନ୍ଦ ଦାସ ତାଙ୍କୁ ଗୁରୁ ଭାବରେ ଗ୍ରହଣ କରିଥିବାର ତାଙ୍କର ପଦାବଳୀରୁ ସୂଚିତ ହୁଏ । ବଙ୍ଗର ବିଖ୍ୟାତ ପଦକର୍ତ୍ତା ବଡ଼ୁ ଚଣ୍ଡୀଦାସ ବିଦ୍ୟାପତିଙ୍କ ଗୀତ ଆଦର୍ଶରେ ବହୁ କୀର୍ତ୍ତନ ଗୀତ ରଚନା କରିଛନ୍ତି ।

**ବଡ଼ୁ ଚଣ୍ଡୀଦାସ**—ଜୟଦେବ ଓ ବିଦ୍ୟାପତିଙ୍କୁ ଛାଡ଼ିଦେଲେ ଚୈତନ୍ୟଙ୍କ ପୂର୍ବରୁ ବଡ଼ୁ ଚଣ୍ଡୀଦାସ ହେଉଛନ୍ତି ଏକମାତ୍ର ପଦକର୍ତ୍ତା । ତାଙ୍କ ରଚନାର ନାମ 'ଶ୍ରୀକୃଷ୍ଣ କୀର୍ତ୍ତନ' । କୃଷ୍ଣ, ରାଧା ଓ ବଡ଼ାୟି (ରାଧାଙ୍କର ବୃଦ୍ଧା ମାତାମହୀ) ଏ ତିନୋଟି ଚରିତ୍ରର ଗୀତମୟ ସଂଳାପରେ କବି କାହାଣୀକୁ ଗତିଶୀଳ କରିଛନ୍ତି । ଏଥିରେ ରାଧାକୃଷ୍ଣ ଭକ୍ତର ଭାବୋଚ୍ଛ୍ୱାସର ବିଗ୍ରହ ନୁହନ୍ତି । କବି ସେମାନଙ୍କୁ ସାଧାରଣ ପ୍ରଣୟୀଯୁଗଳ, ବାସ୍ତବ

ରକ୍ତମାଂସର କଣ୍ଢୋର କଣୋଣ୍ଟା ରୂପେ ଚର୍ଚ୍ଚିତ କରିଛନ୍ତି । ଗୀତଗୋବିନ୍ଦ ପରି ଏହାର ନାଟ୍ୟ ଉପାଦାନ ଓ ଗୀତମୟତା ଏହାକୁ ଲୋକପ୍ରିୟ କରିଛି ।

**ଗୋବିନ୍ଦ ଦାସ କବିରାଜ**—ଚିନିଜଣ ଗୋବିନ୍ଦଙ୍କ ମଧ୍ୟରେ ପଦକର୍ତ୍ତା ଗୋବିନ୍ଦ ଦାସ କବିରାଜ (ଷୋଡ଼ଶ ଶତାବ୍ଦୀ) ବଙ୍ଗଳା ଓ ବ୍ରଜବୁଲି ସାହିତ୍ୟରେ ସର୍ବଶ୍ରେଷ୍ଠ କବି । ସଂସ୍କୃତ ସାହିତ୍ୟରେ ଥିଲା ତାଙ୍କର ଗଭୀର ପ୍ରବେଶ । କବି ଭାବରେ ତାଙ୍କର ଖ୍ୟାତି ବଙ୍ଗ ଓ ବୃନ୍ଦାବନରେ ବ୍ୟାପି ଯାଇଥିଲା । ଜୀବ ଗୋସ୍ୱାମୀ ଏହାଙ୍କ କବିତ୍ୱରେ ମୁଗ୍ଧ ହୋଇ ତାଙ୍କୁ କବିରାଜ ଉପାଧିରେ ଭୂଷିତ କରିଥିଲେ । ସେ ସଂସ୍କୃତ, ପ୍ରାକୃତ ଓ ଲୌକିକ କବିତାର ଭାବ ଓ ରୀତି ଗ୍ରହଣ କରିଥିଲେ । ତାଙ୍କର ପଦାବଳୀରେ ସରଳ ଓ ଜଟିଳ ଅଲଙ୍କାର ପ୍ରୟୋଗ, ଅନୁପ୍ରାସିକ ମାଧୁର୍ଯ୍ୟ, ଛନ୍ଦୋଗତ ପୂର୍ଣ୍ଣତା ଓ ଧ୍ୱନିଗତ ଝଙ୍କାର ପରିଦୃଷ୍ଟ ହୁଏ । ତାଙ୍କ ପଦାବଳୀର ବାହ୍ୟ ମସୃଣତା ସତ୍ତ୍ୱେ ତାଙ୍କର ପ୍ରେମର ଚିତ୍ର ଓ ବର୍ତ୍ତିଳ କଳ୍ପନା ଉଚ୍ଚକୋଟୀର । ସେ ଚର୍ଯ୍ୟା ଓ ଭାଷାକ୍ଷେତ୍ରରେ ବିଦ୍ୟାପତିଙ୍କଠାରେ ଋଣୀ ସତ, କିନ୍ତୁ ବୈଚିତ୍ର୍ୟପୂର୍ଣ୍ଣ ଛନ୍ଦ ପ୍ରୟୋଗରେ ତାଙ୍କର ଦକ୍ଷତା ଅସୀମ । ରାଧା କୃଷ୍ଣଂକର ପ୍ରେମ କାହାଣୀର ବିଭିନ୍ନ ବସ୍ତୁ ଉପରେ (ଉଜ୍ଜ୍ୱଳ ନୀଳମଣି ଆଦର୍ଶରେ) ମନସ୍ତାତ୍ତ୍ୱିକ ବିଭାବ ଦୃଷ୍ଟିରୁ ସେ ଗୀତ ରଚନା କରିଛନ୍ତି । ରସ ଦୃଷ୍ଟିରୁ ସେ ରୂପ ଗୋସ୍ୱାମୀଂକର ଅନୁଗତ । ବିରହିଣୀ ରାଧାଂକର ବ୍ୟଥାର ଚିତ୍ରରୁ ଦୃଷ୍ଟାନ୍ତ ଦିଆଯାଉଛି । କୃଷ୍ଣଦର୍ଶନର ସାମାନ୍ୟ ମାତ୍ର ଆଶା ତାଂକର ନାହିଁ । ଦୁଃଖର ଚୂଡ଼ାନ୍ତ ଅବସ୍ଥାରେ ସେ ଭାବୁଛନ୍ତି ଯେ ସେ ମରିଗଲେ ତାଂକ ଦେହର ଅଂଶ ପ୍ରିୟତମଙ୍କୁ ଆନନ୍ଦ ଦେଇପାରେ—

ଯାଁହା ପହୁଁ ଅରୁଣ ଚରଣେ ଚଲି ଯାତ ।
ତାଁହା ତାଁହା ଧରଣୀ ହଇୟେ ମଝୁ ଗାତ ॥
ଯୋ ସରୋବରେ ପହୁଁ ନିତି ନିତି ନାହ ।
ହାମ ଭରି ସଲିଲ ହୋଇ ତଥି ମାହ ॥
ଏ ସଖି ବିରହ ମରଣ ମରଣ-ନିରଦ୍ୱନ୍ଦ୍ୱ ।
ଐଛେ ମିଲଇ ଯବ ଶ୍ୟାମର ଚନ୍ଦ ॥ (୧୮)

ଛନ୍ଦ, ଧ୍ୱନି ତରଙ୍ଗ ଓ ଭାବର ଲାଳିତ୍ୟ ହେତୁ ତାଂକ ପଦାବଳୀ ଉପଭୋଗ୍ୟ ହେଲେ ମଧ୍ୟ ଅନୁଭୂତିର ନବିଡ଼ତା ଓ ବିଷୟ ବୈଚିତ୍ର୍ୟରେ କିଞ୍ଚିତ୍ ଶିଥିଳତା ଲକ୍ଷିତ ହୁଏ । ପଦାବଳୀ ତାଙ୍କର ଶ୍ରୁତି ସୁଖକର, କିନ୍ତୁ ମର୍ମକୁ ସ୍ପର୍ଶ କରେନା । ପରବର୍ତ୍ତୀ ପଦକର୍ତ୍ତାମାନେ ତାଙ୍କୁ ଅନୁକରଣ କରି ଦିଗ୍‌ଭ୍ରାନ୍ତ ହୋଇଛନ୍ତି (୧୯) । କବି ରାଧାକୃଷ୍ଣଂକର ମିଳନ ଓ ବିଚ୍ଛେଦକୁ ଉପଜୀବ୍ୟ କରି ସଂସ୍କୃତ ଓ ବ୍ରଜବୁଲିରେ 'ସଙ୍ଗୀତ ମାଧବ' ନାମକ ଗୋଟିଏ ସଙ୍ଗୀତ ନାଟକ ରଚନା କରିଛନ୍ତି ।

(୧୮) Dr. Sen, H. B. L., PP. 529-530

(୧୯) ଡଃ ସେନ, ବାଂଲାର ସାହିତ୍ୟ ଇତିହାସ, ପୃ. ୧୦୦

**ଦୀନ ଚଣ୍ଡୀଦାସ ଓ ଦ୍ୱିଜ ଚଣ୍ଡୀଦାସ**—ଦୀନ ଚଣ୍ଡୀଦାସ ଓ ଦ୍ୱିଜ ଚଣ୍ଡୀଦାସଂକର (ଚୈତନ୍ୟଂକ ପରବର୍ତ୍ତୀ) ବହୁ ମଧୁର ପଦରେ ପଦାବଳୀ ସାହିତ୍ୟ ପରିପୁଷ୍ଟ । ଅନୁଭୂତିର ନିବିଡ଼ତା, ଭାଷାର ଲାଳିତ୍ୟ ଓ ପଦର ସାବଲୀଳ ପ୍ରବାହ ଶ୍ରୋତାର ଚିତ୍ତରେ ଏକ ଯାଦୁକରୀ ମାୟା ସୃଷ୍ଟି କରେ । ଶ୍ରୀକୃଷ୍ଣଂକର ପୂର୍ବରାଗ ଚିତ୍ରରେ କବି ଲେଖିଛନ୍ତି—

ମରି କୋନ ବିଧି ଆନି ସୁଧାନିଧି
ଥୁଇଲ ରାଧିକା ନାମେ ।
ଶୁନିତେ ସେ ବାଣୀ ଅବଶ ତଖନି
ମୁରଛି ପଡ଼ିଲ ହାମେ । (ଦୀନ ଚଣ୍ଡୀଦାସ)

ରାଧାଙ୍କର ପୂର୍ବରାଗର ଆଲେଖ୍ୟ ଅଙ୍କନରେ ଦ୍ୱିଜ ଚଣ୍ଡୀଦାସଙ୍କର ସଖୀଭାବ-ଲୋଲୁପ ପ୍ରାଣର ନୈସର୍ଗିକ ଅଭିବ୍ୟକ୍ତି ନିମ୍ନୋକ୍ତ ଉଦ୍ଧୃତିରେ ଲକ୍ଷ୍ୟ କରାଯାଇପାରେ—

ରାଧାର କି ହୈଲ ଅନ୍ତରେ ବ୍ୟଥା ।
ବସିୟା ବିରଲେ ଥାକୟେ ଏକଲେ
ନା ଶୁନେ କାହାରେ କଥା ।

× × ×

ଏକ ଦିଠି କରି ମୟୂର ମୟୂରୀ
କଣ୍ଠ କରେ ନିରଖନେ ।
ଚଣ୍ଡୀଦାସ କୟ ନବ ପରିଚୟ
କାଲିୟା ବନ୍ଧୁର ସନେ । (ଦ୍ୱିଜ ଚଣ୍ଡୀଦାସ)

**ମୁରାରି, ନରହରି, ଲୋଚନ, ଜଗଦାନନ୍ଦ** — ସିଲ୍‌ହଟ୍‌ର ମୁରାରି ଗୁପ୍ତ ଚୈତନ୍ୟଙ୍କର ଜଣେ ବଡ଼ ଶିଷ୍ୟ ଥିଲେ । ସେ ଜଣେ ବଶିଷ୍ଟ ପଦକର୍ତ୍ତା । ନରହରି ଓ ଲୋଚନ ମଧ୍ୟ କେତୋଟି ପଦ ରଚନା କରିଛନ୍ତି । ଜଗଦାନନ୍ଦ ଦାସଂକର ପଦର ସ୍ୱର ଝଂକାର ଅତୁଳନୀୟ (୨୦) । ଓଡ଼ିଶାର ରୀତିଯୁଗୀୟ କବିଂକ ପରି ଏ କବି ଚିତ୍ରଗୀତ ରଚନା କରିଛନ୍ତି । ବାସୁଦେବ ଘୋଷ ଚୈତନ୍ୟଂକର ବାଲ୍ୟଜୀବନ ଓ ସନ୍ନ୍ୟାସ ସମ୍ପର୍କରେ ଗୁଡ଼ିଏ ପଦ ରଚନା କରିଛନ୍ତି ।

**ବଳରାମ ଦାସ (୧ମ)** – ବଳରାମ ଦାସ (ପ୍ରଥମ) ବଙ୍ଗର ବୈଷ୍ଣବ ପଦାବଳୀ ସାହିତ୍ୟରେ ଜଣେ ଉଚ୍ଚ ଦରର କବି । ସେ ନିତ୍ୟାନନ୍ଦଂକର ଭକ୍ତ । ସେ ବଙ୍ଗଳାରେ ବହୁ-ପଦ ଓ ବ୍ରଜବୁଲିରେ ସ୍ୱଳ୍ପ ପଦ ରଚନା କରିଛନ୍ତି । ପଦ ରଚନାରେ ସେ ରୂପ ଗୋସ୍ୱାମୀଂକ କୃଷ୍ଣଲୀଳା-କାହାଣୀ-ଧାରା ଅନୁସରଣ କରିଛନ୍ତି । ଭାବାବେଗର କମ୍ପନ ଓ ସାବଲୀଳ ପ୍ରବାହ ତାଙ୍କର ପଦଗୁଡ଼ିକୁ ପ୍ରାଣସ୍ପର୍ଶୀ କରିଛି । ସାହିତ୍ୟ ଓ ସଙ୍ଗୀତରେ ଚମତ୍କାର ସମନ୍ୱୟ

(୨୦) ମଞ୍ଜୁ ବିକଚ କୁସୁମ ପୁଞ୍ଜ ମଧୁପ ଶବଦ ଗୁଞ୍ଜି ଗୁଞ୍ଜ
କୁଞ୍ଜରଗତିଗଞ୍ଜି ଗମନ ମଞ୍ଜୁଲ କୁଲନାରୀ ।

ଘଟିଛି ତାଂକର ରଚନାରେ । କେତୋଟି ପଦରେ କୃଷ୍ଣ-ରୂପ ମୁଗ୍‌ଧା ରାଧାଂକର ପ୍ରଣୟ ବ୍ୟାକୁଳତାର ଚଞ୍ଚ ଅତି ପ୍ରାଣସ୍ପର୍ଶୀ । କବିଂକ ଭାଷାରେ—

କିଶୋର ବୟସ କତ ବୈଦଗ୍‌ଧି ଠାମ ।
ମୃରତି ମରକତ ଅଭିନବ କାମ ।।
ପ୍ରତି ଅଙ୍ଗ କୋନ ବିଧି ନିରମିଲ କିସେ ।
ଦେଖିତେ ଦେଖିତେ କତ ଅମିୟା ବରିଷେ ।।
ମଲୁ ମଲୁ ନବୀ ରୂପ ଦେଖିଲୁଁ ସ୍ୱପନେ ।
ଖାଇତେ ଶୁଇତେ ମୋର ଲଗିଆଛେ ମନେ ।।

କେତୋଟି ପଦରେ କବି ଶିଶୁ କୃଷ୍ଣଙ୍କ ପାଇଁ ମାତା ଯଶୋଦାଙ୍କର ଉତ୍କଣ୍ଠା ଓ ବ୍ୟାକୁଳତା-ଜନିତ ବାତ୍ସଲ୍ୟ-ସ୍ନିଗ୍‌ଧ ଅନ୍ତରର ଅଭିବ୍ୟକ୍ତି ଦେଇଛନ୍ତି ।

**ଜ୍ଞାନ ଦାସ** – ବଳରାମଙ୍କ ପରି ଜ୍ଞାନ ଦାସ ମଧ୍ୟ ଜଣେ ଉଚ୍ଚ ଶ୍ରେଣୀର କବି । ରାଧାକୃଷ୍ଣ ପ୍ରଣୟଲୀଳା ପ୍ରସଙ୍ଗରେ ସେ ମଧ୍ୟ ରୂପ ଗୋସ୍ୱାମୀଙ୍କ କୃଷ୍ଣଲୀଳାର କାହାଣୀ ପରମ୍ପରା ଗ୍ରହଣ କରିଛନ୍ତି । ଗଭୀର ଅନୁଭୂତି ଓ ରଚନାର ସ୍ୱଚ୍ଛନ୍ଦ ପ୍ରବାହରେ ତାଙ୍କର ପଦାବଳୀ ଉପଭୋଗ୍ୟ ହୋଇଛି । ପ୍ରେମାନୁଭୂତିର ଚରମ ଅବସ୍ଥାରେ କବି ରାଧାଂକର ମନୋଭାବ ବର୍ଣ୍ଣନା କରିଛନ୍ତି—

ରୂପ ଲାଗି ଆଁଖି ଝୁରେ ଗୁଣେ ମନ ଭୋର ।
ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର ।।
ହିୟାର ପରଶ ଲାଗି ହିୟା ମୋର କାନ୍ଦେ ।
ପରାଣ ପିରୀତି ଲାଗି ଥିର ନାହିଁ ବାଁଧେ ।।

× × ×

ଗୁରୁ ଗରବିତ ମାଝେ ରହି ସଖୀ ରଙ୍ଗେ ।
ପୁଲକେ ପୂରୟେ ତନୁ ଶ୍ୟାମ ପରସଙ୍ଗେ ।।
ପୁଲକ ଢାକିତେ କରି କତ ପରକାର ।
ନୟନେର ଧାରା ମୋର ବହେ ଅନିବାର ।। (୨୧) (ଜ୍ଞାନଦାସ)

**ନରୋତ୍ତମ ଦାସ**—ପଦକର୍ତ୍ତା ନରୋତ୍ତମ ଦାସ ରାଧାକୃଷ୍ଣ କାହାଣୀ ଅବଲମ୍ବନରେ ବଙ୍ଗଳା ଓ ବ୍ରଜବୁଲିରେ ପଦ ରଚନା କଲେ ମଧ୍ୟ ତାଙ୍କର ପ୍ରାର୍ଥନା ଗୀତଗୁଡ଼ିକ (ବଙ୍ଗଳାରେ ଲିଖିତ) ତାଙ୍କୁ ବୈଷ୍ଣବ ପଦାବଳୀ ସାହିତ୍ୟରେ ଅମର କରିଛି । ସେ ବୈଷ୍ଣବ ଧର୍ମ ଚିନ୍ତନ ଓ ପଦାବଳୀରେ ନୂତନ ପ୍ରେରଣା ସଞ୍ଚାର କରିଥିଲେ ଏବଂ କୀର୍ତ୍ତନଗାନ ପ୍ରଣାଳୀକୁ ନିୟମବଦ୍ଧ କରିଥିଲେ । ସେ 'ପ୍ରେମଭକ୍ତି ଚନ୍ଦ୍ରିକା' ନାମକ ଏକ ପ୍ରାର୍ଥନାମୟ ନିବନ୍ଧ ମଧ୍ୟ ରଚନା କରିଥିଲେ । ତାଙ୍କର ପ୍ରାର୍ଥନା ପଦଗୁଡ଼ିକରେ କଳ୍ପନାର ଯେପରି

(୨୧) Dr. Sen, H. B. L ରୁ ଉଦ୍ଧୃତ ।

ପକ୍ଷବିସ୍ତାର ନାହିଁ; ଉପମା, ରୂପକ ଓ ଅନୁପ୍ରାସର ସେପରି ଝଲକ ନାହିଁ କିମ୍ବା ଭାଷା ଓ ଶୈଳୀର ସେପରି ଚମତ୍କାରିତା ନାହିଁ । ଯେ କୌଣସି ପୟାର କିମ୍ବା ତ୍ରିପଦୀ ପରି ତାଙ୍କର ପଦ ଗୁଡ଼ିକ ଅତି ସରଳ । କିନ୍ତୁ ଭକ୍ତ ହୃଦୟରେ ଭଗବତ୍ ପ୍ରସାଦ ପାଇଁ ତାଙ୍କ ପ୍ରାଣର ବ୍ୟାକୁଳତା ଓ ବେଦନା, ବ୍ୟକ୍ତିଗତ ଆବେଦନ, ସରଳତା ଓ ଆନ୍ତରିକତା ଯେ କୌଣସି ଶ୍ରୋତାର ପ୍ରାଣକୁ ସ୍ପନ୍ଦିତ କରେ । ତାଙ୍କର ପଦାବଳୀରେ ବୈଷ୍ଣବ ସୁଲଭ ନମ୍ରତା ଓ ଭକ୍ତିପ୍ରାଣତା ଏବଂ ସଖୀ ଭାବର କିପରି ମଞ୍ଜୁଳ ଅଭିବ୍ୟକ୍ତି ରହିଛି, ଲକ୍ଷ୍ୟ କରାଯାଉ—

ହରି ହରି ଆର କବେ ଏମନ ଦଶା ହବ ।
ଛାଡ଼ିୟା ପୁରୁଷ ଦେହ        କବେ ବା ପ୍ରକୃତି ହବ
ଦୋଁହାରେ ନୂପୁର ପରାଇବ ।

× × ×

ଦୁଇ ରୂପ ମନୋହାରୀ        ଦେଖିବ ନୟନ ଭରି
ନୀଲାମ୍ବରେ ଦିବ ସାଜାଇୟା ।
ରତନେର ଜରି ଆନି        ବାନ୍ଧିବ ବିଚିତ୍ର ବେଣୀ
ଦିବ ତାହେ ମାଲତୀ ଗାଁଥିୟା ।        (ବୈଷ୍ଣବ ପଦାବଳୀ)

**କବି ବଲ୍ଲଭ**—କବି ବଲ୍ଲଭ (ଷୋଡ଼ଶ ଶତାବ୍ଦୀର ଶେଷ) ଏକ ଉଚ୍ଚାଙ୍ଗ ଗୀତିରେ ପ୍ରେମାନୁଭୂତିର ତୀବ୍ରତା ଓ ପ୍ରେମ ରସର ଅତୃପ୍ତିର ଚମତ୍କାର ଆଲେଖ୍ୟ ଆଙ୍କିଛନ୍ତି ନିମ୍ନୋକ୍ତ ପଦରେ—

ସଖି କହ, କି ପୁଛସି ଅନୁଭବ ମୋୟ,
ସୋଇ ପିରୀତି        ଅନୁରାଗ ବାଖାନିତେ
ଅନୁଖନ ନୌତୁନ ହୋୟ ।
ଜନମ ଅବଧି ହମ        ଓ ରୂପ ନେହାରଲୁଁ
ନୟନ ନା ତିରପିତ ଭେଲ
ଲାଖ ଲାଖ ଯୁଗ ହାମ୍        ହିୟେ ହିୟେ ମୁଖେ ମୁଖେ
ହୃଦୟ ଜୁଡ଼ନ ନାହି ଗେଲ । (୨୨)

**ଯଦୁନନ୍ଦନ ଦାସ ଓ ଅନ୍ୟାନ୍ୟ ପଦକର୍ତ୍ତା**—ଯଦୁନନ୍ଦନ ଦାସ (ଦ୍ୱିତୀୟ,୧୭ଶ ଶତାବ୍ଦୀ) ବ୍ରଜବୁଲିର ଶେଷ ବଡ଼ କବି । ପଦାବଳୀ ରଚନା ଛାଡ଼ି ଦେଲେ ସେ ବିଦଗ୍ଧ ମାଧବ (ଯାର ବଙ୍ଗଳା ପଦ୍ୟାନୁବାଦର ନାମ 'ରାଧାକୃଷ୍ଣ ଲୀଳା ରସ କଦମ୍ବ'), ଗୋବିନ୍ଦ ଲୀଳାମୃତ ଓ କୃଷ୍ଣକର୍ଣ୍ଣାମୃତର ଅନୁବାଦ କରିଛନ୍ତି । ଘନରାମ ଦାସ, ଯାଦବେନ୍ଦ୍ର ଓ ଯଦୁନାଥ ଦାସ ବାତ୍ସଲ୍ୟ ରସର କେତେକ ପଦ ରଚନା କରିଛନ୍ତି । ଦୀନବନ୍ଧୁ ଦାସ (୧୮ଶ ଶତାବ୍ଦୀ) ବ୍ରଜବୁଲିରେ ସଂସ୍କୃତ ବିରୁଦ ରୂପ ଯୋଗ କରି ପଦ ରଚନା

(୨୨) Ibid, P. 163

କରିଛନ୍ତି (୨୩) । ରାଧାମୋହନ ଠାକୁର (୧୮ଶ ଶତାବ୍ଦୀ) ତାଙ୍କ ସମୟର ଜଣେ ବଡ଼ ବୈଷ୍ଣବ ଦାର୍ଶନିକ । ବ୍ରଜବୁଲିରେ ତାଙ୍କ ପଦ ସଂଖ୍ୟା ବେଶୀ । ରାୟ ଶେଖର ଗୋବିନ୍ଦ ଦାସ କବିରାଜଙ୍କର ଉତ୍ତରାଧିକାରୀଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । କବି ଶେଖର (ଦେବକୀ ନନ୍ଦନ ସିଂହ) ସଂସ୍କୃତ ଓ ବଙ୍ଗଳା ଉଭୟ ଭାଷାରେ କାବ୍ୟ ଓ ପଦାବଳୀ ରଚନା କରିଛନ୍ତି । ଆହୁରି ବହୁ ପଦକର୍ତ୍ତା ରହିଛନ୍ତି, ଯେଉଁମାନଙ୍କର ଗୋଟିଏ ଗୋଟିଏ ପଦ ଭାବ ଓ ଲାଳିତ୍ୟ ହେତୁ ବେଶ ଲୋକପ୍ରିୟ । ପ୍ରତାପରୁଦ୍ରଙ୍କର ଗୋଟିଏ ପଦରୁ କେତୋଟି ପଙ୍‌କ୍ତି ଉଦ୍ଧାର କରାଯାଉଛି, ଯଥା—

ତୋମାର ଲାଗିୟା ରାଧେ ତୋମା ଆରାଧିନୁ ।
ମନେର ମାନସ ଯତ ସକଲ ସାଧିନୁ ।।
ଅଙ୍ଗ ମାଝେ ହବ ତୋମାର ଅଙ୍ଗ ପରିପୂର ।
ଆଭରଣ ମାଝେ ହବ ଦୁଖାନି ନୂପୁର ।।

× × ×

ଆର ଏକ ସାଧ ଆମି କରିୟାଛି ମନେ ।
ଅତି କ୍ଷୀଣ ରେଣୁ ହୈୟା ଥାକିବ ଚରଣେ ।।

ଗୋପାଳକୃଷ୍ଣଙ୍କ ଉପରେ ବୈଷ୍ଣବ ପଦାବଳୀର କିପରି ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ରହିଛି, ଅନ୍ୟତ୍ର ତା'ର ଆଲୋଚନା କରା ଯାଇଛି ।

—

## ଓଡ଼ିଆ ସାହିତ୍ୟ

### ଓଡ଼ିଆ ସାହିତ୍ୟରେ ବୈଷ୍ଣବୀୟ ଓ ଲୌକିକ ପ୍ରେମ ଚେତନା :

ଅଷ୍ଟମ ଓ ନବମ ଶତାବ୍ଦୀର ସିଦ୍ଧାଚାର୍ଯ୍ୟମାନଙ୍କର ଚର୍ଯ୍ୟାପଦଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଭକ୍ତି ଓ ପ୍ରେମପ୍ରଧାନ ଲୌକିକ ଓ ବୈଷ୍ଣବ ଗୀତିକାବ୍ୟ ଅନ୍ୟ କବିଙ୍କ ସହିତ ଗୋପାଳକୃଷ୍ଣଙ୍କ ପାଇଁ ଯେଉଁ ପରମ୍ପରା ଭିତ୍ତି ଛାଡ଼ି ଯାଇଛି, ତାହା ଯେପରି ବଳିଷ୍ଠ ସେହିପରି ବୈଚିତ୍ର୍ୟମୟ । ଲୌକିକ ତଥା ବୈଷ୍ଣବୀୟ ପ୍ରେମ ଓ ଭକ୍ତିକୁ ଭିତ୍ତି କରି ଓଡ଼ିଶାରେ ଅଗଣିତ ବୋଲି, ଛାନ୍ଦ, ଚଉତିଶା (ପାଞ୍ଚାଲୀ ଶ୍ରେଣୀୟ ବା ନିବନ୍ଧ ସଙ୍ଗୀତ ରଚନା), ଚଉପଦୀ (ପ୍ରବନ୍ଧ), ଅଷ୍ଟକ, ଷୋଡଶା, ବସୁଦା, କୋଇଲି (ସନ୍ଦେଶ ଗୀତିକା), ପଦଆ, ଚଟାଉ, ଜଣାଣ, ଭଜନ ଓ ମାଳଶ୍ରୀ ରଚିତ ହୋଇଛି । ପ୍ରାଚୀନ କାଳରୁ ଓଡ଼ିଶା ବୌଦ୍ଧ, ଜୈନ, ଶୈବ, ଶାକ୍ତ, ତାନ୍ତ୍ରିକ, ନାଥ ଓ ବୈଷ୍ଣବ ଧର୍ମର

(୨୩) Dr. Sen, H. B. L., P. 310

ପ୍ରସ୍ଥର ପୀଠ ହୋଇ ଥିବାରୁ ଏବଂ ଜଗନ୍ନାଥ ସବୁ ମତବାଦର ସମନ୍ୱୟର ପ୍ରତୀକ ହୋଇ-ଥିବାରୁ ଓଡ଼ିଶାର ବ୍ୟକ୍ତି ତଥା ଜାତୀୟ ଜୀବନରେ ଧର୍ମୀୟ ଚେତନା ଏକ ପ୍ରକାର ସହଜାତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ନିରବଚ୍ଛିନ୍ନ ଆଧ୍ୟାତ୍ମିକ ଚେତନାର ପ୍ରବାହ ଓଡ଼ିଆ ଜୀବନକୁ ତ୍ୟାଗ ଓ ବୈରାଗ୍ୟର ବାଣୀ ଶୁଣାଇ ସଂସାର ନିସ୍ପୃହ କରି ନାହିଁ, ବରଂ ସଂସାରର ରୂପ, ରସ ଓ ଗନ୍ଧର ସଂଯତ ସମ୍ଭୋଗ ମଧ୍ୟରେ କିପରି ଭଗବତ୍ ଚେତନାର ଶାନ୍ତ ସ୍ପର୍ଶ ଲଭି କରି ବ୍ୟକ୍ତି ଓ ସାମାଜିକ ଜୀବନକୁ ସାର୍ଥକ କରିବ, ଏହି ଦ୍ୟୋତନା ତା'ର ଧର୍ମୀୟ ଚେତନା ପ୍ରତିବିମ୍ବିତ ସାହିତ୍ୟରେ ବିଶେଷତଃ ବୈଷ୍ଣବ ସାହିତ୍ୟରେ ରହିଛି । ସେଥିପାଇଁ ଆଧ୍ୟାତ୍ମିକ ଚେତନା, ଭଗବତ୍‌ପ୍ରେମ ଓ ଭକ୍ତିକୁ ନେଇ ବହୁ ସାହିତ୍ୟ ରୂପର ବିକାଶ ଘଟିବା ସଙ୍ଗେ ସଙ୍ଗେ ଏକ ଉଚ୍ଚ ସଂସ୍କୃତି ଓ ଧର୍ମୀୟ ସାହିତ୍ୟ ଭିତ୍ତିରେ ଲୌକିକ ପ୍ରେମର ବୈଚିତ୍ର୍ୟମୟ ତଥା ସାର୍ଥକ ଅଭିଲେଖ୍ୟ ଓଡ଼ିଆରେ ବହୁ ସାହିତ୍ୟ ରୂପରେ ପରିଦୃଷ୍ଟ ହୁଏ । ଓଡ଼ିଶାରେ ବୌଦ୍ଧତାନ୍ତ୍ରିକନାଥ ସିଦ୍ଧାଚାର୍ଯ୍ୟଙ୍କର ଚର୍ଯ୍ୟାପଦ, ଶୈବ, ଶାକ୍ତ ଓ ବୈଷ୍ଣବ ଭକ୍ତି ତଥା ପ୍ରେମ ଗୀତିକା, ପଞ୍ଚସଖା ତଥା ଜଗନ୍ନାଥ ଜଣାଣ ଓ ଭଜନ ଏବଂ ଅନ୍ୟାନ୍ୟ ଧର୍ମୀୟ ଚେତନା ସମ୍ବଳିତ ସାହିତ୍ୟ ରୂପ ସହିତ ଲୌକିକ ପ୍ରେମପ୍ରଧାନ ଛାନ୍ଦ, ଚଉତିଶା ଓ ଚଉପଦୀ ପ୍ରଭୃତି ଅଗଣିତ ସାହିତ୍ୟ ରୂପର ଅପ୍ରତିହତ ପ୍ରବାହ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଶତାବ୍ଦୀରେ ରଙ୍ଗିମନ୍ତ କରି ଆସିଛି । ଧର୍ମୀୟ ପ୍ରେମଚେତନା ଓ ଲୌକିକ ପ୍ରେମଚେତନା ପରସ୍ପର ସମାନ୍ତରାଳ ଭାବରେ ଗତି ନ କରି ପରସ୍ପରକୁ ନାନା ଭାବରେ ପ୍ରଭାବିତ କରି ଆସିଥିବାର ସାର୍ଥକ ଚିତ୍ର ଆମ ସାହିତ୍ୟରେ ଦେଖିବାକୁ ପାଇବା ।

## ରୂପକଧର୍ମୀ ରହସ୍ୟବାଦୀ ଗୀତ; ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ :

ଲୋକମାନଙ୍କର ଭୋଗପ୍ରବଣ ଚିତ୍ତକୁ ଯୋଗମୁଖୀ କରିବାପାଇଁ, ସଂସାରର ବିଷୟ, ରୂପ, ରସ ଓ ଗନ୍ଧ ମଧ୍ୟରେ ଚିତ୍ତକୁ ଅନାସକ୍ତ ବା ନିର୍ଲିପ୍ତତାର ସ୍ପର୍ଶ ଦେଇ ଭଗବତ୍‌ମୁଖୀ କରିବା ପାଇଁ ସିଦ୍ଧାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ଗୋପାଳକୃଷ୍ଣଙ୍କ ପର୍ଯ୍ୟନ୍ତ ବହୁ କବି ଅପାର୍ଥିବ ବ୍ୟଞ୍ଜନା ସମୃଦ୍ଧ ବହୁ ରୂପକଧର୍ମୀ ଓ ରହସ୍ୟବାଦୀ ଗୀତ, ଭଜନ, ଜଣାଣ, ବନ୍ଦନା, ପ୍ରାର୍ଥନା ଓ ଚଉତିଶା ରଚନା କରିଛନ୍ତି । ଏତନ୍ମଧ୍ୟରେ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ ଭିତ୍ତିକ ମୁମୁକ୍ଷୁ ଓ ତଦନୁପନ୍ଥୀଙ୍କର ଜ୍ଞାନ ଭକ୍ତି ପ୍ରଧାନ ଶରୀର ଭେଦ ଭଜନ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରେ ଅଚ୍ୟୁତାନନ୍ଦଙ୍କର ହଂସ ଭଜନ, ଯଶୋବନ୍ତଙ୍କର ମାତୃଗର୍ଭ ନିର୍ଣ୍ଣୟ ଭଜନ, ଜଗନ୍ନାଥ ଦାସଙ୍କର ଭାଗବତ ଭଜନ, ବଳରାମଙ୍କର ସାରିକା ଭଜନ ଓ ବାଉଲ ଦାସଙ୍କର ଭଜନ ଗୁଡ଼ିକ ଓଡ଼ିଶାର ପୁରପଲ୍ଲୀରେ ବିଶେଷ ଲୋକପ୍ରିୟ । ଅମୃତତତ୍ତ୍ୱ ଉପଲବ୍ଧି ପାଇଁ ଅଚ୍ୟୁତ ବିଷୟୋନ୍ମତ୍ତ ଚିତ୍ତକୁ ରୂପକ ଛଳରେ ସମ୍ବୋଧନ କରି ଲେଖିଛନ୍ତି —

ବାଇମନ ହୋ, ବସି ହଂସକୁ ଖେଳା ।
ହଂସ ଉଡ଼ିଗଲେ ବୁଡ଼ିବ ଭେଳା ।। ପଦ ।।
ପୋଖରୀ ଗୋଟିକ ଘୁରି ଚୌରସ ।
ଡିମ୍ବ ପାଡ଼ି ଅଛି ଅଣ୍ଡିରା ହଂସ ।।
ଶୁଖିଲା ପୋଖରୀ ମାରେ ଲହଡ଼ି ।

ତମ୍ଭ ଅଛୁ ଛୁଆ ଗଲଣି ଉଡ଼ି ।।
ତମ୍ଭ ଗୋଟିକେ ଥନ ଥନ ଛୁଆ ।
ସୁଜ୍ଞାନୀ ହୋଇଲେ କହିବ ଏହା ।।

ସେହିପରି ଯଶୋବନ୍ତ ମାୟାଗ୍ରସ୍ତ ଜୀବର ମୁକ୍ତି ନିମିତ୍ତ ନାମ ଭଜନ ଉପରେ ଗୁରୁତ୍ୱ ଦେଇ ଜୀବକୁ ସମ୍ବୋଧନ କରି ଲେଖିଛନ୍ତି—

ବଡ଼ ମାୟାବୀ ଜୀବ ନୋହେ କାହାରି ।
ଧନେ ନ ଭଜୁ ରାମ କୃଷ୍ଣ ଶ୍ରୀହରି ।। ପଦ ।।

× × ×

ପନ୍ଦର ବରଷେ ହେଲୁ ଅମର ମତି ।
ଷୋଡ଼ଏ ବରଷେ କଲୁ କାମିନୀ ଚିନ୍ତା ।
କାମିନୀ ସଙ୍ଗେ ରହି ଧନ ହରିଲୁ ବୁଦ୍ଧି
ସେ ରୂପେ ଗଲା ତୋର ଯୁବାବୟସ ବହି ।
ହରି କଥାକୁ ଧନେ ମନେ ନକଲୁ ବୁଦ୍ଧି
ହେବୁ କେମନ୍ତେ ଏ ଭବୁ ପାରି ।

**ଧର୍ମୀୟ ଚେତନା ଭିତ୍ତିକ ଗୀତଗୁଡ଼ିକର ଅଭିମୁଖ୍ୟ;**
**ଚଉତିଶା, ଭଜନ ଓ ଜଗନ୍ନାଥ ଜଣାଣ :**

ଅଧିକାଂଶ ବନ୍ଦନା, ପ୍ରାର୍ଥନା, ଅବକାଶ ଗୀତ, ଭଜନ ଓ ଚଉତିଶାରେ ବୈରାଗ୍ୟ ଚେତନା, ମନ ପ୍ରତି ଚୈତନ୍ୟର ଉପଦେଶ (ମନଃଶିକ୍ଷା), ଭଗବାନଙ୍କର ନାମ, ରୂପ, ଗୁଣ ଓ ଲୀଳାର ବର୍ଣ୍ଣନା ଏବଂ ଜଣାଣ ଗୁଡ଼ିକରେ ଭକ୍ତ ଜୀବନର ଆର୍ତ୍ତି ଓ ତା' ହୃଦୟର ଅଭିଳାଷର ପ୍ରାଣସ୍ପର୍ଶୀ ଚିତ୍ର ରହିଛି । ଓଡ଼ିଶାରେ ଭକ୍ତି ପ୍ରଧାନ ଚଉତିଶା ମଧ୍ୟରେ ଦୀନକୃଷ୍ଣଙ୍କର ଆର୍ତ୍ତତ୍ରାଣ ଚଉତିଶା ଏବଂ ଜଣାଣ ମଧ୍ୟରେ ସାଲବେଗ, ଗଜପତି ବୀର-କେଶରୀ ଦେବ, ଚନ୍ଦନ ହଜୁରୀ, ବନମାଳୀ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓ କବିସୂର୍ଯ୍ୟ ବଳଦେବଙ୍କର ଜଗନ୍ନାଥ ଜଣାଣ ଓଡ଼ିଶାରେ ବିଶେଷ ଜନପ୍ରିୟତା ଅର୍ଜନ କରିଛି । ସମଗ୍ର ଭାରତର ମଉଡ଼ମଣି ନୀଳାଚଳ ନାଥ ଜଗନ୍ନାଥ ବିଭିନ୍ନ ଶତାବ୍ଦୀରେ ଓଡ଼ିଶାର କବିଙ୍କର କାବ୍ୟ, କବିତା ଓ ଗୀତର ଚିରନ୍ତନ ଉତ୍ସ ହୋଇଆସିଛନ୍ତି । ନିଜର ପ୍ରିୟ ବ୍ୟକ୍ତିଙ୍କ ପ୍ରତି ସମସ୍ତ ବିଶେଷରେ ଅଭିମାନ ପ୍ରକାଶ କରାଯିବା ପରି ଓଡ଼ିଶାର ବିଭିନ୍ନ ଶତାବ୍ଦୀର ଧର୍ମପ୍ରାଣ ଭକ୍ତକବିମାନେ କେତେବେଳେ ପ୍ରତ୍ୟକ୍ଷ ଭାବରେ କେତେବେଳେ ଥବା ଅଭିମାନରେ ସେମାନଙ୍କର ପ୍ରିୟ ଦେବତାଙ୍କୁ ଭକ୍ତିରେ ଭର୍ତ୍ସନା କରିବାକୁ ତିଳେ-ମାତ୍ର କୁଣ୍ଠାବୋଧ କରିନାହାନ୍ତି । କବିସୂର୍ଯ୍ୟଙ୍କର ସର୍ପ ଜଣାଣ (ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ ଦିଅ ଦଣ୍ଡେ ଟାଳି) ହେଉଛି ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ତା'ଛଡ଼ା ପଞ୍ଚସଖାଙ୍କ ଭଜନ (ମନ ଚୈତନ୍ୟ ସମ୍ବାଦ) ଓ ଗୌଡ଼ୀୟ ବୈଷ୍ଣବ ପଦାବଳୀ ରୀତି

ଅନୁସରଣରେ ଜୀବନର ଚରମ ଲକ୍ଷ୍ୟ ଭଗବତ୍ ସାକ୍ଷାତ୍କାର ସମ୍ପର୍କରେ ସଚେତ କରାଇବା ପାଇଁ ବୈଷ୍ଣବ କବି ବନମାଳୀ ପ୍ରଭୃତି ବହୁ ମନୀଷୀ ଶିକ୍ଷାମୂଳକ ଗୀତ ରଚନା କରିଛନ୍ତି ।

## ବୈଷ୍ଣବୀୟ ଓ ଲୌକିକ ପ୍ରେମ ଭିତ୍ତିକ ଛାନ୍ଦ ସାହିତ୍ୟ :

ଷୋଡ଼ଶ ଶତାବ୍ଦୀଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପୌରାଣିକ ଓ କାଳ୍ପନିକ କଥାବସ୍ତୁ ଅବଲମ୍ବନରେ ଓଡ଼ିଶାରେ ଯେଉଁ ଅଜସ୍ର କାବ୍ୟ (ଛାନ୍ଦ ସାହିତ୍ୟ) ରଚିତ ହୋଇଛି ପ୍ରେମ ଓ ଶୃଙ୍ଗାର ସେ ଗୁଡ଼ିକର ଉପଜୀବ୍ୟ ବସ୍ତୁ । ବୈଷ୍ଣବୀୟ ପ୍ରେମକୁ ଛାଡ଼ି ଦେଲେ ଲୌକିକ ପ୍ରେମ ଉପରେ ଅନ୍ୟ କାବ୍ୟ ଗୁଡ଼ିକର ପ୍ରାଣ ପ୍ରତିଷ୍ଠା ହୋଇଛି । ପ୍ରେମ ଓ ଶୃଙ୍ଗାର ଚିତ୍ରରେ ତ୍ୟାଗ, ସଂଯମ ଓ ତପୋନିଷ୍ଠା ଅପେକ୍ଷା ଇନ୍ଦ୍ରିୟ ତଥା ଦୈହିକ ସମ୍ଭୋଗ ପ୍ରବଣତାର ଗତାନୁଗତିକ ବୈଚିତ୍ର୍ୟହୀନ ଛବି ପ୍ରାୟ ଅଧିକାଂଶ କାବ୍ୟରେ ପରିଦୃଷ୍ଟ ହୁଏ । ପ୍ରେମର ଚିତ୍ର ବ୍ୟକ୍ତିକ ଅନୁଭୂତିପ୍ରଧାନ ନ ହୋଇ ହୋଇଛି ନିର୍ବ୍ୟକ୍ତିକ ଓ କାମଶାସ୍ତ୍ର ଭିତ୍ତିକ । ଉଭୟ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ଏବଂ ତା'ର ପୃଷ୍ଠଭୂମିର ଚିତ୍ରରେ କବି କଳ୍ପନାର ସ୍ୱକୀୟତା ଓ ସ୍ୱାଭାବିକତା ସ୍ଥଳରେ ଆମେ ପାଉଁ କାମଶାସ୍ତ୍ର ଓ ଅଳଙ୍କାର ଶାସ୍ତ୍ର ନିର୍ଦ୍ଦିଷ୍ଟ ପରମ୍ପରାର ବୈଚିତ୍ର୍ୟହୀନ ଗତାନୁଗତିକ ଅନୁକୃତି । ମାନବ ଜୀବନ ଓ ଅନୁଭୂତିର ବୈଚିତ୍ର୍ୟମୟ ଆଲେଖ୍ୟ ଅପେକ୍ଷା ଜୀବନର ଏକ ଗତାନୁଗତିକ କୃତ୍ରିମ ଛବି ସହିତ ବର୍ଣ୍ଣନାର (ରୂପ, ପ୍ରକୃତି, ପ୍ରାସାଦ, ବାପଣି) ଆତିଶଯ୍ୟ, ଆଲଙ୍କାରିକ ଆଟୋପ ଏବଂ ଭାଷା ଓ ଶବ୍ଦଶିଳ୍ପ ନୈପୁଣ୍ୟ ପ୍ରତି ମାତ୍ରାଧିକ ପ୍ରବଣତା ଆମର ଏହି ପ୍ରେମପ୍ରଧାନ କାବ୍ୟ ବିଶେଷତଃ ରୀତିକାବ୍ୟର ବୈଶିଷ୍ଟ୍ୟ ହୋଇ ପଡ଼ିଛି । ଆତ୍ମିକ (Content) ଅପେକ୍ଷା ଆଙ୍ଗିକ (Form) ସର୍ବଦା ଅଗ୍ରାଧିକାର ପାଇ ଆସିଛି । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର କେତୋଟି କାବ୍ୟ ବାଦ ଦେଲେ ସପ୍ତଦଶ ଶତାବ୍ଦୀର ଶେଷଭାଗ ଓ ଅଷ୍ଟାଦଶ ଶତାବ୍ଦୀର ଅଧିକାଂଶ ରୀତି କାବ୍ୟରେ ଏ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ଅଜସ୍ର ପ୍ରେମ ଓ ଶୃଙ୍ଗାର ପ୍ରଧାନ କାବ୍ୟ ରଚିତ ହୋଇଥିଲେ ମଧ୍ୟ ଷୋଡ଼ଶ ଶତାବ୍ଦୀର ଉଷାଭିଳାଷ (ଶିଶୁଶଙ୍କର); ପରିମଳା (ନରସିଂହ ସେଣ); ସପ୍ତଦଶ ଶତାବ୍ଦୀର ରୁକ୍ମିଣୀ ବିଭା (କାର୍ତ୍ତିକ ଦାସ); ଇଚ୍ଛାବତୀ, ଅନଙ୍ଗରେଖା, ମଦନ ମଞ୍ଜରୀ (ଧନଞ୍ଜୟ ଭଞ୍ଜ); ପ୍ରେମଲୋଚନା (ବିଷ୍ଣୁ ଦାସ); ଲୀଳାବତୀ (ରଘୁନାଥ ହରିଚନ୍ଦନ); ଅଷ୍ଟାଦଶ ଶତାବ୍ଦୀର ଶଶିସେଣା (ପ୍ରତାପ ରାୟ); ରସକଲ୍ଲୋଳ (ଦୀନକୃଷ୍ଣ); ଚିତ୍ରକଳା, ସର୍ବାଙ୍ଗ ସୁନ୍ଦରୀ (ଲୋକନାଥ); କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ବୈଦେହୀଶ ବିଳାସ, ପ୍ରେମ ସୁଧାନିଧି, ରସିକ ହାରାବଳୀ (ଉପେନ୍ଦ୍ର ଭଞ୍ଜ); ଗୁପ୍ତଇଚ୍ଛାବତୀ (ବନମାଳୀ); ଲଳିତ ଲୋଚନା, ମୋହନ କଳ୍ପଲତା (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା); ଶଶିରେଖା (ପଦ୍ମନାଭ ଶ୍ରୀଚନ୍ଦନ); କନକଲତା (ତ୍ରିବିକ୍ରମ ଭଞ୍ଜ); ଅମ୍ବିକା ବିଳାସ (ବ୍ରଜନାଥ ବଡ଼ଜେନା); ବିଦଗ୍ଧ ଚିନ୍ତାମଣି (ଅଭିମନ୍ୟୁ) ଓ ଚନ୍ଦ୍ରକଳା (କବିସୂର୍ଯ୍ୟ ବଳଦେବ) ପ୍ରଭୃତି କାବ୍ୟ ଓଡ଼ିଶାରେ ଜନପ୍ରିୟତା ଅର୍ଜନ କରିଛି । ପ୍ରେମ ଓ ଶୃଙ୍ଗାର ଚିତ୍ରରେ ପୌରାଣିକ ଓ ବୈଷ୍ଣବ କାବ୍ୟମାନଙ୍କରେ କାଳ୍ପନିକ କଥାବସ୍ତୁ-ପ୍ରଧାନ ରୀତିକାବ୍ୟର ପରମ୍ପରା ଗ୍ରହଣ କରାଯାଇଛି ।

## ପ୍ରେମ ଓ ଶୃଙ୍ଗାର ପ୍ରଧାନ ଚଉତିଶା, ଚଉପଦୀ, ଚଢାଇ, ପୋଇ, ଛଟାଇ ଗୀତିକା ଓ କୋଇଲି :

ରୀତିକାବ୍ୟ ଗୁଡ଼ିକରେ ମାନବ ଜୀବନ ଓ ଅନୁଭୂତିର ଉଚ୍ଚାଙ୍ଗ, ବିଶୁଦ୍ଧ ଚିତ୍ର ନ ମିଳିଲେ ମଧ୍ୟ ଓଡ଼ିଆ ସାହିତ୍ୟର ଅଗଣିତ ପ୍ରେମ ଓ ଶୃଙ୍ଗାର ପ୍ରଧାନ ଗୀତିଧର୍ମୀ ଚଉତିଶା, ଚଉପଦୀ, ଚୋଇ, ପୋଇ, ଛଟାଇ ଗୀତିକା ଓ କୋଇଲି ଆମକୁ ଏଥିରୁ ନିଗ୍ରଶ କରି ନାହାନ୍ତି । ଦିବ୍ୟ ଚରିତ୍ର ରାଧାକୃଷ୍ଣ, ଗୋପୀକୃଷ୍ଣ ହୁଅନ୍ତୁ ବା ଲୌକିକ ନାୟକ ନାୟିକା ହୁଅନ୍ତୁ, ଚଉତିଶା ଓ ଚଉପଦୀରେ ଏମାନଙ୍କର ପ୍ରେମାଲେଖ୍ୟ ମାନବିକ ଭାବାବେଗ ଉପରେ ପ୍ରତିଷ୍ଠିତ ହୋଇ ବାସ୍ତବ ଓ ପ୍ରାଣସ୍ପର୍ଶୀ ହୋଇଛି । କବିଙ୍କର ସ୍ୱକୀୟ ଭାବାନୁଭୂତି ନାୟକ ନାୟିକାଙ୍କର ପ୍ରଣୟ ଓ ଅନ୍ୟ ସୁଖ ଦୁଃଖର ଅନୁଭୂତି ମଧ୍ୟରେ ଏକ ପ୍ରକାର ଆତ୍ମ ପ୍ରକାଶ କରିଛି । ପୂର୍ବବର୍ତ୍ତୀ ଶତକ ଅପେକ୍ଷା ଅଷ୍ଟାଦଶ ଶତକରେ ଓଡ଼ିଆ ଜୀବନରେ ଦୈବ ନିର୍ଭରଶୀଳତା ଓ ଅଦୃଷ୍ଟବାଦିତା ଅପେକ୍ଷା ପୁରୁଷକାରଠାରେ ଅଧିକତର ଆସ୍ଥା ଦେଖା ଦେଇ ଥିବାରୁ କବିର କାବ୍ୟ ଓ ଗୀତରେ ପ୍ରେମ ମାନବିକତାର ସ୍ପର୍ଶ ଲାଭ କରିଛି । ପାରତ୍ରିକ ସୁଖର ଆଦର୍ଶ ନିଷ୍ପ୍ରଭ ହୋଇ ନଥିଲେ ମଧ୍ୟ ଐହିକ ସୁଖ ସମ୍ଭୋଗ ପ୍ରତି ଓଡ଼ିଆର ଆଗ୍ରହ ଦେଖାଦେଇଛି । ଏକ ଦିଗରେ ଧର୍ମୀୟ ଚେତନା, ଅନ୍ୟ ଦିଗରେ ରୂପ, ରସ, ଗନ୍ଧରେ ଜୀବନକୁ ଉପଭୋଗ କରିବାର ବାସନା ତା'ର ଦେଖା ଦେଇଛି । ଫଳରେ ଅଷ୍ଟାଦଶ ଶତାବ୍ଦୀର କାବ୍ୟ, ଚଉପଦୀ ଓ ଚଉତିଶା ପ୍ରଭୃତିରେ କବି ପ୍ରାଣର ରସିକତା ମାନବୀୟ ପ୍ରେମ ଓ ଶୃଙ୍ଗାରର ବହୁଳ ଆଲେଖ୍ୟ ମଧ୍ୟରେ ଫୁଟି ଉଠିଛି । ସ୍ଥୂଳ ଶୃଙ୍ଗାର ପ୍ରବଣତା ବହୁ ଚଉପଦୀ ଓ ଚଉତିଶାରେ ପରିଦୃଷ୍ଟ ହୋଇଥିବାରୁ ଏଗୁଡ଼ିକ ମାନବ ଜୀବନର ଏକ ମହତ୍ତର ପ୍ରତ୍ୟୟଭୂତି ଓ ଜୀବନାଦର୍ଶରୁ ଏକ ବୃହତ୍ତର ଜୀବନ ଓ ଜଗତ ସମ୍ପର୍କୀୟ ବଳିଷ୍ଠ ଚେତନାରୁ ପାଠକ ମାନଙ୍କୁ ବଞ୍ଚିତ କରିଛନ୍ତି ।

### ଚଉପଦୀ ଓ ତା'ର କବି :

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ରୀତିକାବ୍ୟ ରଚିତ ହୋଇଥିଲେ ମଧ୍ୟ ଯେଉଁ କାରଣରୁ ରୀତିଯୁଗର ପିତୃତ୍ୱ ତାଙ୍କ ଉପରେ ଅର୍ପଣ କରାଯାଏ, ସେହି କାରଣରୁ ତାଙ୍କର ବହୁ ପୂର୍ବରୁ ଚଉପଦୀ ରଚନାର ପରମ୍ପରା ଦେଖାଗଲେ ମଧ୍ୟ ତାଙ୍କ ଉପରେ ଚଉପଦୀ ରଚନାର ପିତୃତ୍ୱ ଅର୍ପଣ କରାଯିବା ସ୍ୱାଭାବିକ । ଯୌବନ ଓ ପ୍ରଣୟର ବର୍ଣ୍ଣିଳ ମାଦକ ଛବି ବହନ କରି ଉତ୍ତମ ରାଗ ରାଗିଣୀରେ ତାଙ୍କର (ଉପେନ୍ଦ୍ରଙ୍କର) ସଙ୍ଗୀତ (ଚଉପଦୀ) ଏ ପର୍ଯ୍ୟନ୍ତ ଉତ୍କଳବାସୀଙ୍କର କର୍ଣ୍ଣ ରସାୟନ ଓ ପ୍ରିୟ ହୋଇ ରହିଛି । ପ୍ରାଚୀନ କାଳରୁ ସଙ୍ଗୀତ ଅର୍ଥରେ ଚଉପଦୀ ଶବ୍ଦର ବ୍ୟବହାର ଓଡ଼ିଆ ସାହିତ୍ୟରେ ହୋଇ ଆସିଛି ଏବଂ ସାହିତ୍ୟ ଓ ସଙ୍ଗୀତ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଇ ନାହିଁ । ଉପେନ୍ଦ୍ରଙ୍କ ବହୁ ପୂର୍ବରୁ ଓ ପରେ ଓଡ଼ିଶାରେ କିପରି ସଙ୍ଗୀତ ଶାସ୍ତ୍ରର ଅନୁଶୀଳନ ଓ ସଙ୍ଗୀତ ଚର୍ଚ୍ଚା ହୋଇ ଆସିଛି, ଦ୍ୱିତୀୟ ପରିଚ୍ଛେଦ (କ)ରେ ତା'ର ସୂଚନା ଦିଆ ଯାଇଛି । ସ୍ୱାଧୀନତା ହରାଇ ଏ ଜାତି ଯେତେବେଳେ ତା'ର ଶୌରିହି ଓ ସମର ଚର୍ଚ୍ଚା

କ୍ରମଶଃ ବିସ୍ମୃତ ହୋଇ ଯାଇଛି, ସେତେବେଳେ ଇନ୍ଦ୍ରିୟଭୋଗ ସର୍ବସ୍ୱ ବିଳାସପୂର୍ଣ୍ଣ ଜୀବନକୁ (ରାଜନ୍ୟ ଓ ସମ୍ଭ୍ରାନ୍ତ ବର୍ଗଙ୍କର) ଖୋରାକ ଯୋଗାଇବା ପାଇଁ କବିମାନେ ନଗ୍ନ ଶୃଙ୍ଗାରଧର୍ମୀ ଭୋଗ ସର୍ବସ୍ୱ ଚଉପଦୀ ଓ ଚଉତିଶା ରଚନା କରି ଚାଲିଛନ୍ତି; ଏପରିକି ରାଜା ଓ ରାଜବଂଶୀୟ ଲୋକେ ଏହାର ପୃଷ୍ଠପୋଷକତା କରିବା ସଙ୍ଗେ ସଙ୍ଗେ ଏହାର ଚର୍ଚ୍ଚା ଓ ରଚନାରେ ବିଶେଷ ଆଗ୍ରହ ପ୍ରଦର୍ଶନ କରିଛନ୍ତି । ଘୁମୁସରର ରାଜା ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର, ବାଣପୁରର ରାଜା ରଘୁନାଥ ରାଜ ହରିଚନ୍ଦନ, ପଟିଆ ରାଜା ଦିବ୍ୟସିଂହ ଦେବ, ଦୀନବନ୍ଧୁ ରାଜ, ପାରଳା ରାଜା ଜଗନ୍ନାଥ ନାରାୟଣ ଦେବ ଓ କବି ଦୁର୍ଗେଶଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ (୨୪) ।

ଷୋଡ଼ଶ ଶତାବ୍ଦୀରୁ କ୍ଷୁଦ୍ର ପ୍ରବନ୍ଧ ବା ଗୀତ ଅର୍ଥରେ ଚଉପଦୀ ଶବ୍ଦର ପ୍ରୟୋଗ ହୋଇ ଆସିଛି । ଷୋଳଟି ଗୀତ ବିଶିଷ୍ଟ ଜଗନ୍ନାଥ ଦାସଙ୍କର ଷୋଳ ଚଉପଦୀ ହେଉଛି ତାର ଦୃଷ୍ଟାନ୍ତ । ସପ୍ତଦଶ ଶତାବ୍ଦୀରେ କବି ଦୀନକୃଷ୍ଣ, ରଘୁନାଥ ହରିଚନ୍ଦନ, ବିଷ୍ଣୁଦାସ (ଛାନ୍ଦ ଲୀଳାବତୀ), ଧନଞ୍ଜୟ ଭଞ୍ଜ, କରୁଣ ଦାସ; ଅଷ୍ଟାଦଶ ଶତାବ୍ଦୀରେ ଉପେନ୍ଦ୍ର ଭଞ୍ଜ, ବନମାଳୀ ଦାସ, କୁଞ୍ଜବିହାରୀ ଭ୍ରମରବର, କୃଷ୍ଣ ସିଂହ, ହରିବିକ୍ରମ ଭଞ୍ଜ, ଦାଶରଥି ଦାସ, ଗୌରଚନ୍ଦ୍ର ଦେବ, ଦୀନବନ୍ଧୁ ରାଜ ହରିଚନ୍ଦନ, ପଦ୍ମନାଭ ଦେବ, ପଦ୍ମନାଭ ଶ୍ରୀଚନ୍ଦନ, ପୁରୁଷୋତ୍ତମ ଅନଙ୍ଗଭୀମ, ବିନାୟକ ସିଂହ, କିଶୋର ଦେବ, ବ୍ରଜବିହାରୀ ଶ୍ରୀଚନ୍ଦନ, ସୋମନାଥ ଜଗଦେବ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ନୃସିଂହ ପଟ୍ଟନାୟକ, ଘନଶ୍ୟାମ, ନାରାୟଣ ଦ୍ୱିଜ ଏବଂ ଊନବିଂଶ ଶତକରେ କବିସୂର୍ଯ୍ୟ ବଳଦେବ ଅଜସ୍ର ଲୌକିକ ପ୍ରୀତିମୂଳକ ଚଉପଦୀ (ସଙ୍ଗୀତ) ରଚନା କରି ଓଡ଼ିଆ ସଙ୍ଗୀତ ସାହିତ୍ୟକୁ ପରିପୁଷ୍ଟ କରିଯାଇଛନ୍ତି (୨୫) ।

**ଉପେନ୍ଦ୍ର ଭଞ୍ଜ, ସଦାନନ୍ଦ ଓ ବଳଦେବ :**

ଧନଞ୍ଜୟ ଭଞ୍ଜ ବହୁ ଚମ୍ପୂ ଗୀତ (୨୬) ଓ ଚଉପଦୀ ରଚନା କରିଛନ୍ତି । ଧନଞ୍ଜୟ ଓ ଉପେନ୍ଦ୍ରଙ୍କର ସଙ୍ଗୀତାବଳୀ 'ଚଉପଦୀ ଭୂଷଣ' ନାମରେ ଏବଂ କବିସୂର୍ଯ୍ୟ ବଳଦେବଙ୍କର କ୍ଷୁଦ୍ର ଗୀତଗୁଡ଼ିକ 'ଚଉପଦୀ ରତ୍ନାକର' ଓ 'ସଙ୍ଗୀତ କଳ୍ପଲତା' ନାମରେ ପରିଚିତ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା 'ପ୍ରେମଚିନ୍ତାମଣି' ନାମରେ ଏକ ଚଉତିଶା ରଚନା କରିବା ସଙ୍ଗେ ସଙ୍ଗେ ସଙ୍ଗୀତ ଲେଖକ କବି ଦୀନବନ୍ଧୁ ରାଜଙ୍କର ପ୍ରଶଂସା କରିଛନ୍ତି ଏବଂ କରିଭଣମାନ ଗୀତ ଗ୍ରାହକଙ୍କ ପ୍ରତି ଆଦର ଓ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଦାଶରଥି ଦାସ ସ୍ୱରଚିତ ବୋଲି (ଗ୍ରନ୍ଥ) ମଧ୍ୟରେ ହିନ୍ଦୀ ଓ ଓଡ଼ିଆ ଭାଷାର କ୍ଷୁଦ୍ର ଗୀତ ସନ୍ନିବେଶ କରିଛନ୍ତି । ଏହି ଲୌକିକ ପ୍ରେମାନୁଭୂତି ମୂଳକ ଚଉପଦୀର କେତୋଟି ଦୃଷ୍ଟାନ୍ତ ଦିଆଯାଉଛି । ଉପେନ୍ଦ୍ର ଭଞ୍ଜ ତାଙ୍କର 'ଚଉପଦୀ ଚନ୍ଦ୍ର'ରେ ବିଦେଶରେ ଥିବା ବିରହୀ ନାୟକର ଅନୁଚିନ୍ତା, ବିଚ୍ଛେଦ

(୨୪) ଡଃ ମହାନ୍ତି, ଓଡ଼ିଆ ଗୀତିକାବ୍ୟ, ପୃ: ୫୧

(୨୫) ତତ୍ରୈବ ପୃ: ୯୮

(୨୬) ଚମ୍ପୂ ଗୀତଗୁଡ଼ିକ ମଧ୍ୟ ଚଉପଦୀ ଧର୍ମୀ ।

ଭାବନା, ନାୟିକାର ପ୍ରେମ ଓ ରୂପ ପ୍ରଶଂସା, ସମ୍ଭୋଗ ଶୃଙ୍ଗାର, ମିଳିତ ହେବାର ଅଭିଳାଷ, ବିରହୋତ୍କଣ୍ଠା ଓ ମିଳନର ଅନୁଭୂତିକୁ ନେଇ କେତେକ ସମ୍ଭୋଗାତ୍ମକ ଚଉପଦୀ ରଚନା କରିଛନ୍ତି । ନାୟକର ବିରହୋତ୍କଣ୍ଠାର ଚିତ୍ର ଦେବାକୁ ଯାଇ ତା'ମୁଖରେ କବି ପ୍ରକାଶ କରିଛନ୍ତି—

ଏବେ ମୁଁ ବଞ୍ଚିବି କେହ୍ନେ,
ଏଣିକି ଉପାୟ ନାହିଁ,
ଏ ଯୁବାକାଳେ କୋଳେ କେଉଁ ଅଭାଗ୍ୟ ବଳେ
ନବ ଯୁବତୀ ଭାବ ବନ୍ଧୁ ବସିଲା ନାହିଁ । ଘୋଷା ।
ଏହା ମୋ କରମେ ଥିଲା, ଏକାକୀ କରି ପାହିଲା,
ଏତେ କରୁଣା ଊଣା ହେବ କେଳି ପ୍ରବୀଣା
ବୋଲି ନଥିଲା ଜଣା ସ୍ୱପ୍ନେ ଦେଖା ନ ଦେଲା ।

ବିଚ୍ଛେଦକୁ ପ୍ରେମର ନିକଷ କୁହାଯାଏ । କବି ଉଦ୍ଧୃତାଂଶ ଓ ଅନ୍ୟ ଅଗଣିତ ଚଉପଦୀରେ ତାଙ୍କର ଶୁଦ୍ଧକାବ୍ୟ ପରି ପ୍ରେମର ଯେଉଁ ଚିତ୍ର ଆଙ୍କିଛନ୍ତି, ତାହା କେତେ ଦେହଜ ଓ ଇନ୍ଦ୍ରିୟମୁଖୀ ସହୃଦୟ ପାଠକ ଲକ୍ଷ୍ୟ କରିପାରିବେ ।

**ବନମାଳୀ :**

କବି ବନମାଳୀ ପ୍ରେମକୁ ବୈଷ୍ଣବୀୟ ଭାବ ପୃଷ୍ଠରେ ରଞ୍ଜିତ କରିବା ପୂର୍ବରୁ ଗତାନୁଗତିକ ରୀତିରେ କେତୋଟି ଚଉପଦୀରେ ପ୍ରାପଞ୍ଚିକ ରୂପ ଦାନ କରିଛନ୍ତି । 'ଲୌକିକରସ' ପର୍ଯ୍ୟାୟରେ ସେ ଯେତୋଟି ଚଉପଦୀ ରଚନା କରିଛନ୍ତି କେତୋଟିରେ ରୀତିକାବ୍ୟ ସୁଲଭ ଯମକର ଅଯଥା ପ୍ରୟୋଗ ହେତୁ ଚଉପଦୀର ସାଙ୍ଗୀତିକ ମାଧୁର୍ଯ୍ୟ କ୍ଷୁଣ୍ଣ ହୋଇଥିଲେ ମଧ୍ୟ କେତୋଟି ଚଉପଦୀ ଭାବ, ଭାଷା, ରାଗ ଓ ସ୍ୱାଚ୍ଛନ୍ଦ୍ୟ ଦୃଷ୍ଟିରୁ ଯେ ଉପଭୋଗ୍ୟ ହୋଇଛନ୍ତି, ଏଥିରେ ସନ୍ଦେହ ନାହିଁ । ନାୟକର ବିଦେଶ ଗମନ ସମୟରେ ଆଶୁ ବିଚ୍ଛେଦ-ବେଦନା-ଆତଙ୍କିତା ନାୟିକା ମୁଖରେ କବି ପ୍ରକାଶ କରିଛନ୍ତି—

ଏ ଯୁବା କାଳରେ କାନ୍ତ ଛାଡ଼ି ନ ଯା ଦୂରଦେଶ,
ସହି କି ପାରିବି କ୍ଷଣେ ଦୁଃସହ ବିଚ୍ଛେଦ କ୍ଳେଶ ॥ ପଦ ॥
ଦେଖ ବସନ୍ତ ଆଗତ, ବହେ ଦକ୍ଷିଣା ମରୁତ
ବନପ୍ରିୟ ପକ୍ଷୀ ରୁତ କଲେଣି ବୃକ୍ଷେ ବିଶେଷ ।

(ବନମାଳୀ ପଦ୍ୟାବଳୀ, ପୃ. ୧୬୩)

ପୁଣି ଅନ୍ୟତ୍ର ସେହି ବିରହିଣୀ ନାୟିକାର ମନୋବେଦନାର ଚିତ୍ର ଦେବାକୁ ଯାଇ କବି ତା'ର ମୁଖରେ ପ୍ରକାଶ କରିଛନ୍ତି—

କାହାରେ କହିବି ସହି ମୋ ଅନ୍ତର ଦାହାରେ,
ଯାହାରେ କହିଲେ କେହି ନ ବୋଲିବେ ଆହାରେ ।

ନାହାରେ କି ଦୋଷ କଲି ଚେଳିଲେ ସେ ଯାହାରେ,
ସାହାରେ ପଶିବ କଣ୍ଟେ କ ଧାଇଲେ ତାହାରେ ।
(ବନମାଳୀ ପଦ୍ୟାବଳୀ, ପୃ. ୧୭୦)

ଗୋପାଳକୃଷ୍ଣ ରାଧା ଓ କୃଷ୍ଣଙ୍କର ବର୍ଣ୍ଣୋଜ୍ଜ୍ୱଳ ପ୍ରଣୟ ଛବି ଆଙ୍କିବା ପୂର୍ବରୁ ଗ୍ରାମ୍ୟ କାବ୍ୟ, ଚଉପଦୀ ଓ ଚଉତିଶା ଆଦର୍ଶରେ ସାଧନାର ପ୍ରାଥମିକ ସ୍ତରରେ ଲୌକିକ ପ୍ରଣୟ ଓ ଶୃଙ୍ଗାର ବ୍ୟଞ୍ଜକ ଗୀତ ରଚନା କରିଥିଲେ । ସେଗୁଡ଼ିକ ବନମାଳୀଙ୍କ ରଚନା ପରି 'ଲୌକିକରସ' ଶିରୋନାମାରେ ସ୍ୱ ପଦାବଳୀରେ ସ୍ଥାନ ପାଇଛନ୍ତି । ଅନ୍ୟତ୍ର ତା'ର ବିଚାର କରାଯିବ ।

**କବିସୂର୍ଯ୍ୟ ବଳଦେବ :**

କବିସୂର୍ଯ୍ୟ ବଳଦେବ ରଥଙ୍କର ଗୈ୍ତପଦୀ ଗୁଡ଼ିକ 'ରତ୍ନାକର ଚମ୍ପୂ' ଓ 'ସଙ୍ଗୀତ କଳ୍ପଲତା' ଶିରୋନାମାରେ ତାଙ୍କର ଗ୍ରନ୍ଥାବଳୀରେ ପ୍ରକାଶିତ ହୋଇଛି । 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ଗୀତାଂଶ ଚମ୍ପୂ ନୁହେଁ, ସେଗୁଡ଼ିକୁ ଚଉପଦୀ ବା ଧ୍ରୁବା ପାଞ୍ଚାଳୀ ଶ୍ରେଣୀର (ଘୋଷା ଥାଇ ବହୁପଦ ବିଶିଷ୍ଟ ଗୀତ) ଅନ୍ତର୍ଭୁକ୍ତ କରାଯାଇପାରେ । ଉପେନ୍ଦ୍ର, କୃଷ୍ଣଦାସ ଓ ଧନଞ୍ଜୟଙ୍କ ପରି ସଂସ୍କୃତ ସାହିତ୍ୟ, ସଙ୍ଗୀତ ଶାସ୍ତ୍ର, ରସ ଓ ଛନ୍ଦରେ ଥିଲା କବିଙ୍କର ଅସାଧାରଣ ପ୍ରବେଶ । ସଙ୍ଗୀତ କଳା ପ୍ରବୀଣତା ହେତୁ କବିଙ୍କ ପକ୍ଷରେ ସ୍ୱରର ରସବୋଧ ଅତି ସହଜ ଥିଲା । ଅସାଧାରଣ କବିତ୍ୱ ହେତୁ ଭାବ, ରସ, ପାତ୍ର ଓ ପରିବେଶକୁ ଦୃଷ୍ଟିରେ ରଖି ସ୍ୱର ଓ ଭାଷା ଯୋଜନାରେ କବି ନିଜର ଅପୂର୍ବ କୃତିତ୍ୱର ପରିଚୟ ଦେଇଛନ୍ତି । କାବ୍ୟ ଓ ସଙ୍ଗୀତର ଚମତ୍କାର ସମନ୍ୱୟ ଘଟିଛି ତାଙ୍କର ଚଉପଦୀ ଗୁଡ଼ିକରେ । ଗୈ୍ତପଦୀର ଭାଷା ଅନେକତ୍ର ସାହିତ୍ୟିକ ହେଲେ ମଧ୍ୟ ଗଭୀର ରସ ତଥା ସୌନ୍ଦର୍ଯ୍ୟବୋଧ, ଭାବାନୁରୂପ ସ୍ୱର ବ୍ୟଞ୍ଜନା ଓ ଆନୁପ୍ରାସିକ ମାଧୁର୍ଯ୍ୟ ହେତୁ ସଙ୍ଗୀତ ଗୁଡ଼ିକ ଓଡ଼ିଶାର ବିଭିନ୍ନ ଶ୍ରେଣୀର ଶ୍ରୋତାଙ୍କ ଚିତ୍ତରେ ଅନୁକୂଳ ଆବେଦନ ସୃଷ୍ଟି କରିପାରିଛନ୍ତି । ତାଙ୍କର ଗୈ୍ତପଦୀ ଗୁଡ଼ିକର ଆଲମ୍ବନ ବିଭାବ ରାଧାକୃଷ୍ଣ ହୁଅନ୍ତୁ ବା ଲୌକିକ ନାୟକ ନାୟିକା ହୁଅନ୍ତୁ, ଲୌକିକ ବାସ୍ତବ ପ୍ରେମ, ବିରହ ମିଳନ ଓ ସମ୍ଭୋଗର ବର୍ଣ୍ଣିଳ ଛବି ସର୍ବତ୍ର ପ୍ରାଧାନ୍ୟ ଲାଭ କରିଛି । କବିଙ୍କର ଅତି ଲୋକପ୍ରିୟ ଗୈ୍ତପଦୀରୁ ଗୋଟିଏ ଦୃଷ୍ଟାନ୍ତ ଦିଆଯାଉଛି । ଏଠାରେ କୃଷ୍ଣ ରାଧାଙ୍କର ଅଭିମାନ ଦୂର କରିବା ପାଇଁ ଗୁହାରି କଲେ ମଧ୍ୟ କୃଷ୍ଣଙ୍କ ସ୍ଥାନରେ ଯେ କୌଣସି ଲୌକିକ ନାୟକକୁ ଗ୍ରହଣ କରାଯାଇପାରେ, ଯଥା—

ତୁହିପରି, ମୋ ହୃଦୟ ମଣିମୟ ହାରରେ । ଘୋଷା ।
ସହି ତୁ ମୋହର ସକଳ ସମ୍ପଦ, ମଦନ-ଫଣି-ରଦନ-ବିଷ ଗଦ,
ଅଖିଳ ବିଭବ ଆଖଣ୍ଡଳ ପଦ, ଆରୋହଣ ପରମ୍ପରାରେ ।
ରସିକ ରାଜ ମସ୍ତକ ଅଳଙ୍କାର, ବିଦ୍ରୁମ ନବ ପଲ୍ଲବ ଗର୍ବହର
ତୋ ପୟର ଲକ୍ଷା ରଞ୍ଜକ ଦାସ ମୁଁ ବିରହ ଦୁଃଖ ପାସୋରାରେ ।

× × ×

ନ ମଣ୍ଡିବୁ ସିନା ମୋର ବକ୍ଷସ୍ଥଳ, ହୃଦୟରୁ ଯିବୁ କରି କେଉଁ କଳ,
ମୋ ମନ-ଗଗନ ଚନ୍ଦ୍ର ସମୁଜ୍ଜ୍ୱଳ ଉଦୟ ନିର୍ମଳ ତାପରେ (୨୭) ।

ବଳଦେବ ଗୀତପଦ୍ୟ ଓ ଚମ୍ପୂଗୀତ ସହିତ ମନୋଜ, ମାଳଶ୍ରୀ, ଚଉତିଶା, ପାଞ୍ଚାଳୀ ଓ ଦେଶୀୟ ଛାନ୍ଦୀଗୀତ ମଧ୍ୟ ରଚନା କରିଛନ୍ତି ।

**ଚଉପଦୀର ବିଷୟବସ୍ତୁ :**

ବିରହୀ ନାୟକର ବିଦେଶାନୁଚିନ୍ତା, ଅଭିମାନିନୀ ନାୟିକା ପ୍ରତି ଗୃହଚ୍ଯୁ, ସମ୍ଭୋଗ ସ୍ମୃତି ଚିନ୍ତନ, ନାୟିକାର ଦୈହିକ ସୁଷମା ଓ ପ୍ରୀତିର ପ୍ରଶଂସା, ବିରହିଣୀର ମନୋବ୍ୟଥା ବହୁ ଚଉପଦୀର ଉପଜୀବ୍ୟ ବସ୍ତୁ । ଚଉପଦୀ ଗୁଡ଼ିକରେ ଅଙ୍କିତ ପ୍ରେମ ଦେହଜ ଓ ଇନ୍ଦ୍ରିୟାସକ୍ତି ମୂଳକ ହେଲେ ମଧ୍ୟ ତାହା ସ୍ୱକୀୟା ପ୍ରୀତିର ଭିତ୍ତିରେ ପ୍ରତିଷ୍ଠିତ । କିନ୍ତୁ କେତେକ ଚଉପଦୀରେ ପରକୀୟା ପ୍ରୀତିମୂଳକ ପରକୀୟା ନାୟିକା ଓ ଗଣିକା ଆଦିଙ୍କର ରୂପର ପ୍ରଶଂସା ପରିଦୃଷ୍ଟ ହୁଏ ।

**ବୈଷ୍ଣବ କାବ୍ୟ ଓ ଗୀତରେ ସମନ୍ୱୟାତ୍ମକ ଲୌକିକତାମୁଖୀ ସ୍ୱର :**

ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଲୌକିକ ପ୍ରେମ କାବ୍ୟର ପରମ୍ପରା ବୈଷ୍ଣବ ପ୍ରେମ କାବ୍ୟ ଓ ଗୀତକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ଲୌକିକ ଶୃଙ୍ଗାର କାବ୍ୟ ଓ ସଙ୍ଗୀତ ଗୁଡ଼ିକୁ ପ୍ରଭାବିତ କରିଛି । ଓଡ଼ିଶାରେ ବୈଷ୍ଣବୀୟ ପ୍ରେମକାବ୍ୟ ଓ ଗୀତ ଏବଂ ଲୌକିକ ଶୃଙ୍ଗାରକାବ୍ୟ ଓ ସଙ୍ଗୀତର ଯେପରି ତୁଳ୍ୟମୂଲ୍ୟ ବିକାଶ ଘଟିଛି, କେବଳ ଗୋଟିକୁ ଅନ୍ୟଟିର ପ୍ରଭାବ କହିଲେ ଠିକ୍ ହେବ ନାହିଁ । ଉଭୟ ପ୍ରକାର କାବ୍ୟ ଓ ଗୀତ ଧାରା ପ୍ରାୟ ଗୋଟିଏ ଉତ୍ସ ମୁଖର ଦୁଇଟି ଛନ୍ଦୋମୟ ବର୍ତ୍ତୁଳ ପ୍ରବାହ । ସ୍ଥୂଳ ଦୃଷ୍ଟିରେ ଦେଖିଲେ ଓଡ଼ିଆ ବୈଷ୍ଣବ କାବ୍ୟ ଓ ଗୀତ ପ୍ରାଥମିକ ପର୍ଯ୍ୟାୟରେ ଓଡ଼ିଆ ଲୌକିକ ଶୃଙ୍ଗାରକାବ୍ୟ ଓ ଗୀତର ପ୍ରେରଣା ତଥା ପ୍ରଭାବ ପ୍ରାପ୍ତ ପ୍ରଣୀତ ହୁଏ; କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ବୈଷ୍ଣବ କାବ୍ୟ ଓ ଗୀତ ସମୂହ ଏପରି ଭାବରେ ରଚିତ ହୋଇଛି ଯେ ଲକ୍ଷ୍ୟ କଲେ ମନେ ହେବ : ଏଗୁଡ଼ିକ ବୈଷ୍ଣବୀୟ ଆବରଣ ତଳେ ନିଛକ ଲୌକିକ ପ୍ରେମ ପ୍ରଧାନ ଶୃଙ୍ଗାରକାବ୍ୟ ଓ ଗୀତ ବ୍ୟତୀତ ଅନ୍ୟ କିଛି ନୁହେଁ । ତେବେ ଓଡ଼ିଆ ବୈଷ୍ଣବ କାବ୍ୟ ଓ ଗୀତ ରଚନାର ଏହି ସମନ୍ୱୟାତ୍ମକ ଲୌକିକତାମୁଖୀ ସ୍ୱର ସହିତ ଜୟଦେବଙ୍କର ଗୀତଗୋବିନ୍ଦ, ବୈଷ୍ଣବ ପୁରାଣ, ବୈଷ୍ଣବତନ୍ତ୍ର; ଗୌଡ଼ୀୟ ଗୋସ୍ୱାମୀ (ସନାତନ, ରୂପ, ଜୀବ, ଗୋପାଳ, ରଘୁନାଥ ଓ କୃଷ୍ଣ ଦାସ ପ୍ରଭୃତି) ମାନଙ୍କର ତାତ୍ତ୍ୱିକ ଓ ସାମ୍ପ୍ରଦାୟିକ ରଚନା, କାବ୍ୟ ଓ ନାଟକ ପ୍ରଭୃତି ଯେ ଏ ଗୁଡ଼ିକର ମୂଳ ପ୍ରେରଣା ଓ ଅନ୍ତଃ ସ୍ୱର, ଏଥିରେ ସନ୍ଦେହ ନାହିଁ ।

**ଓଡ଼ିଶାରେ ବୈଷ୍ଣବ କାବ୍ୟ ଓ ଚଉତିଶା :**

ଷୋଡ଼ଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲେ ମଧ୍ୟ ଚୈତନ୍ୟଙ୍କର ଆଗମନ, ଓଡ଼ିଶାରେ ସପାର୍ଷଦ ଅପ୍ରକଟ ଅବଧି ରହଣି ଏବଂ ରାଧାକୃଷ୍ଣଙ୍କର

(୨୭) କବିସୂର୍ଯ୍ୟ ବଳଦେବ ରଥ, ସଙ୍ଗୀତ କଳ୍ପଲତା, କ. ସୂ. ଗ୍ରଂ., ପୃ. ୨୨୩

ଯୁଗଳ ଉପାସନା ଓ ପ୍ରେମଲୀଳା ସମ୍ପର୍କୀୟ ନବବୈଷ୍ଣବ ମତର ତଥା ନାମ ସଂକୀର୍ତ୍ତନର ଲୋକପ୍ରିୟ ପ୍ରଚାର ଓ ରାଜପୃଷ୍ଠପୋଷକତା ଫଳରେ ଓଡ଼ିଶାରେ ବୈଷ୍ଣବ ସାହିତ୍ୟର ବିକାଶର ପଥ ଉନ୍ମୁକ୍ତ ହୋଇଯାଇଥିଲା । କାନ୍ତପଦାବଳୀର କବି ଜୟଦେବଙ୍କର ଗୀତଗୋବିନ୍ଦକୁ ବାଦ ଦେଲେ ଓଡ଼ିଆ ସାହିତ୍ୟରେ ବିଭିନ୍ନ ଶତାବ୍ଦୀରେ ସାମ୍ପ୍ରଦାୟିକ ବୈଷ୍ଣବୀୟ ଆଚାର ଓ ତତ୍ତ୍ୱ ପ୍ରଧାନ ରଚନା ଏବଂ ଅନୁବାଦ ସହିତ ରାଧାକୃଷ୍ଣ ପ୍ରେମଲୀଳା, ଚୈତନ୍ୟ ଲୀଳା ଓ ରାମଚରିତକୁ ଭିତ୍ତିକରି ବହୁ ପ୍ରେମ ଓ ଭକ୍ତି ପ୍ରଧାନ କାବ୍ୟ, ଚଉତିଶା, ଚୌପଦୀ ଆଦି ରଚିତ ହୋଇଛି । ପୁରୁଷୋତ୍ତମ ଦେବଙ୍କର ଅଭିନବ ଗୀତଗୋବିନ୍ଦ, ଅଭିନବ ବେଣୀ ସଂହରଣମ୍; ରାୟ ରାମାନନ୍ଦଙ୍କର ଜଗନ୍ନାଥବଲ୍ଲଭ ନାଟକ (ବା ରାମାନନ୍ଦ ସଙ୍ଗୀତ ନାଟକ); ଜୀବ ଦେବାଚାର୍ଯ୍ୟଙ୍କର ଭକ୍ତିଭାଗବତମହାକାବ୍ୟମ୍, ଭକ୍ତି ବୈଭବ ନାଟକ; କବିଚନ୍ଦ୍ର ଦିବାକର ମିଶ୍ରଙ୍କର ହରିଚରିତ ଚମ୍ପୂ; କବିରାଜ ହରିକୃଷ୍ଣ ପୁରୋହିତଙ୍କର ରାଧାବିଳାସ ମହାକାବ୍ୟ; କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କର ସମୃଦ୍ଧ ମାଧବ ନାଟକମ୍ ଏବଂ ଯତୀନ୍ଦ୍ର ନାରାୟଣ ତୀର୍ଥଙ୍କର ଶ୍ରୀକୃଷ୍ଣଲୀଳା ତରଙ୍ଗିଣୀ ପ୍ରଭୃତି ସଂସ୍କୃତ ରଚନାକୁ ଛାଡ଼ିଦେଲେ ଦିନାଇ ଦାସଙ୍କର ଗୋପୀଭାଷା; ଧରଣୀଧରଙ୍କର ଗୀତଗୋବିନ୍ଦ (ପଦ୍ୟାନୁବାଦ); ବୃନ୍ଦାବନ ଦାସଙ୍କର ରସବାରିଧି; କାର୍ତ୍ତିକ ଦାସଙ୍କର ନବାନୁରାଗ; ଦୀନକୃଷ୍ଣଙ୍କର ରସକଲ୍ଲୋଳ, ଅମୃତ ସାଗର ବୋଲି; ନରସିଂହ ସେନଙ୍କର ଗୋପକେଳି (୧୬ଶ ଶତକ); ବଜରି ଦାସଙ୍କ ଅର୍ଥଗୋବିନ୍ଦ; ଦେବଦୁର୍ଲ୍ଲଭଙ୍କ ରହସ୍ୟମଞ୍ଜରୀ (୧୬ଶ ଶତକ); ଭୂପତି ପଣ୍ଡିତଙ୍କର ପ୍ରେମପଞ୍ଚାମୃତ; ସାତଜଣ କବିଙ୍କ ଦ୍ୱାରା ରଚିତ ମଧୁମଙ୍ଗଳ; ଉପେନ୍ଦ୍ର ଭଞ୍ଜଙ୍କର ଛାନ୍ଦଭୂଷଣ, କଳାକଉତୁକ; ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ଯୁଗଳରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ପ୍ରେମ ତରଙ୍ଗିଣୀ, ପ୍ରେମକଳ୍ପଲତା, ବ୍ରଜଲୀଳାମୃତ ସମୁଦ୍ର (ସଂସ୍କୃତ ବିଦଗ୍ଧ ମାଧବ ନାଟକର ଭାବାନୁବାଦ), ନାମଚିନ୍ତାମଣି, ନିଷ୍ଠାମଳମଣି, ଗୌରଚିନ୍ତାମଣି; ଦାଶରଥି ଦାସ ଓ କୃପାସିନ୍ଧୁ ଦାସଙ୍କର ବ୍ରଜବିହାର; ରଘୁନାଥ ଭଞ୍ଜଙ୍କର ରସଲହରୀ; ବୃନ୍ଦାବତୀ ଦାସୀଙ୍କର ପୂର୍ଣ୍ଣତମ ଚନ୍ଦ୍ରୋଦୟ; କବି ଲକ୍ଷ୍ମଣଙ୍କର ଶ୍ରୀକୃଷ୍ଣଲୀଳାମୃତ, ଭୀମ ଦାସଙ୍କର ଭକ୍ତି ଚନ୍ଦ୍ରୋଦୟ; ପିଣ୍ଡିକ ଶ୍ରୀଚନ୍ଦନଙ୍କର ବସନ୍ତ ରାସ (୧୮ଶ ଶତକ); ବ୍ରଜନାଥ ବଡ଼ଜେନାଙ୍କର ଶ୍ୟାମ ରାସୋତ୍ସବ, ଗୋପୀବିଳାପ; ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି, ପ୍ରେମଚିନ୍ତାମଣି; ଭକ୍ତଚରଣଙ୍କର ମଥୁରାମଙ୍ଗଳ; ଗୋବିନ୍ଦ ଭଞ୍ଜଙ୍କର ଭକ୍ତି ବିନୋଦ, ଚରଣ ସୁଧାନିଧି; ଗୋପୀନାଥ ଧୀର ଜଗଦ୍ଦେବଙ୍କର ସଙ୍ଗୀତ ଗୀତଗୋବିନ୍ଦ; ଶ୍ୟାମସୁନ୍ଦର ଭଞ୍ଜଙ୍କର ବସନ୍ତକ୍ରୀଡ଼ା ସମୁଜ୍ଜ୍ୱଳ ରସାବଳୀ, ଗୌରହରି ପରିଚ୍ଛାଙ୍କ ସଙ୍ଗୀତ ଗୀତଗୋବିନ୍ଦ; କବିସୂର୍ଯ୍ୟ ବଳଦେବଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ; କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବଙ୍କ ବସନ୍ତ ବିହାର; ଶ୍ୟାମସୁନ୍ଦର ଦେବଙ୍କର ଅନୁରାଗ କଳ୍ପଲତା; କବିଚନ୍ଦ୍ର ରଘୁନାଥ ପଟ୍ଟଷାଙ୍କ ରାଧାମାଧବବିଳାସ ଏବଂ ଈଶ୍ୱର ଦାସଙ୍କର ଶ୍ରୀ ଚୈତନ୍ୟ ଭାଗବତ ପ୍ରଭୃତି କୃଷ୍ଣ ଓ ଚୈତନ୍ୟ ଲୀଳା ସମ୍ପର୍କିତ କାବ୍ୟ ଓ ଅନ୍ୟବିଧ ରଚନା । ଏଗୁଡ଼ିକ ମଧ୍ୟରେ ଦୀନକୃଷ୍ଣଙ୍କର ରସକଲ୍ଲୋଳ, ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି ଏବଂ ଭକ୍ତଚରଣଙ୍କର

ମଥୁରା ମଙ୍ଗଳ ଓଡ଼ିଶାରେ ଉଭୟ ବିଦଗ୍ଧ ଓ ସାଧାରଣ ଶ୍ରେଣୀରେ ଅତି ଲୋକପ୍ରିୟ। କାବ୍ୟଗୁଡ଼ିକୁ ବାଦ ଦେଲେ ରାଧାକୃଷ୍ଣ ଲୀଳା ସମ୍ପର୍କରେ ବହୁ ଚଉତିଶା ରଚିତ ହୋଇଛି। ଦାମୋଦର ଦାସଙ୍କର ରସକଲ୍ୟା ଚଉତିଶା; ବଳରାମ ଦାସଙ୍କର ଦୂତୀ ଚଉତିଶା; ଭୂପତି ପଣ୍ଡିତଙ୍କର ଉଦ୍ଧବ ଚଉତିଶା; ଦୀନକୃଷ୍ଣଙ୍କର ରାଧାଦର୍ଶନ ଚଉତିଶା, ବାନ୍ଧବୀ ଚଉତିଶା ଓ ରାଧିକା ସ୍ମରଣ ଚଉତିଶା; କୃଷ୍ଣ ଦାସଙ୍କର ମାନବନ୍ଧୁ ଚଉତିଶା, ସଦାନନ୍ଦ କବି ସୂର୍ଯ୍ୟଙ୍କର ପ୍ରେମ ଚିନ୍ତାମଣି ଚଉତିଶା ଏବଂ ପରମାନନ୍ଦଙ୍କର ନବଘନ ଚଉତିଶା ବିଶେଷ ଲୋକପ୍ରିୟତା ଅର୍ଜନ କରିଛି।

## ରାଧାକୃଷ୍ଣ ପ୍ରେମଲୀଳା ଭିତ୍ତିକ ଚଉପଦୀ ଓ ତା'ର କବି :

ବଙ୍ଗ ଓ ମିଥିଳାର ବଙ୍ଗଳା, ମୈଥିଲୀ ଓ ବ୍ରଜବୁଲି ପଦାବଳୀ ଆଦର୍ଶରେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ କୃଷ୍ଣଲୀଳା, ରାଧାକୃଷ୍ଣ ଓ ରାମ ସୀତାଙ୍କର ପ୍ରେମଲୀଳା ଓ ଭକ୍ତିକୁ କେନ୍ଦ୍ର କରି ବହୁ ଚୈପଦୀ ରଚିତ ହୋଇଛି। ଶ୍ରୀକୃଷ୍ଣ ଜନ୍ମ ଓ ବାଲ୍ୟଲୀଳା ଘଟିତ ପଦ ଏବଂ ଚୈତନ୍ୟ ଲୀଳା ସମ୍ପର୍କୀୟ ପଦାବଳୀ ସଂଖ୍ୟା ଅବଶ୍ୟ କମ୍। ଓଡ଼ିଆରେ ଚୈପଦୀ ଗୁଡ଼ିକ ରଚିତ ହେବାର ବହୁ ପୂର୍ବରୁ ରାୟ ରାମାନନ୍ଦ ଚୈତନ୍ୟଙ୍କ ପୂର୍ବରୁ ରାଧାକୃଷ୍ଣଙ୍କର ପ୍ରେମଲୀଳାତ୍ମକ ପଦ ବ୍ରଜବୁଲିରେ ରଚନା କରିଥିଲେ। ରାଧାଭାବ ବା ମହାଭାବର ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ ରାମାନନ୍ଦ ଚୈତନ୍ୟଙ୍କ ନିକଟରେ ସ୍ୱରଚିତ ବ୍ରଜବୁଲିର ଯେଉଁ ବିଖ୍ୟାତ ପଦଟି ଗାନ କରିଥିଲେ, ତାହା ହେଉଛି —

ପହିଲହି ରାଗ ନୟନ ଭଙ୍ଗ ଭେଲ ।
ଅନୁଦିନ ବାଢ଼ଲ ଅବଧି ନା ଗେଲ ॥
ନା ସୋ ରମଣ, ନା ହାମ ରମଣୀ ।
ଦୁହୁଁ ମନ ମନୋଭବ ପେଶଲ ଜାନି ॥
ଏ ସଖି, ସେ ସବ ପ୍ରେମ କାହିନୀ ।
କାନୁଠାମେ କହବି ବିଛୁରଲ ଜାନି ॥
ନା ଖୋଜଲୁଁ ଦୂତୀ, ନା ଖୋଜଲୁଁ ଆନ ।
ଦୁହୁଁକେରି ମିଲନେ ମଧ୍ୟତ ପାଁଚବାଣ ॥
ଅବ ସୋଇ ବିରାଗ ତୁହୁଁ ଭେଲ ଦୂତୀ ।
ସୁପୁରୁଖ ପ୍ରେମକ ଐଛନ ରୀତି ॥ (୧୮)

କବି ମାଧବୀ ଦାସୀ ନୀଳାଚଳରେ ଚୈତନ୍ୟ ଲୀଳା ସମ୍ପର୍କୀୟ କେତୋଟି ପଦ ବ୍ରଜବୁଲିରେ ରଚନା କରିଥିଲେ (୧୯)।

---

(୧୮) କୃ. ଦା. କ., ଚୈତନ୍ୟଚରିତାମୃତ।

(୧୯) ଶ୍ରୀ ଗଙ୍ଗାଧର ବଳ, ସାହିତ୍ୟ ଜିଜ୍ଞାସା, ବ୍ରଜବୁଲି ସାହିତ୍ୟ ପୃ. ୭୬-୮୦

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ରାଧାକୃଷ୍ଣ ପ୍ରୀତିଲୀଳା ଓ ଚୈତନ୍ୟଲୀଳା ସମ୍ପର୍କୀୟ ଗୀତିପଦୀର ସଂଖ୍ୟା ଅଗଣିତ । ରାଧାକୃଷ୍ଣଙ୍କର ପୂର୍ବରାଗ, ମାନ, ପ୍ରେମବୈଚିତ୍ର୍ୟ ଓ ପ୍ରବାସ—ବିପ୍ରଲମ୍ଭ ଶୃଙ୍ଗାରର ଏହି ସ୍ତରଗୁଡ଼ିକ ବିଭାବକୁ ନେଇ ରାଧା, କୃଷ୍ଣ ଓ ସଖୀଙ୍କର (ଦୂତୀ) ଉକ୍ତି ପ୍ରତ୍ୟୁକ୍ତି ଛଳରେ ନାଟକୀୟ ଭଙ୍ଗୀରେ ଗୀତିପଦୀ ଗୁଡ଼ିକ ରଚିତ ହୋଇଛି । ପ୍ରେମର ସାର୍ଥକ ଅଭିବ୍ୟକ୍ତି ପାଇଁ ବିରହ ବା ବିପ୍ରଲମ୍ଭ ଉପରେ ଅଧିକ ଗୁରୁତ୍ୱ ଦିଆଯିବା ଫଳରେ ମିଳନ ଘଟିତ ଗୀତର ସଂଖ୍ୟା ଅପେକ୍ଷାକୃତ କମ୍ । ରାଧାଙ୍କର ମାନସିକ ଅବସ୍ଥାନୁଯାୟୀ ଅଭିସାରିକା, ଖଣ୍ଡିତାଦି ଅଷ୍ଟବିଧ ନାୟିକାରୂପ, ରାଧା ଓ କୃଷ୍ଣଙ୍କ ନିକଟରେ ଦୂତୀ ଦ୍ୱାରା ପାରସ୍ପରିକ ବିରହ ଦଶା କଥନ, ବିଭିନ୍ନ ଋତୁରେ ରାଧାକୃଷ୍ଣଙ୍କର ବିରହ ଜନିତ ଖେଦୋକ୍ତି, ରାଧାଙ୍କର ମାନ, ଶ୍ରୀକୃଷ୍ଣଙ୍କର ଗୃହକୁ ଏବଂ ମଥୁରା ଯାତ୍ରାକାଳୀନ ଗୋପୀମାନଙ୍କର ଖେଦୋକ୍ତିର ଚିତ୍ର ବହୁ ଚଉପଦୀରେ ପରିଦୃଷ୍ଟ ହୁଏ । ଏତଦ୍‌ବ୍ୟତୀତ ସଖୀମାନଙ୍କର କୁଞ୍ଜସେବା, ପୁଷ୍ପ ଚୟନ, ଶ୍ରୀକୃଷ୍ଣଙ୍କର ହୋରି, ଝୁଲଣ ଓ ରାସ ପ୍ରଭୃତି ଲୀଳା; ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା; ଯଶୋଦାଙ୍କ ବାତ୍ସଲ୍ୟ ଏବଂ ବୃନ୍ଦାବନ ଓ ଯମୁନାର ଶୋଭା ଘଟିତ ବହୁ ଚଉପଦୀ ରଚିତ ହୋଇଛି । ଗୋପାଳକୃଷ୍ଣଙ୍କ ପୂର୍ବରୁ ଏହି ଚଉପଦୀର କବିମାନଙ୍କ ମଧ୍ୟରେ ବନମାଳୀ ଦାସ, ଦାଶରଥି ଦାସ ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ନାମ ଉଲ୍ଲେଖଯୋଗ୍ୟ । କୃଷ୍ଣ ଓ ରାଧାଗତପ୍ରାଣ ସଖୀଭାବ ଲୋଲୁପ ବନମାଳୀଙ୍କର ଚଉପଦୀ ଗୁଡ଼ିକରେ ରାଧାଙ୍କର ହୃଦୟାବେଗ, ଶ୍ରୀକୃଷ୍ଣରୂପ ପ୍ରଶଂସା, ରୂପାନୁରାଗ, ପ୍ରେମିକା ହୃଦୟର ବ୍ୟାକୁଳ ପ୍ରାର୍ଥନା ଏବଂ ବ୍ୟଥାସିକ୍ତ ଅନୁଭୂତିର ପ୍ରକାଶ କିପରି ନୈସର୍ଗିକ, ସହୃଦୟ ପାଠକ ଲକ୍ଷ୍ୟ କରି ପାରିବେ । ସଖୀ ପ୍ରତି ରାଧା ନିଜର ନବାନୁରାଗର ସଙ୍କେତ ଦେବାକୁ ଯାଇ କହୁଛନ୍ତି—

ମୁଁ ତ କୁଳରୁ ହେଲି ବାହାର ଲୋ ସଜନି !
ଶ୍ୟାମ ପ୍ରୀତି କରି ଗଲା ହାରି ଲୋ !
ଯେ ଯେତେ କହନ୍ତୁ ନିନ୍ଦା କୁ ବଚନ
ତହିଁକି ଶୋଚନା ନାହିଁ କଦାଚନ,
ଗଣ୍ଠି ଧନ ମୋର କାଳିଆ କାଞ୍ଚନ
ମୁଁ ତ କଣା କଙ୍କରି ତାହାର ଲୋ !
କେ ବୋଲନ୍ତୁ ରାଧା ହେଲା କଳଙ୍କିନୀ,
କେ ବୋଲନ୍ତୁ ରାଧା ହେଲା ପାଗଳିନୀ,
କେ ବୋଲନ୍ତୁ ରାଧା ପ୍ରେମମୟୀ ଧନି,
ଏ ନିନ୍ଦା ପ୍ରଶଂସା କାହାର ଲୋ !

(ବନମାଳୀ ପଦ୍ୟାବଳୀ, ପୃ. ୭୦)

ଭକ୍ତି ଓ ପ୍ରେମସିକ୍ତ ବୈଷ୍ଣବ ପ୍ରାଣର ସ୍ୱଚ୍ଛନ୍ଦ ପ୍ରକାଶ ଏବଂ ସରଳ ସହଜ ଲୋକ ଭାଷାରେ ରାଧା ଓ ସଖୀଙ୍କର ଭାବର ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ହେତୁ ବନମାଳୀଙ୍କର ବହୁ ଗୀତ ଓଡ଼ିଶାର

ପୂରପଲ୍ଲୀରେ ବିଶେଷ ଆଦର ଲାଭ କରି ପରବର୍ତ୍ତୀ ବହୁ ଗୀତିକାରଙ୍କର ଆବିର୍ଭାବର କାରଣ ହୋଇଛି ।

ଭାଷା ଅପେକ୍ଷାକୃତ ସାହିତ୍ୟିକ ହେଲେ ମଧ୍ୟ ଚମ୍ପୂଗୀତ ସହିତ କବିସୂର୍ଯ୍ୟ ବଳଦେବଙ୍କର 'ଛାନ୍ଦପଦୀ ରତ୍ନାକର'ରେ ସନ୍ନିବିଷ୍ଟ ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କିତ ଛାନ୍ଦପଦୀ ଗୁଡ଼ିକ ଓଡ଼ିଶାରେ ସଙ୍ଗୀତ ସୃଷ୍ଟିର ଉଚ୍ଚାଙ୍ଗ ମାନ ଓ ବଳିଷ୍ଠ ପରମ୍ପରା ସୃଷ୍ଟି କରିଛି । ତାଙ୍କର ପ୍ରତିଭା ଓ ପ୍ରକାଶଭଙ୍ଗୀ ପାଣ୍ଡିତ୍ୟରେ ଆଚ୍ଛାଦିତ ହୋଇଯାଇ ନାହିଁ । ବିଦଗ୍ଧ ଓ ଲୋକସାଧାରଣଙ୍କ ମଧ୍ୟରେ ତାଙ୍କର ଛାନ୍ଦପଦୀର ପରିବେଷଣ ସେଗୁଡ଼ିକର ଲୋକପ୍ରିୟତାର ସ୍ୱାକ୍ଷର ବହନ କରେ । ଅନୁଭୂତିର ଗଭୀରତା, ଭାବ ଓ ରସାନୁରୂପ ଅନୁପ୍ରାସ, ମଞ୍ଜୁଳ ଶବ୍ଦସଂଯୋଜନା ଏବଂ ରାଗ ଓ ତାଳର ନିର୍ଦ୍ଦେଶରେ ତାଙ୍କର ଛାନ୍ଦପଦୀ କପରି ସମସ୍ତଙ୍କ ପକ୍ଷରେ ଚିତ୍ତାକର୍ଷକ ହୋଇଛି ନିମ୍ନୋକ୍ତ ଉଦ୍ଧୃତି ତା'ର ଏକ ପ୍ରମାଣ । ଲଳିତା ପ୍ରତି ଉକ୍ତି ମାଧ୍ୟମରେ ରାଧା ନାଗରମଣି କୃଷ୍ଣଙ୍କ ପ୍ରତି ନିଜର ଅନୁରାଗର ସ୍ୱତଃସ୍ଫୂର୍ତ୍ତ ପରିଚୟ ଦେଇ କହୁଛନ୍ତି—

ଅନାଇ ନାହିଁ, ନାଗରମଣିକି ମୁଁ ତାଳେ ॥ ପଦ ॥
ଅନେକ ପ୍ରକାରେ ପ୍ରେମ ଆଚରେ ଅତସୀ ଶ୍ୟାମ,
ଅଙ୍ଗୀକାର କରିନାହିଁ କାଳେ ।
ଅହିତ ଜନ ନ ସହେ, ଅପବାଦ କଥା କହେ,
ଅଛି ଏହା ଲେଖା ମୋ କପାଳେ ।
ଅମୃତ ବାଣୀ ବୋଲାଏ ଅନଙ୍ଗ ମୋହନ ବେଶେ
ଉପବନ ଅୟନ ଓଗାଳେ ।

× × ×

ଅତର୍କିତ ଜାଣି କାଳ ଅର୍ପିତ କରେ ମୋ ଗଳ,
ଆପଣେ ଗୁନ୍ଥିବା ଫୁଲମାଳେ ।
(ରତ୍ନାକର ଚମ୍ପୂ, କବିସୂର୍ଯ୍ୟ ଗ୍ରନ୍ଥାବଳୀ ପୃଷ୍ଠା-୨୦୨)

ଅଭିମାନିନୀ ରାଧାଙ୍କର ମାନଭଙ୍ଗ କରିବାକୁ ଯାଇ କୃଷ୍ଣଙ୍କ ମୁଖରେ କବି ଯେଉଁ ଉକ୍ତି ପ୍ରକାଶ କରିଛନ୍ତି, ତା'ର ଭାଷା କପରି ବିଦଗ୍ଧ-ଜନୋଚିତ ହୋଇଛି; ପୁଣି ଅନୁପ୍ରାସ ଓ ପଦର ଯୋଗରେ ତା'ର ସାଙ୍ଗୀତିକ ମାଧୁର୍ଯ୍ୟ କପରି ବଢି ଉଠିଛି; ଲକ୍ଷ୍ୟ କରାଯାଉ—
ଆଜ ଏ କି ଗୁମାନରେ ( ଚନ୍ଦ୍ରାନନା ! )
ଦେଖିନାହିଁ ସ୍ୱପନରେ ॥ ପଦ ॥
ସୁନ୍ଦର ରଜବାସ, ମନ୍ଦାର ଦଳେ ହାସ, କୁନ୍ଦକୁ ପରକାଶ,
କୁନ୍ଦନାଙ୍ଗି ମୋ ଧନ, (ପଢ଼ି) ତୁ ବିନା ମୋର ପ୍ରାଣ,

ରମଣୀ ଗଣ ଘେରି, ଘେରି ଅଛନ୍ତି ମାଣି-ବକ ମୃଗାକ୍ଷୀ ଜାଣି,
ଦାରୁଣ ସ୍ମର ଘେନି, ଶାଣିଦଆ ତୀକ୍ଷ୍ଣ-ବାଣଗଣରେ କଟେଁ
ନେଉଛି ଏ ପରାଣି । ୧ ।

(ସଙ୍ଗୀତ କଳ୍ପଲତା, କବିସୂର୍ଯ୍ୟ ଗ୍ରନ୍ଥାବଳୀ ପୃଷ୍ଠା-୨୩୫)

କବିସୂର୍ଯ୍ୟ ବଳଦେବଙ୍କୁ ବାଦ ଦେଲେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଓ ଊନବିଂଶ ଶତାବ୍ଦୀରେ ଗୋପାଳକୃଷ୍ଣଙ୍କ ସହିତ ବହୁ ଚୌପଦୀକାରଙ୍କର ଆବିର୍ଭାବ ଘଟିଛି । ସେମାନଙ୍କ ମଧ୍ୟରୁ ଗୌରହରି, ଗୌର ଚରଣ, ହରିବନ୍ଧୁ, ଯଦୁମଣି ଓ ରାମକୃଷ୍ଣ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ରାମାୟଣର ରାମସୀତାଙ୍କର କରୁଣ କାହାଣୀ ଓ ସେମାନଙ୍କର ନିବିଡ଼ ପ୍ରେମକୁ ସମ୍ବଳ କରି ବହୁ ସଙ୍ଗୀତ ରଚିତ ହୋଇଛି । ଏ ସଙ୍ଗୀତକାରଙ୍କ ମଧ୍ୟରେ ବିଚିତ୍ର ରାମାୟଣକର୍ତ୍ତା ବିଶ୍ୱନାଥ ଖୁଣ୍ଟିଆ, କେଶବ ପଟ୍ଟନାୟକ, ପୀତାମ୍ବର ରାଜେନ୍ଦ୍ର, କଳ୍ପତରୁ ଦାସ ଓ ବିକ୍ରମ ନରେନ୍ଦ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ଗୋପାଳକୃଷ୍ଣଙ୍କ ରଚନାରେ ଓଡ଼ିଆ ରୀତିକାବ୍ୟ, ଚଉତିଶା, ଚୌପଦୀ, ଭଜନ ଓ ଜଣାଣ ପ୍ରଭୃତିର ପ୍ରେରଣା ଓ ପ୍ରଭାବ କିପରି ରହିଛି ପ୍ରୟୋଜନ ସ୍ଥଳରେ ତାହା ଆଲୋଚନା କରାଯାଇଛି ।

ମୈଥିଲୀ, ବ୍ରଜବୁଲି ଓ ବଙ୍ଗଳାର ଭକ୍ତି ଓ ପ୍ରେମପ୍ରଧାନ ବୈଷ୍ଣବ ପଦାବଳୀ ଏବଂ ଗୌଡ଼ୀୟ ଗୋସ୍ୱାମୀଙ୍କର ସଂସ୍କୃତ ରଚନା ସହିତ ଓଡ଼ିଶାର ବୈଷ୍ଣବ କାବ୍ୟ ଓ ଗୀତର ଯେପରି ପ୍ରତ୍ୟକ୍ଷ ସମ୍ପର୍କ ରହିଛି, ଭାରତର ଅନ୍ୟ ପ୍ରଦେଶର ବୈଷ୍ଣବ ଗୀତ ସାହିତ୍ୟ ସହିତ ସମ୍ପର୍କ ସେପରି ପ୍ରତ୍ୟକ୍ଷ ନ ହେଲେ ମଧ୍ୟ ତୁଳନାତ୍ମକ ଅଧ୍ୟୟନ ଦୃଷ୍ଟିରୁ ତା'ର ସୂଚନାର ଯେ ଆବଶ୍ୟକତା ରହିଛି ଏହା ପାଠକ ଓ ସମୀକ୍ଷକ ମାନେହିଁ ସ୍ୱୀକାର କରିବେ ।

ଗୋପାଳକୃଷ୍ଣଙ୍କ ପଦାବଳୀ ସୃଷ୍ଟି ପଛରେ ଭାରତୀୟ ଓ ଉତ୍କଳୀୟ ସଙ୍ଗୀତ ଶାସ୍ତ୍ର ତଥା ରଚନା, ଭକ୍ତି ଓ ପ୍ରେମ ପ୍ରଧାନ ଲୌକିକ ତଥା ବୈଷ୍ଣବୀୟ ପ୍ରେମକାବ୍ୟ (ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶର) ଏବଂ ଦେଶୀୟ ପ୍ରେମକାବ୍ୟର (ଗୀତର) ଯେଉଁ ବଳିଷ୍ଠ ପରମ୍ପରା ରହିଛି ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ ତା'ର ସୂଚନା ଦିଆଗଲା । ପରବର୍ତ୍ତୀ ପରିଚ୍ଛେଦ ଗୁଡ଼ିକରେ ଏହି ବଳିଷ୍ଠ ପରମ୍ପରାର ଭିତ୍ତିରେ କବିଙ୍କ ସୃଷ୍ଟିର ମୂଲ୍ୟାୟନ ଓ ତୁଳନାତ୍ମକ ଅଧ୍ୟୟନ କରାଯାଇଛି ।

●

# ଚତୁର୍ଥ ପରିଚ୍ଛେଦ

## ଗୋପାଳକୃଷ୍ଣଙ୍କ ଗୀତ ସମ୍ଭାର

ଗୋପାଳକୃଷ୍ଣ ପଦ୍ୟାବଳୀ, ପଦାବଳୀ ଓ ଗ୍ରନ୍ଥାବଳୀ ଶିରୋନାମାରେ ବିଭିନ୍ନ ସମୟରେ ବିଭିନ୍ନ ସଂକଳକ ଓ ପ୍ରକାଶକଙ୍କ ଦ୍ୱାରା କବିଙ୍କର ଯେତୋଟି ସଙ୍ଗୀତ ସଂଗ୍ରହ ପ୍ରକାଶ ପାଇଛି, ସେ ଗୁଡ଼ିକ ଯଥାଯଥ ଭାବରେ ସମ୍ପାଦନାର ମର୍ଯ୍ୟାଦା ନେଇ ବିଶୁଦ୍ଧ ରୂପେ ପ୍ରକାଶ ପାଇନାହାନ୍ତି । ତେବେ କବି ହରବନ୍ଧୁ ଦେବର୍ତ୍ତୀ ଓ ଅଗଣିତ ଗାୟକଙ୍କ ତୁଣ୍ଡରୁ ଯେ ଏହି ପ୍ରତିଭାଧର କବିଙ୍କର ଅମର ରଚନାବଳୀ ଯଥେଷ୍ଟ ପରିମାଣରେ ଉଦ୍ଧାର କରାଯାଇ ପୁସ୍ତକାକାରରେ ପ୍ରକାଶିତ ହୋଇପାରିଛି, ଏହାହିଁ ଓଡ଼ିଶାର କବି, ସଙ୍ଗୀତଜ୍ଞ, ପାଠକ ଓ ଗବେଷକଙ୍କ ପକ୍ଷେ ବହୁ ଭାଗ୍ୟର ବିଷୟ । ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀର ସଂଗ୍ରାହକ ବ୍ରଜବାସୀ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ମତରେ କବିଙ୍କର ଅନେକ ସଙ୍ଗୀତ ଏ ଅବଧି ସଂଗ୍ରହ କରାଯାଇନାହିଁ । ଏତଦ୍ ବ୍ୟତୀତ ତାଙ୍କର କେତୋଟି ରଚନା ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି ।

କଳା ଓ ସଙ୍ଗୀତ ପ୍ରାଣ ଉତ୍କଳରେ କେବଳ ତାଳ, ଲୟ, ସ୍ୱର ଓ ରାଗରାଗିଣୀ ହେତୁ କବିଙ୍କର ରଚନା ଯେ ବିଭିନ୍ନ ପ୍ରକାର ସଙ୍ଗୀତ ଆସର, ନୃତ୍ୟାନୁଷ୍ଠାନ ଓ ସାଧାରଣରେ ଚିରନ୍ତନ ମୁଦ୍ରା ଅଙ୍କନ କରିଛି, ତା' ନୁହେଁ, ବୈଷ୍ଣବ ପ୍ରାଣରେ ପ୍ରେମସ୍ନିଗ୍ଧତା, ଭାବତନ୍ମୟତା ଓ ନିବିଡ଼ ମାନବିକ ଅନୁଭୂତି ଯେପରି ସରଳ ସାବଲୀଳ ଭାଷା ଓ ରଚନାର ସ୍ୱତଃସ୍ଫୂର୍ତ୍ତି ପ୍ରବାହରେ ଅପୂର୍ବ ବାଙ୍ମୟ ମୂର୍ତ୍ତି ଲାଭ କରିଛି, ତାହାହିଁ ତାଙ୍କର ରଚନାକୁ ଅଗଣିତ ସହୃଦୟଙ୍କର ନିକଟବର୍ତ୍ତୀ କରିପାରିଛି । ସଙ୍ଗୀତ ଗୁଡ଼ିକର ଲୋକପ୍ରିୟତାହିଁ ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କର ପ୍ରାଣସ୍ପର୍ଶୀ ରଚନା ପରି ବିଭିନ୍ନ ସମୟରେ ବିଭିନ୍ନ ସଂଗ୍ରାହକଙ୍କୁ ସଂଗ୍ରହ ତଥା ସଂକଳନର ପ୍ରେରଣା ଦେଇଛି ।

### (କ) ଗୋପାଳକୃଷ୍ଣଙ୍କ ରଚନାବଳୀର ପ୍ରକାଶ, ବିଭିନ୍ନ ସଂସ୍କରଣ ଓ ସଙ୍ଗୀତ ସଂଖ୍ୟା :

ସ୍ୱତନ୍ତ୍ର ଭାବରେ 'ଗୋପାଳକୃଷ୍ଣ ସଙ୍ଗୀତ' ଓ 'ଗୋପାଳକୃଷ୍ଣ ପଦ୍ୟାବଳୀ' ଶିରୋନାମାରେ କବିଙ୍କର ରଚନା ପ୍ରକାଶିତ ହେବା ପୂର୍ବରୁ ଊନବିଂଶ ଶତାବ୍ଦୀର ଶେଷଭାଗରେ ସ୍ୱର୍ଗତ

ଦାମୋଦର ପଟ୍ଟନାୟକ ତାଙ୍କର 'ସଙ୍ଗୀତ ସାଗର' (ସପ୍ତଖଣ୍ଡ ବିଶିଷ୍ଟ) ନାମକ ସଂଗ୍ରହ ଗ୍ରନ୍ଥରେ କବିଙ୍କର ପ୍ରକାଶିତ ପରବର୍ତ୍ତୀ ପଦ୍ୟାବଳୀର ଅଧିକାଂଶ ସଙ୍ଗୀତ ପ୍ରକାଶ କରିଥିଲେ । ଏଥିରେ ପ୍ରକାଶିତ ହୋଇଥିବା ଗୋପାଳକୃଷ୍ଣଙ୍କ କେତେକ ସଙ୍ଗୀତ ତତ୍କାଳୀନ ପ୍ରଶଂସାଲୁବ୍ଧ ସଙ୍ଗୀତ ବ୍ୟବସାୟୀ ଗାୟକମାନେ ନିଜ ନିଜ ନାମରେ ଭଣିତା କରି ପ୍ରଚାର କରୁଥିବାର ଅପଚେଷ୍ଟା ଦେଖାଯାଇଥିଲେ ମଧ୍ୟ (୧) ଦାମୋଦର ପଟ୍ଟନାୟକଙ୍କ ପ୍ରାଥମିକ ପ୍ରଚେଷ୍ଟା ଯେ ପ୍ରଶଂସାର୍ହ ଏଥିରେ ସନ୍ଦେହ ନାହିଁ । କବିଙ୍କର କ୍ଷୁଦ୍ର 'ଧୋଳଗୀତ' ଖ୍ରୀ: ୧୮୯୮ରେ ପାରଳା ଗଜପତି ପ୍ରେସରେ ମୁଦ୍ରିତ ହୋଇଥିଲା । ଖ୍ରୀ: ୧୯୦୩ରେ ପାରଳା ମହାରାଜାଙ୍କର ପିତୃବ୍ୟ ରାଜକବି ପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା କବିଙ୍କର କେତୋଟି ସଙ୍ଗୀତ 'ଗୋପାଳକୃଷ୍ଣ ପଦ୍ୟାବଳୀ' ଶିରୋନାମାରେ ଗଜପତି ପ୍ରେସରେ ପ୍ରକାଶିତ ହୋଇଥିଲା । ଏ ସଂକଳନର ପୃଷ୍ଠା ସଂଖ୍ୟା ଥିଲା ୫୦ । ଏଥିରେ କବିଙ୍କର କ୍ଷୁଦ୍ର ଜୀବନୀ ସନ୍ନିବେଶ କରାଯାଇଥିଲା । ତା' ପରେ କଟକ ପ୍ରିଣ୍ଟିଂ କମ୍ପାନୀ ମୁଦ୍ରଣାଳୟରୁ 'ଗୋପାଳକୃଷ୍ଣ ସଙ୍ଗୀତ' ନାମରେ ଖଣ୍ଡିଏ ସଂଗ୍ରହ ପୁସ୍ତକ ଖ୍ରୀ: ୧୯୧୩ରେ ପ୍ରକାଶିତ ହୋଇଥିଲା । ଏହା ସହିତ ପାରଳା ନିବାସୀ ଶ୍ୟାମସୁନ୍ଦର ରାଜଗୁରୁ ଓ କବିଚନ୍ଦ୍ର ରଘୁନାଥ ପଣ୍ଡାଙ୍କ ଦ୍ୱାରା ପ୍ରଦତ୍ତ କବିଙ୍କର 'ଜାଇଫୁଲ ଚଉତିଶା' ଓ 'ଜଳଦ ଚଉତିଶା' ପ୍ରଭୃତି ଶ୍ରୀଧର ରାଓଙ୍କ ଦ୍ୱାରା ଦ୍ୱିତୀୟ ବାର ପ୍ରକାଶ ପାଇଥିଲା ।

**ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ :** କବିଙ୍କର ବଂଶଧର ଶ୍ରୀ ରାମକୃଷ୍ଣ ପଟ୍ଟନାୟକ (ଗୋପାଳକୃଷ୍ଣଙ୍କ ଅନୌତ୍ର) 'ଗୋପାଳକୃଷ୍ଣ ଗ୍ରନ୍ଥାବଳୀ' ଶିରୋନାମାରେ କବିଙ୍କର ବିଭିନ୍ନ ଶ୍ରେଣୀର ଗୁଡ଼ିଏ ସଙ୍ଗୀତ ପାରଳା ଗଜପତି ପ୍ରେସରୁ ଖ୍ରୀ: ୧୯୧୯ରେ (ତା ୨୩ । ୯ । ୧୯୧୯) ନିଜ ସମ୍ପାଦନାରେ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦ୍ୱାରା ପ୍ରଥମ ବାର ପ୍ରକାଶ କରାଇଲେ । ସଙ୍ଗୀତ ଗୁଡ଼ିକର ସଂଗ୍ରହ ଓ ପ୍ରକାଶ ଦିଗରେ ମହାରାଜାଙ୍କର ପିତୃବ୍ୟ ରାଜକବି ପଦ୍ମନାଭ ନାରାୟଣ ଦେବଙ୍କର ଆଗ୍ରହ ଅବିସ୍ମରଣୀୟ । ଏହି ସଂକଳନରେ ଅକ୍ଷର କ୍ରମରେ ଗୀତ ଗୁଡ଼ିକର ସୂଚୀପତ୍ର ନାହିଁ ସେ ଗୁଡ଼ିକର ରାଗ ଓ ତାଳର ଉଲ୍ଲେଖ କରାଯାଇ ନଥିଲା । କବିଙ୍କ ସାତପୃଷ୍ଠାର ଏକ ସଂକ୍ଷିପ୍ତ ଜୀବନୀ ଓ ପାଞ୍ଚ ପୃଷ୍ଠାର ଏକ ଭୂମିକା ଏଥିରେ ସନ୍ନିବିଷ୍ଟ ହୋଇଥିଲା । ଏକ ରାଗ (ପ୍ରଭାତ)ରେ ଗାନ ହେବା ଗୀତ ସମୂହକୁ ଏକ ଏକ ଅକ୍ଷର ସଂକେତରେ ଚିହ୍ନିତ କରାଯାଇଛି ଏବଂ କେତୋଟି ଅସଂପୂର୍ଣ୍ଣ ଗୀତ ମଧ୍ୟ ମୁଦ୍ରିତ ହୋଇଛି । ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଏ ଖ୍ରୀ: ୧୯୨୪ରେ (ତା ୯ । ୫ । ୧୯୨୪) 'ଗୋପାଳକୃଷ୍ଣ ପଦ୍ୟାବଳୀ' ଶିରୋନାମାରେ । ଏଥିରେ ଅକ୍ଷର

---

(୧) (କ) ମୋ ରାଣ ପରାଣ ଧନ ବାରେ················· ପଦନ ନାମରେ ଭଣିତ ।
(ଖ) ବଂଶୀ ବାଜୁଛି କାହାର କାନନରେ·········ଅଜସ୍ରଚନ୍ଦ୍ର ନାମରେ ଭଣିତ ।
(ଗ) କୁଞ୍ଜବନରେ କାଳିଆ ଦେବତା ବୁଲୁଛି·········ମଦନଚନ୍ଦ୍ର ନାମରେ ଭଣିତ ।
(ଘ) ସଖିରେ ଦୟାବନ୍ଧ ଅଙ୍ଗେ··················ମାଳମଣି ନାମରେ ଭଣିତ ।

କ୍ରମରେ ଗୀତ ଗୁଡ଼ିକର ସୂଚୀପତ୍ର ସହିତ ସେ ଗୁଡ଼ିକର ଶିରୋନାମା ଏବଂ ରାଗ ଓ ତାଳର ସମାବେଶ କରାଯାଇଛି । ରାମକୃଷ୍ଣଙ୍କ ସମ୍ପାଦନାରେ ଏଥର ତୃତୀୟ ସଂସ୍କରଣ ପ୍ରକାଶ ପାଏ ଖ୍ରୀ: ୧୯୩୫ରେ ପାରଳାଖେମୁଣ୍ଡିର ଗଜପତି ପ୍ରେସରେ । ଏଥର ମୁଦ୍ରାକର ହେଉଛନ୍ତି ବିନାୟକ ତ୍ରିପାଠୀ ଏବଂ ପ୍ରକାଶକ ହେଉଛନ୍ତି ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜା । ଏଥିରେ ପୂର୍ବର ମୁଖବନ୍ଧ ଓ କବି ଜୀବନୀ ସହ କଠିନ ଶବ୍ଦମାନଙ୍କର ଅର୍ଥ ଦିଆଯିବା ସଙ୍ଗେ ସଙ୍ଗେ ଏକ ଶୁଦ୍ଧିପତ୍ର ଯୋଗ କରାଯାଇଛି ଏବଂ ଗୃହରେ ସୁରକ୍ଷିତ କବିଙ୍କ କାଷ୍ଠମୂର୍ତ୍ତିର ଏକ ଆଲୋକ ଚିତ୍ର ସନ୍ନିବିଷ୍ଟ କରାଯାଇଛି । ଏଥିରେ ପୂର୍ବ ସଂସ୍କରଣର (ଖ୍ରୀ: ୧୯୧୯) ଭୂମିକା ଓ ଜୀବନୀ ସହିତ ଗ୍ରନ୍ଥକାରଙ୍କ ଏକ ମୁଖବନ୍ଧ ପ୍ରକାଶ ପାଇଛି । ଏଥର ପୃଷ୍ଠା ସଂଖ୍ୟା ହେଉଛି ୨୨୮ ଏବଂ ସାଇଜ ଡିମାଇ ।

ମୁଖବନ୍ଧରେ ସମ୍ପାଦକ ଗୋପାଳକୃଷ୍ଣଙ୍କ ସଙ୍ଗୀତ ଗୁଡ଼ିକର ଗାନ ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଛନ୍ତି ଯେ କାଳ ଓ ଭାବାନୁଯାୟୀ କବିତାରେ ରାଗ ଓ ତାଳ ଦିଆଯାଇଥାଏ । କବିଙ୍କର ଅଭିପ୍ରେତ ରାଗ ଓ ତାଳାନୁସାରେ ଗୀତମାନ ଗାନ କରାଗଲେ ଗୀତାନ୍ତର୍ଗତ ଭାବୋଚ୍ଛ୍ୱାସ ଶ୍ରୋତାଙ୍କ ଶ୍ରୋତୃବୃନ୍ଦଙ୍କ ହୃଦୟରେ ପୂର୍ଣ୍ଣମାତ୍ରାରେ ସଞ୍ଚାରିତ ହୁଏ । ଏଣୁ ପ୍ରାଚୀନ ଧରଣର ଗୀତ ଗାନ କରାଯାଇ ରାଗ ଓ ତାଳ ନିରୂପିତ ହୋଇଅଛି (୨) । ଓଡ଼ିଶୀ ସଙ୍ଗୀତର ମୌଳିକତା ସମ୍ପର୍କରେ ସଚେତ ଓ ସ୍ଥିର ନିଶ୍ଚିତ ସମ୍ପାଦକ ଓଡ଼ିଶୀ ଗାନରେ ଗାୟକମାନଙ୍କର ସ୍ୱାଭିରୁଚି ଜନିତ ଗାନ ବିଭ୍ରାଟ (ରାଗ ତାଳ ପ୍ରତି ଧ୍ୟାନ ନ ଦେଇ) ଓ ପ୍ରତିବେଶୀ ପ୍ରଦେଶର ଲୋକମାନଙ୍କର 'ଓଡ଼ିଶାରେ ମୌଳିକ ସଙ୍ଗୀତ ନାହିଁ' ଏହି ଆକ୍ଷେପୋକ୍ତିରେ ଦୁଃଖିତ ହୋଇ ନିଜ ଜାତିର ସଙ୍ଗୀତର ମୌଳିକତା ସମ୍ପର୍କରେ ଉଚ୍ଛ୍ୱାସ ପୂର୍ଣ୍ଣ ଚେତାବନୀ ଶୁଣାଇବା ସଙ୍ଗେ ସଙ୍ଗେ ଗୋପାଳକୃଷ୍ଣ ପଦ୍ୟାବଳୀର ରାଗ ତାଳ ପ୍ରତି ସମ୍ୟକ୍ ଧ୍ୟାନ ଦେଇ ଜାତୀୟ ସଙ୍ଗୀତର ଉତ୍କର୍ଷ ସାଧନ କରିବାକୁ ଗାୟକ ମାନଙ୍କୁ ନିବେଦନ କରିଛନ୍ତି (୩) ।

ରାମକୃଷ୍ଣଙ୍କ ଭୂମିକା ସଂକ୍ଷିପ୍ତ ହେଲେ ମଧ୍ୟ ଗୌଡ଼ୀୟ ବୈଷ୍ଣବ (?) ପ୍ରେମତତ୍ତ୍ୱ ଓ ବ୍ରଜରସର ବିମଳ ଉତ୍ସ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀର ମହତ୍ତ୍ୱ ପ୍ରଖ୍ୟାପନ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ଏଥିରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଆନନ୍ଦମୂର୍ତ୍ତି, ବିଷୟବାସନା ଓ ମାୟାଗ୍ରସ୍ତ ଆତ୍ମବିସ୍ମୃତ ଜୀବ ପକ୍ଷରେ ଭଗବଦ୍‌ଭକ୍ତିର (ଅକୈତବ ପ୍ରେମ) ପ୍ରୟୋଜନ, ଜୀବ ଓ ଭଗବାନଙ୍କ ମଧ୍ୟରେ ନିବିଡ଼ ସମ୍ପର୍କ, ଗୋପୀଭାବ ଓ ଭଗବତ୍ କୃପା ସମ୍ପର୍କରେ ସୂଚନା ଦେଇ ରାଧାକୃଷ୍ଣଙ୍କ ପ୍ରେମର ସୌନ୍ଦର୍ଯ୍ୟ ଓ ଅନନ୍ତ ମହିମାର ଉପଲବ୍ଧି ପାଇଁ ଗୋସ୍ୱାମୀ ଗ୍ରନ୍ଥ ଅନୁଶୀଳନ ଉପରେ ଗୁରୁତ୍ୱ ଦେଇଛନ୍ତି । ତାପରେ ସମ୍ପାଦକ ମହୋଦୟ

(୨) ଗୋ. କୃ. ପ. (୩ୟ ସଂ), ୧୯୩୫, ସମ୍ପା: ରା. କୃ. ପଟ୍ଟନାୟକ, ମୁଖବନ୍ଧ, ପୃ.୨ ।

(୩) ତତ୍ରୈବ, ପୃ. ୨ ।

ପ୍ରେମିକ ଭକ୍ତକବିଙ୍କର ସୌନ୍ଦର୍ଯ୍ୟ ଦୃଷ୍ଟି, ରାଧାକୃଷ୍ଣ ଲୀଳାରସର ସରସ୍‌ ସରଳ ବାଙ୍ମୟ ଅଭିବ୍ୟକ୍ତିର ମହତ୍ତ୍ୱ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା କରିଛନ୍ତି (୪)।

**ମୋହନ ଚରଣ ଦାସ ସମ୍ପାଦିତ ରାଧାକୃଷ୍ଣ ପଦ୍ୟାବଳୀ :** ରାମକୃଷ୍ଣ ପଟ୍ଟନାୟକ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ତୃତୀୟ ସଂସ୍କରଣ ପ୍ରକାଶ ପୂର୍ବରୁ ଗୋପାଳକୃଷ୍ଣଙ୍କ ସଙ୍ଗୀତର ଏକ ସଂଗ୍ରହ 'ରାଧାକୃଷ୍ଣ ପଦ୍ୟାବଳୀ' ଶିରୋନାମାରେ କଟକର ମୋହନ ଚରଣ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା (ପ୍ରକାଶିକା : ମା କନକ ଦୁର୍ଗା)। ଗୀତ ଗୁଡ଼ିକ ମୋହନ ଚରଣ ଦାସଙ୍କ ଦ୍ୱାରା ସଂଗୃହୀତ ଓ ସଂଶୋଧିତ ବୋଲି ଉଲ୍ଲିଖିତ ହେବା ସଙ୍ଗେ ସଙ୍ଗେ ଗୋଟିଏ କ୍ଷୁଦ୍ର ଭୂମିକା ଯୋଗ କରାଯାଇଛି ଏବଂ ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁଙ୍କ ରଚନା ସହିତ ତୁଳନା କରାଯାଇ ଗୋପାଳକୃଷ୍ଣଙ୍କ ରଚନା ଶୈଳୀର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇଛି। ଗୋପାଳକୃଷ୍ଣଙ୍କ ସଙ୍ଗୀତର ଏ ସଂସ୍କରଣ ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ଅବିକଳ ଅନୁକରଣ ଏବଂ କେତୋଟି ଅସମ୍ପୂର୍ଣ୍ଣ ଗୀତକୁ ଇଚ୍ଛାନୁଯାୟୀ ସମ୍ପୂର୍ଣ୍ଣ ରୂପ ଦିଆଯାଇ ବିକୃତ କରାଯାଇଛି। ରାମକୃଷ୍ଣ ପଟ୍ଟନାୟକ ଗୋପାଳକୃଷ୍ଣ ପଦ୍ୟାବଳୀର ୩ୟ ସଂସ୍କରଣର ମୁଖବନ୍ଧରେ ଶ୍ରୀ ଦାସଙ୍କର ଏ ପଦ୍ୟାବଳୀ ପ୍ରକାଶକୁ ଗୋପାଳକୃଷ୍ଣ ପଦ୍ୟାବଳୀର ବିକୃତ ସଂସ୍କରଣ କହି ତାଙ୍କ ପ୍ରତି ତୀବ୍ର ଆକ୍ଷେପୋକ୍ତି ପ୍ରକାଶ କରିଛନ୍ତି। ତାଙ୍କର ଆକ୍ଷେପୋକ୍ତିର କାରଣ ହେଉଛି—

(୧) 'ରାଧାକୃଷ୍ଣ ପଦ୍ୟାବଳୀ'ରେ ଭାବାନୁଯାୟୀ ସୁଶୃଙ୍ଖଳ ଭାବରେ ସନ୍ନିବିଷ୍ଟ ଗୋପାଳକୃଷ୍ଣ ପଦ୍ୟାବଳୀର ସଙ୍ଗୀତ ଗୁଡ଼ିକୁ ସେ ଇଚ୍ଛା ମୁତାବକ ବିପର୍ଯ୍ୟସ୍ତ ତଥା ବିଶୃଙ୍ଖଳ କରିଛନ୍ତି;

(୨) ସଂଗ୍ରହର ନାମ ରାଧାକୃଷ୍ଣ ପଦ୍ୟାବଳୀ ରଖି 'ସ୍ୱରେ ଦେଇ ବନ୍ଧୁ ନ ଯାରେ', 'ଜୀବନବନ୍ଧୁ ମାଗୁଣି' ପ୍ରଭୃତି ଲୌକିକରସାତ୍ମକ ଗୀତ ସନ୍ନିବେଶିତ କରି ନାମକରଣରେ ଅସାର୍ଥକତା ସମ୍ପାଦନ କରିଛନ୍ତି;

(୩) କେତେକ ସମ୍ପୂର୍ଣ୍ଣ ସଙ୍ଗୀତର ଭଣିତ ନ ଛପାଇ ସେଗୁଡ଼ିକ ଅସମ୍ପୂର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ 'କୃଷ୍ଣଜ ପରାଏ ବିପକ୍ଷ ହୋଇ', 'କେଶର କୁଞ୍ଜ ଶେଯରେ' ଇତ୍ୟାଦି ଅସମ୍ପୂର୍ଣ୍ଣ କବିତାଗୁଡ଼ିକୁ ସ୍ୱକପୋଳକଳ୍ପିତ ଭାବ (ପଦ) ଦ୍ୱାରା ସମ୍ପୂର୍ଣ୍ଣ କରି ଭାବ ଓ ଶୈଳୀର ବିକୃତି ଘଟାଇଛନ୍ତି;

(୪) ସଙ୍ଗୀତର ଅନେକ ସ୍ଥାନରେ ପଦ ଓ ଅକ୍ଷର ବଦଳାଇ ଏବଂ 'ବନମାଳୀ ଗୀତ'ରେ 'ଯେ' ସ୍ଥାନରେ 'ଆରେ' ପଦ ପ୍ରୟୋଗ କରି କବିଙ୍କର ମାଧୁର୍ଯ୍ୟପୂର୍ଣ୍ଣ ଭାବ ଓ ରସ ପ୍ରକାଶିକା ଶକ୍ତି ନଷ୍ଟ କରି ଦେଇଛନ୍ତି;

(୫) ସନ୍ନିବେଶିତ ଛବି ଗୁଡ଼ିକ ମାଧୁର୍ଯ୍ୟମୟ ଭାବକୁ ସୁସ୍ପଷ୍ଟ କରିବା ପରିବର୍ତ୍ତେ ଭାବ ବିକୃତ କରି ଅସଂଗତ ବିଭ୍ରାଟ ଘଟାଇଛି;

---

(୪) ତତ୍ରୈବ, ଭୂମିକା, ପୃ. ୧-୩।

(୬) ପ୍ରାଚୀନ ରାଗ ଓ ତାଳର ଗାମ୍ଭୀର୍ଯ୍ୟ ଉପଲବ୍ଧି ନ କରି 'ଆଧୁନିକ ଲେଖକଙ୍କ ହାଣ୍ଡୁଆ ରାଗ' ଅବତାରଣା କରି ଓଡ଼ିଆ ସଙ୍ଗୀତର ମର୍ଯ୍ୟାଦା ନଷ୍ଟ କରିଛନ୍ତି (୫) । ଖ୍ରୀ: ୧୯୫୬ରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଏ ।

**କାଳୀଚରଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ :** ସ୍ୱର୍ଗତ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସମ୍ପାଦନାରେ କଟକର ଜଗନ୍ନାଥ କମ୍ପାନୀ ଦ୍ୱାରା ଗୋପାଳକୃଷ୍ଣ ପଦ୍ୟାବଳୀ ପ୍ରକାଶ ପାଏ ଖ୍ରୀ: ୧୯୫୯ରେ । ସମ୍ପାଦକ ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ପାଠ ଓ ଗୀତ ସୂଚୀ ଅବିକଳ ଗ୍ରହଣ କରିଛନ୍ତି; କେବଳ 'ସମୀକ୍ଷା' ଶୀର୍ଷକ ଅଗ୍ରଲେଖାଟି ତାଙ୍କର ନିଜସ୍ୱ । ରାମକୃଷ୍ଣ ସଂସ୍କରଣରୁ କବିଙ୍କର ବଂଶଲତା ଅବିକଳ ଉଦ୍ଧାର କରାଯାଇଛି । ସମ୍ପାଦକ କବିଙ୍କର ପାଣ୍ଡିତ୍ୟ, ପ୍ରତିଭା, ବର୍ଣ୍ଣନା କୁଶଳତା, ଭାବ ଓ ରସ ପରିବେଷଣରେ କବିଙ୍କର ଅନୁଭୂତି ସିଦ୍ଧ ବାସ୍ତବତାବୋଧ, ମନୋଜ୍ଞ ପ୍ରକାଶଭଙ୍ଗୀ ଓ ସଙ୍ଗୀତର ବୈଶିଷ୍ଟ୍ୟ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା କରି କବିଂକର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

**କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ :** ଖ୍ରୀ: ୧୯୪୯ରେ କୃପାସିନ୍ଧୁ ନରେନ୍ଦ୍ର ଦେବଙ୍କ ସମ୍ପାଦନାରେ ସଂକ୍ଷିପ୍ତ ମୁଖବନ୍ଧ ସହ ଗୋପାଳକୃଷ୍ଣ ପଦ୍ୟାବଳୀର ନୂତନ ମୁଦ୍ରଣ ପ୍ରକାଶିତ ହୁଏ । ଏ ପଦ୍ୟାବଳୀର ପ୍ରକାଶକ ହେଉଛନ୍ତି ବ୍ରହ୍ମପୁର ରଏଲ୍ ପ୍ରେସର ପରିଚାଳକ ଶ୍ରୀ ସୀମାଦ୍ରି ପଣ୍ଡା ଏବଂ ମୁଦ୍ରଣକାରୀ କଟକର ଅରୁଣୋଦୟ ପ୍ରେସ । ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କର ଅନୁମତି ଓ ଆର୍ଥିକ ସାହାଯ୍ୟରେ ଏହା ପ୍ରକାଶିତ ହୋଇଥିବାରୁ ଶ୍ରୀ ନରେନ୍ଦ୍ରଦେବ ଏହାକୁ ମହାରାଜାଙ୍କ ନାମରେ ଉତ୍ସର୍ଗ କରିଛନ୍ତି । ପୂର୍ବ ସଂସ୍କରଣରେ ପ୍ରକାଶିତ କବିଙ୍କର ସଂକ୍ଷିପ୍ତ ଜୀବନୀ ମଧ୍ୟ ଏଥିରେ ଅବିକୃତ ଭାବରେ ସନ୍ନିବେଶିତ ହୋଇଛି । ମୁଖବନ୍ଧ ଶିରୋନାମାରେ ଶ୍ରୀ ନରେନ୍ଦ୍ରଦେବ ସଂକ୍ଷେପରେ କବି ପ୍ରତିଭା ସମ୍ପର୍କରେ ସୂଚନା ଦେଇଛନ୍ତି । ରାମକୃଷ୍ଣ ସଂସ୍କରଣର ଅନୁକରଣରେ ବର୍ଣ୍ଣମାଳା କ୍ରମରେ ପଦ୍ୟାବଳୀର ଏ ସଂସ୍କରଣର ସୂଚୀପତ୍ର ପ୍ରସ୍ତୁତ ହୋଇଥିଲେ ମଧ୍ୟ ସଙ୍ଗୀତ ଗୁଡ଼ିକ ସେହି କ୍ରମରେ ମୁଦ୍ରିତ ହୋଇ ନାହିଁ । କେତେକ ସଙ୍ଗୀତର ବିଷୟ ଓ ଭାବାନୁଯାୟୀ ଏକ ଏକ ଶିରୋନାମାର ସଙ୍କେତ ଦିଆ ଯାଇଥିଲେ ମଧ୍ୟ ରାଧାକୃଷ୍ଣ ପ୍ରେମଲୀଳାତ୍ମକ ଅଧିକାଂଶ ସଙ୍ଗୀତର ଭାବ, ରସ ଓ ବସ୍ତୁସୂଚକ ନାମକରଣ କରାଯାଇ ନାହିଁ । ପୁଣି ସେଗୁଡ଼ିକୁ କାହାଣୀର କ୍ରମ ଓ ସୂକ୍ଷ୍ମ ଇଚ୍ଛା କରାଯାଇ ଯେପରି ସଜ୍ଜିତ କରି ଦିବାର କଥା ତାହା କରାଯାଇ ନଥିବାରୁ ପାଠକ ଓ ସମୀକ୍ଷକଙ୍କୁ ରସାସ୍ୱାଦନରେ ଏବଂ ଆଲୋଚନା ଅବସରରେ ଅସୁବିଧାର ସମ୍ମୁଖୀନ ହେବାକୁ ହୋଇଥାଏ । ଏ ସଂସ୍କରଣରେ ସମୁଦାୟ କବିଙ୍କର ୩୦୬ଟି ସଙ୍ଗୀତ ସନ୍ନିବେଶିତ ହୋଇଛି । ଏହା ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ପୁନର୍ମୁଦ୍ରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୫) ଗୋ. କୃ. ପ: ୩ୟ ସଂ., ୧୯୩୫; ମୁଖବନ୍ଧ, ପୃ. ୨-୩

**ସଙ୍ଗୀତ ଗୋପାଳକୃଷ୍ଣ** : ଓଡ଼ିଶା କୋହିନୂର ପ୍ରେସର ମାଲିକ ଶେଖ୍ ଅମିରୁଲ ଇସ୍‌ଲାମ୍ ଗୋପାଳକୃଷ୍ଣଙ୍କର କେତୋଟି ଗୀତ 'ସଙ୍ଗୀତ ଗୋପାଳକୃଷ୍ଣ' ଶିରୋନାମାରେ ପ୍ରକାଶ କରିଥିଲେ ।।

**କୌସ୍ତୁଭ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀ** : କୃପାସିନ୍ଧୁ ନରେନ୍ଦ୍ର ଦେବଙ୍କ ନୂତନ ସଂସ୍କରଣ (୨) ପ୍ରକାଶ ପରେ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ସମ୍ପାଦନାରେ ପ୍ରକାଶିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀ ନାନା ତ୍ରୁଟି ସତ୍ତ୍ୱେ ପାଠକ ଓ ସମୀକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରେ । ଗୋପାଳକୃଷ୍ଣଙ୍କର ସଙ୍ଗୀତ ଗୁଡ଼ିକ ଏହାଙ୍କ ସମ୍ପାଦନାରେ ଦୁଇଟି ଭାଗରେ (ପ୍ରଥମ ଭାଗ ଭଜନ ଓ ସ୍ତୁତି ବର୍ଣ୍ଣନା, ଦ୍ୱିତୀୟ ଭାଗ ରାଧାକୃଷ୍ଣ ପ୍ରେମଲୀଳା ଓ ଆଦିରସାତ୍ମକ ଗୀତ ।) ପ୍ରକାଶିତ ଏବଂ କଟକ ଭାଗବତ ପ୍ରେସ ଦ୍ୱାରା ମୁଦ୍ରିତ । ପ୍ରଥମ ଭାଗଟିର ପ୍ରକାଶକାଳ ଖ୍ରୀ: ୧୯୫୯, ଦ୍ୱିତୀୟ ଭାଗଟିର ୧୯୬୦ । ପୂର୍ବ ପ୍ରକାଶିତ ଗୋପାଳକୃଷ୍ଣ ପଦ୍ୟାବଳୀର ତୁଳନାରେ ଏହା ଆକାରରେ ପ୍ରାୟ ଦୁଇଗୁଣ । ପ୍ରଥମ ଭାଗରେ ୧୮୧ଟି ଏବଂ ଦ୍ୱିତୀୟ ଭାଗରେ ୫୩୦ଟି, ସମୁଦାୟ ୭୧୧ଟି ଗୀତ ସନ୍ନିବେଶ ହୋଇଛି । ଆଉ କେତୋଟି କବିତା ଅପ୍ରକାଶିତ ରହିଛି ବୋଲି ପ୍ରକାଶକ ଶ୍ରୀ ଅରକ୍ଷିତ ଦାସ ତାଙ୍କର ସୂଚନା ଦେଇଛନ୍ତି । ପୂର୍ବ ପ୍ରକାଶିତ ଗୋପାଳକୃଷ୍ଣ ପଦ୍ୟାବଳୀର ଗୀତ ସଂଖ୍ୟା ୩୦୭; ସେଥିରୁ ପାଞ୍ଚଟି ଗୀତ (୨) ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ନାହିଁ । ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଗୋପାଳକୃଷ୍ଣ ପଦ୍ୟାବଳୀ ଅପେକ୍ଷା ୪୦୩ଟି ଗୀତ ଅଧିକ ଅଛି । ଗୋପାଳକୃଷ୍ଣ ପଦ୍ୟାବଳୀର ୩୦୨ଟି ଗୀତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ରହିଛି (୨ ।। ଗୋପାଳକୃଷ୍ଣଙ୍କର ଅଳ୍ପ କେତୋଟି ଗୀତ ପାରଳାର ତତ୍‌କାଳୀନ ରାଜା ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ, ଗୌରଚନ୍ଦ୍ର ଦେବ ଓ ପଦ୍ମନାଭ ଦେବଙ୍କ ନାମରେ ଭଣିତ, ଅବଶିଷ୍ଟ ଗୀତ ଗୁଡ଼ିକ ନିଜ ନାମରେ ଭଣିତ ।।

ଗ୍ରନ୍ଥାବଳୀ ସମ୍ପାଦନା କରିବାକୁ ଯାଇ ସଂଗ୍ରାହକ ତଥା ସମ୍ପାଦକ ଯେପରି ବିଷୟ ଭାବ ଅନୁଯାୟୀ ସଙ୍ଗୀତ ଗୁଡ଼ିକ ଆନୁକ୍ରମିକ ସନ୍ନିବେଶ କରିଛନ୍ତି ଏବଂ ରଚନାବଳୀକୁ ଦୁଇ-ଭାଗରେ ବିଭକ୍ତ କରିଛନ୍ତି, ଆଲୋଚନା ଦିଗରୁ ତାହା କେତେକ ପରିମାଣରେ ସୁବିଧାଜନକ

---

(୨) (କ) "ଇଥଂ ସର୍ବାର୍ଥଦା ଗାଥା, ପ୍ରେମ କାମାବଳୀ ସ୍ୱଶ୍ୟ' (ଗୋ. କୃ. ପ., ପୃ-୨)

(ଖ) କୃଷ୍ଣଙ୍କ ଏଥିଯୋଗେ ନବପକ୍ଷ ହୋଇ..................ଗୋ. କୃ. ପ., ପୃ-୨୬୨

(ଗ) କେ କରିବ କଳ୍ପ କଳ୍ପ ମହାରେ ଚନ୍ଦ୍ରବଦନା.........ତତ୍ରୈବ ପୃ-୨୩୪

(ଘ) ଭାବରେ ଭାବନା ପାରରେ ମାଜନ ......................ତତ୍ରୈବ ପୃ-୧୧୫

(ଙ) ଶ୍ରୀରାଧା ଗୋବିନ୍ଦ ଯେ.......................................ତତ୍ରୈବ ପୃ- ୭୧

(୨) ରା. କୃ. ପଟ୍ଟନାୟକ ସମ୍ପାଦିତ ଗୋ. କୃ. ପ.ର କେତୋଟି ଅସଂପୂର୍ଣ୍ଣ ଗୀତ ଗୋ. କୃ. ଗ୍ର.ରେ ସେହିପରି ଅସଂପୂର୍ଣ୍ଣ ରଖାଯାଇଛି (କେବଳ ଦୁଇଟି ଗୀତ ଛାଡ଼ି ଦେଇ) (ପରିଶିଷ୍ଟ: ଗ୍ଧର ଦ୍ରଷ୍ଟବ୍ୟ) ।।

ହୋଇଛି । ପ୍ରଥମ ଭାଗରେ ସାମ୍ପ୍ରଦାୟିକ ଭକ୍ତିତତ୍ତ୍ୱ (ବୈଷ୍ଣବୀୟ ଦର୍ଶନ) ଓ ଚୈତନ୍ୟ ବନ୍ଦନାତ୍ମକ ସଙ୍ଗୀତ ଏବଂ ଦ୍ୱିତୀୟ ଭାଗରେ ରାଧାକୃଷ୍ଣ ଲୀଳାତ୍ମକ ଗୀତ, ଛାନ୍ଦ, ଚଉତିଶା, କୋଇଲି ଓ ଆଦିରସ ପର୍ଯ୍ୟାୟର ଗୀତଗୁଡ଼ିକ ବସ୍ତୁ କ୍ରମରେ ସଜ୍ଜିତ କରି ପ୍ରକାଶ କରିଛନ୍ତି । ବସ୍ତୁର ଭାବ ଓ ରସ ଅନୁଯାୟୀ ସଂକଳକ ପ୍ରତ୍ୟେକ ସଙ୍ଗୀତର ଏକ ଏକ ଶୀର୍ଷକ (ଶିରୋନାମା) ଦେଇଥିବାରୁ ସମଗ୍ର ଗ୍ରନ୍ଥାବଳୀ ମଧ୍ୟରେ କାହାଣୀର ଏକ କ୍ଷୀଣ ସୂତ୍ର ଲକ୍ଷ୍ୟ କରାଯିବା ସଙ୍ଗେ ସଙ୍ଗେ ରସାସ୍ୱାଦନ ଓ ସମୀକ୍ଷା ଦିଗରେ ସହୃଦୟ ଓ ସମୀକ୍ଷକ ଅସୁବିଧାର ସମ୍ମୁଖୀନ ହୁଏ ନାହିଁ (୮) ।

ଗ୍ରନ୍ଥାବଳୀର ପ୍ରାରମ୍ଭରେ ସମ୍ପାଦକଙ୍କର ମୁଖବନ୍ଧଟି ରସାସ୍ୱାଦନ ଓ ଗ୍ରନ୍ଥସମୀକ୍ଷା ଦୃଷ୍ଟିରୁ ଅବଶ୍ୟ ଉପାଦେୟ ହୋଇଛି । ସମ୍ପାଦକ ଭାରତୀୟ ସଙ୍ଗୀତ ଶାସ୍ତ୍ର ସମ୍ପର୍କରେ କିଞ୍ଚିତ୍ ସୂଚନା ଦେଇ ରାଗରାଗିଣୀର ରହସ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି ଏବଂ ଉତ୍କଳରେ ପ୍ରଚଳିତ ଛାନ୍ଦ, ଚଉତିଶା, ଚଉପଦୀ ଓ ବୋଲି ପ୍ରଭୃତିରେ ବ୍ୟବହୃତ ଦଶା, ବୃତ୍ତ, ଖାଦ, ଢଙ୍ଗ ବା ପ୍ରତି ସମ୍ପର୍କରେ ଆଲୋଚନା କରି ଦର୍ଶାଇଛନ୍ତି ଯେ ଏ ଗୁଡ଼ିକ ଖାଣ୍ଟି ରାଗ ବା ରାଗିଣୀ ନୁହନ୍ତି, ବରଂ ଉପରାଗ ବା ଉପରାଗିଣୀ । ଛାନ୍ଦ ଓ ସଙ୍ଗୀତାଦିରେ ବ୍ୟବହୃତ ରାଗର ଏକ ବର୍ଣ୍ଣମାଳାନୁକ୍ରମିକ ତାଲିକା ଦେଇ ସେଗୁଡ଼ିକରେ ଉତ୍କଳୀୟତାର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି ଏବଂ ଉତ୍କଳର ଖ୍ୟାତନାମା କବିଙ୍କ ସୃଷ୍ଟ ସେମାନଙ୍କର ଶ୍ରଦ୍ଧା ସମନ୍ୱିତ ମିଶ୍ରରାଗର ଉଲ୍ଲେଖ କରି ରାଗମାହାତ୍ମ୍ୟ ଓ ତାଳ ସମ୍ପର୍କରେ ଆଲୋଚନା କରିଛନ୍ତି ।

ଗୋପାଳକୃଷ୍ଣ ସଙ୍ଗୀତର ପ୍ରଚାର, ଲୋକପ୍ରିୟତା ଓ ପଦାବଳୀର ପ୍ରକାଶ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ସମ୍ପାଦକ କହିଛନ୍ତି ଯେ କବିଙ୍କର ପ୍ରାର୍ଥନା, ମନଃଶିକ୍ଷା, ବ୍ରଜରସର ନିଗୂଢ଼ ତତ୍ତ୍ୱାତ୍ମକ ସଙ୍ଗୀତ, ଚଉପଦୀ, ବୋଲି ଓ ବିଳାପ ପ୍ରଭୃତି ସଙ୍ଗୀତ ଗୁଡ଼ିକ ପ୍ରଥମେ ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣରେ ପ୍ରକାଶିତ ହୋଇ ବୈଷ୍ଣବମାନଙ୍କ ମଧ୍ୟରେ ବିନାମୂଲ୍ୟରେ ବିତରଣ କରାଯାଇଥିଲା । ଗୋପାଳକୃଷ୍ଣଙ୍କର ଅନ୍ୟାନ୍ୟ ବହୁ ସଙ୍ଗୀତ ଅପ୍ରକାଶିତ ରହିଥିବାରୁ ଦ୍ୱିତୀୟବାର ମୁଦ୍ରଣ ସମୟରେ ତାଙ୍କ ଦ୍ୱାରା ସଂଗୃହୀତ ଅପ୍ରକାଶିତ ବହୁ ସଙ୍ଗୀତ ଗୋପାଳକୃଷ୍ଣ ପଦ୍ୟାବଳୀ ଶିରୋନାମାରେ ପ୍ରକାଶ ପାଇଲା । ସମ୍ପାଦକଙ୍କ କହିବା ଅନୁଯାୟୀ ପଦ୍ୟାବଳୀ ପ୍ରତି ଲୋକଙ୍କର ସେତେ ଆଗ୍ରହ ପ୍ରକାଶ ପାଇ ନଥିଲା, କିନ୍ତୁ ତାଙ୍କର ରାସଲୀଳାରେ ବନମାଳୀ ଓ କବିସୂର୍ଯ୍ୟଙ୍କ ଗୀତ ସହିତ ଗୋପାଳକୃଷ୍ଣଙ୍କର ଗୀତ ସଂଯୋଗ କରି ଅଭିନୟ କାଳରେ ଗାନ କରାଇବା ଦ୍ୱାରା ଗୋପାଳକୃଷ୍ଣ ସଙ୍ଗୀତର ପ୍ରଚାର ଓ ଆଦର କ୍ରମଶଃ ବଢ଼ିଲା ।

ସେ ଲେଖିଛନ୍ତି ଯେ ପୂର୍ବରୁ ପାରଳାଖେମୁଣ୍ଡି ଅନ୍ତର୍ଗତ ଖାରଡ଼ା ଗ୍ରାମରେ ଅବସ୍ଥିତ ଶ୍ରୀ ଶ୍ରୀ ରାଧାକାନ୍ତ ମଠର ମହନ୍ତ ଗୋପାଳ ଦାସଙ୍କ ଠାରୁ ପ୍ରାପ୍ତ ପ୍ରାୟ ଦୁଇଶହ ସଙ୍ଗୀତ

(୮) ଗ୍ରନ୍ଥାବଳୀର ପରିଶିଷ୍ଟରେ ସନ୍ନିବିଷ୍ଟ ଗୀତଗୁଡ଼ିକରେ ଏ ଶୃଙ୍ଖଳା ଦେଖାଯାଏନା । ସମ୍ପାଦକଙ୍କ କୈଫିୟତ ଅନୁଯାୟୀ ଏ ଗୁଡ଼ିକ ବିଳମ୍ବରେ ହସ୍ତଗତ ହୋଇଥିଲା ।

ଚଉପଦୀ ଏବଂ ଭୃଙ୍ଗ ପୁଷ୍ପାଞ୍ଜଳି, ମୁକୁନ୍ଦ ମୁକ୍ତାବଳୀ, ଅଷ୍ଟକାଳୀନ ସ୍ମରଣ-ସେବା ଶୀର୍ଷକ ଗୀତାବଳୀ ଏବଂ ପାରଳା ନିବାସୀ ସଙ୍ଗୀତପ୍ରିୟ ଅପର୍ଣ୍ଣା ପଣ୍ଡାଙ୍କ ଠାରୁ କେତେକ ଆଦରସାତ୍ମକ ଚଉପଦୀ ସଂଗ୍ରହ କରି ଏ ଗ୍ରନ୍ଥାବଳୀ ଓ ପଦ୍ୟାବଳୀରେ ସନ୍ନିବିଷ୍ଟ କରିଛନ୍ତି (ଯେଉଁ ଗୁଡ଼ିକ ପୂର୍ବରୁ ପ୍ରକାଶିତ ହୋଇ ନଥିଲା)। ରାମକୃଷ୍ଣଙ୍କ ଦ୍ୱାରା ପ୍ରକାଶିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ଅଧିକାଂଶ ରାଗ ଓ ତାଳ ତେଲୁଗୁ ମିଶ୍ରିତ ଥିବାରୁ (ପାରଳା ଅଞ୍ଚଳରେ ପ୍ରଚଳିତ) ସମ୍ପାଦକ ରାସଲୀଳା ଅଭିନୟ ସମୟରେ ସେହି ରାଗ ଓ ତାଳର ପରିବର୍ତ୍ତନ କରି ସଙ୍ଗୀତ ବାଳକମାନଙ୍କ ମୁଖରେ ଗାନ କରାଉଥିଲେ ଏବଂ ଗ୍ରନ୍ଥାବଳୀରେ ପରିବର୍ତ୍ତିତ ରୂପରେ ସେହି ରାଗ ତାଳର ଉଲ୍ଲେଖ କରିଛନ୍ତି ବୋଲି ନିଜେ ସ୍ୱୀକାର କରିଛନ୍ତି (୯)।

ଗ୍ରନ୍ଥାବଳୀର ଆରମ୍ଭରେ ପ୍ରକାଶିତ କବିଙ୍କର ଜୀବନୀ ଗୋପାଳକୃଷ୍ଣ ପଦ୍ୟାବଳୀର ପୂର୍ବ ସଂସ୍କରଣ ମାନଙ୍କରେ ପ୍ରକାଶିତ ସଂକ୍ଷିପ୍ତ ଜୀବନୀର ଚର୍ବିତଚର୍ବଣ ନୁହେଁ। ଏଥିରେ ସମ୍ପାଦକ କବିଙ୍କ ସମ୍ପର୍କରେ ସାମାନ୍ୟ କେତେକ ନୂତନ କଥା ଯୋଗ କରିବା ସଙ୍ଗେ ସଙ୍ଗେ କବିଙ୍କର ବହୁ ଶାସ୍ତ୍ରଦର୍ଶିତା, ବିଭିନ୍ନ ଭାଷା ପ୍ରବୀଣତା ସମ୍ପର୍କରେ ସୂଚନା ଦେଇ ବିଭିନ୍ନ ସମୟରେ ରଚିତ ତାଙ୍କର କେତେକ ବିଶିଷ୍ଟ ରଚନା ଓ ଅନୁବାଦର ଆନୁପୂର୍ବିକତା ବର୍ଣ୍ଣନା କରିଛନ୍ତି ଏବଂ ପ୍ରକାଶିତ ଓ ଅପ୍ରକାଶିତ ରଚନାବଳୀର ମଧୁର ଭାବୋଦ୍ଦୀପକ ବ୍ରଜରସାତ୍ମକ ସଙ୍ଗୀତାବଳୀର ବିଷୟ ଓ ଶିରୋନାମାର କିଞ୍ଚିତ୍ ବିସ୍ତୃତ ବିବରଣୀ ଦେଇଛନ୍ତି।

ବୈଷ୍ଣବ ଚରଣଙ୍କ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୂର୍ବ ପ୍ରକାଶିତ ଗୋପାଳକୃଷ୍ଣ ପଦ୍ୟାବଳୀ ଗୁଡ଼ିକ ତୁଳନାରେ ଅପେକ୍ଷାକୃତ ବୃହତ୍ତର ହେଲେ ମଧ୍ୟ ନୂତନ ପ୍ରକାଶିତ ଗୀତଗୁଡ଼ିକ ମଧ୍ୟରୁ କେତୋଟିର ପିତୃତ୍ୱ ସମ୍ପର୍କରେ ସନ୍ଦେହ ଜାତ ହୁଏ। କବିଙ୍କର ପ୍ରତିଷ୍ଠିତ ସଙ୍ଗୀତ ରଚନାର ଶୈଳୀ, ଭାଷା, ପଦଯୋଜନା ଓ ରଚନାର ସ୍ୱଚ୍ଛନ୍ଦ ପ୍ରବାହକୁ ସମକ୍ଷରେ ରଖି ବିଚାର କଲେ ଏ ଗୁଡ଼ିକ ପୃଥକ୍ ବାରି ହୋଇଯା'ନ୍ତି ଏବଂ କବିଙ୍କ ସ୍ୱକୀୟ ରଚନା ଅପେକ୍ଷା ନ୍ୟୂନ ସ୍ତରର ବୋଲି ପ୍ରତୀତ ହୁଅନ୍ତି। ସେ ସଙ୍ଗୀତଗୁଡ଼ିକ ଗୋପାଳକୃଷ୍ଣଙ୍କର ସ୍ୱକୀୟ ରଚନା ନୁହେଁ। ଅନ୍ୟ କେହି ନ୍ୟୂନ ପ୍ରତିଭାସମ୍ପନ୍ନ କବି ଗୀତ ଗୁଡ଼ିକର ସହସା ପ୍ରଚାର ଓ ଲୋକପ୍ରିୟତା ପାଇଁ କବିଙ୍କ ନାମରେ ଭଣିତା କରିଥିବାର ମନେହୁଏ। ସଂଗ୍ରହକର୍ତ୍ତା ତଥା ସମ୍ପାଦକ ଗ୍ରନ୍ଥାବଳୀ ସମ୍ପାଦନା କାଳରେ ଟିକିଏ ଧୈର୍ଯ୍ୟ ସହକାରେ ଗୋପାଳକୃଷ୍ଣଙ୍କର ପ୍ରତିଷ୍ଠିତ ରଚନାର ଶୈଳୀ ଓ ଭାଷା ସହିତ ତୁଳନା କରି ଦେଖି ନେଇଥିଲେ କବିଙ୍କର ପ୍ରକୃତ ରଚନା କି ନୁହେଁ ଅନାୟାସରେ ଉପଲବ୍ଧି କରି ପାରି ଥାଆନ୍ତେ ଏବଂ ସେଗୁଡ଼ିକୁ ବାଦ ଦେଇ ପାରିଥାଆନ୍ତେ (୧୦)। ଏ ପ୍ରକାର କରିବା ଦ୍ୱାରା

(୯) ଗୋ. କୃ. ଗ୍ର. ଓ ଗୋ. କୃ. ପ., ସଂପା: ବାବାଜୀ ଶ୍ରୀ ବୈଷ୍ଣବ ଚରଣ ଦାସ, ମୁଖବନ୍ଧ, ପୃ. ୭

(୧୦) ଗୋ. କୃ. ଗ୍ର.ରେ ପ୍ରକାଶିତ ସନ୍ଦେହ ସୂଚକ ପଦାବଳୀ ପରିଶିଷ୍ଟ (୨)ରେ ଦ୍ରଷ୍ଟବ୍ୟ।

ଗୋପାଳକୃଷ୍ଣ ପଦ୍ୟାବଳୀର ମହତ୍ତ୍ୱ କ୍ଷୁଣ୍ଣ ହୋଇଛି । ତେଣୁ, ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ଶୁଦ୍ଧ ନମୁନା ନ ପାଇବା ପର୍ଯ୍ୟନ୍ତ, ଏ ସଂଗ୍ରହକୁ ପ୍ରାମାଣିକ ବୋଲି ଗ୍ରହଣ କରିବାରେ ବାଧା ରହିଛି ।

**ସତ୍ୟେନ୍ଦ୍ରକୁମାର ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ :** ଶ୍ରୀ ସତ୍ୟେନ୍ଦ୍ର କୁମାର ପାଣିଗ୍ରାହୀଙ୍କ ସମ୍ପାଦନାରେ ଗୋପାଳ କୃଷ୍ଣ ଗ୍ରନ୍ଥାବଳୀ (ପ୍ରଥମ ଭାଗ), ଓଡ଼ିଶା କୋହିନୂର ପ୍ରେସରେ, ଶେଖ୍ ଅମିନୁଲ୍ଲା ଙ୍କ ଦ୍ୱାରା ଖ୍ରୀ: ୧୯୬୯, ଗାନ୍ଧୀ ଜୟନ୍ତୀରେ ପ୍ରକାଶିତ ହୋଇଛି । ଶ୍ରୀ ପାଣିଗ୍ରାହୀ ଗୋପାଳକୃଷ୍ଣଙ୍କ ଗୀତର ସଂକଳକ ଓ ସଂପାଦକ ବୋଲି ଏଥିରେ ମୁଦ୍ରିତ ହୋଇଛି ଏବଂ ଗ୍ରନ୍ଥାବଳୀ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ଉତ୍ସର୍ଗ କରଯାଇଛି । ଗ୍ରନ୍ଥାବଳୀର ୨ୟ ଭାଗ ପ୍ରକାଶ ପାଉଛି ବୋଲି ଏଥିରେ ବିଜ୍ଞାପନର ଉଲ୍ଲେଖ ରହିଛି । ସଂକଳକ ଏଥିରେ ଗୋପାଳକୃଷ୍ଣଙ୍କ ଜୀବନୀ ସ୍ୱକୀୟ ଭାଷା ଭଙ୍ଗୀରେ ଲେଖିଥିଲେ, ମଧ୍ୟ ସାମାନ୍ୟ ଗୋଟିଏ ଦୁଇଟି ଜନଶ୍ରୁତିର ଉଲ୍ଲେଖ ବ୍ୟତୀତ ପୂର୍ବ ପ୍ରକାଶିତ ତଥ୍ୟର ଏକ ପ୍ରକାର ଚର୍ବିତଚର୍ବଣ କହିଲେ ଅତ୍ୟୁକ୍ତି ହେବନାହିଁ । କବିଙ୍କ ବଂଶଧର ଚକ୍ରପାଣିଙ୍କ ଦୈନିକ ପଞ୍ଜି ଅନୁଯାୟୀ କବିଙ୍କର ଜନ୍ମ ସାଲ ସହ (ଖ୍ରୀ: ୧୭୮୪, ଆଷାଢ଼, ଶୁକ୍ଳ, ପ୍ରତିପଦ) ଶ୍ରୀ ପାଣିଗ୍ରାହୀଙ୍କ ଦତ୍ତ ଜନ୍ମ ସାଲର (ଖ୍ରୀ: ୧୭୭୭, ଆଶ୍ୱିନ, ଶୁକ୍ଳ, ଦଶମୀ) ଅମେଳ ଘଟୁଛି ।

ଶ୍ରୀ ପାଣିଗ୍ରାହୀଙ୍କ ସଂକଳିତ ଏ ଗ୍ରନ୍ଥାବଳୀରେ ୪୬୮ଟି ଗୀତ ସନ୍ନିବିଷ୍ଟ ହୋଇଛି । ସେଥିମଧ୍ୟରୁ ପୂର୍ବରୁ ପ୍ରକାଶିତ ହୋଇ ନଥିବା ୮୪ଟି ନୂତନ ଗୀତ ଏଥିରେ ଦେଖାଯାଏ । ବୈଷ୍ଣବ ଚରଣଙ୍କ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ୮୪ଟି ନୂତନ ଗୀତ ସହିତ ଏ ଗ୍ରନ୍ଥାବଳୀର ୮୪ଟି ନୂତନ ଗୀତର ମେଳ ରହିଛି । ରାମକୃଷ୍ଣ ଓ କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀର ୫୪ଟି ଗୀତ ପାଣିଗ୍ରାହୀ ସମ୍ପାଦିତ ଗ୍ରନ୍ଥାବଳୀରେ ନାହିଁ । ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ ଯେଉଁ ନୂତନ ଗୀତ ସହ ପାଣିଗ୍ରାହୀ ସମ୍ପାଦିତ ଗ୍ରନ୍ଥାବଳୀର ନୂତନ ଗୀତର ମେଳ ରହିଛି, ସେଗୁଡ଼ିକ ମୁଖ୍ୟତଃ ରାଧାକୃଷ୍ଣ ବନ୍ଦନା, ମନଃଶିକ୍ଷା, ସାମ୍ପ୍ରଦାୟିକ ଓ ତତ୍ତ୍ୱମୂଳକ । ଏ ପ୍ରକାର ଗୀତ ରଚନା ଅପେକ୍ଷାକୃତ ସହଜ ହୋଇଥିବାରୁ ଏଗୁଡ଼ିକର ସଂଖ୍ୟା ଉଭୟ ଗ୍ରନ୍ଥାବଳୀରେ ଅଧିକ । ଏଗୁଡ଼ିକ ମଧ୍ୟରୁ କେତେକ ଗୋପାଳକୃଷ୍ଣଙ୍କ ରଚନା କି ନୁହେଁ, ସନ୍ଦେହ ଜାତ ହୁଏ (ପରିଶିଷ୍ଟ : ଦୁଇ ଦ୍ରଷ୍ଟବ୍ୟ) । ରାଧାକୃଷ୍ଣଙ୍କର ପୂର୍ବରାଗ, ମାନ, ବିରହ, ପ୍ରେମ ବୈଚିତ୍ର୍ୟ, ଲୀଳାବର୍ଦ୍ଧନକାରିଣୀ ସଖୀମାନଙ୍କର ସେବା ଓ ବୈଚିତ୍ର୍ୟମୟ ଅନୁଭୂତି ମୂଳକ ନୂତନ ଗୀତର ସଂଖ୍ୟା ଉଭୟରେ କମ୍, କାରଣ ଏ ପ୍ରକାର ଗୀତ ରଚନା ପ୍ରତିଭା ତଥା ସ୍ୱକୀୟ ଅନନ୍ୟ ଶୈଳୀ-ସାପେକ୍ଷ ହୋଇଥିବାରୁ ଏହା ସାମ୍ପ୍ରଦାୟିକ ଧରାବନ୍ଧା ଗୀତ ଅପେକ୍ଷା କଷ୍ଟକର । ଅନ୍ୟ କେହି ଏ ପ୍ରକାର ଗୀତ ରଚନା କରି କବିଙ୍କ ନାମରେ ଭଣିତା କଲେ ପୃଥକ୍ ବାରି ହେବାର ସମ୍ଭାବନା ବେଶୀ ।

ସୁପ୍ରସିଦ୍ଧ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଆତ୍ମଜୀବନୀ 'କୁମ୍ଭାର ଚକ'ରୁ (୯୧) ଜଣାଯାଏ ଯେ ସାହାଣ ବୈଷ୍ଣବ ଭଜନ (ଭଗବାନ୍ ମେହେର ପଟ୍ଟନାୟକ) ଓ ମୋହନ ଗୋସ୍ୱାମୀ ପ୍ରଭୃତି ଯାତ୍ରା ପାଇଁ ରାଧାକୃଷ୍ଣ ଲୀଳାତ୍ମକ ଗୀତ ରଚନା କରୁଥିଲେ । ମନେହୁଏ, ବୈଷ୍ଣବ ଭଜନ ପ୍ରଚାରିତ ବହୁ ଗୀତ ଗୋପାଳକୃଷ୍ଣଙ୍କ ନାମରେ ଭଣିତା କରାଯାଇ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସନ୍ନିବେଶ କରି, ସମ୍ପାଦକ ଓ ସମୀକ୍ଷକ ମାନଙ୍କୁ ଗୋଳକ-ଧନ୍ଦାରେ ପକାଇଛନ୍ତି ।।

ବୈଷ୍ଣବ ଭଜନ ସମ୍ପାଦିତ ଗ୍ରନ୍ଥାବଳୀ ସନ୍ନିବିଷ୍ଟ ନୂତନ ଗୀତ ସଂଗୃହୀତ ହୋଇ ଯାଇଥିଲା । ପାଣିଗ୍ରାହୀଙ୍କର ନୂତନ ଗୀତ ବ୍ୟତୀତ ଯେଉଁ ୮୦ଟି ନୂତନ ଗୀତ ତାଙ୍କ (ଶ୍ରୀ ପାଣିଗ୍ରାହୀ) ସମ୍ପାଦିତ ଗ୍ରନ୍ଥାବଳୀରେ ଦେଖାଯାଏ (ଯାହା ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଓ ବାବାଜୀ ବୈଷ୍ଣବ ଭଜନ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଦେଖାଯାଏନା)। ସେଥି ମଧ୍ୟରୁ ଆତ୍ମ ପ୍ରାର୍ଥନା, ବନ୍ଦନା ଓ ମନଃଶିକ୍ଷାମୂଳକ ଗୀତର ସଂଖ୍ୟା ୧୧, ବୃନ୍ଦାବନରେ ରାଧାକୃଷ୍ଣଙ୍କର ପ୍ରେମଲୀଳାତ୍ମକ ଗୀତର ସଂଖ୍ୟା ୬୪, ବାତ୍ସଲ୍ୟ ରସାତ୍ମକ ଗୀତର ସଂଖ୍ୟା ୫ଟି, ମାଥୁର ଶୀର୍ଷକ ଗୀତ ୨ଟି ଏବଂ ଆଦ୍ୟ ରସର ଗୀତ ୨ଟି । ଏ ଗୁଡ଼ିକୁ ସତର୍କ ଭାବେ ସଂସ୍କୃତ ସମୀକ୍ଷା କଲେ ଏହା ପ୍ରମାଣ ହୁଏ ଯେ ଏତନ୍ମଧ୍ୟରୁ ଅଧିକାଂଶ ଗୀତ ଗୋପାଳକୃଷ୍ଣଙ୍କ ରଚନା ନୁହେଁ, ଅପର କବିଙ୍କ ନାମରେ ଭଣିତା ହୋଇଛି । ଗଞ୍ଜାମ ଅଞ୍ଚଳର କେହି ଜଣେ ବା ଏକାଧିକ ତଥାକଥିତ କବି କବିସୂର୍ଯ୍ୟ ବଳଦେବଙ୍କର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ', ଲକ୍ଷ୍ମୀକର ଚମ୍ପୂ ଓ ସଙ୍ଗୀତ କଳ୍ପଲତାର ଗୀତ ଆଦର୍ଶରେ ମୁଖ୍ୟତଃ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଆଦର୍ଶରେ ଏ ଗୁଡ଼ିକ ରଚନା କରି ଗୋପାଳକୃଷ୍ଣଙ୍କ ନାମରେ ଭଣିତା କରିଛନ୍ତି । କବିସୂର୍ଯ୍ୟ ବଳଦେବଙ୍କ ଗୀତ ପରିକଳ୍ପନା, ରାଗ ଓ ପଦ ପରମ୍ପରାର ପ୍ରଭାବ ବହୁ ଗୀତରେ ପରିଦୃଷ୍ଟ ହୁଏ ।।

କବିସୂର୍ଯ୍ୟଙ୍କର ଆଦର୍ଶରେ ଲଳିତା, ରାଧା ଏବଂ ଲଳିତା ଓ କୃଷ୍ଣଙ୍କ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ଯେଉଁ କେତେକ ନୂତନ ଗୀତର ସନ୍ନିବେଶ ହୋଇଛି, ସେ ଗୁଡ଼ିକରେ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ଲଳିତା ଚରିତ୍ରର ସୌନ୍ଦର୍ଯ୍ୟ ପରିଦୃଷ୍ଟ ହୁଏନା । ଲଳିତା ଚରିତ୍ର କବିସୂର୍ଯ୍ୟଙ୍କ ହାତରେ ଯେପରି ଶିଳ୍ପସୃଷ୍ଟିର ଚୂଡ଼ାନ୍ତ ସ୍ପର୍ଶ ଗ୍ରହଣ କରିଛି, ଏଥିରେ ତା'ର ଅଭାବ ସ୍ପଷ୍ଟ ଭାବରେ ଉପଲବ୍ଧ ହୁଏ । ଏ ଗୁଡ଼ିକରେ କବିସୂର୍ଯ୍ୟଙ୍କର ପ୍ରଭାବ ସ୍ପଷ୍ଟ ହୋଇ ପଡ଼ିଛି । ପୁଣି ସଖୀ ଲଳିତା ଶ୍ରୀକୃଷ୍ଣଙ୍କ ଐଶ୍ୱର୍ଯ୍ୟ ଭାବରେ ସଚେତନ ହୋଇ ଉଠିବା କୌଣସି ଶୁଦ୍ଧା ଭକ୍ତର, ଉପାସକ ବା ସାଧକ କବିଙ୍କ ରଚନାରେ ଦେଖାଯାଏ ନାହିଁ (୯୨) । ତଥାକଥିତ କବି ଏ ପ୍ରକାର ଭାବ ସଚେତନ କରାଇ ଲଳିତା ଚରିତ୍ରର ପାରମ୍ପରିକତା ଓ ମହତ୍ତ୍ୱ କ୍ଷୁଣ୍ଣ କରିଛନ୍ତି ।

---

(୯୧) କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, କୁମ୍ଭାର ଚକ, ୧ମ ସଂ., ୧୯୭୫, ପୃ-୨୩୧

(୯୨) 'ଧାର ନ ହୁଅ ବଂଶୀଧର ହେ !' ଗୀତ ଦ୍ରଷ୍ଟବ୍ୟ, ଗୋ.କୃ.ଗ୍ର. ସମ୍ପା ସ.କୁ.ପା. ପୃ-୩୦୧

ଶ୍ରୀ ପାଣିଗ୍ରାହୀ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ କେତେକ ନୂତନ ଗୀତର ସନ୍ନିବେଶ ହୋଇଥିଲେ ମଧ୍ୟ ସମ୍ପାଦକ ଯଥାର୍ଥ ଭାବରେ ଗ୍ରନ୍ଥାବଳୀ ସମ୍ପାଦନା କରିନାହାନ୍ତି । ଦୁଇଟି ଗୀତର ସଂଗ୍ରହ ସମ୍ପର୍କରେ ପାଦଟୀକାରେ ଉଲ୍ଲେଖ କରିବା ବ୍ୟତୀତ (୧୩) ଅନ୍ୟ ଗୀତଗୁଡ଼ିକର ସଂଗ୍ରହ କେଉଁଠାରୁ ଓ କାହାଠାରୁ କରିଛନ୍ତି ଏବଂ ବାବାଜୀ ସମ୍ପାଦିତ ଗ୍ରଂଥାବଳୀର ଗୀତ ସହିତ ମେଳ ଖାଉଥିବା ଗୀତଗୁଡ଼ିକ ସେଠାରୁ ବା ଅନ୍ୟ କେଉଁଠାରୁ ସଂଗ୍ରହ କରିଛନ୍ତି ସେ ସମ୍ପର୍କରେ କିଛି ଉଲ୍ଲେଖ କରିନାହାନ୍ତି । ପାଦଟୀକା ଗୁଡିକ ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଅବଲମ୍ବନରେ ଲିଖିତ । ରାମକୃଷ୍ଣଙ୍କ ପରି 'ଶ୍ରୀକୃଷ୍ଣ କର୍ଣ୍ଣାମୃତ'କୁ 'ଶ୍ରୀକୃଷ୍ଣ କରୁଣାମୃତ' ବୋଲି ଉଲ୍ଲେଖ କରିଛନ୍ତି (ପୃ. ୧୧୪, ପାଦଟୀକା) । ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ ଓ ବୈଷ୍ଣବ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଗୀତ ଗୁଡ଼ିକର ଯେଉଁ ବସ୍ତୁ ଓ ରସାନୁକୂଳ ସଜ୍ଜୀକରଣ ପରିଦୃଷ୍ଟ ହୁଏ, ପାଣିଗ୍ରାହୀ ସମ୍ପାଦିତ ଗ୍ରନ୍ଥାବଳୀରେ ତାହା ଦେଖାଯାଏନା । ଗୀତ ଗୁଡ଼ିକରେ ମୁଦ୍ରଣ ଜନିତ ଅଶୁଦ୍ଧି ପ୍ରଚୁର ରହିଛି । ଗୋଟିଏ ସ୍ଥଳରେ ସୂଚୀ ନିର୍ଦ୍ଦିଷ୍ଟ ଗୀତ ଗ୍ରନ୍ଥାବଳୀରେ ନାହିଁ (୧୪); ପୁଣି ସୂଚୀରେ ଭୁଲ କରି ଗୀତର ପ୍ରଥମ ଚରଣର ଅଂଶମାନ ଦିଆଯାଇଥିବାରୁ ପାଠକ ଓ ସମୀକ୍ଷକ ବିଶେଷ ଅସୁବିଧାର ସମ୍ମୁଖୀନ ହୁଏ । ବୈଷ୍ଣବ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପ୍ରକାଶନର ଦଶବର୍ଷ ପରେ ପ୍ରକାଶିତ ଏ ଗ୍ରନ୍ଥାବଳୀ ଅଧିକ ପ୍ରାମାଣିକ ଓ ବିଜ୍ଞାନ ସମ୍ମତ ହେବାର ଥିଲା ।

**ମନ୍ତବ୍ୟ** : ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ପ୍ରକାଶ କାଳରେ ଉଭୟ ସମ୍ପାଦକ ଟିକିଏ ସତର୍କ ହୋଇ ନୂତନ ସଂଗୃହୀତ ଗୀତଗୁଡ଼ିକ ମଧ୍ୟରୁ ଖାଣ୍ଟି ଗୋପାଳକୃଷ୍ଣଙ୍କ ରଚନା ସନ୍ନିବିଷ୍ଟ କରିଥିଲେ ଗବେଷକ ଓ ସମୀକ୍ଷକମାନଙ୍କୁ ଅଯଥା ପରିଶ୍ରମରୁ ରକ୍ଷା ମିଳି ଥାଆନ୍ତା ଏବଂ କବିଙ୍କ ପ୍ରତିଭାର ଯଥାର୍ଥ ପୂଜା ହୋଇପାରିଥାନ୍ତା । ସ୍ଫୀତ କଳେବର ନହେଲେ ଗ୍ରନ୍ଥାବଳୀ ହୋଇ ପାରିବ ନାହିଁ ବୋଲି ସମ୍ପାଦକ ତଥା ସଂଗ୍ରାହକ ମାନଙ୍କ ମନରେ ଯଦି ଧାରଣା ଥାଏ, ତା'ହେଲେ ଏ ଧାରଣା ଯେ ଭ୍ରାନ୍ତ, ଅସାହିତ୍ୟିକ ଓ ଜାତୀୟ ସଂସ୍କୃତି ପକ୍ଷରେ କ୍ଷତିକାରକ, ଏ ସମ୍ପର୍କରେ ସମ୍ପାଦକ ଓ ପ୍ରକାଶକମାନେ ସଚେତ ହେବା ବିଧେୟ । ଗୁଡ଼ିଏ ଅପାଙ୍କ୍ତେୟ ଗୀତ ଭର୍ତ୍ତି କରିବା ଦ୍ୱାରା ସେମାନେ କବିଙ୍କର ପ୍ରତିଭା ଓ ସାଧନାର ଯେ ଅବମାନନା କରିଛନ୍ତି, ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ଏଣୁ ସନ୍ଦର୍ଭର ପ୍ରସ୍ତୁତି ପାଇଁ ସରୋଜ କୁମାର ସଂକଳିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀକୁ ଏକ ପ୍ରାମାଣିକ ସଂଗ୍ରହ ଭାବରେ ଗ୍ରହଣ କରିବାରେ ଯଥେଷ୍ଟ ବାଧା ରହିଛି । ବର୍ତ୍ତମାନ ଗବେଷଣା ଓ ସମୀକ୍ଷା ଦୃଷ୍ଟିରୁ ଗୋପାଳକୃଷ୍ଣ ରଚନାବଳୀର ଏକ ବିଜ୍ଞାନ ସମ୍ମତ

(୧୩) (କ) 'ଦୀନବନ୍ଧୁ ହେ ! ହରି ଜଗନ୍ନିବାସ,' ଗ୍ରଂ. ପୃ. ୧୫୫;
(ଖ) 'ସରଳିଣୀ ସୁଖସେନ୍ଦ୍ରହ' ଗ୍ରଂ, ପୃ. ୧୯୫

(୧୪) 'ଶରଧାରେ କର ମନ—ଗ୍ରଂ. ର ସୂଚୀରେ ପୃ. ୩୦୬ ବୋଲି ଉଲ୍ଲେଖ କରାଯାଇଛି, କିନ୍ତୁ ସେହି ପୃଷ୍ଠାରେ ଏ ଗୀତ ନାହିଁ ।

ସଂକଳନର ଆବଶ୍ୟକତା ଦେଖା ଦେଇଛି । ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀ (ତୃତୀୟ ସଂସ୍କରଣ) ସଂପାଦନା ଦୃଷ୍ଟିରୁ ବିଜ୍ଞାନ ସମ୍ମତ ନ ହେଲେ ମଧ୍ୟ ସଙ୍ଗୀତ ଗୁଡ଼ିକର ପିତୃତ୍ୱ ସମ୍ପର୍କରେ ସନ୍ଦେହ କରିବାର କିଛି କାରଣ ନାହିଁ ।

**(ଖ) ପଦ୍ୟାବଳୀ ନା ପଦାବଳୀ :**

**'ପଦ' ଶବ୍ଦ ପ୍ରୟୋଗର ପ୍ରାଚୀନତା** : ବଙ୍ଗ ଦେଶରେ ବୈଷ୍ଣବ ଗୀତ ସମ୍ପର୍କରେ ଗୀତକର୍ତ୍ତାମାନେ 'ପଦ' ଶବ୍ଦଟିକୁ ଶ୍ରଦ୍ଧାର ସହିତ ପ୍ରୟୋଗ କରିଥାନ୍ତି । ଏ ଶବ୍ଦଟିର ପ୍ରୟୋଗର ପ୍ରାଚୀନତା ଏଦ୍ୱାର ଲୋକପ୍ରିୟତାର ସ୍ୱାକ୍ଷର ବହନ କରିଛି । ଓଡ଼ିଶାରେ ଯେତୋଟି ବୈଷ୍ଣବ-ଗୀତ ରଚନାର ସଂଗ୍ରହ ପ୍ରକାଶ ପାଇଛି ସେ ଗୁଡ଼ିକ ମୁଖ୍ୟତଃ 'ପଦ୍ୟାବଳୀ' ଶିରୋନାମା ଗ୍ରହଣ କରିଛନ୍ତି, ଯଥା—ବନମାଳୀ ପଦ୍ୟାବଳୀ, ବେଣୁଧର ପଦ୍ୟାବଳୀ, ହରିବନ୍ଧୁ ପଦ୍ୟାବଳୀ ଇତ୍ୟାଦି । ବଙ୍ଗୀୟ ପଦାବଳୀ ଆଦର୍ଶରେ ସାମ୍ପ୍ରତିକ କାଳରେ ଗୋପାଳକୃଷ୍ଣ ରଚନାବଳୀର ଶିରୋନାମା 'ଗୋପାଳକୃଷ୍ଣ ପଦ୍ୟାବଳୀ' ରଖା ନ ଯାଇ 'ଗୋପାଳକୃଷ୍ଣ ପଦାବଳୀ' ରଖାଯାଉଛି ।

**'ପଦାବଳୀ' ଓ ପଦ୍ୟାବଳୀ ଉଭୟ ଶବ୍ଦ ପ୍ରୟୋଗର ସମୀଚୀନତା** : ତେବେ ପଦାବଳୀ କିମ୍ବା ପଦ୍ୟାବଳୀ କେଉଁ ଶବ୍ଦଟିର ପ୍ରୟୋଗ ଯୁକ୍ତିଯୁକ୍ତ, ଏ ସମ୍ପର୍କରେ ପାଠକ ଓ ସମୀକ୍ଷକ ମନରେ ପ୍ରଶ୍ନ ଉଠିବା ସ୍ୱାଭାବିକ । ସଂସ୍କୃତ ଶ୍ଳୋକଗୁଡ଼ିକ ଚାରିପାଦ ବିଶିଷ୍ଟ । ପ୍ରତ୍ୟେକ ପଙ୍‌କ୍ତିକୁ ପାଦ କୁହାଯାଏ । ପାଦଯୁକ୍ତ ରଚନା 'ପଦ୍ୟ' ନାମରେ କଥିତ । କାଳକ୍ରମେ କବିତା ଅର୍ଥରେ 'ପଦ୍ୟ' ଶବ୍ଦର ପ୍ରୟୋଗ ହୋଇଛି । ପରେ ପରେ ଚାରିପାଦ (ଚରଣ) ନଥାଇ ପାଦ ସଂଖ୍ୟା କମ୍ ବା ବେଶୀ ହୋଇ ଲାକ୍ଷଣିକ ପ୍ରୟୋଗରେ ପଦ୍ୟ ନାମରେ କଥିତ ହୋଇ ଆସୁଛି (୧୫) । ଏହି ଦୃଷ୍ଟିରୁ ବିଚାର କଲେ 'ପଦ୍ୟାବଳୀ' ଶବ୍ଦର ପ୍ରୟୋଗ ଅସମୀଚୀନ ବୋଧ ହୁଏ ନାହିଁ ।

ପଦାବଳୀ ଶବ୍ଦ ପ୍ରସଙ୍ଗ ବିଚାର କଲେ ଦେଖାଯିବ ଯେ 'ପଦାବଳୀ' ଶବ୍ଦର ଉତ୍ସ ଜୟଦେବଙ୍କର 'ଗୀତଗୋବିନ୍ଦ'ର ମଧୁର କୋମଳ କାନ୍ତ ପଦାବଳୀ (୧୬) । ସପ୍ତମ ଶତାବ୍ଦୀରେ ଆଲଙ୍କାରିକ ଆଚାର୍ଯ୍ୟ ଦଣ୍ଡୀ ପଦ ସମୁଚ୍ଚୟ (ସମୂହ) ଅର୍ଥରେ ପଦାବଳୀ ଶବ୍ଦର ପ୍ରୟୋଗ କରିଥିଲେ (୧୭) । ବଙ୍ଗ ଦେଶର ବୈଷ୍ଣବମାନେ ଦୀର୍ଘକାଳ ଧରି 'ପଦାବଳୀ'

---

(୧୫) ପଦ୍ୟଂ ଚତୁଷ୍ପଦୀ ତଚ୍ଚ ବୃତ୍ତଂ ଜାତିରିତି ଦ୍ୱିଧା । (ଗଙ୍ଗାଦାସ, ଛନ୍ଦୋମଞ୍ଜରୀ, ୧; ୪)

(୧୬) ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳମ୍ ।
ମଧୁରକୋମଳକାନ୍ତପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।

ଶ୍ରୀ ଗୀ. ଗୋ., ସଂପା: ହରେକୃଷ୍ଣ ମୁଖୋପାଧ୍ୟାୟ, ୪ର୍ଥ ସଂ., ୧ମ ସର୍ଗ, ଶ୍ଳୋ. ୩, ପୃ-୫

(୧୭) 'ଶରୀରଂ ତାବଦିଷ୍ଟାର୍ଥବ୍ୟବଚ୍ଛିନ୍ନା ପଦାବଳୀ' (ଦଣ୍ଡୀ, କାବ୍ୟାଦର୍ଶ ୧।୧୦)

ଶବ୍ଦକୁ ଯୋଗରୂଢ଼ ଭାବେ ଗାନ ବା ଗୀତ ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରନ୍ତି ॥ ଓଡ଼ିଶାର ପ୍ରାଚୀନ ବୈଷ୍ଣବ କବିମାନେ ରାଧାକୃଷ୍ଣ ଲୀଳାତ୍ମକ ରଚନାମାନଙ୍କୁ ସୂଚିତ କରିବାପାଇଁ କୌଣସି ସ୍ୱତନ୍ତ୍ର ନାମ ବ୍ୟବହାର କରି ନ ଥିଲେ ॥ ବଙ୍ଗଳା 'ପଦାବଳୀ' ଅନୁସରଣରେ ଆଧୁନିକ କାଳରେ କେତେକ ଓଡ଼ିଆ ବୈଷ୍ଣବ-ଗୀତିକବିତା ସଂଗ୍ରହକୁ "ପଦାବଳୀ" ନାମରେ ଅଭିହିତ କରାଯାଇଛି (୧୮) ॥ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତିଙ୍କ ମତରେ "ପଦ" ଶବ୍ଦ ସଙ୍ଗୀତ ଅର୍ଥର ସୂଚକ ହେଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଏହାର ପ୍ରୟୋଗ ପରମ୍ପରା ଦୃଷ୍ଟିରୁ ଏହା ଭିନ୍ନ ଅର୍ଥ ବ୍ୟଞ୍ଜକ (କାବ୍ୟ କବିତାର ପାଦ ବା ଚରଣର ସମଷ୍ଟିକୁ ପଦ) ॥ ସେ 'ପଦାବଳୀ' ଶବ୍ଦର ପ୍ରୟୋଗ ସମର୍ଥନ ନ କରି "ବୈଷ୍ଣବ ଗୀତ କବିତା" ନାମର ସଂଗତ ପ୍ରୟୋଗ ସମ୍ପର୍କରେ ସ୍ୱମତ ପ୍ରକାଶ କରିଛନ୍ତି । ତେବେ ବଙ୍ଗଳାରେ ଯୋଗରୂଢ଼ ଅର୍ଥରେ ଯେପରି ପଦ କହିଲେ ଗାନ ବା ଗୀତକୁ ବୁଝାଇଥାଏ, ସେ ଅର୍ଥରେ ସାମ୍ପ୍ରତିକ କାଳରେ ଓଡ଼ିଆ ବୈଷ୍ଣବ ଗୀତ ରଚନାଗୁଡ଼ିକୁ "ପଦାବଳୀ" କହିଲେ କିଛି ଅସଙ୍ଗତ ବୋଧ ହେଉ ନାହିଁ ॥ କାରଣ ଓଡ଼ିଶାର ଜ୍ଞାନମିଶ୍ରା ଭକ୍ତିମାର୍ଗର ଗୀତକର୍ତ୍ତାମାନେ ଦୀର୍ଘ କାଳ ଧରି ବଙ୍ଗର ଗୌଡ଼ୀୟ ବୈଷ୍ଣବ ସାଧକ ଏବଂ ବଙ୍ଗଳା ଓ ବ୍ରଜବୁଲି ପଦାବଳୀ ସଂସ୍ପର୍ଶରେ ଆସିଛନ୍ତି ଏବଂ ଏମାନଙ୍କର ସାଧନା ଓ ରଚନା କ୍ଷେତ୍ରରେ ପଦେ ପଦେ ସେମାନଙ୍କର ପଦାଙ୍କ ଅନୁସରଣ କରିଛନ୍ତି ॥ ଡକ୍ଟର ମହାନ୍ତି ଓଡ଼ିଶାରେ ବୈଷ୍ଣବ ଗୀତ ରଚନାବଳୀ ସମ୍ପର୍କରେ "ପଦ୍ୟାବଳୀ"ର ପ୍ରୟୋଗକୁ ଭ୍ରମାତ୍ମକ କହିଛନ୍ତି; କିନ୍ତୁ ପୂର୍ବର ଆଲୋଚନା ଦୃଷ୍ଟିରୁ "ପଦ୍ୟାବଳୀ" ଶବ୍ଦର ପ୍ରୟୋଗ କାହିଁକି ଭ୍ରମାତ୍ମକ ହେବ, ବୁଝାଯାଉ ନାହିଁ ॥ ତେଣୁ ମୋ ମତରେ ଉଭୟ "ପଦ୍ୟାବଳୀ" ଓ "ପଦାବଳୀ" ଶବ୍ଦର ପ୍ରୟୋଗ ଅଯୌକ୍ତିକ ନୁହେଁ ॥

**"ରଚନାବଳୀ" ଶବ୍ଦର ପ୍ରୟୋଗ କାହିଁକି ? :** କିନ୍ତୁ ଏହି ଉଭୟ ଶବ୍ଦର ବ୍ୟବହାରର ସମୀଚୀନତା ଥିବା ସତ୍ତ୍ୱେ ଏକ ପ୍ରକାର ଅଯଥା ବିବାଦମାନ ପରିସ୍ଥିତି ଏଡ଼ାଇବା ପାଇଁ ବ୍ୟାପକ, ଗମ୍ଭୀର ଓ ସୂକ୍ଷ୍ମାର୍ଥ ବ୍ୟଞ୍ଜକ "ରଚନାବଳୀ" ଶବ୍ଦର ପ୍ରୟୋଗକୁ ସମୀଚୀନ ମନେ କରି ସନ୍ଦର୍ଭର ଏ ପ୍ରକାର ନାମକରଣ କରିଛି ॥ କାରଣ "ରଚନା" ଶବ୍ଦଟି ସାଧାରଣତଃ ସୃଷ୍ଟି, ନିର୍ମାଣ, ଗ୍ରନ୍ଥନ, ଗୁମ୍ଫନ, ସ୍ଥାପନ, ସନ୍ନିବେଶ ଓ ବିନ୍ୟାସ ପ୍ରଭୃତି ଅର୍ଥରେ ବ୍ୟବହୃତ ହୋଇଥାଏ ଏବଂ ଏହା ଗଦ୍ୟ ଓ ପଦ୍ୟମୟ ଯେ କୌଣସି ସାହିତ୍ୟ ସୃଷ୍ଟିକୁ ବୁଝାଇଥାଏ ॥ ଆଲଙ୍କାରିକ ଗ୍ରନ୍ଥରେ କାବ୍ୟ ସୃଷ୍ଟି (ନିର୍ମାଣ) ଅର୍ଥରେ "ରଚନା" ଶବ୍ଦର ବହୁଳ ବ୍ୟବହାର ପରିଦୃଷ୍ଟ ହୁଏ ॥ "ଅଳଙ୍କାର କୌସ୍ତୁଭ"କାର କବି କର୍ଣ୍ଣପୂରଙ୍କ ମତରେ 'ଅସାଧାରଣ ଚମତ୍କାରକାରିଣୀ ରଚନା ହି ନିର୍ମିତିଃ ।' ରଚନା ଶବ୍ଦର ଏ ବ୍ୟାପକ ପରମ୍ପରା ଦୃଷ୍ଟିରୁ ମୋର ସନ୍ଦର୍ଭର ନାମକରଣରେ ପ୍ରୟୋଗଗତ ସମୀଚୀନତା ସହୃଦୟ ପାଠକ ଓ ସମୀକ୍ଷକଙ୍କ ଦ୍ୱାରା ଉପଲବ୍ଧ ହେବ ବୋଲି ଆଶା କରାଯାଏ (୧୯) ॥

---

(୧୮) ଡକ୍ଟର ମହାନ୍ତି, ଓଡ଼ିଆ ଗୀତ କାବ୍ୟ, ଗ୍ରନ୍ଥମନ୍ଦିର, କଟକ, ୧୯୬୭

(୧୯) ଡଃ ଶଶିଭୂଷଣ ଦାଶଗୁପ୍ତ, ବାଂଲା ସାହିତ୍ୟର ଏକ୍ ଦିକ୍, ୧ମ ସଂ, ପୃ.୧

### (ଗ) ଗୋପାଳକୃଷ୍ଣଙ୍କର ଗୀତ ଗୁଡ଼ିକର ଶ୍ରେଣୀବିଭାଗ :

**ଭାଷା ଦୃଷ୍ଟିରୁ**—ଗୋପାଳକୃଷ୍ଣଙ୍କର ଗୀତଗୁଡ଼ିକୁ ଭାଷା ଦୃଷ୍ଟିରୁ ସ୍ଥୂଳତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା ସଂସ୍କୃତ ରଚନା ଓ ଓଡ଼ିଆ ରଚନା । ଓଡ଼ିଆ ଗୁଡ଼ିକ ମଧ୍ୟରେ କେତୋଟି ମୂଳ ସଂସ୍କୃତ ରଚନାର ଅନୁବାଦ, କେତୋଟି ମର୍ମାନୁବାଦ, କେତୋଟି ସଂସ୍କୃତ ଶ୍ଳୋକର ଭାବାଶ୍ରୟରେ, ଆଉ କେତୋଟି ସଂସ୍କୃତ ଓ ଓଡ଼ିଆର ସମ୍ମିଶ୍ରଣରେ ରଚିତ । ଅବଶିଷ୍ଟ ଗୁଡ଼ିକ ଓଡ଼ିଆରେ କବିଙ୍କର ନିଜସ୍ୱ ସୃଷ୍ଟି ।

**ଅଭିମୁଖ୍ୟ ଓ ବିଷୟବସ୍ତୁ ଦୃଷ୍ଟିରୁ**--ଆଭିମୁଖ୍ୟ ଓ ବିଷୟବସ୍ତୁ ଦୃଷ୍ଟିରୁ ତାଙ୍କର ରଚନାବଳୀକୁ ନିମ୍ନୋକ୍ତ ଭାବରେ ବିଭକ୍ତ କରାଯାଇପାରେ, ଯଥା—

(୧) ଶୁଦ୍ଧାଭକ୍ତ ସମ୍ପ୍ରଦାୟ ସୁଲଭ ଭକ୍ତ ତଥା ସାଧକୋଚିତ ଗୀତ ସମୂହ ।

(କ) ଗୁରୁ ଓ ବୈଷ୍ଣବ ମହାଜନ ଏବଂ ସପାର୍ଷଦ ଚୈତନ୍ୟ ବନ୍ଦନା ଓ ଚୈତନ୍ୟ ଲୀଳା ସମ୍ପର୍କୀୟ ଗୀତ; (ଖ) ରାଧା ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ ଭକ୍ତ କବିଙ୍କର ସ୍ତୁତି, ବନ୍ଦନା, ପ୍ରାର୍ଥନା, ସ୍ମରଣ, ନାମ, କୀର୍ତ୍ତନ ଓ ଜଣାଣ; (ଗ) ସାଧକ ଭକ୍ତର ବୈରାଗ୍ୟ ଓ ଜୀବନର ପରମ ଲକ୍ଷ୍ୟ ବ୍ୟଞ୍ଜକ ମନଃଶିକ୍ଷାମୂଳକ ଗୀତ; (ଘ) ଭକ୍ତର ଲାଳସା (ସ୍ୱାଭୀଷ୍ଟ ଓ ସାଧକ ଦେହୋଚିତ), ବିଜ୍ଞପ୍ତି, ଦୈନ୍ୟବୋଧିକା, ସ୍ୱାନୁଭୂତି, (ଗୁରୁଭକ୍ତ ସମ୍ପର୍କୀୟ), ବିଳାପ (ବିରହାନୁଭୂତି ବ୍ୟଞ୍ଜକ) ଓ ବୈଷ୍ଣବ ତୀର୍ଥ ଦର୍ଶନରେ ଅଭିଳାଷ ସୂଚକ ଗୀତ ।

(୨) ବାତ୍ସଲ୍ୟଭାବମୂଳକ ଗୀତ ।

(୩) ରାଧାକୃଷ୍ଣଙ୍କର ପ୍ରେମଲୀଳା ଏବଂ ରାଧାକୃଷ୍ଣଙ୍କ ପ୍ରତି ସଖୀମାନଙ୍କର ଅହୈତୁକୀ ପ୍ରୀତି ଓ ସେବାମୂଳକ ଗୀତ ।

(୪) ଲୌକିକ ନାୟକ ନାୟିକାଙ୍କ ପ୍ରେମ, ମିଳନ ଓ ବିରହ ସମ୍ପର୍କୀୟ ଆଦି ରସାତ୍ମକ ଗୀତ ସମୂହ ।

**ରସ ଦୃଷ୍ଟିରୁ**—ରସ ଦୃଷ୍ଟିରୁ କବିଙ୍କର ଗୀତ ସମୂହକୁ ନିମ୍ନୋକ୍ତ ଭାଗରେ ବିଭକ୍ତ କରାଯାଇପାରେ, ଯଥା—

(୧) ଉଜ୍ଜ୍ୱଳ ବା ଶୁଚି (ଶୃଙ୍ଗାର) ରସାତ୍ମକ ଗୀତ ସମୂହ ।
(ରାଧାକୃଷ୍ଣଙ୍କର ପ୍ରେମଲୀଳା, ସଖୀମାନଙ୍କର ରାଧାକୃଷ୍ଣୈକପ୍ରାଣତା, ଭକ୍ତ କବିଙ୍କର ମଞ୍ଜରୀ ଭାବ)

(୨) ଶୃଙ୍ଗାର ରସାତ୍ମକ ଗୀତ ସମୂହ (ଆଦିରସ)
(ଲୌକିକ ନାୟକ ନାୟିକାଙ୍କର ବିରହ ଓ ମିଳନକୁ ଭିତ୍ତି କରି)

(୩) ବାତ୍ସଲ୍ୟରସାତ୍ମକ ଗୀତ ସମୂହ ।

(୪) ଶାନ୍ତରସାତ୍ମକ ଗୀତ ସମୂହ ।

**କାବ୍ୟ ରୂପ ଦୃଷ୍ଟିରୁ**—କାବ୍ୟ ରୂପ ଦୃଷ୍ଟିରୁ କବିଙ୍କର ରଚନାବଳୀକୁ ନିମ୍ନୋକ୍ତ ଭାବରେ ବିଭକ୍ତ କରିଯାଇପାରେ, ଯଥା—ସ୍ତୁତି (ସ୍ତୋତ୍ର), ପ୍ରାର୍ଥନା, କୀର୍ତ୍ତନ, ଅଷ୍ଟକ, ଚଉପଦୀ, ଚଉତିଶା, କୋଇଲି, ଚଟାଉ, ଛାନ୍ଦ ଓ ବୋଲି ।

**ସାମଗ୍ରିକ ପରିକଳ୍ପ**—ବିଭିନ୍ନ ଦୃଷ୍ଟିରୁ ଗୋପାଳକୃଷ୍ଣ ଗୀତି ସମ୍ଭାରର ବିଭାଗୀକରଣ କରାଗଲା; କିନ୍ତୁ ପ୍ରତ୍ୟେକ ବିଭାଗ ସମ୍ପର୍କରେ ବିସ୍ତୃତ ଆଲୋଚନା ସମ୍ଭବ ନୁହେଁ, କାରଣ ଆଲୋଚନା ଦୀର୍ଘ ଓ ପୁନରାବୃତ୍ତି ଦୋଷଦୁଷ୍ଟ ହୋଇପାରେ । ସେଥିପାଇଁ ବିଭିନ୍ନ ବିଭାଗର ସମନ୍ୱୟରେ ଏକ ସାମଗ୍ରିକ ପରିକଳ୍ପ (ଯୋଜନା) ଉପରେ ଧ୍ୟାନ ଦେଇ ଆଲୋଚନା କରାଯାଇଛି । ତେବେ ବିଭିନ୍ନ ପ୍ରକାର ବିଭାଗୀକରଣ ମଧ୍ୟରେ ଭାଷା ଏବଂ ଅଭିମୁଖ୍ୟ ଓ ବିଷୟବସ୍ତୁ ଘଟିତ ବିଭାଗୀକରଣ ଯେ ପ୍ରଧାନ ହୋଇ ଦଣ୍ଡାୟମାନ ହୋଇଛି, ଏଥିରେ ସନ୍ଦେହ ନାହିଁ ।



## ପଞ୍ଚମ ପରିଚ୍ଛେଦ

### ବିଭିନ୍ନ ବିଭାଗର ଆଲୋଚନା (୧) : ଭାଷା ଦୃଷ୍ଟିରୁ : ସଂସ୍କୃତ, ସଂସ୍କୃତର ଅନୁବାଦ ଓ ସଂସ୍କୃତ ପ୍ରଭାବିତ ରଚନା

**ସଂସ୍କୃତ ସ୍ତୋତ୍ର ରଚନା :**

ରାମକୃଷ୍ଣ ଓ କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ସମୁଦାୟ ୩୦୬ଟି ସଙ୍ଗୀତ ଅଛି । ତନ୍ମଧ୍ୟରୁ ସଂସ୍କୃତରେ ଦୁଇଟି ମାତ୍ର, ଅବଶିଷ୍ଟ ଗୁଡ଼ିକ ଓଡ଼ିଆ । କିନ୍ତୁ ଗୋପାଳକୃଷ୍ଣ ଗ୍ରନ୍ଥାବଳୀର (ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ) ୬୧୯ଟି ଗୀତ ମଧ୍ୟରୁ ସଂସ୍କୃତ ରଚନାର ସଂଖ୍ୟା ହେଉଛି ଆଠ ଏବଂ ଅବଶିଷ୍ଟ ଗୁଡ଼ିକ ଓଡ଼ିଆ ରଚନା । ସଂସ୍କୃତ ରଚନା ଗୁଡ଼ିକ ହେଉଛି—(୧) ଶ୍ରୀଗୁରୁପଞ୍ଚକମ୍, (୨) ଶ୍ରୀଶ୍ରୀ ରାଧାନକ୍ଷତ୍ରମାଳା-ସ୍ତୋତ୍ରମ୍, (୩) ଶ୍ରୀଶ୍ରୀ ବୃଷଭାନୁଜା ପ୍ରେମନାମାବଳୀ, (୪) ଶ୍ରୀରାଧାପ୍ରଣମାନନ୍ଦସ୍ତୋତ୍ରମ୍, (୫) ପ୍ରଣାମପ୍ରଶସ୍ତାଖ୍ୟଶ୍ରୀଶ୍ରୀଗୋବିନ୍ଦନାମାମୃତଲହରୀ, (୬) ଶ୍ରୀକୃଷ୍ଣନାମରତ୍ନମାଳା ସ୍ତୋତ୍ରମ୍ (୭) ଶ୍ରୀଶ୍ରୀରାଧିକାସଂପ୍ରାର୍ଥନାନବକମ୍, (୮) ଦୂତୀ ପ୍ରତି ଶ୍ରୀକୃଷ୍ଣ ।

**ସଂସ୍କୃତ ସ୍ତୋତ୍ର ରଚନାର ପରମ୍ପରା :**

ସଂସ୍କୃତ ସ୍ତୋତ୍ର ରଚନା କ୍ଷେତ୍ରରେ କବିଙ୍କ ସମକ୍ଷରେ ରହିଥିଲା ଦୁଇଟି ପରମ୍ପରା, ତାହା ହେଉଛି—(୧) ବର୍ଣ୍ଣନାତ୍ମକ ବା ଦାର୍ଶନିକ ପ୍ରକୃତିର ସଂସ୍କୃତ ସ୍ତୋତ୍ର ପରମ୍ପରା; (୨) ଶୃଙ୍ଗାରାତ୍ମକ ମନୋଭଙ୍ଗୀ, ଚିତ୍ରକଳ୍ପ ଓ ଅଭିବ୍ୟକ୍ତି ବିଶିଷ୍ଟ ନିବିଡ଼ ଆବେଗାତ୍ମକ ପ୍ରେମ ଓ ଭକ୍ତି କାବ୍ୟର ପରମ୍ପରା । ଉଭୟ ପରମ୍ପରାରେ ବ୍ୟକ୍ତିଗତ ସ୍ୱରର ସନ୍ଧାନ ମିଳେ । ଗୋଟିକରେ ଧାର୍ମିକ ଭାବନା ବ୍ୟପଦେଶରେ, ଅନ୍ୟଟିରେ ତା'ର ଆକୃତି ଓ ରଙ୍ଗରେ । ଉଚ୍ଚାଙ୍ଗ ପାରମ୍ପରିକ ସ୍ତୋତ୍ର ରଚନାରେ ଆମେ ଏକ ବୌଦ୍ଧିକ ଆନନ୍ଦ ଓ ନୈତିକ ପ୍ରବଣତା ଲକ୍ଷ୍ୟ କରୁଁ । କିନ୍ତୁ ମଧ୍ୟଯୁଗୀୟ ଧର୍ମ ସମ୍ପ୍ରଦାୟ ଓ ଆବେଗାତ୍ମକ ଭକ୍ତି ଆନ୍ଦୋଳନର ପ୍ରସ୍ତୁର ଫଳରେ ଭକ୍ତି ମୂଳକ ରଚନାର ମୂଳପ୍ରେରଣା ହୁଏ ଏକ ଶୃଙ୍ଗାରାତ୍ମକ ରହସ୍ୟବାଦ (Erotic mysticism) । ଏଥିରେ ପାର୍ଥିବ ଚେତନାର ପରିଚିତ ଭାଷା ଓ ଚିତ୍ରକଳ୍ପରେ ଧାର୍ମିକ କ୍ରିୟା କଳାପର ଅଭିବ୍ୟକ୍ତି ଘଟେ । ଫଳରେ ସଂସ୍କୃତ ଧର୍ମ-କାବ୍ୟରେ ଏକ ନୂତନ ପ୍ରକାଶର ପରମ୍ପରା ଲକ୍ଷିତ ହୋଇଛି ଏବଂ ଶୃଙ୍ଗାର-ସାହିତ୍ୟର

ଅତୀବ ନିକଟବର୍ତ୍ତୀ ହୋଇଛି । ଫଳରେ ଶକ୍ତିଶାଳୀ ଯୌନଚେତନା ଏକ ଗଭୀର ଧାର୍ମିକ ଆବେଗରେ ରୂପାନ୍ତରିତ ହୋଇଛି (୧) । ଗୀତଗୋବିନ୍ଦ ଓ କୃଷ୍ଣକର୍ଣ୍ଣାମୃତକୁ ଏହାର ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣ କରାଯାଇପାରେ । ଅଦ୍ୱୈତ ବୈଦାନ୍ତିକ ସ୍ତୋତ୍ର, କାଶ୍ମୀରୀୟ ଶୈବ ସ୍ତୋତ୍ର, ଜୈନ ଓ ବୌଦ୍ଧ ମହାଯାନ ସ୍ତୋତ୍ର, ଦକ୍ଷିଣ ଭାରତୀୟ ଶୈବ ଓ ବୈଷ୍ଣବ ସ୍ତୋତ୍ର, ବଙ୍ଗୀୟ ତାନ୍ତ୍ରିକ ଓ ବୈଷ୍ଣବ ସ୍ତୋତ୍ର ଗୁଡ଼ିକ ସମୟର ବିଭିନ୍ନ ଧାର୍ମିକ ପ୍ରବୃତ୍ତି ଦ୍ୱାରା ପ୍ରଣୋଦିତ ହୁଅନ୍ତି । ଏହି ସ୍ତୋତ୍ର ଗୁଡ଼ିକ ନୈତିକ ଓ ତାତ୍ତ୍ୱିକ ବସ୍ତୁରେ କିମ୍ବା ସାଧାରଣ ଭାବ ଓ ଶବ୍ଦରେ ଭାରାକ୍ରାନ୍ତ ହୋଇଥିବାରୁ ସେ ଗୁଡ଼ିକ ମଧ୍ୟରୁ ବହୁ ସଂଖ୍ୟକ ସ୍ତୋତ୍ର ମଧ୍ୟମ ଶ୍ରେଣୀର କାବ୍ୟରଚନାକୁ ଉନ୍ନୀତ ହୋଇଥାନ୍ତି । ତନ୍ମଧ୍ୟରୁ କେତେକ ସ୍ତୋତ୍ର ଅତୀବ ଲୋକପ୍ରିୟ ଏବଂ ପୁରୁଷ ପୁରୁଷ ଧରି ହଜାର ହଜାର ଭକ୍ତ ମୁଖରୁ ଉଚ୍ଚାରିତ ହୋଇ ଆସିଛନ୍ତି କିନ୍ତୁ ସେଗୁଡ଼ିକ ଉଚ୍ଚାଙ୍ଗ ନନ୍ଦନଧର୍ମୀ ଧାର୍ମିକ କାବ୍ୟରୂପରେ ନୁହେଁ, ଉପସ୍ଥିତ ଧାର୍ମିକ ଭାବର ବାହକ ରୂପରେ ଲୋକପ୍ରିୟ । ଧାର୍ମିକ ଭାବାବେଗ ଅପେକ୍ଷା ଧର୍ମ ସହିତ ସେଗୁଡ଼ିକ ବେଶୀ ସଂପୃକ୍ତ । ତେଣୁ ଭକ୍ତ ଓ ସମୀକ୍ଷକଙ୍କ ପାଇଁ ସେ ଗୁଡ଼ିକର ମୂଲ୍ୟ ପୃଥକ୍ ହେବା ସ୍ୱାଭାବିକ ।

ପରବର୍ତ୍ତୀ ବୌଦ୍ଧ ସ୍ତୋତ୍ରର ଭାଷାରୀତି ହିନ୍ଦୁ ସ୍ତୋତ୍ର ପରି । ସେ ଗୁଡ଼ିକ ମଧ୍ୟରୁ କେତେକ କାବ୍ୟର ଅଲଙ୍କରଣ-ଶୈଳୀ ଓ ଛନ୍ଦ ଦ୍ୱାରା ପ୍ରଭାବିତ । ଜିନ ଓ ଜୈନ ସାଧୁଙ୍କର ମହିମା ପ୍ରଖ୍ୟାପକ କେତେକ ଜୈନ ସ୍ତୋତ୍ର ନିୟମିତ କାବ୍ୟ ରୀତିରେ ଯମକ ଓ ଅନ୍ୟ ବିଶିଷ୍ଟ ଅଳଙ୍କାର ପ୍ରୟୋଗରେ ଭାଷାର ଯାଦୁ ପ୍ରଦର୍ଶନ କରିବା ନିମିତ୍ତ ଅତି କୃତ୍ରିମ ଭାବରେ ରଚିତ । ଧାର୍ମିକ ନୀତି ଓ ଉପଦେଶ ପୂର୍ଣ୍ଣ ସ୍ତୋତ୍ର ଗୁଡ଼ିକର ସାହିତ୍ୟିକ ମୂଲ୍ୟ କିଛି ନାହିଁ କହିଲେ ଚଳେ ।

ହିନ୍ଦୁ ସ୍ତୋତ୍ର ଗୁଡ଼ିକ ମଧ୍ୟରୁ ବେଦାନ୍ତ ଦାର୍ଶନିକ ଶଙ୍କରଙ୍କ ନାମରେ (୨) ପ୍ରାୟ ଦୁଇଶତ ସ୍ତୋତ୍ର ପ୍ରଚଳିତ । ସେ ଗୁଡ଼ିକ ମଧ୍ୟରୁ କେତେ ଗୁଡ଼ିଏ ଅବଶ୍ୟ ଧାର୍ମିକ ପ୍ରେରଣାରେ ରଚିତ ଏବଂ ଅଭିବ୍ୟକ୍ତି ଅତି କୋମଳ ଓ ଶ୍ରୁତି ସୁଖକର । ସେ ଗୁଡ଼ିକ ମଧ୍ୟରେ ସ୍ରଗ୍ଧରା ବୃତ୍ତରେ ରଚିତ 'ଶିବାପରାଧକ୍ଷମାପନସ୍ତୋତ୍ର,' 'ମୋହମୁଦ୍ଗର,' 'ଚର୍ପଟ ପଞ୍ଜରିକା,' ଭୁଜଙ୍ଗପ୍ରୟାତ ଛନ୍ଦରେ ରଚିତ 'ଦଶଶ୍ଳୋକୀ,' 'ଆତ୍ମଶତକ,' 'ହସ୍ତାମଲକ' ଓ 'ଆନନ୍ଦ ଲହରୀ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତି, ଛନ୍ଦର ମସୃଣ ପ୍ରବାହ ଏବଂ ଯତିପାତ ହେତୁ ସଂସ୍କୃତ ସ୍ତୋତ୍ର ସାହିତ୍ୟରେ ଏହି ଲୋକପ୍ରିୟ ସ୍ତୋତ୍ରଗୁଡ଼ିକ ଉଚ୍ଚସ୍ଥାନ ଅଧିକାର କରିଛନ୍ତି । ସମୟେ ସମୟେ ସାହିତ୍ୟିକ ଶବ୍ଦ ଗୁଡ଼ିକର ଶୈଳୀରେ ଗତାନୁଗତିକ କୌଶଳର ପ୍ରୟୋଗ ହୋଇଛି । କେରଳର ବୈଷ୍ଣବ ରାଜା କୁଳଶେଖରଙ୍କର 'ମୁକୁନ୍ଦମାଳା' ସ୍ତୋତ୍ରମାନଙ୍କ ମଧ୍ୟରୁ ଅନ୍ୟତମ । କାଶ୍ମୀରୀୟ ଶୈବସ୍ତୋତ୍ରମାନଙ୍କ ମଧ୍ୟରେ ଉତ୍ପଳଦେବଙ୍କର ସ୍ତୋତ୍ରାବଳୀ ଗତାନୁଗତିକ ଭାବରେ ଦୀର୍ଘ । ଆନନ୍ଦ ବର୍ଦ୍ଧନଙ୍କ

(୧) Dr. Dasgupta and Dr. De, H. S. L., Vol. I, PP.375-376
(୨) H. S. L., P.380.

'ଦେବୀଶତକ' ଓ ଅବତାରଙ୍କର 'ଈଶ୍ବର ଶତକ' ଶାବ୍ଦିକ କୌଶଳ ଓ ଛନ୍ଦବନ୍ଧରେ ପରିପୂର୍ଣ୍ଣ ହୋଇଥିବାରୁ ସେଥିରେ ଭକ୍ତିଗତ ମୂଲ୍ୟ କିଛି ନାହିଁ କହିଲେ ଚଳେ । ଶିବପାର୍ବତୀଙ୍କ ପ୍ରେମକୁ ଭିତ୍ତିକରି ରଚିତ ରତ୍ନାକରଙ୍କର 'ବକ୍ରୋକ୍ତି ପଞ୍ଚାଶିକା' ସେହିଜାତୀୟ ଏକ ସ୍ତୋତ୍ର । ଅନୁପ୍ରାସ ପ୍ରତି ଲେଖକଙ୍କର ଦୁର୍ବଳତା ଲକ୍ଷିତ ହେଲେ ମଧ୍ୟ କହ୍ଲଣଙ୍କର 'ଅର୍ଦ୍ଧନାରୀଶ୍ବର' ସ୍ତୋତ୍ର ପୂର୍ବୋକ୍ତ ସ୍ତୋତ୍ର ଅପେକ୍ଷା ଉତ୍ତମ ।

କିଛିନ୍ତ ସାହିତ୍ୟିକ ମର୍ଯ୍ୟାଦା ଥିବା ପରବର୍ତ୍ତୀ ସ୍ତୋତ୍ର ବା ସ୍ତୋତ୍ର କାବ୍ୟରେ ଅଳ୍ପ ବହୁତେ ଗତାନୁଗତିକ ଶିଳ୍ପଗତ କୌଶଳ ଦେଖାଯାଏ । ସମୟେ ସମୟେ ସୁନ୍ଦର ଶବ୍ଦ ପ୍ରୟୋଗ ଓ ସ୍ବରର ସଙ୍କେତ ଦେଖା ଯାଉଥିଲେ ମଧ୍ୟ ପ୍ରକୃତ ସାହିତ୍ୟିକ ଗୌରବ ଅର୍ଜନ କରିଥିବା ରଚନା ପାଇବା କଷ୍ଟକର । ଷୋଡ଼ଶ ଶତାବ୍ଦୀରେ ରଚିତ କେରଳର ନାରାୟଣ ଭଟ୍ଟଙ୍କର ଏକ ହଜାର ଶ୍ଳୋକ ବିଶିଷ୍ଟ 'ନାରାୟଣୀୟ' ଏକ ଭକ୍ତି ପ୍ରଧାନ ସ୍ତୋତ୍ର କାବ୍ୟ ହେଲେ ମଧ୍ୟ ରଚନାଭଙ୍ଗୀ ଅତି କୃତ୍ରିମ । ପ୍ରସିଦ୍ଧ ବଙ୍ଗୀୟ ଦାର୍ଶନିକ ମଧୁସୂଦନ ସରସ୍ବତୀଙ୍କର (୧୬ଶ ଶତକର ମଧ୍ୟଭାଗ) 'ଆନନ୍ଦ ମନ୍ଦାକିନୀ ସ୍ତୋତ୍ର' (ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ) ସେହିପରି ଏକ ରଚନା । ଏଥିରେ ଆଳଙ୍କାରିକ ଶୈଳୀରେ କବିଙ୍କର ଭକ୍ତିମତ୍ତା ଓ ପାଣ୍ଡିତ୍ୟ ପ୍ରକାଶ ପାଇଛି । ବିଖ୍ୟାତ କବି ତଥା ଆଳଙ୍କାରିକ ଜଗନ୍ନାଥଙ୍କ 'ପଞ୍ଚଲହରୀ' (ଅମୃତ, ସୁଧା, ଗଙ୍ଗା, କରୁଣା, ଲକ୍ଷ୍ମୀ) ପ୍ରତି ସେହି ମନ୍ତବ୍ୟ ପ୍ରଯୁଜ୍ୟ । ନୀଳକଣ୍ଠ ଦୀକ୍ଷିତଙ୍କର 'ଆନନ୍ଦ ସାଗର ସ୍ତବ' (ଦେବୀ ମୀନାକ୍ଷୀଙ୍କ ଉଦ୍ଦେଶ୍ୟରେ) ଏବଂ ଶିଷ୍ୟ ରାମଭଦ୍ର ଦୀକ୍ଷିତଙ୍କର 'ରାମବାଣସ୍ତବ' ଏକ ଏକ ବର୍ଣ୍ଣମାଳା ସ୍ତୋତ୍ର । ଏହି ସାହିତ୍ୟିକ ସ୍ତୋତ୍ର ଗୁଡ଼ିକର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ହେଉଛି; ଦେବତାମାନଙ୍କର ପ୍ରେମ ସମ୍ପର୍କୀୟ ଅଦ୍ଭୁତ ଘଟଣାର ଐନ୍ଦ୍ରିକ ବର୍ଣ୍ଣନା ବା ସେମାନଙ୍କର ଅଙ୍ଗ-ସୁଷମାର ବିସ୍ତୃତ ବର୍ଣ୍ଣନା । ମଧ୍ୟଯୁଗୀୟ ଶୃଙ୍ଗାରାତ୍ମକ ରହସ୍ୟବାଦର ଏହା ହେଉଛି ଏକ ରୂପ । ରାଧାକୃଷ୍ଣ ଲୀଳାକୁ ଛାଡ଼ିଦେଲେ 'କୁମାରସମ୍ଭବ'ର ପରମ୍ପରା ଠାରୁ ଆରମ୍ଭ କରି ଦେବତାମାନଙ୍କର ଯୌନ ଚେତନା ବା ସେମାନଙ୍କର ପ୍ରଣୟର ବିସ୍ତୃତ ବର୍ଣ୍ଣନାର ଏକ ପ୍ରବଣତା ଦେଖାଦେଇଛି । ବିଷ୍ଣୁଙ୍କର କେଶଠାରୁ ବୃଦ୍ଧାଙ୍ଗୁଷ୍ଠି ନଖ ପର୍ଯ୍ୟନ୍ତ ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା କରାଯାଇଛି । ମୂକ କବି ତାଙ୍କର 'ପଞ୍ଚଶତୀ ସ୍ତୋତ୍ର'ର ପ୍ରତ୍ୟେକ ଶତକରେ କାଞ୍ଚିର କାମାକ୍ଷୀ ଦେବୀଙ୍କର ଅଙ୍ଗସୁଷମା, ହାସ, କଟାକ୍ଷ ଓ ପଦ୍ମପାଦର ବର୍ଣ୍ଣନା କରିଛନ୍ତି (୩) ।

ବୈଷ୍ଣବ କାବ୍ୟ ପରି ବୈଷ୍ଣବ ସ୍ତୋତ୍ର ଗୁଡ଼ିକ ମଧ୍ୟ ଦାର୍ଶନିକ ଚିନ୍ତା ମୂଳକ ସ୍ତୋତ୍ରର (ଶଙ୍କରଙ୍କ ବୈଦାନ୍ତିକ ସ୍ତୋତ୍ର) ଗମ୍ଭୀର ତଥା ଉନ୍ନତ ପରମ୍ପରାର ଏକ ବ୍ୟତିକ୍ରମ । ଏହି ବ୍ୟତିକ୍ରମ ଦେଖା ଯାଇଛି ସେଗୁଡ଼ିକର ଶୃଙ୍ଗାରାତ୍ମକ ରହସ୍ୟାଚ୍ଛନ୍ନ ଅନୁଭୂତି, ନିବିଡ ଐନ୍ଦ୍ରିକ ବସ୍ତୁ ଓ ତା'ର ଅଭିବ୍ୟକ୍ତି ପାଇଁ ପାରମ୍ପରିକ ସ୍ତୋତ୍ର ଗୁଡ଼ିକର ପ୍ରେରଣା ଆସିଥିଲା ଦାର୍ଶନିକ ଚିନ୍ତାଧାରାରୁ, କିନ୍ତୁ ବୈଷ୍ଣବ-ଭକ୍ତି ଆନ୍ଦୋଳନର ଅର୍ଦ୍ଧ ପ୍ରଣୟଭିତ୍ତିକ ଦୃଷ୍ଟିଭଙ୍ଗୀ ଶକ୍ତିଶାଳୀ ଯୌନ ଆବେଗକୁ ଏକ ଆନନ୍ଦମୟ ଧାର୍ମିକ ଆବେଗରେ ରୂପାନ୍ତରିତ କରି

(୩) H. S. L , PP. 382-385

ଏବଂ ଭକ୍ତ ସାହିତ୍ୟକୁ ଶୃଙ୍ଗାର ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ କରି ପ୍ରେରଣାର ଉତ୍ସ ପରିବର୍ତ୍ତିତ କରିଥିଲା । ଧାର୍ମିକ ଅଭିଳାଷ ପାର୍ଥିକ ଭାବାବେଗର ଚିତ୍ରକଳ୍ପ ଓ ଭାଷାରେ ଅଭିବ୍ୟକ୍ତ ହେଲା । ରାଧାକୃଷ୍ଣ ପ୍ରେମଲୀଳାର କଳ୍ପନା ବିପୁଳ ସାହିତ୍ୟିକ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ କରି ଭକ୍ତ ସାହିତ୍ୟକୁ ଦାର୍ଶନିକ ଚିନ୍ତାଧାରାର ନୀରସ ବାତାବରଣରୁ ପ୍ରଗାଢ଼ ଅନୁଭୂତିର ଏକ ରୋମାଣ୍ଟିକ୍ ବାତାବରଣକୁ ଉନ୍ନୀତ କରିଥିଲେ ମଧ୍ୟ ସ୍ୱତଃସ୍ଫୂର୍ତ୍ତି ବିକାଶ କ୍ଷେତ୍ରରେ ପାଣ୍ଡିତ୍ୟର ଶୀତଳ-ଅଙ୍ଗୁଳି-ସ୍ପର୍ଶ ଲାଗି ଯାଇଥିଲା । ଦୀର୍ଘକାଳରୁ ପ୍ରତିଷ୍ଠିତ ସାହିତ୍ୟିକ ପରମ୍ପରା ସ୍ୱତନ୍ତ୍ର ରୂପ ଓ ଅଭିବ୍ୟକ୍ତିର ବିକାଶକୁ ପ୍ରତିହତ କରିଥିଲା । ଫଳରେ ଆଳଙ୍କାରିକ ସୂକ୍ଷ୍ମତା ଓ ମନସ୍ତାତ୍ତ୍ୱିକ ବିଚାରର ପ୍ରଭାବ ବିସ୍ତାର କଲା । ପ୍ରାଚୀନ ଅଳଙ୍କାର ଶାସ୍ତ୍ର ଓ ରତିଶାସ୍ତ୍ରର ମୌଳିକ ବିଶ୍ଳେଷଣ ଫଳରେ ଶୃଙ୍ଗାର ରସ-ନିଷ୍ପତ୍ତି ସମ୍ପର୍କରେ ଯେଉଁ ସତର୍କ ବିଭାଗୀକରଣ କରା ଯାଇଥିଲା, ତା ସହିତ ନବ ବୈଷ୍ଣବ ଧର୍ମର ଧର୍ମତତ୍ତ୍ୱ ଓ ରସତତ୍ତ୍ୱର ସୂକ୍ଷ୍ମ ବିଚାର ମିଶିଗଲା । ଫଳରେ ବୈଷ୍ଣବ କାବ୍ୟ ଓ ସ୍ତୋତ୍ର ଗୁଡ଼ିକ ରସ ଓ ଅଭିବ୍ୟକ୍ତିର ମାର୍ଜିତ କୃତ୍ରିମତାରୁ ମୁକ୍ତ ପାଇ ପାରିଲା ନାହିଁ ।

କିନ୍ତୁ ସଂସ୍କୃତରେ ରଚିତ ବୈଷ୍ଣବ କାବ୍ୟ ତୁଳନାରେ ସ୍ତୋତ୍ର ଗୁଡ଼ିକ ଆକାରରେ କ୍ଷୁଦ୍ର; କଷ୍ଟ-କଳ୍ପିତ ବୃହତ୍ କାବ୍ୟ ପରି ଏତେ ନୀରସ ନୁହେଁ । ସେଗୁଡ଼ିକରେ ସ୍ଥାନେ ସ୍ଥାନେ ଆମେ ଉଜ୍ଜ୍ୱଳ କଳ୍ପନା, ଐନ୍ଦ୍ରିକ ଭାବାବେଗ ଓ ସୌନ୍ଦର୍ଯ୍ୟର ଦୃଷ୍ଟାନ୍ତ ପାଉଁ; କିନ୍ତୁ ଗତାନୁଗତିକ ଭାବ ଓ ଚିତ୍ରକଳ୍ପରେ ବ୍ୟକ୍ତିଗତ ଭାବାବେଗର ସ୍ୱାଭାବିକତା ନଷ୍ଟ ହୋଇ ଯାଇଛି । କିନ୍ତୁ ଯେତେବେଳେ ଭାବ ଅତି ନିବିଡ଼ ଓ ଅଭିବ୍ୟକ୍ତି ବାସ୍ତବ ହୋଇ ଉଠିଛି, ସେତେବେଳେ ଧର୍ମତତ୍ତ୍ୱ ଓ ଅଳଙ୍କାର ପଛକୁ ପଡ଼ି ଯାଇଛି । କିନ୍ତୁ ଯାହାହେଲେ ମଧ୍ୟ ଏହି ସ୍ତୋତ୍ରଗୁଡ଼ିକ ଉଚ୍ଚାଙ୍ଗ ସାହିତ୍ୟର ଗୌରବ ଲାଭ କରି ନାହାନ୍ତି ।

କେତେକ ବୈଷ୍ଣବ ସ୍ତୋତ୍ର ଭକ୍ତମାନଙ୍କ ଦୃଷ୍ଟିରୁ ଲୋକପ୍ରିୟ, କିନ୍ତୁ ସାହିତ୍ୟିକ ଦୃଷ୍ଟିରୁ ନୁହେଁ, କାରଣ ସେଗୁଡ଼ିକ ଈପ୍ସିତ ଧାର୍ମିକ ଚିନ୍ତାଧାରାକୁ ରୂପ ଦେଇଛନ୍ତି । ସେଥିପାଇଁ ଭକ୍ତ ଓ ସାହିତ୍ୟ ସମୀକ୍ଷକଙ୍କ ଦୃଷ୍ଟିରେ ସେଗୁଡ଼ିକର ମୂଲ୍ୟ ପୃଥକ୍ ହେବା ସ୍ୱାଭାବିକ ।

### ବୈଷ୍ଣବ ସ୍ତୋତ୍ର ସାହିତ୍ୟ :

ବୈଷ୍ଣବ ସ୍ତୋତ୍ର ସାହିତ୍ୟରେ ପ୍ରବୋଧାନନ୍ଦ ସରସ୍ୱତୀଙ୍କ 'ଚୈତନ୍ୟଚନ୍ଦ୍ରାମୃତ' ଏକ ଉଲ୍ଲେଖଯୋଗ୍ୟ ଅବଦାନ । ଏଥିରେ କବି ନିଜର ଅନ୍ତରଙ୍ଗ ବ୍ୟକ୍ତିଗତ ଭକ୍ତିର ପ୍ରେରଣାରେ ଆବେଗପୂର୍ଣ୍ଣ ଭାଷାରେ ଚୈତନ୍ୟଙ୍କ ବନ୍ଦନା କରିଛନ୍ତି । ଆବେଗର ନିବିଡ଼ତା ହେତୁ ଗତାନୁଗତିକ ଭାବ ଓ ଚିତ୍ରକଳ୍ପ ସତ୍ତ୍ୱେ ଏହା ସାଧାରଣ ସ୍ତୋତ୍ରର ଊର୍ଦ୍ଧ୍ୱକୁ ଉନ୍ନୀତ ହୋଇଛି; କିନ୍ତୁ 'ବୃନ୍ଦାବନ ମହିମାମୃତ'ରେ ତାଙ୍କର ବ୍ୟକ୍ତିଗତ ସ୍ୱର କ୍ଷୀଣ ହୋଇ ପଡ଼ିଛି । ରାଧାକୃଷ୍ଣଙ୍କର ବୃନ୍ଦାବନ ଲୀଳା, ତା'ର ଆବେଗାତ୍ମକ ଆବେଦନ ଦ୍ୱାରା ଅନୁପ୍ରେରିତ ଲାଳସା ଓ ଶୃଙ୍ଗାରାତ୍ମକ ଭକ୍ତ-ଦୃଷ୍ଟିଭଙ୍ଗୀର ଚମତ୍କାର ପ୍ରକାଶ ଘଟିଛି ରଘୁନାଥ

ଦାସଙ୍କର ସ୍ତୋତ୍ର ଓ ପ୍ରାର୍ଥନାରେ । ତାଙ୍କର ଅନେକ ସ୍ତୋତ୍ର ରଚନା (୪) ମଧ୍ୟରୁ 'ସ୍ୱନିୟମ ଦଶକ' 'ବିଶାଖାନନ୍ଦ ସ୍ତୋତ୍ର' ଓ 'ବିଳାପକୁସୁମାଞ୍ଜଳି' ହେଉଛନ୍ତି ଉଲ୍ଲେଖଯୋଗ୍ୟ । ଏଥିରେ ରାଗାନୁଗା ଭକ୍ତିର ଉପଲବ୍ଧି ପାଇଁ କବି-ପ୍ରାଣର ବ୍ୟାକୁଳତା ପ୍ରକାଶିତ । ସେ ସଖୀଭାବରେ ନୁହେଁ, ରାଧାଙ୍କର ଦାସୀଭାବରେ ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜଲୀଳାର ଦର୍ଶନ ପାଇଁ ନିଜର ଗଭୀର ପ୍ରାର୍ଥନା ଜଣାଇଛନ୍ତି । ତାଙ୍କର ପ୍ରାର୍ଥନା ଓ ସ୍ତୁତିରେ ଏକମାତ୍ର ଧ୍ୟେୟ ହେଉଛନ୍ତି ବୃନ୍ଦାବନ ଓ ତା'ର ଅଧିଷ୍ଠାତ୍ରୀ ଦେବୀ ରାଧା । ପ୍ରାୟ ସମସ୍ତ ସ୍ତୋତ୍ରରେ ରାଧାଭଜନ ହେଉଛି ତାଙ୍କର ମୁଖ୍ୟ ଅଭିପ୍ରାୟ । ରାଧାଙ୍କଠାରୁ ତାଙ୍କର ବିଚ୍ଛିନ୍ନ ହେବାର ବେଦନା ଏବଂ ରାଧାଙ୍କର ପଦସେବା ଓ ଉପାସନା ପାଇଁ ନିବିଡ଼ ଅଭିଳାଷର ଆନ୍ତରିକ ଅଭିବ୍ୟକ୍ତି ତାଙ୍କର 'ବିଳାପକୁସୁମାଞ୍ଜଳି'ର ବିଭିନ୍ନ ଶ୍ଳୋକରେ ରହିଛି । ଏକ ନିବିଡ଼ ଐନ୍ଦ୍ରିକ ଆବେଦନର ପୃଷ୍ଠ ଭୂମିରେ ସେ ରାଧା ଓ କୃଷ୍ଣଙ୍କର ବନ୍ଦନା କରିଛନ୍ତି । ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜଲୀଳାର ଅନ୍ତର୍ଭୁକ୍ତ ହୋଇ ଲୀଳାଦର୍ଶନ ଏବଂ ରାଧାଙ୍କ ପ୍ରତି ତାଙ୍କର କରୁଣ ପ୍ରାର୍ଥନା ଓ ଆତ୍ମସମର୍ପଣ ଏଗୁଡ଼ିକରେ ଲକ୍ଷିତ ହୁଏ । ତାଙ୍କ ଦୃଷ୍ଟିରେ ରାଧାଙ୍କ କୃପା ବିନା କୃଷ୍ଣ ପ୍ରାପ୍ତି ସମ୍ଭବ ନୁହେଁ । ତାଙ୍କର 'ଉତ୍କଣ୍ଠା ଦଶକ', 'ନବାଷ୍ଟକ ସ୍ତୋତ୍ର', ପ୍ରେମପୂର' ଓ 'ରାଧିକାଷ୍ଟକ'ର ପ୍ରତି ଶ୍ଳୋକରେ ରାଧାଭଜନ ଓ ରାଧାଙ୍କ ପ୍ରତି ଦାସ୍ୟ ଭାବର ସଙ୍କେତ ରହିଛି । ତାଙ୍କର 'ଅଭୀଷ୍ଟ ସୂଚନା' ଓ 'ଅଭୀଷ୍ଟ ପ୍ରାର୍ଥନା'ରେ ରାଧାଙ୍କର ସେବା ଓ ଉପାସନା ପାଇଁ ବ୍ୟଗ୍ରତା ଏବଂ 'ନବଯୁଗଦ୍ୱନ୍ଦ୍ୱଦିଦୃକ୍ଷାଷ୍ଟକ' ଓ 'ପ୍ରାର୍ଥନାମୃତ'ରେ ଦିବ୍ୟଲୀଳା ଦର୍ଶନର ଅଭିଳାଷ ପରିସ୍ଫୁଟ ହୋଇଛି । ତାଙ୍କର 'ଗୋପାଳରାଜସ୍ତବ' 'ମୁକୁନ୍ଦାଷ୍ଟକ' ଓ 'ମଦନଗୋପାଳ ସ୍ତୋତ୍ର' ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ରଚିତ ହେଲେ ମଧ୍ୟ ସେଗୁଡ଼ିକରେ ରାଧା ମୁଖ୍ୟ ସ୍ଥାନ ଅଧିକାର କରି ଅଛନ୍ତି । ତାଙ୍କର 'ବିଶାଖାନନ୍ଦସ୍ତୋତ୍ର' ରାଧାଙ୍କ ଉଦ୍ଦେଶ୍ୟରେ ଏକ ଦୀର୍ଘ ସ୍ତୁତି (୧୩୪ ଶ୍ଳୋକ ବିଶିଷ୍ଟ) । ତାଙ୍କର ସ୍ତୋତ୍ରଗୁଡ଼ିକରେ ଐନ୍ଦ୍ରିକ ଭାବାବେଗର ମାତ୍ରାଧିକ୍ୟ ଲକ୍ଷିତ ହେଲେ ମଧ୍ୟ ଏକ ଭକ୍ତ ପ୍ରାଣର ଅନ୍ତରଙ୍ଗ ବ୍ୟକ୍ତିଗତ ସ୍ୱର ସେଗୁଡ଼ିକରେ ପରିସ୍ଫୁଟ । ରାଧାକୃଷ୍ଣ ଲୀଳାର ରୋମାଣ୍ଟିକ୍ ପରିପ୍ରେକ୍ଷୀରେ ସେ ତା'ର ଅନୁଭବ ଗୁହାନ୍ତି ।

ରୂପ ଗୋସ୍ୱାମୀଙ୍କର 'ସ୍ତୋତ୍ର, ବିରୁଦ, ଓ ଗୀତ ଗୁଡ଼ିକରେ ବାସ୍ତବତା ଅପେକ୍ଷା ଆଲଙ୍କାରିକତା, ବିଷୟର ପ୍ରଗାଢ଼ତା ଅପେକ୍ଷା ଶବ୍ଦର ମାୟା ଓ ମାନବିକ ଆବେଦନ ଅପେକ୍ଷା ଅଧିକ କଳାପ୍ରାଣତା ପରିଦୃଷ୍ଟ ହୁଏ । ଜୀବ ଗୋସ୍ୱାମୀ 'ସ୍ତବମାଳା'ରେ ସେଗୁଡ଼ିକର ସଂଗ୍ରହ କରିଛନ୍ତି । ଅଧିକାଂଶ ସ୍ତୋତ୍ର, ବିରୁଦ ଓ ଗୀତରେ ରାଧାକୃଷ୍ଣଙ୍କର ଶୃଙ୍ଗାରଧର୍ମୀ ବୃନ୍ଦାବନ ଲୀଳାର ବର୍ଣ୍ଣନା ରହିଛି । ଅଧିକାଂଶ ସ୍ତୋତ୍ର କ୍ଷୁଦ୍ର 'ଅଷ୍ଟକ' ରୂପରେ ରଚିତ । ରାଧାକୃଷ୍ଣ ଓ ତାଙ୍କ ଲୀଳା ସହ ସମ୍ପୃକ୍ତ ବ୍ୟକ୍ତି ଓ ସ୍ଥାନ (ଯମୁନା, ମଥୁରା, ଗୋବର୍ଦ୍ଧନ,

---

(୪) ରାଧିକାଷ୍ଟୋତ୍ତର ଶତନାମ, ପ୍ରେମାମ୍ଭୋଜ ମକରନ୍ଦ, ବ୍ରଜବିଳାସ ସ୍ତବ (୧୦୬ଟି ଶ୍ଳୋକ) ସ୍ତବାବଳୀ, ରାଧାକୃଷ୍ଣୋଜ୍ଜ୍ୱଳ କୁସୁମକେଳି ଇତ୍ୟାଦି ।

ବୃନ୍ଦାବନ) ସମ୍ପର୍କରେ ସେ ଅଷ୍ଟକମାନ ରଚନା କରିଛନ୍ତି । ଏ ଗୁଡ଼ିକରେ ଭଗବନ୍ତ କୃପା ଓ ଦିବ୍ୟ ଦର୍ଶନ ପାଇଁ କବିଙ୍କର ଅଭିଳାଷ ପରିସ୍ଫୁଟ ହୋଇଥିଲେ ମଧ୍ୟ ଏଗୁଡ଼ିକର ଶୃଙ୍ଗାରିକ କଳ୍ପନା ଏବଂ ଶବ୍ଦ ଓ ଛନ୍ଦୋଗତ ମାଧୁର୍ଯ୍ୟ ଶ୍ରୋତାର ଦୃଷ୍ଟି ଆକର୍ଷଣ କରେ । ତାଙ୍କର ଅନ୍ୟ ସ୍ତବ ଗୁଡ଼ିକର ନାମ ହେଉଛି : 'ତ୍ରିଭଙ୍ଗ ପଞ୍ଚକ', 'ହରିକୁସୁମ ସ୍ତବକ', 'ପ୍ରେମେନ୍ଦୁ ସାଗର' (କୃଷ୍ଣଙ୍କ ସମ୍ପର୍କରେ), 'ପ୍ରେମେନ୍ଦୁ ସୁଧା' (ରାଧାଙ୍କ ସମ୍ପର୍କରେ), 'ଗୃହୀତ ପୁଷ୍ପାଞ୍ଜଳି', 'କାର୍ପଣ୍ୟ ପଞ୍ଜିକା' ଓ 'ପ୍ରଣାମ ପ୍ରଣୟ' । ଭକ୍ତିମୂଳକ ଛବିଳ ଶୃଙ୍ଗାରାତ୍ମକ କଳ୍ପନା ଏବଂ ଅସାଧାରଣ ଛନ୍ଦୋମାଧୁର୍ଯ୍ୟ ଓ ଶାବ୍ଦିକ କୌଶଳ ହେତୁ ତାଙ୍କର 'ମୁକୁନ୍ଦ ମୁକ୍ତାବଳୀ', 'ଉତ୍କଳିକା ବଲ୍ଲରୀ' (ଏକ ସମୟରେ ରାଧା ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ ରଚିତ) ଓ 'ସ୍ୱୟଂ ଉତ୍ପ୍ରେକ୍ଷିତ ଲୀଳା' ବା 'ବିଳାସ ମଞ୍ଜରୀ' (ବୃନ୍ଦାବନ କୁଞ୍ଜରେ ରାଧାଙ୍କର ପୁଷ୍ପଚୟନ); ବିଭିନ୍ନ ଛନ୍ଦରେ ରଚିତ ଦୀର୍ଘ ସ୍ତୋତ୍ରାବଳି; 'ଗୋବିନ୍ଦ ବିରୁଦାବଳୀ', 'ଅଷ୍ଟାଦଶଛନ୍ଦ' ନାମକ ବିରୁଦ ଓ ଛନ୍ଦକାବ୍ୟ ଏବଂ 'ଗୀତାବଳୀ' ନାମକ 'ସଙ୍ଗୀତ ସଂଗ୍ରହ' ପାଠକ ଓ ଭକ୍ତମାନଙ୍କ ପକ୍ଷରେ ଏକାନ୍ତ ଆଦରଣୀୟ । ଛନ୍ଦ କୁଶଳତା, ଯତି ଓ ଅନୁପ୍ରାସ ଏବଂ ଚମତ୍କାର ଧ୍ୱନି ଶୃଙ୍ଖଳା ଏଗୁଡ଼ିକୁ ଆବୃତ୍ତିସୁଖକର କରିଛି । 'ଗୋବିନ୍ଦ ବିରୁଦାବଳୀ'ରେ ଅନୁପ୍ରାସ ଓ ଶବ୍ଦ ପ୍ରୟୋଗ କୁଶଳତା, ଯତି ଓ ବର୍ଣ୍ଣସମବାୟର ତାଳଲୟଗତ ପୁନରାବୃତ୍ତିର ଚରମ ନିଦର୍ଶନ ମିଳେ । ଏକାନ୍ତ ଐନ୍ଦ୍ରିକ ଛବିଳ କଳ୍ପନା ଏବଂ ଅପରିମିତ ଗୀତ ଓ ସାଙ୍ଗୀତିକ ଅବଦାନ ହେତୁ ତାଙ୍କର ଶୃଙ୍ଗାରାତ୍ମକ ଭାବାବେଗମିଶ୍ର ଭକ୍ତିମତ୍ତା ତାଙ୍କ ରଚନାରେ ପ୍ରଧାନ ହୋଇ ଦଣ୍ଡାୟମାନ । କିନ୍ତୁ ଭାବର ସ୍ୱାଭାବିକତା, ମାତ୍ରାଧିକ ଆଲଙ୍କାରିକତା ହେତୁ ପ୍ରତିହତ ହୋଇଛି । ସ୍ତୋତ୍ର ରଚନାରେ ତାଙ୍କର ଭକ୍ତି, ପାଣ୍ଡିତ୍ୟ ଓ ସାହିତ୍ୟିକ କୌଶଳର ପରିଚୟ ମିଳିଲେ ମଧ୍ୟ ଆତ୍ମିକ ସ୍ପର୍ଶର ଅଭାବ ଦେଖାଯାଏ । କଳା ଓ କୃତ୍ରିମତା ମଧ୍ୟରେ ସେ ପାର୍ଥକ୍ୟ ଖୋଜି ପାଇ ନାହାନ୍ତି । ଏକକ ଗଦ୍ୟ ପ୍ରକାର ଓ ସାଧାରଣ ପଦ୍ୟ ରଚିତ ଦେବତାଙ୍କର ସ୍ତୁତି ମୂଳକ ଏହି ବୈଷ୍ଣବ ବିରୁଦ କାବ୍ୟ ଏକ ମୌଳିକ ସାହିତ୍ୟ ଧାରାର ସଙ୍କେତ ଦିଏ । 'ସାମାନ୍ୟ ବିରୁଦାବଳୀ ଲକ୍ଷଣ'ରେ ରୂପ ଗୋସ୍ୱାମୀ ପଚିଶ ପ୍ରକାର ବିରୁଦ ରୂପର ଦୃଷ୍ଟାନ୍ତ ଦେଇଛନ୍ତି । ତାଙ୍କ ଅନୁକରଣରେ ଜୀବ ଗୋସ୍ୱାମୀ 'ଗୋପାଳ ବିରୁଦାବଳୀ' ରଚନା କରିବା ସଙ୍ଗେ ସଙ୍ଗେ ତାଙ୍କର 'ଗୋପାଳ ଚମ୍ପୂର' ଶେଷରେ ବିରୁଦ ସ୍ତୋତ୍ର ସନ୍ନିବେଶିତ କରିଛନ୍ତି । କବି କର୍ଣ୍ଣପୂର ତାଙ୍କର 'ଆନନ୍ଦ ବୃନ୍ଦାବନ ଚମ୍ପୂ'ରେ ଗୋଟିଏ ବିରୁଦସ୍ତୋତ୍ର ସନ୍ନିବେଶିତ କରିଛନ୍ତି । ପୂର୍ବସୂରିଙ୍କର ଅନୁକରଣରେ ୧୮ଶ ଶତକରେ ରଘୁନନ୍ଦନ ଗୋସ୍ୱାମୀ ଓ ବିଶ୍ୱନାଥ ଚକ୍ରବର୍ତ୍ତୀ ଯଥାକ୍ରମେ 'ଗୌରାଙ୍ଗ ବିରୁଦାବଳୀ' ଓ 'ନିକୁଞ୍ଜକେଳି ବିରୁଦାବଳୀ' ରଚନା କରିଛନ୍ତି । ରୂପ ଗୋସ୍ୱାମୀଙ୍କ ପଦ୍ୟାବଳୀ ବୈଷ୍ଣବ କୃଷ୍ଣଲୀଳାତ୍ମକ ଭକ୍ତିସ୍ତୋତ୍ରର ଏକ ସୁନ୍ଦର ସଞ୍ଚୟନ (*) । ଏହି ହେଲା ସ୍ତୋତ୍ର କାବ୍ୟର ପରମ୍ପରା । ଏହି ପରମ୍ପରାର ପ୍ରତିଧ୍ୱନି ଗୋପାଳକୃଷ୍ଣଙ୍କ ସ୍ତୋତ୍ର ରଚନାରେ ପରିଲକ୍ଷିତ ହୁଏ ।

---

(*) Dr. Dasgupta and Dr. De. H. S. L, PP, 649-666

**ଗୋପାଳକୃଷ୍ଣଙ୍କ ରଚିତ ସ୍ତୋତ୍ର :**

ରାଧାଙ୍କ ସମ୍ପର୍କରେ ଗୋପାଳକୃଷ୍ଣ ଚାରୋଟି ସ୍ତୋତ୍ର ରଚନା କରିଛନ୍ତି, ଯଥା— 'ଶ୍ରୀରାଧାନକ୍ଷତ୍ରମାଳାସ୍ତୋତ୍ରମ୍', 'ଶ୍ରୀବୃଷଭାନୁଜା ପ୍ରେମନାମାବଳୀ', 'ଶ୍ରୀରାଧା ପ୍ରେମାନନ୍ଦ-ସ୍ତୋତ୍ରମ୍' ଓ 'ଶ୍ରୀ ଶ୍ରୀ ରାଧିକା ସଂପ୍ରାର୍ଥନା ନବକମ୍' । ପ୍ରାୟ ସବୁ ସ୍ତୋତ୍ରରେ କବି ଗତାନୁ-ଗତିକ ଭାବରେ ରାଧାଙ୍କର ନାମ, ଗୁଣ, ଶୋଭା ଓ ବେଶଭୂଷଣର ବର୍ଣ୍ଣନା କରି ତାଙ୍କର ଦାସୀତ୍ୱରେ ନିଜ ସାଧକ ଜୀବନର ସାର୍ଥକତାର ସ୍ୱପ୍ନ ଦେଖିଛନ୍ତି । ରାଧାଙ୍କର ଗୁଣ ଓ ଶୋଭା ଇତ୍ୟାଦିର ପୁନରାବୃତ୍ତି ବହୁଳ ନୀରସ ବର୍ଣ୍ଣନା ସାହିତ୍ୟିକ ଓ ସମୀକ୍ଷକଙ୍କ ପକ୍ଷରେ କ୍ଳାନ୍ତିକର ହେଲେ ମଧ୍ୟ ସାଧକ ଭକ୍ତ ଦୃଷ୍ଟିରୁ ତା'ର ସ୍ୱତନ୍ତ୍ର ମୂଲ୍ୟ ରହିଛି ।

(୧) **ଶ୍ରୀରାଧାନକ୍ଷତ୍ରମାଳା ସ୍ତୋତ୍ରମ୍**—ଏହି ଶିରୋନାମାରେ ଗୋପାଳକୃଷ୍ଣ ପଦ୍ୟାବଳୀରେ ୩୦ଟି ଶ୍ଳୋକ ଓ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସତେଇଶିଟି ଶ୍ଳୋକ ଦେଖାଯାଏ । ଗ୍ରନ୍ଥାବଳୀର ସମ୍ପାଦକ (ବାବାଜୀ ବୈଷ୍ଣବ ଚରଣ) ଲେଖିଛନ୍ତି ଯେ କବି ନିଜର ମନ୍ତ୍ରୋପଦେଷ୍ଟା ଦୀକ୍ଷାଗୁରୁ ଲୋକନାଥ ଦାସ ଗୋସ୍ୱାମୀଙ୍କ ନାମରେ ଗୁରୁଭକ୍ତିର ନିଦର୍ଶନ ସ୍ୱରୂପ ନକ୍ଷତ୍ର ସଂଖ୍ୟା ଅନୁସାରେ ୨୭ଟି ଶ୍ଳୋକରେ ଏହି ସ୍ତୋତ୍ର ରଚନା କରି ତାଙ୍କୁ ଅର୍ପଣ କରିଥିଲେ (୬) । ଗୋପାଳକୃଷ୍ଣ ପଦ୍ୟାବଳୀରେ ଏହି ସ୍ତୋତ୍ରର ପ୍ରତି ପାଦ ଶେଷରେ ଅନୁସ୍ୱାର ନଥିବା ସ୍ଥଳେ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ପ୍ରତି ପାଦ ଶେଷରେ ଏହା ଦେଖାଯାଏ । ଶୁଦ୍ଧାଭକ୍ତିର ଦର୍ଶନ ଓ ତତ୍ତ୍ୱ ଦୃଷ୍ଟିରୁ କବି ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ହ୍ଲାଦିନୀ ବୃତ୍ତି ରୂପା ରାଧାଙ୍କ ଦାସୀତ୍ୱ ଲାଭର ଅଭିଳାଷ ପୋଷଣ କରି ଏହି ସ୍ତୋତ୍ର ରଚନା କରିଛନ୍ତି, ସେଥିପାଇଁ ଅଧିକାଂଶ ପାଦରେ ସେ ରାଧାଙ୍କୁ ନିଜର ସ୍ୱାମିନୀ ବୋଲି ଉଲ୍ଲେଖ କରିଛନ୍ତି । ଯଥା—

କୀର୍ତ୍ତିଦାପ୍ରାଣଭୂତା କୋଟିସାଧ୍ୱୀବରିଷ୍ଠା ।
ସଚ୍ଚିଦାନନ୍ଦରୂପା ସ୍ୱାମିନୀ ଯା ମଦୀୟା ।

(ଗୋପାଳକୃଷ୍ଣ ପଦ୍ୟାବଳୀ, ଶ୍ଳୋ. ୨, ପୃ. ୧)

କବି ଗତାନୁଗତିକ ଭାବରେ ଭକ୍ତ ଜୀବନର ସର୍ବାର୍ଥସାଧ୍ୟ ଶିରୋମଣି ସର୍ବଗୁଣ ପରିପୂର୍ଣ୍ଣା ପ୍ରେମମୟୀ ରାଧାଙ୍କର ଅନିନ୍ଦ୍ୟ ରୂପଲାବଣ୍ୟ, ଅଙ୍ଗ ପ୍ରତ୍ୟଙ୍ଗରେ ଖଚିତ ଭୂଷଣ ଓ ପରିହିତ ନୀଳ ଦୁକୂଳର ବର୍ଣ୍ଣନା କରି ଜୟଧ୍ୱନି କରିଛନ୍ତି । କବିଙ୍କର ବର୍ଣ୍ଣନାନୁସାରେ ରାଧା ସଚ୍ଚିଦାନନ୍ଦସ୍ୱରୂପା, ସର୍ବ ସୌଭାଗ୍ୟଶାଳିନୀ, ସର୍ବଶୋଭା ବରେଣ୍ୟା, ମହାଭାବମୟୀ, ରାସଲୀଳାର ଅଧିଷ୍ଠାତ୍ରୀ ଦେବୀ, ସର୍ବଗୁଣ ବରିଷ୍ଠରୂପୀ, ବ୍ରଜବଧୂ ଚକୋରୀ, କାରୁଣ୍ୟ ଓ ପ୍ରେମମୟୀ । ଅଙ୍ଗଶୋଭା ଓ ବେଶଭୂଷଣର ବର୍ଣ୍ଣନା ପୂର୍ବସୂରୀଙ୍କ ପରି ପାରମ୍ପରିକ ଓ ଦୀର୍ଘ ।

(୨) **ଶ୍ରୀବୃଷଭାନୁଜା ପ୍ରେମନାମାବଳୀ**—ଗୋପାଳକୃଷ୍ଣ ପଦ୍ୟାବଳୀ ଓ ଗୋପାଳ-କୃଷ୍ଣ ଗ୍ରନ୍ଥାବଳୀ ଉଭୟରେ ଏହି ସ୍ତୋତ୍ରଟି ଦେଖାଯାଏ । ଏହା ବିରୁଦଭଙ୍ଗୀରେ ରଚନା

(୬) ଗୋ, କୃ. ଗ୍ରଂ., ସଂପା : ବା. ବୈ. ଚ. ଦାସ, ପୃ. ୧୩, ପାଦଟୀକା ।

କରାଯାଇଛି । ଏଥିରେ ଅପଭ୍ରଂଶ ଛନ୍ଦର ପ୍ରଭାବ ଅନୁଭୂତ ହୁଏ । ପଦ୍ୟାବଳୀରେ ସ୍ତୋତ୍ର ଆରମ୍ଭରେ 'ଶ୍ରୀକୃଷ୍ଣ ଚୈତନ୍ୟଚନ୍ଦ୍ରାୟ ନମଃ' ସ୍ଥଳରେ ଗ୍ରନ୍ଥାବଳୀରେ 'ଶ୍ରୀ ଶ୍ରୀ ରାଧିକାୟୈ ନମଃ' ମୁଦ୍ରିତ ହୋଇଛି । ତା'ଛଡ଼ା ରାଧାଙ୍କର ପ୍ରେମନାମାବଳୀ କୀର୍ତ୍ତନର ଫଳଶ୍ରୁତି ପଦ୍ୟାବଳୀରେ ଆରମ୍ଭରେ ଥିବା ସ୍ଥଳେ ଗ୍ରନ୍ଥାବଳୀରେ ଶେଷରେ ରହିଛି । ଗ୍ରନ୍ଥାବଳୀରେ ଶ୍ଳୋକର ପାଦାଂଶ ଗ୍ରନ୍ଥିତହୋଇନଥିବା ସ୍ଥଳେ ପଦ୍ୟାବଳୀରେ ପୂର୍ଣ୍ଣ ଅଛି । ଦୃଷ୍ଟାନ୍ତ ସ୍ୱରୂପ ପଦ୍ୟାବଳୀରେ (ପୃ. ୩) 'ମୁଖେନ୍ଦୁଦ୍ୟୁତିପିନ୍ନ ଶ୍ୟାମାଙ୍କ ବର୍ତ୍ତିନୀ' ସ୍ଥଳରେ ଗ୍ରନ୍ଥାବଳୀରେ (ପୃ.୧୪) 'ମୁଖେନ୍ଦୁ ଶ୍ୟାମାଙ୍କ ବର୍ତ୍ତିନୀ' ମୁଦ୍ରିତ ହୋଇଛି । ଗ୍ରନ୍ଥାବଳୀରେ ସ୍ଥାନେ ସ୍ଥାନେ ଭୁଲ ପାଠ ଉଲ୍ଲେଖ କରାଯାଇଛି, ଯଥା—'ଇନ୍ଦବଜ ପରିମଳେ', କିନ୍ତୁ ପଦ୍ୟାବଳୀରେ ତାହା 'ଇନ୍ଦୀବର ପରିମଳେ; ଗ୍ରନ୍ଥାବଳୀରେ 'କୃଷ୍ଣମୟବନ', ପଦ୍ୟାବଳୀରେ 'କୃଷ୍ଣମୟ ବଲ୍ଲିନୀ ।'

ଏହି ସ୍ତୋତ୍ରଟିରେ କବି ରୂପ ଗୋସ୍ୱାମୀ ଓ ଅନ୍ୟ ବୈଷ୍ଣବ ଗୋସ୍ୱାମୀଙ୍କ ଆଦର୍ଶରେ ରାଧାଙ୍କର ଗୁଣ, ସୌନ୍ଦର୍ଯ୍ୟ ଓ ପ୍ରେମମୟତ୍ୱର ଚମତ୍କାରିତ ବର୍ଣ୍ଣନା କରି ସ୍ତୋତ୍ରର ଆରମ୍ଭରେ ସର୍ବାର୍ଥଦାୟିନୀ ରାଧାଙ୍କର ଶୁଭ ପ୍ରେମ-ନାମାବଳୀ କୀର୍ତ୍ତନର ଫଳ ସ୍ୱରୂପ ଦାସୀଭାବ ଲୋଲୁପ ଭକ୍ତ ପ୍ରତି ରାଧାଙ୍କର ପ୍ରୀତି ଓ ଅନୁକମ୍ପାର ସଙ୍କେତ ଦେଇଛନ୍ତି । ଏଥିରେ ରାଧାଙ୍କର ଗୁଣ, ସୌନ୍ଦର୍ଯ୍ୟ ଓ ବହୁବିଧ ନାମର ବର୍ଣ୍ଣନା କରି ଯାଇଛି, ଯଥା—

ପାହି ଶ୍ରୀରାଧିକେ, ଜାହି ଗାନ୍ଧର୍ବିକେ,
କୃଷ୍ଣପ୍ରାଣାଧିକେ, ଚୀନ ନୀଳାଂଶୁକେ । ଧ୍ରୁ ।
ଶ୍ରୀ କୀର୍ତ୍ତିଦା ପୁତ୍ରି, ମହାଭାବ ଗାତ୍ରି,
ରସୋମାଧିଷ୍ଠାତ୍ରି, ଗୋପୀ ପ୍ରେମ ପାତ୍ରି ।୧।
ମାଧୁରୀଣାଂ ପୁର, ହେ ଶ୍ରୀରାସେଶ୍ୱର,
ସ୍ଥିର ବିଦ୍ୟୁତ୍ ଗୌର, ସୌଭାଗ୍ୟ ମନ୍ଥର ।୨।

(ଗୋପାଳକୃଷ୍ଣ ପଦ୍ୟାବଳୀ, ପୃ. ୨-୩)

ଭକ୍ତମାନଙ୍କ ଦୃଷ୍ଟିରେ ରାଧା ହେଉଛନ୍ତି ସାଧ୍ୱୀ, ମହାଭାବମୟୀ, ଗୋଲୋକର ଅଧିଷ୍ଠାତ୍ରୀ ଦେବୀ, ସ୍ୱାମିନୀ । ତାଙ୍କର ଅଙ୍ଗକାନ୍ତି ସ୍ୱର୍ଣ୍ଣପଦ୍ମ ତୁଲ୍ୟ, କଳେବର ନିତ୍ୟନୂତନ । ଶୁଚି ସଦ୍‌ଗୁଣ ପରିପୂର୍ଣ୍ଣା, ଗୋବିନ୍ଦଚିତ୍ତ ମୋହିନୀ ରାଧା ପ୍ରଣୟରତ୍ନର ନିକେତନ ଏବଂ ଗୋପାଙ୍ଗନା (ପଶୁପରାମା) ମାନଙ୍କର ଆଶ୍ରୟ, ଦାସୀବତ୍ସଳା ଓ ଅଭୟଦାତ୍ରୀ । ସେହି ଅଖିଳ ଶକ୍ତି ବରିଷ୍ଠା, ଷଡ଼ୈଶ୍ୱର୍ଯ୍ୟ ସମ୍ପନ୍ନା, ସ୍ୱୟଂ ପ୍ରେମାର୍ପିତା ଶ୍ରୀମତୀ ନିର୍ଲିପ୍ତ ଓ ନିର୍ଦ୍ଦୋଷ । ଅଙ୍ଗରେ ତାଙ୍କର ପ୍ରେମ ଜନିତ ଅଷ୍ଟ ସାତ୍ତ୍ୱିକ ଅନୁଭାବ କୋରକିତ ହୁଏ । ସିନ୍ଦୂର ତିଳକ ଧୃତା ଜିବଳୀ ଶୋଭିତା କମଳିନୀ ରାଧା ଶତ୍ରୁଗର୍ବ ଚୂର୍ଣ୍ଣ କରି ଗୋଷ୍ଠର ଶ୍ରେୟ ସାଧନ କରିଥାନ୍ତି । ତୀର୍ଥପୂତା ଲାବଣ୍ୟମୟୀ ରାଧିକାଙ୍କର ଅନ୍ତର ଶ୍ୟାମମୟ । ସେହି ନିତ୍ୟାନନ୍ଦମୟୀ ଅମୃତଭାଷିଣୀ ଶ୍ରୀମତୀ ସଖୀମାନଙ୍କ ପ୍ରତି ସ୍ନେହ ପ୍ରବଣା; ନିଜେ ସୌଭାଗ୍ୟମୟୀ, ସଙ୍ଗୀତ-ପ୍ରିୟା ଓ ନାନା କଳା ବିଶାରଦା । ପ୍ରିୟତମ ଶ୍ୟାମଙ୍କ ପ୍ରତି ଚତୁର ଅନୁକୂଳ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜ କ୍ରୀଡ଼ାରେ ବିହ୍ୱଳତା ପ୍ରକାଶ କରନ୍ତି ।

(ଗ) **ଶ୍ରୀରାଧା ପ୍ରଣମାନନ୍ଦ ସ୍ତୋତ୍ରମ୍**—କବି ବାସୀଶ୍ୱର ପ୍ରତିଭାବନ୍ତ ହୋଇ ଏ ସ୍ତୋତ୍ର ଏବଂ ଅନ୍ୟାନ୍ୟ ସ୍ତୋତ୍ର ରଚନା କରିଛନ୍ତି । ଏ ସ୍ତୋତ୍ରଟି ୫୦ ଶ୍ଳୋକ ବିଶିଷ୍ଟ । ରୂପ ଗୋସ୍ୱାମୀ ଓ ରଘୁନାଥ ଦାସ ଗୋସ୍ୱାମୀଙ୍କ ଆଦର୍ଶରେ କବି ପୂର୍ବ ସ୍ତୋତ୍ରପରି ଏ ସ୍ତୋତ୍ରରେ ମଧ୍ୟ ରାଧାଙ୍କର ରୂପ ଗୁଣର ଭକ୍ତ ସୁଲଭ ସ୍ତୁତି-ମୁଖର ଦୀର୍ଘବର୍ଣ୍ଣନା ଦେଇ ପ୍ରତି ଶ୍ଳୋକରେ ସ୍ୱାମିନୀ ରାଧାଙ୍କଠାରେ ନିଜର ବିନମ୍ର ଦ୍ୟୋତକ ନମସ୍କ୍ରିୟା ଜ୍ଞାପନ କରିଛନ୍ତି, ଯଥା—

ନମଃ ଶ୍ରୀ ସ୍ୱାମିନି ! ରାଧେ ନମଃ ଗୋବିନ୍ଦବଲ୍ଲଭେ !
ନମଃ ବୃନ୍ଦାବନେଶ୍ୱର୍ଯ୍ୟୈ ରାଧିକାୟୈ ନମୋ ନମଃ ।୧।
ନମଃ ଶ୍ରୀକୃଷ୍ଣକାନ୍ତାୟୈ କୃଷ୍ଣାନନ୍ଦ-ପ୍ରଦାୟିନି ।
କୃଷ୍ଣପ୍ରିୟା କୃଷ୍ଣପ୍ରାଣା ରାଧିକାୟୈ ନମୋ ନମଃ ।୨।

(ବାବାଜୀ ବୈଷ୍ଣବ ଚରଣ, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ: ୪୭)

କବିଙ୍କ ବର୍ଣ୍ଣନାନୁସାରେ ରାଧା ଯଶସ୍ୱିନୀ, କୃଷ୍ଣଙ୍କ ବାସିନୀ, ବ୍ରଜାଙ୍ଗନା ଶ୍ରେଷ୍ଠା, ନିକୁଞ୍ଜ ବିହାରିଣୀ, ତ୍ରିଲୋକ ବର ସୁନ୍ଦରୀ । ମୁଖ ଯାହାଙ୍କର ବିକଶିତ ପଦ୍ମତୁଲ୍ୟ, କୋଟିଏ ରତିର ସୌନ୍ଦର୍ଯ୍ୟରେ ଯାହାଙ୍କର ବିଗ୍ରହ ଗଠିତ, ଯେ ପ୍ରେମଲୀଳାସାର ମୂର୍ତ୍ତିମନ୍ତ ବିଗ୍ରହ, ଗୋକୁଳର ଆନନ୍ଦଦାନ କାରିଣୀ, ରାସେଶ୍ୱରୀ, ରମଣୀୟ ଲାସ୍ୟ ନୃତ୍ୟରେ ଯେ ବିଶେଷ ଆନନ୍ଦ ଲାଭ କରନ୍ତି, ସେହି ମହାଭାବ ସ୍ୱରୂପିଣୀ ରାଧାଙ୍କଠାରେ କବି ସଭକ୍ତି ପ୍ରଣାମ ଜଣାଉଛନ୍ତି । ବୈଷ୍ଣବର ଉପାସ୍ୟ ସଚ୍ଚିଦାନନ୍ଦ ରୂପିଣୀ ମହାଭାବମୟୀ ରାଧା ଅଲୌକିକ ଗୁଣ ସମ୍ପନ୍ନା ହେଲେ ମଧ୍ୟ ସୁଲକ୍ଷଣା ଲୌକିକ କାବ୍ୟ ନାୟିକାର ବେଶ, ଭୂଷଣ ଓ ହାବଭାବରେ ମଣ୍ଡିତ ହୋଇ ସାହିତ୍ୟିକ ଓ ସମୀକ୍ଷକ ମାନଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି । ରାଧାଙ୍କର ଅଙ୍ଗକାନ୍ତି ତପ୍ତ କାଞ୍ଚନ ଆଭାତୁଲ୍ୟ, ଅଙ୍ଗରୁ ତାଙ୍କର ପଦ୍ମ ଓ କୁଙ୍କୁମ ଗନ୍ଧ ନିଃସରୁ ଥାଏ । ମହାକବି (କାଳିଦାସ, ଶ୍ରୀହର୍ଷ) ମାନଙ୍କର କାବ୍ୟ ନାୟିକା ପରି ବିଦୂଷୀ, ସଙ୍ଗୀତକୁଶଳା; ଅଙ୍ଗରେ ଲୀଳାୟିତ ଲାବଣ୍ୟ, ହସ୍ତରେ ଲୀଳାକମଳ, ଅଙ୍ଗ-ପ୍ରତ୍ୟଙ୍ଗରେ ଦ୍ୱାଦଶ ଆଭରଣର ମଣ୍ଡନ (୭) । ଶ୍ରୀକୃଷ୍ଣଙ୍କ ଦର୍ଶନ, ତାଙ୍କ ସହ ମିଳନ ଓ ବିରହରେ ତାଙ୍କଠାରେ ସ୍ତମ୍ଭ, ସ୍ୱେଦ ଆଦି ଅଷ୍ଟସାତ୍ତ୍ୱିକ ଅନୁଭାବର ସଞ୍ଚାର ହୁଏ । ବୈଷ୍ଣବର ଧ୍ୟାନ-ଦୃଷ୍ଟିରେ ସେ ଜଗତର ଆନନ୍ଦଦାୟିନୀ, କ୍ଲୀଂବୀଜ ସ୍ୱରୂପିଣୀ, ନିତ୍ୟ-ନୂତନା ଓ ପ୍ରେମଭକ୍ତିପ୍ରଦା । ସେ ନିର୍ଲିପ୍ତ, ନିର୍ଦ୍ଦୋଷ ଓ କାମବୀଜ ପ୍ରଦାୟିନୀ; ବ୍ରଜକୁଳ ପୂଜ୍ୟା ଓ ରାସର ଅଧିଷ୍ଠାତ୍ରୀ ଦେବୀ । ସେ ସର୍ବ ସୁଲକ୍ଷଣୀ, କରୁଣାମୟୀ, ନିଭୃତ କୁଞ୍ଜବାସିନୀ, ବୃନ୍ଦାବନର ସାମ୍ରାଜ୍ଞୀ । କୃଷ୍ଣ ପ୍ରାଣସ୍ୱରୂପା ପ୍ରଣୟାମୃତରୂପା ରାଧା ପ୍ରିୟତମ ଶ୍ୟାମଙ୍କର ଚିତ୍ତମୋହିନୀ ଓ ପରମାନନ୍ଦ ଦାୟିନୀ । ବୈଷ୍ଣବ ଗୋସ୍ୱାମୀ ମାନଙ୍କର ଗତାନୁ-ଗତିକ ବର୍ଣ୍ଣନା ପରି ଏଥିରେ ଭକ୍ତର ବ୍ୟକ୍ତିଗତ ଅନୁଭୂତି ଓ ସ୍ୱକୀୟତାର ସ୍ୱର ଅତି କ୍ଷୀଣ ।

---

(୭) ଉଜ୍ଜ୍ୱଳନୀଳମଣିଃ, ୪ର୍ଥ ସଂ, ରାଧା ପ୍ରକରଣଂ, ସଂପା: ବ୍ରଜନାଥ ମିଶ୍ର, ପୃ. ୧୦୨

ଏ ପ୍ରକାର ରଚନାରେ ସାହିତ୍ୟିକ ମୂଲ୍ୟ ଅପେକ୍ଷା ବୈଷ୍ଣବର ଭକ୍ତି ସୁଲଭ ସଂସ୍କାର-ଦୃଷ୍ଟି ପ୍ରଧାନ । କିନ୍ତୁ ପୂର୍ବ ସ୍ତୋତ୍ର ଅପେକ୍ଷା ଏ ସ୍ତୋତ୍ର ରଚନା କିଞ୍ଚିତ୍ ଶ୍ରବଣସୁଖକର ।

(୪) **ଶ୍ରୀଶ୍ରୀ ଗାନ୍ଧର୍ବା ସଂପ୍ରାର୍ଥନା ନବକମ୍**—ରାଧାଙ୍କର ପାଦକମଳରେ କିଙ୍କରୀତ୍ୱର ଅଭିଳାଷ ପୋଷଣ କରି କବି ନବ ଶ୍ଳୋକ ବିଶିଷ୍ଟ ଏହି ପ୍ରାର୍ଥନାଟି ରଚନା କରିଛନ୍ତି । 'ନବକ'ଟିର ରଚନାରେ ଅପଭ୍ରଂଶ ଛନ୍ଦର ପ୍ରଭାବ ଲକ୍ଷିତ ହୁଏ । ଏଥିରେ ରାଧିକାଙ୍କର ରୂପ, ଗୁଣ, ସୌନ୍ଦର୍ଯ୍ୟ ଓ ଆଭରଣର ସେହି ପାରମ୍ପରିକ ବର୍ଣ୍ଣନା ରହିଛି, ଯଥା—ଯେଉଁ ଗାନ୍ଧର୍ବୀ ରାଧାଙ୍କର ମୁଖ ଶରତ୍ ପୂର୍ଣ୍ଣିମାର ଚନ୍ଦ୍ରକୁ ନିନ୍ଦା କରେ, ରତ୍ନ ଖଚିତ କୁଣ୍ଡଳ ଯାହାଙ୍କର କର୍ଣ୍ଣରେ ଶୋଭା ପାଉଛି, ଯେ ସୁନ୍ଦରୀ ଶ୍ରେଷ୍ଠା ଓ ବ୍ରଜେନ୍ଦ୍ର ପ୍ରାଣାଧିକା, କୁନ୍ଦ ଓ ପଦ୍ମ ପରି କାନ୍ତି ଯାହାଙ୍କର, ଯାହାଙ୍କର କମନୀୟ ଭ୍ରୂଲତା ଶୋଭି କନ୍ଦର୍ପ କାଣ୍ଡକୁ ପରାଜିତ କରେ, ଯେ ରାସ-ଲାସ୍ୟରେ ବିଦୂଷୀ, ପତିବ୍ରତା ଓ ସକଳ ସଦ୍‌ଗୁଣ ଭୂଷିତା, ଯେ ମହାଭାବ ସ୍ୱରୂପିଣୀ ଓ ଶ୍ରେଷ୍ଠ ମାନସାଧନରେ ନିପୁଣ, ସେହି ରାଧାଙ୍କର ପାଦପଦ୍ମକୁ କବି ବନ୍ଦନା କରୁଛନ୍ତି । ମହାଭାବମୟୀ ରାଧା ତାଙ୍କୁ ଦାସ୍ୟ ଭକ୍ତିର ସୌଭାଗ୍ୟ ଦାନ କରନ୍ତୁ, ରାଧାଙ୍କ ନିକଟରେ ଏହାହିଁ ତାଙ୍କର ପ୍ରାର୍ଥନା । 'ନବକ'ଟିରେ ଭକ୍ତ ପ୍ରାଣର ଅନନ୍ୟ ଅନୁଭୂତି ଅପେକ୍ଷା ଅପଭ୍ରଂଶ ଛନ୍ଦରେ ଅନୁପ୍ରାସିକ ମାଧୁର୍ଯ୍ୟ ମଧ୍ୟରେ ପାଦର ଲୀଳାୟିତ ଭଙ୍ଗୀ ଓ ଗତି ମୁଖରତା ପ୍ରଧାନ ଆକର୍ଷଣ ହୋଇଛି । ମନେହୁଏ : ରୂପ ଗୋସ୍ୱାମୀଙ୍କର ଶ୍ରୀଗାନ୍ଧର୍ବା ସଂପ୍ରାର୍ଥନାଷ୍ଟକମ୍ (୮) ଅନୁକରଣରେ ଏ 'ନବକଟି'ର ଏ ପ୍ରକାର ନାମକରଣ କରିଛନ୍ତି । ରୂପ ଗୋସ୍ୱାମୀଙ୍କର ଅଷ୍ଟକର ପ୍ରତିଶ୍ଳୋକ ଶେଷରେ ଦାସ୍ୟଭାବ ସୂଚକ ଗୋଟିଏ ପାଦର ପୁନରାବୃତ୍ତି (ତ୍ୱଂ ସ୍ୱୀ ପାଦ ପଦ୍ମେ ଦାସ୍ୟ ଭକ୍ତିଂ ଦେହି ରାଧିକେ !) ଦେଖା ନ ଗଲେ ମଧ୍ୟ ସେହି ଭାବର ସଙ୍କେତ ରହିଛି, ଯଥା —

ଗାନ୍ଧର୍ବିକେ ! ନିଜ ଗଣେ ଗଣନାଂ ବିଧେହି ।୬।

× × ×

ଲେକନ୍ଦସ୍ଥାଭରଣସ୍ତୋଷ୍ଟରଣାମ୍ବୁଜାନି
ସଂବାହୟିଷ୍ୟତି କଦା ଯୁବୟୋର୍ଜନୋଽୟମ୍ ।୫।

(ଶ୍ରୀ ସ୍ତବକଳ୍ପଦ୍ରୁମଃ, ପୃ. ୫୮୧-୫୮୬)

(୫) **ପ୍ରଣାମ ପ୍ରଣୟାଖ୍ୟ ଶ୍ରୀଶ୍ରୀ ଗୋବିନ୍ଦ ନାମାମୃତ ଲହରୀ**—ଗୋପାଳ-କୃଷ୍ଣ ଗ୍ରନ୍ଥାବଳୀରେ (ବାବାଜୀ ବୈଷ୍ଣବ ଚରଣ) ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଦୁଇଟି ସଂସ୍କୃତ ରଚନା ପରିଦୃଷ୍ଟ ହୁଏ, ଯଥା—'ପ୍ରଣାମ ପ୍ରଣୟାଖ୍ୟ ଶ୍ରୀଶ୍ରୀ ଗୋବିନ୍ଦ ନାମାମୃତ ଲହରୀ' (ପୃ. ୫୬) ଏବଂ 'ଶ୍ରୀକୃଷ୍ଣ ନାମରତ୍ନମାଳା ସ୍ତୋତ୍ରମ୍' (ପୃ. ୧୯୦)

'ଶ୍ରୀ ଶ୍ରୀ ଗୋବିନ୍ଦନାମାମୃତ ଲହରୀ' 'ଶ୍ରୀରାଧା ପ୍ରଣମାନନ୍ଦ ସ୍ତୋତ୍ର' ପରି କୃଷ୍ଣକର୍ଣ୍ଣାମୃତମ୍ ଓ ଗୌଡ଼ୀୟ ଗୋସ୍ୱାମୀଙ୍କ ରଚନା ଆଦର୍ଶରେ ରଚିତ ଏକ ତ୍ରିଂଶ ଶ୍ଳୋକ ବିଶିଷ୍ଟ

(୮) ଶ୍ରୀ ସ୍ତବକଳ୍ପଦ୍ରୁମଃ, ସଂଗ୍ରା: ଶ୍ରୀମଦ୍ ଭକ୍ତିସାରଙ୍ଗ ଗୋସ୍ୱାମୀ ମହାରାଜ, ପୃ-୫୮୧

ସ୍ତୋତ୍ର । ବୈଷ୍ଣବର ଉପାସ୍ୟ ଚିନ୍ମୟ ପ୍ରେମର ମୂର୍ତ୍ତିମନ୍ତ ବିଗ୍ରହ ଭଗବାନ୍ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ କବିଙ୍କର ଏହା ଏକ ନମସ୍କ୍ରିୟାତ୍ମକ ରଚନା । ପ୍ରଥମଶ୍ଳୋକରେ କବି ଉପାସ୍ୟଙ୍କ ଉଦ୍ଦେଶ୍ୟରେ ନିଜର ପ୍ରଣାମ ଜଣାଇଛନ୍ତି । ରାଧାଙ୍କ ପରି ଶ୍ରୀକୃଷ୍ଣଙ୍କର ରୂପ, ଗୁଣ, ଲୀଳା ଓ ଅଙ୍ଗ ସୌଷ୍ଠବର ଏହା ଏକ ଗତାନୁଗତିକ ବର୍ଣ୍ଣନା । ମଧ୍ୟଯୁଗୀୟ ଆଳଙ୍କାରିକ ପରମ୍ପରା (ଅନୁପ୍ରାସ-ମାଧୁର୍ଯ୍ୟ) ହେତୁ ଏହା ଗାନ ଓ ଆବୃତ୍ତି କାଳରେ ଶ୍ରୁତିସୁଖକର ହେବା ସ୍ୱାଭାବିକ, ଯଥା—

ବନ୍ଦେ ବୃନ୍ଦାରଣ୍ୟ-ଚନ୍ଦ୍ରଂ ନିକୁଞ୍ଜ-ବନ-ବାସିନେ ।
କୃଷ୍ଣାୟ ଗୋପୀନାଥାୟ ଶ୍ରୀଗୋବିନ୍ଦାୟ ତେ ନମଃ ।୧।

(ବାବାଜୀ ବୈଷ୍ଣବ ଚରଣ, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୫୨)

କବିଙ୍କ ବର୍ଣ୍ଣନାନୁସାରେ ଯେଉଁ ଶ୍ରୀକୃଷ୍ଣ ରାଧାଙ୍କ ମୁଖପଦ୍ମରୁ ଭ୍ରମର ପରି ମଧୁ ପାନ କରନ୍ତି, କାଳିନ୍ଦୀ ତୀରରେ ଯେ ଏକାନ୍ତ କ୍ରୀଡ଼ାଚପଳ, ମଞ୍ଜୁଳ ମୟୂରପୁଚ୍ଛ ଯାହାଙ୍କର ଚୂଡ଼ାରେ ଶୋଭାପାଏ, କର୍ଣ୍ଣରେ ଯାହାଙ୍କର ମକର କୁଣ୍ଡଳ ଆନ୍ଦୋଳିତ, ସେହି ନୀଳେନ୍ଦୀବରନେତ୍ର ନବ ଲାବଣ୍ୟଶାଳୀ ଗୋବିନ୍ଦଙ୍କୁ ନମସ୍କାର । କୋଟିଏ କନ୍ଦର୍ପର କାନ୍ତି ଧାରଣ କରି ଲୀଳାରେ ଯେ ଜଗତକୁ ମୋହି ପାରନ୍ତି, ଯେ ଶୃଙ୍ଗାର (ଶୁଚି) ରସର ମୂର୍ତ୍ତିମନ୍ତ ବିଗ୍ରହ, ଯେ ରାଧାଙ୍କର ମାନସହଂସ ରୂପୀ ଓ ତାଙ୍କର ପ୍ରେମର ଆଶ୍ରୟ, ସେହି ଗୋବିନ୍ଦଙ୍କୁ ନମସ୍କାର । ଯେ ନିତ୍ୟ ନବକିଶୋର, ପରମ ମଙ୍ଗଳମୟ ମୂର୍ତ୍ତି, ଅଶେଷ ଗୁଣର ଆଧାର, ଯେ ପ୍ରପନ୍ନର ଆର୍ତ୍ତି ହରଣରେ ନିପୁଣ, ପତିତ ତ୍ରାଣକର୍ତ୍ତା, ଜଗନ୍ନିବାସ, କରୁଣାମୟ ଓ ସର୍ବରସାଶ୍ରୟ, ସେହି ସଚ୍ଚିଦାନନ୍ଦ ଚିଦ୍‌ଘନ ଗୋବିନ୍ଦଙ୍କର ଚରଣ ପଦ୍ମରେ କବିଙ୍କର ଚିତ୍ତ ଭ୍ରମର ମଧୁପାନ କରୁଥାଉ ।

(୬) **ଶ୍ରୀକୃଷ୍ଣ ନାମରତ୍ନମାଳା ସ୍ତୋତ୍ରମ୍**—ଏହା ସଂସ୍କୃତ ଛନ୍ଦରେ ବିଂଶ ଶ୍ଳୋକ ବିଶିଷ୍ଟ ଗୋଟିଏ ସ୍ତୋତ୍ର । ବିଭିନ୍ନ ଶ୍ଳୋକ ମଧ୍ୟରେ ସାମାନ୍ୟ ଯତିପାତର ପ୍ରବଣତା ଲକ୍ଷିତ ହୁଏ, ଯଦିଓ ସଂସ୍କୃତ ଛନ୍ଦରେ ଯତିପାତର ପ୍ରଶ୍ନ ଉଠେନା । ଏଥିରେ ଶ୍ରୀକୃଷ୍ଣଙ୍କ ରୂପ, ଶୋଭା, ଗୁଣ, ଲୀଳା, ପରମ ପୁରୁଷତ୍ୱ ଓ ପୂର୍ଣ୍ଣତମ ରୂପର ଭକ୍ତ ସୁଲଭ ଗତାନୁଗତିକ ବର୍ଣ୍ଣନା ଦେଖାଯାଏ । କବିଙ୍କର ବର୍ଣ୍ଣନାନୁଯାୟୀ କାଳିନ୍ଦୀ ତୀର ସଞ୍ଚାରୀ, କୁଞ୍ଜାରଣ୍ୟ କଳାନିଧି ଇନ୍ଦ୍ରନୀଳ କାନ୍ତି ଶ୍ରୀକୃଷ୍ଣ ହେଉଛନ୍ତି ପରମ ପୁରୁଷ । ସେ ନିଖିଳ ଜଗତର ନାଥ, ବିଶ୍ୱର ଆଦିକାରଣ ଓ ସନାତନ । ସେହି ଦ୍ୱିଭୁଜ, ମୁରଲୀଧର କମନୀୟ ମୂର୍ତ୍ତିର ପାଦ ପଦ୍ମକୁ ହର, ବ୍ରହ୍ମା ଓ ଦେବତାମାନେ ବନ୍ଦନା କରିଥାନ୍ତି । କରୁଣାମୟ ଶ୍ରୀକୃଷ୍ଣ ଜ୍ଞାନ-ବିଜ୍ଞାନ ସ୍ୱରୂପ, ବିଶ୍ୱେଶ୍ୱର ଓ ପରମାନନ୍ଦ ରୂପୀ । ସେହି ନିଭୃତ କୁଞ୍ଜବାସୀ ବୃନ୍ଦାବନ ଚନ୍ଦ୍ର ଶ୍ରୀକୃଷ୍ଣ ଆଭୀର ବଧୂଙ୍କର ପ୍ରାଣେଶ, ପ୍ରେମମୟୀ ରାଧାଙ୍କର ମାନଭଞ୍ଜନକାରୀ । ସେହି ପ୍ରେମାବେଶସ୍ୱରୂପ ଶ୍ରୀକୃଷ୍ଣ ସର୍ବାବତାରୀ ଓ ପୂର୍ଣ୍ଣତମସ୍ୱରୂପ ।

(୭) **ହେ ଦୂତ ! ନିରୀକ୍ଷସ୍ୱ ମମ ହୃଦବାଧା**—ଜୟଦେବଙ୍କର ଗୀତଗୋବିନ୍ଦ ଆଦର୍ଶରେ କବି ଚୋଖିଁ ରାଗରେ ଶ୍ରୀକୃଷ୍ଣଙ୍କର ବିରହ ବେଦନାର ଏକ ପାରମ୍ପରିକ ଚିତ୍ର

ଦେଇ ସଂସ୍କୃତରେ ଏହି ଗୀତଟିକୁ ରଚନା କରିଛନ୍ତି । ଶ୍ରୀକୃଷ୍ଣ ଦୂତୀ ସମୀପରେ ନିଜ ହୃଦୟସ୍ଥ ବେଦନା ବାଢ଼ି ଅଶୋକ କୁଞ୍ଜରେ ଭ୍ରମର ଗୁଞ୍ଜିତ କମନୀୟ କୁରୁବକ କୁସୁମ ସୁରଭିରେ ନିଜଗତ୍‌ର ଅତୁଳ ଗୁଣ ଗରୀୟସୀ ରାଧାଙ୍କୁ ଅବଲମ୍ବେ ଅଭିସାର କରାଇବା ପାଇଁ ଅନୁରୋଧ କରୁଛନ୍ତି । ଶ୍ରୀକୃଷ୍ଣ ବ୍ୟଥାରେ ସମ୍ବେଦନଶୀଳା ଦୂତୀ ଦ୍ରୁତ ଗମନ କରି ନିର୍ଜନରେ ରାଧାଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଉତ୍କଣ୍ଠା ବ୍ୟଞ୍ଜକ ସରସବାଣୀ ପ୍ରକାଶ କରି ତାଙ୍କର ବିରହ ବ୍ୟଥାର ପ୍ରଶମନ ପାଇଁ ଅନୁରୋଧ କରେ । ଦୂତୀ କହେ ଯେ, ମୁରାରିଙ୍କର ହୃଦୟ ଅଧିକାର କରି ତାଙ୍କୁ କାମାନଳରେ ଦଗ୍ଧ କରିବା ପ୍ରଣୟିନୀର ଉପଯୁକ୍ତ ବିଚାର ନୁହେଁ । ପୁଣି ଅଭିମାନ କରି ରାଧା ତାଙ୍କର ଅମୃତମୟ ଅଙ୍ଗଶୋଭା ମ୍ଳାନ କରିବା ଉଚିତ ନୁହେଁ ।

ବିପ୍ରଲମ୍ଭ ଶୃଙ୍ଗାର ଛନ୍ଦରେ ଭାବ ଓ ଅନୁଭୂତିର ଚିତ୍ରାଚରିତ ଆଲେଖ୍ୟରେ ଗୀତ-ଗୋବିନ୍ଦର ଦୋଳାୟିତ ଛନ୍ଦ, ଶବ୍ଦ ଗୁମ୍ଫନର ଆନୁପ୍ରାସ-ମାଧୁର୍ଯ୍ୟ ଓ ଗୀତ ସୁଷମା ହେତୁ ଗୀତଟି ଶ୍ରୁତିସୁଖକର ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ—

ହେ ଦୂତି ! ନିରାକ୍ଷସ୍ୱ ମମ ହୃଦବାଧା । ଘୋଷା ।
ଇହ ନବ-ବଞ୍ଜୁଳ-କୁଞ୍ଜେ ।
କୁରୁବକ କୁସୁମ-ସୁଷମ-ନବ ଗୁଞ୍ଜେ । ୧ ।
ଶୀଘ୍ର ଅଭିସାରସ୍ୱ ଧୀରା ।
ନିଜଗଦତୁଲ-ଗୁଣ-ଗରିମ ଗଭୀରା । ୨ ।
ଭବତୁ ଗତି ଅବଲମ୍ବେ ।
ଯଦୁଚିତ ଇହ କୁରୁ ବିଗତ ବିଲମ୍ବେ । ୪ ।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୫୧୭)

ସ୍ଥାନେ ସ୍ଥାନେ ଗୀତଗୋବିନ୍ଦର ପଦ ପରମ୍ପରାର ପ୍ରତିଧ୍ୱନି ଗୀତଟିରେ ସ୍ପଷ୍ଟ ହୋଇ ଉଠିଛି, ଯଥା—

ଗୋପାଳକୃଷ୍ଣ ଗ୍ରନ୍ଥାବଳୀରୁ ଉଦ୍ଧୃତ ପୂର୍ବୋକ୍ତ ତିନୋଟି ପଦ ।

ଗୀତଗୋବିନ୍ଦରେ — ଭବତି ବିଲମ୍ବିନି ବିଗଳିତ ଲଜ୍ଜା । (୬ । ୧୨ । ୮)

ନ କୁରୁ ନିତମ୍ବିନି ଗମନ ବିଲମ୍ବନ ମନୁସର ତଂ ହୃଦୟେଶମ୍ । (୫ । ୧୧ । ୮)

ମନେହୁଏ : ଏ ଗୀତ ରଚନା କାଳରେ ଗୀତଗୋବିନ୍ଦର ନବମ (୪ର୍ଥ ସର୍ଗ), ଦ୍ୱାଦଶ ( ଷଷ୍ଠ ସର୍ଗ ), ଚତୁର୍ଦ୍ଦଶ (୭ମ ସର୍ଗ) ଓ ଅଷ୍ଟାଦଶ (ନବମ ସର୍ଗ) ସଂଖ୍ୟକ ଗୀତ କବିଙ୍କ ଦୃଷ୍ଟି ସମକ୍ଷରେ ଥିଲା ।

ରାଧା ଓ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ଏହି ହେଉଛି କବିଙ୍କର କେତୋଟି ସ୍ୱକୀୟ ସଂସ୍କୃତ ରଚନା । ରାଧାକୃଷ୍ଣଙ୍କ ସମ୍ପର୍କରେ କବି ବହୁ ସଂସ୍କୃତ ରଚନାର ଅନୁବାଦ ଓ ଭାବ ବିସ୍ତୃତ କରି ସଙ୍ଗୀତ ରଚନା କରିଛନ୍ତି । ସେ ସମ୍ପର୍କରେ ଯଥା ସ୍ଥାନରେ ଆଲୋଚନା କରାଯାଇଛି ।

(୮) ଶ୍ରୀଗୁରୁ ପଞ୍ଚକମ୍—ଯେ କୌଣସି ଧର୍ମ ପରମ୍ପରାରେ ଉପାସ୍ୟଙ୍କ ପୂର୍ବରୁ ସାଧକ ଓ ଭକ୍ତମାନେ ଗୁରୁଙ୍କର ବନ୍ଦନା କରିଥାନ୍ତି, କାରଣ ଗୁରୁ ହେଉଛନ୍ତି ପରମ ପଥ ପ୍ରଦର୍ଶକ, ସେମାନଙ୍କର ଇହ ପରକାଳର ନିୟନ୍ତ୍ରଣ କର୍ତ୍ତା ଓ ଆଶ୍ରୟ ଦାତା। ଗୁରୁଙ୍କର କୃପା ଓ ଆଶୀର୍ବାଦ ଫଳରେ ଭଗବତ୍ କୃପା ଲାଭ ସେମାନଙ୍କ ପକ୍ଷରେ ସୁଲଭ ହୋଇଥାଏ। ଗୋପାଳକୃଷ୍ଣ ଭକ୍ତିରସ (ଶାନ୍ତରସ) ପର୍ଯ୍ୟାୟରେ ଶ୍ରୀଗୁରୁ ପଞ୍ଚକ ରଚନା କରିଛନ୍ତି। ସ୍ୱଭକ୍ତି ପ୍ରବଣତାର ପରିଚୟ ଦେବାକୁ ଯାଇ କବି ଲେଖିଛନ୍ତି—

ସଂସାର-ଦାବାଗ୍ନି-ବିଦଗ୍ଧ-ଜୀବଂ
ତ୍ରାଣାୟ କାରୁଣ୍ୟ-ଜଳଧର ତ୍ୱମ୍।
ଅପାର କଲ୍ୟାଣମୟ ଗୁଣାବ୍ଧିଂ
ବନ୍ଦେ ଶ୍ରୀ ଗୁରୋଃ ଚରଣ-ସରୋଜମ୍ ।୧।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୧)

ସଂସାର ଦାବାଗ୍ନିରେ ଦଗ୍ଧ ହେଉଥିବା ଜୀବକୁ ରକ୍ଷା କରିବା ପାଇଁ କାରୁଣ୍ୟ-ଜଳଧର ରୂପେ ଯେ ଉଦିତ ହୋଇଥାନ୍ତି, ଅପାର କଲ୍ୟାଣ ଗୁଣର ସାଗର ତୁଲ୍ୟ ସେହି ଗୁରୁଦେବଙ୍କର ପାଦପଦ୍ମ କବି ବନ୍ଦନା କରୁଛନ୍ତି। ଯାହାଙ୍କର ଶରୀରରେ ଶୁଦ୍ଧ ପୂତଭାବ (ପ୍ରେମ) ଭୂଷଣ ରୂପେ ରହିଥାଏ, ଯେ ଭଗବତଙ୍କ ତୁଲ୍ୟ ସଚ୍ଚିଦାନନ୍ଦ ବିଗ୍ରହ, ଯାହାଙ୍କର କରଯୁଗଳ ଭକ୍ତକୁ ଅଭୟ ଦାନ କରେ, ଯେ ନିଜର ଶିଷ୍ୟମାନଙ୍କ ପ୍ରତି ଅନୁକମ୍ପା ପ୍ରବଣ, ଯେ ଶ୍ରୀକୃଷ୍ଣ-ପ୍ରେମସେବା ଦାନ କରି ପାରନ୍ତି ସେହି ମଙ୍ଗଳର ଆଧାର, ପରମାତ୍ମା ସ୍ୱରୂପ ଗୁରୁଦେବଙ୍କର ଚରଣପଦ୍ମକୁ କବି ବନ୍ଦନା କରୁଛନ୍ତି। ଶେଷରେ 'ଶ୍ରୀଗୁରୁ ପଞ୍ଚକ'ର ଶ୍ରଦ୍ଧାଯୁକ୍ତ ପାଠର ଫଳଶ୍ରୁତି ଉଲ୍ଲେଖ କରି କବି ଏହା ସମାପ୍ତ କରିଛନ୍ତି। ଏ ପ୍ରକାର ରଚନାରେ ସଂସ୍କୃତ ସାହିତ୍ୟରେ ପ୍ରତିଷ୍ଠିତ ଗୁରୁବନ୍ଦନାର ପରମ୍ପରା ଅଭିବ୍ୟଞ୍ଜିତ।

—

## ସଂସ୍କୃତର ଅନୁବାଦ ଓ ସଂସ୍କୃତ ପ୍ରଭାବିତ ରଚନା

### (କ) ସଂସ୍କୃତ ରଚନାର ଅନୁବାଦ :

ସଂସ୍କୃତ ରଚନା ମଧ୍ୟରେ ବିଶେଷତଃ ଗୌଡ଼ୀୟ ବୈଷ୍ଣବ ଗୋସ୍ୱାମୀ ମାନଙ୍କର ସଂସ୍କୃତ ରଚନାର ପ୍ରଭାବ ନାନା ଭାବରେ ଗୋପାଳକୃଷ୍ଣଙ୍କ ରଚନାରେ ପରିଦୃଷ୍ଟ ହୁଏ। କବି କେତୋଟି ସଙ୍ଗୀତ ରଚନାରେ ମୂଳ ସଂସ୍କୃତ ରଚନାର ଅନୁବାଦ କରିଛନ୍ତି; କିନ୍ତୁ ଏ ଅନୁବାଦ ଅନେକକ୍ଷେତ୍ର ଆକ୍ଷରିକ ନୁହେଁ (୧), ଭାବ ବା ମର୍ମାନୁବାଦ କହିଲେ ଅଧିକ

(୧) ଶ୍ରୀ ଶ୍ରୀ ହରିକୁସୁମ ସ୍ତବକଂ, ଗୋ. କୃ. ଗ୍ରଂ., ପୃ. ୫୫

ହେବ ନାହିଁ । ଗୁଚ୍ଛପୁଷ୍ପାଞ୍ଜଳି, ମୁକୁନ୍ଦ ମୁକ୍ତାବଳୀ, ଶ୍ରୀକୃଷ୍ଣ କର୍ଣ୍ଣାମୃତମ୍, ଶ୍ରୀଶ୍ରୀ ରାଧିକାୟାଃ ଆନନ୍ଦ ଚନ୍ଦ୍ରିକାଖ୍ୟ ଦଶନାମସ୍ତୋତ୍ରମ୍, ଶ୍ରୀଶ୍ରୀ ରାଧିକାୟାଃ ପ୍ରେମପୂରାଭିଧ ସ୍ତୋତ୍ର, ସଙ୍କଳ୍ପ କଳ୍ପଦ୍ରୁମ, ଶ୍ରୀଶ୍ରୀ ରାଧାକୃଷ୍ଣ ଯୁଗଳ ଭଜନାମୃତ, ବ୍ରହ୍ମ ସଂହିତା ଓ ବିଦଗ୍ଧ ମାଧବ ନାଟକର କେତୋଟି ଶ୍ଳୋକର ଭାବ ବା ମର୍ମାନୁବାଦ ହୋଇଛି ତାର ଦୃଷ୍ଟାନ୍ତ ।

(୧) ଗୁଚ୍ଛପୁଷ୍ପାଞ୍ଜଳି—ଗୁଚ୍ଛପୁଷ୍ପାଞ୍ଜଳି ହେଉଛି ରୂପ ଗୋସ୍ୱାମୀଙ୍କର 'ସ୍ତବମାଳା'ର ଚବିଶି ଶ୍ଳୋକ ବିଶିଷ୍ଟ ଏକ ମନୋଜ୍ଞ ରଚନା । କବି ଏଠାରେ ଅନନ୍ୟ ରୂପ ଲାବଣ୍ୟ ସମ୍ପନ୍ନା ମାନିନୀ ରାଧାଙ୍କର ଅଙ୍ଗସୁଷମାର ଚମତ୍କାର ବର୍ଣ୍ଣନା କରିଛନ୍ତି । ଗୋପାଳକୃଷ୍ଣ ପ୍ରଥମତଃ 'ଗୁଚ୍ଛପୁଷ୍ପାଞ୍ଜଳି'ର ପ୍ରଥମ ତିନୋଟି ଶ୍ଳୋକ ଯଥାକ୍ରମେ କଳସା, ଆଷାଢ଼ଶୁକ୍ଳ ଓ ମଧୁଶ୍ରୀ ରାଗରେ ତିନୋଟି ପଦରେ ଅନୁବାଦ କରିଛନ୍ତି, ପୁଣି ପରେ ଗୁଚ୍ଛପୁଷ୍ପାଞ୍ଜଳିର ୨୪ଟି ଶ୍ଳୋକର ଅନୁବାଦ ଆଷାଢ଼ଶୁକ୍ଳ ବାଣୀରେ କରି 'ଭାଷା ଗୁଚ୍ଛପୁଷ୍ପାଞ୍ଜଳି' ଶିରୋନାମାରେ ପ୍ରକାଶ କରିଛନ୍ତି । ଗୁଚ୍ଛପୁଷ୍ପାଞ୍ଜଳିର ତିଶ୍ଳୋକୀ ଅନୁବାଦରେ କବି ମୂଳରଚନାର ଗୋଟିଏ ଗୋଟିଏ ଶ୍ଳୋକ ଉଦ୍ଧାର କରି ତାର ଅନୁବାଦ କରିଛନ୍ତି । ପ୍ରଥମ ଶ୍ଳୋକର ଅନୁବାଦରେ କବି ମୂଳ ସଂସ୍କୃତ ଶ୍ଳୋକର ଭାବକୁ କିଞ୍ଚିତ୍ ବିସ୍ତୃତ ଭାବରେ ପ୍ରକାଶ କରିଛନ୍ତି (ନିଜର ନାମ ଭଣିତା କରି), କିନ୍ତୁ ପରବର୍ତ୍ତୀ ଦୁଇଟି ଶ୍ଳୋକର ଅନୁବାଦରେ ଏ ପ୍ରକାର ଭାବ ଓ ବର୍ଣ୍ଣନା-ବିସ୍ତୃତି ପରିଲକ୍ଷିତ ହୁଏ ନାହିଁ । ଗୁଚ୍ଛପୁଷ୍ପାଞ୍ଜଳିର ପ୍ରଥମ ଶ୍ଳୋକଟି ହେଉଛି :—

ନବଗୋରୋଚନାଗୌରୀଂ ପ୍ରବରେନ୍ଦୀବରାମ୍ବରାଂ ।
ମଣି-ସ୍ତବକ-ବିଦ୍ୟୋତି-ବେଣୀ-ବ୍ୟାଲାଙ୍ଗନା-ଫଣାମ୍ ।।

(ସ୍ତବକଳ୍ପଦ୍ରୁମ, ପୃ. ୬୪୦)

ତାର ଅନୁବାଦରେ କବି ଲେଖିଛନ୍ତି —

ଜୟ ଶ୍ରୀରାଧେ ! ଶ୍ରୀରାଧେ ! ଗୁରୁ ବିଧୁାନନା !
ଅଭିନବ ଗୋରୋଚନା-ନିନ୍ଦିତ ବରନା ଗୋ ।୧।
ଲାବଣ୍ୟ ଶ୍ରୀ ଅଙ୍ଗକାନ୍ତି ଶୋଭା ମଧୁରିମା ।
ନୀଳ ପଟ୍ଟଶାଟୀ ସ୍ୱର୍ଣ୍ଣ ଜରି ବୁଟାର ମା ଗୋ ।୨।
ସୁରଙ୍ଗ ଉତ୍ତରୀ ଉପରେଣ ମନୋହର ।
କଳାଭୁଜଙ୍ଗିନୀ ଜିଣି ବେଣୀ ସୁରୁଚିର ଗୋ ।୩।
ରତ୍ନଗୁଚ୍ଛ ବିଚକିଳ-ସୁମନସ ପନ୍ତି ।
ଗଗନେ ନକ୍ଷତ୍ରାବଳୀ ପ୍ରାୟେ ଶୋଭାବନ୍ତି ଗୋ ।୪।
ସୁନାଆଳ-ମାଳିକା ବେଷ୍ଟିତ ଗର୍ଭ ତୋରା ।
ଗୋପାଳକୃଷ୍ଣର ସେବ୍ୟା କୃଷ୍ଣଧୃତିହରା ଗୋ ।୫।

(ବାବାଜୀ ବୈଷ୍ଣବ ଚରଣ, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ; ପୃ. ୪)

ସଂସ୍କୃତ ଶ୍ଳୋକ ଓ ଅନୁବାଦକୁ ତୁଳନା କଲେ ଜଣାଯିବ, ଅନୁବାଦରେ କିପରି ମୂଳ ରଚନାର ଭାବ ଓ ବର୍ଣ୍ଣନାର ବ୍ୟତିକ୍ରମ ଘଟିଛି । ପରବର୍ତ୍ତୀ ଶ୍ଳୋକର ଅନୁବାଦରେ ଏହା ଲକ୍ଷିତ ନହେଲେ ମଧ୍ୟ କବି ମୂଳ ବର୍ଣ୍ଣନାର ଭାବ ଓ ସୌନ୍ଦର୍ଯ୍ୟ ଅକ୍ଷୁଣ୍ଣ ରଖି ସ୍ଥାନେ ସ୍ଥାନେ ନିଜର କଳ୍ପନା ଯୋଗ କରି ଅନୁବାଦକୁ ସୁନ୍ଦର କରିଛନ୍ତି । ଉଦ୍ଧୃତାଂଶ ଶ୍ଳୋକର ଦ୍ୱିତୀୟ ପାଦଟି ହେଉଛି—

ନବେନ୍ଦୁ-ନିନ୍ଦି-ଭାଲୋଦ୍ୟନ୍ନ-କସ୍ତୁରୀ-ତିଲକ ଶ୍ରିୟମ୍ ।

କବି ଏହାର ଅନୁବାଦରେ ଲେଖିଛନ୍ତି—

ନବେନ୍ଦୁ-ଜିତ-ଲଲାଟ-କପାଳ ।
କସ୍ତୁରୀ-ତିଳକ,
ଶିଶୁ ଅଳି-ଆଳି କି ସେ ଅଳକ ? ।୨।

ଏଠାରେ ଉଦ୍ଧୃତ ଶେଷ ପାଦଟି କବିଙ୍କର ସ୍ୱକୀୟ କଳ୍ପନା । ରୂପ ଗୋସ୍ୱାମୀ ସୁଧାଙ୍କ ଭାଲ ପଟର କସ୍ତୁରୀ-ତିଳକ କଥା ବର୍ଣ୍ଣନା କରିଛନ୍ତି, କିନ୍ତୁ ଅଳକ (ଚୂର୍ଣ୍ଣକୁନ୍ତଳ) କଥା ଉଲ୍ଲେଖ କରିନାହାନ୍ତି । ଏଠାରେ 'ଅଳକ'ର ବର୍ଣ୍ଣନା କରିବା ଦ୍ୱାରା ମୂଳ ରଚନାର ସୌନ୍ଦର୍ଯ୍ୟ ଅଧିକ ବଢ଼ି ଉଠିଛି ।

(୨) **ଭାଷା ଶୁଚୁ ପୁଷ୍ପାଞ୍ଜଳି**—ଏହା ରୂପ ଗୋସ୍ୱାମୀଙ୍କର ସ୍ତବ ପୁଷ୍ପାଞ୍ଜଳିର ଏକ ପ୍ରକାର ଆକ୍ଷରିକ ଅନୁବାଦ କହିଲେ ଚଳେ । ଆକ୍ଷରିକ ଅନୁବାଦ ହେଲେ ମଧ୍ୟ ଅନୁବାଦରେ ମୂଳରଚନାର ସୌନ୍ଦର୍ଯ୍ୟ କେଉଁଠି କ୍ଷୁଣ୍ଣ ହୋଇଥିବା ପରି ମନେ ହୁଏ ନାହିଁ । ମୂଳ ରଚନାର ଭାବ ଓ ସଙ୍ଗତି ଅକ୍ଷୁଣ୍ଣ ରଖି ସ୍ଥାନେ ସ୍ଥାନେ ସ୍ୱକୀୟତାର ସ୍ପର୍ଶ ଦ୍ୱାରା ଅନୁବାଦକୁ ଅଧିକ ସୁନ୍ଦର ଓ ହୃଦୟଗ୍ରାହୀ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ତ୍ରୟୋବିଂଶ ଶ୍ଳୋକର ଅନୁବାଦ ଲକ୍ଷ୍ୟ କରାଯାଉ । ରୂପ ଗୋସ୍ୱାମୀ ଲେଖିଛନ୍ତି—

କରୁଣାଂ ମୁହୁରର୍ଥୟେ ପରଂ ତବ ବୃନ୍ଦାବନ-ଚକ୍ରବର୍ତ୍ତିନି ।
ଅପି କେଶିରିପୋର୍ଯ୍ୟଥା ଭବେତ୍ସ ଚଟୁପ୍ରାର୍ଥନଭାଜନଂ ଜନଃ ॥
(ସ୍ତବକ କଳ୍ପଦ୍ରୁମ, ପୃ-୬୪୨)

ଅନୁବାଦରେ ଗୋପାଳକୃଷ୍ଣ ଲେଖିଛନ୍ତି—

ଆଗୋ ବୃନ୍ଦାବନ ଚକ୍ରବର୍ତ୍ତିନି !
ଯାଚେ କୃପାକର ଘେନ ମୋ ବାଣୀ ।
କେଶୀ-ଶତ୍ରୁ ଜନ ପ୍ରାର୍ଥନା-ଯୋଗ୍ୟ
ହୋଇ ମଣ୍ଡାଳିବ ପଦାବ୍ଜ ଯୁଗ । ୨୩ । (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୦)

ଅନୁବାଦର ଶେଷ ଚରଣଟିର ଅନୁରୂପ ପାଦ ମୂଳ ରଚନାରେ ନଥିଲେ ମଧ୍ୟ ଏହାର ଉଲ୍ଲେଖ ଦ୍ୱାରା ମୂଳ ରଚନାର ଭାବ କ୍ଷୁଣ୍ଣ ହେଉନାହିଁ । ସେହିପରି ଚତୁର୍ବିଂଶ ଶ୍ଳୋକର (୧୦) ଅନୁବାଦରେ କବି ଯାହା ଲେଖିଛନ୍ତି :—

(୧୦) ସ୍ତ. କ. ଦ୍ରୁ., ପୃ-୬୪୨

'ତାହାଙ୍କୁ ପଦାବ୍‌ଜେ କର କଙ୍କରୀ ।
ରଖିବେ ତୋପେ ବୃନ୍ଦାରଣ୍ୟେଶ୍ୱରୀ ।' ।୨୪।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୦)

ତା'ର ଅନୁରୂପ ପଂକ୍ତି ମୂଳ ସଂସ୍କୃତ ରଚନାରେ ନାହିଁ; କିନ୍ତୁ 'ଅସ୍ୟାଃ କୃପାସ୍ପଦମ୍' ଉକ୍ତିଟିର ଭାବବସ୍ତୁ ଘଟାଇ ଅନୁବାଦରେ ଗୋପାଳକୃଷ୍ଣ ପୂର୍ବୋକ୍ତ ପଦଟି ସଂଯୋଗ କରିଛନ୍ତି । ସେହିପରି ଅନ୍ୟ କେତୋଟି ଶ୍ଳୋକାନୁବାଦରୁ କବିଙ୍କର ମୂଳ ରଚନାର ଭାବ-ବସ୍ତୁର ଘଟିତ ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ ।

ଚାଟୁପୁଷ୍ପାଞ୍ଜଳିର ବର୍ଣ୍ଣନୀୟ ବସ୍ତୁ ହେଉଛି; ମାନିନୀ ରାଧାଙ୍କର ମାନଭଙ୍ଗ ନିମିତ୍ତ ଶ୍ରୀକୃଷ୍ଣଙ୍କର ତାଙ୍କ ପ୍ରତି ଚାଟୁ ବାକ୍ୟ ପ୍ରୟୋଗ । ଚାଟୁପୁଷ୍ପାଞ୍ଜଳିର ରଚନା ମୂଳରେ ହୁଏତ କବି ଜୟ-ଦେବଙ୍କର ଗୀତଗୋବିନ୍ଦର ୧୦ମ ସର୍ଗର (ମୁଗ୍‌ଧ ମାଧବଃ) ପ୍ରେରଣା ଥାଇପାରେ । ଶ୍ରୀକୃଷ୍ଣଙ୍କ ଚାଟୁବାକ୍ୟ ବର୍ଣ୍ଣନାରେ ତତାନୁଗତିକ ଙ୍କରେ କବି ରାଧାଙ୍କର ଅଙ୍ଗ ସୁଷମା, ଅଙ୍ଗ ଆଭରଣ ଓ ବେଶଭୂଷା ଏବଂ ରାଧାଙ୍କ ପାଇଁ ଶ୍ରୀକୃଷ୍ଣଙ୍କ ଉନ୍ମାଦିତ ଚିତ୍ତର ଆଲେଖ୍ୟ ଅଙ୍କନ କରିବା ସଙ୍ଗେ ସଙ୍ଗେ ମହାଭାବମୟୀ ରାଧାଙ୍କର କିଙ୍କରୀ ଭାବରେ ସେବା ପେବା ନିମିତ୍ତ କବି ନିଜର ବୈଷ୍ଣବ ସୁଲଭ ଲାଳସାର ମର୍ମସ୍ପର୍ଶୀ ଚିତ୍ର ଆଙ୍କିଛନ୍ତି । କବିଙ୍କ ଭାଷାରେ—

ଗୋଷ୍ଠେନ୍ଦ୍ରସୁତ ବିନୟ-ବଚନେ ।
ମାନ ଭଙ୍ଗାଉଁ ଚାଟୁ-ବିରଚନେ ।।
ପ୍ରିୟବାଣୀ ଶୁଣି ହେଉଁ ପ୍ରସନ୍ନ ।
କେବେ ସେ ଭାବ କରିବି ଦର୍ଶନ ? ।୧୮।
ମାଧବୀ ଫୁଲେ କରି ପୁଷ୍ପାଞ୍ଜଳି
ତୁମ୍ଭରେ ସାଧନ୍ତେ ଶ୍ରୀବନମାଳୀ ।
ହେବି କିବାରୁଁ ମୁଁ ଭ୍ରମର ଗୁଳି,
କେବେ ଦେବ କୃପା-କଟାକ୍ଷ ଢାଳି ? ।୧୯।
କୃଷ୍ଣ-ପ୍ରିୟା-କୁଳ-ସୀମନ୍ତମଣି ।
ପ୍ରସୀଦ ନୀଳ-ଇନ୍ଦୀବରେକ୍ଷଣି ।।
ଅଛନ୍ତି ଯେତେ ତବ ପରିବାରୀ
ତାଙ୍କ ମଧ୍ୟେ ମୋତେ କର କିଙ୍କରୀ ।୨୨।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୯-୧୦)

(ଗ) ଶ୍ରୀ ଶ୍ରୀ ଚାଟୁପୁଷ୍ପାଞ୍ଜଳି—ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ କବିଙ୍କର ଚାଟୁ-ପୁଷ୍ପାଞ୍ଜଳିର ସଂସ୍କୃତ ଶ୍ଳୋକ ସହ ଆଷାଢ଼ଶୁକ୍ଳ ରାଗରେ ଆଉ ଏକ ଅନୁବାଦ ଛିଡ଼ିଛି । ଭାଷା ଚାଟୁପୁଷ୍ପାଞ୍ଜଳି ପରି ଏ ଅନୁବାଦ ମଧ୍ୟ ମୂଳ ରଚନାର ଭାବାଭିବ୍ୟକ୍ତି ଓ ଭାଷା ଦୃଷ୍ଟିରୁ ସୁନ୍ଦର ହୋଇଛି । କବି ନିଜ ଗୁରୁଦେବଙ୍କ ନିର୍ଦ୍ଦେଶରେ ରୂପ ଗୋସ୍ୱାମୀଙ୍କର ଏ ସ୍ତୋତ୍ରର

ଅନୁବାଦ କରିଛନ୍ତି ବୋଲି ଉଲ୍ଲେଖ କରି ରାଗମାର୍ଗର ଭକ୍ତମାନଙ୍କୁ (ଏହା) ସମର୍ପଣ କରିଛନ୍ତି (୧୧) ।

(୪) **ମୁକୁନ୍ଦ ମୁକ୍ତାବଳୀ**—ରୂପ ଗୋସ୍ୱାମୀଙ୍କ 'ସ୍ତବମାଳା'ରେ 'ଶ୍ରୀ ମୁକୁନ୍ଦ-ମୁକ୍ତାବଳୀ' ହେଉଛି ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଏକଚତ୍ୱାରିଂଶ ଶ୍ଲୋକ ବିଶିଷ୍ଟ ଗୋଟିଏ ପ୍ରସିଦ୍ଧ ସ୍ତୋତ୍ର । ସ୍ତବକଳ୍ପଦ୍ରୁମରେ 'ମୁକୁନ୍ଦମୁକ୍ତାବଳୀ'ର କେବଳ ଚାଳିଶଟି ଶ୍ଲୋକ ଦେଖାଯାଏ । ଏଥିରେ ଶ୍ରୀକୃଷ୍ଣଙ୍କର ଅପୂର୍ବ ରୂପ ଲାବଣ୍ୟ, ବେଶଭୂଷଣ ଏବଂ ବ୍ରଜ ଓ ବୃନ୍ଦାରଣ୍ୟରେ ବୈଚିତ୍ର୍ୟମୟୀ ଲୀଳାର (ପୂତନା ବିନାଶ, ଯାମଳାର୍ଜ୍ଜୁନ ଭଞ୍ଜନ, ବ୍ରଜବାଳକଙ୍କ ସହ କ୍ରୀଡ଼ା, ଶଙ୍ଖଚୂଡ଼ବଧ, ଇନ୍ଦ୍ରବିବାଦ, ବସ୍ତ୍ରହରଣ, ମୁରଲୀ ନାଦରେ ବ୍ରଜାଙ୍ଗନାଙ୍କୁ ଆକର୍ଷଣ, ବୃନ୍ଦାବନର ବିବିଧ କୁଞ୍ଜରେ କେଳି) ମଞ୍ଜୁଳ ବର୍ଣ୍ଣନା ରହିଛି । ଗୀତଗୋବିନ୍ଦ ପରି କୋମଳ ପଦ ବିନ୍ୟାସ, ବିଭିନ୍ନ ଛନ୍ଦ ଓ ଅନୁପ୍ରାସର ମନୋଜ୍ଞ ପ୍ରୟୋଗ ହେତୁ ସ୍ତୋତ୍ରଟିର ଆବୃତ୍ତି ତଥା ସାଙ୍ଗୀତିକ ମାଧୁର୍ଯ୍ୟ ବଢ଼ିଯାଇଛି । ଶ୍ଲୋକ ଗୁଡ଼ିକ ମଧ୍ୟରୁ ଆଠଟି ଷୋଳମାତ୍ରା ବିଶିଷ୍ଟ ପଜ୍ଝଟିକା ଛନ୍ଦ, ଚାରୋଟି ମାଳିନୀ ଛନ୍ଦ ଏବଂ ଦୁଇଟି କ୍ଷୁଦ୍ର ଗୀତ ଛନ୍ଦରେ (ଚଯ, ଜଳଧର ମାଳା, ରଙ୍ଗିଣୀ, ତୃଣକ, ଭୁଜଙ୍ଗ ପ୍ରୟାତ, ସ୍ରଗ୍ୱିଣୀ, ଜଳୋଦ୍ଧତ ଗତି, ଶାଳିନୀ ଓ ଦ୍ରୁତଗତି) ରଚିତ ହୋଇ ଭକ୍ତ ଓ ପାଠକମାନଙ୍କର ଆବୃତ୍ତିକାଳୀନ କ୍ଲାନ୍ତି ଦୂର କରିଛନ୍ତି । ଏହି ଛନ୍ଦ ମଧ୍ୟରୁ କେତୋଟିର ସାଧାରଣ ସାହିତ୍ୟରେ କ୍ୱଚିତ୍ ପ୍ରୟୋଗ ଦେଖାଯାଏ । ସେ ଗୁଡ଼ିକରେ ଏପରି କୌଶଳ ଓ ଧ୍ୱନି ସ୍ୱଭାବର ମଞ୍ଜୁଳ ବିନ୍ୟାସ ଦେଖାଯାଏ, ମନେହୁଏ : ଏହାକୁ 'ବୃତ୍ତମୁକ୍ତାବଳୀ' କହିଲେ ଅସମୀଚୀନ ହେବନାହିଁ (୧୨) । ଦୃଷ୍ଟାନ୍ତ ସ୍ୱରୂପ ରଙ୍ଗିଣୀ ଛନ୍ଦର ଶ୍ଲୋକରେ ବୃତ୍ତ୍ୟନୁପ୍ରାସ (୧୩), ଦ୍ରୁତଗତି ଛନ୍ଦର ଶ୍ଲୋକରେ ମଧ୍ୟ ଯତି (୧୪), ଜଳୋଦ୍ଧତଗତି ଛନ୍ଦର ଶ୍ଲୋକରେ (୧୫) ଶୃଙ୍ଖଳିତ ଯତି ଏବଂ ତୃଣକ ଛନ୍ଦରେ (୧୬) ଶୃଙ୍ଖଳିତ ଅନୁପ୍ରାସ ଓ ପ୍ରାନ୍ତ ଯତି ଲକ୍ଷ୍ୟ କରିବାର ବିଷୟ ।

ଗୋପାଳକୃଷ୍ଣ ଚତୁର୍ଦ୍ଦଶାକ୍ଷରୀ ପୟାର ଛନ୍ଦରେ ଏହାର ଅନୁବାଦ କରିଛନ୍ତି । କେତୋଟି ଶ୍ଲୋକର ଭାବବସ୍ତୁ ଓ ପୌରାଣିକ ପ୍ରସଙ୍ଗର ସ୍ପଷ୍ଟ ଉଲ୍ଲେଖ ନିମିତ୍ତ କବି ଅଧିକ ପଦ ସଂଯୋଗ କରି ଅନୁବାଦକୁ ପାଠକମାନଙ୍କ ପକ୍ଷରେ ପ୍ରାଞ୍ଜଳ ଓ ସୁବୋଧ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ଦୁଇଟି ଶ୍ଲୋକର ଅନୁବାଦ ଲକ୍ଷ୍ୟ କରାଯାଇପାରେ । ରୂପ ଗୋସ୍ୱାମୀ ଲେଖିଛନ୍ତି—

---

(୧୧) ସ୍ତ. କ. ଦ୍ରୁ., ପୃ. ୬୪୧-୬୪୨

(୧୨) Dr. Dasgupta and Dr. De, H.S.L., P. 661

(୧୩) ସ୍ତ. କ. ଦ୍ରୁ., ପୃ. ୪୦୬

(୧୪) ତତ୍ରୈବ, ପୃ. ୪୦୯

(୧୫) ତତ୍ରୈବ

(୧୬) ତତ୍ରୈବ, ପୃ. ୪୦୬

ମଲୟଜ ରୁଚିର ପ୍ରନୁଲିପ୍ତ ମୂର୍ତ୍ତିଃ
ଧାଳିତ ବିବୁଧ ଦ୍ରୋହିତ ବମୂଧଃ ।
ମାମଧ୍ୟ ରସିକଃ କେଳିଭରାଧିକଃ
ସିତ ସୁଭଗ ରଦଃ କୃପୟତୁ ବରଦଃ ।୧୩। (ସ୍ତବକ କଳ୍ପଦ୍ରୁମ, ପୃ. ୪୦୮)

ଅନୁବାଦରେ କବି ଲେଖିଛନ୍ତି—

ନବଘନ ଜିଣି ତନୁ ଚନ୍ଦନେ ଚର୍ଚ୍ଚିତ ।
ବସୁଧରା ଉଶ୍ଵାସି ତୋଷିଲ ବାଞ୍ଛି ହିତ ॥
ଅମର ବୃନ୍ଦେ ପାଳିଲ ଦୁଷ୍ଟ ଦୈତ୍ୟ ନାଶି ।
ଉଡ଼ାଇଲ ଯଶଧ୍ଵଜା ମହିମା ପ୍ରକାଶି ॥
ପରମରସିକ ସଦା କେଳି ପରାୟଣ ।
ଶ୍ରୀମୁଖରେ ମୃଦୁହାସ ସୁନ୍ଦର ଦଶନ ॥
ଭକ୍ତଙ୍କର ମନୋରଥ ପୂର୍ଣ୍ଣ କରିବାରେ ।
ବ୍ରଜେ ଅବତୀର୍ଣ୍ଣ ତୁମେ ଆଭୀର ଆଗାରେ ॥
ହେ ବରଦ ଗୋଷ୍ଠେନ୍ଦ୍ର-ନନ୍ଦନ କୃଷ୍ଣଚନ୍ଦ୍ର ।
ଶ୍ରୀ ନବ-ନାଗର-ବୃନ୍ଦା କାନନପୁରନ୍ଦର ॥
ତ୍ରିଭଙ୍ଗଭଙ୍ଗିମ ରୂପ କଲବେଣୁଧାରୀ ।
ଗୋପାଳକୃଷ୍ଣଙ୍କୁ ଦୟାକର ପାପହାରି ! (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୪)

ଏଥିରେ 'ଭକ୍ତଙ୍କର ମନୋରଥ' ଚରଣଠାରୁ 'କଲବେଣୁଧାରୀ' ପର୍ଯ୍ୟନ୍ତ କବିଙ୍କର ନିଜସ୍ୱ ରଚନା ଏବଂ 'କୃପୟତୁ ବରଦଃ' ଏହି ଉକ୍ତିର ପ୍ରାଞ୍ଜଳ ବ୍ୟାଖ୍ୟା ପାଇଁ ବରଦାନକାରୀ କୃପାମୟ ମୁକୁନ୍ଦଙ୍କର ଜୀବ ତଥା ଭକ୍ତ ପ୍ରତି ବାତ୍ସଲ୍ୟ ମମତା ବ୍ୟଞ୍ଜକ କେତୋଟି ପଦ ସଂଯୋଗ କରିଛନ୍ତି । ଏହାର ଅନୁରୂପ ପଙ୍କ୍ତି ସଂସ୍କୃତ ସ୍ତୋତ୍ରରେ ନାହିଁ । ସେହିପରି ସପ୍ତଦଶ ଶ୍ଳୋକର ଅନୁବାଦରେ—

'ନବ-ପ୍ରିୟକ-ମଞ୍ଜରୀ କର୍ଣ୍ଣେ ଶୋଭେ ଯାର ।
ବନତ୍ତର-ମାଲତୀ-କଳିତ-ଶେଖର ॥
ଦରଛୁରିତ-ଯୂଥିକା-ଗ୍ରଥିତ-ମାଳିକା ।
ବେଷ୍ଟିତ ଚୂଡ଼ାରେ ଝଞ୍ଜା ମୟୂର-ଚନ୍ଦ୍ରିକା ॥
ଦରହସିତ ସୁଗୁରୁ ଅଧରେ ପୀୟୂଷ ।
ଧାର ଧାର ସ୍ରବ ପଡ଼େ ସୁମଧୁର ଭାଷ ॥
ବିଳାସ-ମୁରଲୀ-କଳ ଧ୍ଵନି ଯାହାଙ୍କର ।
ଗୋପାଳକୃଷ୍ଣ ନମଇ ସେ ପଦ୍ମ-ପୟର ॥' (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୬)

ପଦଗୁଡ଼ିକର ଅନୁରୂପ ଭାବବିଶିଷ୍ଟ ସଂସ୍କୃତ ପଦ ମୂଳ ରଚନାରେ ଦେଖାଯାଏନା । କେବଳ ସଂସ୍କୃତ ସ୍ତୋତ୍ରର ଦୁଇଗୋଟି ପାଦର ଭାବ ପୟାର ଅନୁବାଦର ଦୁଇଗୋଟି ଚରଣରେ କବି ପ୍ରକାଶ କରିଛନ୍ତି, ଯଥା—

ସଂସ୍କୃତ ସ୍ତୋତ୍ର :

ଉଲ୍ଲସଦ୍ ବଲ୍ଲବୀ ବାସସାଂ ତସ୍କର—
ସ୍ତେଜସା ନର୍ଜିତ ପ୍ରସ୍ଫୁରଦ୍ ଭାସ୍କରଃ ।
ପୀନଦୋଃ ସ୍ତମ୍ଭସ୍ତୋରୁଲ୍ଲସଚନ୍ଦନଃ,
ପାତୁ ବଃ ସର୍ବତୋ ଦେବକୀନନ୍ଦନଃ । (ସ୍ତ. କ. ଦ୍ରୁ., ପୃ. ୪୦୮)

ଅନୁବାଦ :

କଲ ଯେ ବ୍ରଜାଙ୍ଗନାଙ୍କ ବସନ ହରଣ ।
ଯା'ଙ୍କ ତେଜେ ପରାଜିତ ପ୍ରଖର-ତପନ ॥
ସ୍ଥୂଳ ବାହୁ ଯୁଗେ ଯା'ଙ୍କ ବିରାଜେ ଚନ୍ଦନ ।
ସଦା ରକ୍ଷନ୍ତୁ ସେ ଦେବ ଦେବକୀନନ୍ଦନ ॥
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୬୭)

ଉକ୍ତ ସ୍ତୋତ୍ରର ଅନୁବାଦରେ କବି ଶ୍ରୀକୃଷ୍ଣଙ୍କ ନେପଥ୍ୟ ବିଧାନ ଘଟିତ ଯେଉଁ ଅଧିକ ପଦଗୁଡ଼ିକ ଯୋଗ କରିଛନ୍ତି, ତାଦ୍ୱାରା ମୂଳସ୍ତୋତ୍ରର ଭାବର ସୌନ୍ଦର୍ଯ୍ୟ କ୍ଷୁଣ୍ଣ ହେବା ଦୂରେ ଥାଉ, ବରଂ ବର୍ଦ୍ଧିତ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଧିକ ଦୃଷ୍ଟାନ୍ତ ନିମିତ୍ତ ସହୃଦୟବୃନ୍ଦ ଏହି ସ୍ତୋତ୍ରର ଦ୍ୱିତୀୟ, ତୃତୀୟ, ଦଶମ, ଏକାଦଶ, ଦ୍ୱାଦଶ, ପଞ୍ଚଦଶ, ଅଷ୍ଟାଦଶ, ଦ୍ୱାବିଂଶ, ଷଡ଼ବିଂଶ, ଅଷ୍ଟାବିଂଶ ଓ ଊନତ୍ରିଂଶ ଶ୍ଳୋକର ଅନୁବାଦ ଲକ୍ଷ୍ୟ କରିପାରନ୍ତି ।

ଅନ୍ୟାନ୍ୟ ଅନୁବାଦ ପରି ଏହି ସ୍ତୋତ୍ରର ଅନୁବାଦରେ କବିଙ୍କର ଦକ୍ଷତା ପରିସ୍ଫୁଟ ହୋଇଛି । ଶ୍ରୀମଦ୍‌ଭାଗବତ ଅନୁବାଦରେ ଜଗନ୍ନାଥ ଦାସ ଏବଂ ପରବର୍ତ୍ତୀ କାଳରେ 'ମେଘଦୂତ'ର ଅନୁବାଦରେ ରାଧାନାଥ ରାୟଙ୍କର ଯେପରି ଅସାଧାରଣ ଦକ୍ଷତା ପରିସ୍ଫୁଟ ହୋଇଛି, ଗୋପାଳକୃଷ୍ଣ ସେହିଭଳି ଦକ୍ଷତାର ଅଧିକାରୀ । ସଂସ୍କୃତ ରଚନାର ଅଳଙ୍କାର ଗୁଡ଼ିକ (ଉପମା, ବ୍ୟତିରେକ, ରୂପକ ଓ ସ୍ୱଭାବୋକ୍ତି ପ୍ରଭୃତି) କବି ଅନୁବାଦରେ ସୁନ୍ଦର ଭାବରେ ପରିସ୍ଫୁଟ କରିଛନ୍ତି, ଯଥା—

'ମୁଖଜିତଶରଦିନ୍ଦୁଃ କେଳିଲାବଣ୍ୟସିନ୍ଧୁ'ର (୬ଷ୍ଠ ଶ୍ଳୋକ) ବ୍ୟତିରେକ ଓ ରୂପକ ଅଳଙ୍କାର ଅନୁବାଦର

'ବଦନ ଶୋଭାକୁ ଯା'ର ପରାଜିତ ଇନ୍ଦୁ ।
ଯେଉଁ କୃଷ୍ଣ କେଳି ଲୀଳା ଲାବଣ୍ୟର ସିନ୍ଧୁ ॥'

ପଦରେ କିପରି ପରିସ୍ଫୁଟ ତାହା ଲକ୍ଷ୍ୟ କରାଯାଇପାରେ । ବୈଷ୍ଣବ ଓ ଲୌକିକ କାବ୍ୟରେ କବିଙ୍କର ଯେ ଗଭୀର ପ୍ରବେଶ ଥିଲା, ତାହା ଅନୁବାଦରେ ଓ ଗୀତ ରଚନାରେ ଅତି ସୂକ୍ଷ୍ମଭାବରେ ପରିସ୍ଫୁଟ । କେବଳ ପ୍ରତିଭାଶାଳୀ କବିଙ୍କ ପକ୍ଷରେ ଏହା ସମ୍ଭବ । ସପ୍ତଦଶ ଶ୍ଳୋକର ଅନୁବାଦରେ କବି ଯେଉଁ ନିଜସ୍ୱ ପଦଗୁଡ଼ିକ ଯୋଗ କରିଛନ୍ତି ସେଥିରେ

'ବିନିଦ୍ରତର-ମାଳତୀ-ଚଳିତ-ଶେଖର'ର ପ୍ରଥମ ଦୁଇଟି ପଦ କାଳିଦାସଙ୍କର କୁମାର-ସମ୍ଭବର ପଞ୍ଚମ ସର୍ଗର ଗୋଟିଏ ମନୋଜ୍ଞ କଳ୍ପନା ସମୀକ୍ଷକର ସ୍ମୃତି ପଥାରୂଢ଼ କରାଏ (୧୭) । ମାନବ ଓ ପ୍ରକୃତି ମଧ୍ୟରେ ପାରସ୍ପରିକ ମଧୁର ପ୍ରତିକ୍ରିୟାର ଚିତ୍ର ଶ୍ରୀକୃଷ୍ଣଙ୍କର ଗୋ-ପ୍ରୀତି ଓ କାଳିନ୍ଦୀ ତୀରରେ ସଖାଙ୍କ ସହ ଗୋଚାରଣରେ ପରିସ୍ଫୁଟ । ଏହାର ବିସ୍ତୃତ ଚିତ୍ର ନଥିଲେ ମଧ୍ୟ ସଙ୍କେତରେ ରୂପ ଗୋସ୍ୱାମୀ ଯାହା ଲେଖିଛନ୍ତି, ଯଥା—'ବଚନ ବଶଗ ଧେନୂଃ' (୨ୟ ଶ୍ଳୋକ), କବିତା'ର ଅନୁବାଦରେ ଲେଖିଛନ୍ତି—'ବଚନରେ ବଶୀଭୂତ ସୁରଭି ନିକର' (୧୮) । ଅନୁବାଦରେ ମୂଳକୁ ଚୂଳ ପର୍ଯ୍ୟନ୍ତ କବିଙ୍କର ବୈଷ୍ଣବ ଜନୋଚିତ ନମସ୍କ୍ରିୟା, ଚନ୍ଦନ, ଶରଣାଗତି, (୧୯) କୃପାଭିକ୍ଷା ଓ ଦାସ୍ୟଭାବ (୨୦) ଇତ୍ୟାଦି ପରିସ୍ଫୁଟ ହୋଇଛି ।

(୫) **ଶ୍ରୀକୃଷ୍ଣ କର୍ଣ୍ଣାମୃତ**—ଲୀଳାଶୁକ ବିଲ୍ୱମଙ୍ଗଳ ହେଉଛନ୍ତି କୃଷ୍ଣକର୍ଣ୍ଣାମୃତର କବି । ଏହି ସ୍ତୋତ୍ରର ତିନୋଟି ଶତକ ରହିଛି । ଦାକ୍ଷିଣାତ୍ୟ ଭ୍ରମଣ କାଳରେ ଚୈତନ୍ୟ 'ବ୍ରହ୍ମସଂହିତା' ସହ 'କୃଷ୍ଣକର୍ଣ୍ଣାମୃତ'ର ୧୧୨ ଶ୍ଳୋକ ବିଶିଷ୍ଟ ପ୍ରଥମ ଶତକଟି (ଆଶ୍ୱାସ) ପାଇଥିଲେ; ଫଳରେ ବଙ୍ଗ ଓ ବୃନ୍ଦାବନରେ ଏହି ପ୍ରଥମ ଆଶ୍ୱାସର ବିଶେଷ ପ୍ରଚଳନ ହୋଇଥିଲା । ପରବର୍ତ୍ତୀ ଦୁଇଟି ଆଶ୍ୱାସକୁ କେତେକ ଗବେଷକ ପଣ୍ଡିତ ପ୍ରକ୍ଷିପ୍ତ ମନେ କରନ୍ତି; କିନ୍ତୁ ଦାକ୍ଷିଣାତ୍ୟର ବିଭିନ୍ନ ରାଜ୍ୟରେ (ତାମିଲନାଡ଼ୁ, ଆନ୍ଧ୍ର, କର୍ଣ୍ଣାଟକ, କେରଳ) ଓ ପଶ୍ଚିମ ଭାରତରେ ପ୍ରଥମ ଆଶ୍ୱାସ ସହ ଅନ୍ୟ ଦୁଇଟି ଆଶ୍ୱାସର ପ୍ରଚଳନ ଅଦ୍ୟାବଧି ରହିଛି । ସେଥିପାଇଁ କେତେକ ଗବେଷକ ସେ ଦୁଇଟି ଆଶ୍ୱାସକୁ ପ୍ରକ୍ଷିପ୍ତ ମନେ ନ କରି ଲୀଳାଶୁକଙ୍କର ରଚନା ବୋଲି ଯୁକ୍ତି କରନ୍ତି । ଗୋପାଳକୃଷ୍ଣ କୃଷ୍ଣକର୍ଣ୍ଣାମୃତର ଦ୍ୱିତୀୟ ଆଶ୍ୱାସର ସତରଟି ଶ୍ଳୋକର ଅନୁବାଦ କରିଛନ୍ତି (୨୧) । ପ୍ରତ୍ୟେକ ଶ୍ଳୋକ ଆଦ୍ୟରେ ରଖି ତାର ଭାବ ବିଭିନ୍ନ ରାଗରେ (ତାଳର ନିର୍ଦ୍ଦେଶ ଦେଇ) ସଙ୍ଗୀତ ରୂପରେ ଉପସ୍ଥାପନ କରିଛନ୍ତି ଏବଂ ପାରଳାଖେମୁଣ୍ଡିର ରାଜା ଗଜପତି ପ୍ରତାପରୁଦ୍ରଙ୍କ ନାମରେ ଭଣିତ କରିଛନ୍ତି । ଅଧିକାଂଶ ଶ୍ଳୋକର ଅନୁବାଦରେ ଆକ୍ଷରିକ ଅନୁବାଦର ପ୍ରବଣତା ଲକ୍ଷିତ ହେଉଥିବାରୁ ଭାବ ପ୍ରକାଶରେ ସ୍ୱତଃସ୍ଫୂର୍ତ୍ତି ଓ ସରସତା ଦେଖାଯାଏ ନାହିଁ, ବରଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସାହିତ୍ୟିକ ଭାଷାର ପ୍ରୟୋଗ ହେତୁ ସଙ୍ଗୀତ ରୂପରେ ଅନୁବାଦର ଭାଷା ସ୍ଥାନେ ସ୍ଥାନେ କୋମଳ ଓ ଶ୍ରୁତି ସୁଖକର ହୋଇ ପାରିନାହିଁ । ଦୃଷ୍ଟାନ୍ତ ସ୍ୱରୂପ ୧୩ଶ ଶ୍ଳୋକର (୨୨) ଅନୁବାଦ ଲକ୍ଷ୍ୟ କରାଯାଉ —

---

(୧୭) କୁ. ସଂ., ୫।୮୦

(୧୮) ଗୋ. କୃ. ଗ୍ର ., ପୃ. ୧୭

(୧୯) ଗୋ. କୃ. ଗ୍ରଂ., ପୃ. ୨୫

(୨୦) ତତ୍ରୈବ, ପୃ. ୨୮

(୨୧) ଡଃ ବିମାନବିହାରୀ ମଜୁମଦାରଙ୍କ ସମ୍ପାଦିତ ବଙ୍ଗୀୟ ସଂସ୍କରଣ (୧ମ ସଂ.)

(୨୨) ଗୋ. କୃ. ଗ୍ରଂ., ପୃ. ୧୩୭

ବ୍ରଜକିଶୋର, କେ ସେହି ହେଜ । ଘୋଷା ।
ସର୍ବଲୋକର ଶୋଭାର ସାର,
ଯା ମୂର୍ତ୍ତି ବେଦାନ୍ତ ଗିରେ ଅଗୋଚର ।୧।
ବ୍ରହ୍ମ ନୈଷ୍ଠିକ ଯୋଗୀମାନଙ୍କ
ହୃଦରେ ଦୁର୍ଲ୍ଲଭ ସ୍ଫୂର୍ତ୍ତି ଲବ ଯାର ।୨।
ଗୋପ ପ୍ରମଦା ପଦାବ୍ଜେ ସଦା
ସୁଲଭ ସେ ଶିଖି-ଶିଖଣ୍ଡ-ଶେଖର ।୩।
କରନ୍ତୁ ତୃପ୍ତି ଅଭୀଷ୍ଟ ପୂର୍ତ୍ତି
ସେ ଅଦ୍ଭୁତ ବ୍ରହ୍ମ-ବିଗ୍ରହ ଆମ୍ଭର ।୪।

(ଗୋପାଳକୃଷ୍ଣ ପଦ୍ୟାବଳୀ ପୃ. ୯୬, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୧୩୬)

କିନ୍ତୁ କେତେକ ଶ୍ଳୋକର ଅନୁବାଦରେ ଏ ତ୍ରୁଟି ଲକ୍ଷିତ ହୁଏନା । ସାହିତ୍ୟିକ ଭାଷାର ପ୍ରୟୋଗ ହେଲେ ମଧ୍ୟ ଭାବ ପ୍ରକାଶରେ ସ୍ୱତଃ ସ୍ଫୂର୍ତ୍ତି, ପଦ ପ୍ରବାହରେ ସାବଲୀଳତା ଓ ରଚନାର କୋମଳତା ତଥା ମଧୁରତା ହେତୁ ସଙ୍ଗୀତ ରୂପରେ ରଚନା ଉପଭୋଗ୍ୟ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ ଏକାଦଶ ଶ୍ଳୋକର (୨୩) ଅନୁବାଦ ଲକ୍ଷ୍ୟ କରାଯାଇ ପାରେ, ଯଥା—

କର ଜୁହାର ମାଗୁଛି ମୁଁ ବଂଶୀ ! ତୋତେ ।
ହର କର୍ଣ୍ଣେ କହ ମୋ ଦଶା ହରିତେ । ଘୋଷା ।
କୃଷ୍ଣ ମୁଖାରବିନ୍ଦ ସମୀର ମକରନ୍ଦ
ରସିକା ତୁ ଅନୁଗ୍ରହ କର ମୋତେ ।୧।
ଅଧରାରୁଣ ମଣି ସଦନର ଗୃହିଣୀ
ପଦାବ୍ଜର ଦୁଃଖ ଜଣା ଯେତେ ।୨।
ତ୍ରୈଲୋକ୍ୟ ନିରୁପମ ବ୍ରଜ ବନିତା ପ୍ରେମ
ଚଳିଲେ ଶ୍ରୀପ୍ରତାପରୁଦ୍ର ସନ୍ତତେ ।୩।

(ଗୋପାଳ କୃଷ୍ଣ ପଦାବଳୀ, ପୃ: ୯୬, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ.୧୩୫)

କୃଷ୍ଣକର୍ଣ୍ଣାମୃତର ୧୭ଟି ଶ୍ଳୋକ ଅନୁବାଦ କରି କବି 'ପ୍ରାର୍ଥନା' ଶିରୋନାମାରେ ଗୀତଗୁଡ଼ିକ ପ୍ରକାଶ କରିଛନ୍ତି । ପ୍ରାର୍ଥନା ଗୀତଗୁଡ଼ିକରେ ଇନ୍ଦ୍ରନୀଳ ଦ୍ୟୁତିନିଭ ଶ୍ରୀକୃଷ୍ଣଙ୍କର ମୁଖଶୋଭା (୧ମ ଓ ୧୨ଶ ପଦ), ମୁରଲୀଧରଙ୍କର ବ୍ରଜନାରୀଙ୍କ ସହ ବସ୍ତ୍ରହରଣ ଲୀଳା, ମୁରଲୀନାଦରେ ବ୍ରଜାଙ୍ଗନାଙ୍କ ଆକର୍ଷଣ, ରାଧାଙ୍କର କୋମଳ ଭୁଜ ଆଲିଙ୍ଗିତ ଶ୍ରୀକୃଷ୍ଣ ବିଗ୍ରହ, କାଳୀୟ-ମର୍ଦ୍ଦନ ଶରୀର ଦର୍ଶନରେ ମନୁଷ୍ୟେତର ପ୍ରାଣୀ (ସୁରଭି) ଓ ବିହଙ୍ଗ (ବଚରା) ମାନଙ୍କର ଭ୍ରାନ୍ତି, ବ୍ରଜପୁର ବାସୀଙ୍କ (ଶରଣାର୍ଥୀଙ୍କ) ନିଜର ଅଲୌକିକ ବିକ୍ରମ

(୨୩) ଶ୍ରୀକୃଷ୍ଣକର୍ଣ୍ଣାମୃତ, ସମ୍ପାଦକ ବିମାନବିହାରୀ ମଜୁମ୍ଦାର, ୧ମ ସଂ, ୧୯୬୬ ପୃ-୧୪୫

ବଳରେ ଅଭିସ୍ଥାନ ପ୍ରଭୃତି ଗୋପଲୀଳାର ଗୋଟିଏ ଗୋଟିଏ ମଞ୍ଜୁଳ ଚିତ୍ର ଅଙ୍କନ କରି ଭଗବାନ୍ ଶ୍ରୀକୃଷ୍ଣଙ୍କର ସେହି ବୈଚିତ୍ର୍ୟମୟୀ ରୂପ ଓ ଲୀଳାକୁ ଅନ୍ତର ମଧ୍ୟରେ ଧ୍ୟାନ କରିଛନ୍ତି ଏବଂ ଗୋପୀ ଭାବରେ ନିଜକୁ ଭାବିତ କରିଛନ୍ତି । ବଂଶୀର ଭାଗ୍ୟ ପ୍ରଶଂସା କରି ନିଜେ ଯମୁନା ତୀରବର୍ତ୍ତୀ କାନନରେ ବଂଶ ରୂପେ ଜାତ ହୋଇ ପ୍ରେମିକ ଶ୍ରୀକୃଷ୍ଣ ମୁଖରେ ବଂଶୀରୂପେ ଧୃତ ହେବାର ଅଭିଳାଷ ବ୍ୟଞ୍ଜକ ଚିତ୍ରଟି ଅତି ମନୋଜ୍ଞ । କବିଙ୍କ ଭାଷାରେ—

ବଂଶୀର ପୂର୍ବ ଜନ୍ମରେ କି ପୁଣ୍ୟ ଶ୍ରୀକୃଷ୍ଣାଧରେ
ବସି ସୁଧା ପାନକରେ, ଯମୁନା ତୀରବନରେ ।୧।
ଧନ୍ୟ ବେଣୁ ନାଳର ସୁଦଶା, ଆହା ମୁଁ ହୁଅନ୍ତି ପୂର୍ଣ୍ଣ ହୋନ୍ତା ଆଶା
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ.୧୩୪)

ବୈଷ୍ଣବର ସ୍ମରଣ, ଚିନ୍ତନ, କୀର୍ତ୍ତନ, ସେବା, ବ୍ରଜର ଜା'ର ଭାବ ଓ ଆତ୍ମନିବେଦନ ଭାବ ପ୍ରାର୍ଥନା ଗୀତ ଗୁଡ଼ିକର ବିଭିନ୍ନ ପଦରେ ପରିସ୍ଫୁଟ ହୋଇଛି ।

(୭) ଶ୍ରୀ ଶ୍ରୀ ରାଧିକାୟା ଆନନ୍ଦ ଚନ୍ଦ୍ରିକାଖ୍ୟ ଦଶନାମସ୍ତୋତ୍ରମ୍— ସଂସ୍କୃତରେ ରୂପ ଗୋସ୍ୱାମୀଙ୍କର ଏହି ସ୍ତୋତ୍ରଟି ଗୁରଶ୍ଳୋକ ବିଶିଷ୍ଟ ଗୋଟିଏ ସ୍ତୋତ୍ର । ଚିରାଚରିତ ରୀତିରେ ସ୍ତୋତ୍ରକାର ରାଧାଙ୍କର ଗୁଣ ଓ କିଂସ୍ୱାନ୍ୱିତ ଦଶଟି ନାମ ଉଲ୍ଲେଖ କରି (ଦାମୋଦର ପ୍ରେଷ୍ଠା, ବାର୍ଷଭାନବୀ, କୃଷ୍ଣପ୍ରିୟାବଳୀ ମୁଖ୍ୟା, ଗାନ୍ଧର୍ବୀ ଇତ୍ୟାଦି) ସ୍ତୋତ୍ରଟିର ଫଳ ଶ୍ରୁତିରେ କହିଛନ୍ତି ଏହି ସ୍ତୋତ୍ର ପାଠ ଫଳରେ ଭକ୍ତ କ୍ଳେଶ ରହିତ ହୋଇ ସୌଭାଗ୍ୟଶାଳୀ ହୁଏ ଏବଂ ରାଧା ମାଧବଙ୍କର ଆଶୁ କରୁଣା ପାତ୍ର ହୁଏ । ଦାସ୍ୟଭାବ ଲୋଲୁପ ଭକ୍ତ ଦୃଷ୍ଟିରୁ ସ୍ତୋତ୍ରଟିର ମୂଲ୍ୟ ଉପେକ୍ଷଣୀୟ ନୁହେଁ । ଗୋପାଳକୃଷ୍ଣ ଏହି ସ୍ତୋତ୍ରାବଲମ୍ବନରେ ଯେଉଁ ଗୀତ ରଚନା କରିଛନ୍ତି, ତା'ର ପ୍ରଥମ ଦୁଇଟି ପଦ ସ୍ତୋତ୍ରର ପ୍ରଥମ ଦୁଇଟି ଶ୍ଳୋକର ଅନୁବାଦ । ସଂସ୍କୃତ ସ୍ତୋତ୍ର ଅପେକ୍ଷା ଗୀତ ମାଧୁର୍ଯ୍ୟ ହେତୁ ଅନୁବାଦ ଅଧିକ ଶ୍ରୀସମ୍ପନ୍ନ ଓ ଶ୍ରୁତି ସୁଖକର ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ—

କୃଷ୍ଣ-ପ୍ରିୟାବଳୀ-ମୁଖ୍ୟା ଗାନ୍ଧର୍ବା ଲଳିତା ସଖୀ ।
ବିଶାଖା-ସଖ୍ୟ-ସୁଖିନୀ ହରି-ହୃଦ୍‌ଭୃଙ୍ଗ ମଞ୍ଜରୀ ।୨।
(ସ୍ତ. କ. ଦ୍ରୁ., ପୃ ୫୯୬)

ଏହାର ଅନୁବାଦରେ କବି ଲେଖିଛନ୍ତି —

ଶ୍ରୀଗାନ୍ଧର୍ବା ଲଳିତା ସଙ୍ଗିନୀ ଗୋ !
ସୁରସବତୀ ରାସ ରଙ୍ଗିନୀ ଗୋ !
ହରି ହୃଦୟ ଅଳି ମଞ୍ଜରୀ ! ପ୍ରେମବଲ୍ଲି !
ବିଶାଖା ସଖୀ ସୁଖ ବର୍ଦ୍ଧିନି ଗୋ । ।୨।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ ୩୫)

ରସିକ କବି ମୂଳ ସଂସ୍କୃତ ସ୍ତୋତ୍ରର ଗତାନୁଗତିକ ଫଳଶ୍ରୁତିକୁ ବାଦ ଦେଇ ସ୍ୱକୀୟ ଭଙ୍ଗୀରେ ରାଧାଙ୍କର ଅଲୌକିକ ଗୁଣର ବର୍ଣ୍ଣନା ଦେଇ ଗୀତଟିରେ ନିଜର ସ୍ୱାତନ୍ତ୍ର୍ୟର

ପରିଚୟ ଦେଇଛନ୍ତି, ଯଥା—କରୁଣାମୟୀ ବିଶ୍ୱବନ୍ଦିତା ରାଧା ହେଉଛନ୍ତି ନିତ୍ୟସ୍ଥଳ ଅଧିବାସିନୀ, ଭକ୍ତବାଞ୍ଛା ପୂର୍ତ୍ତିକାରିଣୀ, ମହାଭାବ ସ୍ୱରୂପିଣୀ, ନାଗରୀମାନଙ୍କ ମଧ୍ୟରେ ଅତି ନର୍ତ୍ତନା, ଭକ୍ତ ଓ ଆଶ୍ରିତ ମାନଙ୍କର ସର୍ବଆନନ୍ଦ ଓ ସୁଖ ବିଧାୟିକା । ସଦ୍ୟ ପ୍ରସ୍ଫୁଟିତ ଲୀଳାକମଳ ଧାରିଣୀ ରାଧା ହେଉଛନ୍ତି ଭକ୍ତ ମାନଙ୍କର ଅଶେଷ ଦୁଃଖ ଓ କ୍ଳେଶ ହରଣରେ ନିପୁଣା । ସେହି ନିଭୃତ କୁଞ୍ଜବିହାରିଣୀ ରାଧାଙ୍କର କୋମଳ ପଦସରୋଜରେ କବି ଆଶ୍ରୟ ନେଇଛନ୍ତି ।

(୭) ଶ୍ରୀଶ୍ରୀରାଧିକାୟାଃ ପ୍ରେମପୂରାଭିଧସ୍ତୋତ୍ରମ୍-ଏହି ସ୍ତୋତ୍ରଟି ରଘୁନାଥଦାସ ଗୋସ୍ୱାମୀଙ୍କ ଦ୍ୱାରା ସଂସ୍କୃତରେ ରଚିତ ଏକାଦଶ ଶ୍ଳୋକ ବିଶିଷ୍ଟ ଗୋଟିଏ ସ୍ତୋତ୍ର । ଏଥିରେ କବି ବୃନ୍ଦା ଲଳିତା ପ୍ରଭୃତି ସଖୀ ନିସେବିତ ନିଭୃତ କୁଞ୍ଜ ପ୍ରଦେଶରେ ରାଧାକୃଷ୍ଣଙ୍କର ଅଭିସାର କାଳୀନ ବିବିଧ ଲୀଳାଦର୍ଶନର ଅଭିଳାଷ ପୋଷଣ କରି ରାଧାଙ୍କ ନିକଟରେ ନିଜର ପ୍ରାଣର ବ୍ୟାକୁଳତା ନିବେଦନ କରିଛନ୍ତି । ମଞ୍ଜରୀ ଭାବରେ ସ୍ୱାମିନୀଙ୍କର (ରାଧାଙ୍କର) ନିଭୃତ କୁଞ୍ଜସେବା କବିଙ୍କର ସାଧନାର ଅନ୍ତିମ ଲକ୍ଷ୍ୟ । କବି ଆଷାଢ଼ ଶୁକ୍ଳ ରାଗରେ ପ୍ରତ୍ୟେକ ଶ୍ଳୋକର ସାର୍ଥକ ଅନୁବାଦ କରିଛନ୍ତି । ଅନୁବାଦ ଏକ ପ୍ରକାର ଆକ୍ଷରିକ ହେଲେ ମଧ୍ୟ ଭାବ ଓ ଛନ୍ଦର ଅଭିବ୍ୟକ୍ତି ଏବଂ ଭାଷା ଓ ପ୍ରକାଶଭଙ୍ଗୀ ଅତି ସ୍ୱାଭାବିକ ହୋଇଛି । ଆକ୍ଷରିକ ଅନୁବାଦର ଭାବ ଓ ଛନ୍ଦ ପ୍ରକାଶ ଜନିତ କୃତ୍ରିମତା ତଥା ଅମସୃଣତାରୁ ଏ ଅନୁବାଦ ମୁକ୍ତ । ଗୋଟିଏ ଗୋଟିଏ ଶ୍ଳୋକ ଉଦ୍ଧାର କରି କବି ଏହାର ଅନୁବାଦ କରିଛନ୍ତି । ସ୍ତୋତ୍ରର ଶ୍ଳୋକ ଉଲ୍ଲେଖ କରାଯାଇନଥିଲେ ଏହା ଗୋପାଳକୃଷ୍ଣଙ୍କର ନିଜସ୍ୱ ରଚନାର ଭ୍ରାନ୍ତି ପାଠକ ଚିତ୍ତରେ ଜାତ କରନ୍ତା । ଗୋଟିଏ ଶ୍ଳୋକର ଅନୁବାଦ ଲକ୍ଷ୍ୟ କରାଯାଉ—

ମଧୁ-ମଧୁର-ନିଶାୟାଂ ଜ୍ୟୋତଚ୍ଛୁଭାସିତାୟାଂ
ସିତ-କୁସୁମ-ସୁବାସା କ୍ଳୃପ୍ତକର୍ପୂର ଭୂଷା ।
ସୁବଳସଖମୁପେତା ଦୂତିକା-ନ୍ୟସ୍ତ-ହସ୍ତା
କ୍ଷଣମପି ମମ ରାଧେ ! ନେତ୍ରମାନନ୍ଦୟ ତ୍ୱମ୍ ।୧। (ସ୍ତବକଲ୍ପଦ୍ରୁମ, ପୃ. ୫୮୪)

ଏହାର ଅନୁବାଦରେ କବି ଲେଖିଛନ୍ତି—

ବସନ୍ତକାଳେ ମଧୁ ଯାମିନୀରେ ।
ଶୁଭ୍ର ବସନ୍ତ ଶୁଭ୍ର ଭୂଷଣରେ ॥
ସୁବଳଙ୍କ ଅନୁଗାମିନୀ ହୋଇ ।
ବୃନ୍ଦାଦୂତୀ କନ୍ଧେ ଶ୍ରୀକର ଦେଇ ॥
କରୁଁ ଅଭିସାର
ରାଧେ ! ଆନନ୍ଦ ଦେବ ନେତ୍ରେ ମୋର ॥୧॥

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୪୬)

ମୂଳ ସଂସ୍କୃତ ସ୍ତୋତ୍ରର ପ୍ରତ୍ୟେକ ଶ୍ଳୋକ ଓ ତା'ର ଅନୁବାଦ ହେଉଛି ଗୋଟିଏ ଗୋଟିଏ ଛନ୍ଦ । ସ୍ୱାମୀ ଓ ସ୍ୱାମିନୀଙ୍କର ଅଭିସାର କାଳୀନ ପ୍ରତ୍ୟେକ ମଧୁମୟୀ

ଦୃଶ୍ୟ ଦର୍ଶନର ଲୋଭ କବିଙ୍କର ପ୍ରତ୍ୟେକ ଶ୍ଳୋକ ଓ ତାର ଅନୁବାଦରେ ପରିସ୍ଫୁଟ ହୋଇଛି । ସେହି ଦୃଶ୍ୟ ଗୁଡ଼ିକ ହେଉଛି :—ବସନ୍ତର ମଧୁଯାମିନୀରେ ଶୁଭ୍ରଭୂଷଣ ପରିହିତା ରାଧାଙ୍କର ବୃନ୍ଦାଦୂତୀଙ୍କର ସ୍କନ୍ଧରେ କର ସ୍ଥାପନ କରି ସୁବଳଙ୍କର ପଶ୍ଚାଦ୍ଦେଶରେ ଅଭିସାର ଲକ୍ଷ୍ୟରେ ଯାତ୍ରା; ଅନିଚ୍ଛା ପ୍ରକାଶ କରି ରାଧା ଗୃହକୁ ଚଳିଲେ ଶ୍ରୀକୃଷ୍ଣଙ୍କର ତାଙ୍କ କୁଞ୍ଜ ପ୍ରଦେଶକୁ ଆକର୍ଷଣ; କୁଞ୍ଜର ମଲ୍ଲିକା ଆସ୍ତୃତ ଶଯ୍ୟାରେ ନବଘନରେ ସ୍ଥିର ଚପଳା ପରି ବ୍ରଜେନ୍ଦ୍ରଙ୍କ ବକ୍ଷରେ ରାଧାଙ୍କର ଶୋଭା; କେଳିତଳରେ ଆଲିଙ୍ଗନ ଓ ନାନା ହାସ ପରିହାସ ଦ୍ୱାରା ପରସ୍ପରର (ରାଧାକୃଷ୍ଣଙ୍କର) ଆନନ୍ଦ; ଉନ୍ମତ୍ତତା ହେତୁ କାମ ସମରରେ କ୍ଳାନ୍ତ ରାଧିକାଙ୍କର ଶ୍ରୀକୃଷ୍ଣଙ୍କ ବକ୍ଷ ସ୍ଥଳରେ ଦ୍ୱିଧାଳାପ ଓ ପରିହାସ; ନିକୁଞ୍ଜ ପ୍ରାଙ୍ଗଣରେ ରାଧାଙ୍କର ବକ୍ରୋକ୍ତିରେ କୃଷ୍ଣଙ୍କର ପରାଜୟ ଏବଂ ସଖୀମାନଙ୍କର ରାଧାଙ୍କୁ ପ୍ରଶଂସା; ବ୍ରଜେନ୍ଦ୍ରଙ୍କର ସାମାନ୍ୟ ଦୋଷରେ ରାଧାଙ୍କର ଅଭିମାନ ଏବଂ ମାନଭଞ୍ଜନ ପାଇଁ ଗୃଢ଼ ବଚନରେ ଶ୍ରୀକୃଷ୍ଣଙ୍କର ପ୍ରାର୍ଥନା । ନବମ ଓ ଦଶମ ଶ୍ଳୋକର ଅନୁବାଦରେ କବି ରାଧାଙ୍କୁ ବୃଷଭାନୁଙ୍କର ଭାଗ୍ୟଲକ୍ଷ୍ମୀ, କୃଷ୍ଣଙ୍କର ପ୍ରଣୟକାନନର ଭୃଙ୍ଗୀ, ସର୍ଖୀରୂପକ କୁମୁଦ ବନର ଆନନ୍ଦବର୍ଦ୍ଧନକାରୀ କୌମୁଦୀ, କୃପାମୟୀ, ଅଶେଷ ଗୁଣଯୁକ୍ତା, ଶ୍ରୀକୃଷ୍ଣଙ୍କର ହ୍ଲାଦିନୀ ଶକ୍ତିରୂପା, ଅନୁପମ ଗୁଣଶାଳିନୀ ଏବଂ ସଖୀମାନଙ୍କର ମୁକୁଟମଣି ଇତ୍ୟାଦି ସ୍ତୁତିବାକ୍ୟ ଦ୍ୱାରା ତାଙ୍କର ଦିବ୍ୟଗୁଣ ଓ ଶୋଭାର ପ୍ରଶଂସା କରି ଏକାଦଶ ଶ୍ଳୋକର ଅନୁବାଦରେ ଏହି ସ୍ତୋତ୍ର ପାଠର ଫଳଶ୍ରୁତି ବର୍ଣ୍ଣନା କରି ଅନୁବାଦ ଶେଷ କରିଛନ୍ତି ।

(୮) ସଂକଳ୍ପ କଳ୍ପଦ୍ରୁମ—'ଶ୍ରୀ ଶ୍ରୀ ସଂକଳ୍ପ କଳ୍ପଦ୍ରୁମ' ଶ୍ରୀମଦ୍ ଭାଗବତ ଭାଷ୍ୟକାର ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କର ୧୦୪ଟି ଶ୍ଳୋକ ବିଶିଷ୍ଟ ଗୋଟିଏ କ୍ଷୁଦ୍ର ପ୍ରାର୍ଥନାତ୍ମକ ଗ୍ରନ୍ଥ । ଗୋପାଳକୃଷ୍ଣ ଏହାର ଗୋଟିଏ ମାତ୍ର ଶ୍ଳୋକ ଅବଲମ୍ବନରେ ପୂର୍ବୋକ୍ତ ଶିରୋ-ନାମାରେ ପ୍ରାର୍ଥନା ଗୀତଟିଏ ରଚନା କରିଛନ୍ତି (୨୪) । ଶ୍ଳୋକର ଭାବାବଲମ୍ବନରେ କବି ସିଦ୍ଧାଙ୍ଗରେ ମଞ୍ଜରୀ (ଦାସୀ) ଭାବରେ ରାଧାଙ୍କର ସେବା (ମୁଖ୍ୟତଃ କୃଷ୍ଣସେବା) କରିବାର ଅଭିଳାଷ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ—

ଏତେ ସଂକଳ୍ପ, ମୁଁ ତୁମ୍ଭ ଦାସୀ ହେବି ଗୋ !
ଅନ୍ତେ ସିଦ୍ଧାଙ୍ଗେ ମଞ୍ଜରୀଭାବେ ସେବି ଗୋ ! ।୧।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ.୯୪)

କବିଙ୍କ ବର୍ଣ୍ଣନାନୁସାରେ ସଖୀ ପରିବୃତ୍ତା ରାଧିକା କୃଷ୍ଣ ବିହାରୀଙ୍କ ସହିତ ଯେତେବେଳେ ବିଭିନ୍ନ କୁଞ୍ଜରେ ବିହାର କରୁଥିବେ, ସେହି ରୂପ, ଗୁଣ, ଲୀଳା ବିମଣ୍ଡିତା ସ୍ୱାମିନୀଙ୍କର ମନ ଜାଣି ତାଙ୍କର ଅନୁସରଣ କରୁଥିବେ । ପ୍ରଦୋଷ କାଳରେ ନାନା ଭୂଷଣରେ ତାଙ୍କୁ ମଣ୍ଡିତ କରାଇ ସଖୀ ମେଳରେ ନିଭୃତ କୁଞ୍ଜରେ ଅଭିସାର କରାଉଥିବେ । କୌଣ ଲୀଳାରେ ପୁଷ୍ପଶଯ୍ୟା ଇତ୍ୟାଦି ରଚନା କରି ଶ୍ରୀକୃଷ୍ଣଙ୍କ ସହ ତାଙ୍କର ମିଳନ ସମ୍ପାଦନ କରି ସେହି ଯୁଗଳ ମିଳନ ଦର୍ଶନରେ ପ୍ରେମୋନ୍ମତ୍ତ ହେବାର ସଂକଳ୍ପ ପୋଷଣ କରିଛନ୍ତି ।

(୨୪) S. K, De, History of Vaisnav Faith and Movt, PP.612

ମୂଳ ସଂସ୍କୃତ ଶ୍ଳୋକରେ ରାଧାଙ୍କ ଉଦ୍ଦେଶ୍ୟରେ ସମ୍ବୋଧନାତ୍ମକ ପଙ୍କ୍ତିର ପଦଗୁଡ଼ିକ କବି ଅବିକଳ ପ୍ରୟୋଗ କରିଥିଲେ ମଧ୍ୟ (୧୫) ଶ୍ଳୋକଟିରେ କବିଙ୍କର ସଂକଳ୍ପ ଘଟିତ ଭାବର ବିସ୍ତୃତି ଗୋପାଳକୃଷ୍ଣଙ୍କ ରଚନାରେ ଲକ୍ଷ୍ୟ କରିବାର ବିଷୟ । ଦୃଷ୍ଟାନ୍ତ ସ୍ୱରୂପ— ଦାସୀ ଭବାନି ମୁଖସ୍ଥାନି ସଦା ସକାନ୍ତାଂ, ତ୍ୱାମାଳୀଭିଃ ପରିବୃତ୍ତାମିଦମେବ ଯାଚେ । ଅର୍ଥାତ୍ ପ୍ରିୟତମଙ୍କ ସହିତ ସଖୀପରିବୃତ୍ତା ହେ ସ୍ୱାମିନି ! ତୁମର ଆନନ୍ଦ ସମ୍ପାଦନ ନିମିତ୍ତ ମୋତେ ଶ୍ରୀପଦରେ ଦାସୀ କର । ଏହି ଶ୍ଳୋକାଂଶର ଭାବ ବିସ୍ତୃତି କିପରି ଘଟିଛି, ପୂର୍ବର ଆଲୋଚନାରୁ ସ୍ପଷ୍ଟ ହେବ ।

(୯) **ଶ୍ରୀ ଶ୍ରୀ ରାଧାକୃଷ୍ଣ ଯୁଗଳ ଭଜନାମୃତ**—ଏହି ପ୍ରାର୍ଥନା ଗୀତଟି ପୂର୍ବପରି ଏକ ସଂସ୍କୃତ ଶ୍ଳୋକର ମୁକ୍ତାନୁବାଦ । ମୂଳ ସଂସ୍କୃତ ଶ୍ଳୋକରେ ଭାବ ବା ଚିତ୍ରଗତ ସୂକ୍ଷ୍ମତାର ସେପରି ନିଦର୍ଶନ ନାହିଁ । ସେହି ଗତାନୁଗତିକ ରୀତିରେ ସଂସ୍କୃତ କବି କିଶୋର ଓ କିଶୋରୀଙ୍କର କାନ୍ତି, ସଖା,ସଖୀ, ବେଶକରଣ ବସ୍ତ୍ର ଓ ଆଭୂଷଣର ବର୍ଣ୍ଣନା କରିଛନ୍ତି; ଯଥା—

ହେମେନ୍ଦୀବରକାନ୍ତିମଞ୍ଜୁଲତରଂ ଶ୍ରୀମଜ୍ଜଗନ୍ମୋହନଂ
ନିତ୍ୟାଭିର୍ଲଳିତାଦିଭିଃ ପରିବୃତଂ ସନ୍ନୀଲ-ପୀତାମ୍ବରମ୍ ।

ଅନୁବାଦରେ କବି ଲେଖିଛନ୍ତି—

ନବ ହେମ ଇନ୍ଦୀବର କାନ୍ତି ମନୋହର ।
ଜଗନ୍ମୋହନ ଶ୍ରୀମୂର୍ତ୍ତି କିଶୋରୀ କିଶୋର ।୧।
ନିତ୍ୟ ଲଳିତାଦି ସଖୀଗଣେ ପରିବୃତ ।
ନୀଳ ପୀତାମ୍ବର ଶୋଭା ବଢ଼ଇ ଅଦ୍ଭୁତ ।୨। (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୨୦୮)

ମୂଳ ଶ୍ଳୋକରେ ସନ୍ନିବିଷ୍ଟ ହୋଇ ନଥିବା ଗୋଟିଏ ଦିଓଟି ଭାବ ଓ ଚିତ୍ର କବି ଯୋଗ କରିଥିଲେ ମଧ୍ୟ ତାହା ମୂଳ ରଚନାର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି । ରାସେଶ୍ୱରୀ ରାଧା ଓ ରସରାଜ ଶ୍ରୀକୃଷ୍ଣ: ଏହି ଯୁଗଳ ମୂର୍ତ୍ତିଙ୍କର ପାଦରେ ଶରଣ ଯିବାର ସଂସ୍କୃତରେ ଯାହା ବର୍ଣ୍ଣନା କରାଯାଇଛି, କବି ସେହି ସଙ୍କେତଟିକୁ ସ୍ୱକୀୟ କଳ୍ପନା ଯୋଗ କରି ଅଧିକତର ସୁନ୍ଦର କରିଛନ୍ତି, ଯଥା—

ସୁଲଳିତ ଲାବଣ୍ୟ ଶ୍ରୀଚରଣାରବିନ୍ଦ ।
ମଣ୍ଡିତରେ ଚୁମ୍ବେ ଭକ୍ତ ମାନସ ମିଳିନ୍ଦ ।୫।
ଚିନ୍ମୟ ଚିଦ୍‌ଘନ ରସମୟୀ ରସରାଜ ।
ସୁଖାନନ୍ଦ ପ୍ରଦାୟକ ଅମଳ ପଦାବ୍ଜ ।୬। (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୨୦୮)

ପୁଣି ରୀତିଯୁଗୀୟ କଳ୍ପନାର ଲୋଭ ସମ୍ବରଣ କରି ନପାରି କବି କିଶୋରଙ୍କ ସହିତ କିଶୋରୀଙ୍କର ଆବର୍ଗବକୁ ଲକ୍ଷ୍ୟ କରି ଉତ୍ପ୍ରେକ୍ଷା କରିଛନ୍ତି—

କୋଟି ରତି ତୁଲେକି ସେ କୋଟି ରତିରେଣ ?

---

(୧୫) ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୯୪

(୧୦) **ଶ୍ରୀ ଶ୍ରୀହରିକୁସୁମ ସ୍ତବକ**—ଏହି ସ୍ତୋତ୍ରଟି ରୂପ ଗୋସ୍ୱାମୀଙ୍କର ଏହି ଶିରୋନାମା ବିଶିଷ୍ଟ ଗୋଟିଏ ସ୍ତୋତ୍ରର ସମ୍ପୂର୍ଣ୍ଣ ଆକ୍ଷରିକ ଅନୁବାଦ। ସ୍ତୋତ୍ର ଦୁଇଟିକୁ ତୁଳନା କଲେ ଦେଖାଯିବ ଯେ ମୂଳସ୍ତୋତ୍ରର ପ୍ରଥମ ଦଶଟି ସ୍ତବକର ପ୍ରତ୍ୟେକ ଚରଣ ପ୍ରାନ୍ତର ଅନୁସ୍ୱାରକୁ ବାଦ ଦେଇ ଗୋପାଳକୃଷ୍ଣ ସ୍ତୋତ୍ରଟିକୁ ଅପରିବର୍ତ୍ତିତ ଭାବରେ ଥୋଇଛନ୍ତି। କେବଳ ଏକାଦଶ ଶ୍ଳୋକର (୨୬) ଅନୁବାଦ ନ କରି ଓଡ଼ିଆ ଗୀତର ୧୧ଶ ଓ ୧୨ଶ ପଦକୁ ସଂସ୍କୃତ ସ୍ତୋତ୍ର ଛନ୍ଦରେ ସ୍ୱତନ୍ତ୍ର ଭାବରେ ରଚନା କରିଛନ୍ତି।

ରୂପ ଗୋସ୍ୱାମୀଙ୍କର ସ୍ତୋତ୍ର ଓ ବିରୁଦ ସମ୍ପର୍କରେ ପୂର୍ବରୁ କୁହାଯାଇଛି ଯେ ଆଳଙ୍କାରିକତା, ଶବ୍ଦ ଐଶ୍ୱର୍ଯ୍ୟ ଓ ଶିଳ୍ପ ସୌଷ୍ଠବ ହେଉଛି ସେଗୁଡ଼ିକର ବୈଶିଷ୍ଟ୍ୟ। ଉଦ୍ଧୃତ ସ୍ତବକଟି ଅଷ୍ଟକ ପରି କ୍ଷୁଦ୍ର। ଏଥିରେ କ୍ଷୁଦ୍ର ଆବୃତ୍ତି-ମନ୍ତ୍ରୁଳ ଏକକାଳୀନ ଉଚ୍ଚାର୍ଯ୍ୟ ଶବ୍ଦାଂଶ ବା ଅକ୍ଷର ଛନ୍ଦର ପ୍ରୟୋଗ ଦେଖାଯାଏ। ଏହାର ଯତିର ଝଙ୍କାର ଅତି ଶ୍ରୁତି ସୁଖକର। ପଦ ପରମ୍ପରାର ସାବଲୀଳ ପ୍ରବାହ ଓ ଆନୁପ୍ରାସିକ ମାଧୁର୍ଯ୍ୟ ଆବୃତ୍ତି କାଳରେ ବିଶେଷ ଉପଭୋଗ୍ୟ। 'ନବ ନୀରଦନିନ୍ଦିତ କାନ୍ତିଧରଂ' ବୃତ୍ତରେ ଓ ଶୃଙ୍ଖଳା ନିୟମରେ ରଚିତ ହୋଇଥିବାରୁ ଏହାର ତାଳଲୟ ଘଟିତ ଗୀତମାଧୁର୍ଯ୍ୟ ଆହୁରି ବଢ଼ି ଉଠିଛି। ଦୃଷ୍ଟାନ୍ତ ସ୍ୱରୂପ—

> ଗତି-ଗଞ୍ଜିତ-ମତ୍ତତର ଦ୍ୱିରଦ
> **ରଦ** ନିନ୍ଦିତ-ସୁନ୍ଦର କୁନ୍ଦ-**ମଦ**।
> **ମଦନାର୍ବୁଦ**-ରୂପ ମଦଘ୍ନ **ରୁଚ**-
> **ରୁଚିର**-ସ୍ମିତ-**ମଞ୍ଜରୀ-ମଞ୍ଜୁ**-ମୁଖ।

କଳା ଅକ୍ଷର ପଦମାନଙ୍କରେ ଶୃଙ୍ଖଳା ନିୟମ ଲକ୍ଷ୍ୟ କରିଯାଇ ପାରିବ।

ଏଥିରେ କବି ଶ୍ରୀକୃଷ୍ଣଙ୍କର ଅଙ୍ଗସୌଷ୍ଠବ, ଗୋପୀଜନ ବଲ୍ଲଭତ୍ୱ, ଶରଣାଗତ ରକ୍ଷକତ୍ୱ, ଦାନବ ବିନାଶରେ ରୌଦ୍ରତ୍ୱ, ଜନମଙ୍ଗଳ ସାଧନରେ ନିପୁଣତା, ଦେବଗଣ ପୂଜ୍ୟତା ଓ ଭକ୍ତ-ବତ୍ସଳତା ପ୍ରଭୃତି ଗୁଣର ସୂକ୍ଷ୍ମଧର୍ମୀ ଚିତ୍ର ଅଙ୍କନ କରିଛନ୍ତି। ଅନୁପ୍ରାସ, ଶୃଙ୍ଖଳା, ଛନ୍ଦର ତରଙ୍ଗିତ ପ୍ରବାହ, ଭାଷା ଆଡ଼ମ୍ବର ଓ ଶବ୍ଦ ସନ୍ଦୋହର ଝଙ୍କାର ମଧ୍ୟରେ ଉପାସ୍ୟଙ୍କର ଗୁଣ ଓ ଅଙ୍ଗସୁଷମା ଆଚ୍ଛନ୍ନ ହୋଇଗଲା ପରି ମନେ ହୁଏ।

କବି ସ୍ତବକର ଶେଷରେ ଯେଉଁ ଦୁଇଟି ପଦ ଯୋଗ କରିଛନ୍ତି ତାହା ସ୍ୱତନ୍ତ୍ର ଭାବରେ ରଚନା କରିଥିବାରୁ ୧ମରୁ ୧୦ମ ସ୍ତବକ ପର୍ଯ୍ୟନ୍ତ ସ୍ତବକ ଗୁଡ଼ିକରେ ଶବ୍ଦ ଚୟନ ଗତ କୃତ୍ରିମତା ଓ ଗାମ୍ଭୀର୍ଯ୍ୟ ଲକ୍ଷିତ ହୁଏ ନାହିଁ (ଯଦିଓ ମୂଳ ସଂସ୍କୃତ ସ୍ତବକର ଛନ୍ଦ ଓ ଶୃଙ୍ଖଳା ନିୟମ ରକ୍ଷା କରିଛନ୍ତି); ବରଂ ଏ ଦୁଇଟିରେ ଅର୍ଥବୋଧ ଅନ୍ୟ ସ୍ତବକ ଅପେକ୍ଷା ସହଜ ହୋଇଛି। ଦୃଷ୍ଟାନ୍ତ ସ୍ୱରୂପ—

---

(୨୬) ସ୍ତ. କ. ଦ୍ରୁ., ପୃ. ୪୦୨

ପତିବ୍ରତା-ଶିରୋମଣି-ରାଧାବର
ବର-ନାଗର-ସୁନ୍ଦର-ବେଣୁଧର ।
ଧରଣୀ-ମଣ୍ଡନ-ନନ୍ଦ କୁଳଚନ୍ଦ୍ର
ଚନ୍ଦ୍ରଶେଖର-ବନ୍ଦିତ-ପଦଯୁଗ ।୧। (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୫୭)

(୧୧) **ମନଃଶିକ୍ଷା**—ମାୟା ଓ ମୋହଗ୍ରସ୍ତ ଚିତ୍ତକୁ ଭଗବତ୍ ଉନ୍ମୁଖୀ କରିବା ପାଇଁ ବୈଷ୍ଣବ ଗୋସ୍ୱାମୀ ଓ ପଦକର୍ତ୍ତାମାନେ 'ମନଃଶିକ୍ଷା' ଶିରୋନାମାରେ ବହୁ ଉପଦେଶାତ୍ମକ ତଥା ସାନ୍ତ୍ୱନା ପ୍ରଦାୟକ ଶ୍ଳୋକ ଓ ପଦ ରଚନା କରି ଯାଇଛନ୍ତି । କବି ବୈଷ୍ଣବ ଗୋସ୍ୱାମୀ ଓ ଭକ୍ତଙ୍କର ପଦାଙ୍କ ଅନୁସରଣ କରି ସଂସାର ଦାବ ଦଗ୍‌ଧ ପ୍ରାଣକୁ ଭଗବଦ୍‌ଭକ୍ତି ଓ ପ୍ରେମବାରିରେ ଅଭିଷିଞ୍ଚିତ କରି ଶ୍ରୀକୃଷ୍ଣଙ୍କର ଅନୁକମ୍ପାର ଭାଜନ ହୋଇ ରାଧାଙ୍କର ପଦସେବାକୁ ଜୀବନର ଚରମ ସାର୍ଥକତା ମନେ କରିଛନ୍ତି । ଏହି ଶିରୋନାମାରେ ପଦ ଗୁଡ଼ିକରେ ସଂସାରର ଅଳୀକତା, ମୋହମାୟାର ବର୍ଣ୍ଣନା କରାଯିବା ସଙ୍ଗେ ସଙ୍ଗେ ଭଗବତ୍ ଲୀଳାମାଧୁର୍ଯ୍ୟ ଆସ୍ୱାଦନ, ନାମ ଓ ଗୁଣଶ୍ରବଣ, ଲୀଳାଦି କୀର୍ତ୍ତନ, ସେବା ଓ ଆତ୍ମନିବେଦନର ସଙ୍କେତ ଦିଆଯିବା ସଙ୍ଗେ ସଙ୍ଗେ ଯୁଗଳ ମୂର୍ତ୍ତିଙ୍କର ଅହୈତୁକୀ ସେବାର ପ୍ରଗାଢ଼ ଲାଳସାର ସଙ୍କେତ ଦିଆ ଯାଇଥାଏ ।

'ମନଃଶିକ୍ଷା' ଶିରୋନାମାରେ ଗୋପାଳକୃଷ୍ଣ ବହୁଗୀତ ରଚନା କରିଛନ୍ତି, ତନ୍ମଧ୍ୟରୁ ବିଖ୍ୟାତ 'ବ୍ରହ୍ମସଂହିତା'ର ତିନୋଟି ଶ୍ଳୋକର ଭାବ ଅବଲମ୍ବନରେ ତିନୋଟି ଗୀତ ଏବଂ ରଘୁନାଥ ଦାସ ରଚିତ ଏଗାରଟି ଶ୍ଳୋକର ଭାବ ଅବଲମ୍ବନରେ ଏଗାରଟି ଗୀତ ରଚିତ । ଅବଶିଷ୍ଟ ଅଜସ୍ର ମନଶିକ୍ଷା ମୂଳକ ଗୀତ ହେଉଛି କବିଙ୍କର ସ୍ୱକୀୟ ରଚନା; ଅବଶ୍ୟ ସେ ଗୁଡ଼ିକର ମୂଳ ପ୍ରେରଣା ବୈଷ୍ଣବ ଗୋସ୍ୱାମୀ ଓ ପଦକର୍ତ୍ତା ମାନଙ୍କର ସ୍ମରଣୀୟ ରଚନାବଳୀ ।

'ବ୍ରହ୍ମସଂହିତା'ର ଶ୍ଳୋକ ଅବଲମ୍ବନରେ (୨୭) ଗୋପାଳକୃଷ୍ଣ ଯେଉଁ ତିନୋଟି ଗୀତ ରଚନା କରିଛନ୍ତି ସେଗୁଡ଼ିକରେ ମୂଳଶ୍ଳୋକର ଭାବ ଓ ଅର୍ଥ ଅକ୍ଷୁଣ୍ଣ ରହିଛି । ଗୀତ ତିନୋଟି ଅବଶ୍ୟ ମୂଳ ଶ୍ଳୋକର ଆକ୍ଷରିକ ଅନୁବାଦ ନୁହେଁ । ସ୍ଥାନେ ସ୍ଥାନେ ଭାବ ଚିତ୍ରର ଅଭିବ୍ୟକ୍ତିରେ ନିଜର ମନୋଜ୍ଞ ଭାଷା ଓ ପ୍ରକାଶ ଭଙ୍ଗୀରେ ପାଠକ ମାନଙ୍କ ଚିତ୍ତରେ ସ୍ୱକୀୟତାର ଭ୍ରାନ୍ତି ଜାତ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ—

ଚିନ୍ତାମଣି-ପ୍ରକର-ସଦ୍ମସୁ-କଳ୍ପବୃକ୍ଷ-
ଲକ୍ଷାବୃତେଷୁ ସୁରଭୀରଭିପାଳୟନ୍ତମ୍ ।
ଲକ୍ଷ୍ମୀ-ସହସ୍ର-ଶତ-ସମ୍ଭ୍ରମ-ସେବ୍ୟମାନଂ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ।।୨୯।।

ଅନୁବାଦରେ କବି ଲେଖିଛନ୍ତି—

ଚିନ୍ତାମଣି-ନିର୍ମିତ ନିଳୟ ବ୍ରାତ ଯହିଁ ।
ଲକ୍ଷ ଲକ୍ଷ କଳ୍ପବୃକ୍ଷେ ଯେ ସ୍ଥାନ ଶୋଭଇ ।୧।

---

(୨୭) ଶତାଧ୍ୟାୟୀ ଶ୍ରୀବ୍ରହ୍ମସଂହିତା, ପଞ୍ଚମାଧ୍ୟାୟଃ,

ଯେ ଅସାଧାରଣ ଗୋକୁଳ ନାମେ ପୀଠସ୍ଥଳେ ।
ଯେ କାମଧେନୁ ବୃନ୍ଦଙ୍କୁ ପାଳନ୍ତି କୁଶଳେ ।୨।
ବ୍ରଜସୁନ୍ଦରୀ ରୂପିଣୀ-ଲକ୍ଷ୍ମୀଗଣ ତୋଷେ ।
ଯାହାଙ୍କ ସେବା ଖଟନ୍ତି ଯଥା ଅବକାଶେ ।୩।
ସେହି ଆଦି ପୁରୁଷ ଶ୍ରୀ ଗୋବିନ୍ଦ ଭଜନେ ।
ବଞ୍ଚିତ ନୋହୁ ଗୋପାଳକୃଷ୍ଣ ନିତ୍ୟ-ଧନେ ।୪। (ଗୋ. କୃ. ଗ୍ର, ପୃ-୨୦୫)

ତୃତୀୟ ଶ୍ଳୋକର (୨୮) ଅନୁବାଦରେ କବି ଶ୍ଳୋକ ବହିର୍ଭୂତ କୌଣସି ଭାବ ଓ ଚିତ୍ର ଉଲ୍ଲେଖ କରିନାହାନ୍ତି, କେବଳ ଅନୁବାଦର ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ସ୍ଥାନେ ସ୍ଥାନେ ମୂଳଭାବ ଓ ଚିତ୍ରର ସୁବୋଧ ବ୍ୟାଖ୍ୟାତ୍ମକ ବିସ୍ତୃତି ମାତ୍ର ଘଟାଇଛନ୍ତି, ଯେପରି 'ପ୍ରଣୟ-କେଳି-କଳା-ବିଳାସଂ' ଏହି ପଙ୍କ୍ତିର ଅନୁବାଦରେ କବି ଲେଖିଛନ୍ତି—ପ୍ରଣୟ ପୂର୍ବକ ପରିହାସାଦି କରନ୍ତେ । ବିଶେଷରେ ପରମ ନିପୁଣ ଅନୁକ୍ଷଣେ । (ଗୋ. କୃ. ଗ୍ର, ପୃ-୨୦୭) । ତୃତୀୟ ଶ୍ଳୋକାନୁବାଦର ଭାବ ହେଉଛି—ଇଷତ୍ ଆନ୍ଦୋଳିତ ମୟୂର ଚନ୍ଦ୍ରିକା ଯାହାଙ୍କର ଚୂଡ଼ାରେ ଉଜ୍ଜ୍ୱଳ ଦେଖାଯାଏ, ଅଧରରେ ମୋହନ ବଂଶୀ ଓ ଗଳାରେ ଯାହାଙ୍କର ବନମାଳା, ଯାହାଙ୍କର ବାହୁଦ୍ୱୟ ରତ୍ନ-ବଳୟ ମଣ୍ଡିତ, ପ୍ରେୟସୀର ପରିହାସରେ ଯେ ବିଶେଷ ନିପୁଣ, ଯେଉଁ ଶ୍ୟାମସୁନ୍ଦର ମନୋହର ଗୋପବେଶ ଓ ଲଳିତ ତ୍ରିଭଙ୍ଗ ପ୍ରକାଶ କରିଥାନ୍ତି, ସେହି ସର୍ବାବତାରୀ ଗୋବିନ୍ଦଙ୍କ ଶ୍ରୀଚରଣରେ ଅଶରଣ ଗୋପାଳକୃଷ୍ଣ ସଦା ଆଶ୍ରୟ ଗ୍ରହଣ କରୁଛି ।

କିନ୍ତୁ ଦ୍ୱିତୀୟ ଶ୍ଳୋକର ଅନୁବାଦରେ କବି ଶ୍ଳୋକର ଭାବ ଓ ଚିତ୍ରକୁ ଅଧିକ ମନୋଜ୍ଞ କରିବାପାଇଁ ସ୍ୱକୀୟ କଳ୍ପନା କୁଶଳତାର ପରିଚୟ ଦେଇଛନ୍ତି । ମୂଳ ଶ୍ଳୋକଟି ହେଉଛି—

ବେଣୁଂ କ୍ୱଣନ୍ତମରବିନ୍ଦଦଳାୟତାକ୍ଷଂ
ବର୍ହାବତଂସମସିତାମ୍ବୁଦସୁନ୍ଦରାଙ୍ଗମ୍ ।
କନ୍ଦର୍ପକୋଟିକମନୀୟବିଶେଷଶୋଭଂ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ।୩୦। (ଶ୍ରୀ ବ୍ରହ୍ମସଂହିତା, ପୃ.୬୪)

'ବେଣୁଂ କ୍ୱଣନ୍ତ' ଏହାର ଭାବ ଓ ଚିତ୍ର ବିସ୍ତୃତ ଘଟାଇ କବି ଲେଖିଛନ୍ତି—ଯା ମଧୁର ବଂଶୀଧ୍ୱନି ଶ୍ରବଣେ, ବିମୋହିତା ବ୍ରଜ-ଲଳନା ଗଣେ ।।୧।।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୦୭)

ସେହିପରି 'ବର୍ହାବତଂସଂ'ର ଅନୁବାଦରେ ଲେଖିଛନ୍ତି—ମସ୍ତକେ କଳାପୀ-ଚନ୍ଦ୍ରିକା-ଚୂଡ଼ା ବେଷ୍ଟିତ ସେବତୀ ମଲ୍ଲୀ ପାଖୁଡ଼ା ।।୨।। (ତତ୍ରୈବ, ପୃ. ୨୦୭)

ଶ୍ରୀକୃଷ୍ଣଙ୍କ ଆଗୁଲ୍‌ଫଲମ୍ବିତ ବେଣୀର ବର୍ଣ୍ଣନା ନଥିଲେ ମଧ୍ୟ କବି ଶ୍ଳୋକ-ବହିର୍ଭୂତ ଏହି ଚିତ୍ରଟି ଦେବାକୁ ଯାଇ ଲେଖିଛନ୍ତି—

(୨୮) ତତ୍ରୈବ, ଶ୍ଳୋକ. ୩୧, ପୃ.୬୫

କି ଗୁରୁ ମୀରଦ ଦଳିତାଞ୍ଜନ ।
ନୀଳେନ୍ଦୀବର **ଅତସୀ-ସୁମନ** ।।
**ଇନ୍ଦ୍ରନୀଳମଣି ମର୍କତପନ୍ତି ।**
**ତା ତହୁଁ ଅଧିକ ଶ୍ରୀଅଙ୍ଗ କାନ୍ତି ।।୭।।** (ତତ୍ରୈବ, ପୃ. ୨୦୭)

ଉଦ୍ଧୃତ ଗୁଡ଼ିକର କଳା ଅକ୍ଷରର ପଦ ଓ ପଙ୍‌କ୍ତିଗୁଡ଼ିକରେ ଭାବ ଓ ଚିତ୍ର-ବିସ୍ତୃତି ଲକ୍ଷ୍ୟ କରିବାକୁ ହେବ । ତା'ଛଡ଼ା ମୂଳ ସଂସ୍କୃତ ଶ୍ଳୋକର ସୁନ୍ଦର ଉପମା ( 'ଅସିତାମ୍ବୁଦ-ସୁନ୍ଦରାଙ୍ଗମ୍' ଏବଂ 'କନ୍ଦର୍ପ କୋଟି-କମନୀୟ-ବିଶେଷ-ଶୋଭଂ) ସ୍ଥାନରେ କବି ବ୍ୟତିରେକର କଳ୍ପନା କରି ମୂଳ କଳ୍ପନାର ସୌନ୍ଦର୍ଯ୍ୟ-ବୃଦ୍ଧି ଘଟାଇଛନ୍ତି । ପ୍ରତ୍ୟେକ ଗୀତର ଆରମ୍ଭରେ 'ଘୋଷା' ପଦରେ ସ୍ୱାମୀ ସ୍ୱାମିନୀଙ୍କର ପଦସରୋଜ ସ୍ମରଣ କରି ଦିଗ୍‌ଭ୍ରାନ୍ତ ନ ହେବାପାଇଁ କବି ମନକୁ ଯେଉଁ ଉଦ୍‌ବୋଧନ ବାଣୀ ଶୁଣାଇଛନ୍ତି, ତାହା କବିଙ୍କର ନିଜସ୍ୱ ।

ଶ୍ରୀ ରଘୁନାଥ ଗୋସ୍ୱାମୀଙ୍କର ମନଃ ଶିକ୍ଷାମୂଳକ ସଂସ୍କୃତ ଶ୍ଳୋକ ଗୁଡ଼ିକର (୧୧ଟି ଶ୍ଳୋକ) ଭାବ ଅବଲମ୍ବନରେ ଯେଉଁ ଗୀତଗୁଡ଼ିକ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଦେଖାଯାଏ, ସେଗୁଡ଼ିକର ଭାବପ୍ରକାଶଭଙ୍ଗୀ, ଭାଷା ଓ ଶୈଳୀ ଲକ୍ଷ୍ୟ କଲେ ଗୋପାଳକୃଷ୍ଣଙ୍କ ଅନୁବାଦର ମାଧୁର୍ଯ୍ୟ ଉପଲବ୍ଧି ହୁଏ ନାହିଁ । ସ୍ଥାନେ ସ୍ଥାନେ ଅନୁବାଦ ଯେପରି ଅତି କ୍ଲିଷ୍ଟ, ନୀରସ ଓ ଗଦ୍ୟଧର୍ମୀ (Prosaic) ହୋଇପଡ଼ିଛି, ସେଥିରୁ ଅନୁମାନ ହୁଏ ଯେ ଏ ଗୁଡ଼ିକ ଗୋପାଳକୃଷ୍ଣଙ୍କର ଅନୁବାଦ ନୁହେଁ, ଅନ୍ୟ କାହାର ରଚନା, ଗୋପାଳକୃଷ୍ଣଙ୍କ ନାମରେ ଭଣିତ କରିଯାଇଛି । ମନେହୁଏ : ଏହା ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ସମ୍ପାଦକ ବୈଷ୍ଣବଚରଣଙ୍କର କିମ୍ବା ତାଙ୍କର ସତୀର୍ଥ ଆଉ କାହାର ରଚନା । ସେଥିପାଇଁ ନିଜର ବା ସତୀର୍ଥଙ୍କର ରଚନାକୁ ପ୍ରାଞ୍ଜଳ କରିବା ପାଇଁ କିଛିତ୍ ବିସ୍ତୃତ ପାଦଟୀକା ଯୋଗ କରିଛନ୍ତି । ଗୋଟିଏ ଦୃଷ୍ଟାନ୍ତରୁ ଏ ଉକ୍ତିର ଯଥାର୍ଥତା ଉପଲବ୍‌ଧ ହେବ । ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଉଦ୍ଧୃତ ନବମ ଶ୍ଳୋକଟି ହେଉଛି—

ଯଥା ଦୁଷ୍ଟ ତ୍ୱଂ ମେ ଦବୟତି ଶଠସ୍ୟାପି କୃପୟା ।
ଯଥା ମହ୍ୟଂ ପ୍ରେମାମୃତମପି ଦଦାତ୍ୟୁଜ୍ଜ୍ୱଳମସୌ ।।
ଯଥା ଶ୍ରୀ ଗାନ୍ଧର୍ବା-ଭଜନ-ବିଧୟେ ପ୍ରେରୟତି ମାଂ ।
ତଥା ଗୋଷ୍ଠେ କାକ୍ୱା ଗିରିଧରମିହ ତ୍ୱଂ ଭଜ ମନଃ ।।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୫୮)

ଆହାଣ୍ଡି ରାଗରେ ଏହାର ଅନୁବାଦ ନିମ୍ନୋକ୍ତ ପ୍ରକାରେ କରିଯାଇଛି—

ରେ ମନ ! ତୁ ଏମନ୍ତ ଦୈନ୍ୟ ଭରେ ।
ଗିରିଧାରୀଙ୍କି ଭଜ ସେହି ଗୋଷ୍ଠରେ ।୧।
ସେ ଯେପରି ଏହି ଶଠ ଦୁଷ୍ଟପଣ ।
ଦୂର କରିଦେବେ ହୋଇ ସୁପ୍ରସନ୍ନ ।୨।

ଦୟା ବଲ୍ଧ ମୋରେ ପ୍ରେମାମୃତ ଦାନେ ।
ସ୍ୱାମିନୀ ଶ୍ରୀରାସେଶ୍ୱରୀଙ୍କ ଭଜନେ ।୩।
ଅଷ୍ଟ ଯାମ ଯାକେ କରିବେ ନିଯୁତ ।
ତଦୀୟ ସେବାରେ ଥିବି ମୁଁ ସନ୍ତତ ।୪।
ଏ ବିନୁ ନାହିଁ ମୋ ଅନ୍ୟ ଅଭିଳାଷ ।
ଭାଷଇ ଗୋପାଳକୃଷ୍ଣ ରଖ ପାଶ ।୫। (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୫୫)

ଉକ୍ତ ଉଦ୍ଧୃତିରେ ଅନୁବାଦର ଗଦ୍ୟଧର୍ମିତା, ନୀରସତା ଓ ପ୍ରବାହ ଶୂନ୍ୟତା ଅନାୟାସରେ ଉପଲବ୍‌ଧ ହେବ ।

କାମ କ୍ରୋଧାଦି ସଂସାରର ଷଡ଼ରିପୁ, ଅସତ୍ ପ୍ରବୃତ୍ତି ଇତ୍ୟାଦି ମାୟାର ବନ୍ଧନରେ ମନୁଷ୍ୟର ପ୍ରାଣ ବ୍ୟସ୍ତ, ବିକଳ । ଭଗବଦ୍ ଭକ୍ତ ମାନଙ୍କର ସଙ୍ଗ ଲଭି କଲେ ସେମାନଙ୍କ କୃପାରେ ତା'ର ସଂସାର-ଭୟ ଦୂର ହୋଇଯିବ । ସଂସାରର ବିଷୟ ପ୍ରତି ପ୍ରବଳ ଆସକ୍ତିରୁ ରକ୍ଷା ମିଳିବ ଯଦି ମନୁଷ୍ୟ (ଜୀବ) ଶ୍ରୀକୁଣ୍ଡବାସୀ ବୈଷ୍ଣବ ସାଧକ ମାନଙ୍କର ଉପଦେଶ ଶିରୋଧାର୍ଯ୍ୟ କରି ରାଧାକୃଷ୍ଣଙ୍କ ଉଦ୍ଦେଶ୍ୟରେ ପ୍ରେମଭକ୍ତିର ଅନୁଷ୍ଠାନ କରେ । ସାଧୁମାନଙ୍କର ସେବା ଫଳରେ ସଂସାରର ପ୍ରତିଷ୍ଠା ଓ ଅଭିମାନରୁ ଜୀବ ମୁକ୍ତି ଲଭି କରି ହୃଦୟରେ ପ୍ରେମରତ୍ନକୁ ପ୍ରକାଶ କରି ପାରିବ । ସେଥିପାଇଁ କବି ଭକ୍ତିର ସାଧନ-ପଥର ନିର୍ଦ୍ଦେଶ ଦେଇ କହିଛନ୍ତି—ରାଧା ଓ କୃଷ୍ଣଙ୍କ ଚିନ୍ତା କରି କିଶୋରୀଙ୍କର ଅନ୍ତରଙ୍ଗା ସଖୀ ଲଳିତାଙ୍କର ଭଜନ କଲେ ଏବଂ ଶ୍ରୀକୁଣ୍ଡ ଓ ଗୋବର୍ଦ୍ଧନଙ୍କୁ ରତିପ୍ରଦ ରୂପେ ସ୍ମରଣ କଲେ ଜୀବର ହୃଦୟରେ ପ୍ରେମ ଭକ୍ତିର ଉଦୟ ହେବ । ଏହି ହେଉଛି ରଘୁନାଥ ଗୋସ୍ୱାମୀଙ୍କର ଶ୍ଳୋକ ଏକାଦଶୀର ମନଃଶିକ୍ଷା ଶୀର୍ଷକ ଓଡ଼ିଆ ଅନୁବାଦର ସ୍ଥୂଳମର୍ମ ।

### (ଖ) ସଂସ୍କୃତ ପ୍ରଭାବିତ ରଚନା

**(୧) ଶ୍ରୀରାଧାଙ୍କ ତ୍ରିଜପୁରୁଷ ଭ୍ରମ**—ଏହି ଶିରୋନାମାର ଗୀତଟି ରୂପ ଗୋସ୍ୱାମୀଙ୍କର ବିଦଗ୍‌ଧ ମାଧବ ନାଟକର ୨ୟ ଅଙ୍କର ଏକ ମନୋଜ୍ଞ ଶ୍ଳୋକ ଛାୟାରେ ରଚିତ । ରାଧିକାଙ୍କ ହୃଦୟରେ ଶ୍ରୀକୃଷ୍ଣଙ୍କ ପ୍ରତି ପୂର୍ବରାଗର ସଞ୍ଚାର ହୋଇଛି । କିନ୍ତୁ ଏହି ପୂର୍ବରାଗର ବୈଶିଷ୍ଟ୍ୟ ହେଉଛି; ଶ୍ରୀକୃଷ୍ଣଙ୍କର ନାମ ଶୁଣି ତାଙ୍କ ପ୍ରତି ରାଧାଙ୍କର ମନ ଆକୃଷ୍ଟ ହୋଇଛି; ପୁଣି ବୃନ୍ଦାବନର କାନନରୁ ମୁରଳୀ ଧ୍ୱନି ଶ୍ରବଣ କରି ମୁରଳୀ ବାଦକଙ୍କ ପ୍ରତି ତାଙ୍କର ଚିତ୍ତ ପ୍ରଧାବିତ ହୋଇଛି; ଏଣେ ବିଶାଖା ଅଙ୍କିତ ଚିତ୍ରପଟରେ ସୁନ୍ଦର ଯୁବାମୂର୍ତ୍ତି ଦର୍ଶନ କରି ସେ ମୁଗ୍‌ଧ ହୋଇଛନ୍ତି । ବସ୍ତୁତଃ ବିଷୟ : ନାମ, ବଂଶୀଧ୍ୱନି ଓ ଚିତ୍ରପଟର ରୂପ ଯେ ଜଣେ କିଶୋରର, ତାହା ସେ ବୁଝି ପାରି ନାହାନ୍ତି । ସେ ସେହି ତିନି ଜଣଙ୍କୁ ସ୍ୱତନ୍ତ୍ର ପୁରୁଷ ବୋଲି କଳ୍ପନା କରି ଏକ ସମୟରେ ତିନିଜଣ ପୁରୁଷ ପ୍ରତି ଅନୁରାଗ ଜାତ ହେବାର ଚିନ୍ତାରେ ସେ ନିଜକୁ ଧିକ୍‌କାର କରିଛନ୍ତି । କିଶୋରୀ ସୁଲଭ ଲଜ୍ଜା ଓ ବେଦନାରେ ତାଙ୍କର ହୃଦୟ ମଥିତ ହୋଇ ପଡ଼ିଛି । ରୂପ ଗୋସ୍ୱାମୀ ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ଏକସ୍ୟ ଶ୍ରୁତମେବ ଲୁମ୍ପତି ମତିଂ କୃଷ୍ଣେତି ନାମାକ୍ଷରମ୍ ।
ସାନ୍ଦ୍ରୋନ୍ମାଦପରମ୍ପରାମୁପନୟତ୍ୟନ୍ୟସ୍ୟ ବଂଶୀକଳଃ ॥
ଏଷ ସ୍ନିଗ୍ଧଘନଦ୍ୟୁତିର୍ମନସି ମେ ଲଗ୍ନଃ ପଟେ ବୀକ୍ଷଣାତ୍ ।
କଷ୍ଟଂ ଧିକ୍ ପୁରୁଷତ୍ରୟେ ରତିରଭୂନ୍ମନ୍ୟେ ମୃତିଃ ଶ୍ରେୟସୀ (୨୯)

ଏହି ଶ୍ଳୋକର ଭାବ ଓ ଚିତ୍ରାବଲମ୍ବନରେ ସୃଷ୍ଟିଆସ୍ଥ ଗୀତରେ ଗୋପାଳକୃଷ୍ଣଙ୍କ ରଚନାଟି ଅତି ପ୍ରାଣସ୍ପର୍ଶୀ ହୋଇଛି । କବି ସ୍ୱତନ୍ତ୍ରସ୍ୱତା ଓ ସ୍ୱକୀୟ କଳ୍ପନାରେ ମନୋଜ୍ଞ ଚିତ୍ରକଳ୍ପ ଏବଂ ରୂପକ, ବ୍ୟତିରେକ ପ୍ରଭୃତି ଅଳଙ୍କାର ପ୍ରୟୋଗ କରି ମୂଳ ସଂସ୍କୃତ ଶ୍ଳୋକର ଭାବର ସୌଷ୍ଠବ ଦ୍ୱିଗୁଣିତ କରିଛନ୍ତି । ରାଗ ନିର୍ବାଚନ କବିଙ୍କର ଭାବ ଓ ରସର ଚମତ୍କାର ଅନୁକୂଳ ହୋଇଛି । କବିଙ୍କ ଭାଷାରେ—

ରେ ପ୍ରିୟ ଆଳି ! ତିନି ପୁଂସେ ଯା ମାନସ ହେଲା ଝାଳି ।
କୁଳବତୀ କୁଳେ ହେଲି ମୁଁ ବଣ୍ଟାଳୀ । (ଘୋଷା)
ପହିଲେ ଶୁଣିଲି ନାମ କାର, ବେନି ବର୍ଣ୍ଣ କୃଷ୍ଣ ବୋଲିବାର,
ଅତ୍ୟନ୍ତ ମଧୁରମୟ ମନୋହର ଲଳିତାକଥିତାମୃତ ଧାର ।୧।
ଦ୍ୱିତୀୟେ ସେ କାହ୍ନା ବଂଶୀସ୍ୱନ, ଶ୍ରୁତିରେ ପ୍ରସରି ଘନଘନ,
ହେଲା ଅବସାଦ, ଚିତ୍ତେ ଉନମାଦ, ତା ବିନୁ ମୋତେ ନ ରୁଚେ ଆନ ।୨।
ପୁଣି ଚିତ୍ରପଟେ ନବମୂର୍ତ୍ତି, ସ୍ନିଗ୍ଧ ନବଘନ ତନୁ ଦ୍ୟୁତି;
ଶ୍ରୀ ସୌନ୍ଦର୍ଯ୍ୟ ପଣେ, କୋଟିଏ ମଦନେ, ନଥିବେ କାହିଁ ଯା ନଖକାନ୍ତି ।୩।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୩୫୧)

ରାଧା ନିଜେ କୁଳବଧୂ । କୁଳବତୀ ସୁଲଭ ଲଜ୍ଜା ହେତୁ ସେ ଏ ଅବସ୍ଥାରେ ମୃତ୍ୟୁକୁ ଶ୍ରେୟସ୍କର ମନେ କରୁଛନ୍ତି । ଏ ଅବସ୍ଥାରେ ପିଣ୍ଡରେ ଯା ତାଙ୍କର ପ୍ରାଣ ରହିଛି, ସେଥିପାଇଁ ନିଜର ନିର୍ଲଜ୍ଜ ଜୀବନକୁ ଧିକ୍କାର କରୁଛନ୍ତି । ପ୍ରାଣ ନ ଛାଡ଼ିଲେ ଗତି ନାହିଁ, ଛାଡ଼ିବାକୁ ଇଚ୍ଛା କଲେ ମଧ୍ୟ ପ୍ରାଣ ଚାଲି ଯାଉନାହିଁ । ରାଧାଙ୍କ ମନର ଏହି 'ନ ଯଯୌ ନ ତସ୍ଥୌ' ଅବସ୍ଥାର ଚିତ୍ରଟି କିପରି ବାସ୍ତବ ଓ ଜୀବନ୍ତ ହୋଇଛି, ଲକ୍ଷ୍ୟ କରିବାର କଥା । କବି ମଙ୍ଗଳ ଭାବାବେଶରେ ନିଜର ସ୍ୱାମିନୀ ରାଧାଙ୍କୁ ସାନ୍ତ୍ୱନା ଦେବାର ଯାହା ଉଲ୍ଲେଖ କରିଛନ୍ତି : 'କୃଷ୍ଣ, ବୈଣବିକ, ଶ୍ୟାମଚିତ୍ର ଏକ, କେବେହି ନୁହନ୍ତି ତିନି ଜଣ,' ବିଦଗ୍ଧ ମାଧବରେ ଲଳିତା ଓ ବିଶାଖାଙ୍କର ଉକ୍ତିର ଗ୍ରସ୍ତାମାତ୍ର (୩୦) ।

(୨) ବିଳାପ କୁସୁମାଞ୍ଜଳି ଓ ଅନ୍ୟାନ୍ୟ ବିଳାପ ଗୀତ —ଏହି ଶିରୋନାମାରେ ରୂପ ଗୋସ୍ୱାମୀଙ୍କର ଶିଷ୍ୟ ରଘୁନାଥ ଗୋସ୍ୱାମୀଙ୍କର ସଂସ୍କୃତରେ ୧୦୪ ଶ୍ଳୋକ ବିଶିଷ୍ଟ ଏକ ରଚନା ରହିଛି । ଏହି କ୍ଷୁଦ୍ର ରଚନାଟି ରାଗମାର୍ଗୀୟ ଭକ୍ତମାନଙ୍କର

(୨୯) ରୂ. ଗୋ., ବି. ମା. ନାଟକ, ୨।୧୯, ପୃ.୬୯-୭୦
(୩୦) ରୂପ ଗୋସ୍ୱାମୀ, ବିଦଗ୍ଧ ମାଧବ, ୨ୟ ଅଙ୍କ, ପୃ. ୭୦

ଅନୁଶୀଳନୀୟ । ଏଥିରେ ବିପ୍ରଲମ୍ଭ ପ୍ରେମର ସୁନ୍ଦର ଅଭିବ୍ୟକ୍ତି ରହିଛି । ରାଗାନୁଗ ମାର୍ଗରେ ଭଜନ କରୁ କରୁ ସାଧକ ଭଜନରେ ନିଷ୍ଠା, ରୁଚି ଓ ଆସକ୍ତି ଲାଭ ପରେ ଭାବ ଭକ୍ତିର ଅଧିକାରୀ ହୁଏ । ଏହି ଭାବ ଭକ୍ତି ନିବିଡ଼ତର ହୋଇ ପ୍ରେମରେ ପରିଣତ ହୁଏ । ସେତେବେଳେ ରାଧାକୃଷ୍ଣଙ୍କ ପ୍ରତି ସାଧକ ଚିତ୍ତରେ ଅତ୍ୟଧିକ ମମତା ପ୍ରକାଶ ପାଏ, ଫଳରେ ସେମାନଙ୍କର ମୁହୂର୍ତ୍ତେମାତ୍ର ବିଚ୍ଛେଦ ସାଧକ ଭକ୍ତ ପକ୍ଷରେ ଯୁଗ ପ୍ରାୟ ପ୍ରତୀତ ହୁଏ ଏବଂ ସମଗ୍ର ଜଗତ୍ ଅନ୍ତଃସାରଶୂନ୍ୟ ବୋଧ ହୁଏ । ଏହି ଅନୁଭୂତି ବିପ୍ରଲମ୍ଭ ପ୍ରେମର ଲକ୍ଷଣ ଅଟେ ଏବଂ ବିପ୍ରଲମ୍ଭହିଁ ଭକ୍ତ ପକ୍ଷରେ ସ୍ୱାଭାବିକ ଭଜନ । ବିଳାପ କୁସୁମାଞ୍ଜଳିରେ କବିଙ୍କର ବିରହ ବ୍ୟଥିତ ପ୍ରାଣର ମର୍ମନ୍ତୁଦ ଆଲେଖ୍ୟ ରହିଛି ଏବଂ ବିରହ ଅବସ୍ଥାରେ ଉପାସ୍ୟ ଓ ଉପାସ୍ୟାଙ୍କର ବିବିଧ ସେବା ଅଭିଳାଷ ପରିସ୍ଫୁଟ ହୋଇଛି । ରୂପ ଗୋସ୍ୱାମୀଙ୍କର ଅନୁଗାମୀ ଶିଷ୍ୟ ଭକ୍ତମାନେ ରାଧାଙ୍କର ବିରହ ବିଶେଷ ଭାବେ ଉପଲବ୍ଧି କରନ୍ତି ଏବଂ ରାଧାଙ୍କ ବ୍ୟତୀତ ସେମାନେ ବ୍ରଜବାସ ଏପରିକି ଶ୍ରୀକୃଷ୍ଣ ଚାହାନ୍ତି ନାହିଁ; ପୁଣି ସେମାନେ ରାଧାଙ୍କର ସଖିତ୍ୱ ଅପେକ୍ଷା ଦାସିତ୍ୱ (ଦାସ୍ୟ) କାମନା କରିଥାନ୍ତି (୩୧) । ବିଳାପ କୁସୁମାଞ୍ଜଳିର ବହୁ ଶ୍ଳୋକରୁ ଏହି ଦାସ୍ୟଭାବର ଦୃଷ୍ଟାନ୍ତ ଦିଆ ଯାଇପାରେ ।

ଏହି ବିପ୍ରଲମ୍ଭ ପ୍ରେମ ଓ ଉପାସ୍ୟାଙ୍କ (ରାଧା) ପ୍ରତି ଦାସ୍ୟଭାବ ଓଡ଼ିଶାର ଅନ୍ୟ ରାଗମାର୍ଗୀ ଭକ୍ତ କବିଙ୍କ ପରି (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଅଭିମନ୍ୟୁ, ବନମାଳୀ, ଦାଶରଥି) ଗୋପାଳକୃଷ୍ଣଙ୍କ ରଚନାର ବିଭିନ୍ନ କ୍ଷେତ୍ରରେ ପରିଦୃଷ୍ଟ ହୁଏ । ରଘୁନାଥ ଦାସ ଗୋସ୍ୱାମୀଙ୍କର ବିଳାପ କୁସୁମାଞ୍ଜଳି ଅନୁକରଣରେ କବି ସେହି ନାମରେ ଚନ୍ଦ୍ରା ଭୈରବ ରାଗରେ ଊନବିଂଶ ପଦ ବିଶିଷ୍ଟ ଗୋଟିଏ ଗୀତ ରଚନା କରିଛନ୍ତି । ତା' ଛଡ଼ା 'ବିଳାପ' ଶିରୋନାମାରେ କୁସୁମ କେଦାର ରାଗରେ (ପୋଇ ବାଣୀ) ୮୬ ପଦ ବିଶିଷ୍ଟ ଏବଂ ଲଳିତ କେଦାର ରାଗରେ ୪୬ ପଦ ବିଶିଷ୍ଟ ଦୁଇଟି ଗୀତପ୍ରଧାନ ଛାନ୍ଦଧର୍ମୀ ରଚନା ପରିଲକ୍ଷିତ ହୁଏ । ପୁଣି ଚନ୍ଦ୍ରାକେଦାର ରାଗରେ ('ବୁଧେ ଶୁଣିମା ହେଉ' ବାଣୀ) 'ବିଳାପ ଚଉତିଶା' ଶିରୋନାମାରେ କବି ଗୋଟିଏ ଚଉତିଶା ରଚନା କରିଛନ୍ତି । ବିଭିନ୍ନ ଶିରୋନାମାରେ ଏହି ବିଳାପ ଗୀତ ଗୁଡ଼ିକ ରଚିତ ହୋଇଥିଲେ ମଧ୍ୟ ଭାବ, କଳ୍ପନା ଓ ପ୍ରେରଣା ଦୃଷ୍ଟିରୁ ସେ ଗୁଡ଼ିକ ଏକ ଜାତୀୟ । ସେ ଗୁଡ଼ିକ ଗୋସ୍ୱାମୀଙ୍କର ବିଳାପ କୁସୁମାଞ୍ଜଳିର ଅନୁବାଦ ନହେଲେ ମଧ୍ୟ ରଚନାରେ ଯେ ମୂଳ ସଂସ୍କୃତ ରଚନାର ପ୍ରେରଣା ରହିଛି, ଏଥିରେ ସନ୍ଦେହ ନାହିଁ; ଏପରିକି ମୂଳ ରଚନାର ବସ୍ତୁକଳ୍ପନା ଓ କେତେକ ଶ୍ଳୋକର ଭାବ ସହିତ ଗୋପାଳକୃଷ୍ଣଙ୍କ ରଚନାର ସାମଞ୍ଜସ୍ୟ ଲକ୍ଷିତ ହୁଏ ।

## ବୈଷ୍ଣବ ସାହିତ୍ୟରେ ବିରହ-ମର୍ମ :

ଭଗବତ୍ କୃପାରେ ଜୀବ ଏ ସଂସାରରେ ଆବିର୍ଭୂତ ହୁଏ ଏବଂ ତାଙ୍କର ମାୟା ଶକ୍ତିର ପ୍ରଭାବରେ ତାଙ୍କର ଓ ତାଙ୍କ ସ୍ୱରୂପ ଶକ୍ତିର କୃପାଠାରୁ ଦୂରେଇ ଯାଏ । ଜୀବ ପକ୍ଷରେ

(୩୧) ଶ୍ରୀଳ ରଘୁନାଥ ଦାସ ଗୋସ୍ୱାମୀ, ବି. କୁ.; ୧ମ ସଂ ସମ୍ପା : ଶ୍ରୀମଦ୍ ଭକ୍ତିବିଳାସତୀର୍ଥ ମହାରାଜ, 'ସଂପାଦକେର ନିବେଦନ'ପୃ. ୨

ଭଗବତ୍ଙ୍କ କୃପା ଲାଭର ଏକମାତ୍ର ଉପାୟ ଭକ୍ତି ବା ପ୍ରେମ । ବୈଷ୍ଣବ ସାଧକ ଭଗବାନ୍ଙ୍କର ସ୍ୱରୂପ ଶକ୍ତି ରାଧାଙ୍କର କୃପାଦୃଷ୍ଟି ପାଇଁ ତାଙ୍କଠାରେ ନିଜକୁ ଦାସୀ ଭାବରେ ସମର୍ପଣ କରିଥାଏ ଏବଂ ଭକ୍ତି ବା ପ୍ରେମର ସାଧନ ପଥରେ ଏହି କୃପା ଲାଭ ନିମିତ୍ତ ତା'ର ପ୍ରାଣର ବ୍ୟାକୁଳତା, ତା'ର ଅନ୍ତରର ଆକୁତି ବୈଷ୍ଣବ କବିମାନଙ୍କର ଏହି ବିରହ ବା ବିପ୍ରଲମ୍ଭର (୩୨) ବର୍ଣ୍ଣନାରେ ପରିସ୍ଫୁଟ ହୋଇଥାଏ ।

ବୈଷ୍ଣବ ସାହିତ୍ୟର ଚରମ କଥା ହେଉଛି ଏହି ବିରହ (ବିପ୍ରଲମ୍ଭ), ବୈଷ୍ଣବର ଜୀବନ ହେଉଛି ବିରହର ସାହିତ୍ୟ । ପାର୍ଥିବ ଜଗତରେ ବିରହର ପାତ୍ର, ବିରହୀ ଓ ବିରହ—ଏହି ତିନି ବସ୍ତୁ ମଧ୍ୟରେ ଅତ୍ୟନ୍ତ ଭେଦ ଥାଏ । କିନ୍ତୁ ଅପ୍ରାକୃତ ରାଜ୍ୟର ବିରହ ତାହା ନୁହେଁ, ସେଠାରେ ବିରହ ହେଉଛି ସେବାର ପ୍ରଗାଢ଼ତା, ସେବାର ପରାକାଷ୍ଠା—ପୂର୍ଣ୍ଣତମ ସେବାର ସାନ୍ଦ୍ରମୂର୍ତ୍ତି ଏବଂ ସମ୍ଭୋଗର ପୁଷ୍ଟିକାରକ । ଆକର୍ଷଣର ଯେତେ କିଛି ବୃତ୍ତି ଅଛି ତା'ର ପୂର୍ଣ୍ଣତମ ଅଭିବ୍ୟକ୍ତି ଓ ସମଷ୍ଟିକୁ ବିରହ କୋଡ଼ୀଭୂତ କରିଛି । ବୈଷ୍ଣବ ସାହିତ୍ୟର ଅପ୍ରାକୃତ ବିରହର ଏକମାତ୍ର ନାୟକ, ଏକମାତ୍ର ଆକର୍ଷକ ଶିରୋମଣି ହେଉଛନ୍ତି ଶ୍ରୀକୃଷ୍ଣ (୩୩) । କୃଷ୍ଣ ଶବ୍ଦର ତାତ୍ପର୍ଯ୍ୟ ବ୍ୟାଖ୍ୟା କରିବାକୁ ଯାଇ ଜୀବ ଗୋସ୍ୱାମୀ ତାଙ୍କର 'ଗୋପାଲ ଚମ୍ପୂ'ରେ କହିଛନ୍ତି—

କୃଷିର୍ଭୂର୍ବାଚକଃ ଶବ୍ଦୋ ଣଶ୍ଚ ନିର୍ବୃତିବାଚକଃ ।
ତୟୋରୈକ୍ୟଂ ପରଂବ୍ରହ୍ମ କୃଷ୍ଣ ଇତ୍ୟଭିଧୀୟତେ ॥

ଅର୍ଥାତ୍ 'କୃଷ୍ଣ' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି; 'କୃଷି' ବା କୃଷ୍ ଧାତୁ 'ଭୂ' ବାଚକ; 'ଣ' ପ୍ରତ୍ୟୟ ଆନନ୍ଦ ବାଚକ । ଏହି ଉଭୟର ଐକ୍ୟହିଁ ପରଂବ୍ରହ୍ମ, ଏଥିପାଇଁ ସେ 'କୃଷ୍ଣ' ଏହି ଶବ୍ଦରେ କଥିତ ହୁଅନ୍ତି । ଏ ପ୍ରକାର ପ୍ରମାଣ ଦ୍ୱାରା ପୂର୍ବରୁ କୃଷ୍ଣ ଶବ୍ଦ ଜଣା ଯାଇଛି; କିନ୍ତୁ ଏଠାରେ 'କୃଷ୍ଣ' ଶବ୍ଦ ଯୋଗରୂଢ଼ ବୋଲି ବା ନନ୍ଦନନ୍ଦନ ବାଚକ ବୋଲି ପ୍ରସିଦ୍ଧ । ଏଠାରେ 'ଭୂ' ପଦଟି 'ଭୂ' ଧାତୁର ଉତ୍ତର ଭାବ ବାଚ୍ୟରେ 'କ୍ୱିପ୍' ପ୍ରତ୍ୟୟ ଯୋଗେ ନିଷ୍ପନ୍ନ । ତେଣୁ 'ଭୂ' ଶବ୍ଦ 'ଭାବ' ଶବ୍ଦ ପରି କେବଳ ଧାତୁର ଅର୍ଥ ପ୍ରକାଶ କରିଥାଏ । ଧାତୁର ଅର୍ଥ ଏଠାରେ କେବଳ 'ଆକର୍ଷଣ' । ଏହି ଆକର୍ଷଣ ଶବ୍ଦ ପ୍ରକାଶ୍ୟ ଭାବରେ ଆପ୍ତ ବ୍ୟକ୍ତିମାନଙ୍କର ଚିତ୍ତ ଆକୃଷ୍ଟ କରିଥାଏ । ଯେ ପରଂବ୍ରହ୍ମ, ଅର୍ଥାତ ସର୍ବାପେକ୍ଷା ବୃହତ୍, ସେହି କେବଳ ନିଖିଳ ବସ୍ତୁକୁ ଆକର୍ଷଣ କରନ୍ତି । ସେ ପୂର୍ଣ୍ଣ ସଚେତନ । ଯେଉଁଠି ଚେତନା ଯବନିକାମୁକ୍ତ, ସେଠାରେ ତାଙ୍କର ଆକର୍ଷଣ ସମ୍ଭବ । ଚେତନ ପ୍ରତି ଚେତନର ଆକର୍ଷଣ ହିଁ 'ପ୍ରେମ', ଜଡ଼ ପ୍ରତି ଜଡ଼ର ଆକର୍ଷଣ ହେଉଛି 'କାମ' (୩୪) ।

ଚେତନ ମଧ୍ୟରେ ଯେଉଁମାନେ ସର୍ବାକର୍ଷକ-କୃଷ୍ଣଙ୍କ ପ୍ରତି (ପୂର୍ଣ୍ଣଚେତନ ପ୍ରତି) ଆକୃଷ୍ଟ ଅଛନ୍ତି, ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ପୂର୍ଣ୍ଣତମ ରୂପେ ଅଧିକ ଆକର୍ଷଣର ଅଗ୍ରଣୀ

(୩୨) ବୃ. ଗୋ., ଉ.ନୀ., ଅନୁ. ରମନାରାୟଣ ବିଦ୍ୟାରତ୍ନ, ୪ର୍ଥ ସଂ.ପୃ. ୮୩୫-୮୩୭
(୩୩) କୃ. ଦା. କ. ଚୈ. ଚ. ମୃ., ୪ର୍ଥ ମୁଦ୍ରଣ, ମଧ୍ୟଲୀଳା, ୮ମ ପରିଚ୍ଛେଦ
(୩୪) ଶ୍ରୀମଦ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ, ବୈଷ୍ଣବ ସାହିତ୍ୟେ ବିରହତତ୍ତ୍ୱ ୨ୟ ସଂ

ହୋଉଛନ୍ତି ଶ୍ରୀମତୀ ରାଧା । ରାଧା କୃଷ୍ଣ-ବିରହର ରୂପ ଧାରଣ କରି କୃଷ୍ଣସେବା ନିମିତ୍ତ, ତାଙ୍କର ଆନନ୍ଦ ବୃଦ୍ଧି ନିମିତ୍ତ, କୃଷ୍ଣ କାମାନଳର ସର୍ବଶ୍ରେଷ୍ଠ ଇନ୍ଧନ ରୂପେ ଆତ୍ମ ପ୍ରକାଶ ନିମିତ୍ତ ଅନନ୍ତ କୋଟି ବ୍ୟୂହ ବିସ୍ତାର କରି ସର୍ବଦା ବର୍ତ୍ତମାନ, ଯଥା—

ପ୍ରେମେର ସ୍ୱରୂପ ଦେହ ପ୍ରେମେ ବିଭାବିତ ।
କୃଷ୍ଣେର ପ୍ରେୟସୀ ଶ୍ରେଷ୍ଠା ଜଗତେ ବିଦିତ ।।

× × ×

ମହାଭାବ-ଚିନ୍ତାମଣି ରାଧାର ସ୍ୱରୂପ ।
ଲଳିତାଦି ସଖୀ ଯାଁ'ର କାୟ ବ୍ୟୂହ ରୂପ ।। (ଚୈତନ୍ୟ ଚରିତାମୃତ, ପୃ ୧୭୦)

ଶ୍ରୀକୃଷ୍ଣ ସମ୍ଭୋଗ ରସର ମୂର୍ତ୍ତିମନ୍ତ ବିଗ୍ରହ । ବ୍ରଜବଧୂଗଣ ସେହି ସମ୍ଭୋଗ ରସର ଆଶ୍ରୟ ସ୍ୱରୂପ; କିନ୍ତୁ ସେହି ସମ୍ଭୋଗ ରସକୁ ପରିପୁଷ୍ଟ କରିବାପାଇଁ ଯୋଗମାୟା ବିରହର ସମ୍ଭାବନା ସୃଷ୍ଟି କରନ୍ତି । ଶ୍ରୀକୃଷ୍ଣ ନିଖିଳ ଚେତନର ପରମେଶ୍ୱର ଓ ଏକମାତ୍ର ପତି । ସେ ଗୋପୀମାନଙ୍କର ନିତ୍ୟବଲ୍ଲଭ, ସେମାନଙ୍କ ସହ ତାଙ୍କର ସମ୍ଭୋଗ ଅବିଚ୍ଛିନ୍ନ; ତଥାପି ସମ୍ଭୋଗ ମଧ୍ୟରେ ଯୋଗମାୟା ଦେଇଁ ବିରହର ଅବକାଶ ଘଟାନ୍ତି (ଅଭିମନ୍ୟୁ, ଗୋବର୍ଦ୍ଧନ ମଲ୍ଲ, ଓ ଭୈରବ ପ୍ରଭୃତି ଗୋପଗଣଙ୍କୁ ଗୋପୀଙ୍କର ପତି ରୂପେ କଳ୍ପନା କରି) ସେଥିରେ କୃଷ୍ଣ ସମ୍ଭୋଗରେ ବ୍ୟବଧାନର ସମ୍ଭାବନା ପାତ ହୁଏ ନାହିଁ, ବରଂ ସମ୍ଭୋଗ ଆହୁରି ଶ୍ରୀସଂପନ୍ନ ଓ ସମୃଦ୍ଧ ହୋଇ ପ୍ରକାଶିତ ହୁଏ । (୩୫)

ଗୋପୀମାନଙ୍କର ଏହି ସ୍ୱତଃସିଦ୍ଧ ବିରହର ସମସ୍ତ ବିଚିତ୍ରତା କୃଷ୍ଣସେବାକୁ ସମୃଦ୍ଧ କରିବା ପାଇଁ ପୂର୍ଣ୍ଣତମ ରୂପେ ରାଧାଙ୍କଠାରେ ଅଛି, ଏଥିପାଇଁ ରାଧାଙ୍କର ସର୍ବାଙ୍ଗ କୃଷ୍ଣ ବିରହର ପ୍ରତିମୂର୍ତ୍ତି । ରାଧା ଓ କୃଷ୍ଣ ପରସ୍ପରର ବିରହ ମୃତ୍ୟୁଜନକ ହେଲେ ମଧ୍ୟ ପରସ୍ପରର ସୁଖ ପାଇଁ ସେମାନେ ଜୀବନ ଧାରଣ କରିଥାଆନ୍ତି । ଜୀବନରେ ଏପରିକି ମରଣରେ ମଧ୍ୟ ରାଧାଙ୍କର କୃଷ୍ଣ-ସେବାଭିଳାଷର ଚିତ୍ର ଗୋସ୍ୱାମୀ ସାହିତ୍ୟରେ ପ୍ରକଟିତ ହୋଇଛି (୩୬) । ବୈଷ୍ଣବ ଗୋସ୍ୱାମୀ ଓ ଭକ୍ତମାନଙ୍କ ଦୃଷ୍ଟିରେ ସମ୍ଭୋଗମୂର୍ତ୍ତି ଶ୍ରୀକୃଷ୍ଣ ଓ ବିରହମୂର୍ତ୍ତି ଶ୍ରୀମତୀ ରାଧାଙ୍କର ଭାବ ଓ କାନ୍ତି ନେଇ ଗୌର ରୂପେ (ଶ୍ରୀଚୈତନ୍ୟ) ଅବତୀର୍ଣ୍ଣ ହୋଇଥିଲେ । ସେଥିପାଇଁ ଚୈତନ୍ୟଙ୍କ ଚରିତ ବୈଷ୍ଣବ ସାହିତ୍ୟରେ ବିରହ-ତତ୍ତ୍ୱର ବେଦ ଏବଂ ଚୈତନ୍ୟଙ୍କର ଭକ୍ତମାନଙ୍କର ଜୀବନକୁ ସେହି ବିରହତତ୍ତ୍ୱର ଅକୃତ୍ରିମ ଭାଷ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ (୩୭) ।

---

(୩୫) ତତ୍ରୈବ

(୩୬) ଶ୍ରୀମଦ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ, ବୈଷ୍ଣବ ସାହିତ୍ୟେ ବିରହତତ୍ତ୍ୱ, ୨ୟ ସଂ., ଗୌଡ଼ୀୟମଠ, କଲିକତା, ପୃ. ୪୦ରୁ ଉଦ୍ଧୃତ ।

(୩୭) ତତ୍ରୈବ, ପୃ. ୧୨

ବିରହ ବା ବିପ୍ରଲମ୍ଭ ରସମୟୀ ମଧୁରଭକ୍ତିର ବୀଜ ଏ ଜଗତରେ ପୁଣି ଶ୍ରୀ ମାଧବେନ୍ଦ୍ର ପୁରୀ ଆବିଷ୍କାର କରିଥିଲେ । ସେଥିପାଇଁ ବୈଷ୍ଣବ ମହାଜନଗଣ ମାଧବେନ୍ଦ୍ରଙ୍କୁ ବିପ୍ରଲମ୍ଭମୟ ଶୃଙ୍ଗାର (ଉଜ୍ଜ୍ୱଳ) ରସ ତରୁର ମୂଳ, ଈଶ୍ୱର ପୁରୀଙ୍କୁ ତା'ର ପ୍ରରୋହ, ଚୈତନ୍ୟଙ୍କୁ ତା'ର ମୂଳସ୍କନ୍ଧ ଏବଂ ଚୈତନ୍ୟଙ୍କର ଅନୁଗତ ଭକ୍ତମାନଙ୍କୁ ତା'ର ଶାଖା ପ୍ରଶାଖା ବୋଲି ବର୍ଣ୍ଣନା କରିଅଛନ୍ତି । ମାଧବେନ୍ଦ୍ର ନିମ୍ନୋକ୍ତ ଶ୍ଲୋକଟିରେ ଅପ୍ରାକୃତ ବିରହର ବୀଜ ନିହିତ କରିଯାଇଛନ୍ତି—

ଅୟି ଦୀନଦୟାର୍ଦ୍ର ନାଥ ହେ ମଥୁରାନାଥ ! କଦାବଲୋକ୍ୟସେ ।
ହୃଦୟଂ ତ୍ୱଦଲୋକକାତରଂ ଦୟିତ ଭ୍ରାମ୍ୟତି କିଂ କରୋମ୍ୟହମ୍ ॥

ଅର୍ଥାତ୍ ବିରହବିଧୁରା ରାଧା କୃଷ୍ଣଙ୍କୁ ସମ୍ବୋଧନ କରି କହୁଛନ୍ତି,—"ହେ ଦୀନ ଦୟାର୍ଦ୍ର, ତୁମେ ପରା ଦୀନମାନଙ୍କ ପ୍ରତି ଅତି ଦୟାପ୍ରବଣ । ହେ ମଥୁରାନାଥ ! ତୁମର ଦର୍ଶନ କେବେ ପାଇବି ? ତୁମର ଅଦର୍ଶନରେ ମୋର ହୃଦୟ ଅତୀବ କାତର ହୋଇପଡ଼ିଛି । ତୁମରି ପ୍ରେମିକା ଏଠି ସେଠି ଘୂରି ବୁଲୁଛି, ମୁଁ କ'ଣ କରିବି ?" ଏହି ବିପ୍ରଲମ୍ଭ ଗର୍ଭିତ ଶ୍ଲୋକଟିର ମର୍ମ ଏକମାତ୍ର ଶ୍ରୀରାଧା, ମାଧବେନ୍ଦ୍ର ପୁରୀ ଏବଂ ସପାର୍ଷଦ ଗୌରଚନ୍ଦ୍ର ଆସ୍ୱାଦନ କରିଥିଲେ ବୋଲି କୃଷ୍ଣଦାସ କବିରାଜ କହିଯାଇଛନ୍ତି । ଏହି ଶ୍ଲୋକରେ 'ଦୀନ' କହିଲେ ପ୍ରାପଞ୍ଚିକ ଅର୍ଥରେ ଦୈନ୍ୟ ବା ଅର୍ଥହୀନତାକୁ ବୁଝାଏନା । ଏହା ଅପ୍ରାକୃତ ବିରହମୂଳକ ଦୈନ୍ୟ । ଏହି ଦୈନ୍ୟ ହେଉଛି ପ୍ରେମଧନଶୂନ୍ୟତା । କୃଷ୍ଣସେବାସୁଖତାତ୍ପର୍ଯ୍ୟପରତା ହିଁ ପ୍ରକୃତ ପ୍ରେମଧନ; ତଦ୍ ବିରହିତ ଜୀବନ ହେଉଛି ଦାରିଦ୍ର୍ୟମୟ ଓ ବ୍ୟର୍ଥ (୩୮) ।

ବୈଷ୍ଣବ ସାହିତ୍ୟରେ ବିରହ ବା ବିପ୍ରଲମ୍ଭର ଆଲେଖ୍ୟରେ ଯେଉଁ ପୂର୍ବରାଗ, ମାନ, ପ୍ରେମବୈଚିତ୍ତ୍ୟ ଓ ପ୍ରବାସର ଚିତ୍ର ଅଙ୍କିତ ହୋଇଛି, ସେଥିରେ ଗୋପୀମାନଙ୍କର ଅହୈତୁକୀ ସେବାତତ୍ପରତା ହେଉଛି ସର୍ବସ୍ୱ । କୃଷ୍ଣ କିମ୍ବା ତାଙ୍କର ସ୍ୱରୂପଶକ୍ତିଭୂତା ରାଧାଙ୍କ ସେବା-ବ୍ୟାଜରେ ଆତ୍ମସୁଖ ଉପଲବ୍ଧିର ତୃଷ୍ଣା ସେମାନଙ୍କର ତିଳେମାତ୍ର ନାହିଁ (୩୯); ଯାହା କିଛି ସେହି ସ୍ୱାମୀ, ସ୍ୱାମିନୀ ରାଧାକୃଷ୍ଣଙ୍କର ସୁଖ ପାଇଁ । ରାଧାଙ୍କର ମାନ ଓ ଲଳିତା ବିଶାଖାଙ୍କର ଦୌତ୍ୟ କୃଷ୍ଣଙ୍କୁ ଅଧିକତର ସୁଖରେ ସମୃଦ୍ଧ କରିବାପାଇଁ ପରିକଳ୍ପିତ । ଗୋପୀମାନଙ୍କର ନିଜ ଦେହ ପ୍ରତି ପ୍ରୀତି, କୃଷ୍ଣଙ୍କୁ ଦର୍ଶନ କରିବାର ଲାଳସା, କୃଷ୍ଣଙ୍କ ପ୍ରତି ଅଭିମାନ ବ୍ୟଞ୍ଜକ କଟୂକ୍ତି ସବୁବେଳେ କୃଷ୍ଣଙ୍କର ତୃପ୍ତି ସମୃଦ୍ଧ କରିବା ନିମିତ୍ତ । ଗୋପୀ-ମାନଙ୍କର କୃଷ୍ଣଦର୍ଶନର ବ୍ୟଗ୍ରତାର କାରଣ ହେଉଛି : କୃଷ୍ଣ ସେମାନଙ୍କୁ ଦର୍ଶନ କରି ସୁଖୀ ହେବେ, ସେଥିରେ କୃଷ୍ଣଙ୍କର ସୁଖ ହେଉଛି ବୋଲି ସେମାନଙ୍କର ଆନନ୍ଦ । ସେଥିରେ ସେମାନଙ୍କର ଆତ୍ମ-ସମ୍ଭୋଗ-ଲାଳସା ନାହିଁ; ପରନ୍ତୁ ଅଧିକତର ବିରହ ବା କୃଷ୍ଣେନ୍ଦ୍ରିୟ ତର୍ପଣ କାମନାର ସ୍ଫୂର୍ତ୍ତି ଅର୍ଥାତ୍ କୃଷ୍ଣଙ୍କୁ ଅଧିକତର ସୁଖ ପ୍ରଦାନ କରିବା ନିମିତ୍ତ ଅଧିକତର କୃଷ୍ଣ-ସେବା ପାଇଁ ଉତ୍କଣ୍ଠା (୪୦) ପ୍ରକାଶ ପାଏ ।

(୩୮) ବୈଷ୍ଣବ ସାହିତ୍ୟେ ବିରହତତ୍ତ୍ୱ, ପୃ. ୧୬-୨୩, ୪୫-୪୭, ୫୩
(୩୯) ଚୈ. ଚ. ମୂ., ଆଦିଲୀଳା, ୪ର୍ଥ ପରିଚ୍ଛେଦ ପୃ. ୩୪-୩୫
(୪୦) ତତ୍ରୈବ ପୃ-୩୪

ରାଧାଙ୍କର ସଖୀମାନେ ଓ ବ୍ରଜର ଗୋପୀମାନେ ହେଉଛନ୍ତି ତାଙ୍କର କାୟବ୍ୟୂହ ସ୍ୱରୂପ । ସେମାନେ ପ୍ରେମଲୀଳା ଓ ବିହାରର ସମ୍ୟକ୍ ବିସ୍ତାର କାରିଣୀ, ଅତ୍ୟନ୍ତ ବିଶ୍ୱାସପାତ୍ରୀ (୪୧) । ଶ୍ରୀକୃଷ୍ଣଙ୍କୁ ଅନନ୍ତ କାନ୍ତାରସ-ବୈଚିତ୍ର୍ୟ ଆସ୍ୱାଦନ କରାଇବା ପାଇଁ ଶ୍ରୀରାଧା ଓ ଅଗଣିତ ବ୍ରଜଗୋପୀ ଆତ୍ମ ପ୍ରକାଶ କରି ଅନନ୍ତ କାଳରୁ ବିରାଜିତ । ରାଧା ଯଦି ପ୍ରେମକଳ୍ପଲତିକା ହୁଅନ୍ତି, ତା'ହେଲେ ଅନ୍ୟ ବ୍ରଜଗୋପୀଗଣ ତାଙ୍କର ଶାଖା, ପ୍ରଶାଖା, ପତ୍ର ଓ ପୁଷ୍ପ ତୁଲ୍ୟ । ଲତା ମୂଳରେ ଜଳସେଚନ କଲେ ଶାଖା ପ୍ରଶାଖାଦି ପ୍ରଫୁଲ୍ଲିତ ହେବା ପରି ରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କର ମିଳନ ଘଟାଇ ପାରିଲେ ସଖୀମାନଙ୍କର ଆନନ୍ଦ । ଶ୍ରୀକୃଷ୍ଣଙ୍କ ସହିତ ନିଜ ନିଜର ସଙ୍ଗମ ନିମିତ୍ତ ସଖୀମାନଙ୍କର ବାସନା ନାହିଁ । ରାଧାକୃଷ୍ଣଙ୍କର ସଙ୍ଗମ କରାଇ ପାରିଲେ ସେମାନେ ଯେଉଁ ଆନନ୍ଦ ପାଆନ୍ତି, ତାହା ସେମାନଙ୍କର ନିଜ ମିଳନଠାରୁ କୋଟିଗୁଣ ଅଧିକ ବୋଲି ସେମାନେ ମନେ କରନ୍ତି । ରାଧାଙ୍କର ମଧ୍ୟ ସ୍ୱ ସୁଖ ବାସନା ନାହିଁ, ଶ୍ରୀକୃଷ୍ଣଙ୍କର ସୁଖ ତାଙ୍କର ଏକମାତ୍ର ବାସନା । ସେବାଦ୍ୱାରା ଶ୍ରୀକୃଷ୍ଣଙ୍କର ପ୍ରୀତି ବିଧାନହିଁ ତାଙ୍କର ଏକମାତ୍ର କାମ୍ୟ । କୃଷ୍ଣଙ୍କ ସହିତ ସଂଗମ ତାଙ୍କର କାମ୍ୟ ନୁହେଁ; ତଥାପି ଶ୍ରୀକୃଷ୍ଣ ସଙ୍ଗମ ଅଭିଳାଷ କରନ୍ତି ବୋଲି ସେ ନିଜ ଦେହ ଦାନ କରନ୍ତି । ସେହିପରି ଶ୍ରୀକୃଷ୍ଣଙ୍କର ସ୍ୱ ସୁଖ ବାସନା ନାହିଁ; ତଥାପି ସେ ଯେଉଁ ସଙ୍ଗମ ଗ୍ରହଣ କରନ୍ତି, ତାହା ପ୍ରେୟସୀ-ମାନଙ୍କର ସୁଖ ପାଇଁ । ସଖୀମାନେ ଶ୍ରୀକୃଷ୍ଣଙ୍କୁ ସ୍ୱୀୟ ଅଙ୍ଗଦାନ କରିବାକୁ ଇଚ୍ଛା କରନ୍ତି ନାହିଁ, କିନ୍ତୁ ରାଧା କୌଣସି ଛଳରେ ନିଜର ସଖୀମାନଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ପଠାଇ ବା ଶ୍ରୀକୃଷ୍ଣଙ୍କୁ ସେମାନଙ୍କ ନିକଟକୁ ପଠାଇ ସଙ୍ଗମ କରାଇଥାନ୍ତି । ଏହିପରି ରାଧା ଶ୍ରୀକୃଷ୍ଣଙ୍କୁ ଅନନ୍ତ-କାନ୍ତାରସ-ବୈଚିତ୍ର୍ୟ ଆସ୍ୱାଦନ କରାଇ ଅପରିମିତ ଆନନ୍ଦ ଉପଲବ୍ଧି କରନ୍ତି । (୪୨)

ପୂର୍ବରୁ କଥିତ ହୋଇଛି ଯେ ବିରହ ବା ବିପ୍ରଲମ୍ଭ ରାଗାନୁଗମାର୍ଗୀ ଭକ୍ତ ପକ୍ଷରେ ସ୍ୱାଭାବିକ ଭଜନ । ରଘୁନାଥ ଦାସ ଗୋସ୍ୱାମୀ ରୂପ ଗୋସ୍ୱାମୀଙ୍କର ଅନୁଗାମୀ ଶିଷ୍ୟ ହୋଇ ଥିବାରୁ ଗୁରୁଙ୍କ ପରି ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତିଭୂତା ରାଧାଙ୍କର ବିରହ ବିଶେଷ ଭାବରେ ତାଙ୍କ ରଚନାରେ ପରିସ୍ଫୁଟ କରିଛନ୍ତି । ଗୁରୁ ଓ ଶିଷ୍ୟ ଉଭୟଙ୍କର ସଖୀଭାବାପନ୍ନତା ସ୍ୱ ସ୍ୱ ରଚନାର ବିଭିନ୍ନ କ୍ଷେତ୍ରରେ ପ୍ରକଟିତ ହୋଇଛି; କିନ୍ତୁ ଉଭୟଙ୍କର ସଖୀର ଅଭିମାନ କେଉଁଠି ପରିଲକ୍ଷିତ ହୁଏ ନାହିଁ । ରାଧାଙ୍କର ସଖୀମାନଙ୍କର ନିମ୍ନସ୍ଥାନୀୟ 'ମଞ୍ଜରୀ' (୪୩) ଦାସୀ ଭାବରେ ସ୍ୱାମୀ ଓ ସ୍ୱାମିନୀଙ୍କର ସେବାରେ ନିୟୋଜିତ କରିବାକୁ ନିଜର ଅଭିଳାଷ ସ୍ୱ ସ୍ୱ ରଚନାରେ ପ୍ରକାଶ କରିଛନ୍ତି । ସେଥିପାଇଁ ସିଦ୍ଧ ଦେହ ନିଜର ଗୁରୁ ନିଜକୁ ରୂପମଞ୍ଜରୀ (୪୪) ନାମରେ ଏବଂ ବିଳାପ କୁସୁମାଞ୍ଜଳିର କବି ନିଜକୁ ରତିମଞ୍ଜରୀ ନାମରେ ଅଭିହିତ କରି ରାଧାଙ୍କର ସଖୀମାନଙ୍କର ନିମ୍ନସ୍ଥାନରେ ଅବସ୍ଥାପିତ କରି ସ୍ୱାମିନୀଙ୍କର (ରାଧାଙ୍କର)

---

(୪୧) ଉ. ନୀ., ଉ. ନୀ., ୪ର୍ଥ ସଂ., ସଖୀ ପ୍ରକରଣମ୍, ପୃ. ୩୦୫

(୪୨) ଡ଼ଃ ରାଧା ଗୋବିନ୍ଦ ନାଥ, ଗୌଡ଼ୀୟ ବୈଷ୍ଣବ ଦର୍ଶନ, ୫ମ ଖଣ୍ଡ ପୃଷ୍ଠା ୭୪

(୪୩) ଡଃ ନାଥ, ଗୌ. ବୈ. ଦ., ୧ମଖଣ୍ଡ, ୧ମ ପର୍ବ ପୃ-୪୭୪

(୪୪) ବିଳାପ କୁସୁମାଞ୍ଜଳି ଶ୍ଳୋକ ୧

କୃଷ୍ଣସେବା ସମ୍ପର୍କରେ ଅଭିଳାଷ ପ୍ରକାଶ କରିଛନ୍ତି । ମଞ୍ଜରୀଗଣ ରାଧାଙ୍କର ଦାସୀ ହେଲେ ମଧ୍ୟ ସେମାନଙ୍କର ରାଧାକୃଷ୍ଣଙ୍କ ଅନ୍ତରଙ୍ଗ ସେବାର ଅଧିକାର ଥିବାରୁ (କୃଷ୍ଣସେବା, ଯଥା— ପଦ ସମ୍ବାହନ, ବିଳାପ କୁସୁମାଞ୍ଜଳି ଶ୍ଳୋକ ୮୨; ପଦସେବା, ଶ୍ଳୋକ ୧୦୪,୫୫; ପାଦ ପ୍ରକ୍ଷାଳନ ଓ ତୈଳ ମର୍ଦ୍ଦନ, ଶ୍ଳୋକ ୨୦; ବସ୍ତ୍ର ପରିଧାନ, ଶ୍ଳୋକ ୨୨; କସ୍ତୁରୀ ତିଳକ ଓ ପତ୍ରାବଳୀ ରଚନା, ଶ୍ଳୋକ ୨୪; ପ୍ରସାଧନ, ଲକ୍ଷା ରେଖା ଅଙ୍କନ, ରତିକ୍ଳାନ୍ତ ନାୟିକା ଗଳାରେ ମୁକ୍ତାମାଳା ପରିଧାପନ, ଶ୍ଳୋକ ୨୯; ତାମ୍ବୂଳ ବୀଟିକା ଅର୍ପଣ, ଶ୍ଳୋକ ୫୩; ସେବା ନିମିତ୍ତ ନିତ୍ୟ ସ୍ଥାନ ରାଧାକୁଣ୍ଡରେ ବାସର ଅଭିଳାଷ, ଶ୍ଳୋକ ୯୭ ଇତ୍ୟାଦି ।) ସେମାନେ ସାଧାରଣତଃ ସଖୀ ପର୍ଯ୍ୟାୟରେ ପରିଗଣିତ ହୋଇଥାନ୍ତି (୪୫) ।

ବିଳାପ କୁସୁମାଞ୍ଜଳିର କବି ରଘୁନାଥ ଦାସ ନିଜକୁ ପରମ୍ପରା କ୍ରମେ ମଞ୍ଜରୀ ଦାସୀ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିବାରେ ଗୌରବାନ୍ୱିତ ମନେ କରି ସ୍ୱାମିନୀ ରାଧାଂକର ସେବାର ସୌଭାଗ୍ୟ ଲଭ ନିମିତ୍ତ ତାଂକର ପରମ ପ୍ରେଷ୍ଠା ସଖୀ ଲଳିତା, ବିଶାଖା, ଓ ଧନିଷ୍ଠା ପ୍ରଭୃତିଂକର ସାନ୍ନିଧ୍ୟ ଓ ଅନୁକମ୍ପା ଲଭର ଅଭିଳାଷ ପୋଷଣ କରିଛନ୍ତି (୪୬) । ସଖୀ ବିଶାଖାଙ୍କୁ ସମ୍ବୋଧନ କରି କହୁଛନ୍ତି 'ହେ ସୁମୁଖୀ ବିଶାଖେ ! ତୁମେ ମୋର ସ୍ୱାମିନୀ ରାଧାଂକର ସମବୟସ୍କ ବୋଲି ତାଂକର ନର୍ମସଖୀ । ଏହି କାରଣରୁ ସେ କ୍ଷଣକାଳ ପାଇଁ ମଧ୍ୟ ତୁମର ସଙ୍ଗ ପରିତ୍ୟାଗ କରନ୍ତି ନାହିଁ । ଏହି ହେତୁ ତୁମ ନିକଟରେ ମୋର ପ୍ରାର୍ଥନା ଏହି ଯେ ତୁମେ ମୋର ସ୍ୱାମିନୀଙ୍କୁ (ରାଧାଙ୍କୁ) ଦର୍ଶନ କରାଇ ମୋର ବିରହକାତର ପ୍ରାଣକୁ ରକ୍ଷା କର (୪୭) ।

**ବିଳାପ ଗୀତ ଗୁଚ୍ଛକର ସମୀକ୍ଷା :**

ରୂପ ଗୋସ୍ୱାମୀ ପରମ୍ପରାର ଅନୁଗତ ଶିଷ୍ୟ ମଞ୍ଜରୀ ସୁଲଭ ଦାସ୍ୟଭାବପ୍ରବଣ ବିରହ ବା ବିପ୍ରଲମ୍ଭ କାତର (ରାଧାଂକର ବିବିଧ ସେବା ନିମିତ୍ତ) କବି ଗୋପାଳକୃଷ୍ଣଂକର ପ୍ରାଣରେ ବ୍ୟଥା, ଆର୍ତ୍ତି ଓ ବ୍ୟାକୁଳତା ବିଳାପ କୁସୁମାଞ୍ଜଳି, ବିଳାପ ଓ ବିଳାପ ଚଉତିଶାର ଛନ୍ଦେ ଛନ୍ଦେ ପରିସ୍ଫୁଟ । ବୈଷ୍ଣବ କାବ୍ୟ ଓ ପଦାବଳୀର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ଏହି ଯେ କାବ୍ୟକାର ଓ ପଦକର୍ତ୍ତାମାନେ ନିଜକୁ ଭଗବଲ୍ଲୀଳାର ଏକ ଚରିତ୍ରରେ ରୂପାନ୍ତରିତ କରିଥାନ୍ତି । କାବ୍ୟ ଓ ପଦର ବସ୍ତୁ, ରସ ଓ ଚରିତ୍ର ସହ କବିପ୍ରାଣର ଏକରୂପତା ତଥା ତନ୍ମୟତା ପ୍ରାପ୍ତ ସର୍ବତ୍ର ପ୍ରକଟିତ ହୋଇଥାଏ । ପରମ୍ପରା କ୍ରମେ ପୂର୍ବ ପଦକର୍ତ୍ତାଙ୍କ ପରି କବି ଗୋପାଳକୃଷ୍ଣ ବ୍ରଜ ଓ ବୃନ୍ଦାବନର ବିବିଧ ଲୀଳାତ୍ମକ ଚିତ୍ରରେ ନିଜକୁ ମହାଭାବମୟୀ ରାଧାଂକର ଜଣେ ଅନ୍ତରଙ୍ଗା ଦାସୀ ଭାବରେ ଉପସ୍ଥାପିତ କରିଛନ୍ତି । ବୈଷ୍ଣବୀୟ ପରମ୍ପରା ଅନୁସାରେ ନିଜର ଦୀକ୍ଷାଦାତା ଗୁରୁଙ୍କୁ (ଲୋକନାଥ ଦାସ) ସଖୀ (ଅପା) ରୂପେ ଉଲ୍ଲେଖ

---

(୪୫) ବି, କୁ. ଶ୍ଳୋକ ୯୩

(୪୬) ବି. କୁ. ର ଶ୍ଳୋକ ୪୬, ୪୯-୫୯, ୬୬, ୭୫, ୮୬, ୯୦, ୯୧ ଓ ୯୯ ଦ୍ରଷ୍ଟବ୍ୟ ।

(୪୭) ବି. କୁ. ଶ୍ଳୋକ ୯୯ ପୃ. ୭୨

କରିଛନ୍ତି (୪୮) । ନିଜର ଗୁରୁ, ବ୍ରଜର ସଖୀ ମଞ୍ଜରୀ ଓ ରାଧାଙ୍କର ପରମପ୍ରେଷ୍ଠା ସଖୀ ଲଲିତାଙ୍କର ଅନ୍ତର ସ୍ୱାମିନୀଙ୍କର କଙ୍କରୀ ପଦର ଅନୁରକ୍ତ ଲାଳସୀ କବିଙ୍କ ପାଇଁ କିପରି ବ୍ୟାକୁଳ, ତାହା କବିଙ୍କ ରଚନାରେ ପରିସ୍ଫୁଟ ହୋଇଛି (୪୯) । ରାଧାଙ୍କର ସେବିକା-ପଦ-ଲାଳସୀ କବି ସଂସାରର ମାୟାରେ ଅଙ୍କ ସେବା-ସୁଖରୁ ବଞ୍ଚିତ ହୋଇ ଥିବାରୁ ତାଙ୍କ ପ୍ରାଣର ଏ ବ୍ୟାକୁଳତା ଓ ଆର୍ତ୍ତି କବି ମଞ୍ଜରୀ ଭାବରେ (୫୦) ଅନୁପ୍ରାଣିତ ହୋଇ ଲେଖିଛନ୍ତି—ଯୂଥେଶ୍ୱରୀ ବଲ୍ଲବୀବାଦନୀ ସ୍ୱାମିନୀ ରାଧା କିପରି ତାଙ୍କର ସେବାପାଇଁ ବାହୁନି ହେଉଥିବେ । ସ୍ୱାମିନୀଂକର ପରିଚର୍ଯ୍ୟାରେ ନିଯୁକ୍ତ କରାଇବାର ସୌଭାଗ୍ୟ ଦାନ କରିଥିବା ଆଲେଖ୍ୟ ନିପୁଣା ସଖୀ ବିଶାଖା ଏବଂ ରୂପମଞ୍ଜରୀ, ରସମଞ୍ଜରୀ, ଅନଙ୍ଗମଞ୍ଜରୀ ଓ କସ୍ତୁରୀ ପ୍ରଭୃତି ମଞ୍ଜରୀ (ସଖୀ) ମାନଂକର ପ୍ରାଣ ବ୍ୟଥିତ ହେଉଥିବ । ଚମ୍ପା, ଚମ୍ପକଲତା, ଇନ୍ଦୁ-ରେଖା ଓ ସୁଦେବୀ ପ୍ରଭୃତି ରାଧାଂକର ପରମପ୍ରେଷ୍ଠ ସଖୀମାନେ (୫୧) ନିଜ ନିଜର ସେବାର ଦାୟିତ୍ୱ ତାଂକ ଉପରେ ସମର୍ପି ଦେଇ ତାଂକ ପ୍ରତି କେତେ ସ୍ନେହାଦର ପ୍ରକାଶ କରୁଥିଲେ । ନିତ୍ୟସିଦ୍ଧା ସଖୀ ଓ ମଞ୍ଜରୀ ମାନଂକ ଗହଣରେ ସେ ନିଜକୁ ସମସ୍ତଂକର ସାମାନ୍ୟ ଦାସୀ ମନେକରି ସମସ୍ତଂକ ପ୍ରତି ସମ୍ମାନ ପ୍ରଦର୍ଶନ କରି ସ୍ୱାମିନୀ ରାଧାଂକର ସେବା-ସମ୍ପଦକୁ ଯେପରି ଆଦରି ନେଇଥିଲେ, ସଂସାରର ମାୟାରେ ସେଥିରୁ ବଞ୍ଚିତ ହୋଇଥିବାରୁ କବି ମର୍ମେ ମର୍ମେ ବ୍ୟଥିତ ହୋଇପଡ଼ିଛନ୍ତି । କବିଂକର ଅଭିଳାଷ ସ୍ୱାମିନୀଙ୍କର ସଖୀମାନେ ସତେ କ'ଣ ତାଙ୍କୁ ସେହି ସେବାର ସୌଭାଗ୍ୟ ଦାନ କରିବେ ? ସେହିମାନଂକ ଆଜ୍ଞାରେ ଗୋପକନ୍ୟାଙ୍କ ପଦରେ ସିଦ୍ଧ ମଞ୍ଜରୀ ଦେହ ଭାବନାରେ କ'ଣ ତାଂକର ସେବା କରିବେ ? ଅଶ୍ରୁଳ ନୟନରେ ନିଜର ଦୁର୍ଦ୍ଦଶା ମୋଚନ ନିମିତ୍ତ ସେ ଦୋଷ କ୍ଷମା ମାଗିବାକୁ ଉନ୍ମୁଖ ହୋଇ ରହିଛନ୍ତି । ସଖୀମାନେ ସହାୟ ହୋଇ ସ୍ୱାମିନୀଂକର ସାଦ୍ଦ-କାଳିକ ସେବାପାଇଁ ଅରୁଣାନନ୍ଦ କୃଞ୍ଜରେ କ'ଣ ସ୍ଥାନ ଦେବେ ? ବୀରା, ବୃନ୍ଦା, ନାନ୍ଦୀମୁଖୀ ଓ ପୌର୍ଣ୍ଣମାସୀ ପ୍ରଭୃତି ମାନ୍ୟାଗଣ୍ୟା ଲୀଳା-ସହାୟିକାମାନେ କବିଙ୍କୁ ଆଶୀର୍ବାଦ କରି କ'ଣ ମଞ୍ଜରୀ-ଦାସୀର ସେବାରେ ନିୟୋଜିତ କରିବାର ସୌଭାଗ୍ୟ ଅର୍ପଣ କରିବେ ? ଅତି କରୁଣ ଭାବରେ କବି ପ୍ରାଣର ପୁଞ୍ଜୀଭୂତ ଆବେଗ, ବ୍ୟଥା ଓ ଉତ୍କଣ୍ଠା ଗୀତଟିର ପଦେ ପଦେ ପରିସ୍ଫୁଟ ହୋଇଛି । କବିଂକର ରାଗ ନିର୍ବାଚନ ଗୀତଟିର ଭାବ ଓ ରସର ଅନୁକୂଳ ହୋଇଛି ।

'ବିଳାପ' ଶୀର୍ଷକ ଦ୍ୱିତୀୟ ଓ ତୃତୀୟ ଗୀତ ଏବଂ 'ବିଳାପ ଚଉତିଶା'ରେ ପରମାନନ୍ଦ ରୂପିଣୀ ପ୍ରେମରତ୍ନମୟୀ ଦାସୀବତ୍ସଳା ରାଧାଂକର ଗୁଣ ସ୍ମରଣ କରି କ୍ଷମାଶୀଳା ସ୍ୱାମିନୀଂଙ୍କ ନିକଟରେ ତାଙ୍କର ଅପରାଧ ଯେ କ୍ଷମଣୀୟ ଏ ଅଭିଳାଷ ପୋଷଣ କରିଛନ୍ତି ଏବଂ ସ୍ୱାମିନୀଙ୍କର

(୪୮) ଗୋ. କୃ. ଗ୍ରଂ., ପୃ. ୬୯

(୪୯) ଗୋ. କୃ. ଗ୍ର., ବି. କୃ , ପୃ. ୬୯

(୫୦) ଶ୍ରୀ ବଳଦେବ ଉପାଧ୍ୟାୟ, ଭାଗବତ ସମ୍ପ୍ରଦାୟ, ୧୦ମ ଅଧ୍ୟାୟ, ପୃ. ୬୫୧-୬୫୨

(୫୧) ବୃ. ଗୋ. ଶ୍ରୀରାଧାକୃଷ୍ଣ ଗଣୋଦ୍ଦେଶ ଦୀପିକା, ପୃ. ୧୧୮

କୃପା କଟାକ୍ଷରୁ ତାଙ୍କର କିଙ୍କରୀଙ୍କର ପରିଚାରିକା ହେବାର ସୌଭାଗ୍ୟ ଲାଭ କରିବାକୁ ବ୍ୟାକୁଳ ନିବେଦନ କରିଛନ୍ତି (୫୨) । ଅନ୍ତାନ୍ତରେ ସ୍ୱାମିନୀଙ୍କର ବିବିଧ ସେବାର ଯେଉଁ ସୌଭାଗ୍ୟ ଲାଭ କରିଥିଲେ ବିଳାପ କୁସୁମାଞ୍ଜଳି ପରି କବି ତା'ର ବିଶଦ ବର୍ଣ୍ଣନା ଦେଇଛନ୍ତି, ଯଥା--ବର୍ଷାଣ ମନ୍ଦିରକୁ (ପିତୃପୁରକୁ) ଏ ଦାସୀକୁ (କବିଙ୍କୁ) ଏକା ପଠାଇ ପଥିକମାନଙ୍କୁ ନାନା ସମ୍ବାଦ ଜିଜ୍ଞାସା କରିବା; ଯେବାରେ (କବିଙ୍କର) ସନ୍ତୁଷ୍ଟ ହୋଇ ଦାସୀ ହେଲେ ମଧ୍ୟ କନିଷ୍ଠା ଭଗିନୀ ପ୍ରାୟ ତାଙ୍କ ଗଳାରେ ନିଜ କଣ୍ଠର ଉଲଗି ମାଳା ଆଗ ପିନ୍ଧାଇବା; ଶ୍ରୀମୁଖରୁ ଚର୍ବିତ ତାମ୍ବୂଳ ତାଙ୍କ ମୁଖରେ ଦାନ କରି ଉଚ୍ଛିଷ୍ଟ ସୁଧାର ସ୍ୱାଦ ଚଖାଇବା; କାବ୍ୟପାଠ ଓ ବୀଣାବାଦନ ଶିକ୍ଷା ଦେବା; ଘନ ତମିସ୍ରାରେ ଅଭିସାର କାଳରେ କବିଙ୍କ କରରେ କର ସଇଠ ଧେବା; ସ୍ୱାମିନୀଙ୍କର ରୋଷରେ ଅଶ୍ରୁସଜଳ ଦାସୀଙ୍କୁ (କବିଙ୍କୁ) ସଖୀ ଲଳିତା ସାନ୍ତ୍ୱନା ଦେବା; ଗୋଷ୍ଠଚନ୍ଦ୍ରମା ଓ ସ୍ୱାମିନୀ ରାଧାଙ୍କର କୁଞ୍ଜରେ ଆତ୍ମଗୋପନ କାଳରେ ବୃନ୍ଦାବନ ସାରା ବୁଲି ବୁଲି ଶୋକ ପ୍ରକାଶ କାଳରେ ସ୍ୱାମିନୀ ତାଙ୍କର ଅଞ୍ଚଳରେ ଅଶ୍ରୁ ପୋଛି ଦେବା ଇତ୍ୟାଦି ସେବା ଓ ସୌଭାଗ୍ୟରୁ ସେ ବଞ୍ଚିତ । ସେହି ବୃନ୍ଦାବନେଶ୍ୱରୀଙ୍କର ନାମ ଉଚ୍ଚାରଣ କରି କରି ଜୀବନ ଚାଲିଯାଉ: ଏହି ଅଭିଳାଷ କବି ମନରେ ପୋଷଣ କରିଛନ୍ତି (୫୩) ।

ବ୍ରଜ ଓ ବୃନ୍ଦାରଣ୍ୟରେ ସ୍ୱାମୀ ଓ ସ୍ୱାମିନୀଙ୍କର ଲୀଳାବୈଚିତ୍ର୍ୟ, ସେହି ନୟନସୁଭଗ ଲୀଳାଦର୍ଶନର ସୌଭାଗ୍ୟ ଲାଭ ଓ ସେବାର ଆଲେଖ୍ୟ କବି ଅଙ୍କନ କରିବା ସଙ୍ଗେ ସଙ୍ଗେ ସେହି ସୌଭାଗ୍ୟରୁ ବଞ୍ଚିତ ହୋଇଥିବାରୁ କବିଙ୍କର ପ୍ରାଣର ବ୍ୟଥା ପଦେ ପଦେ ମର୍ମରିତ ହୋଇଛି, ଯଥା—ବୃନ୍ଦାରଣ୍ୟରେ ଦୁଷ୍ଟତସ୍କର କାଳରେ ସଖୀ ଦୂରରେ ରହିଥିବା ସମୟରେ ସ୍ୱାମିନୀଙ୍କର ପ୍ରୀତି ଗାଥା ଗାନ କାଳରେ ସେ ପୁଲକିତ ହେବା, ଏବଂ ବିଶାଖାଙ୍କ ଇଙ୍ଗିତରେ ଲାଜରେ ବ୍ରଜବଧୂଙ୍କ କୋଳରେ ଆଉଜିବା, ପିତୃପୁରର ପୁଷ୍ପବାଟୀ ମଣ୍ଡପରେ ଦୋଳା ଚଢ଼ାଇବା ସମୟରେ ମିଳନଭାବବ୍ୟଞ୍ଜକ ଗୀତଗାନ କାଳରେ ପ୍ରତିବେଶୀମାନେ କର୍ଣ୍ଣ ଡେରି ରହିଥିବା ଏବଂ ରାଧାଂକର ଅନୁପମ ଗୁଣ ଓ ସୌନ୍ଦର୍ଯ୍ୟର ପ୍ରଶଂସା କରିବା, ପାଳିତ ଶୁକ ଶ୍ରୀକୃଷ୍ଣଂକର ପ୍ରିୟ ପତ୍ରିକା (ଲେଖ) ଆଣି ଦେଲେ (ରାଧା) ବକ୍ଷବାସରେ ଲୁକ୍କାୟିତ କରି ପକ୍ୱ ଦାଡ଼ିମ୍ବ ବୀଜ ଧରି ଶୁକକୁ ଖୁଆଇବା, ମନ୍ତ୍ରୀ ସ୍ୱଭାବରେ ହସ୍ତରେ ପିକଦାନୀ (ପତତଗ୍ରହ) ଧରି ସେବା ପାଇଁ ପ୍ରସ୍ତୁତ ହୋଇ ରହିବା, ଦୈବବଶତଃ ଚତୁରାକ୍ଷ ହେଲେ ଲାଜରେ ଗଣ୍ଡ ଦେଶରେ ପଣନ୍ତ ଦେଇ ଅବନୀରେ ପଦ ଘଷିବା, ହିହନ୍ତ ପ୍ରସ୍ତୁତ ଭୋଜ୍ୟ ତାଂକ (କବିଂକ) ହସ୍ତରେ ଦେଇ ନନ୍ଦଗୃହକୁ ଫେରିବା ଯାଏଁ ଦ୍ୱାର ପ୍ରାଙ୍ଗଣରେ ଠିଆ ହୋଇ ଚାହିଁ ରହିବା ଏବଂ ପ୍ରତ୍ୟାବର୍ତ୍ତନ ସମୟରେ ନିର୍ଜନ ସ୍ଥାନକୁ ଡାକି ନେଇ ପ୍ରାଣେଶଙ୍କର ଆଗମନ ସମୟ ସମ୍ପର୍କରେ ଜିଜ୍ଞାସା କରନ୍ତେ ତାଙ୍କ ହସ୍ତରେ ପ୍ରିୟତମଂକର ଲେଖ ପ୍ରଦାନ କରିବା, ସୂର୍ଯ୍ୟପୂଜା ପାଇଁ ଛଦ୍ମବଟୁ ଶ୍ରୀକୃଷ୍ଣଂକ କରରେ ବୃଦ୍ଧା ଜଟିଳା

(୫୨) ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ. ୭୯
(୫୩) ତତ୍ରୈବ ପୃ. ୭୫

(ରାଧାଙ୍କର ଶାଶୁ) ରାଧାଙ୍କର ହସ୍ତ ଦାନ କରିବା, ନିଭୃତ କୁଞ୍ଜରେ କୁସୁମ ଶଯ୍ୟାରେ ପ୍ରିୟତମଙ୍କ କୋଳରେ ସ୍ୱାମିନୀ ବଜେ ହେବା କାଳରେ କବିଙ୍କର ବୀଣାବାଦନ ଇତ୍ୟାଦି । କବି ମଞ୍ଜରୀ ଦାସୀ ସୁଲଭ ଆବେଗକୁ ପ୍ରକାଶ କରିଛନ୍ତି ଯେ ବ୍ରଜବଧୂଙ୍କ କୋଳରେ ବ୍ରଜେଶ୍ୱରୀଙ୍କୁ ଦର୍ଶନ କରିବାର ସୌଭାଗ୍ୟ କ'ଣ ତାଂକର ଆଉ ହେବ ? ଦାସୀବତ୍ସଳା ରାସେଶ୍ୱରୀଙ୍କ ସମ୍ବୋଧନରେ ପଡେ କ'ଣ ତାଙ୍କର ତନୁ ଉଲ୍ଲସି ଉଠିବ ? ସଖୀ ଲଳିତାଙ୍କର ଅନୁକମ୍ପା, ବିଶାଖା ଓ ରୂପମଞ୍ଜରୀଂକର ଆଶୀର୍ବାଦ ଫଳରେ ସ୍ୱାମୀ ଓ ସ୍ୱାମିନୀଂକର ସେବା-ରତ୍ନ ଲଭିର ଆଶା ସେ ପୋଷଣ କରିଛନ୍ତି (୫୪) ।

'ବିଳାପ ଚଉତିଶା'ରେ ସଂସ୍କୃତ ବିଳାପ କୁସୁମାଞ୍ଜଳି ଗ୍ରନ୍ଥାରେ ରାଧାଂକର ନିଭୃତ କୁଞ୍ଜଲୀଳା ଓ ସେବାର କେତୋଟି ଚିତ୍ର ଅଂକିତ ହୋଇଛି । ଏଥିରେ ରାଧାଂକର ନିଶାନ୍ତରେ କୁଞ୍ଜଶଯ୍ୟାତ୍ୟାଗ, ନିଶାନ୍ତ କୃତ୍ୟ ସମ୍ପାଦନ, ଅଭିଷେକ (ସ୍ନାନ), ଝୀନବାସ ବେହରଣ, କେଶ ପ୍ରସାଧନ, ବକ୍ଷରେ ମୃଗମଦ-ପତ୍ରାବଳୀ ଅଂକନ, ସିନ୍ଦୂର ଗ୍ରହଣ, ରତ୍ନାଳଂକାର ପରିଧାନ, ଲକ୍ଷାରେଖା ଅଙ୍କନ, ଲୀଳାକମଳ ଧାରଣ ଆଦି ନେପଥ୍ୟବିଧାନ, ସୂର୍ଯ୍ୟପୂଜା ପାଇଁ ରାଜପଥରେ ଯାତ୍ରାକାଳରେ ଗୋଷ୍ଠରେ ପ୍ରାଣନାଥଂକ ସହ ଭେଟ ଇତ୍ୟାଦି ଚିତ୍ରରେ କବିଂକର ମଞ୍ଜରୀ ସୁଲଭ ସେବାଚିତ୍ର ଅଂକିତ । ଯମୁନାତଟ ନିକୁଞ୍ଜରେ ନିଶାନ୍ତରେ ବିହଙ୍ଗ କାକଳି ଶ୍ରବଣ କରି ରାଧା ପ୍ରିୟତମଙ୍କ ପାର୍ଶ୍ୱରୁ ଉଠି ଆସିବା ସମୟରେ ମଞ୍ଜରୀ ଭାବରେ କବିଙ୍କର ଦ୍ୱାର ପାର୍ଶ୍ୱରେ ଅପେକ୍ଷା, ମୋହ ହାରର ଛିନ୍ନ ମୋତି ଗୁଡ଼ିକ ଗୋଟାଇ ନେଇ ନୂପୁର, କାଞ୍ଚୀ (ମେଖଳା) କଞ୍ଚୁଳିକା ଓ ଝରି ହସ୍ତରେ ଧରି ପୁର ପଥରେ ଅଗ୍ରସର ହେବା, ନିଶା ଶେଷରେ ଜଟିଳାର କର୍କଶ ଡାକରେ ରାଧା ଚଞ୍ଚଳ ଅବସ୍ଥାରେ ପୀଠରେ ଉପବେଶନ କରନ୍ତେ ଦାସୀର (କବିଙ୍କର) ପ୍ରାତଃକୃତ୍ୟର ଆୟୋଜନ, ଅଭିଷେକ ଓ ସୂକ୍ଷ୍ମ ବସ୍ତ୍ର ପରିହରଣ ପରେ ଲଳିତାଙ୍କ ଦ୍ୱାରା କଙ୍କତିକାରେ କେଶ ପ୍ରସାଧନ, ଧନ୍ୟା ଓ ବିଶାଖାଙ୍କ ଦ୍ୱାରା ବକ୍ଷରେ ମୃଗମଦ ଚିତ୍ର ଏବଂ ଚିବୁକରେ ମୃଗମଦ ବିନ୍ଦୁ ଅଙ୍କନ, ଆପାଦମସ୍ତକ ରତ୍ନାଳଂକାର ମଣ୍ଡନ ଏବଂ ପାଦ ପଦ୍ମରେ ଲକ୍ଷାରେଖା ଅଂକନ ପାଇଁ ଦାସୀଭାବ ଲୋଲୁପ କବିଙ୍କର ବ୍ୟାକୁଳତାର ଚିତ୍ର ଚଉତିଶାଟିରେ ମନୋଜ୍ଞ ହୋଇଛି (୫୫) ।

ବର୍ଣ୍ଣନାରେ ସ୍ଥାନେ ସ୍ଥାନେ ଭଞ୍ଜ ଓ ଅଭିମନ୍ୟୁଙ୍କର ପଦେଛଟାର ପ୍ରତିଧ୍ୱନି ଲକ୍ଷିତ ହେଉଥିଲେ ମଧ୍ୟ ବ୍ରଜି କାବ୍ୟପୁରୀସ୍ଥ କ୍ଳିଷ୍ଟ ପଦଯୋଜନାର ସଙ୍କେତ ମିଳୁଥିଲେ ମଧ୍ୟ (ଛ-ଦଶ କଳା ଚନ୍ଦ୍ର, ଲପନେ; ଅପ ପଦାନ୍ତେ ଆକାର ଯୁକ୍ତକରି ଇତ୍ୟାଦି) କବିଙ୍କର ଭାବର ସ୍ୱତଃସ୍ଫୂର୍ତ୍ତି ଓ ରସ ପ୍ରବାହ, ଭାବ ଓ ରସାନୁରୂପ ରାଗ ଓ ବାଣୀର ନିର୍ବାଚନ ଏବଂ ଯଥୋଚିତ ପଦ ବିନ୍ୟାସରେ ବିଳାପ ଗୀତିଗୁଡ଼ିକ ସଙ୍ଗୀତ ଧର୍ମରେ ଅପୂର୍ବ ହୋଇ ଉଠିଛନ୍ତି ! ସାହିତ୍ୟିକ ଶବ୍ଦ ସହିତ ଦେଶଜ ଶବ୍ଦର ସମନ୍ୱୟ କୁଶଳତା କବିଙ୍କର ପ୍ରତିଭାର ସ୍ୱାକ୍ଷର ବହନ କରିଛି, ଯଥା—

(୫୪) ଗୋପାଳକୃଷ୍ଣ ରଚନାବଳୀ, ପୃ ୮୩

(୫୫) ବିଳାପ ଚଉତିଶା, ଗୋ. କୃ. ର., ପୃ. ୮୭

ଅଭିସାର କାଳେ ଘନ-ତମସୀରେ
କରପଲ୍ଲବ ଦେଇଥିବ ମୋ କରରେ ।୨୯।

(ବିଳାପ (୨), ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୭୩)

କ୍ଷୀଣ ଉପୁରଣ ପାହୁଡ଼ଲ,
କ୍ଷପ ନୟନ ! ହେବ ପହୁଡ଼ାଇ
କ୍ଷଳ-ଅଳତା-ରଞ୍ଜିତ-ପଦ ଧରି,
ଧୀରେ ଦେବି ଅଙ୍ଗୁଳି ଫୁଟାଇ ହେ, ସ୍ୱାମିନି ! ।୯।

(ବିଳାପ ଚଉତିଶା (୪), ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୮୫)

ପୂର୍ବରୁ ସୂଚିତ ହୋଇଛି ଯେ କବିଙ୍କର ବିଳାପ କୁସୁମାଞ୍ଜଳି ଓ 'ବିଳାପ' ଶିରୋନାମାର ଅନ୍ୟ ଦୁଇଟି ଗୀତ ଏବଂ 'ବିଳାପ ଚଉତିଶା' ରଘୁନାଥ ଦାସଙ୍କର ସଂସ୍କୃତ ବିଳାପ କୁସୁମାଞ୍ଜଳିର ଅନୁବାଦ ନ ହେଲେ ମଧ୍ୟ ରଚନାରେ ମୂଳ ସଂସ୍କୃତ ରଚନାର ପ୍ରେରଣା ରହିଛି; ଏଣୁ ରକ ମୂଳ ରଚନାର ବସ୍ତୁକଳ୍ପନା, ବର୍ଣ୍ଣନା ଓ କେତେକ ଶ୍ଳୋକର ଭାବ ସହିତ ଗୋପାଳକୃଷ୍ଣଙ୍କ ବିଳାପ ରଚନାର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଗୋପାଳକୃଷ୍ଣଙ୍କ ବିଳାପ କୁସୁମାଞ୍ଜଳି (୧ମ)ର ୧୨ଶ ପଦ ସହ ସଂସ୍କୃତ ରଚନାର ୯ମ ଶ୍ଳୋକ, ୧୩ଶ ପଦ ସହ ୮୩ ଶ୍ଳୋକ; ବିଳାପ (୨)ର ୨୧ଶ ପଦ ସହ ୯୩ ଶ୍ଳୋକ, ୨୩ଶ ପଦ ସହ ୮୯ ଓ ୯୦ ଶ୍ଳୋକ, ୩୮ଶ ପଦ ସହ ୯୯ ଶ୍ଳୋକ, ବିଳାପ (୩)ର ୭ମ ଓ ୮ମ ପଦ ସହ ୪୭ ଶ୍ଳୋକ, ୧୭ଶ ପଦ ସହ ୨୯ ଓ ୯୨ ଶ୍ଳୋକ, ୨୦ଶ ପଦ ସହ ୮୩ ଶ୍ଳୋକ; ବିଳାପ ଚଉତିଶାର (୪) ୫ମ ପଦ ସହ ୯୩ ଶ୍ଳୋକ, ୧୫ଶ ପଦ ସହ ୮୭ ଶ୍ଳୋକ, ୧୯ଶ ପଦ ସହ ୨୪ଶ ଶ୍ଳୋକ, ୨୦ଶ ପଦ ସହ ୨୫ଶ ଶ୍ଳୋକ, ୨୩ଶ ପଦ ସହ ୨୮ଶ ଶ୍ଳୋକ, ୨୫ଶ ପଦ ସହ ୩୪ଶ ଶ୍ଳୋକ, ୨୭ଶ ପଦ ସହ ୪୩ ଶ୍ଳୋକ ତୁଳନୀୟ । ବାହୁଲ୍ୟ ଭୟରୁ କେବଳ ଦୁଇ ତିନୋଟି ସ୍ଥଳର ଦୃଷ୍ଟାନ୍ତ ଦିଆଯାଉଛି :—

(୧) ରାଧାଙ୍କର ପଦସେବାରୁ ବଞ୍ଚିତ ହୋଇଥିବା ମଞ୍ଜରୀ ଭାବରେ ଭାବିତ କବି ନିଜ ପ୍ରାଣର ବେଦନା ବ୍ୟାକୁଳ କଣ୍ଠରେ ପ୍ରକାଶ କରି କହୁଛନ୍ତି—

(କ) ହାହା କାରୁଣ୍ୟାମୃତ ସାଗର !
ହାହା ଗୁଣଗଣ-ରତ୍ନାକର !
ଦୁର୍ଦ୍ଦୈବେ ପଦାବ୍ଜ- ସେବାରୁ ବଞ୍ଚିତା-
ହୋଇ ଝୁରୁଛି କୁରଙ୍ଗୀ ପରି ଗୋ, ସ୍ୱାମିନି ! (୫୭)

(ଖ) ଶ୍ରୀବୃଷଭାନୁ କୁମାରୀଙ୍କର
ପଦ-ପଙ୍କଜରୁ ହୋଇ ଦୂର,

(୫୭) ବି. କୁ. (୧), ଗୋ. କୃ. ଗ୍ରଂ., ୨୩ଶ ପଦ, ପୃ-୬୮

କେ ସେ କଙ୍କରୀ          ରୂପ ଗୁଣ ସୁମରି
ବିଳାପ କରଇ ନିରନ୍ତର ଯେ, ରାସେଶ୍ୱରୀ ! (୫୭)

(ଗ) କୀର୍ତ୍ତିଦା-ସୁତାଙ୍କ          ରୂପ ଗୁଣ,
କେ ସେ ଦାସୀ ଗୁଣି ପୁନଃ ପୁନଃ,
କରଇ ବିଳାପ          ସ୍ୱେଶ୍ୱରୀଙ୍କ ସେବା-
ସୁଖ ନିକର କରି ସ୍ମରଣ ସେ, କଙ୍କରୀ । (୫୮)

ଏହି ପଦ ଗୁଡ଼ିକର ଉପରି ସଂସ୍କୃତ ବିଳାପ କୁସୁମାଞ୍ଜଳିର ନିମ୍ନୋକ୍ତ ଶ୍ଳୋକଗୁଡ଼ିକର ଭାବ ସହିତ ସାମଞ୍ଜସ୍ୟ ରହିଛି, ଲକ୍ଷ୍ୟ କରାଯାଉ—

(କ) ଅତ୍ୟୁତ୍କଟେନ ନିତରାଂ ବିରହାନଲେନ
ଦନ୍ଦହ୍ୟମାନହୃଦୟା କିଲ କାପି ଦାସୀ ।
ହା ସ୍ୱାମିନି କ୍ଷଣମିହ ପ୍ରଣୟେନ ଗାଢ଼-
ମାକ୍ରନ୍ଦନେନ ବିଧୁରା ବିଲପାମି ପଦ୍ୟୈଃ । (୫୯)

ଅର୍ଥାତ୍ ହେ ସ୍ୱାମିନୀ ରାଧିକେ ! ମୁଁ ତୁମର କୌଣସି ଜଣେ ଅଯୋଗ୍ୟା ଦାସୀ । ତୁମର ଅଦର୍ଶନ ଜନିତ ତୀବ୍ର ବିରହାନଳରେ ମୋର ହୃଦୟ ଅତ୍ୟନ୍ତ ଦଗ୍ଧ ହୋଇ ପଡ଼ୁଛି । ଉଚ୍ଚ କ୍ରନ୍ଦନ କରି ମୁଁ କାତର ହୋଇ ପଡ଼ୁଛି, ଏହି କାରଣରୁ ମୁଁ ପଦ୍ୟ ଦ୍ୱାରା ବିଳାପ କରୁଛି ।

(ଖ) ଦେବି ଦୁଃଖକୁଲ ସାଗରୋଦରେ
ଦୂୟମାନ ମତି ଦୁର୍ଗତଂ ଜନମ୍ ।
ତ୍ୱଂ କୃପା ପ୍ରବଲ ନୌକୟାଦ୍ଭୁତଂ
ପ୍ରାପୟ ସ୍ୱପଦ ପଙ୍କଜାଲୟମ୍ । (୬୦)

ହେ ରାଧିକେ ! ଦୁଃଖ-ସାଗର ଗର୍ଭରେ କ୍ଲିଷ୍ଟ ଓ ନିରାଶ୍ରୟ ମୋତେ ତୁମର କୃପା ରୂପକ ପ୍ରବଳ ନୌକାରେ ବସାଇ ତୁମର ଅଦ୍ଭୁତ ପାଦପଦ୍ମ ରୂପକ ଗୃହକୁ ନେଇଯାଅ ।

(ଗ) ଦେବି ତେ ଚରଣପଦ୍ମ ଦାସିକାଂ
ବିପ୍ରୟୋଗଭର ଦାବ ପାବକୈଃ ।
ଦହ୍ୟମାନ ତରକାୟ ବଲ୍ଲରୀଂ
ଜୀବୟ କ୍ଷଣ ନିରୀକ୍ଷଣାମୃତୈଃ । (୬୧)

---

(୫୭) ବିଳାପ (୩), ଗୋ. କୃ. ଚଂ., ୧ମ ପଦ, ପୃ-୭୮
(୫୮) ବିଳାପ ଚଉତିଶା (୪), ଗୋ. କୃ. ଚଂ., ୧ମପଦ, ପୃ-୮୪
(୫୯) ସଂସ୍କୃତ ବି. କୁ., ଶ୍ଳୋ. ୭, ପୃ-୬
(୬୦) ତତ୍ରୈବ, ଶ୍ଳୋ. ୮, ପୃ-୭
(୬୧) ତତ୍ରୈବ, ଶ୍ଳୋ. ୧୦, ପୃ-୮

ହେ ଦେବ ! ତୁମର ବିରହଜ୍ୱର ରୂପକ ଦାବାନଳରେ ତୁମର ଏହି ଚରଣ ସେବକାର ତନୁଲତା ଅତିଶୟ ଦଗ୍‌ଧ ହୋଇଛି, (ଏଥିପାଇଁ ପ୍ରାର୍ଥନା କରେଁ) ତୁମେ ତୁମର ସ୍ୱଳ୍ପକାଳ ବ୍ୟାପୀ ଦୃଷ୍ଟି ରୂପକ ଅମୃତ ଦ୍ୱାରା ମୋତେ ଜୀବିତ କର ।

(୨) ତୁମ୍ଭ ଆଲୋକନ-କାଳକୂଟ-ଅହି-
ଘାତ ହେ ସ୍ୱାମିନ ! ସହି ହେଉନାହିଁ । (୭୨)

ସଂସ୍କୃତ ବିଳାପ କୁସୁମାଞ୍ଜଳିର ନିମ୍ନୋକ୍ତ ଶ୍ଳୋକର ପ୍ରଥମ ପଙ୍‌କ୍ତି ସହ ଏହି ରୂପକ-କଳ୍ପନାଟିର ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଇପାରେ, ଯଥା—

ତ୍ୱଦଲୋକନ-କାଳାହି-ଦଂଶେରେବ ମୃତଂ ଜନମ୍ ।
ତ୍ୱତ୍ ପାଦାବ୍‌ଜମିଲଲ୍ଲାକ୍ଷାଭେଷଜୈର୍ଦ୍ଦେବି ଜୀବୟ । (୭୩)

ହେ ଦେବ ! ତୁମର ଅଦର୍ଶନ ରୂପକ କାଳସର୍ପର ଦଂଶନରେ ମୁଁ ମୃତପ୍ରାୟ ହୋଇଛି । ତୁମର ପାଦପଦ୍ମ ଲଗ୍ନ ଲକ୍ଷାରୂପକ ଔଷଧ ଦ୍ୱାରା ମୋତେ ଜୀବିତ କର ।

(୩) ଗାନ୍ଧର୍ବୀ ରାଧିକା ଦାସୀକୁ (କବିଙ୍କୁ) କାବ୍ୟ ପାଠ କରାଇବା, ଗୀତ ଓ ବୀଣା-ବାଦନ ଶିକ୍ଷା ଦେବା ସମ୍ପର୍କରେ କବି ବର୍ଣ୍ଣନା କରିଛନ୍ତି—

ଆହା କାବ୍ୟ ପଢ଼ାଇବା ସୁରୀତୁରୀ !
ବୀଣା-ବାଜଣା ଶିଖାଇବା ମାଧୁରୀ ।
× × ×
ବୈଜୟନ୍ତୀ ଗୁନ୍ଥିଲିର ବେଳେ ମୋତେ,
ଧୀରେ ଗୀତ ଶିଖାଇବାର ଯେ କେତେ । (୭୪)

ସଂସ୍କୃତ ବିଳାପ କୁସୁମାଞ୍ଜଳିରେ ଏହାର ଅନୁରୂପ ଭାବ ନିମ୍ନୋକ୍ତ ଶ୍ଳୋକରେ ଲକ୍ଷ୍ୟ କରାଯାଇପାରେ—

ଲକ୍ଷ୍ମ୍ୟାଲି ଯୂଥତଃ ଦରତୋ ମାଂ ଗହ୍ୱର ଗିରିପତେ ଦତମିତ୍ୱା
ଦିବ୍ୟଗାନମପିତତ୍ସ୍ୱର ଭେଦଂ ଶିକ୍ଷୟିଷ୍ୟସି କଦା ସଦୟେ ତ୍ୱମ୍ ?
× × ×
ନିଜ କୁଣ୍ଡତଟୀ କୁଞ୍ଜେ ଗୁଞ୍ଜଦ୍ ଭ୍ରମର ସଂକୁଳେ ।
ଦେବି ତ୍ୱଂ କଚ୍ଛପୀ ଶିକ୍ଷାଂ କଦା ମାଂ କାରୟିଷ୍ୟସି ? (୭୫)

ଗୋପାଳକୃଷ୍ଣଙ୍କ ବିଳାପ ଶୀର୍ଷକ ପଦ ସମୂହ ମୂଳ ସଂସ୍କୃତ ରଚନାର ଅନୁବାଦ ନହେଲେ ମଧ୍ୟ କବି ଯେ ମୂଳ ରଚନା ଯତ୍ନର ସହ ପାଠ କରିଛନ୍ତି ଏବଂ ସେଥିରେ

(୭୨) ବିଳାପ (୨), ଗୋ. କୃ. ଗ୍ରଂ., ୧୩ଶ ପଦ, ପୃ-୭୯
(୭୩) ସଂସ୍କୃତ ବି. କୁ., ଶ୍ଳୋ. ୯, ପୃ-୮
(୭୪) ବିଳାପ (୨), ଗୋ. କୃ. ଗ୍ରଂ., ୨୩-୨୪ଶ ପଦ, ପୃ-୭୨
(୭୫) ସଂସ୍କୃତ ବି. କୁ., ଶ୍ଳୋ. ୮୯ ଓ ୯୧, ପୃ. ୬୬-୬୭

ଅନୁପ୍ରାଣିତ ହୋଇ ସ୍ୱକୀୟ ଭଙ୍ଗୀରେ ଗୀତଗୁଡ଼ିକ ରଚନା କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଫଳରେ ବିକ୍ଷିପ୍ତ ହେଲେ ମଧ୍ୟ ଭାବ, କଳ୍ପନା, ଅଳଙ୍କାର ଓ ବର୍ଣ୍ଣନାଗତ ସାମଞ୍ଜସ୍ୟ ଉଭୟ ରଚନାରେ ଦେଖାଯିବା ସ୍ୱାଭାବିକ ।

**ସଂସ୍କୃତ ଓ ଅପଭ୍ରଂଶ ଛନ୍ଦରେ ରଚିତ ଗୀତ :**

ସଂସ୍କୃତ ରଚନା, ସଂସ୍କୃତର ଅନୁବାଦ ଓ ଛାୟା ଲିଖନକୁ ବାଦ ଦେଲେ କବିଙ୍କର କେତୋଟି ଗୀତ ରହିଛି, ଯେଉଁ ଗୁଡ଼ିକ ସଂସ୍କୃତ ଓ ଅପଭ୍ରଂଶ ଛନ୍ଦରେ ଲିଖିତ । କେତେକରେ ସଂସ୍କୃତ ଛନ୍ଦର ବ୍ୟବହାର ନଥିଲେ ମଧ୍ୟ ସଂସ୍କୃତ ଛନ୍ଦ ସୁଲଭ ଗାମ୍ଭୀର୍ଯ୍ୟ ଓ ଗତି ପ୍ରବାହ ଲକ୍ଷିତ ହୁଏ । ଉଭୟ ପ୍ରକାର ରଚନାରେ ତତ୍ସମ ଶବ୍ଦର ବହୁଳତା ପରିଦୃଷ୍ଟ ହୁଏ । ଗୋଟିଏ ଗୀତରେ ସଂସ୍କୃତ ଶବ୍ଦର ବହୁଳତା ଯୋଗୁଁ ତାହା ହଠାତ୍ ସଂସ୍କୃତ ରଚନା ବୋଲି ଭ୍ରାନ୍ତ ଜାତ ହୁଏ (୭୭) । ଗୋପାଳକୃଷ୍ଣ ଓଡ଼ିଆ ଭାଷାରେ ଗୀତ ରଚନା କରି କୁଟୀରବାସୀଠାରୁ ପ୍ରାସାଦବାସୀ ପର୍ଯ୍ୟନ୍ତ ଆଦୃତ ହେଲେ ମଧ୍ୟ ତାଙ୍କର ସାରସ୍ୱତ ସାଧନା ମୂଳତଃ ସଂସ୍କୃତ କାବ୍ୟ, ଶାସ୍ତ୍ର ଓ ଅଳଙ୍କାର ସିଞ୍ଚିତ । କିନ୍ତୁ କବି ଜଣେ ପ୍ରତିଭା-ଶାଳୀ ଉଚ୍ଚାଙ୍ଗ ଶିଳ୍ପୀ ହୋଇଥିବାରୁ ତାଙ୍କର ସୃଷ୍ଟି ପାଣ୍ଡିତ୍ୟ ସର୍ବସ୍ୱ କବିମାନଙ୍କ ପରି ଅଯଥା ପାଣ୍ଡିତ୍ୟରେ ଭାରାକ୍ରାନ୍ତ ନୁହେଁ ।

(କ) **ଶ୍ରୀ ରାଧାକାନ୍ତ ଅଷ୍ଟକ**—ସଂସ୍କୃତ ସାହିତ୍ୟରେ ଉପାସ୍ୟଙ୍କ ଉଦ୍ଦେଶ୍ୟରେ ଅଷ୍ଟକ ରଚନାର ଅନ୍ତ ନାହିଁ । ରୂପ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ରଘୁନାଥ ଦାସଗୋସ୍ୱାମୀ, କୃଷ୍ଣଦାସ କବିରାଜ ଓ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କର ଶ୍ରୀକୃଷ୍ଣ ଓ ରାଧାଙ୍କ ଉଦ୍ଦେଶ୍ୟରେ ବହୁ ଅଷ୍ଟକ ରଚନା ପରିଲକ୍ଷିତ ହୁଏ । ଅଷ୍ଟକରେ ସାଧାରଣତଃ ଉପାସ୍ୟଙ୍କର ଅଙ୍ଗ ସୁଷମା, ବେଶଭୂଷଣ, ଶରଣ ରକ୍ଷଣତ୍ୱ ଓ ଶକ୍ତିର ବର୍ଣ୍ଣନା କରାଯିବା ସଙ୍ଗେ ସଙ୍ଗେ ତାଙ୍କର ଦୟା ଓ ଦର୍ଶନ ପ୍ରାର୍ଥନା କରାଯାଏ । ଶବ୍ଦ ଓ ଛନ୍ଦୋଗତ ମାଧୁର୍ଯ୍ୟ, ତରଙ୍ଗିତ ପ୍ରବାହ ଓ ଶୃଙ୍ଗାରୀ କଳ୍ପନା (Erotic fancy) ଏ ଗୁଡ଼ିକର ବୈଶିଷ୍ଟ୍ୟ ।

ଗୋପାଳକୃଷ୍ଣ 'ନବଜଳଦ ନନ୍ଦିତ କାନ୍ତଧରଂ' ବୃତ୍ତରେ ଏକ ପ୍ରକାର ଦୋଳାୟିତ ଛନ୍ଦରେ ଅଷ୍ଟକଟିକୁ ରଚନା କରିଛନ୍ତି । ସଂସ୍କୃତ ଅଷ୍ଟକ ଛନ୍ଦ ଆଦର୍ଶରେ ଏହା ରଚିତ ହେଲେ ମଧ୍ୟ ମାତ୍ରା-ସମତା ସହ ପଦ ପ୍ରାନ୍ତରେ ଅକ୍ଷର ମେଳ (ପ୍ରାନ୍ତ ଯତି) ଓ ଆନୁପ୍ରାସିକ ମାଧୁର୍ଯ୍ୟ ପ୍ରତି ଧ୍ୟାନ ଦିଆ ଯାଇଛି ଏବଂ ପ୍ରତି ସ୍ତବକର ଶେଷ ପାଦର (ଚତୁର୍ଥ ପାଦର) ପୁନରାବୃତ୍ତି ଘଟିଛି । ଦୃଷ୍ଟାନ୍ତ ସ୍ୱରୂପ—

ନବ-ନୀଳୋତ୍ପଳ-ଜିତ ରୁଚିରୁ ବର୍ଣ୍ଣ ।
ଫୁଲ୍ଲ-ପ୍ରିୟକ କୁସୁମାଞ୍ଚିତ କର୍ଣ୍ଣ ।
ଗୁଞ୍ଜା ମୁକ୍ତାରତ୍ନ କୃତଶୋରସିହାର ।
ବନ୍ଦେ ରାଧାକାନ୍ତ ! କଳ-ବଂଶୀଧାର ।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୩୨୪)

---

(୭୭) ସେବା ପ୍ରାର୍ଥନା, ଗୋ. କୃ. ଗ୍ର., ପୃ-୧୦୦

ଅଷ୍ଟକଟିରେ ଗତାନୁଗତିକ ରୀତିରେ କବି ଶ୍ରୀକୃଷ୍ଣଙ୍କର ଅଙ୍ଗ ଶୋଭା ଓ ସୌରଭ, ଚନ୍ଦନ ଚର୍ଚ୍ଚା, ରାଧାବଲ୍ଲଭତ୍ୱ, ଗୋପୀ ଗୋପାଳରକ୍ଷକତ୍ୱ, ନୃତ୍ୟ ମାଧୁରୀ, ମୁରଲୀ ବାଦନ-କୁଶଳତା, ଦର୍ପଦଳନତ୍ୱ, ଭୂଷଣ ଓ ମାଲ୍ୟ ଧାରଣ ଏବଂ କୋଟି ମଦନ ମୋହନ ବସ୍ତ୍ରଧର ଶୃଙ୍ଗାରକତା ଓ ତ୍ରିଭଙ୍ଗ ଶୋଭାର ବର୍ଣ୍ଣନା କରିଛନ୍ତି । ଏଥିରେ ଭାବ ବା ଚିନ୍ତକଳ୍ପନାଗତ ନୂତନତ୍ୱ କିଛି ନାହିଁ । ଏହାର ରଚନାରେ କବି ସଂସ୍କୃତ ଅଷ୍ଟକର ପଦ ପରମ୍ପରାର ପ୍ରଭାବ ଏଡ଼ି ପାରି ନାହାନ୍ତି, ଯଥା—'ରସରାଜ ଶିରୋମଣି ବେଶଧାରୀ' ପାଦଟି ସଂସ୍କୃତ 'ଶ୍ରୀବ୍ରଜରାଜ ସୁତାଷ୍ଟକମ୍'ର (୬୭) 'ରସରାଜ ଶିରୋମଣି ବେଶଧରମ୍' ପଙ୍କ୍ତି ଅନୁସରଣରେ ରଚିତ । ଏହାର ଭାବ ଦୁର୍ବଳତା ସତ୍ତ୍ୱେ ଛନ୍ଦର ନର୍ତ୍ତନଶୀଳ ପ୍ରବାହ ଓ ଶବ୍ଦର ଝଙ୍କାର ହେତୁ ଏହା ପାଠକ ଓ ଶ୍ରୋତାଙ୍କ ପକ୍ଷେ ଶ୍ରୁତି ସୁଖକର ।

(୪) **ଶ୍ରୀ ଶ୍ରୀ ଗୋବିନ୍ଦମୋହିନୀ ସ୍ତବ**—ଶ୍ରୀରାଧାଙ୍କ ଉଦ୍ଦେଶ୍ୟରେ ଏହି ଦୀର୍ଘ ସ୍ତବଟି (ତ୍ରିପଞ୍ଚାଶତ୍ ପଦ ବିଶିଷ୍ଟ) ଗୌଡ଼ୀୟ ବୈଷ୍ଣବ ଗୋସ୍ୱାମୀଙ୍କ ରଚିତ କୌଣସି ସ୍ତବର ଅନୁବାଦ ନହେଲେ ମଧ୍ୟ ଏହାର ଯୋଜନା, ବର୍ଣ୍ଣନୀୟ ବସ୍ତୁ, ବର୍ଣ୍ଣନାଭଙ୍ଗୀ, ଭାବ ଓ ଚିନ୍ତା ସ୍ଥୂଳତଃ ଏହାର ପ୍ରେରଣା ଓ ପ୍ରବୃତ୍ତିର ମୂଳ ଉତ୍ସ ହେଉଛି ସଂସ୍କୃତରେ ରଚିତ ସେମାନଙ୍କର ସ୍ତବ, ସ୍ତୋତ୍ର, ଅଷ୍ଟକ ଓ ଦଶକ ପ୍ରଭୃତି । ତୁଳନାତ୍ମକ ବିଚାର ପାଇଁ ଶ୍ରୀ ରାଧିକାସ୍ତବରାଜଃ (ଗୌତମୀୟ ତନ୍ତ୍ର); ଶ୍ରୀ ରାଧିକାଷ୍ଟୋତ୍ତର ଶତନାମ ସ୍ତୋତ୍ରମ୍ (ରୂପ ଗୋସ୍ୱାମୀ ଓ ରଘୁନାଥ ଦାସ); ଶ୍ରୀରାଧିକା ନାମାବଳୀ ସ୍ତୋତ୍ରମ୍, ଶ୍ରୀ ବିଶାଖାନନ୍ଦଦାଭିଧ ସ୍ତୋତ୍ରମ୍ (ରଘୁନାଥ ଦାସ); ଶ୍ରୀ ରାଧା ସ୍ତୋତ୍ରମ୍ (ବ୍ରହ୍ମାଣ୍ଡ ପୁରାଣ); ବିଦଗ୍ଧ ମାଧବ ଓ ଉଜ୍ଜ୍ୱଳ ନୀଳମଣିର ପ୍ରସଙ୍ଗୋଚିତ ବସ୍ତୁ ଗ୍ରହଣ କରାଯାଇ ପାରେ । କବି ସଂସ୍କୃତ ସ୍ତବ ପରି ଏହି ସ୍ତବରେ ଗତାନୁଗତିକ ରୀତିରେ ପ୍ରେମମୟୀ, ରାସେଶ୍ୱରୀ ରାଧାଙ୍କର କୃଷ୍ଣୈକ ପ୍ରେମ, ଜଗନ୍ମଙ୍ଗଳ କାରଣତ୍ୱ, ନିତ୍ୟାନନ୍ଦମୟତ୍ୱ, ଅନନ୍ୟ ରୂପଲାବଣ୍ୟ, ବେଶଭୂଷଣ, ସଖୀ ଓ ମଞ୍ଜରୀ ପ୍ରୀଣତା, ନୃତ୍ୟ ଗୀତ ବୀଣାବାଦନ-ବିଦ୍ୟା-ଧୁରୀଣତା, ବୈଦଗ୍ଧ୍ୟ ଓ ଚାତୁର୍ଯ୍ୟ, ଆଭୀରନାରୀଗଣ ଶ୍ରେଷ୍ଠତ୍ୱ, ଅହ୍ଲାଦିନୀ ଶକ୍ତି, ନିତ୍ୟ ନୂତନତା, ରାସଲାସ୍ୟ କୁଶଳତା, କୁଳବଧୂ ସୁଲଭ ମର୍ଯ୍ୟାଦା, ଚତୁଃଷଷ୍ଟିକଳା ପ୍ରବୀଣତା, ମହାଭାବମୟତ୍ୱ, ଅଭିସାର କୁଶଳତା, ଅଷ୍ଟ ସାତ୍ତ୍ୱିକ ବିକାର, ଷୋଡ଼ଶ ଶୃଙ୍ଗାର ଶୋଭନତ୍ୱ, ବିଂଶତି ଅଳଙ୍କାର, ଦ୍ୱାଦଶ ଆଭରଣ ଓ ଦ୍ୱାତ୍ରିଂଶ ଲକ୍ଷଣ, ଦାସ ପ୍ରତି କାରୁଣ୍ୟ ଓ କୃପା କଟାକ୍ଷ, ଶୁଦ୍ଧ ସତ୍ତ୍ୱମୟତ୍ୱ, ଚିନ୍ମୟରସ ପ୍ରକାଶ ଓ ପ୍ରେମ ଭକ୍ତି ପ୍ରଦାନ ପ୍ରବୀଣତା ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ—

ଶ୍ରୀ ରାଧିକେ ! ରାସେଶ୍ୱରି ବିନୋଦିନି !
କୃଷ୍ଣକାନ୍ତା କୃଷ୍ଣପ୍ରେମ ଉନ୍ମାଦିନି !
କୃଷ୍ଣମୟି ! କୃଷ୍ଣାନନ୍ଦ-ବିବର୍ଦ୍ଧିନି !
ପ୍ରଣମାମି ରାଧେ ! ଗୋବିନ୍ଦ ମୋହିନି ! ।୧।

× × ×

(୬୭) ଶ୍ରୀ ସ୍ତ, କ. ଦ୍ରୁ. ପୃ-୩୧୮

କୁନ୍ଦକଳିକାଜିତ ମଞ୍ଜୁଳ-ଦଶନ ।
କନକ-ମୁକୁର-କାନ୍ତି ଗଣ୍ଡବେଦନ ।
ଶୁଭ ଜମ୍ବୁନଦ-ହେମ-କୁମ୍ଭସ୍ତନ ! ।୨।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୭୫)

ପ୍ରେମମୟୀ ରାଧାଙ୍କର ଶାରୀରିକ ମହିମାର ଯେଉଁ ବର୍ଣ୍ଣନା ଦିଆଯାଇଛି, ସେଥିରେ ନୂତନତ୍ୱ ନଥିଲେ ମଧ୍ୟ, ସାହିତ୍ୟିକ ସୃଷ୍ଟି ଦିଗରୁ ଉନ୍ନତ ଓ ରସୋତ୍ତୀର୍ଣ୍ଣ ନହେଲେ ମଧ୍ୟ ବୈଷ୍ଣବର ପ୍ରେମଭକ୍ତି ସୁଲଭ ଚେତନା ଦୃଷ୍ଟିରୁ ତାହା ଯେ ମୂଲ୍ୟବାନ୍, ଏଥିରେ ସନ୍ଦେହ ନାହିଁ । ବୈଷ୍ଣବ ଭାବାନୁପ୍ରାଣିତ ନହେଲେ ଏପରି ଅଗଣିତ ସ୍ତୋତ୍ର, ସ୍ତବ, ଅଷ୍ଟକ ଓ ଦଶକ ଇତ୍ୟାଦିର ରସାସ୍ୱାଦ ଓ ମହତ୍ତ୍ୱର ଉପଲବ୍ଧି ସାଧାରଣ ପାଠକ ପକ୍ଷରେ ସମ୍ଭବ ନୁହେଁ । ସଂସ୍କୃତ ରଚନାର (ସ୍ତୋତ୍ର, ଅଷ୍ଟକ, କାବ୍ୟ ଓ ଅଳଙ୍କାର ଗ୍ରନ୍ଥ) ପ୍ରଭାବ ଓ ପ୍ରେରଣା ସମ୍ପର୍କରେ କେତୋଟି ଦୃଷ୍ଟାନ୍ତ ଦିଆଯାଉଛି, ଯଥା—ରାଧାଙ୍କର ମହାଭାବ ସ୍ୱରୂପ, ବିଂଶତ୍ୟାଙ୍ଗ ଅଳଙ୍କାର ମଣ୍ଡନ ବୈଦଗ୍ଧ (୨୦ଶ ପଦ); ସୁଷ୍ଠୁକାନ୍ତି ସ୍ୱରୂପ, ଷୋଡ଼ଶ ଶୃଙ୍ଗାର ଧାରଣ (୨୫ଶ ପଦ); ସମର୍ଥାରତି, ମଞ୍ଜିଷ୍ଠାରାଗ (୨୬ଶ ପଦ); ଦ୍ୱାଦଶାଭରଣ, ଦ୍ୱାତ୍ରିଂଶ ଲକ୍ଷଣ (୪୩ଶ ପଦ) ଇତ୍ୟାଦି ବର୍ଣ୍ଣନାରେ ରୂପ ଗୋସ୍ୱାମୀଙ୍କର ଉଜ୍ଜ୍ୱଳ ନୀଳମଣିର (୬୮) ରାଧାପ୍ରକରଣର ପ୍ରତ୍ୟକ୍ଷ ପ୍ରଭାବ ରହିଛି । 'ଭ୍ରମ ମାନସା ତମାଳ ଆଲିଙ୍ଗିନି' (ପୃ-୧୮୦) ବୋଲି କବି ଯାହା ବର୍ଣ୍ଣନା କରିଛନ୍ତି, ତା'ମୂଳରେ ରହିଛି ରୂପ ଗୋସ୍ୱାମୀଙ୍କର ବିଦଗ୍ଧ ମାଧବର ପ୍ରେରଣା (୬୯) । ସ୍ତବଟିର ଉଦ୍ଧୃତ ପ୍ରଥମ ପଦଟିକୁ 'ଶ୍ରୀରାଧିକା ନାମାବଳୀ ସ୍ତୋତ୍ରମ୍'ର

'କୃଷ୍ଣାନନ୍ଦେ ସଦାନନ୍ଦା କୃଷ୍ଣକେଳି ବନୋଦନୀ ।
କୃଷ୍ଣ ଉନ୍ମାଦନୀ ସିଦ୍ଧା କୃଷ୍ଣପ୍ରିୟା ଶିରୋମଣିଃ ।୧୮।' (୭୦)

ଶ୍ଲୋକ ସହ ତୁଳନା କରି ଯାଇପାରେ । ତା' ଛଡ଼ା ତୁଳନା ପାଇଁ ଏହି ସ୍ତବ ଓ ସଂସ୍କୃତ ରଚନା ମାନଙ୍କରୁ ବହୁ ଶ୍ଲୋକ ଉଦ୍ଧାର କରାଯାଇ ପାରେ । ତିନି ଚାରୋଟି ସ୍ଥଳରୁ ଦୃଷ୍ଟାନ୍ତ ଦିଆ ଯାଉଛି ।

(କ) ସ୍ମର-ଚାପ-ଜିତ-ସୁଭ୍ରୁଭଙ୍ଗିନି ।
ତିଳପୁଷ୍ପ ନାସିକାଗ୍ରେ ମୁକ୍ତାମଣି ।୩।
ଶ୍ୱୈରସ-କପାଳ-ଅର୍ଦ୍ଧେନ୍ଦୁନନ୍ଦନ !୪।

(ଗୋ. କୃ. ଗ୍ର., ପୃ-୧୭୬)

---

(୬୮) ଉ. ନୀ., ପୃ: ୯୯-୧୦୫

(୬୯) ବ. ମା., ୨ୟ ଅଙ୍କ, ମନ୍ମଥଲେଖ, ସମ୍ପା: ସତ୍ୟେନ୍ଦ୍ର ନାଥ ବସୁ, ପୃ-୧୦୦

(୭୦) ଶ୍ରୀ ସ୍ତ. କ. ଦ୍ରୁ., ପୃ-୬୦୮

ସଂସ୍କୃତ:— ଭ୍ରୂଦ୍ୱନ୍ଦ୍ୱଂ କାର୍ମୁକଂ କ୍ରୂରଂ କଟାକ୍ଷାଃ ଶାଣିତାଃ ଶରାଃ । *
ଭାଲମର୍ଦ୍ଧେନ୍ଦୁ-ଦର୍ବ୍ୟାସ୍ୟମଙ୍କୁଶାନ୍ ନଖାଙ୍କୁରାଃ । (୭୧)
ସ୍ୱଚ୍ଛ-ମୌକ୍ତିକା ମୁକ୍ତା-ନାସିକା-ତିଲପୁଷ୍ପିକା ।
ସୁଗୁରୁ-ନବ-କସ୍ତୁରୀ-ତିଲକାଙ୍କିତ-ଭାଲକା । (୭୨)

(ଖ) ନାଭିଊର୍ଦ୍ଧ୍ୱେ ରୋମାବଳୀ ସୁଶୋଭନ ।
ଅପୂର୍ବ ସୁଗୁରୁ ତ୍ରିବଲୀ-ବନ୍ଧନ ।୧୩।

ସଂସ୍କୃତ :— ରୋମାଳୀନାଗପାଶ ଶ୍ରୀନିର୍ତମ୍ବୋ ରଥଲକ୍ଷଣଃ । (୭୩)
× × ×
ତ୍ରିବଲୀ ନାଭି ଗମ୍ଭୀରା ପୀନତୁଙ୍ଗପୟୋଧରା । (୭୪)

(ଗ) ପ୍ରେଷ୍ଠାଳି-ଲଳିତା-ପରାଣ ସଙ୍ଗିନି !
ବିଶାଖା-ସୁଖଦା-ଶ୍ରୀରାସ-ରଙ୍ଗିନି !
ସମସ୍ତ ବଲ୍ଲବୀ-ବୃନ୍ଦ-ମଥାମଣି ।୧୭।
× × ×
ସ୍ୱସଖୀ ମଣ୍ଡଳୀ ଜୀବାତୁ ସଙ୍ଗିନି ! ।୨୨।

ସଂସ୍କୃତ : — ସଖୀ ମଣ୍ଡଳ ଜୀବାତୁର୍ଲଳିତା ଜୀବିତାଧିକା ।
ବିଶାଖା ପ୍ରାଣ ସର୍ବସ୍ୱଂ କାରୁଣ୍ୟାମୃତ ମେଦୁରା ।
× × ×
ବିଶାଖାସଖ୍ୟବିଖ୍ୟାତା ଲଳିତା ପ୍ରେମଲାଳିତା । (୭୫)

(ଘ) ଚନ୍ଦ୍ରାସ୍ୟ-ନିର୍ମଳ-ରସ-ବିକାଶିନି !
ଶୁଦ୍ଧ-ସତ୍ତ୍ୱମୂର୍ତ୍ତି ! କୃଷ୍ଣ ଚନ୍ଦ୍ରାର୍ଥିନି ! (୫୦)

ସଂସ୍କୃତ :— ଶ୍ରୀମଦ୍ରାଧା-ରସମୟୀ ରସଜ୍ଞା ରସିକା ତଥା ।
ରାସେଶ୍ୱରୀ ରସଭକ୍ତ ରସପୂର୍ଣ୍ଣା ରସପ୍ରଦା । (୭୬)

ରାଧାଙ୍କର ଅଙ୍ଗସୁଷମାର ବର୍ଣ୍ଣନା ପାଠ କଲେ ସଂସ୍କୃତ ରଚନା ବ୍ୟତୀତ ଅବଶ୍ୟ ପ୍ରାଚୀନ ଯୁଗୀୟ କାବ୍ୟଛଟା ସ୍ମରଣକୁ ଆସିଥାଏ । ଆବୃତ୍ତି ବା ଗାନ କାଳରେ ଛନ୍ଦରେ ପ୍ରବାହ

(୭୧) ତତ୍ରୈବ ଶ୍ରୀ ବିଶାଖାନନ୍ଦଦାଭିଧସ୍ତୋତ୍ରମ୍, ପୃ-୬୧୭
(୭୨) ତତ୍ରୈବ ଶ୍ରୀ ରାଧିକାଷ୍ଟୋତ୍ତରଶତନାମସ୍ତୋତ୍ରମ୍, ପୃ-୫୯୯
(୭୩) ତତ୍ରୈବ, ଶ୍ରୀ ବିଶାଖାନନ୍ଦଦାଭିଧସ୍ତୋତ୍ରମ୍, ଶ୍ଳୋ. ୭୮, ପୃ-୬୧୭
(୭୪) ତତ୍ରୈବ, ଶ୍ରୀ ରାଧିକାସ୍ତବରାଜଃ, ଶ୍ରୀ ଗୌତମୀୟ ତନ୍ତ୍ର ଶ୍ଳୋକ.୮, ପୃ-୬୨୩
(୭୫) ତତ୍ରୈବ, ଶ୍ରୀ ରାଧିକାଷ୍ଟୋତ୍ତରଶତନାମସ୍ତୋତ୍ରମ୍ (୧), ବୃ.ଗୋ., ଶ୍ଳୋ. ୮, ୯, ୧୦
(୭୬) ତତ୍ରୈବ, ଶ୍ରୀ ରାଧିକାଷ୍ଟୋତ୍ତରଶତନାମସ୍ତୋତ୍ରମ୍ (୩), ଶ୍ଳୋ. ୧, ପୃ-୬୦୧

ବା ଗତି ଆଣିବା ପାଇଁ ତତ୍ସମ ଶବ୍ଦର ବହୁଳତା ବିଶେଷ ଭାବରେ ଲକ୍ଷିତ ହୁଏ । ମିତ୍ରାକ୍ଷର ଯୁକ୍ତ ଅକ୍ଷର ବୃତ୍ତରେ ରଚିତ ହେଲେ ମଧ୍ୟ ଅପଭ୍ରଂଶ-ଗୀତି ଛନ୍ଦର ପ୍ରବଣତା ସମଗ୍ର ରଚନାଟିରେ ଅନୁଭୂତ ହୁଏ ।

(୫) ପ୍ରାର୍ଥନା ରତ୍ନାଞ୍ଜଳି—କବିଙ୍କର 'ପ୍ରାର୍ଥନା ରତ୍ନାଞ୍ଜଳି' ଗୁରୁଦେବଙ୍କ ପ୍ରତି ଅଷ୍ଟୋତ୍ତରଶତ ପଦ ବିଶିଷ୍ଟ ଏକ ଆତ୍ମନିବେଦନାତ୍ମକ ପ୍ରାର୍ଥନା । ତନ୍ତ୍ରଠାରୁ ଆରମ୍ଭ କରି ସବୁ ଧର୍ମରେ ସାଧକ ଶିଷ୍ୟ ଓ ଭକ୍ତମାନଙ୍କ ଦୃଷ୍ଟିରେ ଗୁରୁଙ୍କର ଭୂମିକା ଅତି ମହତ୍ତ୍ୱପୂର୍ଣ୍ଣ । ଗୁରୁ ତ୍ରିଲୋକରେ ଚିଦ୍ ରୂପରେ ପରିବ୍ୟାପ୍ତ ଶାଶ୍ୱତ ନିରଞ୍ଜନ ଭଗବାନ୍‌ଙ୍କର ପ୍ରତ୍ୟକ୍ଷ ଦ୍ରଷ୍ଟା । ଗୁରୁ ସାଧକ ତଥା ଭକ୍ତର ଇହକାଳ ଓ ପରକାଳର ଦାୟିତ୍ୱ ବହନ କରୁଥିବାରୁ ଏବଂ ଭଗବତ୍ ସାକ୍ଷାତ୍କାରରେ ପରମ ସହାୟକ ହୋଇଥିବାରୁ ଗୁରୁଙ୍କର ଅନୁକମ୍ପା ବିନା ଭକ୍ତ ପକ୍ଷରେ ଆତ୍ମତତ୍ତ୍ୱ ଉପଲବ୍ଧି ଦୁରୂହ ବ୍ୟାପାର । ଗୁରୁଙ୍କ ଆଶୀର୍ବାଦରେ ସାଧକ ଶିଷ୍ୟ ବା ଭକ୍ତର ମାୟାନ୍ଧକାର ଦୂରୀଭୂତ ହୋଇ ପରମ ଜ୍ଞାନର ଉଦୟ ହେଉଥିବାରୁ ଗୁରୁଙ୍କୁ ପରଂବ୍ରହ୍ମ ରୂପେ (୭୭) ଭାରତୀୟ ଧର୍ମ ପରମ୍ପରାରେ ସମ୍ମାନ ଦିଆଯାଇଛି । ସେଥିପାଇଁ ଉପାସ୍ୟଙ୍କର ବନ୍ଦନା ପୂର୍ବରୁ ଗୁରୁଙ୍କର ବନ୍ଦନା ସବୁ ଧର୍ମର ଏକ ପବିତ୍ର ଶୃଙ୍ଖଳିତ ବିଧି ।

ଗୌଡ଼ୀୟ ବୈଷ୍ଣବ ଧର୍ମ ପରମ୍ପରାରେ ସାଧକ ଭକ୍ତ ଓ କବିମାନେ ଶ୍ରୀ ଚୈତନ୍ୟ, ନିତ୍ୟାନନ୍ଦ, ଅଦ୍ୱୈତ, ଗଦାଧର ଓ ଶ୍ରୀବାସ ଏହି 'ଭକ୍ତାବତାର ଈଶ୍ୱର' (୭୮) ଏବଂ ଗୁରୁଙ୍କର ଧ୍ୟାନ ଓ ପ୍ରଣାମ ପରେ ଶ୍ରୀକୃଷ୍ଣ ଓ ତାଙ୍କର ସ୍ୱରୂପ ଶକ୍ତି ରାଧାଙ୍କର ଧ୍ୟାନ ଓ ପ୍ରଣାମ କରି ବୈଷ୍ଣବ ତୀର୍ଥ (ନବଦ୍ୱୀପ, ବୃନ୍ଦାବନ, ଶ୍ରୀକ୍ଷେତ୍ର), ଶ୍ୟାମକୁଣ୍ଡ, ରାଧାକୁଣ୍ଡ, ଗୋପୀଶ୍ୱର, ଗୋବର୍ଦ୍ଧନ, ତୁଳସୀ ଓ ପବିତ୍ର ନଦୀର (ଯମୁନା, ଗଙ୍ଗା) ପ୍ରଣାମ କରନ୍ତି ଏବଂ ବ୍ରଜରେ ରାଧାକୃଷ୍ଣଙ୍କର ପ୍ରେମଲୀଳା ଇତ୍ୟାଦି ରଚନା ବା ଗାନ କରିଥାନ୍ତି । ଗୀତ ରଚନାରେ ଗୋପାଳକୃଷ୍ଣ ଏହି ପରମ୍ପରା ରକ୍ଷା କରିଛନ୍ତି । 'ପ୍ରାର୍ଥନାରତ୍ନାଞ୍ଜଳି' ଆରମ୍ଭରେ ଗୁରୁଦେବଙ୍କର ଏକ ପ୍ରଣାମାତ୍ମକ ଶ୍ଳୋକ ଉଦ୍ଧାର କରି କବି 'ନବ-ନୀରଦ-ନିନ୍ଦିତ-କାନ୍ତି-ଧରମ୍' ଏହି ଅତି ଜନପ୍ରିୟ ବୃତ୍ତରେ ପାରମ୍ପରିକ ରୀତିରେ ଗୁରୁଙ୍କର ମହିମା ବର୍ଣ୍ଣନା କରି ତାଙ୍କର ପାଦପଦ୍ମରେ ନିଜର ପ୍ରପଞ୍ଚକ୍ଲିଷ୍ଟ ଜୀବନର ଆର୍ତ୍ତି ଜଣାଇ ରାଗାନୁଗା ଭକ୍ତିର ଶିକ୍ଷା, ହରିନାମ ଓ ଯୁଗଳ ସେବାଧନ (ଦାସ୍ୟଭକ୍ତି) ଲାଭ ନିମିତ୍ତ ଗୋପୀ ଅନୁଗତ କରାଇବା ପାଇଁ ବିନୀତ ଭାବରେ ନିଜର ଦୈନ୍ୟସୂଚକ ପ୍ରାର୍ଥନା ଜଣାଇଛନ୍ତି ।

କବିଙ୍କ ବର୍ଣ୍ଣନାନୁସାରେ ଗୁରୁ ହେଉଛନ୍ତି ସର୍ବଦେବମୟ, ଜଗନ୍ମଙ୍ଗଳ ମୂର୍ତ୍ତି, ଦୀନ ପାଳକ, ସର୍ବାନନ୍ଦମୟ, ସର୍ବଶାସ୍ତ୍ର ବିଶାରଦ ଓ ତତ୍ତ୍ୱଜ୍ଞାତା । ସେ ବ୍ରହ୍ମା, ବିଷ୍ଣୁ ଓ ଶିବ ଏବଂ ମହିମାମୟ ବିଶ୍ୱମୂର ସ୍ୱୟଂ ପରଂବ୍ରହ୍ମ । ସେ କରୁଣାମୟ, ଶିଷ୍ୟ ବତ୍ସଳ, ନିତ୍ୟାନନ୍ଦମୟ, ଶରଣାଗତ ପାଳକ ଓ ଗୁଣଗ୍ରାହୀ । ସେ ରାଧାକୃଷ୍ଣ-ଭାବ ଦେହ ଧାରଣ କରି ହରିନାମ

(୭୭) ସ୍ତବ କୁସୁମାଞ୍ଜଳି, ସମ୍ପା: ସ୍ୱାମୀ ଗମ୍ଭୀରାନନ୍ଦ, ପୃ-୧୩୪, ୧୩୮

(୭୮) ଶ୍ରୀ ସ୍ତ. କ. ଦ୍ରୁ., ଶ୍ରୀ ପଞ୍ଚତତ୍ତ୍ୱପ୍ରଣାମ, ପୃ-୧୯-୨୦

ସଂକୀର୍ତ୍ତନରେ ଉନ୍ମତ୍ତ ରହି ବିଶ୍ୱର ମଙ୍ଗଳ ପାଇଁ ଭକ୍ତ ରୂପ ଧାରଣ କରିଛନ୍ତି । ସେ ଉଦାସୀନ, ଜିତେନ୍ଦ୍ରିୟ, ସତ୍ୟବାଦୀ, ସମଦର୍ଶୀ ଓ କ୍ଷମାଶୀଳ ଏବଂ ସିଦ୍ଧ ଦେହରେ ଶ୍ରୀକୃଷ୍ଣାରଣ୍ୟ ନିକୁଞ୍ଜ ଓ ରାଧାକୁଣ୍ଡ ତଟବାସୀ । ସେ ରାଗାନୁଗ ପ୍ରେମୀ ଓ ସଖୀଭାବାଶ୍ରିତ ହୋଇଥିବାରୁ ତାଙ୍କ ସ୍ୱାମିନୀ ରାଧାଙ୍କର ସଖୀସଙ୍ଗ ନିବାସୀ ଭାବରେ ଉଲ୍ଲେଖ କରିଛନ୍ତି । କବି ଏ ସଂସାରର ଜଞ୍ଜାଳରେ କ୍ଲିଷ୍ଟପିଷ୍ଟ । ନିଜର ଦୁଷ୍କୃତି ପ୍ରକାଶ କରି କ୍ଷମାଶୀଳ ଗୁରୁଙ୍କଠାରେ ନିଜର ଦୈନ୍ୟ ଓ ଆର୍ତ୍ତି ନିବେଦନ କରିଛନ୍ତି । ସେ ସଂସାରର ନଶ୍ୱର ଧନଜନ ପ୍ରତି ଉପେକ୍ଷା ପ୍ରଦର୍ଶନ କରି ସାଂସାରିକ ଗୌରବ, ପାଣ୍ଡିତ୍ୟର ପ୍ରତିଷ୍ଠା ଓ ଅଭିମାନକୁ ରୌରବ ତୁଲ୍ୟ ମନେ କରିଛନ୍ତି ଏବଂ ଅହେତୁକୀ ପ୍ରେମଭକ୍ତି ଲାଭ ପାଇଁ ଗୁରୁଙ୍କର କୃପା କଣିକା ବାଞ୍ଛା କରିଛନ୍ତି । ସାଧୁସଙ୍ଗ, ସଦ୍‌ଗ୍ରନ୍ଥ ପାଠ ଓ କୃଷ୍ଣଲୀଳା (କଥା) ଆଳାପନ ଏବଂ ରାଗାନୁଗ ଭକ୍ତିର ଶିକ୍ଷାପାଇଁ ଗୁରୁଙ୍କର କୃପା ଲୋଡ଼ିଛନ୍ତି । ମୋକ୍ଷ ପଦକୁ ତୁଚ୍ଛ ମନେ କରି ମଞ୍ଜରୀ ଦାସୀ (୭୯) ଦେହରେ ଯୂଥେଶ୍ୱରୀଙ୍କ (ରାଧାଙ୍କ) ସଖୀଗଣର ସଙ୍ଗ ଲାଭ କରି ସ୍ୱାମିନୀଙ୍କର ସେବା ଦ୍ୱାରା ବୃନ୍ଦାବନରେ ନିତ୍ୟବାସର ଅଭିଳାଷ ପୋଷଣ କରିଛନ୍ତି ଏବଂ ଯୁଗଳ ସେବାଧନ ଲାଭ ନିମିତ୍ତ ଗୋପୀ ଅନୁଗତ କରାଇବା ପାଇଁ ପ୍ରାର୍ଥନା କରିଛନ୍ତି; ଏପରିକି ଆଭୀର କନ୍ୟାରୂପେ ବ୍ରଜରେ ଜନ୍ମଲାଭର ଅଭିଳାଷ ପୋଷଣ କରି କବି ଭାବର ଆବେଗରେ ଲେଖିଛନ୍ତି—

ଭବଦୀୟ ଦତ୍ତ ବୀଜ ମନ୍ତ୍ର ଜପେ ।
ନବ ସୁନ୍ଦରୀ ଆଭୀର କନ୍ୟାରୂପେ ।
ବ୍ରଜେ ଜନ୍ମ ଅର୍ଥେ ଦେହ ଅବସାନେ ।
ଗୁରୁଦେବ ଦୟାକର ଦୀନ ଜନେ ।୩୫। (ଗୋ. କୃ. ଗ , ପୃ-୧୫୭)

'ପ୍ରାର୍ଥନାରତ୍ନାଞ୍ଜଳି' କୌଣସି ସଂସ୍କୃତ ପ୍ରାର୍ଥନାର ଅନୁବାଦ ନୁହେଁ; କିନ୍ତୁ ଏହାର ରଚନାମୂଳରେ ତନ୍ତ୍ର, ପୁରାଣ ଓ ବିଭିନ୍ନ ସଂସ୍କୃତ ସ୍ତୋତ୍ରର ଗୁରୁବନ୍ଦନା, ବା ପ୍ରାର୍ଥନାର ଯେ ପ୍ରେରଣା ଓ ପ୍ରଭାବ ରହିଛି ଏଥିରେ ସନ୍ଦେହ ନାହିଁ । 'ବ୍ରଜରାଜସୁତାଷ୍ଟକମ୍'ର ଛନ୍ଦ ଆଦର୍ଶରେ ଏହାର ବୃତ୍ତର ପ୍ରଯୋଜନା ହୋଇଛି । ଶାନ୍ତରସାତ୍ମକ ଲୀଳାୟିତ ଗତିମୁଖର ଏହି ଛନ୍ଦ ବା ବୃତ୍ତ ଗାନକର୍ତ୍ତା ଓ ଶ୍ରୋତାଙ୍କ ପକ୍ଷରେ ଅତୀବ ଶ୍ରୁତି ସୁଖକର । ଏହି ପ୍ରାର୍ଥନା ଗୀତଟିର ଗଠନ, ପଦଯୋଜନା, ଶବ୍ଦ ଝଙ୍କାର, ଆନୁପ୍ରାସିକ ମାଧୁର୍ଯ୍ୟ, ବର୍ଣ୍ଣନୀୟ ବସ୍ତୁ ଓ ଅଳଙ୍କାର ସଂସ୍କୃତ ଗୁରୁବନ୍ଦନାର ଅନୁରୂପ । ସଂସ୍କୃତରେ ରଚିତ 'ଗୁରୁଦେବ ଧ୍ୟାନମ୍' ସ୍ତୋତ୍ର ଓ 'ରୂପ ଚିନ୍ତାମଣିଃ' ସହିତ ଏହାର କେତେକ ପରିମାଣରେ ସାମଞ୍ଜସ୍ୟ ଲକ୍ଷିତ ହୁଏ । ନିମ୍ନୋକ୍ତ ଦୃଷ୍ଟାନ୍ତ ଗୁଡ଼ିକ ତା'ର ପ୍ରମାଣ, ଯଥା—

କ) ସଂସ୍କୃତ:—ଶ୍ରୀଗୁରୁଂ ଗୌରହୃଦୟସ୍ଥଂ ଶାନ୍ତଂ କରୁଣାଶାଳିନମ୍ ।
ବରାଭୟକରଂ ଧ୍ୟାୟେତ୍ତ୍ୱ ପ୍ରଣତଜନପାଳକମ୍ । (୮୦)

---

(୭୯) ଗୋ. କୃ. ଗ., ପୃ-୧୫୫
(୮୦) ଶ୍ରୀ ସ୍ତ. କ. ଦ୍ରୁ., ଶ୍ରୀ ଗୁରୁଦେବ ଧ୍ୟାନମ୍, ଶ୍ଳୋ. ୮, ପୃ-୫

ଓଡ଼ିଆ:— ସଦା ପ୍ରଣତ-ତାପ ସଂହାରକ ହେ ।୧।
କରୁଣାମୟ-ହୃଦୟ ତତ୍ତ୍ୱଜ୍ଞାନୀ ।୧୩।
(ଗୋ. କୃ. ଗ., ପୃ-୧୫୧-୧୫୨)

ଖ) ସଂସ୍କୃତ:— ହୃଦମ୍ବୁଜେ କର୍ଣ୍ଣିକା-ମଧ୍ୟ-ସଂସ୍ଥମ୍
ସିଂହାସନାଧଃସ୍ଥିତ ଦିବ୍ୟମୂର୍ତ୍ତିମ୍ । (୮୧)
ଶ୍ୱେତପଦ୍ମେ ସମାସୀନଂ ଦ୍ୱିନେତ୍ରଂ ଦ୍ୱିଭୁଜଂ ଗୁରୁମ୍ । (୮୨)
କଳିନ୍ଦାତ୍ମଜା ବେଷ୍ଟିତେ ମଞ୍ଜୁ ବୃନ୍ଦା-
ବନେ କୁଞ୍ଜ-ପୁଞ୍ଜାବୃତ-ସ୍ୱର୍ଣ୍ଣଭୂମୌ ।
ମଣି-କୁଟ୍ଟିମାନ୍ତର୍ମହାଯୋଗ ପୀଠେ
ସ୍ଫୁରଦ୍ଭୃଙ୍ଗ-କଳ୍ପଦ୍ରୁମ-ମୂଳେ ସୁଗନ୍ଧୌ । (୮୩)

ଓଡ଼ିଆ:— ତହିଁ ବସନ୍ତ ରତ୍ନ-ସିଂହାସନେ ।
ଗୁରୁଦେବ ଦୟାକର ଦୀନଜନେ ।୩।
ସୁବିମଳ ଶ୍ୱେତପଦ୍ମେ-ସମାସୀନ ।
ନବ ହେମ-ଗୌର-କାନ୍ତ ସନାତନ ।୪।
(ଗୋ. କୃ. ତ୍ରଂ., ପୃ-୧୫୦-୧୫୧)

ଗ) ସଂସ୍କୃତ:—ଶୁଦ୍ଧ ସ୍ୱର୍ଣ୍ଣଂ ରୁଚ ଶୁଦ୍ଧ ଶ୍ୱେତ-ଭୂଷା-କଳେବରମ୍ ।
ସଚ୍ଚିଦାନନ୍ଦ-ସାନ୍ଦ୍ରାଙ୍ଗଂ କରୁଣାମୃତବର୍ଷିଣମ୍ । (୮୪)

ଓଡ଼ିଆ:— ଶୁକ୍ଳାମ୍ବରଧାରୀ ଦେବ ସୌମ୍ୟମୂର୍ତ୍ତି ।
ଶୁକ୍ଳମାଲ୍ୟାନୁଲେପିତ ତନୁ ଦ୍ୟୁତି ।
ଶୁଦ୍ଧଶ୍ୱେତ ଭୂଷା ଦିବ୍ୟ ଅପଘନେ ।୫।
(ଗୋ. କୃ. ଗ., ପୃ-୧୫୧)

ଘ) ସଂସ୍କୃତ:—ସମସ୍ତ-ମଙ୍ଗଳାଧାରଂ ସର୍ବାନନ୍ଦମୟଂ ବିଭୁମ୍ !
ଧ୍ୟାୟନ୍ ଶ୍ରୀଗୁରୁଦେବଂ ତଂ ପରମାନନ୍ଦମଶ୍ନୁତେ । (୮୫)

ଓଡ଼ିଆ:— ଦୀନପାଳକ ସର୍ବମଙ୍ଗଳାଧାର ।
ସର୍ବାନନ୍ଦମୟ ଦିବ୍ୟ ଅବତାର ।୧୦।
(ଗୋ. କୃ. ଗ., ପୃ-୧୫୨)

---

(୮୧) ତତ୍ରୈବ ଶ୍ଳୋ: ୧୧, ପୃ-୫
(୮୨) ତତ୍ରୈବ ଶ୍ଳୋ. ୯, ପୃ-୫
(୮୩) ଶ୍ରୀ ରୂପଚନ୍ଦ୍ରାମଣିଃ, ଶ୍ରୀସ୍ତ. କ. ଦ୍ରୁ., ଶ୍ଳୋ. ୩, ପୃ-୬୮୧
(୮୪) ଶ୍ରୀ ସ୍ତ. କ. ଦ୍ରୁ., ଶ୍ରୀଗୁରୁଦେବ ପ୍ରଣାମମ୍, ଶ୍ଳୋ ୩, ପୃ-୫
(୮୫) ତତ୍ରୈବ ଶ୍ଳୋ. ୭, ପୃ-୫

ଙ) ଗୁରୁଙ୍କୁ ଶୁଦ୍ଧାଭକ୍ତ ବୈଷ୍ଣବ ପରମ୍ପରାରେ ରାଧାଙ୍କର ସଖୀ ଭାବରେ କଳ୍ପନା କରା ଯାଇଛି, ଯଥା—

ସଂସ୍କୃତ:— ରାଧିକା-କୃଷ୍ଣୟୋଃ ପାର୍ଶ୍ୱବର୍ତ୍ତିନୀ ନବ-ଯୌବନାମ୍ ।
ଗୁରୁରୂପା ସଖୀଂ ବନ୍ଦେ ସାନ୍ଦ୍ରାନନ୍ଦ-ପ୍ରଦାୟିନୀମ୍ । (୮୬)

ଓଡ଼ିଆ:— ଶ୍ରୀ ସ୍ୱାମିନୀ-ସଖୀ ସଙ୍ଗ କରାଇବେ ।
ଗୁରୁଦେବ ! ଦୟାକର ଘୀନ ଜନେ ।୭୭। (ଗୋ. କୃ. ଗ୍ର, ପୃ-୧୬୩)

'ଗୋବିନ୍ଦମୋହିନୀ ସ୍ତବ' ପରି ଏଥିରେ ଆମୂଳଚୂଳ ତତ୍ସମ ଓ ତଦ୍ଭବ ଶବ୍ଦମାନଙ୍କର ପ୍ରାଚୁର୍ଯ୍ୟ ଓ ସଂସ୍କୃତ ଛନ୍ଦାନୁରୂପ ଶବ୍ଦ ଝଙ୍କାର ଉପଲବ୍ଧ ହୁଏ । ପ୍ରାର୍ଥନା ଶେଷରେ କବି ଗୁରୁଦେବଙ୍କର ଆଶୀର୍ବାଦ ଭିକ୍ଷା ସୂଚକ ସଂସ୍କୃତ ଶ୍ଳୋକଟିଏ ଉଦ୍ଧାର କରି ରଚନା ସମାପ୍ତ କରିଛନ୍ତି ।

**(୭) ଶ୍ରୀରାଧାଷ୍ଟକ—** ରାଧାଙ୍କ ସମ୍ପର୍କରେ ବୈଷ୍ଣବ ଗୋସ୍ୱାମୀଙ୍କର (୮୭) କେତେକ ଉଲ୍ଲେଖଯୋଗ୍ୟ ଅଷ୍ଟକ ପରିଦୃଷ୍ଟ ହୁଏ । ଏହି ଅଷ୍ଟକଟି ରୂପ ଗୋସ୍ୱାମୀଙ୍କ 'ଶ୍ରୀରାଧିକାଷ୍ଟକମ୍' ଆଦର୍ଶରେ ରଚିତ । ଏହା ମିତାକ୍ଷର ଯୁକ୍ତ ହେଲେ ମଧ୍ୟ ଏବଂ ଏହାର ବାଣୀର ନିର୍ଦ୍ଦେଶ କବି ଦେଇଥିଲେ ମଧ୍ୟ ରୂପ ଗୋସ୍ୱାମୀଙ୍କ ରଚନାର ଛନ୍ଦ ପ୍ରଭାବ ଓ ପ୍ରବାହ ଆମୂଳଚୂଳ ଉପଲବ୍ଧ ହୁଏ । ସ୍ଥାନେ ସ୍ଥାନେ କବି ରଘୁନାଥ ଦାସ ଗୋସ୍ୱାମୀ ଓ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'ରାଧିକାଷ୍ଟକମ୍'ର ପ୍ରଭାବ ଏଡ଼ି ପାରି ନାହାନ୍ତି । ଅଷ୍ଟକଟିରେ କବି ଗୋସ୍ୱାମୀମାନଙ୍କ ଆଦର୍ଶରେ ରାଧାଙ୍କର ଅଙ୍ଗସୌଷ୍ଠବ, ନେପଥ୍ୟ, ହାବଭାବ, ଅଙ୍ଗ ପ୍ରତ୍ୟଙ୍ଗରେ ନିଯୋଜିତ ଭୂଷଣ, ରାସଲାସ୍ୟ ଓ ସଙ୍ଗୀତ କୁଶଳତା, ମହାଭାବମୟତ୍ୱ ଏବଂ ବୃନ୍ଦାବନରେ ତାଙ୍କର ବଲ୍ଲଭା-ଶ୍ରେଷ୍ଠତ୍ୱର ବର୍ଣ୍ଣନା କରି ତାଙ୍କର ଦାସ୍ୟ ଓ କୃପାଦୃଷ୍ଟି କାମନା କରିଛନ୍ତି । ପ୍ରଣୟିନୀ ଭାବରେ ରାଧା ଚରିତର ମହିମାବ୍ୟଞ୍ଜକ ଉଚ୍ଚାଙ୍ଗ ଆଲେଖ୍ୟ ଅପେକ୍ଷା କବି ପୂର୍ବସୂରିଙ୍କ ଆଦର୍ଶରେ କେବଳ ବାହ୍ୟ ବର୍ଣ୍ଣନା ଉପରେ ଗୁରୁତ୍ୱ ଦେଇଛନ୍ତି । ଏ ପ୍ରକାର ଅଷ୍ଟକରେ ବାହ୍ୟ-ବର୍ଣ୍ଣନା ଚାତୁର୍ଯ୍ୟ, ଛନ୍ଦର ନର୍ତ୍ତନଶୀଳ ପ୍ରବାହ, ଶବ୍ଦ ଝଙ୍କାର ଓ ଆନୁପ୍ରାସିକ ସୌଷ୍ଠବ ଉପରେ ଗୁରୁତ୍ୱ ପ୍ରଦାନ ଫଳରେ ଭାବ ଦୁର୍ବଳ ହେବା ସ୍ୱାଭାବିକ, ଯଥା—

କୌରବିନ୍ଦେ କାନ୍ତି-ଜିତ ମଞ୍ଜୁଳ ପଟ୍ଟ ଶାଟିକେ !
କୃଷ୍ଣ-ମତ୍ତଭୃଙ୍ଗ-କେଳି-ଫୁଲ୍ଲ-ପୁଷ୍ପବାଟିକେ ।୪। (ଗୋ. କୃ. ଗ୍ର., ପୃ-୪୭)

ସଂସ୍କୃତ ରଚନାର ପ୍ରଭାବ ସମ୍ପର୍କରେ କେତୋଟି ଦୃଷ୍ଟାନ୍ତ ଦିଆଯାଉଛି—

(କ) ଓଡ଼ିଆ :— ଅଖିଳ-ଗୁଣ-ଗଭୀର ତ୍ରିଭୁବନେ ଦୁର୍ଲ୍ଲଭ ।
ଖେଳା-ଖଞ୍ଜରୀଟ-ଦୃଶୀ ଶ୍ରୀ ବ୍ରଜେନ୍ଦୁ ବଲ୍ଲଭା ।୧।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ-୪୫)

---

(୮୬) ଶ୍ରୀ ସ୍ତ.କ.ଦ୍ରୁ. ଶ୍ରୀଗୁରୁରୂପସଖୀଧ୍ୟାନମ୍ ଶ୍ଳୋ.୧, ଶ୍ରୀ ଗୁରୁରୂପସଖୀ ପ୍ରଣାମଃ, ଶ୍ଳୋ-୧

(୮୭) ରୂ: ଗୋ; ରଘୁନାଥ ଦାସ, କୃ. ଦା, କ., ନରହରି ସରକାର ଠାକୁର ପ୍ରଭୃତି ।

ସଂସ୍କୃତ :—ହଶୀ ହଶି ରଚୟନ୍ତୀଂ ସଞ୍ଚରନ୍ନେତ୍ରଲକ୍ଷ୍ମୀ-
ଶ୍ୱଲସିତ-ଖୁରଲୀଭିଃ ଖଞ୍ଜରୀଟସ୍ୟ ଖେଳାମ୍ ।
ହୃଦୟସ୍ଥ ମଧୁପମଲ୍ଲୀଂ ବଲ୍ଲବାଧୀଶସୂନୋ-
ରଖିଳ-ଗୁଣ-ଗଭୀରାଂ ରାଧିକାମର୍ଚ୍ଚୟାମି । (୮୮)

(ଖ) ଓଡ଼ିଆ :— ଦୈନ୍ୟ ରୂପଲ୍ୟାଦଶାବବୃନ୍ଦ ସ୍ୱାଙ୍ଗେ ମଣ୍ଡିତା ।
ରାସ-ଲାସ୍ୟ-ଗୀତ-ନର୍ମ୍ମ-ରାଗ-ତାଳ-ପଣ୍ଡିତା । ।୮।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୪୭)

ସଂସ୍କୃତ:—ରାସ-ଲାସ୍ୟ-ଗୀତ-ନର୍ମ୍ମ-ସତ୍-କଳାଳି-ପଣ୍ଡିତା ।
ପ୍ରେମ-ରମ୍ୟରୂପ-ବେଶ-ସଦ୍‌ଗୁଣାଳି-ମଣ୍ଡିତା (୮୯)

(ଗ) ଓଡ଼ିଆ :—ନିଜ ଦାସ୍ୟେ କୃପାମୃତ ବୃଷ୍ଟି ଦୃଷ୍ଟି-ଅଞ୍ଚଳେ ।୮। (ପୃ-୪୭)

ସଂସ୍କୃତ :—ସ୍ୱପଦସ୍ଥ ନିଜ ଦାସ୍ୟେ ରାଧିକା ମାଂ କଦା ନୁ । (୯୦)

(ଘ) ଓଡ଼ିଆ :—ଦଶନେ ଦଂଶନେ ତୃଣ କୃତାଞ୍ଜଳି ମସ୍ତକେ ।
ଗୋପାଳକୃଷ୍ଣର ଦୈନ୍ୟ-ଉକ୍ତ ପଦ୍ୟ-ଅଷ୍ଟକେ ।
ନିକୁଞ୍ଜ ଈଶ୍ୱର ଦେବ ! ଦାସ୍ୟ ଦେହ କୁଶଳେ ।
ବନ୍ଦେ ଶ୍ରୀ ସ୍ୱାମିନି ରାଧେ ! ପାଦପଦ୍ମଯୁଗଳେ ।୯।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୪୭)

ସଂସ୍କୃତ :—ତ୍ୱାଂ ନତ୍ୱା ଯାଚତେ ଧୃତ୍ୱା ତୃଣଂ ଦନ୍ତୈରୟଂ ଜନଃ ।
ସ୍ୱଦାସ୍ୟାମୃତସେକେନ ଜୀବୟାମୁଂ ସୁଦୁଃଖିତମ୍ । (୯୧)

**(୬) ପ୍ରାଭାତିକ ଶ୍ରୀରାଧିକାଜୟକୀର୍ତ୍ତନ ଓ ଶ୍ରୀକୃଷ୍ଣ ଜୟକୀର୍ତ୍ତନ**—ଆସାମ ଓ ଗୁଜୁରାଟ ପରି ଉତ୍କଳରେ ଧର୍ମପ୍ରାଣ ବ୍ୟକ୍ତି ଓ ଭକ୍ତମାନଙ୍କ ମଧ୍ୟରେ ଜଗନ୍ନାଥ ଓ ଅନ୍ୟ ଦେବଦେବୀଙ୍କ ସମ୍ପର୍କରେ ପ୍ରାଭାତିକ ଜୟ କୀର୍ତ୍ତନର ପରମ୍ପରା ପ୍ରଚଳିତ ଅଛି । କବି ଏଠାରେ ରାଧା ଓ କୃଷ୍ଣଙ୍କ ସମ୍ପର୍କରେ ଦୁଇଟି ପ୍ରାଭାତିକ ଜୟକୀର୍ତ୍ତନ ଗୀତ ରଚନା କରିଛନ୍ତି । 'ଶ୍ରୀରାଧିକା ଜୟକୀର୍ତ୍ତନ' ବିଭାସ ରାଗରେ ଏବଂ 'ଶ୍ରୀକୃଷ୍ଣ ଜୟକୀର୍ତ୍ତନ' ଭୈରବ ରାଗରେ ରଚିତ ହେଲେ ମଧ୍ୟ ଅପଭ୍ରଂଶର ଦୋଳାୟିତ ଛନ୍ଦ ସୁଲଭ ମାଧୁର୍ଯ୍ୟ ଓ ଶବ୍ଦ-ଝଙ୍କାର ଏ ଗୀତିକରେ ପରିଲକ୍ଷିତ ହୁଏ । ଉଭୟ ପ୍ରାଭାତିକ ରଚନାରେ ଭାବଗତ

---

(୮୮) ଶ୍ରୀ ରାଧିକାଷ୍ଟକମ୍ (୧), ରୂ. ଗୋ., ଶ୍ରୀ ସ୍ତ. କ. ଦ୍ରୁ., ଶ୍ଳୋ. ୧, ପୃ-୫୬୯
(୮୯) ଶ୍ରୀ ରାଧିକାଷ୍ଟକମ୍ (୩), କୃ. ଦା. କ, ଗୋ. ଲୀ. ମୃ., ଶ୍ରୀସ୍ତବ କଲ୍ପ ଦ୍ରୁମ; ଶ୍ଳୋକ ୫, ପୃ-୫୭୩
(୯୦) ଶ୍ରୀ ରାଧିକାଷ୍ଟକମ୍ (୨), ରଘୁନାଥ ଦାସ, ଶ୍ରୀସ୍ତ. କ ଦ୍ରୁ., ଶ୍ଳୋ.୧, ପୃ-୫୭୧
(୯୧) ଶ୍ରୀ ରାଧିକାୟାଃ ପ୍ରେମାମ୍ଭୋଜ ମରନ୍ଦାଖ୍ୟ 'ସ୍ତବରାଜଃ, ରଘୁନାଥ ଦାସ, ଶ୍ରୀସ୍ତ. କ.ଦ୍ରୁ., ଶ୍ଳୋକ. ୧୧, ପୃ-୬୩୦

ଗମ୍ଭୀରତା ବା ନୂତନତ୍ୱ କିଛି ନାହିଁ । ଉଭୟଙ୍କରେ ରାଧା ଓ କୃଷ୍ଣଙ୍କର ନାମ, ଗୁଣ ଓ ମହିମା ସୂଚକ କେତେଗୁଡ଼ିଏ ପାରମ୍ପରିକ ଶବ୍ଦ ଓ ବିଶେଷଣ ପ୍ରୟୋଗ କରାଯାଇ ପ୍ରତ୍ୟେକ ପାଦରେ ଉଭୟଙ୍କର ଜୟଧ୍ୱନି କରାଯାଇଛି, ଯଥା —

(କ) ଜୟ ସନାତନୀ କାରୁଣ୍ୟ ବାହିନୀ
ହେମାବ୍ଜ ଦେହିନୀ ରାଧେ ।୧୦।
ଜୟ ସିଦ୍ଧିଦାନୀ ଦୁଃଖ ନିବାରଣୀ
କୁଞ୍ଜାଭିସାରଣୀ ରାଧେ ।୧୬। (୧୨)

(ଖ) ଜୟ ସନାତନ ନିତ୍ୟ ନିରଞ୍ଜନ
ଗୋପୀନେତ୍ରାଞ୍ଜନ କୃଷ୍ଣ ହରେ ।
ଜୟ ଜଗନ୍ମୋହନ ଦୀନାର୍ତ୍ତିନାଶନ
ଦାରିଦ୍ର୍ୟ-ଧ୍ୱଂସନ କୃଷ୍ଣ ହରେ ।୨। (୧୩)

ଶାନ୍ତରସାତ୍ମକ ଏହି ପ୍ରାରମ୍ଭିକ କୀର୍ତ୍ତନ ଦ୍ୱୟରେ କଳାଗତ ଉତ୍କର୍ଷ ଲକ୍ଷିତ ନହେଲେ ମଧ୍ୟ ଭକ୍ତମାନଙ୍କ ଦୃଷ୍ଟିରେ ମୂଲ୍ୟବାନ୍ । 'ଶ୍ରୀକୃଷ୍ଣ ଜୟ କୀର୍ତ୍ତନ' ରଚନାର ଶିରୋଭୂଷା ସ୍ୱରୂପ ଏବଂ ଗୀତଟିର ମୁଖ୍ୟ ଭାବର ଦ୍ୟୋତକ ଓ ଜୟଧ୍ୱନି ଯୁକ୍ତ ସଂସ୍କୃତ ଶ୍ଳୋକଟିଏ ଉଦ୍ଧାର କରାଯାଇଛି, ଯଥା —

ଜୟତୁ ଜୟତୁ ଦେବୋ ଦେବକୀନନ୍ଦନୋଽୟଂ ।
ଜୟତୁ ଜୟତୁ କୃଷ୍ଣୋ ବୃଷ୍ଣିବଂଶ-ପ୍ରଦୀପଃ ।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୧୯୪)

(୮) ସେବା ପ୍ରାର୍ଥନା—୯ଂ୯୯ ରାଗର ଏହି ଗୀତଟି ଗୀତ ଗୋବିନ୍ଦ ପରି ଅପଭ୍ରଂଶ ଗୀତ ଛନ୍ଦରେ ରଚିତ । ପଦଗୁଡ଼ିକରେ ମାତ୍ରାଛନ୍ଦ ସହ ପ୍ରାନ୍ତ ଯତି ଲକ୍ଷିତ ହୁଏ । ପଦ-ବିନ୍ୟାସରେ ସଂସ୍କୃତ ଶବ୍ଦ ଓ ସଂସ୍କୃତ ଶବ୍ଦ ରୂପର ବହୁଳ ପ୍ରୟୋଗ ହୋଇଥିବାରୁ ଏହା ପାଠ କଲେ ସହସା ସଂସ୍କୃତ ରଚନାର ଭ୍ରାନ୍ତ ଜାତ ହୁଏ, ଯଥା —

ନିଜପରିଜନତାପଧ୍ୱଂସନ-ବିଧୁ ସରସିଜ-ସୌରଭେ ।
କନକାଚଳ ନିଳୟ ସରସ-କେତକୀ-ଦଳ-ସନ୍ନିଭେ ।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୦୧)

ଗୀତଗୋବିନ୍ଦର ପଦ ପରି ମିତାକ୍ଷର ଯୁକ୍ତ ହେଲେ ମଧ୍ୟ ପ୍ରତିପଦ ଓ ପାଦର ଅକ୍ଷର ସଂଖ୍ୟା ସମାନ ନୁହେଁ; କିନ୍ତୁ ମାତ୍ରାସମତାଯୁକ୍ତ ଦୋଳାୟିତ ଅପଭ୍ରଂଶ ଛନ୍ଦ ଓ ଅନୁ-ପ୍ରାସର ମାଧୁର୍ଯ୍ୟ ହେତୁ ଏହାର ଆବୃତ୍ତି ଓ ଗାନ ଶ୍ରୁତିସୁଖକର । ଗୀତଟିରେ ପାଠକ

---

(୧୨) ଶ୍ରୀ ରାଧିକା ଜୟକୀର୍ତ୍ତନ, ଗୋ. କୃ. ଗ୍ରଂ., ପୃ-୧୯୪
(୧୩) ଶ୍ରୀକୃଷ୍ଣ ଜୟକୀର୍ତ୍ତନ, ଗୋ. କୃ. ଗ୍ରଂ., ପୃ-୧୯୬

ଆମୂଳଚୂଳ ସଂସ୍କୃତ ଶବ୍ଦ ସନ୍ଦୋହର ଗାମ୍ଭୀର୍ଯ୍ୟ ତଥା ମାଧୁର୍ଯ୍ୟ ଏବଂ ପଦଗୁଡ଼ିକର ଲୀଳାୟିତ ଗତି-ପ୍ରବାହ ଅନୁଭବ କରେ ।

ଗୀତଟିର ବର୍ଣ୍ଣନୀୟ ବସ୍ତୁ ପାରମ୍ପରିକ । ମହାଭାବ ଚିନ୍ତାମଣି ହ୍ଲାଦିନୀଶକ୍ତି ସ୍ୱରୂପା କୃଷ୍ଣପ୍ରେୟସୀ ରାଧାଙ୍କର ସୌନ୍ଦର୍ଯ୍ୟ, ଗୁଣ (ପରିଜନ ବାତ୍ସଲ୍ୟ, ସାଧ୍ୱୀତ୍ୱ) ଓ ସ୍ୱଗଣ ଶ୍ରେଷ୍ଠତ୍ୱ ସମ୍ପର୍କରେ ବର୍ଣ୍ଣନା କରି କବି ତାଙ୍କର ପାଦପଦ୍ମରେ ଦାସିତ୍ୱର ସୌଭାଗ୍ୟ ପ୍ରାର୍ଥନା କରିଛନ୍ତି । ରଚନା ତାଙ୍କର ଗୀତଗୋବିନ୍ଦ ଓ ଗୀତଗୋବିନ୍ଦକୁ ଅନୁସରଣ କରି ରଚିତ ହୋଇଥିବା ଅଜସ୍ର ପଦାବଳୀ ପରି କିପରି ସରସ, କାନ୍ତ ଓ କୋମଳ. ପୂର୍ବ ଉଦ୍ଧୃତ ପଦଟି ତାର ପ୍ରମାଣ ।

ଏ ପର୍ଯ୍ୟନ୍ତ ସଂସ୍କୃତ ରଚନା, ସଂସ୍କୃତର ଅନୁବାଦ, ସଂସ୍କୃତ ପ୍ରଭାବିତ ଓ ସଂସ୍କୃତ ବା ଅପଭ୍ରଂଶ ଗୀତ ଛନ୍ଦ ଆଦର୍ଶରେ ରଚିତ ଗୀତ ସମ୍ପର୍କରେ ଆଲୋଚନା କରାଗଲା । ଏ ଗୁଡ଼ିକରେ କବିଙ୍କର ନିଜସ୍ୱ ପ୍ରତିଭାର ସ୍ୱାକ୍ଷର ଆଶା କରିବା ବିଡ଼ମ୍ବନା ମାତ୍ର (ଯଦିଓ ବୈଷ୍ଣବ ଶାସ୍ତ୍ର, କାବ୍ୟ, ନାଟକ ଓ ବଙ୍ଗୀୟ ପଦାବଳୀରେ କବିଙ୍କର ଗଭୀର ପ୍ରବେଶର ସନ୍ଧାନ ମିଳେ) । କିନ୍ତୁ ଯେଉଁ ନିଜସ୍ୱ ଓଡ଼ିଆ ରଚନା ପାଇଁ କବି କାଳାତୀତ ଗୌରବର ଅଧିକାରୀ, ସେହି ରଚନା ସମ୍ପର୍କରେ ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚନା କରାଯାଉଛି ।



# ଷଷ୍ଠ ପରିଚ୍ଛେଦ

## ବିଭିନ୍ନ ବିଭାଗର ଆଲୋଚନା (୨)

## ଓଡ଼ିଆ ରଚନା

ବିଭିନ୍ନ ଦୃଷ୍ଟିକୋଣରୁ ଗୋପାଳକୃଷ୍ଣଙ୍କର ଗୀତ ସମୂହର ବିଭାଗୀକରଣ ସମ୍ପର୍କରେ ସୂଚନା ଦିଆଯାଇଥିଲେ ମଧ୍ୟ ଆଭିମୁଖ୍ୟ ଓ ବିଷୟବସ୍ତୁ ଘଟିତ ବିଭାଗୀକରଣ ଯେ ଆଲୋଚନାର ଅବସରରେ ମୁଖ୍ୟ ହୋଇ ଦଣ୍ଡାୟମାନ ହେବ, ଏ ସମ୍ପର୍କରେ ସଙ୍କେତ ଦିଆଯାଇଛି । କବିଙ୍କର କେତୋଟି ସଂସ୍କୃତ ରଚନା, ସଂସ୍କୃତର ଅନୁବାଦ, ବହୁ ସଂସ୍କୃତ ପ୍ରଭାବିତ ରଚନା ଏବଂ ସଂସ୍କୃତ ଓ ଅପଭ୍ରଂଶ ଛନ୍ଦ ପ୍ରଭାବିତ ରଚନା ଥିବାରୁ ପୂର୍ବ ପରିଚ୍ଛେଦରେ ସେଗୁଡ଼ିକର ଆଲୋଚନା କରାଗଲା । ଅବଶିଷ୍ଟ ଓଡ଼ିଆ ରଚନା ଗୁଡ଼ିକ ଯେ ସଂସ୍କୃତ ରଚନା ପ୍ରଭାବମୁକ୍ତ, ତାହା କହିଲେ ଠିକ୍ ହେବନାହିଁ । ତନ୍ମଧ୍ୟରୁ ଅଧିକାଂଶ ବିଶେଷତଃ ସାମ୍ପ୍ରଦାୟିକ ରଚନା ଗୁଡ଼ିକ ବୈଷ୍ଣବ ଗୋସ୍ୱାମୀମାନଙ୍କର ସଂସ୍କୃତ ରଚନା (ଦର୍ଶନ, କାବ୍ୟ, ନାଟକ, ଅଲଙ୍କାର, ସାମ୍ପ୍ରଦାୟିକ ସ୍ମୃତି ଗ୍ରନ୍ଥ) ଦ୍ୱାରା ପ୍ରଭାବିତ, ଯଦିଓ ବଙ୍ଗୀୟ ଓ ବ୍ରଜବୁଲି ପଦାବଳୀର ପରମ୍ପରା ଓ ପ୍ରଭାବ ଉପେକ୍ଷାର ବସ୍ତୁ ନୁହେଁ । ଏଠାରେ ଆଭିମୁଖ୍ୟ ଓ ବିଷୟବସ୍ତୁ ଘଟିତ ତଥା ରସଗତ ବିଭାଗୀକରଣ ଉପରେ ଧ୍ୟାନ ଦିଆଯାଇ କବିଙ୍କର ଅବଶିଷ୍ଟ ଓଡ଼ିଆ ଗୀତ ଗୁଡ଼ିକ ସମ୍ପର୍କରେ ଆଲୋଚନା କରାଯାଉଛି । ଆଭିମୁଖ୍ୟ ଓ ବିଷୟବସ୍ତୁ ଦୃଷ୍ଟିରୁ ଉଭୟ ସଂସ୍କୃତ ଓ ଓଡ଼ିଆ ରଚନା ବିଚାର୍ଯ୍ୟ ହେଲେ ମଧ୍ୟ ଯେଉଁ ସଂସ୍କୃତ ଓ ସଂସ୍କୃତ-ପ୍ରଭାବିତ ରଚନା ସମ୍ପର୍କରେ ଆଲୋଚନା ହୋଇଯାଇଛି, ଯଥା ସମ୍ଭବ ତା'ର ପୁନରାବୃତ୍ତି କରାଯାଇ ନାହିଁ ।

## ଆଭିମୁଖ୍ୟ ଓ ବିଷୟବସ୍ତୁ ଘଟିତ ବିଭାଗୀକରଣ

୧। ଶୁଦ୍ଧାଭକ୍ତି-ସମ୍ପ୍ରଦାୟ ସୁଲଭ ଭକ୍ତ ତଥା ସାଧକୋଚିତ ଗୀତ ସମୂହ

(କ) ଗୁରୁ ଓ ବୈଷ୍ଣବ ମହାଜନ ଏବଂ ସପାର୍ଷଦ ଶ୍ରୀଚୈତନ୍ୟ ବନ୍ଦନା ଓ ଚୈତନ୍ୟ ଲୀଳା ସମ୍ପର୍କୀୟ ଗୀତ;

(ଖ) ରାଧା ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ ଭକ୍ତକବିଙ୍କର ସ୍ତୁତି, ବନ୍ଦନା, ପ୍ରାର୍ଥନା, ସ୍ମରଣ, ନାମ, କୀର୍ତ୍ତନ ଓ କଣାଣ;

(ଗ) ସାଧକ ଭକ୍ତର ବୈରାଗ୍ୟ ଓ ଜୀବନର ପରମ ଲକ୍ଷ୍ୟବ୍ୟଞ୍ଜକ ମନଃଶିକ୍ଷା-ମୂଳକ ଗୀତ;

(ଘ) ଭକ୍ତର ଲାଳସା (ସ୍ୱାଭୀଷ୍ଟ ଓ ସାଧକ ଦେହୋଚିତ), ଲୌଲ୍ୟ, ଦୈନ୍ୟବୋଧିକା, ସ୍ୱାନୁଭୂତ (ଗୁରୁଭକ୍ତି ସମ୍ପର୍କୀୟ), ବିଳାପ (ବିରହାନୁଭୂତି ବ୍ୟଞ୍ଜକ) ଓ ବୈଷ୍ଣବ ତୀର୍ଥ ଦର୍ଶନାଭିଳାଷ ସୂଚକ ଗୀତ ।

ଶୁଦ୍ଧାଭକ୍ତି ସାଧନ ପରମ୍ପରାରେ ଭକ୍ତି ଓ ଭକ୍ତ୍ୟଙ୍ଗ ଆଚରଣ ସାଧକ ଓ ଭକ୍ତମାନଙ୍କର ପରମ ସମ୍ପଦ ହୋଇଥିବାରୁ ଏହି ଶୀର୍ଷରେ ଗୀତଗୁଡ଼ିକର ଉପକ୍ରମ ସ୍ୱରୂପ ଉତ୍ତମା ଭକ୍ତି ସମ୍ପର୍କରେ ଶାସ୍ତ୍ରୀୟ ସୂଚନା ଦେବା ଅସମୀଚୀନ ହେବ ନାହିଁ ।

**ଭକ୍ତିର ତାତ୍ତ୍ୱିକ ସଙ୍କେତ :**

ବୈଷ୍ଣବର ସାଧନ ପରମ୍ପରାରେ ଗୁରୁଙ୍କ କୃପାହେତୁ ସେବାଯୋଗ୍ୟ ସିଦ୍ଧ ଦେହ ଲାଭ କରି ଭଗବାନ୍ ଶ୍ରୀକୃଷ୍ଣ ଓ ତାଙ୍କର ସ୍ୱରୂପଶକ୍ତି ରାଧାଙ୍କ ପ୍ରତି ଅହୈତୁକ ଭକ୍ତି ବା ପ୍ରେମର ଦିବ୍ୟ ଅନୁଭୂତି ଲାଭ ହେଉଛି ବୈଷ୍ଣବ ଭକ୍ତର ସାଧ । ଏହି ଲକ୍ଷ୍ୟ ସାଧନ ନିମିତ୍ତ ବୈଷ୍ଣବର ଧର୍ମ ଆଚରଣ ସମ୍ପର୍କରେ ସାଧନ ଭକ୍ତିର ଅନ୍ତର୍ଭୁକ୍ତ ବୈଧୀ ଭକ୍ତିର ବିଭିନ୍ନ ଅଙ୍ଗ (ଭକ୍ତ୍ୟଙ୍ଗ) ଓ ରାଗାନୁଗାଭକ୍ତି ସମ୍ପର୍କରେ ଶ୍ରୀମଦ୍ ଭାଗବତ ଓ ବୈଷ୍ଣବ ଗୋସ୍ୱାମୀ-ମାନଙ୍କର (ରୂପ, ଜୀବ, ଗୋପାଳ ଭଟ୍ଟ, କୃଷ୍ଣଦାସ କବିରାଜ ଓ ବିଶ୍ୱନାଥ ଚକ୍ରବର୍ତ୍ତୀ ପ୍ରଭୃତି) ଦାର୍ଶନିକ ଓ ଚରିତ ଗ୍ରନ୍ଥମାନଙ୍କରେ (ଭକ୍ତିରସାମୃତ ସିନ୍ଧୁ, ଷଟ୍‌ସନ୍ଦର୍ଭ, ହରିଭକ୍ତି ବିଳାସ, ଚୈତନ୍ୟ ଚରିତାମୃତ, ରାଗବର୍ତ୍ମ ଚନ୍ଦ୍ରିକା ଇତ୍ୟାଦି) ବିସ୍ତୃତ ଉଲ୍ଲେଖ ରହିଛି ।

ଭକ୍ତି ଭଗବାନ୍‌ଙ୍କର ସ୍ୱରୂପ ଶକ୍ତିର ଏକ ପ୍ରକାଶ । ହ୍ଲାଦିନୀ ଶକ୍ତି ଭକ୍ତି ରୂପରେ ପ୍ରକାଶିତ (୧) । ମାୟା ଶକ୍ତିର ପ୍ରଭାବରେ ଜୀବଠାରେ ଭଗବାନ୍‌ଙ୍କ ପ୍ରତି ବିମୁଖତା ଆସେ । ଭଗବାନ୍‌ଙ୍କର ସ୍ୱରୂପ ଶକ୍ତିର ବିଶେଷ ବିଭବ ହ୍ଲାଦିନୀ ଶକ୍ତି ଦ୍ୱାରା ଏହି ବିମୁଖତା ଦୂର କରାଯାଇପାରେ । ହ୍ଲାଦିନୀ ବା ଆନନ୍ଦ ଶକ୍ତିର ଏକ କଣିକା ଜୀବଠାରେ ଅବସ୍ଥିତ, ଏହା ଭକ୍ତି ରୂପରେ ପ୍ରକାଶିତ ହୋଇପାରେ ।

ଭକ୍ତିମୂଳକ ଭଜନ (ଉପାସନା) ଜୀବ ପକ୍ଷରେ ସ୍ୱାଭାବିକ (୨) । ଜଗତ୍‌ରେ ଯେ ସବୁଠାରୁ ପ୍ରିୟ, ତା'ର ସେବାରେ ପ୍ରକୃତ ସୁଖ ମିଳେ । ଜୀବ ନିକଟରେ ଭଗବାନ୍‌ଙ୍କ-ଠାରୁ ପ୍ରିୟତମ କେହି ନାହିଁ । ସେଥିପାଇଁ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ଭଜନ ଆବଶ୍ୟକ, କାରଣ ଏହା ଜୀବକୁ ସର୍ବଶ୍ରେଷ୍ଠ ଓ ଶାଶ୍ୱତ ଆନନ୍ଦ ଦିଏ । ସେହି ହେତୁ ଭକ୍ତି କେବଳ ଉପାୟ ମାତ୍ର ନୁହେଁ, ଏହା ଜୀବର ଶ୍ରେଷ୍ଠ ଧର୍ମ (ପରଧର୍ମ), କାରଣ ଏହା ତାଙ୍କର

(୧) ଜୀବ ଗୋସ୍ୱାମୀ, ପରମାତ୍ମ ସନ୍ଦର୍ଭ, ଉମାରାୟଙ୍କର 'ଗୌଡ଼ୀୟ ବୈଷ୍ଣବୀୟ ରସେର ଅଲୌକିକତ୍ୱ' (ନୂତନ ସ., ୧୩୬୩), ପୃ. ୧୧୭

(୨) ଜୀ. ଗୋ., ଶ୍ରୀ ଭକ୍ତି ସନ୍ଦର୍ଭଃ, ସ: ଶ୍ରୀଭକ୍ତି ବିଳାସତୀର୍ଥ, ଶ୍ଳୋ. ୨, ପୃ-୬

ସ୍ୱଭାବୋଚିତ (୩) । ଏହାର ଅନୁଷ୍ଠାନ ଦ୍ୱାରା ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି । ଏହା ଯେପରି ଅହୈତୁକୀ, ସେହିପରି ଅପ୍ରତିହତା । ଏହା ପ୍ରତ୍ୟେକ ଭଜନ ପ୍ରଣାଳୀଠାରୁ ଊର୍ଦ୍ଧ୍ୱରେ । ଜୀବ ପକ୍ଷରେ ସର୍ବଶ୍ରେଷ୍ଠ ସର୍ବୋଚ୍ଚ ସତ୍ୟ ହେଉଛନ୍ତି ଭଗବାନ୍ । ଭକ୍ତି ଦ୍ୱାରା ଭଗବତ୍ ସାକ୍ଷାତ୍କାର ଘଟିଥାଏ । ଏହାଦ୍ୱାରା ଜ୍ଞାନ ଓ ବୈରାଗ୍ୟର ଉଦୟ ହୁଏ । ଜୀବର ପ୍ରକୃତ ଜ୍ଞାନ ହେଉଛି ଭଗବଦ୍ ଜ୍ଞାନ, ଯାହା ଭକ୍ତି ସହିତ ସମାନ । ଭକ୍ତି ମୋକ୍ଷଠାରୁ ଉଚ୍ଚ-ସ୍ଥାନୀୟ । ଭକ୍ତି ଦ୍ୱାରା ଭଗବତ୍ ସେବା ହେଉଛି ପ୍ରକୃତ ମୋକ୍ଷ । ଯୋଗ ହେଉଛି ଶାନ୍ତ ଭକ୍ତି । କର୍ମାର୍ପଣ ଦ୍ୱାରା କର୍ମ ଭକ୍ତିର ଉତ୍ପାଦକ ହୋଇଥାଏ । ବୈଷ୍ଣବର ସର୍ବମାନ୍ୟ ଶ୍ରୀମଦ୍ ଭାଗବତର କୈନ୍ଦ୍ରିକ ବସ୍ତୁ ହେଉଛି ଏହି ଭକ୍ତି ।

ଭକ୍ତିର ପ୍ରଥମ କାରଣ ହେଉଛି ଭଗବତ୍ କୃପା । ଭଗବାନ୍ଙ୍କର ହ୍ଲାଦିନୀ ଶକ୍ତିର ଅନ୍ତର୍ନିହିତ ଗୁଣ ହେଉଛି : ନିଜେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଅନ୍ୟକୁ ଆନନ୍ଦିତ କରିବା (ପ୍ରସାରର ଧର୍ମ ପରି) । ଭଗବାନ୍ଙ୍କ କୃପା ବା ଦିବ୍ୟ ଆତ୍ମ ସମର୍ପଣ ହେଉଛି ଭକ୍ତ-ଠାରେ ପ୍ରକାଶିତ ଭକ୍ତିର ସ୍ୱରୂପ । ସତ୍ସଙ୍ଗ, ସାଧୁସଙ୍ଗ ଓ ଭକ୍ତ-ସଙ୍ଗ ମାଧ୍ୟମରେ ଦିବ୍ୟ କୃପା ପ୍ରକାଶିତ ହୁଏ । ସାଧୁ ସଙ୍ଗରୁ ଭଜନରେ (ଉପାସନାରେ) ରୁଚି ଆସେ, ସେଥିରୁ ଆସେ ଶ୍ରଦ୍ଧା ଓ ବିଶ୍ୱାସ । ଏ ଗୁଡ଼ିକ ଉପାସନାର ପୂର୍ବାଙ୍ଗ । ଉପାସନା ମଧ୍ୟରେ ଭକ୍ତି ରୂପ ଉପାସନା ହେଉଛି ଶ୍ରେଷ୍ଠ । ଭକ୍ତି ଶବ୍ଦର ପ୍ରକୃତି ପ୍ରତ୍ୟୟ କଲେ ତାହା ହେବ : 'ଭଜ୍' ଧାତୁରୁ 'ତି' ପ୍ରତ୍ୟୟ । ଭଜ୍ ଧାତୁର ଅର୍ଥ ସମ୍ପୂର୍ଣ୍ଣ ସେବା । ଦେହ, ମନ ଓ ବାକ୍ୟରେ ଭଗବତ୍ ସେବା ହେଉଛି ଭକ୍ତିର ସ୍ୱରୂପ ଲକ୍ଷଣ । ପ୍ରବୃତ୍ତି ଓ ସ୍ୱଭାବ ଅନୁସାରେ ଭକ୍ତି ଆରୋପସିଦ୍ଧା, ସଙ୍ଗ ସିଦ୍ଧା ଓ ସ୍ୱରୂପସିଦ୍ଧା ହୋଇପାରେ । ସ୍ୱରୂପସିଦ୍ଧା ଭକ୍ତି ଭକ୍ତର ଅଲକ୍ଷ୍ୟରେ ଭଗବତ୍ ନାମ ଶ୍ରବଣ ବା କୀର୍ତ୍ତନ ଦ୍ୱାରା ଜାତ ହୋଇପାରେ । ଏହି ସ୍ୱରୂପ ସିଦ୍ଧା ଭକ୍ତି ସକୈତବା ଓ **ଅକୈତବା** ଭେଦରେ ଦୁଇ ପ୍ରକାର । ଯେତେବେଳେ ଭଗବତ୍ ପ୍ରୀତି ବ୍ୟତୀତ ଭକ୍ତର ଅନ୍ୟ କିଛି ଅଭିପ୍ରାୟ ରହେନାହିଁ, ସେତେବେଳେ ତାହା ହୁଏ ଅକୈତବା ବା **ଅକିଞ୍ଚନା** ଭକ୍ତି । ଏହା **ବୈଧୀ** ଓ **ରାଗାନୁଗା** ଭେଦରେ ଦୁଇପ୍ରକାର ହୋଇପାରେ (୪) ।

ରୂପ ଗୋସ୍ୱାମୀଙ୍କ 'ଭକ୍ତିରସାମୃତ ସିନ୍ଧୁ' ଭକ୍ତିତତ୍ତ୍ୱ ସମ୍ପର୍କରେ ବୈଷ୍ଣବ ଜଗତ୍ରେ ଏକ ପ୍ରାମାଣିକ ଗ୍ରନ୍ଥ । ଏହି ଗ୍ରନ୍ଥର ପୂର୍ବ ବିଭାଗର ଚାରିଟି ଲହରୀରେ ସେ ଭକ୍ତିର ବିଭିନ୍ନ ବିଭାଗ ସମ୍ପର୍କରେ ଆଲୋଚନା କରିଛନ୍ତି, ଯଥା—

ସାମାନ୍ୟ ଭକ୍ତି, ସାଧନ ଭକ୍ତି, ଭାବଭକ୍ତି ଓ ପ୍ରେମଭକ୍ତି । ସାମାନ୍ୟ ଭକ୍ତି ଅପେକ୍ଷା ଉତ୍ତମା ଭକ୍ତିର ମହତ୍ତ୍ୱ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ସେ କହିଛନ୍ତି ଯେ ଅନ୍ୟ ଅଭିଳାଷ ଶୂନ୍ୟ ହୋଇ ଜ୍ଞାନ କର୍ମାଦି ଦ୍ୱାରା ଅନାବୃତ୍ତ ଅଥଚ ଅନୁକୂଳାତ୍ମକ ଶ୍ରୀକୃଷ୍ଣ

(୩) S. K. De, History of Vaisnav Faith and Movement in Bengal, 2nd. edn, 1961, P. 355

(୪) Ibid, PP. 173 & 355-369.

ଅନୁଶୀଳନକୁ ଉତ୍ତମା ଭକ୍ତି କୁହାଯାଏ (୫)। ରୂପ ଗୋସ୍ୱାମୀଙ୍କର ଏ ମତ 'ନାରଦ ପଞ୍ଚରାତ୍ର' ଓ ଶ୍ରୀମଦ୍ ଭାଗବତ ଦ୍ୱାରା ସମର୍ଥିତ। 'ନାରଦ ପଞ୍ଚରାତ୍ର'ରେ ଉଲ୍ଲେଖ ଅଛି ଯେ 'ସର୍ବୋପାଧି' (ଅନ୍ୟାଭିଲାଷିତା) ପରିଶୂନ୍ୟ ଓ ଭଗବତ୍ ପରାୟଣ ହୋଇ (ଆନୁକୂଲ୍ୟମୟ ଚେଷ୍ଟାଦ୍ୱାରା) ନିର୍ମଳ (ଜ୍ଞାନକର୍ମାଦି ଦ୍ୱାରା ଅନାବୃତ୍ତ) ଇନ୍ଦ୍ରିୟ (ଦେହ ଓ ଅନ୍ତଃକରଣ) ଦ୍ୱାରା ହୃଷୀକେଶଙ୍କର (ଶ୍ରୀକୃଷ୍ଣଙ୍କର) ସେବା ହିଁ ଭକ୍ତି ବୋଲି କଥିତ (୬)। ଶ୍ରୀମଦ୍ ଭାଗବତରେ ଉଲ୍ଲେଖ ଅଛି ଯେ 'ଅହୈତୁକୀ' (ଅନ୍ୟାଭିଳାଷିତା ଶୂନ୍ୟ) ଓ ବ୍ୟବଧାନ ରହିତ (ଜ୍ଞାନକର୍ମାଦି ଦ୍ୱାରା ଅନାବୃତ୍ତ) ଯେଉଁ ଭକ୍ତି ପୁରୁଷୋତ୍ତମଙ୍କ ବିଷୟରେ ଅନୁଷ୍ଠିତ ହୁଏ; ଯେଉଁ ଭକ୍ତିର ଉଦୟରେ ସାଲୋକ୍ୟ (ସମାନ ଲୋକରେ ବାସ), ସାର୍ଷ୍ଟି (ସମାନ ଐଶ୍ୱର୍ଯ୍ୟ), ସାମୀପ୍ୟ (ସନ୍ନିଧିରେ ବାସ), ସାରୂପ୍ୟ (ଚତୁର୍ଭୁଜତ୍ୱ ଆଦି) ଓ ଐକ୍ୟ (ନିର୍ବାଣ ମୁକ୍ତି) ପ୍ରଭୃତି ଭଗବାନ ଭକ୍ତମାନଙ୍କୁ ଦେବାକୁ ଗଲେ ମଧ୍ୟ ସେମାନେ ଭଗବତ୍ ସେବା ବ୍ୟତୀତ ଅନ୍ୟ ବସ୍ତୁ ସକଳ ପ୍ରତ୍ୟାଖ୍ୟାନ କରନ୍ତି, ସେହି ଭକ୍ତି ଯୋଗ ହିଁ ଆତ୍ୟନ୍ତିକ (ପୁରୁଷାର୍ଥ, ମହାବୀର୍ଯ୍ୟବାନ୍-ଅତଏବ ଉତ୍ତମ) ବୋଲି କଥିତ (୭)। ଉତ୍ତମା ଭକ୍ତିର ଛ'ଟି ଲକ୍ଷଣ, ଯଥା — କ୍ଳେଶଘ୍ନତ୍ୱ (ପାପ, ପାପବୀଜ ଓ ଅବିଦ୍ୟା ବିନାଶ କରିବା); ଶୁଭଦତ୍ୱ (ଭକ୍ତିଦ୍ୱାରା ସର୍ବଜଗତର ପ୍ରିୟତା ବିଧାନ, ଜଗତ୍ ଦ୍ୱାରା ଭକ୍ତି ବିଷୟକ ଅନୁରକ୍ତି, ସଦ୍‌ଗୁଣ ଓ ସୁଖ); ମୋକ୍ଷ ଲଘୁତାକାରିତ୍ୱ (ଭଗବତ୍ ରତିର ଉଦୟରେ ପୁରୁଷାର୍ଥ ତୁଚ୍ଛ ବୋଧ ହେବା); ସୁଦୁର୍ଲଭତ୍ୱ (ଜ୍ଞାନ ବଳରେ ମୁକ୍ତି, ଯଜ୍ଞାଦି ପୁଣ୍ୟ ଫଳରେ ଭୁକ୍ତି ସୁଲଭ, କିନ୍ତୁ ସହସ୍ର ସାଧନରେ ହରିଭକ୍ତି ସୁଦୁର୍ଲଭ); ସାନ୍ଦ୍ରାନନ୍ଦ ବିଶେଷାତ୍ମତ୍ୱ ଓ ଶ୍ରୀକୃଷ୍ଣାକର୍ଷକତା।

**ସାଧନ ଭକ୍ତି :**

ଉତ୍ତମା ଭକ୍ତି ତିନି ଭାଗରେ ବିଭକ୍ତ, ଯଥା— ସାଧନ ଭକ୍ତି, ଭାବ ଭକ୍ତି ଓ ପ୍ରେମଭକ୍ତି। ଜୀବ ଗୋସ୍ୱାମୀଙ୍କ ମତରେ ଏହା ସାଧନ ଓ ସାଧ୍ୟରୂପା ଭେଦରେ ଦ୍ୱିବିଧ, ସାଧନ ଭକ୍ତି ଦୁଇ ପ୍ରକାର—କ୍ଳେଶଘ୍ନୀ ଓ ଶୁଭଦା; ଭାବଭକ୍ତି ଦ୍ୱିବିଧ—ମୋକ୍ଷଲଘୁତା କାରିଣୀ ଓ ସୁଦୁର୍ଲଭା ଏବଂ ପ୍ରେମଭକ୍ତି ମଧ୍ୟ ଦ୍ୱିବିଧ, ଯଥା—ସାନ୍ଦ୍ରାନନ୍ଦ ବିଶେଷାତ୍ମା ଓ ଶ୍ରୀକୃଷ୍ଣାକର୍ଷିଣୀ (୮)। ଉତ୍ତମା ଭକ୍ତି କୃତି ସାଧ୍ୟା ଅର୍ଥାତ୍ ଇନ୍ଦ୍ରିୟ ଦ୍ୱାରା ଅନୁଷ୍ଠିତ ହେଲେ ସାଧନ ଭକ୍ତି ନାମରେ ଅଭିହିତ ହୁଏ। ଶ୍ରୀମଦ୍ ଭାଗବତର ସପ୍ତମ ସ୍କନ୍ଧର ପ୍ରଥମ ଅଧ୍ୟାୟରେ ଏହି ଭକ୍ତି (ସାଧନ ଭକ୍ତି) ସମ୍ପର୍କରେ ବ୍ୟାଖ୍ୟା କରି ଯାଇଛି। ଶ୍ରୀମଦ୍‌ଭାଗବତର ଅନୁସରଣରେ ରୂପ ଗୋସ୍ୱାମୀ ଏହାକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି, ଯଥା—ବୈଧୀ ଓ ରାଗାନୁଗା। ଉଭୟ ପ୍ରକାର ଭକ୍ତି ବାହ୍ୟ ଉପାୟ ଦ୍ୱାରା ସାଧିତ ହୁଏ। ବୈଷ୍ଣବ ଶାସ୍ତ୍ରର ବିଧି ବା ଅନୁଶାସନରୁ ଭକ୍ତିମୂଳକ କାର୍ଯ୍ୟ କରିବାର ପ୍ରେରଣା ମିଳିଲେ ତାହାକୁ ବୈଧୀ-

(୫) ରୂ: ଗୋ., ଭ. ର. ସି: ସିଂ, ପୂର୍ବବିଭାଗଃ, ୧ମ ଲହରୀ, ଶ୍ଳୋ: ୧୧, ପୃ-୧୧
(୬) ତତ୍ରୈବ, ପୃ-୧୨
(୭) ଶ୍ରୀ. ଭା., ୩। ୨୯। ୧୩-୧୪
(୮) ରୂ. ଗୋ., ଭ. ର. ସୃ. ସିଂ, ପୂର୍ବବିଭାଗଃ, ୧ମ ଲହରୀ, ଶ୍ଳୋ. ୧୭, ପୃ-୧୩

ସାଧନ ଭକ୍ତି କୁହାଯାଏ (ଶାସ୍ତ୍ର ଏଠାରେ ଶ୍ରୀମଦ୍ ଭାଗବତ୍) ! ଶାସ୍ତ୍ରର ବିଧି ଅନୁସୃତ ହୋଇଥିବାରୁ ଏହାକୁ 'ବୈଧୀ' କୁହାଯାଏ । ବୈଷ୍ଣବ ସ୍ମୃତିଗ୍ରନ୍ଥ 'ହରିଭକ୍ତି ବିଳାସ'ରେ ବିସ୍ତୃତ ଭାବରେ ବୈଧୀ ସାଧନ ଭକ୍ତିର ବିଭିନ୍ନ ଅଙ୍ଗର ସଂଜ୍ଞା ଦିଆ ଯାଇଛି । ରୂପ ଗୋସ୍ୱାମୀ ତାକୁ ସଂକ୍ଷିପ୍ତ କରି ତା'ର ସଂଖ୍ୟା ଚଉଷଠି ବୋଲି ନିର୍ଦ୍ଦିଷ୍ଟ କରିଛନ୍ତି । ତନ୍ମଧ୍ୟରୁ କେତୋଟି ହେଉଛି—ଗୁରୁପଦାଶ୍ରୟ, ଶ୍ରୀକୃଷ୍ଣ ମନ୍ତ୍ରରେ ଦୀକ୍ଷାଗ୍ରହଣ ପୂର୍ବକ ଭାଗବତ ଧର୍ମାଦି ଶିକ୍ଷା, ପ୍ରୀତିପୂର୍ବକ ଗୁରୁସେବା, ସାଧୁମାର୍ଗାନୁସରଣ, ସଦ୍ଧର୍ମଜିଜ୍ଞାସା (ଭଜନର ଗୀତ ବିଷୟକ ପ୍ରଶ୍ନ), ଭୋଗାଦିତ୍ୟାଗ (କୃଷ୍ଣଙ୍କ ପାଇଁ ଭୋଗ, ଲୋକ, ବିତ୍ତ ଓ ପୁତ୍ରାଦି ତ୍ୟାଗ), ଦ୍ୱାରକା ଓ ପୁରୁଷୋତ୍ତମାଦିରେ ବାସ (ତୀର୍ଥ ବାସ), ବହୁ ଗ୍ରନ୍ଥାଭ୍ୟାସ-ବ୍ୟାଖ୍ୟା-ବାଦ-ବିବର୍ଜନ (ଧର୍ମଶାସ୍ତ୍ର ବ୍ୟତୀତ), ବୈଷ୍ଣବ ଚିହ୍ନ ଧାରଣ, ଦଣ୍ଡବତ୍ ନତି ବା ପ୍ରଣାମ, ଅର୍ଚ୍ଚନା, ଇଷ୍ଟ ବିଗ୍ରହ ପରିକ୍ରମା, ଜପ (ମନ୍ତ୍ରର ଲଘୁ ଉଚ୍ଚାରଣ), ଗୀତ (ନାମଗାନ), ନାମସଂକୀର୍ତ୍ତନ, ବିଜ୍ଞପ୍ତି (ପ୍ରାର୍ଥନାତ୍ମିକା, ଦୈନ୍ୟବୋଧିକା ଓ ଲାଲସାମୟୀ), ସ୍ତବପାଠ, ଶ୍ରବଣ (ଭଗବତ୍ ନାମ, ଚରିତ ଓ ଗୁଣାଦିର), ସ୍ମରଣ, ଧ୍ୟାନ (ରୂପ, ଗୁଣ, କ୍ରୀଡ଼ା ଓ ସେବାର ସୂକ୍ଷ୍ମ ଚିନ୍ତନ), ଦାସ୍ୟ, ସଖ୍ୟ, ଆତ୍ମନିବେଦନ, କୃଷ୍ଣାର୍ଥେ ଅଖିଳ ଚେଷ୍ଟା, ଶରଣାପତ୍ତି (ରକ୍ଷକତ୍ୱ ବରଣ, ଆଶ୍ରୟ ଗ୍ରହଣ), ନୈବେଦ୍ୟ ଆସ୍ୱାଦ, ପାଦ୍ୟ ଆସ୍ୱାଦ, ହରିବାସର ସମ୍ମାନ (ଏକାଦଶୀ, ହରିଜନ୍ମ ଇତ୍ୟାଦି), ଶ୍ରୀକୃଷ୍ଣ ବିମୁଖ ଜନର ସଙ୍ଗ ତ୍ୟାଗ, ସାଧୁସଙ୍ଗ, ବ୍ୟବହାରରେ କୃପଣତା ତ୍ୟାଗ, ଅନ୍ୟଦେବାନବଜ୍ଞା, ସେବା-ନାମାପରାଧ ବର୍ଜନ, ଭଗବନ୍ନିନ୍ଦାରେ ଅସହିଷ୍ଣୁତା, ତୁଳସୀ ସେବା, ଶାସ୍ତ୍ରସେବା (ଶ୍ରୀମଦ୍ ଭାଗବତ୍ ଆଦିପାଠ), ମଥୁରା ସେବା, ବୈଷ୍ଣବ ସେବା, ଶ୍ରଦ୍ଧାରେ ଶ୍ରୀମୂର୍ତ୍ତି ସେବା ଇତ୍ୟାଦି । ଶ୍ରୀମୂର୍ତ୍ତି ଶ୍ରୀମଦ୍‌ଭାଗବତ, ଭକ୍ତ, ଶ୍ରୀନାମ ଓ ମଥୁରା ଏ ପାଞ୍ଚଟି ଦୁରୂହ ଓ ଅଦ୍ଭୁତ ବୀର୍ଯ୍ୟଶାଳୀ । କୃଷ୍ଣଦାସ କବିରାଜ ତାଙ୍କର ଚୈତନ୍ୟଚରିତାମୃତରେ ପାଞ୍ଚଟି ଭକ୍ତ୍ୟଙ୍ଗ କଥା କହିଛନ୍ତି, ଯଥା—ସାଧୁସଙ୍ଗ, ନାମକୀର୍ତ୍ତନ, ଭାଗବତ ଶ୍ରବଣ, ମଥୁରା ବାସ ଓ ଶ୍ରଦ୍ଧାରେ ଶ୍ରୀମୂର୍ତ୍ତି ସେବା । ଏଥି ମଧ୍ୟରୁ ଯେ କୌଣସିଟି ଭକ୍ତି ସଞ୍ଚାର କରିପାରେ ।

**ରାଗାନୁଗା ଓ ରାଗାତ୍ମିକା :**

ଶ୍ରୀକୃଷ୍ଣଙ୍କ ବାସ୍ତବ ସମ୍ପର୍କରେ ଆସିଥିବା ବ୍ରଜବାସୀମାନଙ୍କର ଭକ୍ତିର ପରମ୍ପରା ଓ ଆସକ୍ତିର ଅନୁସରଣ ବା ଅନୁଗମନ କରିଯିବାକୁ ରାଗାନୁଗା କୁହାଯାଏ । ଇଷ୍ଟବସ୍ତୁରେ ସ୍ୱାଭାବିକ ପରମାବେଶମୂଳକ ପ୍ରେମମୟ ତୃଷ୍ଣାକୁ ରାଗ କୁହାଯାଏ । ସେହି ରାଗମୟୀ ଭକ୍ତି ହିଁ ରାଗାତ୍ମିକା (୯) । ଶାସ୍ତ୍ରର ନିୟମାନୁଯାୟୀ ଭକ୍ତିର ଉପଲବ୍ଧି ହେଉଛି ବୈଧୀଭକ୍ତି; କିନ୍ତୁ ରାଗାନୁଗା ଭକ୍ତିର ଉପଲବ୍ଧି ହେଉଛି ବ୍ରଜବାସୀଙ୍କର ଭାବୋପଲବ୍ଧିର ଲୋଭ ମାଧ୍ୟମରେ ଉପଲବ୍ଧି, ଶ୍ରୀକୃଷ୍ଣ ଓ ତାଙ୍କର ପ୍ରିୟତମ ଓ ପ୍ରିୟତମାମାନଙ୍କର ସ୍ମରଣ ବା ଭକ୍ତି ପୂର୍ଣ୍ଣ ଧ୍ୟାନ, ସାଧକ ବା ସିଦ୍ଧ ଭାବରେ ବ୍ରଜରେ ଦୈହିକ ବା ମାନସିକ ଭାବରେ ବାସ । ଏହି ପ୍ରଣାଳୀରେ ଭକ୍ତିର ଉପଲବ୍ଧି ପାଇଁ ଲିପ୍ସୁ ବ୍ୟକ୍ତି ରାଧାଭାବ ବା ସଖୀଭାବ

(୯) ତତ୍ରୈବ ଶ୍ଳୋ. ୭୯, ପୃ-୮୯

ବା ମଞ୍ଜରୀ ଭାବ (ଦାସୀଭାବ) ଇତ୍ୟାଦିର ଆଶ୍ରୟ ନିଏ । ମୁଖ୍ୟତଃ କେବଳ ସ୍ମରଣ ଦ୍ୱାରା ଭାବର ଉପଲବ୍ଧି ହୋଇଥାଏ (ରାଗାନୁଗାୟାଂ ସ୍ମରଣସ୍ୟ ମୁଖ୍ୟତ୍ୱଂ), ଶାସ୍ତ୍ରର ପ୍ରତ୍ୟକ୍ଷ ଅନୁଶାସନ ଦ୍ୱାରା ବା ଆତ୍ମାରେ ସ୍ୱତଃସ୍ଫୂର୍ତ୍ତି ଭାବରେ ଏହାର ଉଦୟ ହୁଏ ନାହିଁ । ବ୍ରଜରେ କୃଷ୍ଣଙ୍କ ସହିତ ସମ୍ପୃକ୍ତ ବ୍ୟକ୍ତିମାନଙ୍କର ଭାବ ଓ କ୍ରିୟାର ଅନୁକରଣ ଦ୍ୱାରା ଏହା ଜାତ ହୁଏ, ସେଥିପାଇଁ ଏହା ସାଧନ ଭକ୍ତିର ଏକ ସ୍ତର (୧୦) । ଏହା ହୃଦୟର ସ୍ୱାଭାବିକ ପ୍ରବଣତାର ଅନୁସରଣ କରେ । ଭକ୍ତ ଗଭୀର ଧ୍ୟାନ ଦ୍ୱାରା କୃଷ୍ଣଙ୍କର ସମଗ୍ର ବୃନ୍ଦାବନଲୀଳା ଦର୍ଶନ ଏବଂ ନିଜ କଳ୍ପନାରେ ତନ୍ମଧ୍ୟରେ ପ୍ରବେଶ କରିବାକୁ ଚାହେଁ । କୃଷ୍ଣଙ୍କର ପ୍ରେମିକାର ଭୂମିକାରେ ବୈଷ୍ଣବ ସାହିତ୍ୟରେ ବର୍ଣ୍ଣିତ ଅନୁଭୂତି ଗୁଡ଼ିକୁ ବିଭିନ୍ନ ଭାବରେ ଅନୁଭବ କରେ (ବୈଧୀ ଭକ୍ତିରେ ଏ ପ୍ରକାର ଭାବାତ୍ମକ ଅନୁଭୂତିର ପ୍ରୟୋଜନ ନାହିଁ) । ବିଭିନ୍ନ ବ୍ୟକ୍ତିଗତ ସମ୍ପର୍କ ମଧ୍ୟରେ (ପୁତ୍ର, ଆତ୍ମୀୟ, ପ୍ରେମିକ, ବନ୍ଧୁ ଓ ସେବକ ରୂପେ) ପ୍ରଦର୍ଶିତ ନିବିଡ଼ ଭକ୍ତଭାବ ରୂପରେ ଶ୍ରୀକୃଷ୍ଣଙ୍କ ପ୍ରତି ନିବିଡ଼ ମାନବିକ ଅନୁଭୂତିର ଭାବାତ୍ମକ ମହିମାନ୍ୱିତ ରାଗାନୁଗା ଭକ୍ତର ଅନ୍ତର୍ଭୁକ୍ତ । ଏଥିରେ ଭକ୍ତ ଉପାସ୍ୟଙ୍କ ସହିତ ପ୍ରତ୍ୟକ୍ଷ ବ୍ୟକ୍ତିଗତ ସମ୍ପର୍କ ରଖିବାକୁ ଚାହେଁ ନାହିଁ, କିନ୍ତୁ ଆନନ୍ଦମୟ ଭକ୍ତଭାବ ରୂପରେ ନିଜ ଅନ୍ତରରେ ତାଙ୍କର ମଧୁରଲୀଳା ଅନୁକରଣ ଓ ଉପଲବ୍ଧି କରି ସେଥିପାଇଁ ନିଜକୁ ପ୍ରସ୍ତୁତ କରେ ଏବଂ ନିରବଚ୍ଛିନ୍ନ ସାଧନାଦ୍ୱାରା ସର୍ବଶେଷରେ ଏହି ରସାନୁଭୂତିରେ ନିଜକୁ ହଜାଇ ଦିଏ ।

ରାଗାତ୍ମିକା ଭକ୍ତି କାମରୂପା ଓ ସମ୍ବନ୍ଧରୂପା ଏହି ଦୁଇ ଭାଗରେ ବିଭକ୍ତ ହେବା ପରି ରାଗାନୁଗା ଭକ୍ତି ମଧ୍ୟ କାମାନୁଗା ଓ ସମ୍ବନ୍ଧାନୁଗା ଏହି ଦୁଇ ଭାଗରେ ବିଭକ୍ତ ହୋଇ ପାରେ । ବ୍ରଜ ସ୍ତ୍ରୀଗଣ କାମରୂପାର ଦୃଷ୍ଟାନ୍ତ ଏବଂ ଶ୍ରୁତିଗଣ କାମାନୁଗାର ଦୃଷ୍ଟାନ୍ତ । ଯେଉଁ ଭକ୍ତି ପିତୃତ୍ୱ ଓ ସଖ୍ୟ ପ୍ରଭୃତି ସମ୍ବନ୍ଧର ବିଶେଷ ଚିନ୍ତା କରାଇ ସାଧକର ନିଜସ୍ୱ ରୂପରେ ସେହି ଜାତୀୟ ଚିନ୍ତାର ଆରୋପ କରାଏ (ଅର୍ଥାତ୍ ମୁଁ ଶ୍ରୀକୃଷ୍ଣଙ୍କର ପିତୃବତ୍ ଲାଳନକର୍ତ୍ତା, ସଖାବତ୍ ବିଶ୍ରମ୍ଭ ପାତ୍ର ଇତ୍ୟାଦି ଅଭିମାନ) ତାହାକୁ ସମ୍ବନ୍ଧାନୁଗା ଭକ୍ତି କହନ୍ତି । ନାରାୟଣବ୍ୟୂହ ସ୍ତବରେ ଏହି ଭକ୍ତିର ପ୍ରଶଂସାସୂଚକ ଶ୍ଳୋକ ରହିଛି, ଯଥା—

> ପତି-ପୁତ୍ର-ସୁହୃଦ୍ ଭ୍ରାତୃ ପିତୃବନ୍ମିତ୍ରବଦ୍ଧରିମ୍ ।
> ଯେ ଧ୍ୟାୟନ୍ତି ସଦୋଦ୍ୟୁକ୍ତା ସ୍ତେଭ୍ୟୋପୀହ ନମୋ ନମଃ । (୧୧)

ଅର୍ଥାତ୍ ଯେଉଁମାନେ ସର୍ବଦା ପ୍ରଯତ୍ନ ସହକାରେ ଶ୍ରୀହରିଙ୍କୁ ପତି, ପୁତ୍ର, ସୁହୃତ୍, ଭ୍ରାତା, ପିତା ଓ ମିତ୍ର ରୂପେ ଧ୍ୟାନ କରନ୍ତି, ସେମାନଙ୍କୁ ନମସ୍କାର କରୁଛି । ଶ୍ରୀକୃଷ୍ଣ ଓ ତାଙ୍କର ଭକ୍ତ ମାନଙ୍କର ଅନୁକମ୍ପା ଫଳରେ ରାଗମାର୍ଗରେ ପ୍ରବୃତ୍ତି ହୁଏ । ବୈଧୀମାର୍ଗରେ ବେଳେବେଳେ କର୍ମାଦି ସମର୍ପଣ ସେହି ପ୍ରବୃତ୍ତିର ଦ୍ୱାର ସ୍ୱରୂପ ହେଲେ ମଧ୍ୟ ରାଗାନୁଗାରେ କୃପାହିଁ କେବଳ କାରଣ ହୋଇଥାଏ । ବଲ୍ଲଭସମ୍ପ୍ରଦାୟ ଏହି ରାଗାନୁଗାମାର୍ଗକୁ 'ପୁଷ୍ଟିମାର୍ଗ' ବୋଲି କହିଥାନ୍ତି ।

---

(୧୦) ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'ରାଗବର୍ତ୍ମ ଚନ୍ଦ୍ରିକା'ରେ ଭକ୍ତି ସମ୍ପର୍କୀୟ ଆଲୋଚନା ।
(୧୧) ବୃ. ଗୋ., ଭ. ର. ସୃ. ସିଂ, ପୃ-୯୪ରୁ ଉଦ୍ଧୃତ ।

## ଭାବ ଭକ୍ତି :

ସାଧନଭକ୍ତି କିଞ୍ଚିତ୍ ଅଧିକ ପରିପକ୍ୱତା ଲାଭ କଲେ ଭାବଭକ୍ତି ହୁଏ । ଏହା ସାଧନାଭିନିବେଶ କିମ୍ବା ଶ୍ରୀକୃଷ୍ଣ ପ୍ରସାଦ କିମ୍ବା ଶ୍ରୀକୃଷ୍ଣ-ଭକ୍ତ ପ୍ରସାଦରୁ ଜାତ ହୋଇପାରେ (କୃଷ୍ଣ କୃପୟା ତଦ୍‌ଭକ୍ତ କୃପୟା ବା) । ଏହି ଭାବଭକ୍ତି ନିକଟରେ ମୁକ୍ତି ସୁଖ ତୁଚ୍ଛ ଅଟେ । ଏହା ଭଗବାନଙ୍କର ପ୍ରକାଶକ ଓ ଆନନ୍ଦ ଦାୟକ ବୋଲି ଅପ୍ରାକୃତ । ଏହା ଶୁଦ୍ଧ ସତ୍ତ୍ୱ ବିଶେଷ ହ୍ଲାଦିନୀର ସାର ସ୍ୱରୂପ (୧୨) । ଭାବଭକ୍ତ ପ୍ରେମରସ ବା ପ୍ରେମନ୍ ସ୍ତରରେ ପହଞ୍ଚି ନଥିବା ଅନ୍ତର୍ନିହିତ ଭାବ ଉପରେ ପ୍ରତିଷ୍ଠିତ । ଏହା ସାଧନ ଭକ୍ତିରୁ ଜାତ ହେଲେ ମଧ୍ୟ ପ୍ରତ୍ୟକ୍ଷ ଭାବରେ ବାହ୍ୟ ସାଧନ ପ୍ରଣାଳୀର ଫଳ ନୁହେଁ । ଏହା ସ୍ୱତଃସ୍ଫୂର୍ତ୍ତି ଭାବରେ ବ୍ୟକ୍ତିଗତ ଅନୁଭୂତି ରୂପରେ ଜାତ ହୁଏ । ଏହା ପ୍ରେମର ଊଷା ସ୍ୱରୂପ ଧାରଣ କରେ(୧୩) । ଏହା ଚିତ୍ତର ସ୍ନିଗ୍ଧତା ଓ ରୁଚିକୁ ଜାତ । ରୁଚି ଏ କ୍ଷେତ୍ରରେ ଭଗବତ୍ ପ୍ରାପ୍ତି ଅଭିଳାଷ କିମ୍ବା ତାଙ୍କର ଆନୁକୂଲ୍ୟ ଅଭିଳାଷ କିମ୍ବା ସୌହାର୍ଦ୍ଦାଭିଳାଷ ରୂପ ଗ୍ରହଣ କରିପାରେ । ପ୍ରେମକଳ୍ପବୃକ୍ଷର ପ୍ରଥମାବସ୍ଥା ଭାବ ରୂପ ଅଙ୍କୁର ବା ଭାବଭକ୍ତିର ବୀଜ ପ୍ରୋଦ୍ଭୂତ ହେଲେ ଭକ୍ତଠାରେ କ୍ଷାନ୍ତି (କ୍ଷୋଭର କାରଣ ସତ୍ତ୍ୱେ ଅକ୍ଷୁବ୍‌ଧତା), ଅବ୍ୟର୍ଥକାଲତା (ସର୍ବଦା ସ୍ତବ, ସ୍ମରଣ ଓ ପ୍ରଣାମ ସତ୍ତ୍ୱେ ଭକ୍ତର ଅତୃପ୍ତି ଏବଂ ଅଶ୍ରୁ ବିସର୍ଜନ କରି କରି ସମଗ୍ର ଆୟୁଃକାଳ ଭଗବଦ୍ ପଦାରବିନ୍ଦରେ ସମର୍ପଣ କରିବା), ବିଷୟ ବିରକ୍ତି, ମାନଶୂନ୍ୟତା, ଆଶାବନ୍ଧ, (ଶ୍ରୀକୃଷ୍ଣ ପ୍ରାପ୍ତିର ଦୃଢ଼ ସମ୍ଭାବନା), ସମୁତ୍କଣ୍ଠା, ନାମ ଗାନରେ ରୁଚି, ଉପାସ୍ୟଙ୍କ ଗୁଣ ବ୍ୟାଖ୍ୟାନରେ ଆସକ୍ତି, ଉପାସ୍ୟଙ୍କ ବାସସ୍ଥଳୀରେ (ବ୍ରଜ, ମଥୁରା) ବାସ ପ୍ରଭୃତି ଅନୁଭାବ ଗୁଡ଼ିକ ସଙ୍କେତ ଭଳି ଦେଖାଦିଏ ।

## ପ୍ରେମ ଭକ୍ତି :

ପ୍ରେମଭକ୍ତି ହେଉଛି ଭାବଭକ୍ତିର ପରିପକ୍ୱ ଅବସ୍ଥା । ଯେଉଁ ଭାବଭକ୍ତି ପ୍ରଥମ ଦଶାରୁ ଚିତ୍ତର ଅତିଶୟ ସ୍ନିଗ୍ଧତା (ଆଦ୍ରତା) ସମ୍ପାଦନ କରେ, ପରମାନନ୍ଦ ପ୍ରାପ୍ତି କରାଏ, ଓ ଶ୍ରୀକୃଷ୍ଣଂକ ପ୍ରତି ସାତିଶୟ ମମତା ପ୍ରଦାନ କରାଏ ସେ ଭାବକୁ ପ୍ରେମ କୁହାଯାଏ(୧୪) । ଭାବ ବିକଶିତ ହୋଇ ପ୍ରେମରେ ସାନ୍ଦ୍ର ହୁଏ ଓ ଶ୍ରୀକୃଷ୍ଣଂକଠାରେ ଅନନ୍ୟ ମମତା ପ୍ରକାଶ ପାଏ । ଏହା ବୈଧୀ ବା ରାଗାନୁଗା ଭାବରୁ କିମ୍ବା ଉପାସ୍ୟଂକ ପ୍ରସାଦରୁ ଜାତ ହୋଇ ପାରେ । ଏହି ପ୍ରସାଦ ଶୁଦ୍ଧ କେବଳ ହୋଇପାରେ କିମ୍ବା ତାଂକର ମାହାତ୍ମ୍ୟଜ୍ଞାନର ଫଳ ହୋଇ ପାରେ । ପ୍ରେମ ଭକ୍ତିର ଉଦୟର କ୍ରମଟି ହେଉଛି—ଶ୍ରଦ୍ଧା, ସାଧୁସଙ୍ଗ; ଭଜନ କ୍ରିୟା, ଅନର୍ଥନିବୃତ୍ତି, ନିଷ୍ଠା, ରୁଚି, ଆସକ୍ତି, ଭାବ ଓ ପ୍ରେମ । ସ୍ନେହ, ପ୍ରଣୟାଦି ପ୍ରେମର ବିଳାସ (ବିଶେଷ ବିଶେଷ ଅବସ୍ଥା) । ବିଭିନ୍ନ ପ୍ରକାର ଭକ୍ତିର ଆଲୋଚନା ପରେ ରୂପ ଗୋସ୍ୱାମୀ ଭକ୍ତି ରସାମୃତ ସିନ୍ଧୁର ପରବର୍ତ୍ତୀ ଅଂଶରେ ଭକ୍ତିକୁ ରସ ଭାବରେ ବିଶ୍ଳେଷଣ

---

(୧୨) ଜୀ. ଗୋ., ପ୍ରୀତିସନ୍ଦର୍ଭ

(୧୩) ରୂ. ଗୋ., ଭ. ର. ମୃ. ସିଂ

(୧୪) ରୂ. ଗୋ., ଭ. ର. ମୃ. ସିଂ., ୪ର୍ଥ ଲହରୀ, ଶ୍ଳୋ. ୧; ପୃ-୧୦୮

କରିଛନ୍ତି (୧୫) । ଏହି ଭକ୍ତି ସିଦ୍ଧାନ୍ତ ଗୂଢ଼ ହେଲେ ମଧ୍ୟ ସନାତନ ଗୋସ୍ୱାମୀ ତାଙ୍କର 'ଶ୍ରୀବୃହଦ୍‌ଭାଗବତାମୃତ' (୧୬) ଗ୍ରନ୍ଥରେ ସ୍ପଷ୍ଟରୂପେ ଆଲୋଚନା କରିଛନ୍ତି ।

## (କ) ଗୁରୁ ଓ ବୈଷ୍ଣବ ମହାଜନ ଏବଂ ସପାର୍ଷଦ ଶ୍ରୀଚୈତନ୍ୟ ବନ୍ଦନା ଓ ଲୀଳା ସମ୍ପର୍କୀୟ ଗୀତ

### ଗୁରୁବନ୍ଦନାମୂଳକ ଗୀତ :

ଶୁଦ୍ଧାଭକ୍ତି ସାଧନ ପରମ୍ପରାରେ ଗୁରୁ ଓ ବୈଷ୍ଣବ ସାଧକ ତଥା ଭକ୍ତମାନଙ୍କର ମହତ୍ତ୍ୱ ଏବଂ ସେମାନଙ୍କର ବନ୍ଦନା ସମ୍ପର୍କରେ ପୂର୍ବରୁ ସୂଚନା ଦିଆ ଯାଇଛି (୫ମ ପରିଚ୍ଛେଦରେ 'ପ୍ରାର୍ଥନା ରତ୍ନାଞ୍ଜଳି'ର ଆଲୋଚନା ଦ୍ରଷ୍ଟବ୍ୟ) । ରାଧାକୃଷ୍ଣ ରାଗମାର୍ଗାନୁଗତ ସାଧକ ଭକ୍ତମାନଙ୍କର ଉପାସ୍ୟ ଏବଂ ସେମାନଙ୍କର ଚିନ୍ମୟ ପ୍ରେମଲୀଳା ଆସ୍ୱାଦନ ସାଧକ ଜୀବନର ପରମ ଲକ୍ଷ୍ୟ ହୋଇଥିଲେ ମଧ୍ୟ ସେବାଯୋଗ୍ୟ ସିଦ୍ଧ ଦେହ ଲାଭ ନ କରିବା ପର୍ଯ୍ୟନ୍ତ ଏହି ଲୀଳା ଆସ୍ୱାଦନ ସମ୍ଭବପର ନୁହେଁ (୧୭) । ଭକ୍ତମାନଙ୍କ ପକ୍ଷରେ ଏହି ସିଦ୍ଧ-ଦେହ ଲାଭ ନିମିତ୍ତ ପ୍ରଥମତଃ ଗୁରୁ ବୈଷ୍ଣବଙ୍କ ଆଶ୍ରୟ ଓ କୃପା ଏବଂ ଭଗବତ୍ କୃପା ପ୍ରୟୋଜନ । ଗୁରୁ କୃପାରେ ଭଗବତ୍ କୃପା ଲାଭ ସୁଗମ ହୋଇଥାଏ । ଭାରତୀୟ ଆଧ୍ୟାତ୍ମିକ ପରମ୍ପରାରେ ଗୁରୁ ସର୍ବଦେବମୟ, ଜଗନ୍ମଙ୍ଗଳ ମୂର୍ତ୍ତି, ସଚ୍ଚିଦାନନ୍ଦମୟ, ପରମତତ୍ତ୍ୱଜ୍ଞାନୀ ଓ ସ୍ୱୟଂପରଂବ୍ରହ୍ମ । ସେ କରୁଣାମୟ, ଶିଷ୍ୟବତ୍ସଳ ଓ ଶରଣାଗତ ପାଳକ । ବୈଷ୍ଣବ ଦୃଷ୍ଟିରେ ସେ ରାଧାକୃଷ୍ଣ-ଭାବ-ଦେହ ଧାରଣ କରି ହରିନାମ ସଂକୀର୍ତ୍ତନରେ ଉନ୍ମତ୍ତ ରହି ଜଗତର ମଙ୍ଗଳ ପାଇଁ ଭକ୍ତ ରୂପ ଧାରଣ କରିଥାନ୍ତି । କୃଷ୍ଣଭକ୍ତି ଲାଭ ପାଇଁ ଉପଯୁକ୍ତ ଗୁରୁଙ୍କର ପ୍ରୟୋଜନ ସମ୍ପର୍କରେ ବୈଷ୍ଣବ ସ୍ମୃତି ଶାସ୍ତ୍ରରେ ଉଲ୍ଲେଖ କରା ଯାଇଛି । ଶିଷ୍ୟଭକ୍ତ ଗୁରୁଙ୍କଠାରୁ ମନ୍ତ୍ରଦୀକ୍ଷା ଓ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କଲେ ପରତତ୍ତ୍ୱ ଓ ଭଗବତ୍ ଲୀଳା ଆସ୍ୱାଦନର ଯୋଗ୍ୟତା ବା ଅନୁକୂଳ ଚିତ୍ତଭୂମି ଲାଭ କରେ । ଗୁରୁ ହେଉଛନ୍ତି ଭବାର୍ଣ୍ଣବରେ କର୍ଣ୍ଣଧାର ସଦୃଶ । ତାଙ୍କର ପାଦାଶ୍ରୟ ବିନା ଶିଷ୍ୟ-ଭକ୍ତକୁ ମାୟାଶକ୍ତିର ବିଭୀଷିକା ମଧ୍ୟରେ ବିପର୍ଯ୍ୟସ୍ତ ହେବାକୁ ପଡ଼େ (୧୮) । ସେଥିପାଇଁ ଉପାସ୍ୟଙ୍କର ଲୀଳାଗାନ ଓ ରଚନା ପୂର୍ବରୁ ପ୍ରଥମତଃ ଗୁରୁବନ୍ଦନାର ପରମ୍ପରା ଶୁଦ୍ଧାଭକ୍ତି-ସାଧନ ପରମ୍ପରାରେ ରହିଛି ।

ଗୁରୁ ରାଗମାର୍ଗର ସାଧକ ଓ ସଖୀ ଭାବାଶ୍ରିତ ହୋଇଥିବାରୁ ବୈଷ୍ଣବ ରଚନାମାନଙ୍କରେ ତାଙ୍କୁ ସ୍ୱାମିନୀ ରାଧାଙ୍କର ସଖୀସଙ୍ଗିନବାସୀ ଭାବରେ ବର୍ଣ୍ଣନା କରା ଯାଇଥାଏ ।

---

(୧୫) ଦ୍ରଷ୍ଟବ୍ୟ : ଶ୍ରୀ ଗଙ୍ଗାଧର ବଳ, 'ବୈଷ୍ଣବ କାବ୍ୟରେ ପ୍ରେମ ଓ ରସତତ୍ତ୍ୱ' ଝଙ୍କାର, ୩୨ଶ ସଂଖ୍ୟା, ୮ମ ସଂଖ୍ୟା, ୧୯୮୦

(୧୬) ସନାତନ ଗୋସ୍ୱାମୀ, ଶ୍ରୀବୃହଦ୍‌ଭାଗବତାମୃତମ୍, ୧ମ ଖଣ୍ଡ, ୧ମ ଅ, ୧୩୬୨

(୧୭) କୃ. ଦା. କ. ଶ୍ରୀ ଶ୍ରୀଗୋବିନ୍ଦଲୀଳାମୃତମ୍, ଚୈତନ୍ୟାବ୍ଦ୪୬୨, ୨୨ଶ ସର୍ଗ, ଶ୍ଳୋ. ୯୪

(୧୮) ଶ୍ରୀ ଗୋପାଳ ଭଟ୍ଟ, ହରିଭକ୍ତି ବିଳାସ, ୧ମ ବିଳାସ

ସେହି ସଖୀ ସ୍ୱରୂପା ଗୁରୁଙ୍କର (୧୯) ଆଶୀର୍ବାଦ ଲଭ ପାଇଁ ଏବଂ ମଞ୍ଜରୀ ଦାସୀ ଭାବରେ ସ୍ୱାମୀ ଓ ସ୍ୱାମିନୀଙ୍କର ସଖୀ ଅନୁଗତା ସେବାପାଇଁ ଗୋପାଳକୃଷ୍ଣ ବୈଷ୍ଣବ ପଦାବଳୀ ରଚନାର ପରମ୍ପରାରେ ବହୁ ଗୀତରେ ତା'ର ସୂଚନା ଦେବା ସଙ୍ଗେ ସଙ୍ଗେ ଗୁରୁଙ୍କ ଉଦ୍ଦେଶ୍ୟରେ ସଂସ୍କୃତ ଓ ଓଡ଼ିଆରେ କେତୋଟି ପ୍ରାର୍ଥନା ଗୀତ ରଚନା କରିଛନ୍ତି । ଏଥିପୂର୍ବରୁ କବିଙ୍କର ସଂସ୍କୃତ ଓ ସଂସ୍କୃତ ପ୍ରଭାବିତ ରଚନା ମଧ୍ୟରେ 'ଭକ୍ତି ରସ', 'ଶ୍ରୀଗୁରୁ ପଞ୍ଚକମ୍' ଏବଂ 'ପ୍ରାର୍ଥନା ରତ୍ନାଞ୍ଜଳି' ଆଲୋଚିତ ହୋଇଛି । ମନଃଶିକ୍ଷା ଶିରୋନାମାରେ ଦେଶାକ୍ଷ ରାଗରେ କବିଙ୍କର ଆଉ ଗୋଟିଏ ଗୁରୁବନ୍ଦନାତ୍ମକ ଗୀତ ରହିଛି । ଏଥିରେ ପାରମ୍ପରିକ ଭାବରେ କବିଙ୍କର ଗୁରୁଙ୍କ ପ୍ରତି ଆତ୍ମନିବେଦନ ଭାବ ପରିସ୍ଫୁଟ ହୋଇଛି । କଳ୍ପତରୁ ସ୍ୱରୂପ ଗୁରୁ ହେଉଛନ୍ତି ଗୋବିନ୍ଦଙ୍କର ପ୍ରତିରୂପ । ତାଙ୍କର ପଦାବ୍ଜରେ ଧ୍ୟାନ ରହିଲେ ତାଙ୍କର କୃପା ଫଳରେ ଶାଶ୍ୱତ ଶାନ୍ତ ନିଳୟ ଚିନ୍ମୟ ବ୍ରଜଧାମ ପ୍ରାପ୍ତି ସୁଗମ ହୋଇ ପାରିବ ଏବଂ ବୃନ୍ଦାବନର ନିଭୃତ କୁଞ୍ଜରେ ସଖୀ ଗହଣରେ ବ୍ରଜବଧୂଙ୍କ ଅଙ୍କ ଶାୟିତ ବ୍ରଜେଶ୍ୱରୀଙ୍କର ସେବାର ସୌଭାଗ୍ୟ ମିଳି ପାରିବ । ଭକ୍ତ ବାଞ୍ଛିତ ମଞ୍ଜରୀ ସୁଲଭ ସେବା ଲଭର ଅଭିଳାଷ ଗୀତଟିରେ ପରିସ୍ଫୁଟ ହୋଇଛି ।

**ସପାର୍ଷଦ ଚୈତନ୍ୟବନ୍ଦନା ଓ ଚୈତନ୍ୟଲୀଳାତ୍ମକ ଗୀତି :**

ଶୁଦ୍ଧା ଭକ୍ତିର ପରମ୍ପରା ଅନୁସାରେ ଗୁରୁବନ୍ଦନା ପରେ ଭକ୍ତ ବୈଷ୍ଣବ ପଦକର୍ତ୍ତାମାନେ ରାଧାଭାବଦ୍ୟୁତି ସମ୍ବଳିତ କୃଷ୍ଣସ୍ୱରୂପ ଗୌରାଙ୍ଗ ବା ଚୈତନ୍ୟଙ୍କର ଲୀଳା ସମ୍ପର୍କୀୟ ପଦ ଗାନ କରିଥାନ୍ତି । ପଦକର୍ତ୍ତାମାନଙ୍କ ଦୃଷ୍ଟିରେ ଗୌର ଲୀଳା ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଲୀଳାର ଭାବ-ପ୍ରତିରୂପ । ରାଧାକୃଷ୍ଣଙ୍କର ଲୀଳାକୀର୍ତ୍ତନର ଅବତରଣିକା ରୂପେ ଗୌର ପଦାବଳୀ ରଚିତ ଏବଂ କୀର୍ତ୍ତନ ଗୋଷ୍ଠୀରେ ଏ ଗୁଡ଼ିକ ପ୍ରଥମେ ଗାନ କରାଯାଏ । ଭୂମିକାରୂପୀ ଏହି ଗୌର ଲୀଳାତ୍ମକ ପଦଗୁଡ଼ିକୁ ଗୌରଚନ୍ଦ୍ରିକା କୁହାଯାଏ (୨୦) । ରାଧାକୃଷ୍ଣ ପ୍ରେମଲୀଳା ପ୍ରଚାର, ନାମ ସଂକୀର୍ତ୍ତନ ଓ ନଗର କୀର୍ତ୍ତନର ବ୍ୟାପକ ପ୍ରବର୍ତ୍ତନ କ୍ଷେତ୍ରରେ ଚୈତନ୍ୟଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପୁରୀରେ ଚୈତନ୍ୟଙ୍କର ଶେଷ ଅଷ୍ଟାଦଶବର୍ଷକାଳ ରହଣି ହେତୁ ଓଡ଼ିଶା ଶୁଦ୍ଧାଭକ୍ତି ସମ୍ବଳିତ ବୈଷ୍ଣବ ମତ ପ୍ରଚାରର ଏକ ପ୍ରଶସ୍ତ କ୍ଷେତ୍ର ହୋଇଥିଲା ଏବଂ ସାମ୍ପ୍ରତିକ କାଳପର୍ଯ୍ୟନ୍ତ ତା'ର ପ୍ରଭାବ ରହିଆସିଛି । ବଙ୍ଗୀୟ ଗୌର ପଦାବଳୀ ପରି ଗୋପାଳକୃଷ୍ଣ ସପାର୍ଷଦ ଚୈତନ୍ୟ ବା ଗୌରାଙ୍ଗଲୀଳା ସମ୍ପର୍କରେ ନ'ଟି ଗୀତ ଏବଂ ତାଙ୍କର ମୁଖ୍ୟ ପାର୍ଷଦ ନିତ୍ୟାନନ୍ଦଙ୍କ ସମ୍ପର୍କରେ ଗୋଟିଏ ଗୀତ ରଚନା କରିଛନ୍ତି ।

**ଚୈତନ୍ୟଙ୍କର ବ୍ୟକ୍ତିତ୍ୱ; ନାମ ସଂକୀର୍ତ୍ତନ –** ନବଦ୍ୱୀପର ତରୁଣ ଉଦ୍ଧତ ନିମାଇଁ ପଣ୍ଡିତ ଗୟାତୀର୍ଥରେ ପିତୃକୃତ୍ୟ ସମାପ୍ତ କରି ମାଧବେନ୍ଦ୍ର ପୁରୀଙ୍କ ଶିଷ୍ୟ ପରମ ବୈଷ୍ଣବ ଈଶ୍ୱରପୁରୀଙ୍କଠାରୁ ପ୍ରେମଧର୍ମର ଦୀକ୍ଷା ଗ୍ରହଣ କରନ୍ତି । ଦୀକ୍ଷା ଗ୍ରହଣ ପରେ ତାଙ୍କର ବ୍ୟକ୍ତିତ୍ୱରେ ଔଦ୍ଧତ୍ୟ ସ୍ଥାନରେ ନମ୍ରତା ଓ ପ୍ରେମର ଭାବାବେଶ ଲକ୍ଷ୍ୟକରି ଅଦ୍ୱୈତ

(୧୯) ଗୋ. କୃ. ଗ୍ରଂ., ପୃ-୧୧୦

(୨୦) ବୈଷ୍ଣବ ପଦାବଳୀ (ଚୟନ), ସମ୍ପା: ଅଧ୍ୟାପକ ଖଗେନ୍ଦ୍ରନାଥ ମିତ୍ର ୪ର୍ଥ ସଂ. ପୃ-୩

ଆଚାର୍ଯ୍ୟ, ଶ୍ରୀବାସ ଆଚାର୍ଯ୍ୟ, ଗଦାଧର ଓ ମାଧବେନ୍ଦ୍ରଙ୍କ ଶିଷ୍ୟ ଅବଧୂତ ନିତ୍ୟାନନ୍ଦ ପ୍ରଭୃତି ଭକ୍ତ ଶିଷ୍ୟରୂପେ ତାଙ୍କଠାରେ ଆତ୍ମନିବେଦନ କରନ୍ତି । ଶ୍ରୀବାସଙ୍କର ଅଙ୍ଗନ ଓ ଶାନ୍ତିପୁର ନିମାଇଁ ଓ ତାଙ୍କର ଅନୁଗତ ଭକ୍ତ ଶିଷ୍ୟମାନଙ୍କର ହରିନାମ ସଂକୀର୍ତ୍ତନ ଓ ନୃତ୍ୟରେ ଉଚ୍ଛୁଳ ଉଠେ । ନିମାଇଁ ହରିନାମ ସଂକୀର୍ତ୍ତନ କରିଆରେ ଲୋକମାନଙ୍କ ପ୍ରାଣକୁ ପୁଲକିତ ଓ ସ୍ପନ୍ଦିତ କରି ସେମାନଙ୍କ ଚିତ୍ତରେ ଏହି ପ୍ରତୀତି ଆଣି ଦିଅନ୍ତି ଯେ, 'ଯେ ନାମ, ସେ କୃଷ୍ଣ' (ନାମେର୍ ସହିତ ସଦା ଫିରେନ୍ ଶ୍ରୀହରି) (୨୧) । ଭଗବାନଙ୍କର ଲୀଳାବିଗ୍ରହ ହେଉଛନ୍ତି କୃଷ୍ଣ । ମାନବ କଳେବର ଧାରଣ କଲେ ମଧ୍ୟ କୃଷ୍ଣ ସ୍ୱୟଂ ଭଗବାନ (କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ) । ସେ ପୁଣି ସଚ୍ଚିଦାନନ୍ଦ ମୂର୍ତ୍ତି ମାନବ କିଶୋର କୃଷ୍ଣ । ମନୁଷ୍ୟର ସେ ସଖା, ସନ୍ତାନ ଓ କାନ୍ତ । ପ୍ରତ୍ୟେକ ମନୁଷ୍ୟର ହୃଦୟ-ଦ୍ୱାରରେ ପ୍ରେମର କାଙ୍ଗାଳରୂପେ ସେ ନିତ୍ୟ ଦଣ୍ଡାୟମାନ, ଦ୍ୱାର ଖୋଲିଲେ ମିଳନ ହେବ । ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭେଦ ନାହିଁ । ବ୍ରାହ୍ମଣ-ଶୂଦ୍ର, କ୍ଷୁଦ୍ର-ବୃହତ୍ତ ହେଉଛୁ କୃତ୍ରିମ ପରିଚୟ । ମନୁଷ୍ୟର ଏକମାତ୍ର ପରିଚୟ : ସେ ମନୁଷ୍ୟ । ମାନବତା ଯେତେବେଳେ ସାର୍ଥକ ହୁଏ, ସେତେବେଳେ ତା'ର ଅନ୍ତରରେ ସଞ୍ଚାରିତ ହୁଏ ଭଗବତ୍ ପ୍ରେମ । ପ୍ରତିଦିନର ସଂସାର ଯାତ୍ରାରେ ମାତା-ସନ୍ତାନ, ବନ୍ଧୁ-ବନ୍ଧୁ, ପତି-ପତ୍ନୀଙ୍କ ମଧ୍ୟରେ ପ୍ରେମ ଯେପରି ବିନାଶ ଭାବେ ସ୍ୱଚ୍ଛନ୍ଦରେ ଆତ୍ମ ପ୍ରକାଶ କରେ, ତା'ର ଭଗବଦୁନ୍ମୁଖତାହିଁ ଭଗବତ୍ ପ୍ରେମ (୨୨) । ନିରନ୍ତମାନ କୃଷ୍ଣତଦ୍‌ଗତ ପ୍ରାଣ ସର୍ବତ୍ୟାଗୀ ତରୁଣ ନିମାଇଁ ଦୁଇବାହୁ ପ୍ରସାରିତ କରି ପରମ ପ୍ରେମରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ମାନବକୁ ନିଜର ବକ୍ଷକୁ ଟାଣିନେବା ସଙ୍ଗେ ସଙ୍ଗେ ପ୍ରେମ ପୁଲକିତ ଓ ରୋମାଞ୍ଚିତ ଦେହରେ, ବାଷ୍ପ ସଜଳ କଣ୍ଠରେ ଶ୍ରୀକୃଷ୍ଣ ନାମ ଉଚ୍ଚାରଣ କରି (ସଂକୀର୍ତ୍ତନ ମାଧ୍ୟମରେ) ମନୁଷ୍ୟର ଅନ୍ତରରେ ଆଲୋଡ଼ନ ସୃଷ୍ଟି କରିଛନ୍ତି । ପ୍ରେମରେ ଶତ୍ରୁ ମିତ୍ର ସମସ୍ତଙ୍କ ପ୍ରାଣରେ ଅଲୌକିକ ଶକ୍ତି ସଞ୍ଚାର କରି ଭଗବଦ୍‌ମୁନ୍ମୁଖୀ କରିଛନ୍ତି । ନିମାଇଁଙ୍କର (ସନ୍ନ୍ୟାସ ପରେ ଶ୍ରୀକୃଷ୍ଣ ଚୈତନ୍ୟ ବା ଚୈତନ୍ୟ) ଏ ସ୍ୱତଃସ୍ଫୂର୍ତ୍ତି ଭଗବତ୍ ପ୍ରେମଚଞ୍ଚଳ ବ୍ୟକ୍ତିତ୍ୱ ଓ ନାମ ସଂକୀର୍ତ୍ତନ ମୁଗ୍ଧପ୍ରାଣରେ ଲକ୍ଷ୍ୟ କରି ସାଧାରଣ ମନୁଷ୍ୟ ନିଜର ଏକ ନୂତନ ରୂପର ସନ୍ଧାନ ପାଏ । ଜାତି ବର୍ଣ୍ଣ ନିର୍ବିଶେଷରେ ଏହି ଉଦାର ମାନବତାରେ ତା'ର ପ୍ରାଣ ବିହ୍ୱଳ ହୋଇଉଠେ । ଗୌରଚନ୍ଦ୍ରଙ୍କର ଭଗବାନ ହେଉଛନ୍ତି ମାନବ ରୂପଧାରୀ ଶ୍ରୀକୃଷ୍ଣ । ସେଥିପାଇଁ ତାଙ୍କର ମାନବ ପ୍ରେମ ଏକାନ୍ତ ସ୍ୱାଭାବିକ । ଚୈତନ୍ୟ କୌଣସି ତାତ୍ତ୍ୱିକ ଗ୍ରନ୍ଥ ରଚନା କରି ନାହାନ୍ତି । କିନ୍ତୁ ତାଙ୍କ ଅନ୍ତରରେ ସ୍ଫୂର୍ତ୍ତି ତତ୍ତ୍ୱ ତାଙ୍କର ଦେହ, ବଚନ ଓ ଆଚରଣରେ ପରିସ୍ଫୁଟ ହେଉଥିବାରୁ ତାହା ମୁଗ୍ଧ ଭକ୍ତ ଦୃଷ୍ଟିରେ ଥିଲା ଅଗଣିତ ତାତ୍ତ୍ୱିକ ଗ୍ରନ୍ଥ ଅପେକ୍ଷା ମୂଲ୍ୟବାନ । ତାଙ୍କର ଶିଷ୍ୟ ଭକ୍ତମାନେ ଥିଲେ ତାଙ୍କର ଲୀଳା ବୈଚିତ୍ର୍ୟପୂର୍ଣ୍ଣ ଜୀବନ-ଗ୍ରନ୍ଥର ଭାଷ୍ୟକାର । ଗୌରଚନ୍ଦ୍ର ସଂକୀର୍ତ୍ତନ ଧର୍ମର ପ୍ରବର୍ତ୍ତକ ହୋଇଥିବାରୁ ଏବଂ ଲୋକ ଚିତ୍ତରେ ଯାଦୁକରୀ ପ୍ରଭାବ ସୃଷ୍ଟି କରିଥିବାରୁ

(୨୧) ତତ୍ରୈବ ଭୂମିକା, ପୃ-୬

(୨୨) ତତ୍ରୈବ ଭୂମିକା, ପୃ-୬

ବର୍ତ୍ତୀସ୍ଥ ପଦକର୍ତ୍ତାମାନେ ରାଧାକୃଷ୍ଣଙ୍କର ବୃନ୍ଦାବନଲୀଳାକୀର୍ତ୍ତନ ସହିତ ଚୈତନ୍ୟଙ୍କୁ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ କରିଛନ୍ତି ।

**ଚୈତନ୍ୟ ତତ୍ତ୍ୱ : ଚୈତନ୍ୟ ରାଧାକୃଷ୍ଣଙ୍କ ମିଳିତ ବିଗ୍ରହ**—ଚୈତନ୍ୟଙ୍କ ସମ୍ପର୍କରେ ତାଙ୍କର ଶିଷ୍ୟ ପ୍ରଶିଷ୍ୟମାନେ ଆହୁ ଟିକିଏ ଅଗ୍ରସର ହୋଇ ରାଧାକୃଷ୍ଣଙ୍କର ମିଳିତ ରୂପ ଭାବରେ ତାଙ୍କର ପୂଜା ଅର୍ଚ୍ଚନା କରିଥାନ୍ତି (୨୩) । ସେମାନଙ୍କ ଦୃଷ୍ଟିରେ (ରୂପ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ରାୟ ରାମାନନ୍ଦ ପ୍ରଭୃତି) ଗୌରାଙ୍ଗ ବହିରଙ୍ଗରେ ରାଧା, ଅନ୍ତରଙ୍ଗରେ କୃଷ୍ଣ । ଅଦ୍ୱୈତାଚାର୍ଯ୍ୟ, ଶ୍ରୀବାସାଚାର୍ଯ୍ୟ ଓ ବାସୁଦେବ ସାର୍ବଭୌମ ପ୍ରଭୃତି ମନୀଷୀ ଭକ୍ତବୃନ୍ଦ ଭଗବାନ ବୋଲି ତାଙ୍କଠାରେ ପ୍ରଣତି ବାଢ଼ିଛନ୍ତି । ଭକ୍ତମାନେ କେତେ-ବେଳେ ତାଙ୍କଠାରେ ରାଧାଭାବ, କେତେବେଳେ କୃଷ୍ଣଭାବ ଲକ୍ଷ୍ୟ କରୁଥିଲେ (୨୪) । ଚୈତନ୍ୟଙ୍କର ପରବର୍ତ୍ତୀ କାଳରେ ରଚିତ ପଦାବଳୀରେ ତାଂକର ରାଧାଭାବ ଓ ରାଗାନୁଗା ଭକ୍ତିର ଚିତ୍ର ପରିଲକ୍ଷିତ ହୁଏ । ଶ୍ରୀକୃଷ୍ଣଂକର ହ୍ଲାଦିନୀ ଶକ୍ତି ସ୍ୱରୂପା ରାଧାଂକର ରାଗର ଆନୁଗତ୍ୟମୟୀ ପ୍ରେମ ସାଧନାରେ, ରାଧାଂକ ସହିତ ନିରବଚ୍ଛିନ୍ନ ମାନସ ସାନ୍ନିଧ୍ୟ ଫଳରେ ଚୈତନ୍ୟ ରାଧାଂକର ଭାବ ରସରେ ଉପସ୍ଥିତ ହୋଇଥିଲେ । ମଧୁମୟୀ ବୃନ୍ଦାବନ ଲୀଳାର ରହସ୍ୟ ରାଜ୍ୟରେ ସେ ପ୍ରବେଶ କରିଥିଲେ ବୋଲି ଶିଷ୍ୟ ଭକ୍ତମାନଙ୍କୁ ଜୀବନରେ ଉପଯୁକ୍ତ ପଥର ସନ୍ଧାନ ଦେଇ ପାରିଥିଲେ । ନିଜର ଆଚରଣ ଦ୍ୱାରା ବୈଷ୍ଣବ ଧର୍ମ ପ୍ରତି ତାଂକର ଅପୂର୍ବ ଦାନ ସ୍ୱଭକ୍ତି ଶ୍ରୀର 'ଉନ୍ନତ ଉଜ୍ଜ୍ୱଳ ରସରୂପ' ଦେଖାଇ ପାରିଥିଲେ । ଭଗବଦ୍-ବିଷୟିଣୀ ରତିକୁ ଚତୁର୍ବର୍ଗର ଅତୀତ ପଞ୍ଚମ ପୁରୁଷାର୍ଥ ରୂପ ଶୃଙ୍ଗାର ବା ଉଜ୍ଜ୍ୱଳ ରସରେ ପରିଣତ କରିଥିଲେ (୨୫) ।

**ଚୈତନ୍ୟଙ୍କର ରାଧାଭାବ**—ବୈଷ୍ଣବ ପଦାବଳୀ ଓ ଅନ୍ୟାନ୍ୟ ରଚନାମାନଙ୍କ ପୃଷ୍ଠପଟରେ ମୁଖ୍ୟ ଆଲେଖ୍ୟଟି ହେଉଛି ବିରହିଣୀ ରାଧାଙ୍କର । ମହାଭାବମୟୀ ରାଧାଙ୍କର ଭାବରେ ଭାବିତ ଚୈତନ୍ୟଙ୍କର (ମାନସ ପ୍ରେମଲୀଳାର) ବୈଚିତ୍ର୍ୟମୟ ପ୍ରକାଶ ତାଙ୍କର ଭକ୍ତମାନଙ୍କ ସମକ୍ଷରେ ପ୍ରକଟିତ ହେଉଥିଲା । ରାଧାଙ୍କପରି ସେ ଥିଲେ ବିପ୍ରଲମ୍ଭର ମୂର୍ତ୍ତିମାନ୍ ବିଗ୍ରହ । ତାଙ୍କର ଜୀବନର ଅନ୍ତିମ ପର୍ଯ୍ୟାୟ (ନୀଳାଚଳରେ) ବିରହ ବିପ୍ରଲମ୍ଭର ଦିବ୍ୟ ଉନ୍ମାଦରେ ଅତିବାହିତ ହେଉଥିଲା । ପଦକର୍ତ୍ତା ନରହରି ସରକାର ଓ ବାସୁଦେବ ଘୋଷ ଚୈତନ୍ୟ ଅବତାରର ରାଧାଭାବରେ ବିଶ୍ୱାସ କରୁଥିଲେ । କେତେକ ପଦକର୍ତ୍ତା ବିଶେଷତଃ ନରହରି ସରକାର ତାଙ୍କର କେତେକ ପଦରେ ଗୌର ବା ଚୈତନ୍ୟଙ୍କ ଉପରେ ନାଗର ଭାବର (ଗୌର ନାଗର-ଭାବ) ଆରୋପ କରିଛନ୍ତି (୨୬) । ଗୌରାଙ୍ଗ ସମ୍ପର୍କିତ

(୨୩) ଚୈ. ଚ. ମୃ., ଆଦିଲୀଳା, ୪ର୍ଥ ପରିଚ୍ଛେଦ, ପୃ-୨୮

(୨୪) କ୍ୱଚିତ୍ କୃଷ୍ଣାବେଶାନ୍ନଟତି ବହୁଭଙ୍ଗୀମଭିନୟନ୍ (ଚୈ. ଚ. ମୃ. ରୁ ଉଦ୍ଧୃତ)

(୨୫) ରୂ. ଗୋ., ବି. ମା., ୧ମ ଅଙ୍କ, ଶ୍ଳୋ. ୨, ପୃ-୩

(୨୬) S. K. De, H. V. F. M., 65.

ବଙ୍ଗୀୟ ପଦାବଳୀରେ ଚୈତନ୍ୟ ଲୀଳାର ଏହି ବୈଚିତ୍ର୍ୟମୟ ବିଭବମାନ ପରିସ୍ଫୁଟ ହୋଇଛି (୨୭)।

**ଚୈତନ୍ୟ ଲୀଳାତ୍ମକ ଗୀତର ସମୀକ୍ଷା–** ବୈଷ୍ଣବ ଗୋସ୍ୱାମୀ, ବଙ୍ଗୀୟ ଚରିତ-କର୍ତ୍ତା, ଓ ପଦାବଳୀ କର୍ତ୍ତା ଓଡ଼ିଶାର ଶୁଦ୍ଧାଭକ୍ତିର କବି ସଦାନନ୍ଦ, ଅଭିମନ୍ୟୁ (୨୮) ଓ ଦାଶରଥି ପ୍ରଭୃତିଙ୍କ ଦୋଙ୍କ ଅନୁସରଣ କରି ସପାର୍ଷଦ ଚୈତନ୍ୟଙ୍କର ଅବତାର, ଲୀଳା, ରୂପ, ଧ୍ୟାନ, ସ୍ତବ ଓ ପ୍ରାର୍ଥନା ସମ୍ପର୍କରେ ଗୋପାଳକୃଷ୍ଣ ନ'ଟି ଗୀତ ରଚନା କରିଛନ୍ତି ।

ମନଃଶିକ୍ଷା ଶୀର୍ଷକ ଦୁଇଟି ଗୀତରେ (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୯୯) କବି ଯଥାକ୍ରମେ ଚୈତନ୍ୟଙ୍କୁ ଭଗବାନ୍ କୃଷ୍ଣଙ୍କର ଅବତାର ଏବଂ ରାଧା ଓ କୃଷ୍ଣଙ୍କର ମିଳିତ ବିଗ୍ରହାବତାର ରୂପେ ବର୍ଣ୍ଣନା କରିଛନ୍ତି । ପ୍ରଥମ ଗୀତଟିରେ ସେ ଉଲ୍ଲେଖ କରିଛନ୍ତି ଯେ, ଗୋକୁଳର ସଖାମାନଙ୍କ ସହିତ ଧେନୁ ଚରାଉଥିବା ଗୋଷ୍ଠଚନ୍ଦ୍ରମା ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ହୋଇଛନ୍ତି ନବଦ୍ୱୀପରେ ଗୌରାଙ୍ଗ (ସ୍ମର ମନ ! ଶଚୀ-ସୁତ···) (୨୯) । ରାଧାଙ୍କର ଭାବ, ପ୍ରେମ ଓ ଅନୁପମ କାନ୍ତି ତ୍ରୟକ ହେବ ଋଣ ପରିଶୋଧ କରିବା ପାଇଁ ସେ ଅବତୀର୍ଣ୍ଣ । ଅନ୍ୟ ମନଃଶିକ୍ଷା ଶୀର୍ଷକ ଗୀତଟିରେ (ଶ୍ରୀ ଗୌରଚନ୍ଦ୍ର ଦେ···) ଲେଖିଛନ୍ତି—ଗୌରଚନ୍ଦ୍ର ମିଳିତ ଭାବରେ ରାଧା ଓ ଗୋବିନ୍ଦ, ମହାଭାବମୟ ଏବଂ ଉଜ୍ଜ୍ୱଳ ରସର ମୂର୍ତ୍ତିମନ୍ତ ବିଗ୍ରହ । କବିଙ୍କ ଭାଷାରେ —

ବ୍ରଜବଧୂ ଶ୍ରୀମତୀ    ହୋଇ ଗୋଟିଏ ମୂର୍ତ୍ତି
ଜନ୍ମିଛନ୍ତି ଶ୍ରୀ ଶଚୀ-ଉଦରେ ।୧।
ମହାଭାବ ଉଜ୍ଜ୍ୱଳ    ରସ ପୀତ ଶ୍ୟାମଳ,
ପରତତ୍ତ୍ୱ ହେଲର ଦ୍ୱନ୍ଦ୍ୱରେ ।୩।    (ଗୋ.କୃ ଗ୍ରଂ. ପୃ-୨୦୦)

ଅନ୍ୟ ଗୀତ ଗୁଡ଼ିକରେ (ପ୍ରାର୍ଥନା, ଗୌରଚନ୍ଦ୍ରିକା, ପୃ-୮୮; ଶ୍ରୀ ଶ୍ରୀ ଗୌରାଙ୍ଗ ରୂପ, ପୃ-୧୭୧; ଶ୍ରୀ ଶ୍ରୀ ଗୌରାଙ୍ଗ ନାମାମୃତ, ପୃ-୧୬୮; ଶ୍ରୀ ଶ୍ରୀ ଗୌରାଙ୍ଗ ସ୍ତବାମୃତ, ପ୍ରାର୍ଥନା, ପୃ-୧୭୦ ଓ ମନଃ ଶିକ୍ଷା, ପୃ-୨୬୭) କବି ରାଧାକୃଷ୍ଣଙ୍କର ଅବତାର ଭାବରେ ଏବଂ ପରମ ଭକ୍ତ ଭାବରେ ଚୈତନ୍ୟଙ୍କର ଅଲୌକିକ ବ୍ୟକ୍ତିତ୍ୱର ବିଭିନ୍ନ ବୈଶିଷ୍ଟ୍ୟର ସାମ୍ପ୍ରଦାୟିକ ସଙ୍କେତ ଦେଇ ତାଙ୍କଠାରେ ନିଜର ଶରଣାଗତି ବା ଆତ୍ମସମର୍ପଣ ଭାବର ସୂଚନା ଦେଇଛନ୍ତି । କବିଙ୍କ ବର୍ଣ୍ଣନାନୁସାରେ ଚୈତନ୍ୟ ହୋଇଛନ୍ତି ଶ୍ରୀକୃଷ୍ଣ ପରି ଅପ୍ରାକୃତ ପ୍ରେମର ପୂର୍ଣ୍ଣାବତାର, ଅସୀମଗୁଣଗଭୀର, ଶୃଙ୍ଗାର ରସର ମୂର୍ତ୍ତିମନ୍ତ ବିଗ୍ରହ ଏବଂ ସ୍ୱର୍ଣ୍ଣ ଦାରବାହୁ

(୨୭) ଚୈତନ୍ୟଙ୍କର ନବଦ୍ୱୀପ-ଜୀବନର କେତେକ ବିଭବକୁ ଭିତ୍ତିକରି ବଳେ ପଦକର୍ତ୍ତା କ୍ଷୁଦ୍ର ଭକ୍ତିମୂଳକ ବଙ୍ଗୀୟ ପଦ ରଚନା କରିଛନ୍ତି ।

(୨୮) ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ପ୍ରେମ ଚିନ୍ତାମଣି'ର (ଅପ୍ରକାଶିତ) ୨ୟ ଛାନ୍ଦ ।

(୨୯) ଗୋ. କୃ. ଗ୍ର., ପୃ-୧୯୯

ତୁଲ୍ୟ ରମଣୀୟ କାନ୍ତି ବର୍ଣ୍ଣିଷ୍ଟ (୩୦)। ପୁଣି ଅନ୍ୟତ୍ର କହିଛନ୍ତି—ଚୈତନ୍ୟ ହେଉଛନ୍ତି ପୂର୍ଣ୍ଣତମ ପୂର୍ଣ୍ଣ ଭଗବାନ (ଗୌରାଙ୍ଗ ନାମାମୃତ, ଗ୍ରନ୍ଥାବଳୀ, ପୃ-୧୬୯); ପୂର୍ଣ୍ଣ ସନାତନ, ଆନନ୍ଦ ଚିଦ୍‌ଘନ; ଜଗତ୍‌ସ୍ୱାମୀ, ଜଗଦ୍ ଭର୍ତ୍ତା ଓ ଜଗଦ୍‌ବନ୍ଧୁ; ତ୍ରିଜଗତର ବିଧାତା, ହର୍ତ୍ତାକର୍ତ୍ତା (ଗୌରାଙ୍ଗ ନାମାମୃତ); ଅଖିଳ ଭୁବନର ଭର୍ତ୍ତା (ଗୌରାଙ୍ଗ ସ୍ତବାମୃତ, ଗ୍ରନ୍ଥାବଳୀ, ପୃ-୧୬୩); ବିଶ୍ୱମୟ, ଭକ୍ତ ବାଞ୍ଛା କଳ୍ପତରୁ। ସେ ପୂର୍ଣ୍ଣ ଆନନ୍ଦମୟ, ପୂର୍ଣ୍ଣ ଲୀଳାବତାର ଓ କରୁଣା ମହୋଦଧି। ଲୋକମାନଙ୍କୁ ଶୋକ-ଦୁର୍ଗନ୍ଧ ଓ କଳିକଳୁଷରୁ ପରିତ୍ରାଣ କରି ଜଗତରେ ଆନନ୍ଦବିସ୍ତାର ପାଇଁ ଭକ୍ତର ଅଧୀନ ହୋଇ ରାଧାଗୋବିନ୍ଦଙ୍କର ମିଳିତ ବିଗ୍ରହ ରୂପେ ଅବତୀର୍ଣ୍ଣ ହୋଇଛନ୍ତି (ଶ୍ରୀ ଶ୍ରୀ ଗୌରାଙ୍ଗ ରୂପ, ଗ୍ରନ୍ଥାବଳୀ, ପୃ-୧୭୨)। ପରମ ଭକ୍ତ ରୂପରେ ଦିବ୍ୟବେଶ ଧାରଣ କରି ପରମ ପ୍ରେମିକ, ପରିଆନନ୍ଦମୟ ପୁରୁଷୋତ୍ତମ ଚୈତନ୍ୟ ଭକ୍ତଙ୍କ ହୃଦୟରେ ଅପ୍ରାକୃତ ପ୍ରେମର ଅସରନ୍ତି ପ୍ରବାହ ସୃଷ୍ଟି କରିଥିଲେ। ବ୍ରଜାଙ୍ଗନାଙ୍କର ପ୍ରେମଭକ୍ତିର ସେ ଥିଲେ ନିଳୟ (ଗ୍ରନ୍ଥାବଳୀ ପୃ-୧୭୪)। ବ୍ରଜତତ୍ତ୍ୱ ବିଳାସୀ ମହାଭାବାବିଷ୍ଟ ଚୈତନ୍ୟ କରୁଣା କଳିତ ଚିତ୍ତରେ ଅଗଣିତ ଭକ୍ତ ଗହଣରେ ପ୍ରେମଧନ ବିତରଣରେ ଥିଲେ ଆନ୍ତରିକ ଓ ଉଦାର (୩୧)।

ଦୀନ ପତିତ ମୋହାବିଷ୍ଟ ତ୍ରିତାପତାପିତ ମାନବର ଉଦ୍ଧାର ପାଇଁ ତାଂକ ପ୍ରାଣରେ ବ୍ୟାକୁଳତା ଥିଲା ଅସୀମ। କରୁଣା କଳିତ ଗୌରାଙ୍ଗ ଚିନ୍ମୟ-ପ୍ରେମ-ରସାବେଶରେ ଅଶ୍ରୁ ବିଗଳିତ ନୟନରେ ହରିନାମ କୀର୍ତ୍ତନ କରି କରି ଭକ୍ତ, ସଂସାରୀ ଓ ବିଦ୍ୱେଷୀଂକ ପ୍ରାଣରେ ଛୁଟାଇଥିଲେ ଚିନ୍ମୟପ୍ରେମ-ରସର ବନ୍ୟା (୩୨)। ସୀମିତ ବେଷ୍ଟନୀରେ ନୁହେଁ, ନଗର ଜନପଦର ମୁକ୍ତ ପଥରେ ତାଂକର ସପାରିଷଦ ଭଗବନ୍ନାମ ସଂକୀର୍ତ୍ତନ, ଦିବ୍ୟନର୍ତ୍ତନ ସର୍ବାଙ୍ଗରେ ପୁଲକ କଦମ୍ବ ଓ ପ୍ରେମାଶ୍ରୁ ଅଗଣିତ ସଂସାରୀଙ୍କୁ ଦେଇଥିଲା ଆନନ୍ଦ ଓ ଆଶ୍ରୟର ଆଶ୍ୱାସନା (୩୩)। ଜଗତରେ ଆଧ୍ୟାତ୍ମିକତାର ବିସ୍ତାର ପାଇଁ ତାଂକ ଦୃଷ୍ଟିରେ ହରିନାମ ସଂକୀର୍ତ୍ତନ ଥିଲା ଅମୋଘ ମାଧ୍ୟମ; ସେଥିପାଇଁ କବି ତାଙ୍କୁ ସଂକୀର୍ତ୍ତନର ଆଦ୍ୟ ପ୍ରବର୍ତ୍ତକ ବୋଲି ଉଲ୍ଲେଖ କରିଛନ୍ତି (୩୪)।

ରାଧା ଗୋବିନ୍ଦଙ୍କର ମିଳନମୂର୍ତ୍ତି ଗୌରାଙ୍ଗଙ୍କର ରୂପ ବର୍ଣ୍ଣନାରେ କବି ପାରମ୍ପରିକ ରୀତି ଅବଲମ୍ବନ କରିଛନ୍ତି। ସଂକୀର୍ତ୍ତନ କାଳୀନ ନାମୋଚ୍ଚାରଣ, ମନୋଜ୍ଞଠାଣି ଯୁକ୍ତ ଦିବ୍ୟ ନୃତ୍ୟ ଏବଂ ତାଙ୍କର ଭାବାଲଙ୍କାର ଓ ରସାବେଶରେ କବି ତାଙ୍କର ଅନୁପମ ସୌନ୍ଦର୍ଯ୍ୟର ଆଲେଖ୍ୟ ଅଙ୍କନ କରିଛନ୍ତି (୩୫)। 'ଶ୍ରୀ ଗୌରାଙ୍ଗ ସ୍ତବାମୃତ'ରେ କବି ରସୋଲ୍ଲାସୀ ରସିକ

---

(୩୦) ଶ୍ରୀ ଶ୍ରୀ ଗୌରାଙ୍ଗ ସ୍ତବାମୃତ, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୧୬୪

(୩୧) ଗୋ. କୃ. ଗ୍ର., ପୃ-୧୬୯

(୩୨) କୃ. ଦା. କ, ଗୋ. ଲୀ. ମୃ., ୧ମ ସର୍ଗ, ଶ୍ଳୋକ-୨, ପୃ-୩

(୩୩) ଶ୍ରୀ ନରହରି ସରକାର, ଶ୍ରୀ ଶ୍ରୀ ଶଚୀନନ୍ଦନାଷ୍ଟକମ୍, ଶ୍ରୀ ସ୍ତ.କ.ଦ୍ରୁ., ଶ୍ଳୋ-୬, ପୃ-୬୬

(୩୪) ଗୋ. କୃ. ଗ୍ରଂ., ପୃ-୧୭୦

(୩୫) ଗୋ. କୃ. ଗ୍ରଂ., ପୃ-୧୭୧-୧୭୨

ଶିରୋମଣି ଚୈତନ୍ୟଙ୍କୁ 'ନଦେନ୍ଦ୍ର ଶ୍ରୀ ନାଗର ଶିରୋମଣି' ରୂପେ ଉଲ୍ଲେଖ କରିଛନ୍ତି । ଏ ପ୍ରକାର ଉଲ୍ଲେଖରୁ ମନେହୁଏ : କବି ସମ୍ଭବତଃ ବଙ୍ଗୀୟ ପଦକର୍ତ୍ତା ନରହରି ସରକାର ଠାକୁର ଓ ଲୋଚନ ଦାସଙ୍କର ନାଗର ଭାବତତ୍ତ୍ୱ ସମ୍ବଳିତ ପଦାବଳୀ ଓ ସଂସ୍କୃତ ରଚନା ସମ୍ପର୍କରେ ଆସିଥିଲେ, ଯେଉଁ ତତ୍ତ୍ୱ ରକ୍ଷଣଶୀଳ ବୈଷ୍ଣବମାନଙ୍କ ଦ୍ୱାରା (ବୃନ୍ଦାବନର ବୈଷ୍ଣବ ଗୋସ୍ୱାମୀ) ଉପେକ୍ଷିତ ହୋଇଥିଲା (୩୬) ।

କବି ଚୈତନ୍ୟଙ୍କ ଉଦ୍ଦେଶ୍ୟରେ ନିଜର ଭକ୍ତି ଓ ପ୍ରାର୍ଥନା ନିବେଦନ କରିବା ସଙ୍ଗେ ସଙ୍ଗେ ତାଙ୍କର ଅଲୌକିକ ବ୍ୟକ୍ତିତ୍ୱରେ ମୁଗ୍ଧ ଭକ୍ତ ଓ ପାର୍ଷଦ ମାନଙ୍କର ତାଙ୍କ ପ୍ରତି ଅହୈତୁକୀ ଅନୁରାଗ ଓ ନିବିଡ଼ ସମ୍ପର୍କର ସଙ୍କେତ ଦେଇଛନ୍ତି । ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ବୟୋଜ୍ୟେଷ୍ଠ ନିତ୍ୟାନନ୍ଦ ଥିଲେ ତାଙ୍କର ପ୍ରିୟତମ ପାର୍ଷଦ । ଅଦ୍ୱୈତାଚାର୍ଯ୍ୟ ତାଙ୍କର ପାଦପଦ୍ମରେ ନିତ୍ୟ ସେବା କରୁଥିଲେ । ଗଦାଧର, ନରହରି, ଓ ସ୍ୱରୂପଙ୍କର ସେ ଥିଲେ ଅତି ପ୍ରିୟ, ଅତି ଆପଣାର । ଶ୍ରୀବାସ ଓ ଶ୍ରୀନିବାସାଦି ଭକ୍ତ ବୃନ୍ଦଙ୍କର ସେ ଥିଲେ ଆଶ୍ରୟ । ସାର୍ବଭୌମଂକ ଚିତ୍ତରେ ଆନନ୍ଦ ବିସ୍ତାର କରିବା ସଙ୍ଗେ ସଙ୍ଗେ ସେ ସନାତନ ଓ ରୂପ ଗୋସ୍ୱାମୀଂକର ଜୀବନରେ ଥିଲେ ଦିଗ୍-ନିର୍ଦ୍ଦେଶକ (୩୭) ।

ଗୋପାଳକୃଷ୍ଣଂକର ଗୌରାଙ୍ଗ ବିଷୟକ ଗୀତ ସ୍ୱଳ୍ପ ହେଲେ ମଧ୍ୟ ଚୈତନ୍ୟଂକ ରୂପ, ଧ୍ୟାନ ଓ ସ୍ତବ ସମ୍ବଳିତ ଗୀତ ଗୁଡ଼ିକର ପ୍ରେରଣା ଯେ ଗୌରାଙ୍ଗ ବିଷୟକ ବୈଷ୍ଣବ ପଦାବଳୀ ଓ ସଂସ୍କୃତ ରଚନାରୁ ମିଳିଥିଲା ଏଥିରେ ସନ୍ଦେହ ନାହିଁ । ଗୋବିନ୍ଦ ଦାସ, ପରମାନନ୍ଦ ଓ ରାଧାମୋହନ ଠାକୁରଂକ ପଦ ଓ ସଂସ୍କୃତ ରଚନା ସହ ଗୋପାଳକୃଷ୍ଣଂକର ଗୀତ ଗୁଡ଼ିକର ତୁଳନା କରାଯାଇପାରେ ।

ସଖୀଭାବାପନ୍ନ ବୈଷ୍ଣବ ଗୋସ୍ୱାମୀଗଣ ସାଧ୍ୟସାଧନତତ୍ତ୍ୱର ପରିଜ୍ଞାତା ଓ ଦିଗ୍‌ନିର୍ଦ୍ଦେଶକ ହୋଇଥିବାରୁ ଏବଂ ଭଗବାନ୍‌ଂକର ପ୍ରତ୍ୟକ୍ଷ କୃପାଲାଭ କରିଥିବାରୁ ସେମାନେ ଭଗବତ୍ ସ୍ୱରୂପ । ସେମାନଂକର ପଦସେବା ଓ ବନ୍ଦନା ଭକ୍ତ ପକ୍ଷରେ ପରମ ଆନନ୍ଦର ବିଷୟ । ସେହି ବୈଷ୍ଣବ ଗୋସ୍ୱାମୀଂକର ବନ୍ଦନା କରିବାକୁ ଯାଇ କବି ଚୈତନ୍ୟଂକର ବୟୋଜ୍ୟେଷ୍ଠ ପାର୍ଷଦ ନିତ୍ୟାନନ୍ଦଂକ ସମ୍ପର୍କରେ ଗୋଟିଏ ମାତ୍ର ଗୀତ ରଚନା କରିଛନ୍ତି ।

**ନିତ୍ୟାନନ୍ଦ ମହାପ୍ରଭୁଙ୍କ ସ୍ତବ**—ଏହି ଗୀତଟିରେ କବି ନିତ୍ୟାନନ୍ଦଙ୍କ ସମ୍ପର୍କରେ ଯାହା ବର୍ଣ୍ଣନା କରିଛନ୍ତି ତାର ମୂଳରେ ରହିଛି ନବଦ୍ୱୀପ ବୈଷ୍ଣବ ଭକ୍ତ ମଣ୍ଡଳୀର ଗୌର-ପ୍ରାଣଗତ ଦୃଷ୍ଟିଭଙ୍ଗୀ । ବୃନ୍ଦାବନର ଗୋସ୍ୱାମୀମାନେ ସେମାନଙ୍କର ସଂସ୍କୃତ ରଚନା ମାନଙ୍କରେ କୃଷ୍ଣ ଭଗବାନ୍ ଓ ଏକମାତ୍ର ଉପାସ୍ୟ ବୋଲି ଏହି ତତ୍ତ୍ୱ ପ୍ରତିଷ୍ଠିତ କରିଛନ୍ତି ।

(୩୬) S. K. De. H, V. F. M., P. 131

(୩୭) ଶ୍ରୀ ଶ୍ରୀଗୌରାଙ୍ଗ ସ୍ତବାମୃତ, ଗୋ. କୃ. ଗ୍ରଂ., ପୃ. ୧୬୪-୧୬୫, ଶ୍ରୀ ଶ୍ରୀନିବାସ ଆଚାର୍ଯ୍ୟ, ଶ୍ରୀ ଷଡ଼୍ ଗୋସ୍ୱାମ୍ୟଷ୍ଟକମ୍ ଶ୍ରୀ ସ୍ତ. କ. ଦ୍ରୁ. ପୃ-୫୬ ଏବଂ ରୂ. ଗୋ., ଶ୍ରୀ ଚୈତନ୍ୟାଷ୍ଟକମ୍ (୧) ଶ୍ରୀ ସ୍ତ. କ. ଦ୍ରୁ. ପୃ-୫୯

ସେମାନେ ଚୈତନ୍ୟଙ୍କୁ ଏକ ଅବତାର (ଭକ୍ତ ରୂପ ଅବତାର) ବୋଲି ମନେ କରନ୍ତି । ଧର୍ମତତ୍ତ୍ୱ କିମ୍ବା ଦର୍ଶନଶାସ୍ତ୍ରରେ ସେମାନେ ମୁଖ୍ୟତଃ କୃଷ୍ଣଲୀଳା ସମ୍ପର୍କରେ ଆଲୋଚନା କରିଛନ୍ତି; କିନ୍ତୁ ଚୈତନ୍ୟ ଲୀଳା ସମ୍ପର୍କରେ ସେମାନେ ସେହି ଭାବରେ କିଛି ଉଲ୍ଲେଖ କରି ନାହାନ୍ତି କିମ୍ବା ଚୈତନ୍ୟ ପୂଜାର ବ୍ୟବସ୍ଥା (ନବଦ୍ୱୀପର ବୈଷ୍ଣବ ମଣ୍ଡଳୀ ପରି) କରି ନାହାନ୍ତି । ପ୍ରବୋଧାନନ୍ଦ ସରସ୍ୱତୀ ତାଙ୍କର 'ଚୈତନ୍ୟଚନ୍ଦ୍ରାମୃତ'ରେ ଚୈତନ୍ୟଙ୍କୁ କୃଷ୍ଣଙ୍କର ଅନ୍ୟତମ ଶ୍ରେଷ୍ଠ ଅବତାର ଏବଂ କନକରୁଚିରାଙ୍ଗ କୃଷ୍ଣ ବୋଲି ବର୍ଣ୍ଣନା କରି ତାଙ୍କର ପୂଜାର ସଙ୍କେତ ଦେଇଛନ୍ତି । ସେ କହିଛନ୍ତି ଯେ ଚୈତନ୍ୟ ରାଧା ଓ କୃଷ୍ଣଙ୍କର ମିଳିତ ବିଗ୍ରହ (୩୮), ସେଥିପାଇଁ ସେ ତାଙ୍କୁ କଳିଯୁଗରେ 'ପ୍ରକଟ ଗୌରଗୋପିପତିଃ' (ଶ୍ଳୋ. ୪୩) ବୋଲି ସମ୍ବୋଧନ କରିଛନ୍ତି । ଚୈତନ୍ୟଙ୍କୁ ସେ 'ଗୌରନାଗର ବର' (୩୯) ବୋଲି କହିଥିବାରୁ ନରହରି ଓ ଲୋଚନ ତାଙ୍କର ଗୌର ନାଗର ତତ୍ତ୍ୱ ପାଇଁ ସେଥିରୁ ପ୍ରେରଣା ପାଇଥିବେ ବୋଲି ଅନୁମାନ କରାଯାଏ । କୃଷ୍ଣଦାସ କବିରାଜ ଚୈତନ୍ୟଙ୍କୁ ସ୍ୱୟଂ ଭଗବାନ ବୋଲି ସୂଚିତ କରି 'ଯେଉଁ ଚୈତନ୍ୟ ସେହିଛନ୍ତି କୃଷ୍ଣ' ତାଂକଠାରୁ ପରତତ୍ତ୍ୱ ନାହିଁ ବୋଲି ଉଲ୍ଲେଖ କରିଛନ୍ତି । କେତେକ ଚୈତନ୍ୟଙ୍କୁ କୃଷ୍ଣ ବୋଲି କହି କୃଷ୍ଣଂକ ପରି ଚୈତନ୍ୟଂକର ପରିକର ଓ ପାର୍ଷଦଂକର ନାମୋଲ୍ଲେଖ କରିଛନ୍ତି ଏବଂ ସେମାନେ କୃଷ୍ଣଙ୍କର ସଖା ଓ ପରିକରଙ୍କର ଅବତାର ବୋଲି ସୂଚିତ କରିବାକୁ ଛାଡ଼ି ନାହାନ୍ତି (୪୦) ।

ନବଦ୍ୱୀପ ବୈଷ୍ଣବମଣ୍ଡଳୀର ଏହି ଚୈତନ୍ୟ ତତ୍ତ୍ୱ ଓ ସପାର୍ଷଦ ଚୈତନ୍ୟ ପୂଜାର ଆଦର୍ଶରେ କବି ନିତ୍ୟାନନ୍ଦଂକ ସମ୍ପର୍କରେ ଏ ଗୀତଟି (ଏ ଦୁଃଖ ମୁଁ କହିବି କା' ଆଗେ) ରଚନା କରିଛନ୍ତି । ଏଠାରେ କବି ଗୌରଚନ୍ଦ୍ରଂକର ରାଧାକୃଷ୍ଣଭାବ, ରସ ଓ ନାମ ସଙ୍କୀର୍ତ୍ତନରେ ନିମଜ୍ଜିତ ନିତ୍ୟାନନ୍ଦଂକର ସଂସାର ବିରକ୍ତି (ବୈରାଗ୍ୟ) ସମ୍ପର୍କରେ ଉଲ୍ଲେଖ କରିଛନ୍ତି । କବିଂକ ବର୍ଣ୍ଣନାନୁସାରେ ନିତ୍ୟାନନ୍ଦ ହେଉଛନ୍ତି ଶ୍ରୀକୃଷ୍ଣଂକର ଜ୍ୟେଷ୍ଠଭ୍ରାତା ଅନନ୍ତଂକର ଅଂଶକଳାବତାର । ଯେଉଁ ବଳରାମ ଆଗମ (ତନ୍ତ୍ର) ଓ ନିଗମ (ବେଦ) ତତ୍ତ୍ୱର ଊର୍ଦ୍ଧ୍ୱରେ, ଯେ ଭଗବାନ୍ ଶ୍ରୀକୃଷ୍ଣଂକର ନିତ୍ୟଲୀଳାରେ ଗୋଲୋକରେ ନିତ୍ୟ ବିରାଜିତ, ସେ ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ମୋହାନ୍ଧ ଜୀବର ନିସ୍ତାର ପାଇଁ କଳିଯୁଗରେ ନିତ୍ୟାନନ୍ଦ ରୂପେ ଆବିର୍ଭୂତ (୪୧) । 'ଅଗଣିତ ବ୍ରଜବଧୂ ଯାହା ସଙ୍ଗରେ ରାସ-ରସ ରଙ୍ଗରେ ବିହାର କରନ୍ତି, ସେହି ରସକଳ୍ପତରୁ ପ୍ରେମିକ ଶ୍ରେଷ୍ଠ ନିତ୍ୟାନନ୍ଦଂକର ସଂସାର ବିରକ୍ତିରେ କବି ପ୍ରାଣରେ ବେଦନା ପ୍ରକାଶ କରିଛନ୍ତି (୪୨) ।

---

(୩୮) S. K. De, H. V. F. M. P. 437 ରୁ ଉଦ୍ଧୃତ

(୩୯) ଶ୍ରୀ ଶଚୀସୁତାଷ୍ଟକମ୍, ଶ୍ରୀ ସ୍ତ. କ. ଦ୍ରୁ., ପୃ-୭୦

(୪୦) S. K. De, H. V. F. M., PP. 130-131, 422-439.

(୪୧) ଗୋ. କୃ. ଚ., ପୃ-୭୩୪

(୪୨) ଶ୍ରୀ ସନାତନ ଗୋସ୍ୱାମୀଂକର ଶ୍ରୀମଦ୍ ଭାଗବତ ଭାଷ୍ୟ ବୈଷ୍ଣବ ତୋଷଣୀ ।

## (ଖ) ରାଧା ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ କବିଙ୍କର ସ୍ତୁତି, ବନ୍ଦନା, ପ୍ରାର୍ଥନା, ସ୍ମରଣ, ନାମ, କୀର୍ତ୍ତନ ଓ ଜଣାଣ

ଏହି ଉପବିଭାଗରୁ ବହୁ ଗୀତ (ସଂସ୍କୃତ, ସଂସ୍କୃତରୁ ଅନୂଦିତ, ସଂସ୍କୃତ ପ୍ରଭାବିତ ଇତ୍ୟାଦି) ସମ୍ପର୍କରେ ପଞ୍ଚମ ପରିଚ୍ଛେଦରେ ଆଲୋଚନା କରାଯାଇଛି । ଅବଶିଷ୍ଟ ଗୀତ-ଗୁଡ଼ିକର ଆଲୋଚନା ଏଠାରେ କରାଯାଉଛି ।

**(୧) ଭକ୍ତିରସ (ଭକ୍ତିତତ୍ତ୍ୱକଣ୍ଠସ୍ଥ)**—ଚତୁର୍ଯୁଗରେ ଶ୍ରୀକୃଷ୍ଣଙ୍କର ଅବତାର ଗ୍ରହଣ ସମ୍ପର୍କରେ କବି ଗୀତଟିର ଶିରୋଭୂଷା ସ୍ୱରୂପ ଗୋଟିଏ ସଂସ୍କୃତ ଶ୍ଲୋକ ଉଦ୍ଧାର କରି ଶ୍ଲୋକଟିର ଭାବ ବିସ୍ତୃତ କରି ମାଳବ ଗୌଡ଼ା ରାଗରେ ଗୀତଟି ରଚନା କରିଛନ୍ତି । ଶୁଦ୍ଧା ଭକ୍ତି-ତତ୍ତ୍ୱାନୁସାରେ କବି ଶ୍ରୀକୃଷ୍ଣଙ୍କର ଅବତାରତ୍ୱ ପ୍ରତିପାଦନ କରି ନୃସିଂହ (ସତ୍ୟ), ରାମ (ତ୍ରେତା), ଦେବକୀ ସୁତ କୃଷ୍ଣ (ଦ୍ୱାପର) ଏବଂ ଶ୍ରୀ ଚୈତନ୍ୟ (କଳି) ଅବତାର ଗ୍ରହଣ ସମ୍ପର୍କରେ ସୂଚନା ଦେଇଛନ୍ତି । ଶ୍ରୀକୃଷ୍ଣ ରାସରେ ଅଶେଷ କାୟବ୍ୟୂହ ପ୍ରକାଶ କରିଥିଲେ । ବଳରାମ ଓ ନାରାୟଣଙ୍କୁ ତାଙ୍କର ବିଳାସ ଏବଂ ନୃସିଂହ, ବାମନ ଓ ରାମଚନ୍ଦ୍ରଙ୍କୁ ତାଙ୍କର କଳା ଭାବରେ ଉଲ୍ଲେଖ କରିଛନ୍ତି । ଅନ୍ୟ ଅବତାର ଗୁଡ଼ିକ ତାଙ୍କର ଅଂଶର ଲେଶ ମାତ୍ର । ରାଧା ତାଙ୍କର ପ୍ରାଣ ସ୍ୱରୂପ ।

ଶୁଦ୍ଧାଭକ୍ତିର ବୈଷ୍ଣବ-ତତ୍ତ୍ୱାନୁସାରେ ଶ୍ରୀକୃଷ୍ଣ ଅବତାର ନୁହନ୍ତି, ପୂର୍ଣ୍ଣତମ ରୂପରେ ସେ ନିଜେ ଭଗବାନ୍ । ଜୀବ ଗୋସ୍ୱାମୀ ତାଙ୍କର 'ଶ୍ରୀକୃଷ୍ଣ ସନ୍ଦର୍ଭ'ରେ ପରମାତ୍ମା ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ସ୍ୱରୂପ, କର୍ମ, ଆକାର ଓ ସ୍ଥାନ ଦୃଷ୍ଟିରୁ ପାର୍ଥକ୍ୟ ନିରୂପଣ କରି ପରମାତ୍ମାଙ୍କ ଅପେକ୍ଷା ଶ୍ରୀକୃଷ୍ଣଙ୍କୁ ଶୀର୍ଷସ୍ଥାନ ଦେଇଛନ୍ତି । ପରମାତ୍ମାଙ୍କର ପୂର୍ଣ୍ଣତ୍ୱ ହେଉଛି ଭଗବାନ୍‌ଙ୍କ ସମ୍ପର୍କରେ ଆପେକ୍ଷିକ । ଏହି ଆପେକ୍ଷିକ ପୂର୍ଣ୍ଣତ୍ୱ ଅବତାର ଗୁଡ଼ିକର ଆଶ୍ରୟ ଓ ଉଦ୍‌ଗମ ସ୍ଥାନ । ତେଣୁ ଅବତାର ଗୁଡ଼ିକ ପରମାତ୍ମା ପୁରୁଷ ସହିତ ସଂପୃକ୍ତ । କୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବା ପରଂବ୍ରହ୍ମ ବୋଲି କୁହାଯାଇଛି । ଶ୍ରୀମଦ୍ ଭାଗବତ ଭାଷାରେ 'ଏତେ-ଚାଂଶକଳା ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' (୧।୩।୨୮) ଅର୍ଥାତ୍ ଏଗୁଡ଼ିକ ପୁରୁଷଙ୍କର ଅଂଶ ଓ କଳା (୪୩), କିନ୍ତୁ କୃଷ୍ଣ ହେଉଛନ୍ତି ସ୍ୱୟଂ ଭଗବାନ୍ । କୃଷ୍ଣ ଦେବକୀ ସୁତ ରୂପେ ଆବିର୍ଭୂତ ହୋଇ ବ୍ରଜରେ ଗୋ ଓ ଗୋପ ପାଳନ କରି ମାଧୁର୍ଯ୍ୟଲୀଳାରେ (ବ୍ରଜାଙ୍ଗନା-ଙ୍କର ପ୍ରେମିକ ରୂପେ) ନିଜର ପୂର୍ଣ୍ଣତମର ପ୍ରକାଶ ଘଟାଇଛନ୍ତି ଏବଂ ମଥୁରା ଓ ଦ୍ୱାରା-ବତୀରେ ଯଥାକ୍ରମେ ପୂର୍ଣ୍ଣତର ଓ ପୂର୍ଣ୍ଣ ରୂପେ ପ୍ରକାଶିତ ହୋଇଛନ୍ତି (ଐଶ୍ୱର୍ଯ୍ୟ ଲୀଳା ହେତୁ) ଏବଂ କଳିଯୁଗରେ ପାପତାପକ୍ଳିଷ୍ଟ ଲୋକମାନଙ୍କୁ ସ୍ୱପ୍ରେମର ଆସ୍ୱାଦ ଦେବାପାଇଁ ଶଚୀ ଦେବୀଙ୍କ ଗର୍ଭରୁ ଜାତ ହୋଇ ସଂକୀର୍ତ୍ତନ ମାଧ୍ୟମରେ ହରିନାମର ନୈସର୍ଗିକ ପ୍ରବାହ ଛୁଟାଇଛନ୍ତି । ଭଗବାନ୍ କୃଷ୍ଣଙ୍କର ଲୀଳାର ପ୍ରକାଶ ଭେଦରେ (ବିଭିନ୍ନ ଧାମରେ) ପୂର୍ଣ୍ଣ, ପୂର୍ଣ୍ଣତର ଓ ପୂର୍ଣ୍ଣତମ ରୂପେ ସ୍ୱରୂପର ପ୍ରକାଶ ବୈଚିତ୍ର୍ୟ କବି ଗୀତଟିରେ ପ୍ରଦର୍ଶନ

(୪୩) S. K. De, H. V. F. M., PP. 314-325.

କରିଛନ୍ତି । 'ମନଃ ଶିକ୍ଷା' ଶୀର୍ଷକ ଅନ୍ୟ ଏକ ଗୀତରେ ଶ୍ରୀକୃଷ୍ଣଙ୍କର ଅବତାରତ୍ୱ ଓ ପୂର୍ଣ୍ଣତମତ୍ୱ ପ୍ରକଟିତ (୪୪) ।

**(୨) ଶ୍ରୀଶ୍ରୀ ରାଧାଗୋବିନ୍ଦ କୀର୍ତ୍ତନ ଓ ରାଧାଗୋବିନ୍ଦ ପ୍ରାତଃ ସ୍ମରଣାମୃତ –**

ଏହି ଗୀତ ଦୁଇଟିରେ କବି ଯଥାକ୍ରମେ ଶ୍ରୀକୃଷ୍ଣଙ୍କର ବୈଦଗ୍ଧ୍ୟଲୀଳାବୈଚିତ୍ର୍ୟ ଓ ଗୁଣ ଏବଂ ରାଧାମାଧବଙ୍କର ନିଭୃତ କୁଞ୍ଜରେ ନିଶାନ୍ତ ଲୀଳାର ସ୍ମରଣ ମୂଳକ (ପ୍ରାତଃ-କାଳୀନ) ଚିତ୍ର ଅଙ୍କନ କରିଛନ୍ତି ।

ଶ୍ରୀ ଶ୍ରୀ ରାଧାଗୋବିନ୍ଦ କୀର୍ତ୍ତନରେ ଉଜ୍ଜ୍ୱଳ ରୂପମୂର୍ତ୍ତି ହିରାବସ୍ତ୍ର, ନିତ୍ୟନୂତନ, ବିବିଧ ଭୂଷା, ମାଳା ଓ ମୁରଲୀ ଶୋଭିତ କିଶୋର ଶ୍ରୀକୃଷ୍ଣଙ୍କର ନିକୁଞ୍ଜ କାନନରେ ସଦା ବିଳାସ, କାନନରୁ ପ୍ରତ୍ୟାବର୍ତ୍ତନ କାଳରେ ପଥରେ ରାଧାଙ୍କ ସହିତ ଭେଟ ଓ ମଦନ ବାଟିକାରେ ଲତାଗୃହରେ ମିଳନ; ମଧ୍ୟାହ୍ନରେ କୁଞ୍ଜ ପ୍ରାଙ୍ଗଣରେ ସଖୀମାନଙ୍କ ସମକ୍ଷରେ ସ୍ୱପଦ, ନଖ ଓ ଲଲାଟ ପଟରେ ସ୍ୱ ସ୍ୱ ପ୍ରତିବିମ୍ବ ବିଲୋକନ, ମଧୁପାନରେ ପ୍ରମତ୍ତ ହୋଇ ଶ୍ରୀକୁଣ୍ଡରେ କେଳିବିଳାସ; ପ୍ରେମିକ ପ୍ରେମିକାଙ୍କର ବିବିଧ ହାବଭାବ, ସାତ୍ତ୍ୱିକ ଅନୁଭାବ; ରାଧାଙ୍କର ଲଜ୍ଜା ଏବଂ ସଖୀମାନଙ୍କର କୃଷ୍ଣ ସେବାର ବିଭିନ୍ନ ଚିତ୍ର ସହିତ ଆନୁଷଙ୍ଗିକ ଭାବରେ ଶ୍ରୀକୃଷ୍ଣ ଓ ରାଧାଙ୍କର ଅନନ୍ୟ ଅଙ୍ଗଶୋଭା, ମନ୍ଦହାସ, ଅଭୂଷଣ ଓ ଆଶ୍ଳେଷକାଳୀନ ଶୋଭାର (୪୫) ଆଳଙ୍କାରିକ ଆଲେଖ୍ୟ ଅଙ୍କିତ । ପ୍ରେମିକ ପ୍ରେମିକାଙ୍କର ହାବଭାବ ଓ ମିଳନର ଖଣ୍ଡଚିତ୍ର ପାରମ୍ପରିକ ହେଲେ ମଧ୍ୟ, ପ୍ରେମର ଉଚ୍ଚାଙ୍ଗ ଛବି ଲକ୍ଷିତ ନହେଲେ ମଧ୍ୟ କୀର୍ତ୍ତନ ଅନୁରୂପ ସରଳ ରାଗ (ଚକ୍ରକେଦାର), ଶ୍ରୁତିଯୁଗକର ପଦବିନ୍ୟାସ, ଉପମା ଓ ଉତ୍ପ୍ରେକ୍ଷାର ଚମତ୍କାର ପ୍ରୟୋଗ ଏବଂ ସର୍ବୋପରି ମଞ୍ଜରୀ ଭାବାନୁପ୍ରାଣିତ ଭକ୍ତର ବହୁ ଅଭିଳଷିତ ବୃନ୍ଦାବନ ଓ କୃଷ୍ଣଲୀଳାର ନୟନ ସୁଭଗ ଅଥଚ ସଂକ୍ଷିପ୍ତ ଚିତ୍ର ହେତୁ ଗୀତଟି ସାର୍ଥକ ହୋଇଛି । ପ୍ରତି ପାଦ ଶେଷରେ 'ରାଧାଗୋବିନ୍ଦ' ନାମର ପୁନରାବୃତ୍ତି ଫଳରେ ଗୀତଟିର କୀର୍ତ୍ତନ ମାଧୁର୍ଯ୍ୟ ବଢି ଉଠିଛି ।

ଉପାସ୍ୟଙ୍କର ନାମ ଓ ଲୀଳାକୀର୍ତ୍ତନ ପରି ନାମସ୍ମରଣ ବୈଧୀ ସାଧନ ଭକ୍ତିର ଅନ୍ୟତମ ଅଙ୍ଗ ହୋଇଥିବାରୁ କବି ରାଧାକୃଷ୍ଣଂକର ନିଶାନ୍ତ କୁଞ୍ଜଲୀଳାର ସ୍ମରଣୀ ସ୍ୱରୂପ 'ଶ୍ରୀ ଶ୍ରୀ ରାଧାଗୋବିନ୍ଦ ପ୍ରାତଃ ସ୍ମରଣାମୃତ' (ପୃ-୫୬) ଗୀତଟି ମଙ୍ଗଳଗୁଜ୍ଜରୀ ରାଗରେ ରଚନା କରିଛନ୍ତି । ଶ୍ରୀକୃଷ୍ଣଂକର ରାସଲୀଳା ପରି ନିଶାନ୍ତରେ ରାଧାମାଧବଂକର ନିଭୃତ କୁଞ୍ଜରେ ଲୀଳାଚିତ୍ର ରୂପ ଗୋସ୍ୱାମୀଙ୍କଠାରୁ ଆରମ୍ଭ କରି ପ୍ରାୟ ସମସ୍ତ ବୈଷ୍ଣବ ଗୋସ୍ୱାମୀଙ୍କର ଏବଂ ଓଡ଼ିଆ ବୈଷ୍ଣବ କବିଂକ ରଚନାରେ ପରିଦୃଷ୍ଟ ହୁଏ । ନିଭୃତ କୁଞ୍ଜରେ ରାଧା-କୃଷ୍ଣଂକର ମିଳନ ଏବଂ ମଞ୍ଜରୀ ଦାସୀରୂପେ ଲଳିତା ଓ ବିଶାଖାଂକର ଅନୁଗତ୍ୟମୟୀ ସେବା ପ୍ରତି ବୈଷ୍ଣବ ଭକ୍ତମାନଂକର ପରମ ଲୋଭ ଓ ଅଭିଳାଷ ଥିବାରୁ ମଞ୍ଜରୀ

---

(୪୪) ରୂ. ଗୋ., ଭକ୍ତିରସାମୃତସିନ୍ଧୁ, ଶ୍ଳୋ. ୧୦୬, ପୃ-୧୫୫ ଓ ଗୋ. କୃ. ଗ୍ରଂ., ପୃ-୬୧
(୪୫) ଗୋ. କୃ. ଗ୍ରଂ., ପୃ-୬୬

ଭାବାନୁପ୍ରାଣିତ କବି ଏହି ଗୀତଟିକୁ ଏକ ଅଭିନବ ଧାରରେ ରଚନା କରିଛନ୍ତି । ଗୀତଟିର ଗୀତଧର୍ମିତା ଅପେକ୍ଷା ଆଖ୍ୟାନଧର୍ମିତା ଏହାର ମୁଖ୍ୟ ଆବେଦନ । ମହାଭାବମୟ ଗୌରାଙ୍ଗଙ୍କର ପ୍ରାତଃସ୍ମରଣୀ ଛଳରେ କବି ବୃନ୍ଦାବନରେ ରାଧାକୃଷ୍ଣଙ୍କର ପ୍ରାତରୁତ୍ଥାନ ଲୀଳା ବର୍ଣ୍ଣନା କରିଛନ୍ତି ।

ରାଧାକୃଷ୍ଣଙ୍କର ଉତ୍ଥାପନର ପରିବେଶ ରୂପେ କବି ପ୍ରଭାତ ପ୍ରକୃତିର ଏକ ବାସ୍ତବ ଚିତ୍ର ଅଙ୍କନ କରିଛନ୍ତି । ପ୍ରଭାତର ସୂଚନା ମିଳିବାରୁ ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବୀ ବୃନ୍ଦା (୪୬) ଯମୁନା ତୀରସ୍ଥ ନିଭୃତ କୁଞ୍ଜ ଅଙ୍ଗନରେ ଉପସ୍ଥିତ ହୁଅନ୍ତେ ବୃକ୍ଷ ଓ ଲତା ମାନଙ୍କରେ ଶୁକ, ସାରି, କୋକିଳ, କପୋତ, ଚକ୍ରବାକ, କୁକ୍କୁଟ ଓ ରାଜହଂସ ପ୍ରଭୃତି ପକ୍ଷୀମାନେ ମଧୁର କୂଜନ ଆରମ୍ଭ କଲେ । ପଦ୍ମ ସୁରଭି ବହନ କରି ମଳୟାନିଳ ପ୍ରବାହିତ ହେଲା । ଅଳିମାନେ କେଳି କୁଞ୍ଜରେ ମଧୁର ଗୁଞ୍ଜନ କଲେ । କୁଞ୍ଜ ନିଳୟର ଶୀର୍ଷ ଭାଗରୁ ମୟୂର କେକାଧ୍ୱନି କରି ପ୍ରାଙ୍ଗଣକୁ ଅର୍ପିଲା । ଶ୍ରୀକୃଷ୍ଣଙ୍କର ସୁରଙ୍ଗ ନାମକ ହରିଣ ନିଜର ପ୍ରିୟାସହ କୁଞ୍ଜ ଅଳିନ୍ଦକୁ ଲାଗି ଠିଆହେଲା । ଏହି ସମୟରେ ସଖୀ (ଲଳିତା, ଚମ୍ପକଲତା, ଇନ୍ଦୁରେଖା, ତୁଙ୍ଗବିଦ୍ୟା, ରଙ୍ଗ ଦେବୀ, ସୁଦେବୀ, ବିଶାଖା), ମଞ୍ଜରୀସଖୀ (ରୂପ, ରତି, ଲବଙ୍ଗ ଓ ରସମଞ୍ଜରୀ) ଓ ନିତ୍ୟେଶ୍ୱରୀମାନେ (ଶ୍ୟାମଳା, ବିମଳା, ମଧୁମତୀ, ଭଦ୍ରା, ପାଲୀ) ନିକୁଞ୍ଜ-ପଞ୍ଜର-ଜାଲ ପାର୍ଶ୍ୱରେ ନିର୍ନିମେଷ ନୟନରେ ରାଧାକୃଷ୍ଣଙ୍କର କେଳି ଲକ୍ଷ୍ୟ କରନ୍ତି । ପକ୍ଷୀମାନଙ୍କର କୂଜନରେ ପୁଷ୍ପ ଶଯ୍ୟାରେ ରାଧା କୃଷ୍ଣଙ୍କର ନିଦ୍ରା ଭାଙ୍ଗିଯାଏ । ସେମାନଙ୍କର କେଳିର ସାକ୍ଷୀ ଶୁକ ଓ ସାରି ସ୍ୱାମୀ ଓ ସ୍ୱାମିନୀଙ୍କର ଜୟଧ୍ୱନି କରି ପୁଷ୍ପ ଶଯ୍ୟା ତ୍ୟାଗ କରି ରାତ୍ରି ଅବସାନ ପୂର୍ବରୁ ସ୍ୱ ସ୍ୱ ମନ୍ଦିରକୁ ଯାତ୍ରା କରିବା ପାଇଁ କାଳୋଚିତ ସଙ୍କେତ ଦିଅନ୍ତି । ପୁଷ୍ପ ଶଯ୍ୟାରୁ ଶ୍ରୀକୃଷ୍ଣ ରାଧାଙ୍କୁ ତୋଳି ନିଜ ବକ୍ଷରେ ପହୁଡ଼ାନ୍ତି । କକ୍ଖଟୀ ବାନରୀ ମୁଖରୁ ଯଷ୍ଟି ଧାରିଣୀ ବୃଦ୍ଧା ଜଟିଳାର (ରାଧାଙ୍କର ଶାଶୁ) ଆଗମନର ଚେତାବନୀ ଶୁଣି ଉଦ୍‌ବେଗର ସହିତ ସ୍ୱ ସ୍ୱ ବସ୍ତ୍ର ବଦଳ କରି ରାଧାକୃଷ୍ଣ କୁଞ୍ଜରୁ ନିଷ୍କ୍ରାନ୍ତ ହେବାପରେ ନେପଥ୍ୟ ଓ ବସ୍ତ୍ର ଭୂଷଣରେ ବିପର୍ଯ୍ୟୟରେ ସଖୀ ଓ ସଖାମାନଙ୍କର ସସ୍ନେହ ଶ୍ରଦ୍ଧା ଓ ପରି-ହାସର ଶରବ୍ୟ ହୁଅନ୍ତି ଏବଂ ଅପାଙ୍ଗରେ ପରସ୍ପରକୁ ପ୍ରେମ ସଙ୍କେତ ଜଣାଇ ପରସ୍ପରଠାରୁ ବିଦାୟ ନିଅନ୍ତି । କବିଙ୍କର ଏହି ଲୀଳା ଚିତ୍ର ଅଙ୍କନରେ ଗୀତଗୋବିନ୍ଦ ଓ ବିଦଗ୍ଧ ମାଧବ ପ୍ରଭୃତିର ପ୍ରଭାବ ରହିଥିଲେ ମଧ୍ୟ କୃଷ୍ଣଦାସ କବିରାଜଙ୍କର ଗୋବିନ୍ଦଲୀଳାମୃତ ମହାକାବ୍ୟ (୧ମ ସର୍ଗ) ଏବଂ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ପ୍ରେମ ଚିନ୍ତାମଣି'ର (ଗୋପ ଲୀଳାମୃତ ଅନୁସରଣରେ ଲିଖିତ) ନିଶାନ୍ତ ଲୀଳା ବର୍ଣ୍ଣନାର (୪ର୍ଥ ଗ୍ରନ୍ଥ) ପ୍ରଭାବ ଏକାନ୍ତ ସ୍ପଷ୍ଟ ।

ଗୋବିନ୍ଦଲୀଳାମୃତ ମହାକାବ୍ୟର ପ୍ରଥମ ସର୍ଗଟିର ନାମ କରଣ କରାଯାଇଛି 'କୃଷ୍ଣ ନିଶାନ୍ତ କେଳି' । ରାଧାକୃଷ୍ଣଙ୍କର ଗାତ୍ରୋତ୍ଥାନର ପରିବେଶ ସ୍ୱରୂପ କୃଷ୍ଣଦାସ କବିରାଜ ନିଶାନ୍ତ ପ୍ରକୃତିର ବର୍ଣ୍ଣନା ଦେଇଛନ୍ତି । ଏଥିରେ ସେହି ଭ୍ରମର ଗୁଞ୍ଜନ, କୋକିଳ କାକଳି, ମୟୂରର କେକା, ଚକ୍ରବାକ କୂଜନ ଓ ଶୁକ ସାରୀଙ୍କର ଉକ୍ତି, ଅସ୍ତୋନ୍ମୁଖୀ ଚନ୍ଦ୍ର ଓ

(୪୬) ବୃ. ଗୋ., ଶ୍ରୀ ରାଧାକୃଷ୍ଣ ଗଣୋଦ୍ଦେଶ ଦୀପିକା (ଲଘୁଃ), ବୃନ୍ଦା, ଶ୍ଳୋ-୧୭, ପୃ-୧୧

ଉଦୟୋନ୍ମୁଖ ଅରୁଣର ବର୍ଣ୍ଣନା ରହିଛି । କିନ୍ତୁ ବର୍ଣ୍ଣନାରେ ମଧ୍ୟଯୁଗୀୟ ବାଗ୍‌ବିଳାସ, ଶ୍ଳେଷଗର୍ଭିତ ବକ୍ରୋକ୍ତି ବା ଗୂଢ଼ୋକ୍ତିର ମାତ୍ରା ଅଧିକ ଥିବାରୁ ବର୍ଣ୍ଣନା ଓ ବସ୍ତୁ ମଧ୍ୟରେ ଭାବସାମ୍ୟ ରହିପାରିନାହିଁ । ଶୁକ ସାରୀଙ୍କର ଉକ୍ତିର ମାତ୍ରାଧିକ୍ୟତା ହେଉଛି ତା'ର ଦୃଷ୍ଟାନ୍ତ । ତା'ଛଡ଼ା ବର୍ଣ୍ଣନାରେ ବ୍ୟଞ୍ଜନା ସତ୍ତ୍ୱେ ରହିଯାଇଛି ମଧ୍ୟଯୁଗୀୟ ସଂସ୍କୃତ କାବ୍ୟ ସୁଲଭ ଅସ୍ୱାଭାବିକତା, ଯାହା ଗୋପାଳକୃଷ୍ଣଙ୍କ ରଚନାରେ ପରିଲକ୍ଷିତ ହୁଏ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ ଅରୁଣଙ୍କର ଉଦୟାଚଳରେ ଆବିର୍ଭାବ ଦେଖି ଚକ୍ରବାକୀ ଏକ ସମୟରେ ଗୋଟିଏ ଚକ୍ଷୁଦ୍ୱାରା ରକ୍ତାଭ ପୂର୍ବ ଦିଗକୁ ଚାହିଁବା ସଙ୍ଗେ ସଙ୍ଗେ ଅନ୍ୟ ଚକ୍ଷୁଦ୍ୱାରା ଦୂରବର୍ତ୍ତୀ ପତି ଚକ୍ରବାକକୁ ନିରୀକ୍ଷଣ କରୁଛି (୪୭) । ଏକ ସମୟରେ ଏକ ଚକ୍ଷୁ ଓ ଅପର ଚକ୍ଷୁଦ୍ୱାରା ବିଭିନ୍ନ ବସ୍ତୁ ପ୍ରତି ଧ୍ୟାନ ଜନିତ ଦୃଷ୍ଟି ରହିବା ସ୍ୱାଭାବିକ ନୁହେଁ । କବିଙ୍କର ବର୍ଣ୍ଣନାନୁସାରେ ଅଳିଗୁଡ଼ିକ କୁସୁମିତ ଲତାଜାଲ ଶୋଭିତ କୁଞ୍ଜ ମଧ୍ୟରେ ରତି ପତିର ମଙ୍ଗଳ ଧ୍ୱନି ସଦୃଶ ଗୁଞ୍ଜନ କରିବାକୁ ଲାଗିଲେ (୧୧୪) । ରସାଳ ଶାଖାରେ କୋକିଳକୁଳ ରତିବୀଣା ତୁଲ୍ୟ ମଧୁର ଧ୍ୱନି କଲେ (୧୧୭) । ସେହି ଅଳି, କୋକିଳ, କେକୀ, ଚକ୍ରବାକ ଓ ଶୁକ ସାରୀଙ୍କର ବର୍ଣ୍ଣନା ଉଭୟଙ୍କ ରଚନାରେ ରହିଥିଲେ ମଧ୍ୟ ଗୋପାଳକୃଷ୍ଣଙ୍କ ପ୍ରଭାତ ପ୍ରକୃତି ବର୍ଣ୍ଣନା ଅପେକ୍ଷା ସ୍ୱାଭାବିକ ହୋଇଛି, ନିମ୍ନୋକ୍ତ ଉଦ୍ଧୃତିରୁ ତାହା ସ୍ପଷ୍ଟ ହେବ, ଯଥା—ଦ୍ରାକ୍ଷାଲତାରୁ ଅଇଲେ ସାରିକା ନିକର ।

ନୀରଦ ପରି ମଣ୍ଡିଲେ ନିକୁଞ୍ଜ ଶିଖର ଯେ ।୫।
ରସାଳ ଶାଖାରେ ପିକ, କିଙ୍କିରେ ଶୁକ ।
ପିଳୁରେ କପୋତ, ଯମୁନାରେ ଚକ୍ରବାକ ଯେ ।୬।
ଅନିଳ ବହିଲା ପଦ୍ମ-ପରିମଳ ଘେନି ।
ଅଳି ଅଳି ମିଳି କଲେ କେଳି କୁଞ୍ଜେ ଧ୍ୱନି ଯେ ।୮।
କୁଞ୍ଜ-ପୁରତର ତୁଙ୍ଗ ଚୂଳରୁ କଳାପୀ ।
ପ୍ରମତ୍ତେ ଅଇଲେ କେକା ବାଣୀକି ପ୍ରଳାପି ଯେ ।୯।

(ଗୋ. କୃ. ଗ୍ରଂ., ପୃ-୫୮)

ଶୁକ ସାରୀଙ୍କର ଜୟଧ୍ୱନି ମାଧ୍ୟମରେ ରାଧାକୃଷ୍ଣଙ୍କୁ ଜାଗ୍ରତ କରାଇ ସାମାଜିକ ବିଧି ସଂପର୍କରେ ସଚେତ କରାଇବାର କଳ୍ପନା ପାଇଁ କବି କୃଷ୍ଣଦାସ କବିରାଜଙ୍କଠାରେ ଋଣୀ । କିନ୍ତୁ ଗୋବିନ୍ଦ ଲୀଳାମୃତର ବର୍ଣ୍ଣନାର ଦୀର୍ଘତା ଓ ସ୍ଥଳ ବିଶେଷର ଅସ୍ୱାଭାବିକତା ପରିହାର କରି ଗୋପାଳକୃଷ୍ଣ ବର୍ଣ୍ଣନାକୁ ସଂଯତ ଓ ସ୍ୱାଭାବିକ କରିଛନ୍ତି । ଗୋପାଳକୃଷ୍ଣଙ୍କ ରଚନାରେ ପ୍ରଥମତଃ ଶୁକ କୃଷ୍ଣଙ୍କର ଜୟଧ୍ୱନି କରି ଅରୁଣୋଦୟର ସଙ୍କେତ ଦେଇ ଗୋଷ୍ଠେଶ୍ୱରୀ (ଯଶୋଦା) ପୌର୍ଣ୍ଣମାସୀଙ୍କ ସହିତ ତାଂକର ଶୟନ ମନ୍ଦିରକୁ ଯିବା ପୂର୍ବରୁ କୁଳବଧୂ ରାଧାଙ୍କୁ କୋଳମୁକ୍ତ କରି କୁଞ୍ଜ ପ୍ରାଙ୍ଗଣ ତ୍ୟାଗ କରିବା ପାଇଁ ସୂଚାଇଛି । ତା'ପରେ ସାରୀ ରାଧାଂକର ଜୟଧ୍ୱନି କରି ଚନ୍ଦ୍ରାସ୍ତର ସୂଚନା ଦେଇ ବ୍ରଜେନ୍ଦୁଂକ ବାହୁପାଶରୁ

(୪୭) କୃ.ଦା.କ.,ଗୋ.ଲୀ,ମୃ., ୧।୩୨ ଏବଂ ଅ. ସା. ସିଂ., ପ୍ରେମଚନ୍ଦ୍ରାମଣି (ଅପ୍ର.), ୪।୭

ମୁକ୍ତ ହୋଇ ଶଯ୍ୟାଚ୍ଛନ୍ନଙ୍କୁ ଚାଲିଯିବା ପାଇଁ ସଂକେତ ଦେଇଛି; ପୁଣି କ୍ଷୀରଭାର ସହ ଗୋଷ୍ଠ ପ୍ରତ୍ୟାଗତ ସ୍ୱାମୀ ଅଭିମନ୍ୟୁ ଓ ଶାଶୂ ଜଟିଳାଙ୍କର ଭୟ ସୂଚେଇ ରଜନୀ ଅବସାନ ପୂର୍ବରୁ ଗୃହର ପ୍ରାତଃକୃତ୍ୟ ସମାପନ ନିମନ୍ତେ କୁଳବଧୂ ଉପଯୋଗୀ ଚେଷ୍ଟାବଳୀ ଶୁଣାଇଛି । ଗୋବିନ୍ଦ ଲୀଳାମୃତରେ ରାଧାକୃଷ୍ଣ ଉଭୟଙ୍କର ନୈଶଲୀଳାର ସାକ୍ଷିଣୀ ଶାରୀ ରାଧାଙ୍କର ଗୃହ-ସାରିକା ଶ୍ରୀକୃଷ୍ଣଙ୍କର ଜୟଧ୍ୱନି କରି ଅରୁଣୋଦୟର ସଂକେତ ଦେଇ ଭୁଜବେଷ୍ଟିତା ରତିକ୍ଳାନ୍ତା ରାଧାଙ୍କୁ ଜାଗ୍ରତ କରି ନିଭୃତ ନିଳୟକୁ ଗମନ କରିବା ପାଇଁ ସଚେତ କରାଇବା ସଙ୍ଗେ ସଙ୍ଗେ ପଲ୍ଲବ ଶଯ୍ୟା ତ୍ୟାଗ କରିବା ପାଇଁ ଅନୁରୋଧ କରିଛି । ତା'ପରେ କୃଷ୍ଣଙ୍କର ବାକ୍ୟବିନ୍ୟାସ ନିପୁଣ ବିଚକ୍ଷଣ ନାମକ ଶୁକ ଗୋକୁଳଚନ୍ଦ୍ରଙ୍କର ଜୟଧ୍ୱନି କରି ଚନ୍ଦ୍ରାସ୍ତ ଓ ଅରୁଣୋଦୟର ସୂଚନା ଦେଇ ଗୋଷ୍ଠ ମନ୍ଦିରକୁ ଯିବାପାଇଁ ସଚେତ କରାଇଛି । ପୁଣି ଶୁକ-ସାରୀ ଉକ୍ତିର ବର୍ଣ୍ଣନା ଟିକିଏ ବିସ୍ତୃତ କରି 'ସୂକ୍ଷ୍ମଧୀ' ନାମ୍ନୀ ସାରିକା ଓ ଲକ୍ଷ୍ମୀ ଶୁକର ଅଧ୍ୟାପକ 'ଦକ୍ଷ' ନାମକ ଶୁକ ପକ୍ଷୀ ଜନବିରଳ ଥିବାବେଳେ, ଦଧି ମନ୍ଥନ କରିବା ନିମିତ୍ତ ଯଶୋଦା ଦାସୀମାନଙ୍କୁ ଆଦେଶ ଦେବା ପୂର୍ବରୁ ନିକୁଞ୍ଜ ତ୍ୟାଗ କରି ନିଃଶବ୍ଦରେ ଶୟନ ମନ୍ଦିରକୁ ଚାଲିଯିବା ପାଇଁ ଯଥାକ୍ରମେ ରାଧା ଓ କୃଷ୍ଣଙ୍କୁ ଶୁଣାଉଛନ୍ତି ।

ନିଦ୍ରାଗତ ଶ୍ରୀକୃଷ୍ଣଙ୍କର ରାଧାଙ୍କୁ ପୁଷ୍ପ ଶଯ୍ୟାରୁ ଟେକି ନିଜ ବକ୍ଷରେ ପହୁଡ଼ାଇବାର ଚିତ୍ର ଗୋବିନ୍ଦଲୀଳାମୃତର ଅନୁରୂପ ହେଲେ ମଧ୍ୟ ଗୋପାଳକୃଷ୍ଣଙ୍କ ରଚନାରେ ଅତି ସଂଯତ ଓ ସଂକ୍ଷିପ୍ତ କିନ୍ତୁ ଗୋବିନ୍ଦଲୀଳାମୃତରେ ତାହା ବିସ୍ତୃତ ଓ ଶୃଙ୍ଗାର ଧର୍ମୀ ହୋଇଛି, ଯଥା—ରଜନୀ ଅବସାନ ହେତୁ ଉଭୟେ ଚଞ୍ଚଳ ଚିତ୍ତ ହେଲେ ମଧ୍ୟ ଆଶ୍ଳେଷାବଦ୍ଧ ହୋଇ ଶଯ୍ୟାତ୍ୟାଗ କରିପାରୁ ନାହାନ୍ତି । କଞ୍ଚୁକପଟରେ ଗାତ୍ରୋତ୍ଥାନ କରି ବ୍ୟାଜ ନିଦ୍ରାରେ ନିମୀଳିତାକ୍ଷୀ ରାଧାଙ୍କୁ କୋଡ଼ରେ ଧାରଣ କରି ତାଙ୍କର ବଦନ-ମାଧୁରୀ ଉପ-ଭୋଗ କରନ୍ତି ଏବଂ ତାଙ୍କର ବିଘୂର୍ଣ୍ଣିତ ନେତ୍ର ଏବଂ ଅଳକା-ଭ୍ରମର-ଶୋଭିତ ଲଲାଟଯୁକ୍ତ ବଦନ କମଳରୁ ମଧୁପାନ କରନ୍ତି (୪୮) । ମଦାଳସା ରାଧାଙ୍କର କପୋଳରେ ପୁନଃ ପୁନଃ ଚୁମ୍ବନ-ମୁଦ୍ରା ଆଙ୍କନ୍ତେ ବ୍ରୀଡ଼ାବତୀ ରାଧା ଗାତ୍ରୋତ୍ଥାନ କରି ଶ୍ରୀକୃଷ୍ଣଙ୍କର ପୀତ ଉତ୍ତରୀୟରେ ସ୍ୱଦେହ ଆବୃତ୍ତ କରି ପ୍ରିୟତମଙ୍କ ପାର୍ଶ୍ୱରେ ଉପବେଶନ କରନ୍ତି । ରତାନ୍ତ ନାୟକ ନାୟିକାଙ୍କର ବିପର୍ଯ୍ୟସ୍ତ ବେଶ, ବାସ ଓ ପ୍ରସାଧନର (ରାଧାଙ୍କ ଗଣ୍ଡରେ ତାମ୍ବୂଳ ବୋଳ, ଶିଥିଳ ସିନ୍ଦୂର ବିନ୍ଦୁ, ପୀତବସ୍ତ୍ର, କୃଷ୍ଣଙ୍କ ଲଲାଟରେ ସିନ୍ଦୂର, ନୀଳ ଉପରଣି) ବର୍ଣ୍ଣନା ଯାହା ଗୋପାଳକୃଷ୍ଣ କରିଛନ୍ତି ତା'ର ଅନୁରୂପ ବର୍ଣ୍ଣନା ଗୋବିନ୍ଦଲୀଳାମୃତରେ ରହିଛି, ଯଥା—ସଖୀମାନେ ପରସ୍ପରର ଅଧରରେ ଦଶନ ଚିହ୍ନ, କଳେବରରେ ନଖଚିହ୍ନ, ବିଳାସ ଜନିତ ଆଳସ୍ୟ, ବିଗଳିତ କୁନ୍ତଳ, ବେଶବିନ୍ୟାସ ଶୂନ୍ୟତା ଓ ବିଚ୍ଛିନ୍ନ ମଣିମୁକ୍ତା ହାର ଦର୍ଶନ କରି ହାସ୍ୟ କରିବାରେ ଲାଗନ୍ତି (୪୯) । ଉତ୍ତରରେ ଜଟିଳା ଆସିବା ସମ୍ପର୍କରେ କକ୍‌ଖଟୀ ବାନରୀର ସତର୍କ ବାଣୀର ସୂଚନା ରହିଛି ।

---

(୪୮) ଗୋ. ଲୀ. ମୃ., ୧ମ ସର୍ଗ, ପୃ-୨୮

(୪୯) ତତ୍ରୈବ, ପୃ-୩୪

ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ପ୍ରେମ ଚିନ୍ତାମଣି' ଗୋବିନ୍ଦଲୀଳାମୃତ ଅନୁସରଣରେ ରଚିତ ହୋଇଥିବାରୁ ଭାବ, କଳ୍ପନା ଓ ବସ୍ତୁ ଦୃଷ୍ଟିରୁ ନିଶାନ୍ତଲୀଳା ବର୍ଣ୍ଣନା ଉଭୟରେ ପ୍ରାୟ ସମାନ । କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର 'ମ' ଓ 'ଯ' ଚମ୍ପୂ ଗୀତରେ କବିସୂର୍ଯ୍ୟ ବଳଦେବ ରଥ ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜରେ ମିଳନ ଓ ରତ୍ୟନ୍ତର ମାର୍ଜିତ ଛବି ଅଙ୍କନ କରିଛନ୍ତି । ପ୍ରାଚୀ ଦିଗ୍‌ବଳୟରେ ରକ୍ତିମ ଆଭାର ସଙ୍କେତ ପାଇ ସଖୀ କେଳିକୁଞ୍ଜର ଦ୍ୱାର ଦେଶର ଅନ୍ତରାଳରେ ଠିଆ ହୋଇ ଅଙ୍ଗସଙ୍ଗ ତ୍ୟାଗ କରିବାକୁ ରାଧାଙ୍କୁ କହେ ('ର' ଗୀତ) । ସଖୀର ଚେତାବନୀରେ ଲଜ୍ଜିତ ରାଧା ଦୁକୂଳ ଦେବାପାଇଁ କୃଷ୍ଣଙ୍କୁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ଗୀତଗୋବିନ୍ଦର ନାୟିକା ପରି ବିପର୍ଯ୍ୟସ୍ତ ବେଶଭୂଷା ଓ ନେପଥ୍ୟ ସଜାଡ଼ିବା ପାଇଁ ଅନୁରୋଧ କରନ୍ତି ଏବଂ ଶିଖଣ୍ଡ ମୁକୁଟରେ ଅଳକ୍ତକ ଲାଗିଥିବାର ଚେତାଇ ଦିଅନ୍ତି ('ଲ' ଗୀତ ) । କେଳିକୁଞ୍ଜ ବାହୁଡ଼ା ରାଧାଙ୍କୁ ଦେଖି ସଖୀ ତାଙ୍କ ଗଣ୍ଡରେ କ୍ଷତ, ଅଧରର ମଳିନତା, ଓ ଦୁକୂଳର ଶିଥିଳତା ଲକ୍ଷ୍ୟ କରି ପରିହାସ କରେ ('ବ' ଗୀତ) ଏବଂ ସଖା ମଧୁମଙ୍ଗଳ ଶ୍ରୀକୃଷ୍ଣଙ୍କୁ ପରିହାସ କରେ ('ଶ' ଗୀତ) । ଚକ୍ରବାକ ଦମ୍ପତିର ଆନନ୍ଦ, ବନ୍ୟ କୁକ୍କୁଟର ସ୍ୱନ, ପଦ୍ମରେ ଅଳିଝଙ୍କାର ଏବଂ ପ୍ରାଚୀ-ଦିଗ୍‌ପଟର ଅରୁଣିମାର ଚିତ୍ର ମାଧ୍ୟମରେ କବି ପ୍ରଭାତ ପ୍ରକୃତିର ଚିତ୍ର ଆଙ୍କିଛନ୍ତି ('ଲ' ଗୀତ ପରବର୍ତ୍ତୀ ସଂସ୍କୃତ ଗଦ୍ୟଭାଗ) । କେଳି ବାହୁଡ଼ା ରତାନ୍ତ ନାୟକ ଓ ନାୟିକା ଅବସ୍ଥାର ଚିତ୍ର ମଧ୍ୟଯୁଗର ପ୍ରତ୍ୟେକ ଶୃଙ୍ଗାର କବି ଆଙ୍କିଛନ୍ତି । ରାଧାକୃଷ୍ଣଙ୍କର ନିଶାନ୍ତ କୁଞ୍ଜଲୀଳା ବର୍ଣ୍ଣନା ପ୍ରସଙ୍ଗରେ ପରମ୍ପରା ଭାବେ ରୀତିଯୁଗୀୟ କବିମାନଙ୍କର ବର୍ଣ୍ଣନାର ରୂପ କବି ଦ୍ୱାରା ରଚିତ ହେବା ସ୍ୱାଭାବିକ । ବଙ୍ଗୀୟ ପଦାବଳୀ ସାହିତ୍ୟରେ ସମ୍ଭୋଗ ଶେଷରେ ନାୟକ ନାୟିକାଙ୍କର ଅବସାଦ ବା ଆଳସ୍ୟର ଚିତ୍ରକୁ ରସାଳସ ବା କୁଞ୍ଜଭଙ୍ଗ କୁହାଯାଏ । ଏ ସମ୍ପର୍କରେ ଅନୁପ୍ରାସ ଯମକ ପୂର୍ଣ୍ଣ ଅଥଚ କବିତ୍ୱ-ମଧୁର ଜଗଦାନନ୍ଦଙ୍କର କୁଞ୍ଜ ଭଙ୍ଗର ପଦ ଉଲ୍ଲେଖ-ଯୋଗ୍ୟ । ଅଳଙ୍କାରର ଅତିଶଯ୍ୟତା ରସାଳସକୁ ସାର୍ଥକ ରୂପ ଦାନ କରିଛି (୫୦) ।

**(୩) ଶ୍ରୀକୃଷ୍ଣ ନାମାମୃତସ୍ୱାଦନୀ ଓ କୃଷ୍ଣନାମରତ୍ନମାଳା ଚଉତିଶା**— ଏ ଦୁଇଟି ଗୀତର ବର୍ଣ୍ଣନୀୟ ବସ୍ତୁ ଗତାନୁଗତିକ ଓ ବୈଚିତ୍ର୍ୟହୀନ । ପ୍ରଥମଟିରେ ଯଶୋଦାଙ୍କର ବାତ୍ସଲ୍ୟ-ଲକ୍ଷ୍ମୀ ରୂପଧାରୀ କାଳିନ୍ଦୀକୂଳନ ବିହାରୀ ଶ୍ରୀକୃଷ୍ଣଙ୍କର ଗୋବର୍ଦ୍ଧନ ଧାରଣ ଓ ଇନ୍ଦ୍ର ଦର୍ପଦଳନର ଚିତ୍ର ଅଙ୍କିତ । ଦ୍ୱିତୀୟଟିରେ 'କ' ଠାରୁ 'କ୍ଷ' ଚଉତିଶା କ୍ରମରେ ଶ୍ରୁତି ସୁଖକର 'ଗୁରୁଦେବ ଦୟାକର ଦୀନଜନେ' ବୃତ୍ତରେ ପ୍ରତ୍ୟେକ ପଦପ୍ରାନ୍ତରେ ରାମକୃଷ୍ଣ ଓ ହରିଙ୍କୁ ପ୍ରଣାମ ଜଣାଇ କବି ଶ୍ରୀକୃଷ୍ଣଙ୍କର ରୂପ, ବେଶ ଭୂଷଣ, ନିତ୍ୟନୂତନ ଧୀର ଲଳିତ ବିଗ୍ରହ, ଆନନ୍ଦ ତଥା ରସଘନତ୍ୱ, ଷଡ଼ୈଶ୍ୱର୍ଯ୍ୟ, ଅନନ୍ତଗୁଣ, ନିତ୍ୟତ୍ୱ ଓ ପୂର୍ଣ୍ଣତମତ୍ୱ, ବ୍ରଜ ଓ ବୃନ୍ଦାବନରେ ବିବିଧ ଲୀଳାର କ୍ରମହୀନ ବର୍ଣ୍ଣନା ଦେଇଛନ୍ତି । ଛନ୍ଦ ଓ ଆନୁପ୍ରାସିକ ସୌଷ୍ଠବ ଦୃଷ୍ଟିରୁ ପାଠକ ଓ ଭକ୍ତ ପକ୍ଷରେ ଏହା ଆବୃତ୍ତିସୁଖକର ହେଲେ ମଧ୍ୟ ଭାବ-ଦୁର୍ବଳତା ହେତୁ ଏହାର କଳାଗତ ମୂଲ୍ୟର ନ୍ୟୂନତା ସ୍ପଷ୍ଟ ହୋଇଥାଏ । କେତେକ

---

(୫୦) ଶ୍ରୀକାଳିଦାସ ରାୟ, ପଦାବଳୀ ସାହିତ୍ୟ, ୩ୟ ସଂ., ପୃ-୪୪

ପଦରେ ପୂର୍ବସୂରି ସଂସ୍କୃତ ଓ ଓଡ଼ିଆ କବିମାନଙ୍କର ପଦ ପରମ୍ପରାର ପ୍ରଭାବ ବାରି ହୋଇ ଯାଏ; ଯଥା —"ରାଧାଧର-ସୁଧା-ପାନଶାଳୀ, ଧ୍ୱଜ-ବଜ୍ର-ଝଷାଙ୍କିତ ପାଦଯୁଗ, ଗୁରୁଚନ୍ଦନ-ଚର୍ଚ୍ଚିତ କଳେବର (ସଂସ୍କୃତ ରଚନାର ପ୍ରଭାବ); ଛଳବାହ୍ୟନାରୀ ଛଦ୍ମ ବେଶଧର, ଜମ୍ବାଗତ ମଣି କାନ୍ତି ଅନୁପାମ (ବଳଦେବଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ) । ତେବେ ସାହିତ୍ୟିକ ଶବ୍ଦ ସହ ଦେଶଜ ଶବ୍ଦମାନଙ୍କର ଗୁମ୍ଫନ କିପରି ରଚନାର ସୌଷ୍ଠବ ସମ୍ପାଦନ କରିଛି, ନିମ୍ନୋକ୍ତ ଉଦ୍ଧୃତ ଗୁଡ଼ିକ ତା'ର ପ୍ରମାଣ, ଯଥା—ଖେଳଖିଆଲ, କୌତୁକୀ, ଝାଡ଼ିବନଗୃହୀ, ଠେକ-ସଜ୍ଜନ ପାଳକ, ତୋଳା କମଳକୁ ଅନାଉଣି ଶୋଭା, ଡର-ଧ୍ୱଂସୀ ତନୁ, ତାଳୀସହ ପୁଷ୍ପଗୁଚ୍ଛ, ଢଙ୍ଗରଙ୍ଗ ଛଇ ଛଟା ଚମତ୍କାର, ଢଳାପାଙ୍ଗ ବ୍ରଜାନନା, ଧଣ୍ଡା ଚମ୍ପକ ଇତ୍ୟାଦି ।

ବିଷୟ ଜଞ୍ଜାଳରେ କ୍ଳିଷ୍ଟପିଷ୍ଟ ଜରାଗ୍ରସ୍ତ କବିଙ୍କ ଚିତ୍ତରେ ନଶ୍ୱର ସଂସାରର ଧନ, ଜନ ଓ ଅହଂକୃତ ପ୍ରତି ଯେତେବେଳେ ତୀବ୍ର ବିତୃଷ୍ଣା ଜାତ ହୋଇଛି, ସେତେବେଳେ ଭଗବାନ୍ ଶ୍ରୀକୃଷ୍ଣଙ୍କର କୃପା, ତାଙ୍କ ପଦରେ ଦାସତ୍ୱ ତାଙ୍କର ଏକମାତ୍ର ପ୍ରାର୍ଥନା ! ସାଧନ ବୈଧୀ ଭକ୍ତି ପଥରେ ସାଧୁମେଳରେ ଭଗବାନ୍‌ଙ୍କର ନାମ, ରୂପ, ଲୀଳା ଓ ମହିମା କୀର୍ତ୍ତନ କରି କରି ପ୍ରାଣପ୍ରୟାଣ ସମୟରେ ରାଧାଗୋବିନ୍ଦଙ୍କ ନାମ ଉଚ୍ଚାରଣ କରି କରି ଗୁରୁପ୍ରଦତ୍ତ ସିଦ୍ଧ ଦେହରେ କିପରି ନିତ୍ୟଧାମ (ଗୋଲୋକ) ଦର୍ଶନର ସୌଭାଗ୍ୟ ଲାଭ କରିବେ, ଏହି ଅଭିଳାଷ କବି ତାଙ୍କର 'ଜଣାଣ' ଶୀର୍ଷକ ଗୀତଟିରେ ଅଭିବ୍ୟକ୍ତ କରିଛନ୍ତି । ଗୀତଟିରେ କବିଙ୍କର ଭକ୍ତ ସୁଲଭ ସଂସାର ବିତୃଷ୍ଣ ଚିତ୍ତର ସାର୍ଥକ ପ୍ରକାଶ ଘଟିଛି । ଗୀତଟିର ରଚନାରେ ଜଗନ୍ନାଥ ଦାସ (ଶ୍ରୀମଦ୍‌ଭାଗବତ), ସାଲବେଗ ଓ ବନମାଳୀଙ୍କର ଦୈନ୍ୟ, କାତରୋକ୍ତି ଏବଂ ପଦ ପରମ୍ପରାର ପ୍ରଭାବ ଲକ୍ଷିତ ହେବା ସଙ୍ଗେ ସଙ୍ଗେ ସଂସ୍କୃତ 'ପାଣ୍ଡବଗୀତା'ର ପ୍ରଭାବ ଲକ୍ଷିତ ହୁଏ (୫୧) ।

## (ଗ) ସାଧକ ଭକ୍ତର ବୈରାଗ୍ୟଚେତନା-ବ୍ୟଞ୍ଜକ ମନଃଶିକ୍ଷା-ମୂଳକ ଗୀତ

ଭଗବତ୍ ଲୀଳାମାଧୁର୍ଯ୍ୟ ଆସ୍ୱାଦନ ବୈଷ୍ଣବ ସାଧକ ତଥା ଭକ୍ତ ଜୀବନର ପରମ ଲକ୍ଷ୍ୟ । ସ୍ଥୂଳ ପ୍ରପଞ୍ଚ ବା ବିଷୟ-ବିକ୍ଷୁବ୍ଧ ମାୟାଚ୍ଛନ୍ନ ଚିତ୍ତରେ ଭଗବଲ୍ଲୀଳାର ସ୍ଫୁରଣ ହୁଏନା, ସେଥିପାଇଁ ଚିତ୍ତକୁ ସାଧନା ଦ୍ୱାରା ଭଗବତ୍‌ଲୀଳାର ଉନ୍ମୁଖୀ କରିବାକୁ ହୁଏ । ସ୍ଥୂଳ ଦେହର ଊର୍ଦ୍ଧ୍ୱରେ ଭାବଦେହରେ ତାକୁ ବିହାର କରିବାକୁ ପଡ଼େ । ବୈଷ୍ଣବୀୟ ଭାଷାରେ ଏହା ହେଉଛି ସିଦ୍ଧ ଦେହ । ଏହି ସିଦ୍ଧ ଦେହ ଲାଭ କରିବାକୁ ହେଲେ ଭକ୍ତ ପକ୍ଷରେ 'ଉତ୍ତମା ଭକ୍ତି'ର ଆଶ୍ରୟ ଏକାନ୍ତ ପ୍ରୟୋଜନ । ଭକ୍ତମାନଙ୍କୁ ସାଧନାର ପ୍ରାଥମିକ ସ୍ତରରୂପେ ସାଧନ ଭକ୍ତିର ବୈଧୀମାର୍ଗର ଆଶ୍ରୟ ନେବାକୁ ହୁଏ । ଏହି ବୈଧୀ ଭକ୍ତିର ବିଭିନ୍ନ ଅଙ୍ଗ (ଚତୁଃଷଷ୍ଟି) ସମ୍ପର୍କରେ ପୂର୍ବରୁ ସୂଚନା ଦିଆ ଯାଇଛି ।

(୫୧) ସ୍ତବକୁସୁମାଞ୍ଜଳି; ସମ୍ପା: ଗମ୍ଭୀରାନନ୍ଦ, କଲିକତା

ଊଷର ଭୂମିରେ ଅଙ୍କୁରୋଦ୍‌ଗମର ଯେପରି ସମ୍ଭାବନା ନଥାଏ, ବିଷୟାକ୍ରାନ୍ତ ଚିତ୍ତରେ ଭକ୍ତିର ଉଦୟ ସେହିପରି ସମ୍ଭବ ନୁହେଁ । ସେଥିପାଇଁ ବିଷୟାସକ୍ତ ଭୋଗମୁଖୀ ଚିତ୍ତକୁ ଯୋଗମୁଖୀ କରିବାକୁ ହୁଏ । କେବଳ ଶୁଦ୍ଧା ଭକ୍ତି ନୁହେଁ, ଜ୍ଞାନ ମିଶ୍ରାଭକ୍ତିଠାରୁ ଆରମ୍ଭ କରି ଯେ କୌଣସି ଭକ୍ତି ସାଧନ ପନ୍ଥାରେ ପ୍ରଥମତଃ ବିଷୟ ବିରକ୍ତି ଏକାନ୍ତ ପ୍ରୟୋଜନ । ସେଥିପାଇଁ ବିଭିନ୍ନ ମାର୍ଗର ସାଧକ ଓ ଭକ୍ତମାନେ ବୈରାଗ୍ୟ ବ୍ୟଞ୍ଜକ ଅଜସ୍ର ମନଃଶିକ୍ଷା-ମୂଳକ ଗୀତ ରଚନା କରି ଯାଇଛନ୍ତି । ଶ୍ରୀମତ୍ ଶଙ୍କରାଚାର୍ଯ୍ୟଙ୍କର 'ଚର୍ପଟ ପଞ୍ଜରିକା', ଭର୍ତ୍ତୃହରିଙ୍କର 'ବୈରାଗ୍ୟ ଶତକ', ଉତ୍ତର ଭାରତର ନିର୍ଗୁଣ ପନ୍ଥୀ ଓ ସଗୁଣ ପନ୍ଥୀ ଭକ୍ତ-ମାନଙ୍କର (କବୀର, ନାନକ, ସୁରଦାସ ପ୍ରଭୃତି) ଭଜନ, ଓଡ଼ିଶାର ପଞ୍ଚସଖା ଭଜନ ଏବଂ ଶୁଦ୍ଧାଭକ୍ତି ପନ୍ଥାର ସଂସ୍କୃତ ଓ ଦେଶୀୟ ଭାଷାର (ବ୍ରଜବୁଲି, ବଙ୍ଗଳା, ହିନ୍ଦୀ, ଓଡ଼ିଆ) ବୈରାଗ୍ୟ ବ୍ୟଞ୍ଜକ ମନଃଶିକ୍ଷାମୂଳକ ପଦାବଳୀ ଓ ସଙ୍ଗୀତ ତା'ର ପ୍ରମାଣ ।

ଗୋପାଳକୃଷ୍ଣଙ୍କ ରଚନାବଳୀ ମଧ୍ୟରେ ଏ ପ୍ରକାର ଗୀତର ସଂଖ୍ୟା କମ୍ ନୁହେଁ (ଅଠାଅଶୀ, ଗୋପାଳକୃଷ୍ଣଙ୍କ ପଦ୍ୟାବଳୀରେ କୋଡ଼ିଏ) । ଏ ଗୁଡ଼ିକର ଅନ୍ତଃସ୍ୱର ଏକ ହେଲେ ମଧ୍ୟ ଆଲୋଚନାର ସୁବିଧା ପାଇଁ ଏ ଗୁଡ଼ିକୁ କେତୋଟି କ୍ଷୁଦ୍ର ଭାଗରେ ବିଭକ୍ତ କରି ଯାଇପାରେ, ଯଥା—(୧) ପ୍ରତ୍ୟକ୍ଷ ବୈରାଗ୍ୟ ଚେତନାମୂଳକ ଗୀତ, (୨) ବୈଷ୍ଣବ ଭକ୍ତର ସାଧ୍ୟ ଓ ଭକ୍ତ୍ୟଙ୍ଗ ଆଚରଣ ମୂଳକ ଗୀତ, (୩) ମନ୍ତ୍ରସିଦ୍ଧ ବା କଙ୍କାଳଭାବ ମୂଳକଗୀତ, (୪) ତତ୍ତ୍ୱମୂଳକ ଗୀତ, (୫) ସ୍ମରଣାତ୍ମକ (ସ୍ମରଣୀ) ଗୀତ ଏବଂ (୬) ଲୀଳାତ୍ମକ ଗୀତ । ଗୀତ ଗୁଡ଼ିକରେ ଶିରୋନାମା ମୁଖ୍ୟତଃ ମନଃଶିକ୍ଷା ହୋଇଥିବାରୁ କବି ପ୍ରାୟ ସବୁ ଗୀତରେ ମନକୁ ସମ୍ବୋଧନ କରି (କେତେକ ଗୀତରେ ବିବେକ ବା ଚୈତନ୍ୟର ମନ ପ୍ରତି ଉପଦେଶ) ସେଗୁଡ଼ିକୁ ରଚନା କରିଛନ୍ତି ।

**(୧) ପ୍ରତ୍ୟକ୍ଷ ବୈରାଗ୍ୟ ଚେତନା ମୂଳକ ଗୀତି**—ପୂର୍ବସୂରିମାନଙ୍କ ପରି କବି ସଂସାରର ନଶ୍ୱରତା ତଥା ଅସାରତା, ବିଷୟ ତଥା ଜଞ୍ଜାଳ ଅରଣ୍ୟାନୀରେ ବାସନା ଗରଳ ତ୍ୟାଗ କରି ଜୀବନ ଯାତ୍ରା ପଥରେ ଭକ୍ତିର ପାଥେୟ ସଞ୍ଚୟ କରି ଭଗବାନଙ୍କର ନାମ, ରୂପ, ଲୀଳାଗାନ ଦ୍ୱାରା ସଞ୍ଚିତକୁ ରେ ଭଗବତ୍ ଧାମରେ ବାସ ଓ ବିହାର କରିବାକୁ ବିଭିନ୍ନ ଗୀତରେ ମନକୁ ଚେତନା ଶୁଣାଇଛନ୍ତି । ଏ ପ୍ରକାର ଗୀତର ସଂଖ୍ୟା ଊନବିଂଶ ।

ବହିରଙ୍ଗା ବା ମାୟା ଶକ୍ତିର ପ୍ରଭାବରେ କାମକ୍ରୋଧାଦି ପ୍ରବୃତ୍ତିର ମୋହ ଓ ପ୍ରବଳ ଭୋଗ-ସ୍ପୃହା ହେତୁ ଜୀବର ଦିବ୍ୟଚେତନା ସୁପ୍ତ ହୋଇଯାଏ । ଧନ, ଜନ ଓ କୁଳ ମର୍ଯ୍ୟାଦାଜନିତ ଅଭିମାନରେ ସେ ସ୍ଫୀତବକ୍ଷ ଓ ଉର୍ଦ୍ଧ୍ୱଶିର ହୋଇ ଅନ୍ୟକୁ ତୁଚ୍ଛାତିତୁଚ୍ଛ ମନେ କରେ । ସେ ବୁଝିପାରେନା ଯେ ବିଷୟ ଜଞ୍ଜାଳର ଶ୍ୱାପଦପୂର୍ଣ୍ଣ ଜଙ୍ଗଲରେ ସେ ପଥଭ୍ରଷ୍ଟ ହୋଇଛି । ବାସନାରୂପୀ ବିଷାକ୍ତ ଅଜଗର ତାକୁ ତା'ର ଅଲକ୍ଷ୍ୟରେ ଆମୂଳ ଗ୍ରାସ କରି ଚାଲିଛି । ଆପାତ ମଧୁର ବିଷୟ ଯେ ମାୟାର କୁହୁକ, ପ୍ରବଳ ବିଷୟାସକ୍ତି ଯେ ତ୍ରିତାପ ଯନ୍ତ୍ରଣାର ହେତୁ, ଏହା ସେ ଉପଲବ୍ଧି କରିପାରେ ନାହିଁ । ଖଳର ବଚନ ତାକୁ ମଧୁର ଓ ଶ୍ରେୟସ୍କର ବୋଧହୁଏ; କାଳ-ସ୍ରୋତ ଅପେକ୍ଷା କରେନା, ଅଳ୍ପକାଳ ଜୀବ

ହୋଇଯାଏ । ଜରାର ଆକ୍ରମଣରେ ପୌରୁଷର ଶୀର୍ଣ୍ଣତା ତା ଅଙ୍ଗ ପ୍ରତ୍ୟଙ୍ଗରେ ଦେଖାଦିଏ, ସେ ନିଜକୁ ସାମର୍ଥ୍ୟହୀନ, ଦୁର୍ବଳ ମନେ କରେ । ଦେହ, ମନ, ଧନ ଓ ଅହଂକାରର ଏ ଶୋଚନୀୟ ପରିଣାମରେ ସେ ଜୀବନକୁ ହାହାକାରମୟ ଦେଖେ (୫୨) । କିନ୍ତୁ ଦେହ, ଜୀବନ ଓ ଜଗତର ନଶ୍ୱରତା ସତ୍ତ୍ୱେ ଜୀବନ ସାର୍ଥକ ହୁଏ ମନୁଷ୍ୟର ଆଧ୍ୟାତ୍ମିକ ଚେତନାର ସ୍ଫୁରଣରେ । ଜୀବ ପକ୍ଷରେ ସେହି ଚେତନା ହେଉଛି ଭଗବାନଙ୍କ ପ୍ରତି ଅହୈତୁକୀ ଭକ୍ତି, ତାଙ୍କଠାରେ ଆତ୍ମସମର୍ପଣ (ଶରଣାଗତି) । ଭଗବାନ୍ ଶ୍ରୀକୃଷ୍ଣଙ୍କ ପଦସରୋଜ ଓ ତାଙ୍କର ସ୍ୱରୂପଶକ୍ତି ରାଧାଙ୍କଠାରେ ଆଶ୍ରୟ; ନିତ୍ୟ ଦାସତ୍ୱ ଭକ୍ତ ଜୀବନର ପରମ ଓ ଚରମ ଶ୍ରେୟ । ଭଗବତ୍ ନାମ ଓ ଲୀଳାଗାନ, ରୂପ ଓ ଧାମ ସ୍ମରଣ ଏବଂ ବନ୍ଦନ ଓ ଅର୍ଚ୍ଚନ ତା'ର ଦୈନନ୍ଦିନ କର୍ତ୍ତବ୍ୟ । ଅଭିମାନ ଓ ବିଷୟବାସନାମୁକ୍ତ ଚିତ୍ତରେ ଗୁରୁପ୍ରଦତ୍ତ ବୀଜମନ୍ତ୍ର ନିଷ୍ଠାର ସହିତ ସ୍ମରଣ, ଜପ ଓ ମନନ କରି, ସିଦ୍ଧ ସାଧକ ବୈଷ୍ଣବ ଚରଣ ଆଶ୍ରୟ କରି ହରେକୃଷ୍ଣ ରାମନାମ ଉଚ୍ଚାରଣ ସହ ରାଗମାର୍ଗର ସାଧନ ପଥରେ ଅଗ୍ରସର ହେବାକୁ କବି ମାନବକୁ ଉପଦେଶବାଣୀ ଶୁଣାଇଛନ୍ତି (୫୩) ।

### (୨) ବୈଷ୍ଣବ ଭକ୍ତର ସାଧ୍ୟ ଓ ଭକ୍ତ୍ୟଙ୍ଗ ଆଚରଣମୂଳକ ଗୀତି :

ଉପାସ୍ୟ ଓ ଉପାସ୍ୟାଙ୍କ ପ୍ରତି ଅହୈତୁକୀ ଭକ୍ତି ବା ପ୍ରେମର ଦିବ୍ୟ ଅନୁଭୂତି ଲାଭ ହେଉଛି ବୈଷ୍ଣବ ଭକ୍ତର ସାଧ୍ୟ । ଏହି ଲକ୍ଷ୍ୟ ସାଧନ ନିମିତ୍ତ ବୈଷ୍ଣବର ଆଚରଣ ସମ୍ପର୍କରେ ବୈଧୀଭକ୍ତିର ବିଭିନ୍ନ ଅଙ୍ଗ (ଭକ୍ତ୍ୟଙ୍ଗ) ଓ ରାଗାନୁଗା ଭକ୍ତି ପ୍ରସଙ୍ଗରେ ଗୋସ୍ୱାମୀମାନେ ସ୍ୱରଚିତ ଦାର୍ଶନିକ ଗ୍ରନ୍ଥ ଓ ଚରିତ ଗ୍ରନ୍ଥମାନଙ୍କରେ ବିସ୍ତୃତ ଭାବରେ ଉଲ୍ଲେଖ କରିଛନ୍ତି । ଗୋପାଳକୃଷ୍ଣ ଗୋସ୍ୱାମୀମାନଙ୍କର ପଦାଙ୍କ ଅନୁସରଣ କରି ତାଙ୍କର ମନଃଶିକ୍ଷାମୂଳକ ବହୁ ଗୀତରେ ବୈଷ୍ଣବର ଆଚରଣୀୟ ସେହି ଭକ୍ତ୍ୟଙ୍ଗ ଓ ରାଗାନୁଗା ଭକ୍ତି ସମ୍ପର୍କରେ ସୂଚନା ଦେଇଛନ୍ତି । ଗୀତଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ନିର୍ଦ୍ଦିଷ୍ଟ ଭକ୍ତ୍ୟଙ୍ଗ ଓ ରାଗାନୁଗା ଭକ୍ତିର ପୁନରୁକ୍ତି ଅନେକତ୍ର ପରିଦୃଷ୍ଟ ହୁଏ ।

ଚିନ୍ମୟ ପ୍ରେମ ଓ ମଧୁର ରସର ମୂର୍ତ୍ତିମନ୍ତ ବିଗ୍ରହ ରାଧାଗୋବିନ୍ଦଙ୍କ ପ୍ରତି ଅହୈତୁକୀ ପ୍ରେମଭକ୍ତି ଅର୍ପଣ କରିବା ପାଇଁ କବି ମନକୁ ସମ୍ବୋଧନ କରି କହୁଛନ୍ତି ଯେ ରାଗମାର୍ଗ ଅନୁସରଣ କରି ଅହର୍ନିଶ ମଧୁର ରସରେ ନିମଜ୍ଜିତ ରହିବା ତା'ର ପରମ କର୍ତ୍ତବ୍ୟ । ଅହୈତୁକୀ ବା ଅକିଞ୍ଚନା ଭକ୍ତି ନିକଟରେ ଦାନ, ଯଜ୍ଞ ଓ ତପସ୍ୟା ତୁଚ୍ଛ । ଗୁରୁରୂପା ସଖୀଙ୍କର ପାଦପଦ୍ମରେ ଧ୍ୟାନ ରଖି ତତ୍ପ୍ରଦତ୍ତ ବୀଜମନ୍ତ୍ରର ଜପ, ସାଧୁସଙ୍ଗ, ହରିକଥା ଶ୍ରବଣ, ପ୍ରତିଷ୍ଠାଶା ଓ ଅହଂକାର ତ୍ୟାଗ, ଶ୍ରଦ୍ଧା ଓ ବିଶ୍ୱାସର ସହିତ ଭଜନ ଓ ସାଧନ ମାର୍ଗରେ ଗମନ, ଭକ୍ତ୍ୟଙ୍ଗ (୫୪) ଆଚରଣ, ସ୍ୱାମୀ ଓ ସ୍ୱାମିନୀଙ୍କର ନାମ, ଗୁଣ, ଲୀଳା ଶ୍ରବଣ, କୀର୍ତ୍ତନ ଓ ଅନୁଧ୍ୟାନ ଫଳରେ ତାଙ୍କର ପ୍ରବର୍ତ୍ତକ ଅବସ୍ଥା (ଗୁରୁ ପାଦାଶ୍ରିତ ଅବସ୍ଥା)

---

(୫୨) ମନଃଶିକ୍ଷା, ଗୋ. କୃ. ଗ୍ରଂ., ପୃ-୨୬୩ ଓ ଗୋ. କୃ. ପ., ପୃ-୧୧୨

(୫୩) ମନଃଶିକ୍ଷା, ତତ୍ରୈବ ପୃ-୨୪୧

(୫୪) ଗୋ. କୃ. ଗ୍ରଂ, ପୃ-୨୩୪

ଆସିବ । ଗୁରୁ କୃପାରେ ସେ ସାଧକ ଅବସ୍ଥା, ତଦୁପରେ ସିଦ୍ଧ ତନୁ ଲାଭ କରି ଉପାସ୍ୟ ଓ ଉପାସ୍ୟାଙ୍କର ଯୋଗପୀଠରେ ଲସ୍ତ ରହି ରାଧାଙ୍କର ସଖୀ ଓ ମଞ୍ଜରୀ ମାନଙ୍କର ଆନୁଗତ୍ୟ-ମୟୀ ପ୍ରେମସେବାର ସୌଭାଗ୍ୟ ଲାଭ କରିବେ (୫୫) । ଯୁଗଳ ନାମଭଜନ ତଥା ରାଧା-କୃଷ୍ଣଙ୍କର ଉଜ୍ଜ୍ୱଳ ପରକାଷ୍ଠା ପ୍ରେମ ରସରେ ନିମଜ୍ଜିତ ହୋଇ ସିଦ୍ଧ ଭାବାବେଶରେ ମାନସୀ ସେବା ଆଚରଣ ନିମିତ୍ତ ଚିନ୍ମୟ ବ୍ରଜଧାମ ଯାତ୍ରା ବୈଷ୍ଣବ ସାଧକର ପରମ ସୌଭାଗ୍ୟ । କବି ଭାବର ଆବେଶରେ ବ୍ରଜଧାମ ଓ ରମ୍ୟ ବୃନ୍ଦାବନ ଧାମର ବର୍ଣ୍ଣୋଜ୍ଜ୍ୱଳ ଆଲେଖ୍ୟ ଆଙ୍କିଛନ୍ତି, ଯଥା — ବୃନ୍ଦାବନରେ ମହାପଦ୍ମ ଉପରେ ଯୋଗପୀଠ । ଏହା ଅପୂର୍ବ ମନୋହର କାଞ୍ଚନସ୍ଥଳୀ । ପୂର୍ଣ୍ଣେନ୍ଦୁର ଶୁଭ୍ର ଜ୍ୟୋତ୍ସ୍ନା, ନାନାବିଧ ପୁଷ୍ପର ବିକାଶ, ଯମୁନାତୀର ଶୋଭିତ ଶୀତଳ ଛାୟାପ୍ରଦ କଦମ୍ବ, ଭ୍ରମର ଗୁଞ୍ଜିତ ମାଧବୀ କୁଞ୍ଜ, ପିକର କୁହୁଧ୍ୱନି, କଳାପୀର ନୃତ୍ୟ, ରମଣୀୟ କଳ୍ପ ପାଦପର ମନୋଜ୍ଞ ପରିବେଶରେ ବିଚିତ୍ର ମଣି-ମନ୍ଦିର ପୂର୍ଣ୍ଣ ଗୋବର୍ଦ୍ଧନ ଗିରି ଶୋଭିତ ବୃନ୍ଦାବନର ଯୋଗପୀଠରେ ସଚ୍ଚିଦାନନ୍ଦ ବିଗ୍ରହ ଶ୍ରୀକୃଷ୍ଣ ଓ ବାମପାର୍ଶ୍ୱରେ ଲୀଳାବିଳାସିନୀ କିଶୋରୀ ରାଧା ବିରାଜିତ (୫୬) । ବୃନ୍ଦାରଣ୍ୟର ପଥ ପ୍ରଦର୍ଶିକା ଅଧିଷ୍ଠାତ୍ରୀ ଦେବୀ ବୃନ୍ଦାଙ୍କର କୃପାରେ ସିଦ୍ଧ ଦେହରେ ସେହି ଚିନ୍ମୟ ଧାମର ଯାତ୍ରାପଥ କୁସୁମାକୀର୍ଣ୍ଣ ହେବ । ବ୍ରଜ ଓ ବୃନ୍ଦାବନର ବୃକ୍ଷଲତା, ପଶୁପକ୍ଷୀ, ଯମୁନାର ସିକତିଲ ତୀରଭୂମି, ପ୍ରତ୍ୟେକ ରେଣୁକଣା କବିଙ୍କ ଦୃଷ୍ଟିରେ ପବିତ୍ର । ଗୋପୀ ତଥା ଭକ୍ତ ପ୍ରିୟ ଶ୍ରୀକୁଣ୍ଡ-ସେତୁରେ ବାସ ନିର୍ମାଣ କରି ସ୍ୱାମିନୀ ରାଧାଙ୍କର ନାମ କୀର୍ତ୍ତନ ପାଇଁ କବି ମନକୁ ଉପଦେଶ ଦେଇଛନ୍ତି । ନିଷ୍କାମ ଗୋପୀ ଭକ୍ତିରେ ତନ୍ମୟ ହୋଇ ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜରେ ଅଷ୍ଟକାଳୀନ ଲୀଳାର ସେବା ସ୍ମରଣ କରି ସାଧନ ପଥରେ ଅଗ୍ରସର ହେଲେ ଗୁରୁ କୃପାହେତୁ ଅଷ୍ଟ ସଖୀଙ୍କର ଆନୁକୂଲ୍ୟରେ କୁଞ୍ଜ ଦ୍ୱାରରେ ମଞ୍ଜରୀ-ସୁଲଭ କିଙ୍କରୀତ୍ୱର ସୌଭାଗ୍ୟ ଲାଭ କରିବେ । ଯମୁନା ତଟରେ କୁଟୀର ନିର୍ମାଣ କରି ଯାବଟ, ନନ୍ଦୀଶ୍ୱର ଓ ବରଷାଣ ନଗର ରାଧାକୃଷ୍ଣଙ୍କ ନାମରେ ମୁଖରିତ କରି ଝୁଲି ଧରି ଭିକ୍ଷାରୂପୀ ମାଧୁକରୀ ଭୁଞ୍ଜିବାରେ କବିଙ୍କର ଆନନ୍ଦ ଅସୀମ ଓ ଅନିର୍ବଚନୀୟ (୫୭) ।

### (ଗ) ମଞ୍ଜରୀ ବା କିଙ୍କରୀ ଭାବମୂଳକ ଗୀତ :

ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜ ଲୀଳାରେ ସଖୀ ଅନୁଗତା ମଞ୍ଜରୀଭାବ ବା କିଙ୍କରୀ ଭାବ ଏବଂ ସିଦ୍ଧ ଦେହରେ ସ୍ୱାମୀ-ସ୍ୱାମିନୀଙ୍କର ବିବିଧ ସେବା ଆଚରଣ ବୈଷ୍ଣବମାନଙ୍କର ସାଧନାର ଚରମଲକ୍ଷ୍ୟ । କବିଙ୍କର ମନଃଶିକ୍ଷାମୂଳକ ପ୍ରାୟ ଅଧିକାଂଶ ଗୀତରେ ମଞ୍ଜରୀ ଭାବର ସଙ୍କେତ ରହିଥିଲେ ମଧ୍ୟ ମୁଖ୍ୟତଃ ଚଉଦଟି ଗୀତରେ ଏହି ଭାବ ଓ ସେବାର ତାତ୍ତ୍ୱିକ ଚିତ୍ର ରହିଛି ।

---

(୫୫) ତତ୍ରୈବ, ପୃ-୨୩୫

(୫୬) ମନଃଶିକ୍ଷା, ଗୋ. କୃ. ଗ୍ରଂ., ପୃ-୨୭୩

(୫୭) ଗୋ. କୃ. ଗ୍ରଂ., ପୃ-୨୪୫

ଶୁଦ୍ଧାଭକ୍ତି ସାଧନ ପରମ୍ପରାରେ ଭଗବାନ୍ ଶ୍ରୀକୃଷ୍ଣ ଏକମାତ୍ର ପୁରୁଷ । ତାଙ୍କର ସ୍ୱରୂପ ଶକ୍ତିର ଅଂଶଭୂତ ସଚରାଚର ଜଗତର ଅନ୍ୟମାନେ ପ୍ରକୃତି ବା ନାରୀ (୫୮) । ପ୍ରେମମୂର୍ତ୍ତି ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରେମସ୍ନିଗ୍ଧ କୃପା ଲାଭ କରିବାକୁ ହେଲେ ଅହୈତୁକୀ ଭକ୍ତି ବା ପ୍ରେମର ଅର୍ଘ୍ୟ ନିବେଦନ କରି ତାଙ୍କର ନିରାଜନା କରିବାକୁ ହେବ । ଗୁରୁଦତ୍ତ ବୀଜମନ୍ତ୍ର ପ୍ରଭାବରେ ସିଦ୍ଧ ଦେହ ଲାଭ ନ କରିବା ପର୍ଯ୍ୟନ୍ତ ଏ ଅର୍ଘ୍ୟ ନିବେଦନ ବ୍ୟର୍ଥ ହୋଇଯାଏ; ବ୍ରଜ ଓ ବୃନ୍ଦାବନର ମାଧୂର୍ଯ୍ୟମୟୀ ଲୀଳାରସ ଆସ୍ୱାଦନର ସେ ଅଧିକାରୀ ହୋଇପାରେନା । ସେଥିପାଇଁ ପୁରୁଷାଭିମାନ ଛାଡ଼ି ପ୍ରକୃତିଭାବ ଗ୍ରହଣ କରିବାକୁ ହେବ । କବିଙ୍କ ଭାଷାରେ—

ପୁରୁଷାଭିମାନ ପରିହରି ମନ ! ସାଜରେ ପ୍ରକୃତି ବେଶ ।

(ଗୋ. କୃ ଗ୍ରଂ., ପୃ-୨୪୫)

ରାଗାନୁଗୀୟ ମାର୍ଗରେ ଏହି ପ୍ରକୃତିର ବେଶ ବା ପ୍ରକୃତିଭାବ ହେଉଛି ରାଧାଙ୍କର ସଖୀ ଅନୁଗତା ମଞ୍ଜରୀ ବା କିଙ୍କରୀ ଭାବ (୫୯) । ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜଲୀଳା, ରାସଲୀଳା ଓ ବ୍ରଜର ଅନ୍ୟ ଲୀଳାରେ ମଞ୍ଜରୀ ଭାବରେ ଅଷ୍ଟକାଳୀନ ସେବାର ଅଭିଳାଷ ଏହି ଗୀତ-ଗୁଡ଼ିକରେ ଅନ୍ତରଙ୍ଗ ରୂପାୟନ ଲାଭ କରିଛି । ପରମ ପ୍ରେମମୟୀ, ଶୃଙ୍ଗାରରସର ମୂର୍ତ୍ତିମନ୍ତ ବିଗ୍ରହ ସ୍ୱାମିନୀ ରାଧାଙ୍କର କୃପାସ୍ନେହର (ସ୍ନିଗ୍ଧ) ଦୃଷ୍ଟି ମଞ୍ଜରୀ ପକ୍ଷରେ ପରମ ସୌଭାଗ୍ୟ । ତାଙ୍କର ଦାସୀତ୍ୱର ଗୌରବ ଲାଭ କରିବା ପାଇଁ ଲକ୍ଷ୍ମୀ ଶ୍ରୀବନରେ ତପଃ ଆଚରଣ କରିଥାନ୍ତି (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୬୩୦); ସନକ, ସନନ୍ଦନ, ସନତ୍ କୁମାର ପ୍ରଭୃତି ଋଷିମାନେ ବ୍ରହ୍ମାନନ୍ଦ ସୁଖ ତ୍ୟାଗ କରି ରାଧାକୃଷ୍ଣଙ୍କର ଲୀଳାରସରେ ନିମଜ୍ଜିତ ହୁଅନ୍ତି; ଶ୍ରୀବନରେ ମୁନିମାନେ ଯୁଗଳସେବା ମନାସି ତପସ୍ୟା କରୁଥାନ୍ତି; ପରମଭକ୍ତ ନାରଦ ବୀଣାତନ୍ତ୍ରୀ ସାହାଯ୍ୟରେ ରାଧାଙ୍କର ସୁଷ୍ଠୁ କାନ୍ତି ସ୍ୱରୂପ ଓ ଦୁର୍ଲଭ ଗୁଣାବଳୀ ଗାନ କରନ୍ତି (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୨୦୩) । ନିଖିଳ ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ସେହି ବୃନ୍ଦାବନେଶ୍ୱରୀଙ୍କର ପଦତଳେ କିଙ୍କରୀ ହେବାପାଇଁ କବି ପ୍ରାଣକୁ ସମ୍ବୋଧନ କରି ଗାଇଛନ୍ତି—

ବ୍ରଜବନକୁ ଯାଇ ସ୍ୱାମିନୀ କୁଞ୍ଜେ ରହି
ବୋଲ ହୋଇଲି ମୁଁ ଶରଣରେ, ପରାଣ ! ।୧।
ଶ୍ରୀ ରାସେଶ୍ୱରୀଙ୍କର କିଙ୍କରୀ ରୂପ ଧରି,
କହିଲି ନିଷ୍ଠେ ଏବେ ଜାଣରେ, ପରାଣ ! ।୨।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୧୧-୨୧୨)

ଯେଉଁ ଯମୁନାର ପୁଳିନ ଓ ରାସସ୍ଥଳୀ ସଖୀମାନଙ୍କ ସହିତ ସ୍ୱାମୀ ଓ ସ୍ୱାମିନୀଙ୍କର ପଦସ୍ପର୍ଶରେ ପବିତ୍ର, ତା'ର ଧୂଳିରେ ଲୋଟିଯିବାରେ ଏବଂ ରାଧାଙ୍କର କୁଣ୍ଡ ତୀରବର୍ତ୍ତୀ ବନରେ ବାସ ରଚନାରେ ରହିଛି ଆନନ୍ଦ (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ-୨୨୧) ।

(୫୮) ପଦ୍ମ ପୁରାଣ, ପାତାଳଖଣ୍ଡ

(୫୯) ବ. ଚ., ପ୍ରାଚୀ ସଂ., ୧୧୭ ଓ ଅ. ସା. ସଂ., ପ୍ରେମଚନ୍ଦ୍ରାମଣି (ଅପ୍ର.), ପୃ. ୬୮

ମଞ୍ଜରୀ ଭାବରେ ରାଧାଙ୍କର ସେବାର ସୌଭାଗ୍ୟ ଲାଭ କରିବାକୁ ହେଲେ ତାଙ୍କର ପରମପ୍ରେଷ୍ଠ ସଖୀ ଲଳିତା, ବିଶାଖା ଓ ଯୂଥେଶ୍ୱରୀ ତୁଙ୍ଗବିଦ୍ୟାଙ୍କର କୃପାସିକ୍ତ-ସ୍ନିଗ୍ଧ-ଦୃଷ୍ଟି ପ୍ରୟୋଜନ । ଗୁରୁରୂପା ସଖୀଙ୍କର କୃପାରେ ସିଦ୍ଧାଙ୍ଗ ଲାଭ କଲେ କୁଞ୍ଜସେବା ପାଇଁ ସଖୀ-ଆନୁଗତ୍ୟର ସୌଭାଗ୍ୟ ମିଳେ । ଗୋପାଳକୃଷ୍ଣଙ୍କର ବିଭିନ୍ନ ଗୀତରେ ଏହି ସଖୀ ଆନୁଗତ୍ୟ ଓ ରାଧାକୃଷ୍ଣଙ୍କର ଅଷ୍ଟକାଳୀନ ସେବାପାଇଁ ବ୍ରଜବାଳୀ ରୂପରେ ନବଦାସୀତ୍ୱର ଚିତ୍ର ଫୁଟି ଉଠିଛି (୭୦) । ବିଭିନ୍ନ ଗୀତରେ କବି ମଞ୍ଜରୀ ସୁଲଭ ସେବାର ବିସ୍ତୃତ ଚିତ୍ର ଅଙ୍କିଛନ୍ତି । ଗୋଟିଏ ଗୀତରେ କବି ଲେଖିଛନ୍ତି—ନିଭୃତ କୁଞ୍ଜରେ କୃଷ୍ଣଙ୍କ ଅଙ୍କରେ ପ୍ରେମମୟୀ ରାଧାଙ୍କୁ ଦର୍ଶନ କଲେ କୋଟିଏ ଜନ୍ମର ସୁକୃତ ମିଳିବ (ପୃ. ୨୩୭) । ଅନ୍ୟ ଗୋଟିଏ ଗୀତରେ ଲେଖିଛନ୍ତି—ରାଗମାର୍ଗରେ ଯୁଗଳମୂର୍ତ୍ତିଙ୍କ ସେବାରେ ପ୍ରେଷ୍ଠସଖୀ ଲଳିତା, ବିଶାଖା ଓ ତୁଙ୍ଗବିଦ୍ୟାଙ୍କର ଆନୁଗତ୍ୟ ସ୍ୱୀକାର କରିବାକୁ ହେବ । ବିପ୍ରଲମ୍ଭର ପୂର୍ବରାଗଲୀଳା ସ୍ମରଣ କରି ସଖୀଙ୍କ ଗହଣରେ ସିଦ୍ଧ ଦେହରେ ଅବସ୍ଥାନ କଲେ ରସକଥା ଶ୍ରବଣର ସୌଭାଗ୍ୟ ମିଳିବ (ଗ୍ରନ୍ଥାବଳୀ, ପୃ-୨୪୦) । ନିଭୃତ କୁଞ୍ଜରେ ନିଶାନ୍ତ ଲୀଳାଠାରୁ ଆରମ୍ଭ କରି ବ୍ରଜ ଓ ବୃନ୍ଦାବନରେ ଅଷ୍ଟ ପ୍ରହର ଲୀଳାରେ ବିଭିନ୍ନ ସେବାର ସଂକେତ ଦେବାକୁ ଯାଇ କବି ଲେଖିଛନ୍ତି – ନିଭୃତ କୁଞ୍ଜରେ ନିଶାନ୍ତ କାଳରେ ଭ୍ରମର ଗୁଞ୍ଜନ ଓ କକ୍‌ଖଟୀ ବାନରୀର (ରାଧାଂକ ପ୍ରିୟ ଅନୁଗତା) ଚେତାବନୀରେ ଯେତେବେଳେ ରାଧାକୃଷ୍ଣ ଅପଦ୍ରୁତ ହୋଇ ପୁଷ୍ପଶଯ୍ୟା ତ୍ୟାଗ କରିବେ, ସେତେବେଳେ ମଞ୍ଜରୀ-ଦାସୀ ରୂପେ କବି ସ୍ୱାମିନୀଙ୍କର କଟିସୂତ୍ର (କାଞ୍ଚୀ) ଓ ପାଦୁକା ଧରି ପଥ କଢ଼ାଇ ଆଗେ ଆଗେ ଯିବେ; ସୂର୍ଯ୍ୟ ପୂଜା ସମୟରେ ତାଙ୍କର ଅଞ୍ଜଳିରେ ଅର୍ଘ୍ୟଜଳ ବଢ଼ାଇ ଦେବେ; ନାଗେଶ୍ୱର କୁଞ୍ଜରେ ରତ୍ନଦୋଳାରେ ବିଜେ କଲେ ଦୋଳା ପହଁଖାଇ ଦେବେ; ପୁଷ୍ପ ବ୍ୟଜନ ଦ୍ୱାରା ରାସବିଳାସରେ ଗାନ ଓ ନର୍ତ୍ତନ ଜନିତ ଶ୍ରମ ଲାଘବ କରିବେ; ମଧୁପାନ ପରେ ସେମାନଙ୍କର ଅମୃତମୟୀ ସଂଳାପ ଓ ଜ୍ୟୋତ୍ସ୍ନା ପ୍ଲାବିତ ନିକୁଞ୍ଜ ପ୍ରାଙ୍ଗଣରେ ସେମାନଙ୍କର ପ୍ରହେଳି କୌତୁକ ଶ୍ରବଣ କରି ପାରିବେ ଇତ୍ୟାଦି (୭୧) । ବହୁ ଗୀତରେ ମଞ୍ଜରୀ ସୁଲଭ ସେବାର ଏକପ୍ରକାର ଚିତ୍ର ରହି ଥିବାରୁ ଗୀତଗୁଡ଼ିକ ପୁନରାବୃତ୍ତି ଦୋଷରେ ଦୁଷ୍ଟ ଓ ପାଠକମାନଙ୍କ ପକ୍ଷରେ କ୍ଲାନ୍ତିକର । ବୈଷ୍ଣବୀୟ ସଂସ୍କୃତ ରଚନାରେ ମଞ୍ଜରୀ ସେବାର କପରି ବିସ୍ତୃତ ଚିତ୍ର ରହିଛି ରଘୁନାଥ ଦାସ ଗୋସ୍ୱାମୀଙ୍କର 'ବିଳାପକୁସୁମାଞ୍ଜଳି' ଓ ଅନ୍ୟ ଗୋସ୍ୱାମୀମାନଙ୍କର ରଚନା ଅନୁଧ୍ୟେୟ ।

ମଞ୍ଜରୀ-ସେବା ଚିତ୍ର ଅଙ୍କନରେ ଦାସୀଭାବ-ଲୋଲୁପ କବିଙ୍କର ବୈଷ୍ଣବ ପ୍ରାଣର ଅଧୀର ଆଗ୍ରହ ଓ ଉତ୍କଣ୍ଠା-ଜନିତ ଆନନ୍ଦ ପରିସ୍ଫୁଟ ହୋଇଛି 'ମନ ପ୍ରତି ଚୈତନ୍ୟ ଉପଦେଶ' ଶୀର୍ଷକ ମନଃ-ଶିକ୍ଷା ଗୀତରେ । ପ୍ରାୟ ସବୁ ଗୀତରେ କବିଙ୍କର ନାମର ଭଣିତା ରହିଥିଲେ ମଧ୍ୟ ଏହି ଗୀତଟିରେ ତାଂକର ବୈଷ୍ଣବ ସୁଲଭ ସିଦ୍ଧ ନାମର ନାଟକୀୟ ପ୍ରକାଶ ପାଠକ ଚିତ୍ତରେ କୌତୂହଳ ସଞ୍ଚାର କରେ । ଜୀବନୀ ପର୍ଯ୍ୟାୟରେ (୧ମ ପରିଚ୍ଛେଦ) ଉଲ୍ଲେଖ

(୭୦) ଗୋ. କୃ. ଗ୍ରଂ, ପୃ-୨୨୧ ଓ ୨୨୯
(୭୧) ମନଃଶିକ୍ଷା, ଗୋ. କୃ. ଗ୍ରଂ., ପୃ-୨୧୩/୨୧୪

କରାଯାଇଛି ଯେ କବିଙ୍କର ଗୁରୁ ପ୍ରଦତ୍ତ ନାମ ଥିଲା 'ଗୋବିନ୍ଦ ଶରଣ ଦାସ' ଏବଂ ସିଦ୍ଧନାମ 'ଗୁଞ୍ଜମଞ୍ଜରୀ' । ଗୀତଟିରେ ସେହି ସିଦ୍ଧନାମର ସଙ୍କେତ ଦେଇ କବି କିପରି ଆତ୍ମପ୍ରକାଶ କରିଛନ୍ତି ଲକ୍ଷ୍ୟ କରାଯାଉ —

ଅପ୍ରାକୃତ ପ୍ରେମ ମୂରତି ଯୁଗଳ ପଦାବ୍ଜ-ସେବାରେ ରହି ।
ଅପୂର୍ବ ଆନନ୍ଦେ ସର୍ବ ସଖୀ ବୃନ୍ଦେ ପରିଚର୍ଯ୍ୟା ଦେବେ କହି ।୧।
ଗୁଞ୍ଜମଞ୍ଜରୀ କେ ? ବୋଲି ଏକେ ଏକେ ଡାକିବେ ସରାଗ ମନେ ।
ନୂଆ ଦାସୀ ପଣେ ଖଟିବୁ ଗହଣେ ସଦା ପ୍ରଫୁଲ୍ଲ ବଦନେ ।୨।
ରୁଙ୍ଗଦେବ୍ୟାଂକର ଯୂଥରେ ନିକର ଗଣିବେ ସ୍ୱାମିନୀ ତୋତେ ।
ଅରୁଣାନନ୍ଦ କୁଞ୍ଜରେ ସ୍ଥାନ ଯାଚି ଦେବେ ଅନୁକମ୍ପା ଚିତ୍ତେ ।୩।
ସିଦ୍ଧାଙ୍ଗ ଲୀଳାସେ ଚିନ୍ତନା ବିବଶେ ବୀଜମନ୍ତ୍ର ହୁଅ ଘୋଷି ।
କହଇ ଗୋପାଳକୃଷ୍ଣ ଦେହାନ୍ତରେ ଆଳୀ ମେଳେ ଯିବୁ ମିଶି ।୪।

(ଗୋ. କୃ. ଗ୍ର , ପୃ-୬୩ )

କବିଙ୍କର ଆତ୍ମପ୍ରକାଶ କିପରି ନିବିଡ଼, ମମତାସିକ୍ତ, ଅନ୍ତରଙ୍ଗ ଓ ମାନବିକତାର ଆବେଗରେ ଉଚ୍ଛ୍ୱସିତ, ସହୃଦୟ ପାଠକମାନେ ଉପଲବ୍ଧି କରିପାରିବେ ।

**(୪) ତତ୍ତ୍ୱପ୍ରଧାନ ମନଃଶିକ୍ଷାମୂଳକ ଗୀତି :**

ଶ୍ରୀକୃଷ୍ଣ, ରାଧା, ରାଧାକୃଷ୍ଣ ଯୁଗଳିତ ବିଗ୍ରହ, ତାଙ୍କର ଲୀଳା ଓ ତାଙ୍କ ପ୍ରତି ଅହୈତୁକୀ ଭକ୍ତି ବା ପ୍ରେମ ଏବଂ ନିଭୃତ କୁଞ୍ଜସେବା ଶୁଦ୍ଧାଭକ୍ତ ସାଧକ ବୈଷ୍ଣବମାନଙ୍କ ପକ୍ଷରେ ପରତତ୍ତ୍ୱ । ଗୋପାଳକୃଷ୍ଣଙ୍କର ମନଃଶିକ୍ଷା ମୂଳକ ଗୀତ ମଧ୍ୟରେ ପ୍ରାପ୍ତ ଚଉଦଟି ଗୀତରେ ଏ ପ୍ରକାର ତତ୍ତ୍ୱ-ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଏତନ୍ମଧ୍ୟରୁ ଅପ୍ରାକୃତ ପ୍ରେମ ମୂର୍ତ୍ତି ଶ୍ରୀକୃଷ୍ଣ, ତାଙ୍କର ସର୍ବାବତାରିତ୍ୱ, ଗୁଣ ଓ ନାମତତ୍ତ୍ୱ ସମ୍ପର୍କରେ ଆଠଟି ଗୀତ ରଚିତ । ରୂପ ଗୋସ୍ୱାମୀଙ୍କର ଭକ୍ତିରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି; ଜୀବ ଗୋସ୍ୱାମୀଙ୍କର ଶ୍ରୀକୃଷ୍ଣ ସନ୍ଦର୍ଭ; ବ୍ରହ୍ମସଂହିତା, ଗୋପାଳ ତାପନୀ, ଶ୍ରୀମଦ୍ ଭାଗବତ ଓ ଚୈତନ୍ୟ ଚରିତାମୃତ ବର୍ଣ୍ଣିତ ତାତ୍ତ୍ୱିକ ଭିତ୍ତିରେ କବି ଏ ଗୀତ ଗୁଡ଼ିକ ରଚନା କରିଥିବାର ଅନୁମିତ ହୁଏ ।

କବିଙ୍କର ବର୍ଣ୍ଣନାନୁସାରେ ଶ୍ରୀକୃଷ୍ଣ ହେଉଛନ୍ତି ସର୍ବାବତାରୀ, ଚିନ୍ମୟ ଚିଦ୍‌ଘନ ରସ, ଶୁଦ୍ଧ ପ୍ରେମପୀୟୂଷ ଓ ନିଖିଳ ସାର ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ବିଗ୍ରହ (ଗ୍ରନ୍ଥାବଳୀ ପୃ.୨୦୨) । ବ୍ରଜରେ ସେ ପୂର୍ଣ୍ଣତମ, ଆତ୍ମାରାମ, ସଚ୍ଚିଦାନନ୍ଦ, ରସ ପରିପୂର । ଚତୁର୍ବ୍ୟୂହ ମୂର୍ତ୍ତି (ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ) ଓ ପରବ୍ୟୋମର ନାରାୟଣ ତାଙ୍କର କଳା ଅଂଶ । କ୍ଷୀରାବ୍ଧିଶାୟୀ ବିଷ୍ଣୁ ତାଙ୍କର ବାମାଙ୍ଗରୁ ଜାତ । ରାମାଦି ଅବତାର ତାଙ୍କର କଳା ବିଶେଷ । ସେହି ବେଣ-ବେଣୁ-ଶୃଙ୍ଗ-ପାଣି ବ୍ରଜେନ୍ଦ୍ର ନନ୍ଦନ ସର୍ବାନ୍ତର୍ଯ୍ୟାମୀ, ସର୍ବ-ଶକ୍ତିମାନ୍, ସର୍ବକାରଣର କାରଣ ଓ ଅନନ୍ତ ଗୁଣର ଆଧାର (ଗ୍ରନ୍ଥାବଳୀ ପୃ-୨୧୪) । ଅଜ, ଶେଷ, ଶିବ, ବ୍ରହ୍ମା ଓ ବାସବାଦି ତାଙ୍କର ଚରଣ ମହିମାକୁ ଧ୍ୟାନ କରିଥାନ୍ତି । ଶୁକ, ସନକ ପ୍ରଭୃତି ମୁନିଶ୍ରେଷ୍ଠଙ୍କ ଦ୍ୱାରା ସେ ଅହର୍ନିଶ ସେବିତ । ସେ ଗୋଲୋକର ଶାଶ୍ୱତ

ଧନ, ବୃନ୍ଦାବନର ଅପ୍ରାକୃତ ମଦନ । ଗୋକୁଳାଖ୍ୟ ରମ୍ୟ ସ୍ଥଳରେ ସହସ୍ର ଦଳ କମଳ, ଯମୁନାତଟସ୍ଥ କୁସୁମିତ କୁଞ୍ଜବନରେ ରତ୍ନ-ଚନ୍ଦ୍ରାମଣି-ସିଂହାସନ । ତନ୍ମଧ୍ୟରେ ବୃନ୍ଦାବନ ଓ ଦଳିତାଞ୍ଜନ ଦ୍ୟୁତି ରାଧାକୃଷ୍ଣ ବିରାଜିତ (ଗ୍ରନ୍ଥାବଳୀ, ପୃ-୨୦୨-୨୧୯) (୬୨) । ସେହି ସଚ୍ଚିଦାନନ୍ଦସାନ୍ଦ୍ରାଙ୍ଗ, ଅଚିନ୍ତ୍ୟମହାଶକ୍ତି, ସନାତନ ସ୍ୱରୂପ, ବିଦଗ୍ଧ, ନବୀନ କିଶୋର ନଟବର ଗୋପବେଶ ଧାରଣ କରି ବ୍ରଜରେ ଅବତୀର୍ଣ୍ଣ (ଗ୍ରନ୍ଥାବଳୀ ପୃ-୨୨୯) । ସେହି ଜଗଦ୍‌ବନ୍ଦ୍ୟ ବ୍ରଜେନ୍ଦ୍ରନନ୍ଦନ ନିଷ୍କାମ ଗୋପିକା ଭକ୍ତର ବଶ ହୋଇଥାନ୍ତି, ଯାହା ଶିବ ଓ ବ୍ରହ୍ମାଙ୍କ ପକ୍ଷରେ ଦୁର୍ଲଭ ।

ଭକ୍ତିରସାମୃତସିନ୍ଧୁ ଗ୍ରନ୍ଥର ଆଧାରରେ କବି ଅନନ୍ତ ଗୁଣର ଆଧାର ଶ୍ରୀକୃଷ୍ଣଙ୍କର ଚତୁଃଷଷ୍ଟି ଗୁଣର ବର୍ଣ୍ଣନା ଦେବାକୁ ଯାଇ ଲେଖିଛନ୍ତି—ଶ୍ରୀକୃଷ୍ଣ ସୁରମ୍ୟାଙ୍ଗ, ସର୍ବସଲ୍ଲକ୍ଷଣ, ତେଜୋ-ଯୁକ୍ତ, ବଳୀୟାନ୍, ବୟସାନ୍ୱିତ, ବିବିଧ ଭାଷାଭିଜ୍ଞ, ସତ୍ୟବାକ୍, ପ୍ରିୟମ୍ବଦ, ସୁପଣ୍ଡିତ, ଧୀମାନ୍, ପ୍ରତିଭାନ୍ୱିତ, ବିଦଗ୍ଧ, ଚତୁର, କୃତଜ୍ଞ, ଦୃଢ଼ବ୍ରତଜ୍ଞ, ଦେଶକାଳ ପାତ୍ରଜ୍ଞ, ଶାସ୍ତ୍ରଚକ୍ଷୁ, ଗମ୍ଭୀର, ଧୈର୍ଯ୍ୟଶାଳୀ, ସମଭାବ-ସମ୍ପନ୍ନ, ବଦାନ୍ୟ, କ୍ଷମାବନ୍ତ, ଧାର୍ମିକ, ଦୁଃଖ-ହାରୀ, ଶ୍ରୀମାନ୍, ଶରଣାଗତ ପାଳକ, ଯଶସ୍ୱୀ, ସାଧୁସମାଶ୍ରୟ, ନାରୀଗଣ ମନୋହାରୀ, ସଚ୍ଚିଦାନନ୍ଦ ସାନ୍ଦ୍ରାଙ୍ଗ, ସର୍ବସିଦ୍ଧି ନିଷେବିତ, କୋଟିବ୍ରହ୍ମାଣ୍ଡ ବିଗ୍ରହ, ନୃତ୍ୟ-ଗୀତ-ବିଳାସ ନିପୁଣ, ନିରୁପାଧି, ପ୍ରେମ ପରିପୂର୍ଣ୍ଣ ଇତ୍ୟାଦି (୬୩) । ଭକ୍ତବନ୍ଧୁ ବନମାଳୀ ନିଜର ଭକ୍ତ-ମାନଙ୍କୁ ଚତୁର ପୁରୁଷାର୍ଥ (ଧର୍ମ, ଅର୍ଥ, କାମ, ମୋକ୍ଷ) ଓ ଅଷ୍ଟନିଧି ସହିତ ପ୍ରେମାନନ୍ଦ ଦାନ କରି ପାରନ୍ତି । ନିଶାନ୍ତରୁ ଦିବାବସାନ ପର୍ଯ୍ୟନ୍ତ ତାଙ୍କର ଦାସୀତ୍ୱ ବରଣ କରି ବିବିଧ ସେବାରେ ନିୟୋଜିତ ହେବାକୁ କବି ମନକୁ ଉଦ୍‌ବୁଦ୍ଧ କରିଛନ୍ତି ।

ଦୁଇଟି ଗୀତରେ ରାଧାକୃଷ୍ଣଙ୍କର ନାମର ମହତ୍ତ୍ୱ ଓ ମାଧୁର୍ଯ୍ୟ ବର୍ଣ୍ଣନା କରି କବି କହିଛନ୍ତି ଯେ ନାମ ରାଧାକୃଷ୍ଣଙ୍କ ପରି ସରସ, ସଚେତନ ଓ ଶାଶ୍ୱତ; ତାହା ପ୍ରେମଭକ୍ତିର ନିର୍ଯ୍ୟାସ । ବୈଷ୍ଣବୀୟ ତାତ୍ତ୍ୱିକ ପରମ୍ପରା ଅନୁଯାୟୀ ସେ ନାମ ଓ ନାମୀ ମଧ୍ୟରେ କୌଣସି ଭେଦ ଲକ୍ଷ୍ୟ କରି ନାହାନ୍ତି (୬୪) । ପ୍ରେମଭକ୍ତିର ନିର୍ଯ୍ୟାସ ସେହି ନାମୋଚ୍ଚାରଣରେ ତ୍ରିତାପ ଦୂରୀଭୂତ ହୁଏ ଏବଂ ଅନ୍ତିମ କାଳରେ ତାହାହିଁ ଜୀବର ପରମ ପାଥେୟ (୬୫) ।

ଅନ୍ୟତ୍ର କବି ଲେଖିଛନ୍ତି ଯେ ପ୍ରେମଭକ୍ତିଜାତ ସାତ୍ତ୍ୱିକ (ଅଷ୍ଟସାତ୍ତ୍ୱିକ) ଲବ୍‌ଧ ରତ୍ନଚନ୍ଦ୍ରାମଣି (ଶ୍ରୀକୃଷ୍ଣ) କୋଟିଏ ଜନ୍ମରେ ଦୁର୍ଲଭ । ରାଧାକୃଷ୍ଣଙ୍କର ମଧୁର ପ୍ରଣୟ ବିଳାସ କଥାରସ ଜୀବପକ୍ଷରେ ପରମ ଆସ୍ୱାଦ । ରସନାରେ ବିଳାସ କଥାରସର ଚତୁର ପାଞ୍ଚଟି ବର୍ଣ୍ଣ ସ୍ପର୍ଶରେ ଭକ୍ତର କଣ୍ଠ ବାଷ୍ପରୁଦ୍ଧ ହୋଇଯାଏ । ରୋମାଞ୍ଚ, ଅଶ୍ରୁ, ସ୍ୱେଦ ଓ କମ୍ପ

---

(୬୨) କୃ. ଦା. କ., ଗୋ. ଲୀ. ମୃ., ୨୧।୨୮ ଓ ବ. ଚ., ଗ୍ର. ୫୧।୧୦

(୬୩) ରୂ. ଗୋ., ଭ. ର. ମୃ. ସିଂ., ଦକ୍ଷିଣ ଭାଗ, ୧ମ ଲହରୀ,

(୬୪) ପଦ୍ମପୁରାଣ, ଭ. ର. ମୃ. ସିଂ, ପୃ-୬୦

(୬୫) ଗୋ, କୃ. ପ., ପୃ-୧୦୨, ଗୋ. କୃ. ଗ୍ର. ପୃ-୨୨୦

ପ୍ରଭୃତି ସାତ୍ତ୍ୱିକ ଅନୁଭାବରେ ଅଙ୍ଗ ପୁଲକିତ (୭୬)। ସାଧୁସଙ୍ଗ ଲାଭକରି ପାରସିକା (୭୭) କଥା ରଙ୍ଗରେ ତାଙ୍କର (ରାଧାକୃଷ୍ଣଙ୍କର) ଗୀତ ଗାଇ ଦିନ ନେବାକୁ ସେ ମନକୁ ଚେତାବନୀ ଶୁଣାଇଛନ୍ତି ଏବଂ ବୈଷ୍ଣବ ଶାସ୍ତ୍ର ନିର୍ଦ୍ଦିଷ୍ଟ ସାତ୍ତ୍ୱିକ ଅନୁଭାବର ବର୍ଣ୍ଣନା ସହିତ ହର୍ଷାଦି ବ୍ୟଭିଚାରୀ ଭାବାଶ୍ରୟରେ ରାଧାକୃଷ୍ଣଙ୍କୁ ଚିନ୍ତା କରିବା ପ୍ରସଙ୍ଗ କବି ଉଲ୍ଲେଖ କରିଛନ୍ତି (ଗ୍ରନ୍ଥାବଳୀ, ପୃ-୨୩୧)।

ଗୋପୀଙ୍କର ଆନୁଗତ୍ୟରେ ରାଗମାର୍ଗ ଅନୁସରଣ ପ୍ରସଙ୍ଗରେ ଜ୍ଞାନ, କର୍ମ ପରିହାର କରି ଉତ୍ତମା ଭକ୍ତିର ଆଶ୍ରୟ ନେବା ପାଇଁ କବି ମନକୁ ଉଦ୍‌ବୁଦ୍ଧ କରି କହିଛନ୍ତି—ବାସନା ପରିହାର କରି, ସର୍ବୋପାଧି ଶୂନ୍ୟ ହୋଇ ନିଷ୍କାମ ଭାବରେ ରାଧାକୃଷ୍ଣଙ୍କର ଭଜନ ଉପାସନା ଏବଂ ଅନୁରାଗ ବଶତଃ କୃଷ୍ଣଙ୍କର ସଦ୍‌ଗୁଣାବଳୀ ଶ୍ରବଣ କରିବା ଶ୍ରେୟସ୍କର। ଅମୂଲ୍ୟ ପ୍ରେମ ନିକଟରେ ବ୍ରହ୍ମାନନ୍ଦ ତୁଚ୍ଛ। ସାଲୋକ୍ୟାଦି ପଞ୍ଚବିଧ ମୁକ୍ତି ଓ ଚାରି ପୁରୁଷାର୍ଥ ତୁଚ୍ଛଜ୍ଞାନ କରି ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ହୃଷୀକେଶଙ୍କର ପୂଜା କରଣୀୟ (ଗ୍ରନ୍ଥାବଳୀ ପୃ-୨୨୫)।

ଏହି ତତ୍ତ୍ୱ ପ୍ରଧାନ ଗୀତଗୁଡ଼ିକ ମଧ୍ୟରେ 'ରସମାନସ ରାଧିକେଶ' ଜାର ରସ କଥାରେ' ଗୀତଟି ଓଡ଼ିଶାର ବୈଷ୍ଣବଭକ୍ତ ଓ ସଙ୍ଗୀତଜ୍ଞଙ୍କ ଦ୍ୱାରା ଏକାନ୍ତ ଆଦୃତ। ରାଧିକେଶ କୃଷ୍ଣଙ୍କର ପରକୀୟାରସ ଉଲ୍ଲାସ ପ୍ରତି ଅନୁରକ୍ତି ପ୍ରକାଶ କରିବା ପାଇଁ କବି ମନକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ପ୍ରେମଭକ୍ତି ଓ ନିଭୃତ କୁଞ୍ଜ ଲୀଳାରେ ରାଧାଙ୍କର କିଙ୍କରୀତ୍ୱ ଓ ବ୍ରଜବାସର ମହତ୍ତ୍ୱ ସମ୍ପର୍କରେ ସୂଚନା ଦେଇଛନ୍ତି।

## (୫) ସ୍ମରଣାତ୍ମକ ଗୀତ :

ସାଧକ ଭକ୍ତର ରାଗାନୁଗା ସ୍ତରରେ ମୁଖ୍ୟତଃ କେବଳ ସ୍ମରଣ ଦ୍ୱାରା ଭାବ (ପ୍ରେମ)ର ଉପଲବ୍‌ଧି ହୁଏ। ଭକ୍ତିରସାମୃତ ସିନ୍ଧୁରେ ଉଲ୍ଲେଖ ରହିଛି—'ରାଗାନୁଗାୟାଂ ସ୍ମରଣସ୍ୟ ମୁଖ୍ୟତ୍ୱଂ।' ସାଧକ ବା ସିଦ୍ଧ ଭାବରେ ବ୍ରଜରେ ଦୈହିକ ବା ମାନସିକ ଭାବରେ ବାସ; ଶ୍ରୀକୃଷ୍ଣ ଏବଂ ତାଙ୍କର ପ୍ରିୟତମ ସଖା, ପ୍ରିୟତମା ରାଧା, ସଖୀ, ଦୂତୀ ଓ ମଞ୍ଜରୀ ମାନଙ୍କର ଭକ୍ତିପୂର୍ଣ୍ଣ ଧ୍ୟାନ ଏହି ସ୍ମରଣର ଅନ୍ତର୍ଭୁକ୍ତ। ଏଥିପାଇଁ ଭକ୍ତ ପକ୍ଷରେ ରାଧାଭାବ ବା ସଖୀ-ଭାବର ଆଶ୍ରୟ (ଶ୍ରୀକୃଷ୍ଣ ବା ରାଧା ବା ସଖୀ ମାନଙ୍କର ଲୀଳା, ବେଶ ଓ ସ୍ୱଭାବାନୁଯାୟୀ ନିଜ ପ୍ରିୟ ବସ୍ତୁର ଉପଲବ୍‌ଧି ଏବଂ ଆନନ୍ଦ-ତନ୍ମୟତାରେ ବାସ) ଏକାନ୍ତ ପ୍ରୟୋଜନ। ବ୍ରଜ ଓ ବୃନ୍ଦାବନରେ କୃଷ୍ଣଙ୍କ ସହିତ ସମ୍ପୃକ୍ତ ବ୍ୟକ୍ତିମାନଙ୍କର ଭାବ ଓ କ୍ରିୟାକଳାପର ଅନୁକରଣ ଦ୍ୱାରା ଏହାର ଉଦୟ ହୋଇଥାଏ।

କବିଙ୍କ ମନଃଶିକ୍ଷାମୂଳକ ଗୀତ ମଧ୍ୟରେ ସ୍ମରଣାତ୍ମକ ଗୀତର ସଂଖ୍ୟା ସାତ। ନିଭୃତ କୁଞ୍ଜର ପୁଷ୍ପଶଯ୍ୟାରେ ବିରାଜମାନ ସଖୀ ପରିବେଷ୍ଟିତ ରାଧାଗୋବିନ୍ଦଙ୍କର ଜଗନ୍ମୋହନ ମୂର୍ତ୍ତିର ଧ୍ୟାନ, ବାଷ୍ପସଜଳ ନେତ୍ରରେ ଅବଲୋକନ ଏବଂ ଯୁଗଳ ପଦସେବା-ସ୍ମରଣର ଅଭିଳାଷ ଏ ଗୀତଗୁଡ଼ିକରେ ପରିସ୍ଫୁଟ। ବିଭିନ୍ନ ଗୀତରେ କବି ରାଧାକୃଷ୍ଣଙ୍କର ଗୁଣ, ବେଶ

(୭୬) ଶ୍ରୀଚୈତନ୍ୟ ଶିକ୍ଷାଷ୍ଟକମ୍, ସ୍ତ. କ. ଦ୍ରୁ., ପୃ-୨୫୯
(୭୭) S. K. De, H. V. F. M., PP. 344-345.

ଓ ଅଙ୍ଗ ଶୋଭାର ଗତାନୁଗତିକ ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ପାରମ୍ପରିକ ଚିତ୍ର କଳ୍ପର (ଉପମା, ରୂପକ, ଉତ୍ପ୍ରେକ୍ଷା) ପ୍ରୟୋଗ କରିଛନ୍ତି । ପୁଷ୍ପଶଯ୍ୟାରେ ରାଧାକୃଷ୍ଣଙ୍କର ରୂପାଳସ ଶୋଭା ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

କନକ-ଜଳଦ-କାନ୍ତ ମନୋହର ପରିବେଷ୍ଟି ଆଳି ବୃନ୍ଦେ ।୧।
ଅଭିନବ ନୀଳ ଶୋଣାବ୍ଜ-ନୟନ ମୃଦୁ ହାସ୍ୟ ଯୁତ ପ୍ରଫୁଲ୍ଲ-ବଦନ
ମଳୟଜ-ମୃଗ-ମଦର ତିଳକ ଅଳକ ଝଳକ ମଧ୍ୟେ ।୨।
ନବୀନ ଚତୁର୍ଣୀ-ତରୁଣ ସୁବେଶ, ପରିଧାନ- ପଟ୍ଟ-ନୀଳ ପୀତବାସ ।
ମୋହନ ମୁରଲୀ ଲୀଳାତାମରସ ଶ୍ରୀକର ମଣ୍ଡିତ ଶ୍ରଦ୍ଧେ ।୪।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୭୧-୨୭୨)

ଅନ୍ୟ ଏକ ଗୀତରେ କବି ଲେଖିଛନ୍ତି—ଶ୍ରୀକୃଷ୍ଣ ବ୍ରଜାଙ୍ଗନାଂକର ହୃଦତଟର ଚନ୍ଦନ, ମୁଖପଦ୍ମର ମଧୁଲିଟ, ରାଧାଂକର ମୁଖଚନ୍ଦ୍ରର ଚକୋର ଏବଂ ଭକ୍ତ-ଚାତକ ପକ୍ଷରେ ଉଦୀୟମାନ ନବଜଳଧର ତୁଲ୍ୟ । ସେହି ନିତ୍ୟ ନୂତନ ବିଦଗ୍ଧ ନଟବର ମୂର୍ତ୍ତିର ତ୍ରିଭଙ୍ଗ ଠାଣି କୋଟି ମନ୍ମଥର ମନ ମଥିତ କରିପାରେ । ବ୍ରଜବନର ସେହି ଗୁଣରତ୍ନାକର, ସାର୍ବଭୌମ, ସର୍ବସୁଲକ୍ଷଣ, ଲୀଳାମୟ ଶ୍ରୀକୃଷ୍ଣ ନିଭୃତ କୁଞ୍ଜ ନିଳୟରେ ଅପ୍ରାକୃତ ପ୍ରେମ ରସରେ ସଦା ନିମଜ୍ଜିତ (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୬୨୯) ।

## (୭) ଲୀଳାତ୍ମକ ଗୀତି :

କବି ଶ୍ରୀକୃଷ୍ଣଙ୍କର ବୃନ୍ଦାରଣ୍ୟର କୁଞ୍ଜ ଓ ବ୍ରଜଲୀଳାର ଗୋଟିଏ ଗୋଟିଏ ଚିତ୍ରକୁ ନେଇ ଛ'ଟି ଲୀଳାତ୍ମକ ଗୀତ ରଚନା କରିଛନ୍ତି । ଏହି ଚିତ୍ରଧର୍ମୀ ବା ଆଖ୍ୟାନଧର୍ମୀ ଗୀତଗୁଡ଼ିକର ଆବେଦନ ଭକ୍ତ ଓ ସାଧାରଣ ପାଠକ ଚିତ୍ତରେ କମ୍ ନୁହେଁ । ଏ ଗୁଡ଼ିକ ମଧ୍ୟରେ 'ଶରଧାରେ ଧାଇଁ ଶ୍ରୀରାଧା କୁଣ୍ଡବନକୁ ଜୀବନ ଦେଖି ଯା' ଗୀତଟି ଓଡ଼ିଶାରେ ବିଶେଷ ଲୋକପ୍ରିୟ । ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ମଞ୍ଜରୀଭାବ ଲୋଲୁପ ବୈଷ୍ଣବଭକ୍ତ ମାନଙ୍କ ପକ୍ଷରେ ପବିତ୍ର ତୀର୍ଥତୁଲ୍ୟ । ସିଦ୍ଧ ଦେହରେ ଯୁଗଳମୂର୍ତ୍ତିଙ୍କ ସଖୀ ଅନୁଗତ ସେବା ସେମାନଙ୍କର ବହୁ ଈପ୍ସିତ ସୌଭାଗ୍ୟ । ପବିତ୍ର ରାଧାକୁଣ୍ଡ ତୀରସ୍ଥ ସୁଶୋଭିତ ବନ ଦେଶରେ ଚନ୍ଦ୍ରାମଣି-ରତ୍ନ ଖଚିତ ସୋପାନଯୁକ୍ତ ଚନ୍ଦ୍ରଶାଳା ପୁରରେ ସଖୀ ପରିବେଷ୍ଟିତ ଯୁଗଳମୂର୍ତ୍ତିଙ୍କୁ ଦର୍ଶନ କରିବା ପାଇଁ କବି ପ୍ରାଣର ବ୍ୟାକୁଳତା ପ୍ରକାଶ କରିଛନ୍ତି ଏବଂ ସେହି ଅବସରରେ ବୃନ୍ଦାବନରେ ପୂର୍ବାହ୍ନ ଲୀଳାର ଗୋଟିଏ ସୁନ୍ଦର ଆଲେଖ୍ୟ ଆଙ୍କିଛନ୍ତି, ତାହା ହେଉଛି— ସ୍ୱାମିନୀ ରାଧା ଓ କୃଷ୍ଣଂକ ମଧ୍ୟରେ ପଶାଖେଳ । ଯୁଗଳ ମୂର୍ତ୍ତିଙ୍କୁ ପଣରଖା ପଶାଖେଳରେ ନିମଜ୍ଜିତ କରାଇ ଉଭୟଂକ ଆନନ୍ଦରେ ତୃପ୍ତ ହେବା ହେଉଛି ଏକ ସେବା । କବିଂକର ବର୍ଣ୍ଣନାନୁସାରେ ସଖୀ ଗହଣରେ ଯୋଷାଶିରୋମଣି ରାଧା ଓ ନାଗରରାଜ ଶ୍ରୀକୃଷ୍ଣଂକ ମଧ୍ୟରେ ପଶାଖେଳର ଧୂମ ଲାଗିଯାଇଛି । ଶ୍ରୀକୃଷ୍ଣ ଓ ରାଧା ମୁହାଁ ମୁହିଁ ହୋଇ ବସିଛନ୍ତି । ଶ୍ରୀକୃଷ୍ଣ ଶିଖଣ୍ଡ, କୁଣ୍ଡଳ ଓ ବଂଶୀ ଏବଂ ରାଧା ତାଟଙ୍କ ଓ ହାରାବଳୀ ପଣ ରଖିଛନ୍ତି । ଗାନ୍ଧର୍ବୀ ରାଧା ଖେଳରେ ଜିତିବାରୁ ସଖୀ ବଂଶୀ ଛଡ଼ାଇ ଅଣେ । ରାଧା ସଖୀ ଉପରେ ଅଧା ଆହ୍ଳା

ପଡ଼ି ପ୍ରେମୋଲ୍ଲାସରେ ହସି ଉଠନ୍ତି (ଗୋପାଳକୃଷ୍ଣ ପଦ୍ୟାବଳୀ, ପୃ. ୧୧୬, ଗ୍ରନ୍ଥାବଳୀ, ପୃ. ୨୦୪) । ରାଧାକୁଣ୍ଡ ଓ ପଶାଖେଳ ଚିତ୍ରରେ ଗୋବିନ୍ଦଲୀଳାମୃତ ଓ ରଘୁନାଥ ଦାସ ଗୋସ୍ୱାମୀଙ୍କର 'ଉତ୍କଣ୍ଠା ଦଶକମ୍'ର ଛାୟା ଲକ୍ଷିତ ହୁଏ (୬୮) ।

ଅନ୍ୟ ଏକ ଗୀତରେ ରାଧାମାଧବଙ୍କର ଶ୍ୟାମକୁଣ୍ଡରେ (ତମାଳ କୁଞ୍ଜରେ) ଭେଟ ଓ ମିଳନ ମହୋତ୍ସବର ଚିତ୍ର ଆଙ୍କିବାକୁ ଯାଇ କବି ଲେଖିଛନ୍ତି—ରାଧାଙ୍କ ସଖୀମାନେ କେଳି ମନ୍ଦିର ଦ୍ୱାରଦେଶରେ କରଧରି ପହଞ୍ଚାଇବାରୁ ରାଧାଙ୍କର ତରଳ ଲୋଳାର କ୍ରୀଡ଼ାଗୃହୁସ୍ଥି ପ୍ରକାଶିତ ହୋଇଛି । ଯୁବତୀ ସୁଲଭ ଲଜ୍ଜାବଶତଃ ସଖୀର ଅଞ୍ଚଳ ଧରି ପଛଘୁଞ୍ଚା ଦେବାରୁ ଏବଂ ଶ୍ରୀକୃଷ୍ଣ ନିକଟକୁ ଆସନ୍ତେ ଶ୍ରୀମତୀଙ୍କର ଅଙ୍ଗର ବେପଥୁ ଲକ୍ଷ୍ୟ କରି ସଖୀମାନେ ହସି ଉଠନ୍ତି । ପ୍ରମତ୍ତ ଗଜ ନିଜର କରରେ ସ୍ୱର୍ଣ୍ଣପଙ୍କଜ ଧାରଣ କଲା ପରି କୁନ୍ଦନଗୋରୀ ନବ-କିଶୋରୀଙ୍କୁ ଭୁଜରେ ଧାରଣ କରିଛନ୍ତି । ମଞ୍ଜରୀ ଭାବାବିଷ୍ଟ କବି କେଳିମନ୍ଦିରର ଦ୍ୱାର ରୁନ୍ଧି କରି ସଖୀମାନଙ୍କ ପରି ସତୃଷ୍ଣ ପ୍ରତୀକ୍ଷାରେ ରହିବାର ବର୍ଣ୍ଣନା କରି ନିଜର କୁଞ୍ଜ ସେବା ଅଭିଳାଷର ମନୋଜ୍ଞ ଛବି ଆଙ୍କିଛନ୍ତି (ଗ୍ରନ୍ଥାବଳୀ, ପୃ-୨୧୯) । ଗୀତଟିରେ ଗୀତଗୋବିନ୍ଦ ଓ ଓଡ଼ିଆ ରୀତିକାବ୍ୟର ବର୍ଣ୍ଣନା ଓ ଭାବକଳ୍ପନାର ପ୍ରତିଧ୍ୱନି ଲକ୍ଷ୍ୟ କରାଯାଏ (୬୯ ) ।

କବି ରାଧାକୃଷ୍ଣଙ୍କର ନିଃଶଙ୍କ ଓ ସଶଙ୍କ ମିଳନର ବୈଚିତ୍ର୍ୟମୟ ଚିତ୍ର ଆଂକିଛନ୍ତି ଗୋଟିଏ ଗୀତରେ । ଏ ପ୍ରକାର ମିଳନ-ବୈଚିତ୍ର୍ୟର ରୂପାୟନରେ କବି ରାଧାକୃଷ୍ଣଂକର ବାଗ୍ ବୈଦଗ୍ଧ୍ୟର ପରିଚୟ ଦେଲେ ମଧ୍ୟ ସ୍ଥୂଳ ଇନ୍ଦ୍ରିୟାକର୍ଷଣ ବ୍ୟତୀତ ଏ ମିଳନ ଚିତ୍ର ଉଚ୍ଚାଙ୍ଗ ପ୍ରେମର ସ୍ୱାକ୍ଷର ବହନ କରିପାରି ନାହିଁ (ଗ୍ରନ୍ଥାବଳୀ, ପୃ-୨୨୨) । ରୂପ ଗୋସ୍ୱାମୀଂକର ବିଦଗ୍ଧ ମାଧବ ଗ୍ରନ୍ଥରେ କବି ଶ୍ରୀକୃଷ୍ଣଂକର 'ଶ୍ୟାମଳା' (ଶ୍ୟାମାସଖୀ) ବେଶ ଧାରଣ ଚିତ୍ର ଆଂକିଛନ୍ତି (୭୦) । ଯଦିଓ ବିଦଗ୍ଧ ମାଧବରେ ସୁବଳଂକର ରାଧାବେଶ ଧାରଣ ପ୍ରସଙ୍ଗ ଉଲ୍ଲେଖ କରାଯାଇଛି । ଅଭିମନ୍ୟୁ ସାମନ୍ତସିଂହାର ବିଦଗ୍ଧ ଚିନ୍ତାମଣିରେ ଶ୍ରୀକୃଷ୍ଣଙ୍କର ସୁବଳ ବେଶ ସହ ବିଭିନ୍ନ ଛଦ୍ମବେଶ ଧାରଣର ଯେଉଁ ବିସ୍ତୃତ ଚିତ୍ର ଦେଇଛନ୍ତି (୮୯ ଛାନ୍ଦ) ଗୋପାଳକୃଷ୍ଣଂକ ରଚନାରେ ତା'ର ପ୍ରଭାବ ଓ ପ୍ରେରଣା ରହିବା କିଛି ଅସ୍ୱାଭାବିକ ନୁହେଁ ।

ରାଧାଂକର ପରମପ୍ରେଷ୍ଠ ସଖୀ ଲଳିତାଂକ ଆଶ୍ରୟରେ ବୃନ୍ଦାବନର ବିବିଧ ଲୀଳାରେ ସେବକାତ୍ମ ସ୍ମରଣ ଓ ଆଚରଣ ପାଇଁ କବି ଅନ୍ୟ ଏକ ଗୀତରେ ମନକୁ ଉଦ୍‌ବୁଦ୍ଧ କରିଛନ୍ତି । ନିଭୃତ କୁଞ୍ଜ ଶଯ୍ୟାରେ ସ୍ୱାମୀ ସ୍ୱାମିନୀଂକର ପଦସେବାରେ ନିୟୋଜିତ ରହି ତାଂକର ପ୍ରହେଳୀ, ପ୍ରଶ୍ନୋତ୍ତର ଓ ମଧୁର ଆଳାପ ଶ୍ରବଣ, ରାସାବସାନେ ପ୍ରିୟବକ୍ଷ ଗୁଡ଼ ରାସେଶ୍ୱରୀଂକର ଉଭା ହେବା କାଳର ମଧୁମୟୀ ରୂପ ଏବଂ ମଧୁପାନରେ ଉନ୍ମତ୍ତ ହୋଇ ଗଣ୍ଡରେ ଗଣ୍ଡ ଦେଇ ବର୍ଣ୍ଣଲୁପ୍ତଗୀତ ଗାନକାଳରେ ଶ୍ରୀମୂର୍ତ୍ତିର ସ୍ଫୁରଣ ଚିତ୍ରରେ କବିଂକର

(୬୮) କୃ. ଦା. କ., ଗୋ. ଲୀ. ମୃ.,୭-୨, ଓ ଗୋ. କୃ. ଗ୍ର., ପୃ-୨୦୪

(୬୯) ଗୀ: ଗୋ:, ୧୧।୧୨।୩୨

(୭୦) ଗୋ: କୃ: ଗ୍ରଂ, ପୃ-୨୨୩

ମଞ୍ଜରୀ ସୁଲଭ ପ୍ରାଣର ସାର୍ଥକ ଅଭିବ୍ୟକ୍ତି ଘଟିଛି (ଗ୍ରଂ ପୃ-୨୨୫) । କିଶୋର କିଶୋରୀଙ୍କର ପ୍ରେମଲୀଳା, ଅନୁପମ ରୂପ ଓ ବେଶ; ନିଭୃତ କୁଞ୍ଜରେ ମଞ୍ଜରୀ ଓ ସଖୀଗଣଙ୍କର ଗହ୍ୱରରେ ପୁଷ୍ପ ଶଯ୍ୟାରେ ବିଜୟ କାଳରେ ତାଙ୍କର ପଦାବ୍ଜ ମାଧୁରୀ ସ୍ମରଣକୁ କବି ନିଜ ଜୀବନର ପରମ ସୁଖ ସୌଭାଗ୍ୟ ମନେ କରିଛନ୍ତି (ପୃ-୨୨୭-୨୨୮) ।

ଏହି ଗୀତଗୁଡ଼ିକ ମଧ୍ୟରେ ଗୋଟିଏ ସଂକ୍ଷିପ୍ତ ବ୍ରଜଲୀଳାତ୍ମକ ଗୀତ ରହିଛି । ଶ୍ରୀକୃଷ୍ଣଙ୍କର କଂସ କାରାଗାରରେ ଜନ୍ମ, ଆୟୀର ପ୍ରତି କରୁଣା, ଲୀଳାଛଳରେ ବ୍ରଜରେ ନାନାରୂପ ଧାରଣ; ବକା, ଷଣ୍ଢ ଓ ଶକଟାଦି ଦାନବ ବିନାଶ; କାଳୀୟ ଦଳନ, ଗୋବର୍ଦ୍ଧନ ଧାରଣ, ଦାବାଗ୍ନି ପାନ, ବ୍ରହ୍ମାଗର୍ବ ହରଣ, ବ୍ରଜଶିଶୁଙ୍କ ସହିତ ଲୀଳା ଓ ବ୍ରଜବାଳୀ ଚିତ୍ତାକର୍ଷଣ ଆଦି ବିଭିନ୍ନ ଲୀଳାର ସୂଚନାମାତ୍ର ଦେଇ କବି ଶରଣରକ୍ଷଣ ଶ୍ରୀକୃଷ୍ଣଙ୍କର ପଦାବ୍ଜରେ ଶରଣ ବାଞ୍ଛା କରିଛନ୍ତି ।

## (ଘ) ଭକ୍ତର ଲାଳସା (ସ୍ୱାଭୀଷ୍ଟ ଓ ସାଧକ ଦେହୋଚିତ), ବିଜ୍ଞପ୍ତି, ଦୈନ୍ୟବୋଧିକା, ସ୍ୱାନୁଭୂତ, ବିଳାପ ଓ ବୈଷ୍ଣବତୀର୍ଥ-ଦର୍ଶନାଭିଳାଷ ସମ୍ବଳିତ ଗୀତ

ଉପର୍ଯ୍ୟୁକ୍ତ ଶିରୋନାମାର ଗୀତଗୁଡ଼ିକ ବୈଧୀସାଧନ ଭକ୍ତି ଓ ରାଗାନୁଗା ଭକ୍ତିର ଅନ୍ତର୍ଭୁକ୍ତ । ସାଧକଭକ୍ତର ବୈରାଗ୍ୟ ଚେତନାଧର୍ମୀ ମନଃଶିକ୍ଷାମୂଳକ ଗୀତ ମଧ୍ୟରେ କେତେକ ଭକ୍ତ୍ୟଙ୍ଗ ଆଚରଣମୂଳକ ଗୀତ ଆଲୋଚିତ ହୋଇଥିଲେ ମଧ୍ୟ ଶଂସିତ ଗୀତଗୁଡ଼ିକୁ ଏକ ସ୍ୱତନ୍ତ୍ର ଉପ ବିଭାଗ ଅଧୀନରେ ଆଲୋଚନା କରିବାର କାରଣ ହେଉଛି : ବୈଷ୍ଣବ ତାତ୍ତ୍ୱିକ ଗ୍ରନ୍ଥ ଓ କାବ୍ୟମାନଙ୍କରେ ଏଗୁଡ଼ିକ ଉପରେ ସ୍ୱତନ୍ତ୍ର ଗୁରୁତ୍ୱ ପ୍ରଦାନ । ରୂପ ଗୋସ୍ୱାମୀ ଭକ୍ତି ରସାମୃତ ସିନ୍ଧୁର ପୂର୍ବ ବିଭାଗର ଦ୍ୱିତୀୟ ଲହରୀ ଏବଂ ଜୀବ ଗୋସ୍ୱାମୀ ତାଙ୍କର 'ଭକ୍ତି ସନ୍ଦର୍ଭ'ରେ ବୈଧୀ ସାଧନ ଭକ୍ତିର ବିଭିନ୍ନ ଅଙ୍ଗ ସମ୍ବନ୍ଧରେ ଆଲୋଚନା ଅବସରରେ ଏ ଗୁଡ଼ିକର ଆଲୋଚନା କରିଛନ୍ତି । ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ ଇଚ୍ଛାନିଷ୍ଠ (ଦୈନ୍ୟବୋଧିକା, ପ୍ରାର୍ଥନାମୟୀ ଓ ଲାଳସାମୟୀ) ଶିରୋନାମାରେ ଭକ୍ତ୍ୟଙ୍ଗ 'ବିଜ୍ଞପ୍ତି'ର ସୂଚନା ଦେଇଛନ୍ତି (୭୧) ।

ଗୋପାଳକୃଷ୍ଣ ବୈଷ୍ଣବ ଗୋସ୍ୱାମୀମାନଙ୍କର ଆଦର୍ଶରେ ଏହି ଉପ ବିଭାଗର ବିଜ୍ଞପ୍ତି ଓ ଅନ୍ୟ ଶିରୋନାମାର ଗୀତଗୁଡ଼ିକ ରଚନା କରିଛନ୍ତି । ସ୍କନ୍ଦ ପୁରାଣରେ ବିଜ୍ଞପ୍ତି (ବିଜ୍ଞାପନ ଗିରାଂ) ସୂଚକ ଶ୍ଳୋକ ଉଦ୍ଧାର କରି ରୂପ ଗୋସ୍ୱାମୀ ବିଜ୍ଞପ୍ତିର ସଂଜ୍ଞା ଓ ତା'ର ବିଭାଗ ସମ୍ପର୍କରେ ଉଲ୍ଲେଖ କରିଛନ୍ତି ଯେ ପଣ୍ଡିତମାନେ କୃଷ୍ଣଙ୍କ ଉଦ୍ଦେଶ୍ୟରେ ବିଜ୍ଞପ୍ତିକୁ

(୭୧) ବି. ଚି., ସଂକଳକ : ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ୧ମ ସଂ. ଲାସ୍ୟ ପଦ ୧୨-୧୭

ସଂପ୍ରାର୍ଥନାତ୍ମିକା, ଦୈନ୍ୟବୋଧିକା ଓ ଲାଲସାମୟୀ ଇତ୍ୟାଦି ଭେଦରେ ନିରୂପଣ କରିଛନ୍ତି (୭୨) । ଭଗବନ୍ତ ଚରଣରେ ମନକୁ ପରିନିଷ୍ଠିତ କରିଇବାର ପ୍ରାର୍ଥନାହିଁ ସଂପ୍ରାର୍ଥନା । ନିଜର ଅଭୀଷ୍ଟ ଭଗବତ୍‌-ସେବାଦିର ପ୍ରାର୍ଥନା ଏବଂ ଅନୁପଲବ୍‌ଧ ଭାବ-ଲୋକରେ ବିହାର ହେଉଛି ସାଧକ-ଭକ୍ତ ପକ୍ଷରେ ଲାଲସା । ଏହି ଦିବ୍ୟ ଲାଲସାର ପରିପୂର୍ତ୍ତି ପାଇଁ ଭଗବାନ୍ ଶ୍ରୀକୃଷ୍ଣ ଓ ତାଙ୍କର ସ୍ୱରୂପଶକ୍ତି ରାଧାଙ୍କ ପଦରେ ସଖୀ ଅନୁଗତ ସେବା ଭକ୍ତ ପକ୍ଷରେ ଏକମାତ୍ର ସମ୍ବଳ । ଏହି ସେବା ମୂଳରେ ରହିଛି ଦାସ୍ୟଭାବ । ଦାସ୍ୟଭାବ ପ୍ରକାରାନ୍ତରେ ଦୈନ୍ୟ ବା ଦୀନତାବ୍ୟଞ୍ଜକ । ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ଭକ୍ତର ବିଜ୍ଞପ୍ତିରେ ଦୈନ୍ୟ ଫୁଟି ଉଠିବା ସ୍ୱାଭାବିକ । ପ୍ରାର୍ଥନା, ଦିବ୍ୟଲାଲସା ଓ ଦୈନ୍ୟ ଏ ଗୁଡ଼ିକ ଭକ୍ତର ସାଧନ ପଥର ପାଥେୟ—ଭକ୍ତି ସାଧନର ଉପାଦାନ (୭୩) ।

ଗୋପାଳକୃଷ୍ଣ ଭକ୍ତର ସ୍ୱାଭୀଷ୍ଟ ଲାଲସା, ସାଧକ ଦେହୋଚିତ ଲାଲସା, ବିଜ୍ଞପ୍ତି, ଦୈନ୍ୟ ବୋଧିକା, ସ୍ୱାନୁଭୂତ ଓ ବିଳାପ ଶିରୋନାମାରେ ପ୍ରାୟ ତ୍ରିଶଟି ଗୀତ ରଚନା କରିଥିଲେ ମଧ୍ୟ ଶାସ୍ତ୍ରୀୟ ବିଚାର ଦୃଷ୍ଟିରୁ ସେଗୁଡ଼ିକ କେବଳ ଗୋଟିଏ ଶିରୋନାମା 'ବିଜ୍ଞପ୍ତି'ର ଅନ୍ତର୍ଭୁକ୍ତ । ସେଗୁଡ଼ିକର ଅନ୍ତଃସ୍ୱର ଏକ; ସେଗୁଡ଼ିକ ଗୋଟିଏ ଭାବଧ୍ୱନିର ତରଙ୍ଗାୟିତ ବିସ୍ତୃତି ମାତ୍ର ।

**ବିଳାପ :**

ସଂସ୍କୃତ ରଚନାର ଅନୁବାଦ ଓ ସଂସ୍କୃତ ପ୍ରଭାବିତ ରଚନା ମଧ୍ୟରେ ପୂର୍ବରୁ ବିଳାପ ଶୀର୍ଷକ କେତୋଟି ଗୀତର ଆଲୋଚନା କରାଯାଇଛି, ତା'ର ପୁନରୁକ୍ତି ଏ କ୍ଷେତ୍ରରେ ଅନାବଶ୍ୟକ । କେବଳ ଗୋଟିଏ 'ବିଳାପ' ଗୀତର ସଂକ୍ଷିପ୍ତ ସୂଚନା ଏଠାରେ ଦିଆ-ଯାଉଛି । ଗୀତଟିର ଶିରୋନାମା ହେଉଛି : 'ଯୁଗଳମୂର୍ତ୍ତି ବିରହ ଜନିତ ବିଳାପ' (ଗୋ. କୃ. ଗ୍ରଂ., ପୃ-୧୦୫) । ବିଷୟ-ବିପର ପ୍ରଭାବରେ କବି ହେମ-ମରକତ କାନ୍ତି କୁଞ୍ଜବିହାରୀଙ୍କୁ ବିସ୍ମୃତ ହୋଇଥିବାରୁ ଏବଂ ତାଙ୍କର ସେବା-ସଂପତ୍ତିରୁ ବଞ୍ଚିତ ହୋଇ-ଥିବାରୁ ଏହି ଗୀତରେ ନିଜର ମନୋବେଦନା ପ୍ରକାଶ କରିଅଛନ୍ତି । ବର୍ଣ୍ଣନା ପ୍ରସଙ୍ଗରେ ରାଧାକୃଷ୍ଣଙ୍କର ନେପଥ୍ୟ ବିଧାନ, କନ୍ଦର୍ପନନ୍ଦୀ ଅପୂର୍ବ ଅଙ୍ଗସୁଷମା, ରାସରସନିପୁଣତା, ସାତ୍ତ୍ୱିକ ଭୂଷଣ, ଉଭୟଙ୍କର (ରାଧା ଓ କୃଷ୍ଣ) ବ୍ରୀଡ଼ା ଓ ସ୍ମିତ ମଣ୍ଡିତ ନର୍ମବଚନ, କୁସୁମ ଶଯ୍ୟାରେ ଆଳିଙ୍କର ସେବାର ସ୍ମୃତି ସ୍ମରଣରେ କବିଙ୍କର ଚକ୍ଷୁ ଅଶ୍ରୁସଜଳ ହୋଇଉଠିଛି । ବିଳାପ କୁସୁମାଞ୍ଜଳିର ଗୀତତୁଲ୍ୟ ଏ ବିଳାପ ଗୀତଟି ସେପରି ପ୍ରାଣସ୍ପର୍ଶୀ ନୁହେଁ ।

**ବିଜ୍ଞପ୍ତି :**

ଶାସ୍ତ୍ରୀୟ ବିଚାର ଦୃଷ୍ଟିରୁ 'ବିଜ୍ଞପ୍ତି' ଶୀର୍ଷକ ଗୀତଗୁଡ଼ିକରେ ଉପାସ୍ୟ, ଉପାସ୍ୟା ଏବଂ ସଖୀ ଓ ମଞ୍ଜରୀଙ୍କ ନିକଟରେ କବିଙ୍କର ଦିବ୍ୟ ଲାଲସା (ସେବା ସମ୍ପର୍କରେ), ପ୍ରାର୍ଥନା ଓ

(୭୨) ଭ. ର. ମୃ. ସିଂ., ଶ୍ଳୋ. ୧୫୨ ପୃ-୫୪

(୭୩) ଭ. ର. ମୃ. ସିଂ., ଭକ୍ତ୍ୟଙ୍ଗ ସମୂହର ଟୀକା ଦ୍ରଷ୍ଟବ୍ୟ

ଘନିଷ୍ଠତା ସୂଚକ ଭାବରାଜି ପରିସ୍ଫୁଟ । ଗୋଟିଏ ଗୀତରେ କବି ରାଧାଙ୍କର ସଖୀ ଏବଂ ମଞ୍ଜରୀଙ୍କ (୭୪) ନିକଟରେ ସ୍ୱ ଦାସୀତ୍ୱ ସ୍ୱୀକାର କରି ସ୍ୱାମିନୀଙ୍କ ସେବାରେ ନିୟୋଜିତ ହେବା, ଅନୁପମ ପ୍ରେମ ପାରାବାରରେ ନିଜକୁ ନିମଜ୍ଜିତ କରିବା, ଯୁଗଳ ସେବା ସମ୍ପତ୍ତି ଓ ରାଧା ଗୋବିନ୍ଦଙ୍କ ପଦାବ୍ଜରେ ସ୍ଥାନ ଲାଭ ନିମିତ୍ତ ପ୍ରାଣର ଆବେଗରେ ପ୍ରାର୍ଥନା କରିଛନ୍ତି ('ପ୍ରାର୍ଥନା ବିଜ୍ଞପ୍ତି', ଗୋ. କୃ. ଗ୍ରଂ., ପୃ-୯୭) ।

ସ୍ୱାମିନୀ ରାଧାଙ୍କ ଉଦ୍ଦେଶ୍ୟରେ ଦୁଇଟି 'ବିଜ୍ଞପ୍ତି' ଶୀର୍ଷକ ଗୀତରେ ରାଧାଙ୍କ ଚରଣରେ କବିଙ୍କର କିଙ୍କରୀତ୍ୱ, ମଞ୍ଜରୀ ଭାବରେ ବୃନ୍ଦାବନ ଲୀଳାରେ ବିଭିନ୍ନ ସେବା (ଅଶ୍ରୁଳ ନୟନରେ ଯୁଗଳମୂର୍ତ୍ତିଂକର ଦର୍ଶନ, ଶ୍ରୀକୃଷ୍ଣ ଶ୍ରାନ୍ତ ତରୁମୂଳରେ ଚାମର ଚାଳନ, ପଶାକ୍ରୀଡ଼ା କାଳରେ ଲଳିତାଂକ ଇଙ୍ଗିତରେ ପରାଜିତ ମୋହନଂକ ହସ୍ତରୁ ବଂଶୀ ଆକର୍ଷଣ ଓ ରାଧାଙ୍କର ବିଜୟ ଘୋଷଣା, ରହସ୍ୟମୟ ଘଟଣାରେ ଦୌତ୍ୟ ଇତ୍ୟାଦି । ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୯୭-୧୦୩) ପ୍ରାର୍ଥନାର ବିଷୟ ପରିସ୍ଫୁଟ । ଅନ୍ୟ ଏକ ଗୀତରେ ଯୁଗଳମୂର୍ତ୍ତି ଦର୍ଶନ ଓ ଚାମର ସେବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିବାରୁ କବି ପ୍ରାଣର ବେଦନା (ଗ୍ରନ୍ଥାବଳୀ, ପୃ-୧୧୭) ପ୍ରକାଶ ପାଇଛି ।

ଶ୍ରୀକୃଷ୍ଣଙ୍କ ପ୍ରତି କବିଙ୍କର ବିଜ୍ଞପ୍ତି ରାଧା ଓ ତଦୀୟା ସଖୀ ଓ ମଞ୍ଜରୀମାନଙ୍କ ପ୍ରତି ଅପେକ୍ଷା ଟିକିଏ ସଂଭ୍ରମପୂର୍ଣ୍ଣ । ରାଧା ଓ ସଖୀମାନଙ୍କ ନିକଟରେ ତାଙ୍କର ସେବା ପ୍ରାର୍ଥନା ନିକଟତମ, ନିବିଡ଼ ଓ ଅଭିମାନ ମିଶ୍ରିତ, କିନ୍ତୁ ଶ୍ରୀକୃଷ୍ଣଙ୍କ ପ୍ରତି ସେପରି ନୁହେଁ । ଧୃତବଂଶୀ ବେଶ ନାଗରେନ୍ଦ୍ରଙ୍କଠାରେ ଏକମାତ୍ର ପ୍ରାର୍ଥନା ଏହି ଯେ ସେ ନେତ୍ର ଭରି ଯୁଗଳମୂର୍ତ୍ତି ଦର୍ଶନ କରିବେ ଓ ରାଧାଙ୍କର ପଦାବ୍ଜର କିଙ୍କରୀ ମାତ୍ର ହୋଇ ଉଭୟଙ୍କର ସେବା ବିଧାନ କରୁଥିବେ । କବିଙ୍କ ଭାଷାରେ —

ମାଗୁ ନାହିଁ କିଛୁ ମନେ ମାତ୍ର ଅଛୁ ଆଖି ପୂରାଇ ଦେଖିବି ।
କୃପା କଲେ ତୁମ୍ଭ ପ୍ରାଣବନ୍ଧୁ ରାଧା ପଦାବ୍ଜକିଙ୍କରୀ ହେବି ।ଚା

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୧୧୨-୧୧୩)

ଭଗବାନ୍ ଶ୍ରୀକୃଷ୍ଣଙ୍କର କୃପା କଣିକାର ଆଶାୟୀ ହୋଇ କବି ଉତ୍କଳର ଅନ୍ୟ ଭକ୍ତ କବିମାନଙ୍କ ପରି (କବିସୂର୍ଯ୍ୟ ବଳଦେବ, ଯଦୁମଣି, ନିତ୍ୟାନନ୍ଦ, ଚନ୍ଦନ ହଜୁରି ପ୍ରଭୃତି) ତାଙ୍କଠାରେ ନିଜର ଭକ୍ତସୁଲଭ ଅଭିମାନ ପ୍ରକାଶ କରିଛନ୍ତି, ଯଥା — ଅନୁସରି ତ ପ୍ରଭୋ ! କାଳପାକ ଗଲି ସରି ତ । କରି ବିତରଣ କଲେ କେତେ ହୁଣା ହୁଅନ୍ତା କରୁଣା ସରିତ ? କବିସୂର୍ଯ୍ୟ ବଳଦେବ, ସାଲବେଗ ଓ ଦୀନକୃଷ୍ଣଙ୍କ ଜଗନ୍ନାଥ ଜଣାଣ ପରି ଏଥିରେ ଭଗବାନଙ୍କର ସେହି ଗତାନୁଗତିକ ଗୌରବସୂଚକ ପୌରାଣିକ ପ୍ରସିଦ୍ଧିର ସଙ୍କେତ ରହିଥିଲେ ମଧ୍ୟ (ଅଶରଣାର୍ଥୀର ବନ୍ଧୁପଣ, ଦ୍ରୌପଦୀଙ୍କର ସମ୍ମାନ ରକ୍ଷଣ ଇତ୍ୟାଦି) ଭକ୍ତ ପାଠକମାନଙ୍କ ପକ୍ଷରେ ତାହା କ୍ଳାନ୍ତିକର ନୁହେଁ । ଏଥିରେ ସାଂସାରିକ ଦୁଷ୍କୃତିରୁ ମୁକ୍ତିପାଇଁ

(୭୪) ବୃ. ଗୋ. ଶ୍ରୀରାଧାକୃଷ୍ଣଗଣୋଦ୍ଦେଶ ଦୀପିକା ପୃ ୨୦-୨୪ ଓ ଗୋ. କୃ. ଗ୍ରଂ., ପୃ-୨୬୯

ଭଗବାନ୍‌ଙ୍କ ନିକଟରେ ତାଙ୍କ ପ୍ରାଣର ଆର୍ତ୍ତି ନିବେଦିତ ହୋଇଛି । ରଚନାର ଗତାନୁଗତିକତା ଓ ଭାବବୈଚିତ୍ର୍ୟ ସତ୍ତ୍ୱେ ଗୀତଟି ଓଡ଼ିଶାରେ ବିଶେଷ ଜନପ୍ରିୟ (ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୧୧୭) ।

## ସ୍ୱାଭୀଷ୍ଟ ଲାଳସା :

ଏହି ଶିରୋନାମାରେ କବିଙ୍କର ଗୁଡ଼ିଏ ଗୀତ ରହିଛି, ତନ୍ମଧ୍ୟରୁ କେତୋଟି ଅପେକ୍ଷାକୃତ ଦୀର୍ଘ, ଅନ୍ୟଗୁଡ଼ିକ କ୍ଷୁଦ୍ରାୟତନବିଶିଷ୍ଟ । ଏଗୁଡ଼ିକରେ ସାଧାରଣ ବୈଷ୍ଣବସୁଲଭ ଅଭିଳାଷ, ତା'ର ସାଧନାର ଚରମ ଲକ୍ଷ୍ୟ ପରିସ୍ଫୁଟ ହୋଇଛି । କବିଙ୍କ ଭାଷାରେ ଗୁରୁଦତ୍ତତନୁ (ସିଦ୍ଧଦେହ) ବା ମଞ୍ଜରୀ ସଖୀ ଦେହ ଲାଭ କରି ସେ ରାଧାକୃଷ୍ଣଙ୍କର ନିଭୃତ କୁଞ୍ଜ ସେବାର ଅଧିକାରୀ ହୋଇ ପାରନ୍ତେ, ଶ୍ରୀକୃଷ୍ଣ ପାର୍ଶ୍ୱରେ ଉଭା ହୋଇ ସାଷ୍ଟାଙ୍ଗ ପ୍ରଣାମ କରୁ କରୁ ପ୍ରାଣ ଦିବ୍ୟ ପୁଲକରେ ପୂରି ଉଠନ୍ତା, ନେତ୍ରରୁ ଆନନ୍ଦାଶ୍ରୁ ବିଗଳିତ ହୁଅନ୍ତା । ରାଧାକୃଷ୍ଣ ବିହାରସ୍ଥ ଉପବନର ପ୍ରତ୍ୟେକ ବୃକ୍ଷବଲ୍ଲୀ ସ୍ୱାମୀ ଓ ସ୍ୱାମିନୀଙ୍କର ମିଳନର ପ୍ରତ୍ୟକ୍ଷ ଦ୍ରଷ୍ଟା ହୋଇଥିବାରୁ, ତାଙ୍କର ପୂତ କରାଙ୍ଗୁଳି ସ୍ପର୍ଶରେ ବିକଶିତ ହୋଇଥିବାରୁ କବିଙ୍କ ଦୃଷ୍ଟିରେ ସେ ଗୁଡ଼ିକ ଅତି ପବିତ୍ର, ଅତି କମନୀୟ । ସେଗୁଡ଼ିକର ନାମ ସମ୍ବୋଧନ କରି କବି ସେମାନଙ୍କୁ ଆଶ୍ଳେଷ କରନ୍ତେ, ବୃନ୍ଦାବନର କୋମଳ ସିକତିଳ ଭୂମିରେ ଶ୍ୟାମ ଓ କିଶୋରୀଙ୍କର ଯୁଗଳ ପଦଚିହ୍ନ ବିଲୋକି ଆନନ୍ଦରେ ଲୋଟିଯା'ନ୍ତେ, ମାଧବୀଲତା ବେଷ୍ଟିତ କେଳିର କୁଞ୍ଜରେ ନାନାରତ୍ନ ଖଚିତ ରତ୍ନମଣ୍ଡପର ଦିବ୍ୟାସନରେ ସଖୀମଞ୍ଜରୀ ବେଷ୍ଟିତ ରାଧାକୃଷ୍ଣଙ୍କୁ ଅବଲୋକନ କରି ତାଙ୍କର ପଦାବ୍‌ଜରେ ନିଜକୁ ଦାସୀ ଭାବରେ ନିୟୋଜିତ କରି ଅପରିମିତ ଆନନ୍ଦ ଉପଲବ୍‌ଧି କରନ୍ତେ । ସ୍ୱାମୀ ସ୍ୱାମିନୀଙ୍କର କୃପା କଟାକ୍ଷ ମାତ୍ରକେ ସେ ଦୁହେଁ ଶ୍ରଦ୍ଧାରେ ସେବାପାଇଁ ଆଜ୍ଞା ଦିଅନ୍ତେ, କିଶୋରୀ ମଣି ତାଙ୍କ ପ୍ରତି କୃପା ଦୃଷ୍ଟି ନିକ୍ଷେପ କରିବାମାତ୍ରେ ତାଙ୍କର ବ୍ୟଜନ ସେବା ପାଇଁ ରୂପମଞ୍ଜରୀ ତାଙ୍କ ହସ୍ତରେ ପଙ୍ଖା ଦିଅନ୍ତେ, ପ୍ରାଣବନ୍ଧୁଙ୍କ ସମକ୍ଷରେ କିଶୋରୀମଣି ତାଙ୍କ ପୃଷ୍ଠ ଦେଶରେ ଶ୍ରୀକର ସ୍ପର୍ଶ ଦେଇ ତାଙ୍କୁ ପ୍ରବୋଧନା ଦିଅନ୍ତେ । ମଣିମୟ ମନ୍ଦିରରେ ସ୍ୱାମୀ ସ୍ୱାମିନୀଙ୍କର ନିଭୃତ କେଳିବିଳାସ ଲକ୍ଷ୍ୟକରି ପ୍ରେମାଶ୍ରୁରେ ତାଙ୍କର ନୟନ ଭରି ଉଠନ୍ତା, ଦିବ୍ୟ ଆନନ୍ଦୋଚ୍ଛ୍ୱାସରେ ତାଙ୍କର ଦେହ, ମନ ଓ ନେତ୍ର ନୃତ୍ୟ କରି ଉଠନ୍ତା (ଗୋ. କୃ. ଗ୍ରଂ., ପୃ. ୮୯-୯୧) ।

'ସ୍ୱାଭୀଷ୍ଟ ଲାଳସା' ଶୀର୍ଷକ ପ୍ରାପ୍ତ ଅଧିକାଂଶ ଗୀତରେ ସେହି ଗୋଟିଏ ଭାବର ଆବେଗମୟୀ ପ୍ରକାଶ ଘଟିଛି, ଯଥା—କେବେ ସେ (କବି) ଗୁରୁରୂପା ସଖୀଙ୍କ କୃପାରେ (୭୫) ସିଦ୍ଧ ଦେହ ଲାଭ କରି ରାଧାକୃଷ୍ଣଙ୍କର ବିଭିନ୍ନ ଲୀଳାରେ ମଞ୍ଜରୀ ଓ ସଖୀମାନଙ୍କର ଆନୁଗତ୍ୟ ଲାଭ କରି ପୁଷ୍ପଶଯ୍ୟା ରଚନା, ପଙ୍ଖା-ଚାମର-ଚାଳନ, ତାମ୍ବୂଳ ବାଟିକା ଅର୍ପଣ, ପତଦ୍‌ଗ୍ରହ ଝାରି (ପିକଦାନି) ଧାରଣ, ମାଳା ଗ୍ରନ୍ଥନ, ଅଳକ୍ତକ ରେଖା ଅଙ୍କନ, ପଦ

(୭୫) ଶ୍ରୀ ସ୍ୱ. କ. ଦ୍ରୁ., ପୃ-୭

ସମ୍ମାର୍ଜନ, ଚାମର ପ୍ରଦାନ, ସଙ୍କେତ କୁଞ୍ଜ ଗମନ ବ୍ୟବସ୍ଥା ଆଦି ସେବାରେ ଖଟିବାର ଏବଂ ରାସେଶ୍ୱରୀଙ୍କର ଦାସ୍ୟ ଓ ବାତ୍ସଲ୍ୟ-କୃପା ସୌଭାଗ୍ୟ ଲାଭ କରିବେ; ରାଧାଙ୍କର କୃପାରେ ମଞ୍ଜରୀମାନଙ୍କ ମଧ୍ୟରେ ଜଣେ ବୋଲି ପରିଗଣିତା ହେବେ (୭୬)। ରୂପ ମଞ୍ଜରୀ, ଲଳିତା ଓ ରଙ୍ଗଦେବୀଙ୍କ ଯୂଥରେ ସେମାନଙ୍କ ଆଦେଶରେ ରାଧାକୃଷ୍ଣଙ୍କର ବିବିଧ ସେବା ପାଇଁ କବି ପ୍ରାଣର ବ୍ୟାକୁଳତା ଏହି ଶିରୋନାମାର 'ବିଜ୍ଞପ୍ତି' ଶୀର୍ଷକ ଗୀତିକା ଗୁଡ଼ିକରେ ପ୍ରାପ୍ତ ସର୍ବାଧିକ ପ୍ରକଟିତ ହୋଇଛି ।

'ଅଷ୍ଟକାଳୀନ ସ୍ମରଣୀ ସେବା ଭାବନା' ଶିରୋନାମାର ଆଠଟି ଗୀତରେ ରାଧା-କୃଷ୍ଣଙ୍କର ବିବିଧ ଲୀଳାରେ ମଞ୍ଜରୀ ରୂପେ କବିଙ୍କର ସେବାଭିଳାଷର ବିଶଦ ଚିତ୍ର ଅଙ୍କିତ ହୋଇଥିଲେ ମଧ୍ୟ ଭାବ ଓ ଚିତ୍ର ଦୃଷ୍ଟିରୁ ସେଗୁଡ଼ିକରେ କିଛି ନୂତନତ୍ୱ ନାହିଁ । ଗୀତଗୁଡ଼ିକରେ ମଞ୍ଜରୀ ସୁଲଭ ସେବାର ସ୍ଥୂଳଚିତ୍ର ବ୍ୟତୀତ ଭାବଗତ ସୂକ୍ଷ୍ମତା ବା ସମୁତ୍କର୍ଷ ଲକ୍ଷିତ ହୁଏନା । ପୂର୍ବରୁ କଥିତ ହୋଇଛି ଯେ କବିଙ୍କର ସିଦ୍ଧନାମ ଗୁଞ୍ଜ ମଞ୍ଜରିକା । ଗୁଞ୍ଜ-ମଞ୍ଜରିକା ଓ ସିଦ୍ଧ ମଞ୍ଜରୀ ନାମରେ ରାଧାଙ୍କ ମୁଖରୁ ସେବିକା ଭାବରେ ଆହ୍ୱାନ ଶ୍ରବଣ ନିମିତ୍ତ କବି ପ୍ରାଣରେ ବ୍ୟାକୁଳତା ଅହରହ । ଏହି ଗୀତଗୁଡ଼ିକର ମୂଳ ପ୍ରେରଣା ହେଉଛି କୃଷ୍ଣ ଦାସ କବିରାଜଙ୍କର ଗୋବିନ୍ଦ ଲୀଳାମୃତ ମହାକାବ୍ୟ ଓ ଏତଦ୍ ସମ୍ପର୍କୀୟ ବୈଷ୍ଣବ-ସ୍ତୋତ୍ରାବଳୀ ।

**ସାଧକ ଦେହୋଚିତ ଲାଳସା :**

ଗୁରୁଙ୍କ କୃପାରେ ସିଦ୍ଧ ଦେହ ଲାଭ କରି ରାଧାକୃଷ୍ଣଙ୍କର ଚିନ୍ମୟ ଲୀଳା ବୈଚିତ୍ର୍ୟରେ ସେବିକା ହେବାର ଉତ୍କଣ୍ଠା ଏହି ଶିରୋନାମାର ଗୀତଗୁଡ଼ିକରେ (ସ୍ୱାଭୀଷ୍ଟ ଲାଳସାମୂଳକ ଗୀତ ପରି) ପରିସ୍ଫୁଟ । ଏ ଗୁଡ଼ିକରେ ବିଷୟ-ବିରକ୍ତି, ବୈରାଗ୍ୟ ଓ ମୃତ୍ୟୁ ଚେତନା ଅଧିକ ସ୍ପଷ୍ଟ । ଦୃଷ୍ଟାନ୍ତ ସ୍ୱରୂପ—

(କ) କେତେବେଳକୁ ଶ୍ରୀ ପଦାବ୍ଜ ଦର୍ଶିବି ଯେ ।
ଜୀବ-ଅଳି ଯାଇ ସୁଖେ ବସିବ ଯେ । (ଗୋ. କୃ. ଗ୍ରଂ., ପୃ-୯୩)

(ଖ) ଦୟାମୟି ! ଦର୍ଶିବି, ସତେ ଯିବା କାଳରେ ମୋ ଜୀବ ଯେ
ବ୍ରଜବଧୂଙ୍କ ଅଂକରେ ଥିବ ଯେ ।
(ଗୋ. କୃ. ଗ୍ରଂ., ପୃ-୧୨୬)

ଶୁଦ୍ଧାଭକ୍ତିର ସାଧକମାନଙ୍କ ପକ୍ଷରେ ବ୍ରଜରେ ତୃଣ ଓ ଗୁଳ୍ମ ଲତା ଭାବରେ ଜନ୍ମଲାଭ କରିବା ପରମ ସୌଭାଗ୍ୟ, ମାନବ ରୂପରେ ଜନ୍ମତ ମହାଭାଗ୍ୟ ! କବିଙ୍କ ଭାଷାରେ—

ଜନମି ଥିଲେ ଶ୍ରୀବ୍ରଜେ ମୁଁ
ସେବିଥାନ୍ତି ରାସେଶ୍ୱରୀ ପଦାବ୍ଜେ ।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୯୧)

ରଚିତ ଗୀତର ଭାବ ଓ ବର୍ଣ୍ଣିତବ୍ୟ ବସ୍ତୁ 'ସ୍ୱାଭୀଷ୍ଟ ଲାଳସା' ଶୀର୍ଷକ ଗୀତଗୁଡ଼ିକର ଅନୁରୂପ ।

---

(୭୬) ଗୋ. କୃ. ଗ୍ରଂ., ପୃ-୯୨

## ଦୈନ୍ୟବୋଧିକା :

ଅଧିକାଂଶ ଗୀତରେ କବିଙ୍କର ଦୀନତା ବ୍ୟଞ୍ଜକ ବିନୟ ପରିସ୍ଫୁଟ ହେଲେ ମଧ୍ୟ ସ୍ୱାମିନୀ ରାଧାଙ୍କ ନିକଟରେ କବି ନିଜର ଦୈନ୍ୟର ସ୍ପଷ୍ଟ ଅଭିବ୍ୟକ୍ତି ଘଟାଇଛନ୍ତି । ଚରଣ ସେବା ଓ କେଳିର କୁଞ୍ଜରେ ଯୁଗଳମୂର୍ତ୍ତି ଦର୍ଶନ ପାଇଁ ଯେଉଁ ପରମ କରୁଣାମୟୀ ରାଧାଙ୍କ ନିକଟରେ କବି ଏତେ ପ୍ରତ୍ୟାଶା ପୋଷଣ କରିଛନ୍ତି, ଯଦି ସେଥିରୁ ସେ ବଞ୍ଚିତା ହେବେ, ତା'ହେଲେ ତାଙ୍କ ପକ୍ଷରେ ଜୀବନ ଧାରଣର କି ପ୍ରୟୋଜନ ଅଛି ? ରାସାବସାନରେ ସଖୀର ନିର୍ଦ୍ଦେଶରେ ପୁଷ୍ପ ବ୍ୟଜନରେ ସ୍ୱାମୀ ଓ ସ୍ୱାମିନୀଙ୍କର କ୍ଳାନ୍ତି ଦୂରୀକରଣ ତାଙ୍କ ପକ୍ଷରେ କୋଟିଏ ଜନ୍ମର ତପସ୍ୟାର ଫଳପ୍ରାପ୍ତି ତୁଲ୍ୟ (ଗୋପାଳକୃଷ୍ଣ, ଗ୍ରନ୍ଥାବଳୀ ପୃ-୧୧୧) ।

## ସ୍ୱାନୁଭୂତି :

ଏହି ଶିରୋନାମାର ତିନୋଟି ଗୀତ ମଧ୍ୟରୁ ଦୁଇଟି କ୍ଷୁଦ୍ର; ଅନ୍ୟଟି ଦୀର୍ଘ । ଏ ଗୁଡ଼ିକରେ ଭକ୍ତ-ସାଧକ ଜୀବନର ଲକ୍ଷ୍ୟ ବ୍ରଜ ଓ ବୃନ୍ଦାବନରେ ରାଧାକୃଷ୍ଣଙ୍କର ବିଭିନ୍ନ ଲୀଳା ସମ୍ପର୍କରେ ଭକ୍ତର କାମ୍ୟ ମଞ୍ଜରୀ ସୁଲଭ ଅନୁଭୂତିର ଚିତ୍ର ଅଙ୍କିତ ହୋଇଛି । କବିଙ୍କ ଦୃଷ୍ଟିରେ ଦୀର୍ଘ ଜୀବନ ଯାପନର କୌଣସି ଅର୍ଥ ନାହିଁ, ଯଦି ଶ୍ରୁତି ପଥରେ ବୃନ୍ଦାବନର ଅପ୍ରାକୃତ ମଦନ ଶ୍ରୀକୃଷ୍ଣଙ୍କର ବଚନମାଧୁର୍ଯ୍ୟର ସ୍ପର୍ଶ ନ ଲଗିଛି, ନୀଳୋତ୍ପଳ ଓ ମୃଗମଦ ପରି ଶ୍ୟାମ-ତନୁର ଗନ୍ଧ ଯା'ର ନାସିକା ଘ୍ରାଣ ନ କରିଛି, ବଂଶୀ ଖଚିତ ଚନ୍ଦ୍ର-ନିନ୍ଦୀ ମୁଖଶୋଭା ଯେ ଦର୍ଶନ ନ କରିଛି ।

ଅନ୍ୟ ଦୁଇଟି ଗୀତରେ ଅଷ୍ଟକାଳରେ (ନିଶାନ୍ତଠାରୁ ନିଶାଭାଗ ପର୍ଯ୍ୟନ୍ତ) ରାଧାକୃଷ୍ଣଙ୍କର ବିବିଧ ଲୀଳା ସମ୍ପର୍କରେ ମଞ୍ଜରୀ ସଖୀର ନୈସର୍ଗିକ ଦୃଶ୍ୟ ଏବଂ ବିଭିନ୍ନ ସେବା ସମ୍ପର୍କିତ ମନୋଜ୍ଞ ଚିତ୍ର ଗୁଡ଼ିକ ଅଙ୍କିତ, ଯଥା—ନିଶାନ୍ତରେ ରାଧାଙ୍କର ପ୍ରିୟ ବୃନ୍ଦା ବାନରୀ କକ୍ଖଟୀର ଶଯ୍ୟା ତ୍ୟାଗ ନିମନ୍ତେ ଡାକ, ନନ୍ଦାଳୟରେ ଭୋଜ୍ୟ ପରିବେଷଣ କାଳରେ ବ୍ରୀଡ଼ା ଲଜ୍ଜିତ ହାସରେ ଅନାଅନି, ବଧୂଶାଳାରେ ଯଶୋଦା ରାଧାଙ୍କୁ କୋଳରେ ବସାଇ ଭୂଷଣ ମଣ୍ଡିତା କରିବା, ମଥୁରା ପଥରେ ରାଧାଙ୍କର ପଥ ଓଗାଳ (ଶ୍ରୀକୃଷ୍ଣଙ୍କ ଦ୍ୱାରା) ଏବଂ ରାଧାଂକର ଅଷ୍ଟସାତ୍ତ୍ୱିକ ଓ କିଲକିଞ୍ଚିତ ଭାବ, ବୃନ୍ଦାବନେଶ୍ୱରୀଂକର ଅଭିମାନ କାଳରେ ଶ୍ରୀକୃଷ୍ଣଂକର ତାଂକ ପଦପ୍ରାନ୍ତେ ପତନ, ଗୋବର୍ଦ୍ଧନ ଗିରି ଗହ୍ୱରରେ ବନ୍ଧ ପିତୁଳା ବୃନ୍ଦ ମଧ୍ୟରେ ହିଂସୁଳ ତଳରେ ବିହାର, ବନ ଭ୍ରମଣ କାଳରେ ସପଲ୍ଲବ ପୁଷ୍ପ କର୍ଣ୍ଣାବତଂସ କରିବା, ରତ୍ନଦୋଳାରେ ବିଳାସ, ମଧୁପାନରେ ଉନ୍ମତ୍ତତା, କାମ ସମରରେ ଶିଥିଳ ସୁବେଶ, ଶ୍ରୀକୁଣ୍ଡ ତଟରେ ସୁରଭିତ ମନ୍ଦ ମଳୟରେ ଉଭୟଂକର ଉତ୍ତ ଶୋଭା, ଆକଣ୍ଠ ଜଳରେ ରାଧାଂକ ସହ କ୍ରୀଡ଼ା, ଦ୍ୟୁତ କ୍ରୀଡ଼ା, ମିହିରପୂଜା ଶେଷରେ ବୃଦ୍ଧା ଜଟିଳାର ଛଦ୍ମବଟୁଙ୍କୁ (ଶ୍ରୀକୃଷ୍ଣଙ୍କୁ) ବଧୂ ରାଧାଂକର କର ପ୍ରଦର୍ଶନ, ରାସାବସାନରେ ଯମୁନା ପୁଳିନସ୍ଥ ଶୁଭ୍ର ଜ୍ୟୋତ୍ସ୍ନାରେ ଶ୍ରୀକୃଷ୍ଣଂକ କୋଳରେ ରାଧାଂକର ଉପବେଶନ, ନିଭୃତ କୁଞ୍ଜରେ ମଞ୍ଜରୀ ରୂପେ କବିଂକର ଚରଣ ସେବା ଇତ୍ୟାଦି ।

## ବ୍ରଜବାସ :

ବୈଷ୍ଣବର ତୀର୍ଥ ଦର୍ଶନ ଓ ମଥୁରାବାସ ଚତୁଃଷଷ୍ଟି ଭକ୍ତ୍ୟଙ୍ଗମାନଂକ ମଧ୍ୟରେ ଅନ୍ୟତମ । ପଦ୍ମପୁରାଣରେ ମଥୁରାର (ମାଥୁର ମଣ୍ଡଳ) ପବିତ୍ରତା ଜନିତ ମହତ୍ତ୍ୱ ସମ୍ପର୍କରେ ଉଲ୍ଲେଖ ଅଛି ଯେ ମଧୁପୁରୀ (ଗୋଲୋକ) ହେଉଛି ଧନ୍ୟ । ଏହା ବୈକୁଣ୍ଠ ଅପେକ୍ଷା ଗରୀୟସୀ, କାରଣ ସେଠି ଦିନେ ମାତ୍ର ବାସ କଲେ ହରି ଭକ୍ତିର ଉଦୟ ହୁଏ (୭୬) । ବ୍ରଜ ଓ ବୃନ୍ଦାବନ ମାଥୁର ମଣ୍ଡଳର ଅନ୍ତର୍ଭୁକ୍ତ ହୋଇଥିବାରୁ ଏବଂ ଭଗବାନ ଶ୍ରୀକୃଷ୍ଣ ଓ ତାଙ୍କର ସ୍ୱରୂପ ଶକ୍ତି ରାଧାଙ୍କର ଚିନ୍ମୟ ପ୍ରେମଲୀଳାକ୍ଷେତ୍ର ହୋଇଥିବାରୁ ବ୍ରଜବାସ ଶୁଦ୍ଧାଭକ୍ତିର ବୈଷ୍ଣବଙ୍କ ପକ୍ଷରେ ଅତି ପବିତ୍ର ଓ ମହତ୍ତ୍ୱ । ଭକ୍ତି ରସାମୃତ ସିନ୍ଧୁର ଅନ୍ୟତମ ଟୀକାକାର ମୁକୁନ୍ଦଦାସ ଗୋସ୍ୱାମୀଂକ ବ୍ୟାଖ୍ୟା ଅନୁସାରେ ଶ୍ରୀମୂର୍ତ୍ତି, ଶ୍ରୀମଦ୍ଭାଗବତ, ଭକ୍ତ, ଶ୍ରୀନାମ ଓ ମଥୁରା ଏହି ପାଞ୍ଚଟି ଦୁରୂହ ଓ ଅଦ୍ଭୁତ ବୀର୍ଯ୍ୟଶାଳୀ । ଏ ପାଞ୍ଚଟି ସହିତ ଅତି ଅଳ୍ପମାତ୍ର ସମ୍ବନ୍ଧ ଥିଲେ ମଧ୍ୟ ନିରପରାଧ ବ୍ୟକ୍ତିଂକର ଚିତ୍ତରେ ଅବଲମ୍ବେ ଭାବର ଆବିର୍ଭାବ ହୋଇଥାଏ । ବୈଧୀ ସାଧନ ଭକ୍ତିର ଏହି ଅଙ୍ଗର ସୂଚନା ଗୋପାଳକୃଷ୍ଣଂକର କେତୋଟି ଚଉତିଶା ଓ ମନଃଶିକ୍ଷା ମୂଳକ ଗୀତରେ ପରିଲକ୍ଷିତ ହୁଏ । ବୈରାଗ୍ୟ ସୂଚକ ଏକ ଗୀତରେ କବି ସଂସାରର ନଶ୍ୱରତା, ଆୟୁଃ କାଳର ସ୍ୱଳ୍ପତା, ହରିନାମ, ସାଧୁସଙ୍ଗ, ଅଭିମାନ ତ୍ୟାଗ, କୃଷ୍ଣଲୀଳା ଗୁଣଗାନ, ଯୁଗଳ ପଦାବ୍ଜ-ସେବାର ମହତ୍ତ୍ୱ ସମ୍ପର୍କରେ ଉଲ୍ଲେଖ କରି ପବିତ୍ର ବ୍ରଜ ଧାମରେ ବାସ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଅନ୍ୟ ଏକ 'ମନଃଶିକ୍ଷା ମୂଳକ' ଗୀତରେ ବିଷୟ ଜଞ୍ଜାଳରୁ ନିଜକୁ ମୁକ୍ତ କରି ବ୍ରଜ ଦେଶରେ ଶ୍ରୀକୁଣ୍ଡଜଳରେ ସ୍ନାନ, ଗୁରୁରୂପା ସଖୀଂକର ସ୍ନେହ ଲାଭ, ସଖୀ ଭୃଙ୍ଗବଦ୍ୟାଂକ ଗହଣରେ ମଞ୍ଜରୀ ଭୂମିକା, କୁଞ୍ଜ ମନ୍ଦିର ଅଳିନ୍ଦରେ ସେବା ନିମିତ୍ତ କିଂକରୀତ୍ୱ ବରଣ ଓ ଅଷ୍ଟଯାମ ସେବା ସମ୍ପର୍କରେ କବି ଉଲ୍ଲେଖ କରିଛନ୍ତି (୭୮) । ମନଃଶିକ୍ଷା ଚଉତିଶାରେ କବି ମନକୁ ବୈଷ୍ଣବ ସୁଲଭ ଉପଦେଶ ବାଣୀ ଶୁଣାଇ (ଖଳସଙ୍ଗ, କୁଳାଭିମାନ ଓ ଗୌରବ ତ୍ୟାଗ, ରାଧାକୃଷ୍ଣଂକଠାରେ ଏକନିଷ୍ଠ ଭକ୍ତି, ଭୀତିଶୂନ୍ୟ ଚିତ୍ତରେ ଗୁରୁ ପଦାଶ୍ରୟ, ଯମୁନା ପୁଳିନସ୍ଥ ବୃକ୍ଷ ତଳରେ ଆଶ୍ରୟ, ସ୍ୱାମିନୀ ରାଧାଂକଠାରେ ଆତ୍ମନିବେଦନ, ସାତ୍ତ୍ୱିକ ଭାବରେ ଝୁଲି ସ୍କନ୍ଧରେ ପଶୁପକ୍ଷୀ ଭ୍ରମଣ, ତୁଣ୍ଡରେ ରାଧାଶ୍ୟାମଂକର ନାମ, ମାଧୁକରୀ ବୃତ୍ତିରେ ଭିକ୍ଷାଟନ, ବ୍ରଜବାସୀଂକ ଦ୍ୱାରେ ଦ୍ୱାରେ ଶରଣ, ତୁଣ୍ଡରେ 'ହରେ କୃଷ୍ଣ ରାମ' ମହାମନ୍ତ୍ର ଉଚ୍ଚାରଣ) ବ୍ରଜବାସ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଅନ୍ୟ ଏକ ଗୀତରେ କବି ଅପୂର୍ବ କାଞ୍ଚନ ସ୍ଥଳୀ ରମ୍ୟ ବୃନ୍ଦାବନର ମହାପଦ୍ମୋପରି ଯୋଗପୀଠ ଏବଂ ତା'ର ଦୃଷ୍ଟାନ୍ୱିତ ବୃକ୍ଷଲତା, କଦମ୍ବଗୁଚ୍ଛ ଶୀତଳ କାଳିନ୍ଦୀ ତୀର, ମଧୁପ ଗୁଞ୍ଜରିତ ମାଧବୀକୁଞ୍ଜ, କୋକିଳର କୁହୁ ଗୀତ, କଳାପୀର ନୃତ୍ୟ, ଗୋବର୍ଦ୍ଧନ ଗିରି, ଖଚିତ ମଣି ମନ୍ଦିରର ରତ୍ନସିଂହାସନରେ ପ୍ରିୟତମା

(୭୮) ଗୋ. କୃ. ଗ୍ର°, ପୃ-୨୪୯

(୭୭) ଭ. ର. ସୃ: ସିଂ, ପୃ-୭୧

ରାଧାଂକ ସହ ସଚ୍ଚିଦାନନ୍ଦ ବିଗ୍ରହ ବଂଶୀଧାରୀ ଶ୍ରୀକୃଷ୍ଣଂକର ବିଜୟର ଶୋଭା ବର୍ଣ୍ଣନା କରି ତା'ର ସ୍ମରଣ ଓ ଧ୍ୟାନ ନିମିତ୍ତ କବି ଭକ୍ତ ପାଠକମାନଙ୍କୁ ନିବେଦନ କରିଛନ୍ତି ।

ଏହି ଉପ ବିଭାଗର ଗୀତଗୁଡ଼ିକରେ ଭାବର ସୂକ୍ଷ୍ମତା ଓ ବୈଚିତ୍ର୍ୟ ଲକ୍ଷିତ ହୁଏ ନାହିଁ । ସାଧକ ଭକ୍ତର କାମ୍ୟ ମଞ୍ଜରୀ ସୁଲଭ ଲାଳସା, ଦୈନ୍ୟ ପ୍ରାର୍ଥନା ଓ ସ୍ୱାନୁଭୂତିର ପ୍ରାୟ ଏକ ପ୍ରକାର ଆଲେଖ୍ୟ ସାଧାରଣ ପାଠକ ଚିତ୍ତରେ କ୍ଲାନ୍ତି ଆଣିଲେ ମଧ୍ୟ ଭକ୍ତ ପାଠକ ଚିତ୍ତରେ ତା'ର ଆବେଦନ ସ୍ୱତନ୍ତ୍ର । ଅନ୍ୟ ଗୀତ ପରି ଏ ଉପ ବିଭାଗର ଗୀତ ଗୁଡ଼ିକରେ କବିଙ୍କର ଭକ୍ତସୁଲଭ ବ୍ୟକ୍ତିତ୍ୱ, ତାଙ୍କର ଜୀବନଦର୍ଶନ ଅଧିକ ପ୍ରାଞ୍ଜଳ ହୋଇ ଉଠିଛି ।

ଏହି ମଞ୍ଜରୀ ବା ଦାସୀ ଭାବାତ୍ମକ ଗୀତଗୁଡ଼ିକ ସହିତ ବାଇବେଲର (New Testament), ସୋଲେମନ୍ ଗୀତ (Song of Solomon), ବୈଷ୍ଣବ ରମଣୀ ଆଣ୍ଡାଲଙ୍କର (ଗୋଦାଙ୍କର) ରଙ୍ଗନାଥଙ୍କ (ଶ୍ରୀକୃଷ୍ଣଂକ) ପ୍ରତି ଅହୈତୁକୀ ଅନୁରାଗ ମୂଳକ ଗୀତ, ମୀରାବାଈଂକର ଶ୍ରୀକୃଷ୍ଣଂକଠାରେ ପ୍ରେମିକା ତଥା ଦାସୀ ସୁଲଭ ଆତ୍ମନିବେଦନାତ୍ମକ ଗୀତ, ଭକ୍ତ ସୁରଦାସଂକର ପ୍ରାଣସ୍ପର୍ଶୀ ଗୀତ, ଲୀଳାଶୁକଂକ ଶ୍ରୀକୃଷ୍ଣକର୍ଣ୍ଣାମୃତମ୍ ଏବଂ ବ୍ରଜବୁଲି ଓ ବଙ୍ଗୀୟ ପଦାବଳୀ କୀର୍ତ୍ତନର ଭାବ ଓ ପ୍ରାଣାବେଗର ସାଧର୍ମ୍ୟ ପରିଲକ୍ଷିତ ହୁଏ ।

## (୨) ବାତ୍ସଲ୍ୟଭାବମୂଳକ ଗୀତ

### [ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା, ଗୋଷ୍ଠଲୀଳା, କୋଇଲି, ଦୋଳଗୀତ, ଓ ଶିଶୁ କୃଷ୍ଣଙ୍କ ପ୍ରତି ଯଶୋଦାଙ୍କର ପ୍ରବୋଧନାମୂଳକ ଗୀତି]

ଶୁଦ୍ଧାଭକ୍ତିର କବିମାନେ ବ୍ରଜ ଓ ବୃନ୍ଦାବନରେ ରାଧାକୃଷ୍ଣଂକର ପ୍ରେମଲୀଳାର ବିସ୍ତୃତ ଚିତ୍ର ଅଂକନ କରି ମଞ୍ଜରୀ ବା ଦାସୀଭାବରେ ନିଜର ପରିଚୟ ଦେଲେ ମଧ୍ୟ ବ୍ରଜରେ ଶ୍ରୀକୃଷ୍ଣଙ୍କର ଶୈଶବ ଓ ବାଲ୍ୟଲୀଳାର ଚିତ୍ର ଅଙ୍କନରେ କମ୍ ଆଗ୍ରହ ପ୍ରକାଶ କରି ନାହାନ୍ତି । କୃଷ୍ଣଚରିତ ଓ କୃଷ୍ଣଲୀଳା ସମ୍ପର୍କୀୟ କାବ୍ୟ, ମହାକାବ୍ୟ, ଗୀତକାବ୍ୟ, ଗୀତନାଟ୍ୟ, ସଙ୍ଗୀତ (ଚଉପଦୀ), ଓ ଚଉତିଶା ମାନଙ୍କରେ ସ୍ୱଳ୍ପ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କର ଏହି ଶୈଶବ ଓ ବାଲ୍ୟଲୀଳାର ବିଭିନ୍ନ ବିଭବ ସ୍ଥାନ ପାଇଛି । ନନ୍ଦ ଯଶୋଦା, ରୋହିଣୀ, କୃଷ୍ଣସଖା ଓ ପୌର୍ଣ୍ଣମାସୀ ପ୍ରଭୃତି ଚରିତ୍ର ଏବଂ ମନୁଷ୍ୟେତର ଗୋ ଓ ଗୋବତ୍ସ ଶ୍ରୀକୃଷ୍ଣଂକର ଏହି ଶୈଶବ ଓ ବାଲ୍ୟଲୀଳାରେ ମୁଖ୍ୟ ଅଂଶ ଗ୍ରହଣ କରିଥାନ୍ତି । ଏହି ଲୀଳାରେ ସର୍ବରସାଶ୍ରୟ ଲୀଳାମୟ ଶ୍ରୀକୃଷ୍ଣଂକର ବିସ୍ମୟ ନିର୍ବିଶେଷରେ ଅଚିନ୍ତ୍ୟନୀୟ ଶକ୍ତିର ପରିଚୟ ମିଳିଲେ ମଧ୍ୟ ଏବଂ ତନ୍ମଧ୍ୟରେ ବୀର, ରୌଦ୍ର, ଭୟାନକ ପ୍ରଭୃତି ରସସୃଷ୍ଟିର ସମ୍ଭାବନା ଥିଲେ ମଧ୍ୟ ବାତ୍ସଲ୍ୟଭାବ (ବୈଷ୍ଣବୀୟ ଅଲଙ୍କାର ଶାସ୍ତ୍ର ଓ ଦାର୍ଶନିକ ତତ୍ତ୍ୱ ଦୃଷ୍ଟିରେ ବାତ୍ସଲ୍ୟରସ) ମୁଖ୍ୟସ୍ଥାନ ଅଧିକାର କରେ ।

## ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ :

ପୂର୍ବରୁ କୁହାଯାଇଛି ଯେ ରାଗାତ୍ମିକା ଭକ୍ତି କାମରୂପା (୭୯) ଓ ସମ୍ବନ୍ଧ ରୂପା ଭେଦରେ ଦୁଇ ପ୍ରକାର । ବ୍ରଜଦେବୀ ଗୋପୀମାନଙ୍କଠାରେ ଏହି କାମରୂପା ଭକ୍ତି ପ୍ରସିଦ୍ଧ ଭାବରେ ପ୍ରକାଶ ପାଏ । ସେମାନେ ନିଜଦ୍ୱାରା କେବଳ ଶ୍ରୀକୃଷ୍ଣଙ୍କ ସୁଖ କାମନା କରିଥାନ୍ତି । ଶ୍ରୀକୃଷ୍ଣଙ୍କଠାରେ ପିତୃତ୍ୱ ଆଦିର ଅଭିମାନ (ଅର୍ଥାତ୍ ମୁଁ ଶ୍ରୀକୃଷ୍ଣଙ୍କର ପିତା, ମାତା, ସଖା, ଦାସ ଇତ୍ୟାଦିର ମନନ) ହେଉଛି ସମ୍ବନ୍ଧରୂପା ଭକ୍ତି (୮୦) । ବୃଷ୍ଣିଗଣ ଶ୍ରୀକୃଷ୍ଣଙ୍କ ସହିତ ସମ୍ବନ୍ଧାନ୍ୱିତ ହେଲେ ମଧ୍ୟ ରାଗ ବିଷୟରେ ସେମାନଙ୍କଠାରୁ ଗୋପଗଣଙ୍କର ପ୍ରାଧାନ୍ୟ ଲକ୍ଷିତ ହୁଏ । ପ୍ରେମବାନ୍ ସ୍ୱରୂପ ତଥା ନିତ୍ୟସିଦ୍ଧ ନନ୍ଦ ଯଶୋଦାଙ୍କୁ ଆଶ୍ରୟ କରି ଏହି ସମ୍ବନ୍ଧରୂପା ଭକ୍ତିର ପ୍ରକାଶ ହୋଇଥାଏ ।

ରାଗାତ୍ମିକା ଭକ୍ତି କାମରୂପା ଓ ସମ୍ବନ୍ଧରୂପା ଭେଦରେ ଦ୍ୱିବିଧ ବୋଲି ତଦନୁଗତା ରାଗାନୁଗା ଭକ୍ତି ମଧ୍ୟ କାମାନୁଗା ଓ ସମ୍ବନ୍ଧାନୁଗା ଭେଦରେ ଦୁଇ ପ୍ରକାର (୮୧) । ରାଗାତ୍ମିକା ଭକ୍ତିରେ ନିଷ୍ଠାପ୍ରାପ୍ତ ବ୍ରଜବାସୀଙ୍କର ଶ୍ରୀକୃଷ୍ଣଙ୍କଠାରେ ଯେଉଁ ଭାବ ଦେଖାଯାଏ, ସେ ପ୍ରକାର ଭାବ ପ୍ରାପ୍ତି ନିମିତ୍ତ ଲୁବ୍ଧ ବ୍ୟକ୍ତି ଏହି ରାଗାନୁଗା ମାର୍ଗର ଅଧିକାରୀ ହୋଇଥାଏ । ଶ୍ରୀମଦ୍ ଭାଗବତ ପ୍ରଭୃତି ଏବଂ ସେଗୁଡ଼ିକର ଅର୍ଥ ପ୍ରତିପାଦନ କରୁଥିବା ରସିକ ଭକ୍ତ ରଚିତ ଲୀଳାଗ୍ରନ୍ଥ ସମୂହରେ ବର୍ଣ୍ଣିତ ନନ୍ଦ ଯଶୋଦା ପ୍ରଭୃତି ବ୍ରଜବାସୀମାନଙ୍କର ଭାବ ଓ ରୂପ ଗୁଣଆଦି ଶ୍ରୀକୃଷ୍ଣଙ୍କର ସର୍ବେନ୍ଦ୍ରିୟ ପ୍ରୀତିକର । ଏହି ମାଧୁର୍ଯ୍ୟ ଲୀଳାଶ୍ରବଣ ଦ୍ୱାରା ଅନୁଭୂତ ହେଲେ ଶାସ୍ତ୍ରଯୁକ୍ତି ନିରପେକ୍ଷ ହୋଇ ବୁଦ୍ଧିବୃତ୍ତିର ଯେଉଁ ପ୍ରବର୍ତ୍ତନ ହୁଏ, ତାହାକୁ ଲୋଭୋତ୍ପତ୍ତିର ଲକ୍ଷଣ କୁହାଯାଏ (୮୨) । ସାଧକ ରୂପେ ବ୍ରଜରେ ବା ଅନ୍ୟତ୍ର ଅବସ୍ଥିତ ଦେହରେ ଏବଂ ସିଦ୍ଧ ରୂପେ ଅନ୍ତର ମଧ୍ୟରେ ଚିନ୍ତିତ ଅଭୀଷ୍ଟର ସେବା ଉପଯୋଗୀ ଦେହରେ ବ୍ରଜଲୋକଗଣର (ରାଧା, ଚନ୍ଦ୍ରାବଳୀ, ଲଳିତା, ବିଶାଖା ଓ ରୂପମଞ୍ଜରୀ ପ୍ରଭୃତି ଏବଂ ତାଙ୍କର ଅନୁଗତ ରୂପ, ସନାତନ ଗୋସ୍ୱାମୀ ପ୍ରଭୃତିଙ୍କର) ଅନୁସରଣ କରି ସେବା କରିବାକୁ ହୁଏ । ଶ୍ରୀରାଧା ଓ ଲଳିତା ପ୍ରଭୃତିଙ୍କର ଆନୁଗତ୍ୟରେ ସିଦ୍ଧ ରୂପେ ମାନସୀ ସେବା ଏବଂ ରୂପ ସନାତନ ପ୍ରଭୃତି ବ୍ରଜବାସୀଙ୍କର ଆନୁଗତ୍ୟରେ ସାଧକ ରୂପେ ଦୈହିକାଦି ସେବା କରଣୀୟ ଅଟେ (୮୩) । ଯେଉଁ ଭକ୍ତ ପିତୃତ୍ୱ ଓ ସଖ୍ୟ ପ୍ରଭୃତି ସମ୍ବନ୍ଧର ବିଶେଷ ଚିନ୍ତା କରାଇ ସାଧକର ନିଜସ୍ୱ ରୂପରେ ଏ ଜାତୀୟ ଚିନ୍ତାର ଆରୋପ କରାଏ (ଅର୍ଥାତ୍ ମୁଁ ଶ୍ରୀକୃଷ୍ଣଙ୍କର ପିତୃବତ୍ ଲାଳନକର୍ତ୍ତା, ସଖାବତ୍ ବିଶ୍ରମ୍ଭ ପାତ୍ର ଇତ୍ୟାଦି ଅଭିମାନ) ତାହାକୁ

---

(୭୯) ଭ. ର. ମୃ. ସିଂ., ଶ୍ଳୋ-୨୮୪, ପୃ.୮୬ ଓ ତତ୍ରୈବ ଶ୍ଳୋ. ୨୮୫,

(୮୦) ତତ୍ରୈବ ଶ୍ଳୋ ୨୮୮, ପୃ-୮୬

(୮୧) ତତ୍ରୈବ, ଶ୍ଳୋ ୨୯୦, ପୃ-୮୭

(୮୨) ଭ. ର. ମୃ. ସିଂ., ଶ୍ଳୋ. ୨୯୦ର ତାତ୍ପର୍ଯ୍ୟାନୁବାଦ, ପୃ. ୧୩୮

(୮୩) ତତ୍ରୈବ ଶ୍ଳୋ. ୨୯୫, ତାତ୍ପର୍ଯ୍ୟାନୁବାଦ, ପୃ. ୧୩୮

ସମ୍ବନ୍ଧାନୁଗା ଭକ୍ତି କୁହାଯାଏ (୮୪) । ବାତ୍ସଲ୍ୟ ଓ ସଖ୍ୟାଦିର ଲୁବ୍ଧ ସାଧକଗଣ ଶ୍ରୀକୃଷ୍ଣ ଓ ସୁବଳାଦିଙ୍କର ଭାବ, ଚେଷ୍ଟା (ଅନୁଭାବ) ଏବଂ ମୁଦ୍ରା (ପରିପାଟୀ) ଅନୁସରଣ କରି (କିନ୍ତୁ ଶ୍ରୀକୃଷ୍ଣ ଓ ସୁବଳାଦିତ୍ୱର ଅଭିମାନ ନୁହେଁ) ସିଦ୍ଧ ଦେହରେ ମାନସୀ ସେବା କରିବା ଉଦ୍ଦେଶ୍ୟରେ ରୂପ ଗୋସ୍ୱାମୀ ଶ୍ରୀକୃଷ୍ଣ ଓ ସୁବଳାଦିଙ୍କର ଭାବ ଓ ଚେଷ୍ଟା ପ୍ରଭୃତି ଅନୁସରଣ କରିବାକୁ ସୂଚିତ କରିଛନ୍ତି ।

**ବାତ୍ସଲ୍ୟ ଭାବମୂଳକ ଗୀତିର ସମୀକ୍ଷା**—ବୃନ୍ଦାବନ ଗୋସ୍ୱାମୀଙ୍କର ଏହି ତାତ୍ତ୍ୱିକ ପରମ୍ପରା ଅନୁସରଣରେ ବ୍ରଜବୁଲି, ବଙ୍ଗଳା, ଅସମିଆ (ମାଧବ ଦେବଙ୍କର ବରଗୀତ) ଓ ଓଡ଼ିଆରେ ବହୁ ବାତ୍ସଲ୍ୟ ଓ ସଖ୍ୟଭାବାତ୍ମକ ଗୀତି ରଚିତ ହୋଇଛି । ହିନ୍ଦୀ (ସୁରଦାସ), ଗୁଜୁରାଟୀ (ଭାଲଣଙ୍କର ବାତ୍ସଲ୍ୟ ଚିତ୍ର, ନରସିଂ ମେହେନ୍ତାଙ୍କର ପ୍ରଭାତିଆ) ଓ କନ୍ନଡ଼ ଭାଷାରେ ମଧ୍ୟ ଏହି ଜାତୀୟ ବହୁ ଗୀତ ଉଦ୍ଦିଷ୍ଟ ହୁଏ (୮୫) । ଗୋପାଳକୃଷ୍ଣଙ୍କ ରଚନା ମଧ୍ୟରେ ଶ୍ରୀକୃଷ୍ଣଙ୍କର ବାତ୍ସଲ୍ୟ ଓ ସଖ୍ୟରସାତ୍ମକ ଗୀତର ସଂଖ୍ୟା ଅତି କମ୍ ହେଲେ ମଧ୍ୟ (ନ'ଟି ମାତ୍ର) ତନ୍ମଧ୍ୟରୁ କେତୋଟି ଗୀତ ଭାବ, ରସ ଓ ଶିଳ୍ପନୈପୁଣ୍ୟ ଦୃଷ୍ଟିରୁ ଓଡ଼ିଶାରେ ବିଶେଷ ଜନପ୍ରିୟ । ଗୀତ ଗୁଡ଼ିକରେ ଶ୍ରୀକୃଷ୍ଣଙ୍କ ପ୍ରତି ଯଶୋଦାଙ୍କର ମାତୃତ୍ୱ ତଥା ବାତ୍ସଲ୍ୟ ମମତାର ଯେପରି ବାସ୍ତବ ପ୍ରାଣସ୍ପର୍ଶୀ ଆଲେଖ୍ୟ ରହିଛି, ତାହା ଅନନ୍ୟ । ଯଶୋଦାଙ୍କର ଅନନ୍ୟ ପୁତ୍ରଚିନ୍ତାଶୀଳତ୍ୱ, ବାତ୍ସଲ୍ୟ ମମତା, ଶିଶୁ କୃଷ୍ଣଙ୍କର ମଧୁର ଶୈଶବ ଚାପଲ୍ୟ, ଗୋଷ୍ଠ ଓ ଗୋଚାରଣ ଯାତ୍ରା, ଗୋଦୋହନ ଓ ମଥୁରା ଗମନରେ ଜନନୀ ହୃଦୟର ସକରୁଣ ଉଦ୍‌ବେଗ ଓ ଅସରନ୍ତି ମର୍ମବେଦନା, ଏହି ଭାବବସ୍ତୁକୁ ନେଇ ଏ ଗୀତଗୁଡ଼ିକର ପ୍ରାଣ ପ୍ରତିଷ୍ଠା ।

**ଶ୍ରୀକୃଷ୍ଣଙ୍କର ଶୈଶବଚାପଲ୍ୟ; ଯଶୋଦାଙ୍କର ବାତ୍ସଲ୍ୟମମତା-ସ୍ନିଗ୍ଧ ମାତୃତ୍ୱ** — ଶ୍ରୀକୃଷ୍ଣଙ୍କର ମଧୁର ଲୋଭନୀୟ ଶୈଶବ ଚାପଲ୍ୟକୁ ନେଇ କବି ଯେଉଁ ତିନୋଟି ଗୀତ ରଚନା କରିଛନ୍ତି ('ବ୍ରଜକୁ ଚୋର ଆସିଛି, ଉଠିଲୁ ଏଡ଼େ ବେଗି କାହିଁକରେ ?, ମୋ କୃଷ୍ଣ ଚନ୍ଦ୍ରମା ଟି) ଏଗୁଡ଼ିକରେ ଉତ୍କଳର ପୁରପଲ୍ଲୀର ପ୍ରତ୍ୟେକ ଜନନୀ ସତେ ଯେପରି ସ୍ୱକୀୟ ମାତୃରୂପର ସନ୍ଧାନ ପାଆନ୍ତି । ଶିଶୁକୁ କେନ୍ଦ୍ର କରି ଗୋଟିଏ ଜନନୀର ଆବେଗ ଓ ଉଚ୍ଛ୍ୱାସମୟ ଅନୁଭୂତିରେ ଶାଶ୍ୱତ ମାତୃମୂର୍ତ୍ତିଟିକୁ ଆବିଷ୍କାର କରନ୍ତି ।

**ବ୍ରଜକୁ ଚୋର ଆସିଛି** — ଅଣ୍ଟିଆ ଶିଶୁ କୃଷ୍ଣଙ୍କ ଆଖିରେ ନିଦ ନାହିଁ, ରାତିସାରା ଆଖିରେ ପଲକ ନ ପକାଇ ନୃତ୍ୟରେ ମାତିଛନ୍ତି । ଶିଶୁ ନିଦ୍ରା ନ ଗଲେ ଘର ପାଇଟି ଛୁଟେ ନାହିଁ, ଜଞ୍ଜାଳ ବଢ଼ିଯାଏ । ଯଶୋଦା ବ୍ୟସ୍ତ ହୋଇ କୃଷ୍ଣଙ୍କୁ ଶୁଆଇ ପକାଇବା ପାଇଁ ବ୍ରଜରେ ଚୋର ଭୟ କଥା ଶୁଣାଇଛନ୍ତି ଏବଂ ଶିରରେ ଚୁମ୍ବନ ଦେଇ ବକ୍ଷରେ

(୮୪) ଭ. ର. ମୃ. ସିଂ., ଶ୍ଳୋ. ୩୦୫, ପୃ-୯୩

(୮୫) ଏହି ସନ୍ଦର୍ଭର ତୃତୀୟ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

ତାଙ୍କ ଧରି କର୍ଣ୍ଣମୂଳରେ ଧୀରେ ଧୀରେ କର ଥାପୁଡ଼ାଇ ପହୁଡ଼ାଇ ଦେଉଛନ୍ତି (୮୭) । ଦୀର୍ଘକାଳ ଧରି ନୃତ୍ୟ ହେତୁ ପାଦକୁ ପୀଡ଼ା ହେଉଥିବ, ଦେହକୁ ଝାଳ ବହୁଥିବାରୁ କ୍ଷୁଧା ଲାଗିବଣି, ସେଥି ନିମିତ୍ତ ସ୍ତନ୍ୟପାନ କରାଇବା ପାଇଁ ମା'ର ବ୍ୟାକୁଳତା କି ନିବଡ଼ ! କବିଙ୍କ ଭାଷାରେ—

ନିର୍ମଞ୍ଛନ ଯିବି କେତେ ଝାଳ ବହିଗଲା କ୍ଷୁଧା ପାଇରେ ।
ଆସ ଆସ ସ୍ତନ୍ୟ ପାନ କରାଇବି ବାବୁ କାଖିଆଇରେ ।୪।

(ଗୋ. କୃ. ଗ୍ରଂ., ପୃ-୨୮୮)

ଜଙ୍ଗଲର ପୁରପଲ୍ଲୀରେ ଆଉ ଗୋଟିଏ ପରିଚିତ ଦୃଶ୍ୟ ହେଉଛି ଦଧିମନ୍ଥନ । କି ଗୋପାଳପଲ୍ଲୀ, କି ସାଧାରଣ ଜନପଦ, ସବୁଠି ମା ମାନେ ରାତିର ଶେଷ ପହରରେ ଏ କାମରେ ଲାଗିଯାନ୍ତି । ରାତିର ଅନ୍ଧାର ଅପସରି ଯାଇନାହିଁ । ଜନନୀ ଯଶୋଦା ପାହାନ୍ତାରୁ ଉଠି ଦଧିମନ୍ଥନରେ ଲାଗିଯାଇଛନ୍ତି । ମା କୋଳରେ ଶୋଇଥିବା କୃଷ୍ଣଙ୍କର ନିଦ ଭାଙ୍ଗି ଯାଇଛି । ସେ ଉଠି ଆସି ଖୁଆ ଦଣ୍ଡକୁ ଧରି ମନ୍ଥନରେ ବାଧା ସୃଷ୍ଟି କରିଛନ୍ତି ଏବଂ ଯଶୋଦାଙ୍କ ପାଦରେ ନିଜ ପାଦ ଛନ୍ଦି ଦେଇଛନ୍ତି । ମଥନ ଭାଣ୍ଡରୁ ହାତ ପୂରାଇ ଲହୁଣୀ କାଢ଼ିବାକୁ ଚେଷ୍ଟା କରିଛନ୍ତି, ପୁଣି ତୁଚ୍ଛା ହାତଟା ଚାଟି ଦୀପ ଆଲୁଅରେ ପଡ଼ିଥିବା ନିଜର ଛାଇକୁ ଚାହିଁ ନାଚ କରିବାରୁ ଜନନୀ କମ୍ ବ୍ୟାକୁଳତା ଓ ବ୍ୟସ୍ତତା ପ୍ରକାଶ କରିନାହାନ୍ତି । କବିଙ୍କ ଭାଷାରେ—

ମଥନ ଘଟେ ହାତ ପୂରାଇ ନବନୀତ-
କାଢ଼ୁଁ ବୋଲନ୍ତି ହେଲୁ ବାଇ କରେ ? ।୫।
ତୁଚ୍ଛା ହାତଟା ଖାଇ ନାଚୁଛୁ କାହିଁ ପାଇଁ
ଶୁଖିଯିବୁ ନ ଚାହାଁ ଛାଇ କରେ ।୬।

(ଗୋ. କୃ. ଗ୍ରଂ., ପୃ-୨୮୯)

ପୁତ୍ରର ଶାରୀରିକ କୁଶଳତା ପାଇଁ ସାଧାରଣତଃ ଜନନୀଙ୍କର ପ୍ରାଣର ଉଦ୍‌ବେଗ କିଛି କମ୍ ନୁହେଁ । ପାହାନ୍ତାରୁ ଉଠିବା ସ୍ୱାସ୍ଥ୍ୟ ପକ୍ଷରେ ହିତକର ହେଲେ ମଧ୍ୟ ମା' ମନ ତାହା ବୁଝି ନାହିଁ । (ଦେହ ପାଣେଶର ଦଣ୍ଡେ ନିଦ ନ ଗଲୁ) । ତୁଚ୍ଛା ହାତ ଚାଟିବା ଏବଂ ଛାଇକୁ ଚାହିଁ ନାଚ କରିବାରେ ଶୁଖିଯିବା—ଓଡ଼ିଆ ଜନନୀର ଏ ବିଶ୍ୱାସ ମୂଳରେ କୌଣସି ବୈଜ୍ଞାନିକ ସତ୍ୟ ଥାଉ ବା ନ ଥାଉ ନିଜର ଶିଶୁ ପାଇଁ ଜନନୀ ପ୍ରାଣର ଏ ବ୍ୟାକୁଳତାର ଚିତ୍ର ଯେପରି ଚିରନ୍ତନ, ସେହିପରି ଅନନ୍ୟ ଓ ପ୍ରାଣସ୍ପର୍ଶୀ । ଶିଶୁ କୃଷ୍ଣଙ୍କର ଏ ଅଙ୍ଗଟ ଜନନୀ ଯଶୋଦାଙ୍କ ପକ୍ଷରେ ଏକ ଜଞ୍ଜାଳ ହେଲେ ମଧ୍ୟ ତାଙ୍କର ଏ ଅନୁଭୂତ ବାହ୍ୟ; କିନ୍ତୁ ଏହି ଜଞ୍ଜାଳର ଅନୁଭୂତ ତଳେ ମାତୃତ୍ୱ ତଥା ବାତ୍ସଲ୍ୟ ଜନିତ ଆନନ୍ଦର ଯେଉଁ ଶାଶ୍ୱତ ପ୍ରବାହ ଛୁଟିଛି, ତାହା ହେଉଛି ଗୀତଟିର ଗୂଢ଼ ବ୍ୟଞ୍ଜନା । ଭକ୍ତକବି ଭାବର

---

(୮୭) ଗୋ. କୃ. ଗ୍ରଂ., ପୃ-୨୮୮

ଆବେଗରେ ସେହି ଶାଶ୍ୱତ ଶିଶୁ ଓ ଜନନୀଙ୍କର ଯୁଗଳିତ ମୂର୍ତ୍ତିଙ୍କୁ ଚନ୍ଦ୍ରାକର ଅନବଚ୍ଛିନ୍ନ ଆନନ୍ଦ ଉପଲବ୍‌ଧି କରିଛନ୍ତି (୮୭)।

ବଙ୍ଗଳା ପଦାବଳୀ କୀର୍ତ୍ତନ, ଗୁଜୁରାଟୀ (୮୮) ଓ ହିନ୍ଦୀ ସାହିତ୍ୟରେ (୮୯) ଯଶୋଦାଙ୍କର ଦଧିମନ୍ଥନ ଓ ଶ୍ରୀକୃଷ୍ଣଙ୍କ ପାଇଁ ଜନନୀ ପ୍ରାଣର ବ୍ୟାକୁଳତାପୂର୍ଣ୍ଣ ଗୀତ ରହିଛି। ଗୋପାଳକୃଷ୍ଣଙ୍କ ରଚନା ପରି ସେ ଗୁଡ଼ିକରେ ଭକ୍ତି ତଥା ସାହିତ୍ୟିକ ଆବେଦନ ଥିଲେ ମଧ୍ୟ ଜନନୀ ପ୍ରାଣର ପ୍ରକାଶ ଏତେ ବାସ୍ତବ, ନିବିଡ଼ ଓ ପ୍ରାଣସ୍ପର୍ଶୀ ନୁହେଁ। ସପ୍ତଦଶ ଶତାବ୍ଦୀର ପଦାବଳୀ କବି ଘନଶ୍ୟାମ ଦାସ ଲେଖିଛନ୍ତି—ଯଶୋଦାଙ୍କର ଦଧିମନ୍ଥନ ଧ୍ୱନିରେ ଆକୃଷ୍ଟ ହୋଇ ବଳରାମଙ୍କ ସହ କୃଷ୍ଣ ତାଙ୍କ ନିକଟରେ ପହଞ୍ଚିଛନ୍ତି। ଯଶୋଦା ଚନ୍ଦ୍ରମୁଖରେ ଚୁମ୍ବନ ଦେଇ କ୍ଷୀର ଲବଣୀ ଖାଇ ତାଙ୍କ ଆଗରେ ନାଚିବା ପାଇଁ କହିଛନ୍ତି। କୃଷ୍ଣ ଲବଣୀ ଖାଇ ଅଗଣାରେ ନୃତ୍ୟ କରିଛନ୍ତି। ଯଶୋଦା ମନ୍ଥନ ଦଣ୍ଡ ଛାଡ଼ି କରତାଳି ଦେଇ ଯଦୁଚନ୍ଦ୍ରମାଙ୍କର ଏ ନୃତ୍ୟ ସୁଖ ଉପଭୋଗ କରିବା ପାଇଁ ରୋହିଣୀଙ୍କୁ ଆହ୍ୱାନ କରିଛନ୍ତି (୯୦)। ଶିଶୁର ଦର୍ଶନ ଓ ନୃତ୍ୟରେ ଜନନୀ ଆନନ୍ଦିତ ହେବା ଓ ସେ ଆନନ୍ଦର ଭାଗ ନେବା ପାଇଁ ଭଗିନୀ ରୋହିଣୀଙ୍କୁ ଆହ୍ୱାନ କରିବା ଜନନୀ ପକ୍ଷରେ ସ୍ୱାଭାବିକ; କିନ୍ତୁ ଶ୍ରୀକୃଷ୍ଣଙ୍କର ଲୀଳାୟିତ ବାଲ୍ୟଲୀଳାର ରୂପର ଚିତ୍ରର ସ୍ୱାଭାବିକତା ଏଥିରେ ନାହିଁ।

ଓଡ଼ିଆରେ ଦଧିମନ୍ଥନ ସମ୍ପର୍କରେ ଏକ ପ୍ରାଚୀନ ଗୀତ ରହିଛି, ଯାହା ପ୍ରଭାତ-ଅବକାଶରେ ଗାନ କରାଯାଏ। ନିଦ୍ରାରୁ ଉଠି କୃଷ୍ଣ ଦଧି ମନ୍ଥନରତା ମାତା ଯଶୋଦାଙ୍କୁ ନିଜର କ୍ଷୁଧା ଜଣାଇ ମନ୍ଥନ ବନ୍ଦ କରିବା ପାଇଁ ଅଳି କରିବା, ଯଶୋଦାଙ୍କର ଆଶ୍ୱାସନା ସତ୍ତ୍ୱେ ଶିଶୁ କୃଷ୍ଣ ଜିଦ୍ ଧରିବାରୁ ଝୁମୁକା ଗୁଣ୍ଟରେ ମାତାଙ୍କର ପ୍ରହାର, ପିତା ନନ୍ଦଙ୍କ ସମକ୍ଷରେ ଜନନୀଙ୍କ ନାମରେ ଅଭିଯୋଗ ଏବଂ 'ବାପ ଘର' ଚାଲିଯିବା ପାଇଁ ମାତାଙ୍କୁ ବାରମ୍ବାର କହିବା ହେଉଛି ଗୀତଟିର ବର୍ଣ୍ଣନୀୟ ବସ୍ତୁ (୯୧)। ଗୀତଟିର ଭାବ ପରିକଳ୍ପନା ଓ ଆଖ୍ୟାନ ଧର୍ମିତା ଉପଭୋଗ୍ୟ ହେଲେହେଁ ପାଠକ ଗୋପାଳକୃଷ୍ଣଙ୍କ ଗୀତରେ ପାଏ ଆନ୍ତରିକତାର ସ୍ପର୍ଶ। ଶିଶୁ ଓ ଜନନୀର ଭାବଭାବର ଆଲେଖ୍ୟରେ ଗୋପାଳକୃଷ୍ଣଙ୍କର ମନସ୍ତାତ୍ତ୍ୱିକ ଗଭୀରତା ଏବଂ ଭାଷା ଓ ପ୍ରକାଶଭଙ୍ଗୀର ମାଧୁର୍ଯ୍ୟ ଏ ଗୀତରେ ଉପଲବ୍‌ଧ ହୁଏ ନାହିଁ।

•

**ମୋ କୃଷ୍ଣଚନ୍ଦ୍ରମା ପରି**—ନିଜର ପୁଅକୁ ନେଇ ମାତାର ଗର୍ବ ଓ ଆନନ୍ଦର ସୀମା ନଥାଏ। ତାର ଚକ୍ଷୁରେ ପୁଅ ହେଉଛି ରତ୍ନଚିନ୍ତାମଣି, ଦୁଃଖୀର ସଙ୍କାଳି, ଦରିଦ୍ରର

---

(୮୭) ଗୋ. କୃ. ଗ୍ର. ପୃ-୬୮୯

(୮୮) ଏହି ସନ୍ଦର୍ଭର ୩ୟ ପରିଚ୍ଛେଦ, ୧୮ ନଂ. ପାଦଟୀକା ଦ୍ରଷ୍ଟବ୍ୟ।

(୮୯) ଏହି ସନ୍ଦର୍ଭର ୩ୟ ପରିଚ୍ଛେଦ, ୨୧ ନଂ. ପାଦଟୀକା ଦ୍ରଷ୍ଟବ୍ୟ।

(୯୦) ବ. ଚ. ପ.

(୯୧) ବୈଷ୍ଣବ ପଦାବଳୀ (ଚୟନ), ପୃ-୧୫

ଧନ, ତ୍ରିଭୁବନର ଭୂଷଣ, ଜଗତରେ ଅତୁଳନୀୟ । ଶିଶୁଟିର ଦର୍ଶନରେ ତା'ର ପ୍ରତି ରକ୍ତ କଣିକାରେ ସ୍ପନ୍ଦନ ଖେଳିଯାଏ । ପ୍ରାଣତନ୍ତ୍ରୀ ବାତ୍ସଲ୍ୟର ଝଙ୍କାରରେ ଅନୁରଣିତ ହୋଇ ଉଠେ । ଶିଶୁଟି ସତେ ଯେପରି ତା'ର ସମଗ୍ର ଅଙ୍ଗ ପ୍ରତ୍ୟଙ୍ଗମୟ, କଳେବରମୟ ହୋଇ ଉଠେ । ବିଶେଷତଃ ହିତାକାଙ୍‌କ୍ଷିଣୀ ସମ୍ମାନୀୟା ପ୍ରୌଢ଼ା ନାରୀଙ୍କ ସମକ୍ଷରେ ଶିଶୁ ପ୍ରତି ଲାଳନା ମାତାର ବାତ୍ସଲ୍ୟ-ସ୍ନିଗ୍‌ଧ ତୃପ୍ତିଭରା ମୂର୍ତ୍ତିଟିକୁ ଆହୁରି ମଧୁମୟ କରେ । ବ୍ରଜଲୀଳାରେ ଶ୍ରୀକୃଷ୍ଣଙ୍କର ହିତାକାଙ୍‌କ୍ଷିଣୀ ଓ ଲୀଳାର ସଂଯୋଜୟିତ୍ରୀ ଭଗବତୀ ପୌର୍ଣ୍ଣମାସୀଙ୍କ ସମକ୍ଷରେ ଯଶୋଦାଙ୍କର ତୃପ୍ତିଭରା ପୁତ୍ରଲାଳନା (କ୍ରୀଡ଼ାହେତୁ ଧୂଳି-ଧୂସରିତ ଓ ସ୍ୱେଦସିକ୍ତ ମୁଖ ଓ ଦେହକୁ ପଣନ୍ତ କାନିରେ ପୋଛି ଦେବା, କ୍ଷୁଧାରେ ଉଦର ବଳି ହେବା ଦେଖି ନିଜର ଗୃହ କୃତ୍ୟର ବ୍ୟସ୍ତତା ଜନିତ ମୂଢ଼ତା ପ୍ରକାଶ, କ୍ରୀଡ଼ା କାଳରେ ମାତାଙ୍କୁ ଭୁଲିଯିବା ଇତ୍ୟାଦି) ତାଂକର ମଧୁମତୀ ଜନନୀ ହୃଦୟର କପରି ଆନ୍ତିକ ସ୍ପର୍ଶ ଦେଇଛି ଲକ୍ଷ୍ୟ କରାଯାଉ—

ମୋ କୃଷ୍ଣଚନ୍ଦ୍ରମା ପରି        ଅନ୍ୟଟି କେ ଅଛି ସରି ମା !
ମୋ କୃଷ୍ଣ ଚନ୍ଦ୍ରମା ପରି । ଘୋଷା ।
ରତ୍ନ ଚନ୍ତାମଣି ମୋର        ତ୍ରିଭୁବନ ଅଲଙ୍କାର
ଦୁଃଖୀର ଯଷ୍ଟୀକା ଦରିଦ୍ରର ଧନ ମୋ ଶ୍ରୀହରି ।୧।
ଝାଳରେ ଓଦା ଅଳକ,        ଲିଭି ଯାଇଛି ତିଳକ
ସ୍ତନ୍ୟଦେଇ ମୁଖବାସେ ପୋଛି ଦିଅନ୍ତେ ବ୍ରଜେଶ୍ୱରୀ ।୨।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୬୮୭)

ଶ୍ରୀକୃଷ୍ଣଙ୍କର ବ୍ରଜଲୀଳାରେ ଭଗବତୀ ପୌର୍ଣ୍ଣମାସୀ ଚରିତ୍ର ଏକ ଅପରିହାର୍ଯ୍ୟ ଚରିତ୍ର । ତାଙ୍କର ବୃନ୍ଦାବନ ଲୀଳାର ପରିପୂର୍ଣ୍ଣତା ପାଇଁ ଭଗବତୀ ଅବନ୍ତୀ ତ୍ୟାଗ କରି ଗୋକୁଳର ଯାବଟ ଗ୍ରାମରେ ବାସ କରନ୍ତି । ପ୍ରଭାତରେ ତାଙ୍କର ନନ୍ଦାଳୟ ଆଗମନର ଉଦ୍ଦେଶ୍ୟ, ଯଶୋଦାଙ୍କ ସନ୍ନିଧିରେ ଶ୍ରୀକୃଷ୍ଣଙ୍କ ମୁଖଚନ୍ଦ୍ର ଦର୍ଶନ ଓ ଆଶୀର୍ବାଦ ପ୍ରଦାନ । ଯଶୋଦା ଭଗବତୀଙ୍କ ସମକ୍ଷରେ ଶିଶୁମୁଖରେ ଚୁମ୍ବନ ଦେଇ ନିଜର ମାତୃତ୍ୱ ଜନିତ ତୃପ୍ତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କଠାରୁ ଶିଶୁର ଚିରଂଜୀବୀ ହେବାର ଆଶିଷ ଲୋଡ଼ିଛନ୍ତି । ଏହି ଚିତ୍ର ଶୁଦ୍ଧା ଭକ୍ତି ସମ୍ବଳିତ ପ୍ରାପ୍ତ ପ୍ରତ୍ୟେକ କାବ୍ୟ, ମହାକାବ୍ୟ, ନାଟକ ଓ ଗୀତମାନଙ୍କରେ ପରିଦୃଷ୍ଟ ହୁଏ ।

ନିଶି ଅବସାନରେ ଗାତ୍ରୋତ୍ଥାନ ନିମିତ୍ତ ପୁତ୍ରକୁ ଯଶୋଦାଙ୍କର ଆହ୍ୱାନ, ଶ୍ରୀକୃଷ୍ଣଙ୍କର ଗୋଚାରଣ ପ୍ରସ୍ତୁତି ଓ ନନ୍ଦରାଣୀଙ୍କର ଖେଦ, ସଖାଙ୍କ ସହ ବୃନ୍ଦାବନ ଯାତ୍ରା, ଅପରାହ୍ଣରେ ଗୋଧନ ସହ ଶ୍ରୀକୃଷ୍ଣଙ୍କ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଜନିତ ମାତାଙ୍କର ନାନା ଆଶଙ୍କା ଓ ଉଦ୍‌ବେଗର ଚିତ୍ର ଅବଶିଷ୍ଟ ଗୀତଗୁଡ଼ିକରେ ପରିସ୍ଫୁଟ ହୋଇଛି । ଏତନ୍ମଧ୍ୟରେ 'ଦୋଳଗୀତ' ଓ 'ଯଶୋଦା କୋଇଲି' ଶୀର୍ଷକ ଗୀତ ଦୁଇଟି ଅପେକ୍ଷାକୃତ ଦୀର୍ଘ ।

'ପାହାନ୍ତ ଅବକାଶ' ଶୀର୍ଷକ ଗୀତଟିରେ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ ନିମିତ୍ତ ଯଶୋଦାଙ୍କର ଉଦବୋଧନ, ସଖାମାନଙ୍କର ଆଗମନ ଓ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ ଏବଂ ଅନ୍ୟ ଏକ ଗୀତରେ କୃଷ୍ଣଙ୍କର ଗୋଚାରଣ ନିମିତ୍ତ ବନଗମନ ପ୍ରସ୍ତୁତିରେ ଯଶୋଦାଙ୍କର ଖେଦ ଅତି ମର୍ମସ୍ପର୍ଶୀ ଭାଷାରେ କବି ବର୍ଣ୍ଣନା କରିଛନ୍ତି । କାଲି ଯେ ଆତୁର ହୋଇ ସ୍ତନ୍ୟପାନ କରୁଥିଲା, ଖରା ସ୍ପର୍ଶରେ ଯା'ର ଶିରୀଷ କୋମଳ ତନୁ ଝାଉଁଳି ପଡ଼େ, ଶଯ୍ୟାରେ ଶୁଆଇଦେଲେ ସ୍ୱପ୍ନରେ ମା ଡାକ ଯେ କରି ଉଠେ, କାଖକୋଳରେ ବଢ଼ିଥିବା ସେହି କୃଷ୍ଣଙ୍କ ପକ୍ଷରେ ଗୋଚାରଣ ନିମିତ୍ତ ବନ ଯାତ୍ରା ଯେପରି ଏକ ଅସମ୍ଭବ, କଷ୍ଟକର ବ୍ୟାପାର । ପୁତ୍ର ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ମା ଦୃଷ୍ଟିରେ ଅତି ଅଳ୍ପାୟୁ ଓ ଦୁର୍ବଳ । ନିଜ ପେଟ ପୋଷି ନ ପାରିଲେ ମଧ୍ୟ ଭିକ୍ଷା ମାଗି ଦିନ ନେବାରେ ତାଙ୍କର କୁଣ୍ଠା ନାହିଁ । କବିଙ୍କ ଭାଷାରେ—ପୋଷା ନ ଗଲେ ଭିକ୍ଷା ପଛେ ମାଗିବି / କୋଟି ଇନ୍ଦ୍ର ସଂପତ୍ତି ତୋ ଦରଶନରେ । (ଗ୍ରନ୍ଥାବଳୀ ପୃ-୨୯୧)

ଯଶୋଦାଙ୍କର ପ୍ରତ୍ୟେକ ହାବ, ଭାବ ଓ ଭଙ୍ଗୀରେ ଓଡ଼ିଆ ଜନନୀର ସ୍ନିଗ୍ଧ ମମତାମୟୀ ମୂର୍ତ୍ତିଟି ଉଜ୍ଜ୍ୱଳ ହୋଇ ଉଠିଛି । ଶ୍ରୀକୃଷ୍ଣଙ୍କର ବନଯାତ୍ରା ଓ ଗୋଚାରଣ ଜନିତ ଜନନୀ ପ୍ରାଣର ଆଶଙ୍କା ଓ ବେଦନାର ଚିତ୍ର ବର୍ଣ୍ଣୀସ୍ତ ପଦାବଳୀ ରଚନାରେ ମଧ୍ୟ ଇତସ୍ତତଃ ପରିଦୃଷ୍ଟ ହୁଏ (୯୨) ।

ପୁତ୍ର ନିକଟରେ ନିଜର ଉଦ୍‌ବେଗ ଓ ଦୁଃଖ ପ୍ରକାଶ କରିବା ଅବସରରେ ସନ୍ତାନ ବତ୍ସଳା ଜନନୀ ସ୍ତନ୍ୟଧାରା, ଅଶ୍ରୁ ଓ ସ୍ୱେଦରେ ସିକ୍ତ ହୋଇ ପଡ଼ିଛନ୍ତି (୯୩) । ମମତା ମେଦୁର ଜନନୀର ଏହି ମନସ୍ତାତ୍ତ୍ୱିକ ଆଲେଖ୍ୟଟି କବିଙ୍କର ଅନ୍ୟ କବିତାରେ (୯୪) ପରିସ୍ଫୁଟ ହେବା ସଙ୍ଗେ ସଙ୍ଗେ ଶୁଦ୍ଧାଭକ୍ତି ସମ୍ବଳିତ ବୈଷ୍ଣବ କାବ୍ୟ ଓ ନାଟକରେ ପରିଲକ୍ଷିତ ହୁଏ । ଗୋବିନ୍ଦଲୀଳାମୃତ ମହାକାବ୍ୟରେ କୃଷ୍ଣଦାସ କବିରାଜ ପ୍ରଭାତରେ ଶ୍ରୀକୃଷ୍ଣଙ୍କର ଗାତ୍ରୋତ୍ଥାନ (ଯଶୋଦାଙ୍କ ଦ୍ୱାରା) ଓ ଗୋଷ୍ଠ-ପ୍ରତ୍ୟାଗମନ ପାଇଁ ଦ୍ୱାର ଦ୍ୱାରରେ ପ୍ରତୀକ୍ଷମାଣା ଯଶୋଦାଙ୍କର ଭକ୍ତି ଓ ମନୋଭାବର ବର୍ଣ୍ଣନା ପ୍ରସଙ୍ଗରେ ଏହି ଚିତ୍ରଟି ଆଙ୍କିଛନ୍ତି, ଯଥା— ଯଶୋଦା ବାମକର ପଲଙ୍କରେ ସ୍ଥାପନ କରି ଓ ତଦୁପରି ନିଜର ଦେହଭାର ଅର୍ପଣ ପୂର୍ବକ ଅବନତ ଦେହରେ ଦକ୍ଷିଣ ହସ୍ତଦ୍ୱାରା ଶ୍ରୀକୃଷ୍ଣଙ୍କର ଶରୀର ସ୍ପର୍ଶ କରି କରି ଆନନ୍ଦାଶ୍ରୁ ଓ କ୍ଷରିତ ସ୍ତନ-ଦୁଗ୍ଧ-ଧାରାରେ ଶଯ୍ୟା ସିକ୍ତ କରି କହିଲେ, 'ବତ୍ସ ! ଶୀଘ୍ର ଉଠ, ନିଦ୍ରା ପରିତ୍ୟାଗ କର । ମୁଖପଦ୍ମ ଦର୍ଶନ କରାଅ (ପୌର୍ଣ୍ଣମାସୀ ଓ ସଖାମାନଙ୍କୁ) (୯୫) ।' ପୁଣି ଅନ୍ୟତ୍ର କବି ବର୍ଣ୍ଣନା କରିଛନ୍ତି ଯେ ବ୍ରଜେଶ୍ୱରନନ୍ଦ ଅତ୍ୟନ୍ତ ଆଗ୍ରହର ସହ ଶ୍ରୀକୃଷ୍ଣଙ୍କୁ ଗୋଷ୍ଠରୁ ଗୃହକୁ ପ୍ରେରଣ କଲେ । ଶ୍ରୀକୃଷ୍ଣ ଗୋଷ୍ଠରୁ ପ୍ରତ୍ୟାଗମନ କରି ଦେଖିଲେ ଯେ

---

(୯୨) ଭବି ଅଜ୍ଞାତ, ବ. ଚ. ପ.

(୯୩) ଗ୍ରଂ., ପୃ-୨୯୨

(୯୪) ଯଶୋଦା କୋଇଲି, ଗୋ. କୃ. ଗ୍ରଂ., ପୃ-୨୮୩

(୯୫) ଗୋ. ଲୀ. ମୃ., ୨ୟ ସର୍ଗ, ପୃ-୬୭

ଅଗ୍ରବର୍ତ୍ତୀ ଜନନୀ ତାଙ୍କର ଦର୍ଶନୋତ୍କଣ୍ଠିତା ହୋଇ ପୁରଦ୍ୱାରରୁ ଅବଲୋକନ କରୁଛନ୍ତି ଏବଂ ସ୍ତନ-ଦୁଗ୍ଧ ଓ ଆନନ୍ଦାଶ୍ରୁରେ ପୟୋଧର ଓ ବସନ ଅଭିଷିକ୍ତ ହୋଇ ଯାଉଛି (୯୬) ।

ବିଦଗ୍ଧ ମାଧବ ନାଟକରେ ରୂପ ଗୋସ୍ୱାମୀ ଶ୍ରୀକୃଷ୍ଣ ଓ ମଧୁମଙ୍ଗଳଙ୍କ ଉପସ୍ଥିତିରେ ନନ୍ଦଙ୍କ ମୁଖରେ ଯଶୋଦାଙ୍କର ବାତ୍ସଲ୍ୟର ଏହି ଚିତ୍ରଟି ଦେବାକୁ ଯାଇ ପ୍ରକାଶ କରିଛନ୍ତି, 'ବତ୍ସ ! ଦେଖ, କି ଆଶ୍ଚର୍ଯ୍ୟ ! ତୁମର ପଦ୍ମଗନ୍ଧଯୁକ୍ତ ଅନ୍ୟାନ୍ୟ ଅଙ୍ଗରେ ସୌନ୍ଦର୍ଯ୍ୟ ରାଶି ପୂର୍ଣ୍ଣ ଥିଲେ ମଧ୍ୟ ତୁମର ମାତା ତୁମର ମୁଖଚନ୍ଦ୍ର ପ୍ରତି ଗୃଧ୍ନୁ ଅଛନ୍ତି ଏବଂ ଅତିଶୟ ହର୍ଷ ବଶତଃ କୁଚ-କଳସର ମୁଖ ଦ୍ୱୟରୁ ବସନ ଆର୍ଦ୍ର କରି କ୍ଷୀର ଧାରା ବର୍ଷଣ କରୁଛନ୍ତି (୯୭) ।'

ଜନନୀ ଯଶୋଦାଙ୍କ ଶତ କୁଣ୍ଠା ଓ ଉଦ୍‌ବେଗ ମଧ୍ୟରେ ସଖାମାନଙ୍କ ସହ ଯେଉଁ ଶ୍ରୀକୃଷ୍ଣ ଗୋଚାରଣ ଉଦ୍ଦେଶ୍ୟରେ ବୃନ୍ଦାବନକୁ ଯାତ୍ରା କରୁଛନ୍ତି, ତାଙ୍କ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଲକ୍ଷ୍ୟ କରି ଜନନୀ ପ୍ରାଣ ନାନା ଆଶଙ୍କା, ଉତ୍କଣ୍ଠା ଓ ଉଦ୍‌ବେଗରେ ଅତିଷ୍ଠ ହୋଇ ପଡ଼ୁଛି । ପୁର ଦ୍ୱାରରେ ଗୃହଜନୀ ପ୍ରାୟ ନବ ନୀରଦ କାନ୍ତି ପୁତ୍ରକୁ ଚାହିଁ ରହିଛନ୍ତି । ଗୋଚାରଣରେ ବନ ପଥରେ ନାନା କଷ୍ଟ ଓ ଆଶଙ୍କାରେ ତାଙ୍କର ଚିତ୍ତ ଆଲୋଡ଼ିତ ହୋଇଛି, ନୟନରୁ ଦରଦର ଧାରାରେ ଅଶ୍ରୁ ବିଗଳିତ ହେଉଛି । ଜନନୀ ପ୍ରାଣର ପ୍ରତୀକ୍ଷା ଜନିତ ବ୍ୟଥା ସାର୍ଥକ ରୂପ ନେଇଛି 'ଯଶୋଦା କୋଇଲି', 'ଦୋଳିଗୀତ' ଓ 'ଅପରାହ୍ନେ ନନ୍ଦରାଣୀଙ୍କ ଭାବନା' ଶୀର୍ଷକ ଗୀତରେ ।

**ଯଶୋଦା କୋଇଲି**—'ଯଶୋଦା କୋଇଲି' ରଚନା ମୂଳରେ ରହିଛି ଓଡ଼ିଶାର ଅତି ଲୋକପ୍ରିୟ ମାର୍କଣ୍ଡ ଦାସଙ୍କର 'କେଶବ କୋଇଲି', ବଳରାମ ଦାସଙ୍କର 'କାନ୍ତ କୋଇଲି' ଓ ଶଙ୍କର ଦାସଙ୍କର 'ବାରମାସ କୋଇଲି'ର ପ୍ରେରଣା । 'କୋଇଲି' ରଚନା ଚଉଦଶ ପରେ ଓଡ଼ିଶାରେ ଏକ ଲୋକପ୍ରିୟ ଗୀତକାବ୍ୟର ରୂପ । ଏହା ଓଡ଼ିଆ ସାହିତ୍ୟରେ ସନ୍ଦେଶ କାବ୍ୟ ବା ଦୂତ କାବ୍ୟର ମର୍ଯ୍ୟାଦା ଲାଭ କରିଛି । ଏଥିରେ ପ୍ରିୟଜନର ବିଚ୍ଛେଦ ବା ବିରହ ଜନିତ କାରୁଣ୍ୟ ବା ଶୋକାନୁଭୂତିକୁ ସରଳ ଲୋକପ୍ରିୟ ଛନ୍ଦ ଓ ପ୍ରାଣସ୍ପର୍ଶୀ ଭାଷାରେ ସନ୍ଦେଶ ଭାବେ ରୂପାୟିତ କରା ଯାଇଥାଏ । ସଂସ୍କୃତ ସାହିତ୍ୟ, ଭାରତୀୟ ଦେଶୀୟ ସାହିତ୍ୟ (ହିନ୍ଦୀ, ମାଲୟଲମ୍) ଓ ଓଡ଼ିଆ କାବ୍ୟମାନଙ୍କରେ ମେଘ, ପବନ, ହଂସ, ମୟୂର, କୋକିଳ, ଚନ୍ଦ୍ର, କୋକ, ଭୃଙ୍ଗ, ଶୁକ, ଚାତକ ଓ କାକ ପ୍ରଭୃତି ଗତିଶୀଳ ଚେତନ ଓ ଅଚେତନ ବସ୍ତୁ ଗୁଡ଼ିକୁ ବାର୍ତ୍ତାବହ ବା ଦୂତ ଭାବରେ ଗ୍ରହଣ କରା ଯାଇଥାଏ । ସଂସ୍କୃତ ଦୂତକାବ୍ୟ ବା ସନ୍ଦେଶ କାବ୍ୟ ଆଦର୍ଶରେ ଲୋକପ୍ରିୟ ଚେତନ ଓ ଅଚେତନ ବସ୍ତୁକୁ (ମେଘ, ପବନ, କୋକିଳ, ହଂସ, ଚନ୍ଦ୍ର, ଭ୍ରମର, ଶୁକ) ବାର୍ତ୍ତାବହ ଭାବରେ ଗ୍ରହଣ କରାଯାଇ ଓଡ଼ିଆରେ ବହୁ ସନ୍ଦେଶ-ଗୀତ ରଚିତ ହୋଇଛି—ତନ୍ମଧ୍ୟରେ

(୯୬) ଗୋ. ଲୀ. ମୃ., ୪ର୍ଥ ସର୍ଗ, ପୃ-୧୭୧
(୯୭) ବି. ମା., ୧ମ ଅଙ୍କ, ପୃ-୩୨

'କୋଇଲି' ଶୀର୍ଷକ ଗୀତର ସଂଖ୍ୟା ସର୍ବାପେକ୍ଷା ଅଧିକ । ପୂର୍ବୋକ୍ତ ଛଅୋଟି ଲୋକପ୍ରିୟ ଓଡ଼ିଆ କୋଇଲି ରଚନାକୁ ଛାଡ଼ିଦେଲେ ଜଗନ୍ନାଥ ଦାସଙ୍କ 'ଅର୍ଥ କୋଇଲି' (କେଶବ କୋଇଲିର ତାତ୍ତ୍ୱିକ ବ୍ୟାଖ୍ୟା), ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ 'କମଳମୁଖ କୋଇଲି', ରାମଦାସଙ୍କ 'କୋଇଲି', ନାଥିଆଙ୍କ 'ଜ୍ଞାନୋଦୟ କୋଇଲି' (ଜୀବ ପରମ ତତ୍ତ୍ୱ ମୂଳକ), ଦନେଇ ଦାସଙ୍କ (୧୮ଶ ଶତକ) 'ଯଶୋଦା କୋଇଲି', ଗୋବିନ୍ଦ ଦାସଙ୍କ 'ଗୋପିକା କୋଇଲି', ଗୋପାଳକୃଷ୍ଣଙ୍କ 'ଯଶୋଦା କୋଇଲି' ଓ ଜଗନ୍ନାଥଙ୍କ 'ଜଗନ୍ନାଥ କୋଇଲି' ଉଲ୍ଲେଖଯୋଗ୍ୟ ।

ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ପ୍ରାଚୀନତମ ଲୋକପ୍ରିୟ କୋଇଲି ରଚନା ହୋଇଥିବାରୁ ସେହି ଛନ୍ଦ ଓ ରୂପର ଆଦର୍ଶରେ ଚଉତିଶା ଶୈଳୀରେ (ଶଙ୍କର ଦାସଙ୍କ ବାରମାସୀ କୋଇଲି ଚଉତିଶାର ବ୍ୟତିକ୍ରମ) ବିଭିନ୍ନ ଶତାବ୍ଦୀରେ ଅନ୍ୟ କୋଇଲି ଗୀତ ଗୁଡ଼ିକ ରଚିତ ହୋଇଛି । ବଳରାମ ଦାସଙ୍କ 'କାନ୍ତ କୋଇଲି'ରେ ରାବଣ କର୍ତ୍ତୃକ ଅପହୃତା ସୀତାଙ୍କ ପ୍ରାଣର ବେଦନା ଏବଂ ଶଙ୍କର ଦାସଙ୍କ 'ବାରମାସୀ କୋଇଲି'ରେ ରାମ ବନବାସ ହେତୁ ବାତ୍ସଲ୍ୟମମତାମୟୀ ଜନନୀ କୌଶଲ୍ୟାଙ୍କର ରାମସମ୍ପର୍କିତ ଦ୍ୱାଦଶ ମାସର ଅନୁଭୂତି କାରୁଣ୍ୟ-ପ୍ରକାଶିକା-ଭାଷାରେ ଅଭିବ୍ୟକ୍ତ ହୋଇଛି । 'କେଶବ କୋଇଲି', ଦନେଇ ଦାସଙ୍କ 'ଯଶୋଦା କୋଇଲି' ଓ ଜଗନ୍ନାଥଙ୍କ 'ଜଗନ୍ନାଥ କୋଇଲି'ରେ ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରା ହେତୁ ଜନନୀ ଯଶୋଦାଙ୍କର ହୃଦୟର ବେଦନା ମର୍ମସ୍ପର୍ଶୀ ଭାଷାରେ ରୂପାୟିତ ହୋଇଛି ।

ଗୋପାଳକୃଷ୍ଣଙ୍କର 'ଯଶୋଦା କୋଇଲି'ରେ ଯଶୋଦାଙ୍କର ମର୍ମବେଦନା ଶ୍ରୀକୃଷ୍ଣଙ୍କର ମଥୁରା ଯାତ୍ରା ପାଇଁ ନୁହେଁ, ଗୋଚାରଣ ନିମିତ୍ତ ଯାତ୍ରା କରିଥିବା ବନପଥରୁ ପ୍ରତ୍ୟାବର୍ତ୍ତନରେ ତାଙ୍କର ବିଳମ୍ବ ପାଇଁ । ଶ୍ରୀକୃଷ୍ଣ ବୈଷ୍ଣବ ଦୃଷ୍ଟିରେ ସ୍ୱୟଂ ଭଗବାନ୍, ଅପ୍ରାକୃତ ଚିନ୍ମୟ ପ୍ରେମର ସ୍ୱରୂପ ଓ ଅଚିନ୍ତ୍ୟ ଶକ୍ତିର ଆଧାର ହେଲେ ମଧ୍ୟ ଜନନୀ ଯଶୋଦାଙ୍କ ଦୃଷ୍ଟିରେ ଶିଶୁଟିଏ । ଗର୍ଭରୁ ଜାତ ନ ହେଲେ ମଧ୍ୟ ଶ୍ରୀକୃଷ୍ଣ ଗର୍ଭଜାତ ସନ୍ତାନଠାରୁ ତାଙ୍କ ଦୃଷ୍ଟିରେ ଅଧିକ । ଶୈଶବ ଓ ବାଲ୍ୟ ଲୀଳାରେ ତାଙ୍କର ଅଲୌକିକ ଶକ୍ତିର (ରାକ୍ଷସ ବଧରେ) ପରିଚୟ ମିଳିଲେ ମଧ୍ୟ ଜନନୀର ବାତ୍ସଲ୍ୟମମତା ମେଦୁର ମନ ସେହି ଅବୋଧ, ଅବୁଝିଆ ଶିଶୁର ହାବଭାବ ଓ କ୍ରୀଡ଼ା ଚାପଲ୍ୟରେ ପରମତୃପ୍ତି ଅନୁଭବ କରେ । ଜନନୀ ଦୃଷ୍ଟିରେ ଶ୍ରୀକୃଷ୍ଣ ଅଳ୍ପୀଳ, ଅଙ୍ଗପ୍ରତ୍ୟଙ୍ଗ ଲବଣୀ ପ୍ରାୟ କୋମଳ । ତାଙ୍କର ମମତାଭରା ସ୍ନିଗ୍ଧ ଦୃଷ୍ଟିରେ ଶିଶୁର ସବୁ କିଛି ତାଙ୍କ ନିକଟରେ ମଧୁମୟ, କମନୀୟ । ଗୃହକୃତ୍ୟ ଛାଡ଼ି ମନ ପୂରାଇ କୋଳରେ ଧରି ବସନ୍ତେ, କ୍ଷୀର ପାନ କରାନ୍ତେ, ତାଙ୍କର ଦୃଷ୍ଟି-ବଳୟରେ ପୁର-ଅଙ୍ଗନରେ କଟିର କିଂକିଣୀ, ପାଦର ନୂପୁର ରୁଣୁଝୁଣୁ କରି ଶିଖଣ୍ଡିପୁଚ୍ଛ ଦୋହଲାଇ ଲୋଭନୀୟ ଭଙ୍ଗୀରେ ନୃତ୍ୟ କରନ୍ତେ—ଏ ସବୁରେ ମାର ନେତ୍ର ଓ ପ୍ରାଣ ଭରି ଉଠନ୍ତା । କିନ୍ତୁ ସେହି ଶିଶୁ ଗୋଚାରଣକୁ ଯାଇଛି । ଖରା ଝାଞ୍ଜିରେ ବନପଥରେ ବୁଲୁଥିବ, ଭୋଜନରେ ବେଳ ଅବେଳ ନାହିଁ, ପୁଣି ବନର କଣ୍ଟାଝଣ୍ଟାରେ ପାଦ କ୍ଷତ ବିକ୍ଷତ

ହେଉଥିବ । ତା'ଛଡ଼ା ନିଶାଚର ଭୟ ! ଏ ସବୁର ଚିନ୍ତାରେ ଜନନୀର ମନ ମଥିତ ହେଉଛି, ପୁଣି ପ୍ରତ୍ୟାବର୍ତ୍ତନରେ ବିଳମ୍ବ ହେତୁ ମା'ର ଉଦ୍‌ବେଗ ଆହୁରି ବଢ଼ି ଉଠିଛି । କବିଙ୍କ ଭାଷାରେ--

କୋଇଲି, କି ବୁଦ୍ଧି କରିବି ମୁହିଁ,
କେତେ କହିଲେ ତ ଶୁଣୁ ନାହିଁ ।
କାନନରେ ଏକା ଧେନୁ ନେଲା ଆଲୋ !
କାଳ ବେଳରେ ଅନ୍ନ ନ ଖାଇଲା ଲୋ,
କୋଳରେ ବେଳେ ମନ ପ୍ରବୋଧି ଆଲୋ !
କୃଷ୍ଣ ଚନ୍ଦ୍ରମାକୁ ଧରିଲି ନାହିଁ ଲୋ ।୧।

× × ×

ଖରରେ ଯାଇଥିବନି ଲୁଚି, ଆଲୋ !
ଖଞ୍ଜନ-ନେତ୍ର ମୋ ଦୁଃଖୀ ସଂଚାଳି ଲୋ ।୨।
କୋଇଲି, ଝାଞ୍ଜି ସମୀରଣ ବାଜି,
ଝଳ ଦେହରୁ ଯିବନି ହଜି
ଝର ପାଣି ପିଇବଟି କେତେ, ଆଲୋ !
ଝାଡ଼େ ବୁଲି ବୁଲି ଧେନୁ ସଙ୍ଗତେ ଲୋ,
ଝଗଡ଼ା ହୋଇ ମୋ ଦୁଃଖୀଧନ ଆଲୋ,
ଝାଟି ପରସ୍ତେ ହୋଇଗଲା ଖିନ୍ନ ଲୋ ! ।୯।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ. ୨୭୭-୨୭୯)

ଦୁଇଟି ନୁହେଁ କି ତିନୋଟି ନୁହେଁ, ବୃଦ୍ଧାକାଳରେ ଗୋଟିଏ ମାତ୍ର ସନ୍ତାନ, ସେହି ତାଙ୍କର ଅନ୍ଧର ଲଉଡ଼ି, ନୟନର ପିତୁଳି, ରଙ୍କୁଣୀଧନ । ମୁହୂର୍ତ୍ତେ ମାତ୍ର ବିଚ୍ଛେଦ ତାଙ୍କ ପକ୍ଷରେ ଅସହ୍ୟ । ବ୍ରଜରାଜ ଘରେ କ'ଣ ବା ନାହିଁ ? କିନ୍ତୁ ରାତି ପାହିଲେ ଗୋରୁ, ଗୋପାଳ ଓ ରଙ୍ଗୁଆଳଙ୍କ ସଙ୍ଗରେ ବନ ନେଉଛି । କହିଲେ ମଧ୍ୟ ସଙ୍ଗରେ ପାଦୁକା (କଠଉ) ନେଉ ନାହିଁ । ଦରିଦ୍ରଙ୍କ ପରି ବନର ଶିଳାବନ୍ଧୁର କଣ୍ଟକମୟ ପଥରେ ବୁଲୁଛି । ଦିନ ତିନିପହର ଗଡ଼ିଗଲାଣି । ଫେରିବା ପଥକୁ ଚାହିଁ ଚାହିଁ ନେତ୍ରରେ ପଲକ ପଡ଼ୁ ନାହିଁ । ପ୍ରାଣର ଆବେଗରେ ଯଶୋଦା କୋଇଲିକୁ ସମ୍ବୋଧନ କରି କହୁଛନ୍ତି—

କୋଇଲି, ଡେରିବୁଟି ଶ୍ରୁତି ତେଣେ,
ତାକୁ ନାହାନ୍ତି ସୁରଭି ଗଣେ,
ତେଣିଁ ଗଲାନି ପହର ତିନି, ଆଲୋ !

ତୋଳା ପିତୁଳାର ମୁରଲୀ ଧ୍ୱନିରେ,
ଡାଳେ ନିଶ୍ଚଳ ହୋଇ ତୁ ଶୁଣ, ଆଳିଲୋ,
ତରେ ସନ୍ତାପିତ ହେଉଛି ପ୍ରାଣ ଲୋ ।୧୩।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୨୮୦)

ଶ୍ରୀକୃଷ୍ଣ ଅଚିନ୍ତ୍ୟ ଶକ୍ତି ବଳରେ ରାକ୍ଷସମାନଙ୍କୁ ବିନାଶ, ଦାବାଗ୍ନି ପାନ ଏବଂ କାଳୀୟ ଓ ବାସବ ଦର୍ପ ଦଳନ କଲେ ମଧ୍ୟ ମମତାନ୍ଧ ଜନନୀ ଦୃଷ୍ଟିରେ ଧର୍ମବଳରେ ଦୁଃଖୀଧନ ତାଙ୍କର ଏ ସମସ୍ତ ଅଘଟଣରୁ ବର୍ତ୍ତି ଯାଇଛି । ବନ ଯାତ୍ରା କାଳରେ ଜନନୀଙ୍କୁ ଆଶ୍ୱାସନା, ଯମୁନା ତୀରରେ ବନ ପୁଷ୍ପରେ ଭୂଷିତ ହୋଇ ଧେନୁ ମେଳରେ ବେଣୁବାଦନ, ଅଙ୍ଗ-ପ୍ରତ୍ୟଙ୍ଗରେ ବିଭିନ୍ନ ବେଶଭୂଷା (ଗୋରୋଚନା ତିଳକ, କର୍ଣ୍ଣରେ ନୀପ ମଞ୍ଜରୀ ଇତ୍ୟାଦି), ଗୋପାଙ୍ଗନାଙ୍କର କୌତୁକ, ରାଧାଙ୍କୁ ଯଶୋଦାଂକର ବଧୂରୂପେ ବାଞ୍ଛା, ଜନନୀ-ସ୍ତନ୍ୟ-ପାନରେ ଲୋଭ, ପ୍ରତ୍ୟାବର୍ତ୍ତନ କାଳୀନ ବଂଶୀନାଦ ଶ୍ରବଣରେ ବ୍ରଜେଶ୍ୱରୀଂକର ଆନନ୍ଦ, ରାମ ଓ କୃଷ୍ଣଙ୍କୁ ଆଲିଙ୍ଗନ ଓ ଚୁମ୍ବନ, ବ୍ରଜଜନ ମେଳରେ କୃଷ୍ଣଂକର ନୃତ୍ୟ ଏବଂ ସୌଧ ଶିଖରରେ ରାଧା-ଦର୍ଶନର ଚିତ୍ର ଗୀତଟିରେ ଅଂକିତ ହୋଇଛି ।

**ଯଶୋଦା କୋଇଲି ଓ କେଶବ କୋଇଲି**—'ଦୋଳଗୀତି' ଓ 'ଅପରାହ୍ନରେ ନନ୍ଦରାଣୀଂକ ଭାବନା' ଶୀର୍ଷକ ଗୀତରେ 'ଯଶୋଦା କୋଇଲି' ଭାବରେ ସଂକ୍ଷିପ୍ତ ପୁନରାବୃତ୍ତି ମାତ୍ର ପରିଦୃଷ୍ଟ ହୁଏ । 'ଯଶୋଦା କୋଇଲି' ଓ 'କେଶବ କୋଇଲି' ଉଭୟ ଗୀତର ମୁଖ୍ୟବସ୍ତୁ ଭିନ୍ନ ହେଲେ ମଧ୍ୟ ପରିକଳ୍ପନା, ଭାବ ଓ ବର୍ଣ୍ଣନାରେ ସାଧର୍ମ୍ୟ ଦେଖାଯାଏ ; ଶ୍ରୀକୃଷ୍ଣଂକର ଅବର୍ତ୍ତମାନରେ ବାତ୍ସଲ୍ୟସିକ୍ତ ଜନନୀ ହୃଦୟର ମର୍ମବେଦନା ବା କାରୁଣ୍ୟ ଉଭୟରେ ରୂପାୟିତ ହୋଇଛି; କିନ୍ତୁ ମାର୍କଣ୍ଡ ଦାସଂକ ଯଶୋଦା ପକ୍ଷରେ ସେ ବେଦନା ଅସୀମ, ଅସମାହିତ । କାରଣ ଶ୍ରୀକୃଷ୍ଣଂକର ବ୍ରଜ-ପ୍ରତ୍ୟାବର୍ତ୍ତନର କୌଣସି ସମ୍ଭାବନା ନାହିଁ, କିନ୍ତୁ ଗୋପାଳକୃଷ୍ଣଂକ ଯଶୋଦା ପକ୍ଷରେ ତାହା ସାମୟିକ, ଯେହେତୁ ବନରୁ ପୁରକୁ ପ୍ରତ୍ୟାବର୍ତ୍ତନର ସମ୍ଭାବନା ନିଶ୍ଚିତ । ତେଣୁ 'କେଶବ କୋଇଲି'ରେ ଜନନୀ ପ୍ରାଣର ବେଦନା 'ଯଶୋଦା କୋଇଲି' ଅପେକ୍ଷା ବ୍ୟାପକ ଓ ଗଭୀର । ମାର୍କଣ୍ଡ ଦାସଂକ ଯଶୋଦାଂକର କାରୁଣ୍ୟଗର୍ଭକ ଉକ୍ତି ସହୃଦୟ ପାଠକର ଅନ୍ତଃସ୍ଥଳକୁ ଭେଦ କରିଯାଏ, ସମବେଦନାରେ ଚକ୍ଷୁ ତା'ର ବାଷ୍ପ ସଜଳ ହୋଇଉଠେ । ଦୃଷ୍ଟାନ୍ତ ସ୍ୱରୂପ—

କୋଇଲି, ଖଣ୍ଡେ କ୍ଷୀରି ଦେବି ମୁଁ କାହାକୁ ?
ଖାଇବାର ପୁତ୍ର ଗଲା ମଥୁରା ପୁରକୁ, ଲୋ କୋଇଲି ! ।୨।
କୋଇଲି, ଅନ ଖର୍ଚ୍ଚି କ୍ଷୀର ପାନ ଦେଲି,
ଅବିର କାଳକୁ ପୁତ୍ର ଦେଖି ନ ପାରିଲି, ଲୋ କୋଇଲି ! ।୧୭।
(ମାର୍କଣ୍ଡ ଦାସ, କେଶବ କୋଇଲି)

ଶ୍ରୀକୃଷ୍ଣଙ୍କ ଅବର୍ତ୍ତମାନରେ ଉଭୟ ନନ୍ଦ ଓ ଯଶୋଦାଙ୍କୁ ପୁର ଅଘଟଣ ଦେଖାଯାଉଛି ଓ ଚିନ୍ତାରେ ଉଭୟେ ଶୀର୍ଣ୍ଣ ହୋଇପଡ଼ିଛନ୍ତି । ହତାଶାର ଚରମ ମୁହୂର୍ତ୍ତରେ ପ୍ରାଣରେ

ବ୍ୟାକୁଳତାରେ ଯଶୋଦା କହୁଛନ୍ତି ଯେ, ସେ ମଥୁରାକୁ ଧାଇଁ ଯାଇ କୃଷ୍ଣ ବଳରାମଙ୍କୁ ଫେରାଇ ଆଣିବେ (୨୫ଶ ପଦ) ଯଶୋଦାଙ୍କ ମୁଖରେ ଜନ୍ମଦାତ୍ରୀ ଦେବକୀଙ୍କର ଧର୍ମବଳର ପ୍ରଶଂସା ଓ ଜନନୀ ଭାବରେ ନିଜର ନିଷ୍ଫଳତା ଜନିତ ହତାଶା ଓ ବ୍ୟର୍ଥତାର ବାଣୀ କିପରି ମର୍ମନ୍ତୁଦ, ପାଠକ ତାହା ଉପଲବ୍ଧି କରିପାରିବେ (୧୯ଶ ଓ ଦ୍ୱାବିଂଶ ପଦ)। ଗୋପାଳକୃଷ୍ଣଙ୍କର ଯଶୋଦା ଶ୍ରୀକୃଷ୍ଣଙ୍କର ଅଲୌକିକତାର ପ୍ରତ୍ୟକ୍ଷ ପ୍ରମାଣ ପାଇଥିଲେ ମଧ୍ୟ ତାଙ୍କ ନିକଟରେ ଦେବତ୍ୱ ଅପେକ୍ଷା ମାନବତ୍ୱ ତାଙ୍କ ପକ୍ଷରେ ଅତି ପ୍ରିୟ। ସେଥିପାଇଁ ବନରେ ତାଙ୍କର ପଥକଷ୍ଟ, କ୍ଷୁଧା ଓ ଆପଦ ବିପଦ ପାଇଁ ଜନନୀ ପ୍ରାଣ ଅତି କାତର। ଉଭୟ କବି ଶିଶୁସୁଲଭ ହାବ ଭାବର ଆବେଗମୟ ଚିତ୍ର (ମାତାଙ୍କଠାରେ ଶ୍ରୀକୃଷ୍ଣଙ୍କ ଅଳି, ଅଝଟିଆ କୃଷ୍ଣଙ୍କୁ ଜନନୀଙ୍କର ପ୍ରହାର, ଦଉଡ଼ିରେ ବୃକ୍ଷରେ ବାନ୍ଧିବା, ଜନନୀ କୋଳରେ ଶିଶୁ କୃଷ୍ଣଙ୍କର ହିହିହି ହସ ଇତ୍ୟାଦି) ଏବଂ ଅଲୌକିକ କ୍ରିୟାକଳାପର (ଗୋବର୍ଦ୍ଧନ ଧାରଣ, ତୁଣ୍ଡରେ ସପ୍ତବ୍ରହ୍ମାଣ୍ଡ ଦର୍ଶନ, ଯାମଳାର୍ଜ୍ଜୁନ ବୃକ୍ଷରେ ବନ୍ଧନ) ବର୍ଣ୍ଣନା ଦେଇଥିଲେ ମଧ୍ୟ ମାର୍କଣ୍ଡ ଦାସଙ୍କର ଯଶୋଦା ଗୋପାଳକୃଷ୍ଣଙ୍କ ଯଶୋଦା ଅପେକ୍ଷା କୃଷ୍ଣଙ୍କର ଦେବତ୍ୱ ସମ୍ପର୍କରେ ଅଧିକ ସଚେତନ (ଯେହେତୁ ଯଶୋଦାଙ୍କ ମୁଖରେ କବି ପରମ ପୁରୁଷ, ନାରାୟଣ, ଜଗତ ଜୀବନ ପ୍ରଭୁ ପ୍ରଭୃତି ଶବ୍ଦ ପ୍ରୟୋଗ କରିଛନ୍ତି)। ଉଭୟ କବି ଗୋପୀଙ୍କ ସହ ଶ୍ରୀକୃଷ୍ଣଙ୍କର ଲୀଳାର ସୂଚନା ମାତ୍ର ଦେଇଛନ୍ତି। 'କେଶବ କୋଇଲି'ର ସରଳ ଛନ୍ଦ (ଲୋକ ସାହିତ୍ୟର ଛନ୍ଦ) ଶୋକ, କାରୁଣ୍ୟର ଉପଯୋଗୀ। 'ଯଶୋଦା କୋଇଲି'ରେ 'କେଶବ କୋଇଲି'ର ଛନ୍ଦ ଅନୁସୃତ ନ ହୋଇଥିଲେ ମଧ୍ୟ (କେଶବ କୋଇଲି ତିନି ବା ଚାରି ପାଦ ବିଶିଷ୍ଟ, ଯଶୋଦା କୋଇଲି ଛ' ବା ସାତ ପାଦ ବିଶିଷ୍ଟ)। କେଶବ କୋଇଲି ଛନ୍ଦର ଲୋକଧର୍ମିତା, ସାବଲୀଳ ପ୍ରବାହ ଓ ସମ୍ବୋଧନାତ୍ମକ 'ଆଲୋ', 'ଲୋ' ପଦର ବ୍ୟବହାର ଦେଖାଯାଏ। 'ଦୋଳଗୀତ'ରେ କେଶବ କୋଇଲି ଛନ୍ଦର ପ୍ରଭାବ ଅଧିକ ଲକ୍ଷିତ ହୁଏ। ତିନୋଟି ଗୀତରେ ଜନନୀ ହୃଦୟର ଭାବରାଜି ଓ ମାନସିକ ଅବସ୍ଥାର ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ଘଟିବା ସଂଗେ ସଂଗେ ଓଡ଼ିଆ ଘରର ସାମାଜିକ ଚିତ୍ର, ଚଳଣି ଓ ସୁଖଦୁଃଖର ଚମତ୍କାର ପ୍ରକାଶ ଘଟିଛି।

**ଅନ୍ୟ କବିଙ୍କର ବାତ୍ସଲ୍ୟ ଚିତ୍ର ସହ ତୁଳନାତ୍ମକ ସମୀକ୍ଷା**—ମାର୍କଣ୍ଡ ଦାସଂକ ପରେ ରସକଲ୍ଲୋଳକାର ଦୀନକୃଷ୍ଣଂକଠାରୁ ଆରମ୍ଭ କରି ଭକ୍ତ ଚରଣ ପର୍ଯ୍ୟନ୍ତ ବିଭିନ୍ନ କବି ଶ୍ରୀକୃଷ୍ଣଂକ ଶୈଶବ ଓ ବାଲ୍ୟଲୀଳା, ଗୋଚାରଣ ପ୍ରସ୍ଥିତି, ଗୋଚାରଣରୁ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଓ ମଥୁରା ଯାତ୍ରାକୁ ଭିତ୍ତି କରି ଯଶୋଦାଂକର ଆନନ୍ଦ, ଆଶଂକା, ବିଳାପ ବା ଶୋକ ମାଧ୍ୟମରେ ବାତ୍ସଲ୍ୟ ଭାବର ଚିତ୍ର ଆଂକିଛନ୍ତି। ସେମାନଂକ ମଧ୍ୟରେ ଦୀନକୃଷ୍ଣ, ବନମାଳୀ, ସଦାନନ୍ଦ, ଅଭିମନ୍ୟୁ ସାମନ୍ତ ସିଂହାର ଓ ଭକ୍ତଚରଣ ଦାସଂକ ନାମ ଉଲ୍ଲେଖଯୋଗ୍ୟ। ବନମାଳୀଙ୍କୁ ଛାଡ଼ିଦେଲେ ଅନ୍ୟମାନେ ମୁଖ୍ୟତଃ କାବ୍ୟକାର। କାହାଣୀ-ଧର୍ମିତା ଓ ବର୍ଣ୍ଣନାତ୍ମକତା କାବ୍ୟ ଶୈଳୀର ବୈଶିଷ୍ଟ୍ୟ ହେଲେ ମଧ୍ୟ ସଦାନନ୍ଦ, ଅଭିମନ୍ୟୁ ଓ ଭକ୍ତ ଚରଣଙ୍କ ସୃଷ୍ଟି ମଧ୍ୟରେ ଯଶୋଦାଙ୍କର ବିଳାପ ଓ ବାତ୍ସଲ୍ୟ ଭାବାତ୍ମକ ଚିତ୍ର ଗୀତି-ଧର୍ମିତାରେ (Lyrical beauty) ଅଧିକ ଉଜ୍ଜ୍ୱଳ ହୋଇଉଠିଛି।

**ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା**—ଗୋଷ୍ଠ ବାହୁଡ଼ା କାଳରେ ଜନନୀର ବାତ୍ସଲ୍ୟ-ସ୍ନିଗ୍ଧ ଦୃଷ୍ଟିରେ ସଦାନନ୍ଦ ଶ୍ରୀକୃଷ୍ଣଙ୍କ ଅଙ୍ଗଶୋଭା, ନୈସର୍ଗିକ ବେଶଭୂଷା ଓ ହାବଭାବର ଯେଉଁ ସରଳ ଓ ମନୋଜ୍ଞ ଚିତ୍ର ଦେଇଛନ୍ତି, ସେଥିରେ ଜନନୀପ୍ରାଣର ଅନ୍ତରଙ୍ଗ ରୂପାୟନ ମଧ୍ୟରେ ବାତ୍ସଲ୍ୟ-ଭକ୍ତ-ଲୁବ୍ଧ କବିପ୍ରାଣର ସାର୍ଥକ ପ୍ରକାଶ ଘଟିଛି । ଦୂରଦ୍ୱାରରେ ପ୍ରତୀକ୍ଷିତା କୋମଳପ୍ରାଣା ଜନନୀ ଦୃଷ୍ଟିରେ ଗୋରଜଧୂସର କୃଷ୍ଣଙ୍କର ତନୁଟି ଉଜ୍ଜ୍ୱଳ ଦେଖାଯାଉଛି । ଗଳାରେ ଫୁଲମାଳ; କୁସୁମ ଡାଳ ବାହୁରେ ହୋଇଛି ବାଜୁବନ୍ଧ । କପାଳରେ ଚନ୍ଦନପଟି, ତାହାଲେ ରଙ୍ଗମାଟିର ରେଖା, ଲୋଟଣି ପାରା ପରି କେତେ ଭଙ୍ଗୀରେ ନୃତ୍ୟ, କୋକିଳ ପରି ମଧୁର କଣ୍ଠ ଧ୍ୱନି, ମୟୂରର କେକାଧ୍ୱନି ପରି କୁହାଟ । ଶିଶୁ-ସର୍ବସ୍ୱ-ପ୍ରାଣା ଜନନୀ ଦୃଷ୍ଟିରେ ଶ୍ରୀକୃଷ୍ଣ ଏଡ଼େ ସୁନ୍ଦର ଦେଖାଯାଉଛନ୍ତି ଯେ ତାଙ୍କରି ଉପରେ ତାଙ୍କର ପ୍ରାଣ ଆତଙ୍କିତ ହୋଇ ଉଠୁଛି । ସାତ ନାହିଁକି ପାଞ୍ଚ ନାହିଁ, ବୁଢ଼ା କାଳରେ ଗୋଟିଏ ମାତ୍ର ସନ୍ତାନ । ଜନନୀ ଦୃଷ୍ଟିରେ ସେ ଏଡ଼େ ଶୀର୍ଣ୍ଣ ଯେ ଧରିଲେ ଗଳି ପଡ଼ୁଛି (ଟେକିଲେ ଗଳି ପଡ଼ଇ) । ବନ ପଥରେ ଟହରେ ଚନ୍ଦ୍ରମୁଖ ଶୁଖି ଯାଇଛି । ଏ ପ୍ରକାର ପୁତ୍ରକୁ ବନକୁ ପଠାଇ ଜନନୀର ଚିନ୍ତା ଓ ଆଶଙ୍କା କମ୍ ନୁହେଁ । ଆଉ ଦିନେ ନ ଛାଡ଼ିବାକୁ ଜନନୀର ପ୍ରତିଜ୍ଞା ବି କମ୍ ଝାଣ ନୁହେଁ । ଗୋଧନ ବାହୁଡ଼ା କାଳୀନ ପୁତ୍ର ଦର୍ଶନ ଜନିତ ଆନନ୍ଦ କେବଳ ଯଶୋଦାଙ୍କଠାରେ ଆବଦ୍ଧ ନ ହୋଇ ତାହା ବିଶ୍ୱଜନୀନ ହୋଇପଡ଼ିଛି । କାଳିଆ ସୁନା ଶ୍ରୀକୃଷ୍ଣ କେବଳ ଯଶୋଦାର ଗଣ୍ଠିଧନ ନୁହେଁ, ସେ ରୋହିଣୀର, ବ୍ରଜର ପ୍ରତ୍ୟେକ ମାତୃସ୍ଥାନୀୟା ଗୋପୀର ଗଣ୍ଠିଧନ । କବିଙ୍କ ଭାଷାରେ—

ଅନା ଗୋ ରୋହିଣୀ ଅନା,
ତୁମ ଗଣ୍ଠିଧନ କାଳିଆ ସୁନା,
ଆଜ କରେ କେତେ ଅନାଲେ !
(ଯୁଗଳ ରସାମୃତ ଲହରୀ, ୫।୧୦)

ନିଜର ସନ୍ତାନ ସମ୍ପର୍କରେ ଜନନୀର ଦୃଷ୍ଟି ମମତାନ୍ଧ ଓ ପକ୍ଷପାତଗ୍ରସ୍ତ, ସେଥିପାଇଁ ଯଶୋଦାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ଅନ୍ୟମାନଙ୍କ ଅପେକ୍ଷା ଅଧିକ ସୁନ୍ଦର (୯୮) । ଶ୍ରୀକୃଷ୍ଣଙ୍କ ଗୋଚାରଣ କାଳୀନ ପଥକଷ୍ଟ, ପ୍ରତ୍ୟାବର୍ତ୍ତନ କାଳୀନ ବିଳମ୍ବ ପାଇଁ ଜନନୀ ପ୍ରାଣର ଉତ୍କଣ୍ଠା ଓ ଉଦ୍‌ବେଗର ବିଶଦ ଚିତ୍ର ଏଥିରେ ନ ଥିଲେ ମଧ୍ୟ ବାତ୍ସଲ୍ୟଭାବମୂଳକ କବିତା ଭାବରେ ଏହା ଏକ ସାର୍ଥକ ସୃଷ୍ଟି ।

**ଅଭିମନ୍ୟୁ ସାମନ୍ତସିଂହାର**—ବାତ୍ସଲ୍ୟଭାବର ଚିତ୍ରରେ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ପ୍ରେରଣା ଓ ବର୍ଣ୍ଣନାର ମୁଦ୍ରାଙ୍କ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି (୯୯) ଓ

(୯୮) ଯୁଗଳ ରସାମୃତ ଲହରୀ, ୫ମ ଛାନ୍ଦ

(୯୯) ବିଦଗ୍ଧ ଚିନ୍ତାମଣିର ଛା ୬୨।୬, ୭, ୮, ୫, ୧୫ ପଦ ଯୁଗଳ ରସାମୃତ ଲହରୀର ଛା ୫।୩, ୪, ୭, ୧୪, ୧୫ ପଦ ସହ ତୁଳନୀୟ ।

ପ୍ରେମଚିନ୍ତାମଣିର ବିଭିନ୍ନ ସ୍ଥଳରେ ପରିଦୃଷ୍ଟ ହେଲେ ମଧ୍ୟ ଅଭିମନ୍ୟୁଙ୍କର ପ୍ରତିଭାଦୀପ୍ତ ମୌଳିକତାରେ ଗୁରୁଙ୍କ ଅପେକ୍ଷା ତାଙ୍କର ରଚନା ଅଧିକ ଲୋକପ୍ରିୟ ହୋଇଛି । ଯଶୋଦାଙ୍କର ବାତ୍ସଲ୍ୟ ଚିତ୍ର ବିଶେଷତଃ ଶ୍ରୀକୃଷ୍ଣଙ୍କ ଗୋଚାରଣ ପ୍ରସ୍ତୁତି ଓ ଗୋଚାରଣରୁ ବିଳମ୍ବିତ ପ୍ରତ୍ୟାବର୍ତ୍ତନରେ ଯଶୋଦାଙ୍କର ବିଳାପ ଚିତ୍ର (ବିଦଗ୍ଧ ଚିନ୍ତାମଣି ଓ ପ୍ରେମ ଚିନ୍ତାମଣିରେ) ଗୋବିନ୍ଦ ଲୀଳାମୃତ ମହାକାବ୍ୟର ଆଦର୍ଶରେ ଅବଶ୍ୟ ପରିକଳ୍ପିତ, କିନ୍ତୁ ଅଭିମନ୍ୟୁ ପ୍ରତିଭାରେ ସେ ଚିତ୍ର ସ୍ୱକୀୟ ମହିମାରେ ମହିମାନ୍ୱିତ । ଅଭିମନ୍ୟୁଙ୍କର ପ୍ରତିଭା କ୍ରମବର୍ଦ୍ଧନଶୀଳ ହୋଇଥିବାରୁ ବିଦଗ୍ଧ ଚିନ୍ତାମଣିର ସିଦ୍ଧି ପ୍ରାଥମିକ କାବ୍ୟ ପ୍ରେମ ଚିନ୍ତାମଣିରେ ପରିଲକ୍ଷିତ ହୁଏନା । ପ୍ରେମଚିନ୍ତାମଣିରେ ଯଶୋଦା ବାତ୍ସଲ୍ୟର ଚିତ୍ର ରହିଥିଲେ ମଧ୍ୟ ବିଦଗ୍ଧ ଚିନ୍ତାମଣିର ସାଫଲ୍ୟ ସେଥିରେ ନାହିଁ ।

ଗୋବିନ୍ଦ ଲୀଳାମୃତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ପୂର୍ବାହ୍ନଲୀଳା (୩ୟ ଓ ୪ର୍ଥ ସର୍ଗ) ଆଦର୍ଶରେ ଅଭିମନ୍ୟୁ ରାଧାଙ୍କ ଦ୍ୱାରା ନନ୍ଦଗୃହରେ ପାକକର୍ମ ଓ ସଖାସହ ଶ୍ରୀକୃଷ୍ଣଙ୍କର ଭୋଜନ (ତେଷଠି ଛାନ୍ଦ) ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ଗୋରକ୍ଷାନୁକୂଳ (୬୪ ଛାନ୍ଦ), ଗୋଚାରଣ (୬୬ ଛାନ୍ଦ) ଏବଂ ବିଳମ୍ବରେ ଗୋଚାରଣରୁ ଶ୍ରୀକୃଷ୍ଣଙ୍କ ପ୍ରତ୍ୟାବର୍ତ୍ତନରେ ଯଶୋଦାଙ୍କ ବିଳାପ (୬୭ ଛାନ୍ଦ) ଚିତ୍ରରେ ଯଦ୍ୟପି ଗୋବିନ୍ଦ ଲୀଳାମୃତର ପ୍ରଭାବ ରହିଥିଲେ ମଧ୍ୟ ଅଭିମନ୍ୟୁଙ୍କର ସ୍ୱକୀୟତା ଅଧିକ ପରିସ୍ଫୁଟ । ମାର୍କଣ୍ଡ ଦାସଙ୍କର କେଶବ କୋଇଲିକୁ ଛାଡ଼ିଦେଲେ ଗୋପାଳକୃଷ୍ଣ ତାଙ୍କର କାରୁଣ୍ୟଗର୍ଭିତ ବାତ୍ସଲ୍ୟଭାବର ଚିତ୍ର ପାଇଁ ଅଭିମନ୍ୟୁଙ୍କଠାରେ ଅଧିକ ଋଣୀ ହୋଇଥିବାର ପ୍ରତୀତ ହୁଏ । ଶ୍ରୀକୃଷ୍ଣଙ୍କର ଗୋଚାରଣ ପ୍ରସ୍ତୁତି, ବନଯାତ୍ରା ଓ ପ୍ରତ୍ୟାବର୍ତ୍ତନର ବିଳମ୍ବରେ ଯଶୋଦାଙ୍କର ଉଦ୍‌ବେଗ ଓ ଆଶଙ୍କାର ଚିତ୍ର ସହ ବିଦଗ୍ଧ ଚିନ୍ତାମଣିର ଶଂସିତ ପ୍ରସଙ୍ଗର ବିଭିନ୍ନ ଚିତ୍ରର ସାମଞ୍ଜସ୍ୟ ଦେଖାଯାଏ । କୃଷ୍ଣଙ୍କର ବନଗମନରେ ଗୋପୀମାନେ ଯଶୋଦାଙ୍କ ଅନୁମତି ପ୍ରଦାନ ଜନିତ ନିଷ୍ଠୁରତା ସମ୍ପର୍କରେ ଆକ୍ଷେପ କରିବାର କବି ଯାହା ବର୍ଣ୍ଣନା କରିଛନ୍ତି ତାହା, ବିଦଗ୍ଧ ଚିନ୍ତାମଣିର ନିମ୍ନୋକ୍ତ ବର୍ଣ୍ଣନା ସହ ତୁଳନୀୟ । ଯୁବତୀ ଗୋପୀମାନେ ଚିନ୍ତା କରୁଛନ୍ତି—"ନନ୍ଦ ରାଜାଙ୍କର ବହୁ ସଂଖ୍ୟକ ରକ୍ଷକ ପ୍ରତ୍ୟହ ଗୋରୁ ରକ୍ଷା କରୁଥିଲେ ମଧ୍ୟ ଗୋରକ୍ଷଣ ପାଇଁ ଶ୍ରୀକୃଷ୍ଣଙ୍କୁ ବନକୁ ପଠାଇବା ନନ୍ଦ ଯଶୋଦାଙ୍କ ପକ୍ଷରେ ଉଚିତ ନୁହେଁ । ତାଙ୍କର ନିଜ ହୃଦ ହୋଇଥିଲେ ପ୍ରାଣ ଚାଲିଗଲେ ମଧ୍ୟ ତାଙ୍କୁ କିଏ ତ୍ୟାଗ କରନ୍ତା ! (୧୦୦) ।" ବନକୁ ପଠାଇବାରେ ଯଶୋଦାଙ୍କର କୁଣ୍ଠା ଓ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ହେତୁ ଅପରାହ୍ଣରେ ପୁର ଦ୍ୱାରରେ ନାନା ଚିନ୍ତା ଓ ଆଶଙ୍କାର ଚିତ୍ର ବିଦଗ୍ଧ ଚିନ୍ତାମଣିର (ବିଶେଷତଃ ୬୭ ଛାନ୍ଦର) ଅନୁରୂପ । ତୁଳନା ପାଇଁ କେତୋଟି ଦୃଷ୍ଟାନ୍ତ ଉଦ୍ଧାର କରାଗଲା—

ଗୋପାଳକୃଷ୍ଣ — ଶ୍ରୀନନ୍ଦ ଗୃହିଣୀ ବନ-ପଥକୁ ଚାହିଁ ।
ଭାଳନ୍ତି ଅପରାହ୍ନ-କାଳେ ସିଂହଦ୍ୱାରରେ ରହି ସେ ।୧। (ଦୋଳି ଗୀତ)

---

(୧୦୦) ବି. ଚି., ୬୪।୨୩

ଅଭିମନ୍ୟୁ— (କ) ଷଡହରଣ ବଧିରେ ରବି ଅସ୍ତକୁ ବସିରେ,
ତୋ ଆସିବା ବେଳ ଚାହୁଁ ଥାଇରେ । (ବି. ଚି., ୬୪ । ୩୦)

(ଖ) ରବିକର ଚାହୁଁ ଅଛୁ (ରେ) ଷଡ ମୃଗୀ ପରି ।
ବନସରୁ ନାହିଁ ଲବ (ରେ) ହେଲା ଯୁଗ ସରି । କଳାମାଣିକରେ !
(ବିଦଗ୍ଧ ଚିନ୍ତାମଣି, ୬୭ । ୧୯)

ଗୋପାଳକୃଷ୍ଣ— (କ) ଦୁଃଖୀର ଜୀବନ ଦରିଦ୍ରର ସଂଖାଳି ।
ବେଳ ଗଡ଼ିଗଲା ନଇଲା ମୋର ବନମାଳୀ ଯେ ।
(ଦୋଳଗୀତ ୭ମ ପଦ)

(ଖ) ଦୁଃଖୀର ସଂଖାଳି ଦରିଦ୍ରର ଧନ ମୋ ଶ୍ରୀହରି ।୧।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୨୮୭)

ଅଭିମନ୍ୟୁ — (କ) ତୁ ମୋର ରଙ୍କ ପସରି, ତୋ ବିନୁ ନାହିଁ ଦୋସରି,
କାହା ମୁଖ ଚାହିଁ ନେବି ଦିନରେ । (ବିଦଗ୍ଧ ଚିନ୍ତାମଣି, ୬୪।୩୧)

(ଖ) ନିଧନ ସଞ୍ଜାଳି ମୋର (ରେ) ଦରିଦ୍ର ପସରି ।
ଅନ୍ଧର ଲଉଡ଼ି ବାରୁ (ରେ) ହୃଦରତ୍ନ ହାରି । କଳାମାଣିକରେ !
(ବିଦଗ୍ଧ ଚିନ୍ତାମଣି ୬୭।୬)

ଗୋପାଳକୃଷ୍ଣ — ନବ ନବନୀତଠାରୁ ଦେହ କୋମଳ
ଏ ଖରା ଲାଗି ବହୁଥିବ କେତେ ଶ୍ରମ-ଝାଳ ଯେ ।
(ଦୋଳଗୀତ, ୬ଷ୍ଠ ପଦ)

ଅଭିମନ୍ୟୁ — ଝାଳ ବହୁଥିବ ଅଙ୍ଗୁ (ରେ) ଲାଗି ଝାଞ୍ଜି ଖରା ।
ଶ୍ରମ ପାଇ ତରୁତଳେ (ରେ) ବସୁଥିବ ପରା । କଳାମାଣିକରେ !
(ବିଦଗ୍ଧ ଚିନ୍ତାମଣି, ୬୭।୧୦)

ଗୋପାଳକୃଷ୍ଣ—(କ) କୋଇଲି ନଳିନ ମୃଦୁ ଚରଣ,
ନବବନେ କଣ୍ଟକ ପାଷାଣ । (ଯଶୋଦା କୋଇଲି, ୨୦ଶ ପଦ)

(ଖ) ଛତ୍ର, ଉପାନହ ତୋର, ନେଇ ନାହୁଁ ସଙ୍ଗତର,
ବ୍ୟଥା ପାଇବୁ ମୃଦୁ-ଚରଣରେ ।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ପୃ ୨୯୩)

ଅଭିମନ୍ୟୁ — ନେଲୁ ନାହିଁ କାହିଁ ପାଇଁ (ରେ) ଝିଟା କଠାଉ ଛତା ।
ବନେ କଣ୍ଟା ଲାଗି ହୋଏ (ରେ) ମୃଦୁ ପାଦ ଚିନ୍ତା ।
କଳାମାଣିକରେ ! (ବିଦଗ୍ଧ ଚିନ୍ତାମଣି, ୬୭।୧୧)

ଗୋପାଳକୃଷ୍ଣ — ଶେଯେ ଶୁଆଇଲେ କୋଳରୁ ତୋଳି,
ମା ମା ବୋଲି ଡାକୁ କଣ୍ଠ ପୋଟାଳି ।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ ୨୧୨)

ଅଭିମନ୍ୟୁ — କୋଳେ ଶୋଇଥାଉ ନନ୍ଦ (ରେ) ଭାଙ୍ଗି ଗଲେ ତୋର ।
ଚମକ ମୋ ଗଲା ଛନ୍ଦ (ରେ) ଡାକୁ ମାତା ଗିର ।
କଳାମାଣିକରେ ! (ବିଦଗ୍ଧ ଚିନ୍ତାମଣି, ୬୭।୩୯)

ଗୋପାଳକୃଷ୍ଣଙ୍କ 'ଦୋଳଗୀତ'ରେ ଶ୍ରୀକୃଷ୍ଣଙ୍କର ବେଶଭୂଷାର ବର୍ଣ୍ଣନା ସଂକ୍ଷିପ୍ତ, କିନ୍ତୁ ବିଦଗ୍ଧ ଚିନ୍ତାମଣିରେ (୬୭ଛାନ୍ଦ) ତାହା କିଞ୍ଚିତ୍ ବିସ୍ତୃତ ଅଥଚ ସୁନ୍ଦର—

ଗୋପାଳକୃଷ୍ଣ — ମକର କୁଣ୍ଡଳ ତୋ ଶିଖଣ୍ଡ ମୁକୁଟ ।
ଅଳକାବଳୀର ସୁଷମା ତୋ ଲଲାଟ ପଟ ଯେ ।୧୪।
ନାସା-ବସଣିର ନୂଆ ଆଣି ମୁକୁତା ।
ଲୁଚ୍ଛି ଯାଇ ତୋ କପାଳର ଗୋରୋଚନା ଚିତା ଯେ ।୧୫।
(ଦୋଳଗୀତ)

ଅଭିମନ୍ୟୁ — ମକର କୁଣ୍ଡଳ ଯୁଗ (ରେ) ଆନ୍ଦୋଳେ ଗଣ୍ଡରେ ।
ଦେଖି ଆନନ୍ଦରେ ଭାଷା (ରେ) ନ ଆସେ ତୁଣ୍ଡରେ ।
କଳାମାଣିକରେ ! (ବିଦଗ୍ଧ ଚିନ୍ତାମଣି, ୬୭।୨୦)

ନାକେ କାଦମ୍ବତାର ମୋତି (ରେ) ବସୁଣୀ କି ଶୋଭା !
ମୋ ଆଖି ଦେଖିବାପାଇଁ (ରେ) ନିରବଧି ଲୋଭା । କଳାମାଣିକରେ !
(ବି. ଚି., ୬୭।୧୯)

ଉଭୟ କବିଙ୍କ ରଚନାରୁ ଏହିପରି ବହୁପଦ ତୁଳନାତ୍ମକ ଭାବରେ ଉଦ୍ଧାର କରାଯାଇ-ପାରେ । ବାତ୍ସଲ୍ୟମମତାମୟୀ ଓଡ଼ିଆ ଜନନୀର ଅତି ପରିଚିତ ମନୋଜ୍ଞ ଛବିଟି ଉଭୟ କବିଙ୍କ ରଚନାରେ ଯଶୋଦାଙ୍କ ଚରିତ୍ରରେ ଅତି ଉଜ୍ଜ୍ୱଳ ହୋଇ ଉଠିଛି ।

**ଭକ୍ତଚରଣ ଦାସ**—ଓଡ଼ିଆ ସାହିତ୍ୟରେ ଯଶୋଦାଙ୍କର ବାତ୍ସଲ୍ୟମମତାର ଅନ୍ୟ ଏକ ସ୍ମରଣୀୟ ଆଲେଖ୍ୟ ହେଉଛି ଭକ୍ତ ଚରଣଙ୍କର ମଥୁରାମଙ୍ଗଳର ଯଶୋଦା ବିଳାପ ଛାନ୍ଦ । ଅତି ସରଳ ପ୍ରାଞ୍ଜଳ ଭାଷାରେ କବି ବାତ୍ସଲ୍ୟମମତାଭରା ବ୍ୟଥାତୁରା ଜନନୀ ପ୍ରାଣର (ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରା ହେତୁ) ଯେଉଁ ଆଲେଖ୍ୟ ଅଙ୍କିଛନ୍ତି, ତାହା ଏକାନ୍ତ ସ୍ୱାଭାବିକ ଓ ପ୍ରାଣବନ୍ତ । ଶ୍ରୀକୃଷ୍ଣଙ୍କ ମଥୁରାଯାତ୍ରାର ଆୟୋଜନ ଫଳରେ ଯଶୋଦାଙ୍କୁ ଦଶଦିଗ ଶୂନ୍ୟ ଦେଖାଯାଉଛି, ଜୀବନ ତାଙ୍କର ଅସ୍ଥିର ଓ ରୁଦ୍ଧଶ୍ୱାସ ହୋଇପଡ଼ିଛି । ଶ୍ରୀକୃଷ୍ଣଙ୍କର ଶୈଶବ ଓ ବାଲ୍ୟ କାଳର ପ୍ରତ୍ୟେକ ହାବଭାବ, ପ୍ରତ୍ୟେକ ସ୍ମରଣୀୟ ଘଟଣା ଯଶୋଦାଙ୍କ ସ୍ମୃତିରେ ଆଲୋଡ଼ନ ସୃଷ୍ଟି କରିଛି । ସେ ସମସ୍ତ ସ୍ମରଣ କରି ଆସନ୍ନ ବିଚ୍ଛେଦ ବେଦନାରେ ଜନନୀ ପ୍ରାଣ ଏକାନ୍ତ ବ୍ୟଥିତ ହୋଇପଡ଼ିଛି । ମୁହୂର୍ତ୍ତିକର ବିଚ୍ଛେଦ

ଯଶୋଦାଙ୍କ ପକ୍ଷରେ ଅସହ୍ୟ । ଆଜି କୃଷ୍ଣଙ୍କ ମଥୁରାଯାତ୍ରା ଫଳରେ ଚନ୍ଦ୍ରମୁଖ ଅଦର୍ଶନରେ ଗଭୀର ଜଳରେ ଜୀବନ ହାରିବାକୁ ସାର ହେବ (୪ର୍ଥପଦ) । ଶିଶୁର ବୋଧଜନିତ କେତେକ କ୍ରିୟା କଳାପ (ପାକ ଭାଣ୍ଡ ଭାଙ୍ଗିବା, ସୁମିଷ୍ଟ ପଦାର୍ଥ ଥୁ ଥୁ କରି ଫିଙ୍ଗିବା) ଜନନୀ ପକ୍ଷରେ ସାମୟିକ ବିରକ୍ତିକର ହେଲେ ମଧ୍ୟ ସ୍ମୃତି ଦୃଷ୍ଟିରୁ ଜନନୀ ପକ୍ଷରେ ଏକାନ୍ତ ମଧୁର । ଶିଶୁ ସ୍ୱଭାବର ମନୋଜ୍ଞ ଚିତ୍ର ଦେବାକୁ ଯାଇ କବି ଯଶୋଦାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ଗ୍ରହଙ୍କ ଅନାଇ ଡରୁ ଧାଇଁ ମୋତେ କୋଳ କରୁ
ବସନେ ଘୋଡ଼ାଇ ମୁଖ ଗୋଟି,
ହେଉ ଥାଉ ଥରହର ଦେଖିଲେ ଅନ୍ଧାର ଘର
ଉଚ୍ଚ ପାବଚ୍ଛ ନ ପାରୁ ଉଠିରେ, ଜୀବଧନ ! ।୭।

ନିଶାକାଳେ ମୋର କୋଳେ ଶୋଇଥାଉ ଭ୍ରମବଳେ
ସ୍ୱପନରେ ଦେଖି କଂସ କଂସ,
ମା ବୋଲି ଚମକି ପଡ଼ୁ କଣ୍ଠେ ଦୁଇ ଭୁଜ ଭିଡ଼ୁ
ପୁଣି ଶୋଉ ଘୋଡ଼ି ହୋଇ ବାସରେ, ଜୀବଧନ ! ।୮।

'କେଶବ କୋଇଲି' ଓ 'ଯଶୋଦା ବିଳାପ'ର ବିଷୟ ବସ୍ତୁଠାରୁ ଗୋପାଳକୃଷ୍ଣଙ୍କର 'ଯଶୋଦା କୋଇଲି' ଓ 'ଦୋଳଗୀତ'ର ବିଷୟବସ୍ତୁ ପୃଥକ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ଶୈଶବ ଓ କୈଶୋରର ହାବଭାବ ତଥା ସ୍ୱଭାବର ଆଲେଖ୍ୟ ଅଙ୍କନରେ କିଞ୍ଚିତ ସାମଞ୍ଜସ୍ୟ ଲକ୍ଷିତ ହେବା ସ୍ୱାଭାବିକ । କିନ୍ତୁ ତୁଳନାତ୍ମକ ଭାବରେ ବିଚାର କଲେ ଭାଷା, ପ୍ରକାଶ ଭଙ୍ଗୀ ଓ ପ୍ରାଣର ଆବେଗ ଦୃଷ୍ଟିରୁ ମଥୁରାମଙ୍ଗଳର ଏହି ଛାନ୍ଦ ଅପେକ୍ଷା ଅଭିମନ୍ୟୁଙ୍କ 'କଳାମାଣିକ' ଛାନ୍ଦ (ବିଦଗ୍ଧ ଚିନ୍ତାମଣି, ଛାନ୍ଦ ୬୭) ଓ ଗୋପାଳକୃଷ୍ଣଙ୍କ 'ଉଠିଲୁ ଏତେ ବେଗି କାହିଁକି' ଗୀତର ଆବେଦନ ଓଡ଼ିଆ ପାଠକ ଚିତ୍ତରେ ଅତି ନିବିଡ଼ ।

**ଦୀନକୃଷ୍ଣ ଦାସ**—ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ପ୍ରସଙ୍ଗରେ (୫ମ ଓ ଷଷ୍ଠଛାନ୍ଦ) ନନ୍ଦ ଓ ଯଶୋଦାଙ୍କର ବାତ୍ସଲ୍ୟ ମମତାର ମଞ୍ଜୁଳ ଚିତ୍ର ରହିଛି । ବର୍ଣ୍ଣନାତ୍ମକତା ସତ୍ତ୍ୱେ ଛାନ୍ଦ ଦୁଇଟି ଗୀତଧର୍ମିତାର ଆବେଦନରୁ ବଞ୍ଚିତ ନୁହେଁ । ପ୍ରସଙ୍ଗାନୁରୋଧରେ କବି କେବଳ ବାତ୍ସଲ୍ୟର ସାଧାରଣ ସଙ୍କେତ ମାତ୍ର ଦେଇଛନ୍ତି, କିନ୍ତୁ ସ୍ୱତନ୍ତ୍ର ଭାବରେ ଚିତ୍ରର କୈନ୍ଦ୍ରିକ ଏକମୁଖିନତା ନାହିଁ । ତଥାପି କବିଙ୍କର କାନ୍ତକୋମଳ ପଦ ସଂଯୋଜନର ମାଧୁର୍ଯ୍ୟରେ ବାଲ୍ୟଲୀଳା ଓ ବାତ୍ସଲ୍ୟ-ଚିତ୍ର କମ୍ ଉପଭୋଗ୍ୟ ନୁହେଁ । ଗୋପାଳକୃଷ୍ଣଙ୍କ ରଚନାରେ କବିଙ୍କର ଭାବଚିତ୍ର ଓ ପଦପରମ୍ପରାର ଛାୟା ଦୁର୍ଲଭ ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ—

କରଜାନୁରେ କରନ୍ତେ ଗମନ । କଟିତଟେ କରେ କିଙ୍କିଣୀ ସ୍ୱନ । (୫।୨)
କେତେବେଳେ ଧୂଳି ହୋଅନ୍ତି ବୋଳା । କରେ ଧରି ମାଟ୍ଟେ ହୋଅନ୍ତି ଚଳା । (୫।୪)

କଲାକଳେବର ଧୂଳି ଧୂସର । କଟିରେ କିଙ୍କିଣୀ ନାହିଁ ଅମ୍ବର ।
କାକର ପ୍ରାପ୍ତେ ଝାଳ ବିନ୍ଦୁ ବିନ୍ଦୁ । କଳିତ କରିଛୁ ଶ୍ରୀମୁଖଇନ୍ଦୁ । (୫।୨୪)

ପୁଣି ଅନ୍ୟତ୍ର—

କେତେବେଳେ ବନେ ଗୋପସୁତ ମେଳେ ନବନୀତ ଧେନୁ ପଳାନ୍ତି ।
କେତେବେଳେ ଚୁରି କର୍ମରୁ ବିରତି କରି ଜନନୀଙ୍କି ଚଳାନ୍ତି ।
କେତେବେଳେ ସେ । କୋଳକୁ ଗୋଳ କରି ରାଗେ ।
କେତେବେଳେ ଜାନୁ କଣ୍ଠେ କଣ୍ଠିଛନ୍ଦ କାଖରେ ବସନ୍ତି ସରାଗେ (୬।୨)

**କୃଷ୍ଣଦାସ କବିରାଜ**— ଗୋପାଳକୃଷ୍ଣଙ୍କ ରଚନାରେ ଗୋବିନ୍ଦ ଲୀଳାମୃତ ମହାକାବ୍ୟ, ଦ୍ୱାରକାନାଥ ଠାକୁରଙ୍କର 'ଶ୍ରୀ ଶ୍ରୀ ଗୋବିନ୍ଦ ବଲ୍ଲଭ ନାଟକମ୍' ଏବଂ ବୈଷ୍ଣବ ପଦାବଳୀ ରଚନାର ପ୍ରଭାବ ସ୍ଥାନେ ସ୍ଥାନେ ପରିଦୃଷ୍ଟ ହୁଏ । ରାଧାଙ୍କୁ ବଧୂ କରିବାର ବାସନା ମନରେ ପୋଷଣ କରି ଯଶୋଦା ଶ୍ରଦ୍ଧାରେ ପୁରକୁ ନିମନ୍ତ୍ରଣ କରି ଆଣି ଉପଯୁକ୍ତ ଉପଚାରରେ ତୃପ୍ତ କରିବା ଏବଂ ଓଲଟି ହୋଇ ବିଦାୟ ବେଳରେ ରାଧା ନିଜର ବଧୂ ପ୍ରାପ୍ତ ପ୍ରତୀତ ହେବା (ଯଶୋଦା କୋଇଲି, ୨୫ଶ ଓ ୨୬ଶ ପଦ) ଚବିଟି ଗୋବିନ୍ଦ ଲୀଳାମୃତରେ ପରିଲକ୍ଷିତ ହୁଏ । କୃଷ୍ଣଦାସ କବିରାଜଙ୍କ ବର୍ଣ୍ଣନାନୁଯାୟୀ ଯଶୋଦାଙ୍କ ନିମନ୍ତ୍ରଣରେ ନନ୍ଦ ଗୃହାଗତା ରାଧାଙ୍କ ପ୍ରସ୍ତୁତ ସୁମିଷ୍ଟ ଭୋଜ୍ୟରେ ସଖା ସହ ଶ୍ରୀକୃଷ୍ଣ ତୃପ୍ତି ଲାଭ କରିବା ପରେ ରାଧା ସଙ୍ଗୀ ଧନିଷ୍ଠା ପ୍ରଦତ୍ତ ଅନ୍ନ ଶ୍ରୀକୃଷ୍ଣଙ୍କ ପାତାବଶିଷ୍ଟ ଅନ୍ନ ସହିତ ବ୍ରୀଡ଼ାନତ ମୁଖରେ ଭୋଜନ କଲେ । ଯଶୋଦା ରାଧାଙ୍କୁ ଭାବୀ ବଧୂ କରିବା ଅଭିଳାଷ ମନରେ ପୋଷଣ କରି ବିବାହୋପଯୋଗୀ ଯେଉଁ ସବୁ ଆଭରଣ ପ୍ରସ୍ତୁତ କରି ସମ୍ପୁଟ (ଫରୁଆ) ମଧ୍ୟରେ ଯତ୍ନ ପୂର୍ବକ ରଖିଥିଲେ ଧନିଷ୍ଠା ଦ୍ୱାରା ସେହି ସବୁ ଭୂଷଣ ଏବଂ ତାମ୍ବୁଳ, ଚନ୍ଦନ, ସିନ୍ଦୂର ଓ ନୂତନ ବସ୍ତ୍ର ଆଣି ରାଧାଙ୍କୁ ସ୍ନେହାର୍ଦ୍ର ଚିତ୍ତରେ ସମର୍ପଣ କରି ପରମ ପ୍ରୀତି ଲାଭ କଲେ (୧୦୧) ।

**ଦ୍ୱାରକାନାଥ ଠାକୁର**—କବି ଯଶୋଦାଙ୍କ ଅନୁଶୋଚନାରେ ଶ୍ରୀକୃଷ୍ଣଙ୍କର ଗୋଚାରଣ ଜନିତ କାନନ ପଥର କଷ୍ଟ କଥା ଯାହା ବର୍ଣ୍ଣନା କରିଛନ୍ତି (୧୦୨) (ଯଶୋଦା-ବିଳାପ, ଦୋଳଗୀତ, ଅପରାହ୍ନେ ନନ୍ଦରାଣୀଙ୍କ ଭାବନା, ପୂର୍ବାହ୍ନେ କୃଷ୍ଣଙ୍କ ପ୍ରତି ଯଶୋଦାଙ୍କ ଉକ୍ତିରେ) ତା'ର ଅନୁରୂପ ବର୍ଣ୍ଣନା ଦ୍ୱାରକାନାଥ ଠାକୁରଙ୍କର ଗୋବିନ୍ଦ ବଲ୍ଲଭ ନାଟକରେ ରହିଛି । ଯଶୋଦାଙ୍କ ମୁଖରେ (ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି) କବି ପ୍ରକାଶ କରିଛନ୍ତି—

ତାତ ! ବନେ କଠିନେ କଥମିବ ଭବତା ଯାତମ୍ ।
ମୃଦୁତମ-ପାଦସରୋଜଯୁଗେନ ଚ ଚଞ୍ଚଳଗୋଧନଜାତମ୍ । ଧ୍ରୁ ।

(୧୦୧) ଗୋ. ଲୀ. ମୃ., ୪।୭୦

(୧୦୨) ଗୋ. କୃ. ଗ୍ର., ପୃ. ୨୯୩

କୋମଳ-ପଦଯୁଗମର୍କଗଭସ୍ତ୍ୟତିତପ୍ତରଜୋଭିରଦ୍ରୂନମ୍ ।
କତି କଥି ତୀକ୍ଷ୍ଣକୁଶାଙ୍କୁରକେଣ ଚ ବିଦ୍ଧମିଦଂ ବତ ନୂନମ୍ ।୧।
ଗୋଧନ-ଗଣ ସହ ଧାବନ-ଖିନ୍ନତନ୍ୱୋ ଭବତାଦ୍ଧିବୁଭୁକ୍ଷଣେମ୍ ।
ମ୍ଳାନବଦନ ! ହତଭ୍ରମତଦ୍ଦୂରଗତେନ ନ ଭୁକ୍ତଂ ଭକ୍ଷ୍ୟମ୍ ।୨।
ଜୀବନ ! ତବ ବିରହଜ୍ୱର-ଜୀର୍ଣ୍ଣବପୁଃ କିଲ ସକଳଦିନେଽହମ୍ ।
କୃଷ୍ଣ ଗତା କିମକାର୍ଯ୍ୟମିଦଂ ନ ଜାନନ୍ତି ମନୋଭବଦାହମ୍ ।୩।
(ଗୋ. ବ. ନା., ଦଶମୋଽଙ୍କଃ, ପୃ ୧୦୦)

ଘର ଦ୍ୱାରରେ ଉତ୍କଣ୍ଠିତ ପ୍ରାଣରେ ପ୍ରତୀକ୍ଷିତା ଜନନୀ ଯଶୋଦାଙ୍କ କର୍ଣ୍ଣରେ ଧେନୁ, ସଖା ସହ ପ୍ରତ୍ୟାଗତ ଶ୍ରୀକୃଷ୍ଣଙ୍କ ମୁରଲୀନାଦ ଶ୍ରୁତହେବାରୁ ତାଙ୍କର ଆନନ୍ଦ ଓ ମଙ୍ଗଳୋତ୍ସବ ମଧ୍ୟରେ ଚୁମ୍ବନ ଦେଇ ତାଙ୍କୁ ସ୍ୱାଗତ କରିବାର ଚିତ୍ର (୧୦୩) ଗୋବିନ୍ଦବଲ୍ଲଭ ନାଟକର ନିମ୍ନୋକ୍ତ ବର୍ଣ୍ଣନା ତୁଳନୀୟ । ଏହି ନାଟକରେ ନନ୍ଦ ଦୂରରୁ ଶ୍ରୀକୃଷ୍ଣଙ୍କ ମୁରଲୀ ଧ୍ୱନି ଶୁଣି ଆନନ୍ଦରେ ଶୋକବିହ୍ୱଳା ଯଶୋଦାଙ୍କୁ ସମ୍ବାଦ ଦେବାପାଇଁ ଏକ ଦୂତ ପ୍ରେରଣ କରନ୍ତି । ଦୂତ ଯଶୋଦାଙ୍କୁ ସାନ୍ତ୍ୱନା ଦେଇ କହେ—

ଯଶୋଦେ ! ମା କୁରୁ ଖେଦଂ ମାତଃ !
ଏଷ ସମେତି ସୁତସ୍ତବ ବାଳକ-ଗୋଗଣ-ବୀତଃ । ଧ୍ରୁ ।
ସତ୍ୟଂ ତନ୍ମୁଖ-ମୁଖରିତ-ବେଣୁରବାମୃତ ପୂରମ୍ ।
ସ୍ୱେନ ଚ କର୍ଣ୍ଣଯୁଗେନ ନିପୀୟ ସମେମ୍ୟବଦୂରମ୍ ।୧।
ପ୍ରାପ୍ସ୍ୟସି ତମଚିରତଃ ସଦନେ ନୟନୋତ୍ସବରୂପମ୍ ।
ତ୍ୱମପି ଚ ଦତ୍ତମନାଃ ଶୃଣୁ ବେଣୁଲଲିତମାଲାପମ୍ ।୨।
ବିରଚୟ ମଙ୍ଗଳ-ରଚନବିଧିଂ ପରିତୋ ବହୁପୁଣ୍ୟେ ।
ତେନତୁ ବିଶତୁ ସ ଗୋପକଳାନିଧିରଙ୍ଗବରେଣ୍ୟେ ।୩।
(ଗୋ. ବ. ନା., ଦଶମୋଽଙ୍କଃ, ପୃ-୯୫)

ବିଳମ୍ବ ହେତୁ କବି ଜନନୀ ଯଶୋଦାଙ୍କର ଉତ୍କଣ୍ଠା ଓ ବ୍ୟାକୁଳତାର ଯେପରି ଚିତ୍ର ବିଭିନ୍ନ କବିତାରେ ଆଙ୍କିଛନ୍ତି, ଦ୍ୱାରକାନାଥ ଗୋବିନ୍ଦବଲ୍ଲଭ ନାଟକରେ କିଞ୍ଚିତ୍ ଭିନ୍ନ ଭାବରେ ସେହି ଜାତୀୟ ଚିତ୍ର ଦେଇଛନ୍ତି । ସେ ଶ୍ରୀକୃଷ୍ଣଙ୍କୁ ଜନନୀ-ବେଦନା ସଚେତନ କରାଇଛନ୍ତି । ବିଳମ୍ବ ହେତୁ ଜନନୀ ବ୍ୟସ୍ତ ହୋଇ ଅଶ୍ରୁଳ ନୟନରେ ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ପଥକୁ ଚାହିଁ ରହିଥିବେ : ଏହା ଅନୁମାନ କରି ଶ୍ରୀକୃଷ୍ଣ ବଳରାମଙ୍କୁ କହୁଛନ୍ତି—

ମନ୍ୟେ ସଂପ୍ରତି ସଦନ ଭୁବୋ ଦ୍ୱାରମୁପେତା ।
ପଶ୍ୟତି ସଜଳଦୃଶାଗମମାର୍ଗମସ୍ମେ ମମ ମାତା ।୧।
(ଗୋ. ବ. ନା., ନବମୋଽଙ୍କଃ)

(୧୦୩) ଯଶୋଦା କୋଇଲି, ଗୋ. କୃ. ଗ୍ରଂ., ପୃ-୨୮୩ ଓ ଦୋଳଗୀତ, ଗ୍ର. ପୃ ୨୮୭

ପୁଣି ସୂର୍ଯ୍ୟ ଅସ୍ତାଚଳ ଚୂଡ଼ାବଲମ୍ବୀ ହେବାର ଦେଖି ସଚକିତ ଶ୍ରୀକୃଷ୍ଣ ସଖାମାନଙ୍କୁ କ୍ରୀଡ଼ା ରହିତ କରିବାକୁ ନିର୍ଦ୍ଦେଶ ଦେଇ କହୁଛନ୍ତି —

ସଖିବୃନ୍ଦ ହେ ସଂହର ସଂପ୍ରତି ଖେଳାମ୍ ।
ଆହ୍ୱର ଗୋଗଣମପି ଗଣୟାଶ୍ୱବନେଜସ୍ୟ ପରିଣତବେଲାମ୍ ।ଧ୍ରୁ।
ଯା ତୁ ମଦୀୟ-ବିଳମ୍ବନ-କାରଣ କା ବିଦୂଷୀ ଖଳୁ ମାତା ।
ଅନୁଭବଦୀୟ ଜନନୀ ପରିବେଦଦତ ବିଲପତି ମାର୍ଗମୁପେତା ।
(ଗୋ. ଚ ନା., ନବମୋଽଙ୍କଃ)

**ବୈଷ୍ଣବ ପଦାବଳୀ** —କବିଙ୍କ ଗୀତ ଗୁଡ଼ିକ ପାଠ କରୁ କରୁ ବଙ୍ଗୀୟ ବୈଷ୍ଣବ ପଦାବଳୀର ବିଭିନ୍ନ ପଦ ଓ ପଦର ଛନ୍ଦ ବିଶେଷ ସ୍ମରଣକୁ ଆସିଯାଏ । ତୁଳନା ପାଇଁ ଉଭୟ ପ୍ରକାର ରଚନାରୁ କେତୋଟି ପଦ ଓ ପାଦ ଉଦ୍ଧାର କରାଗଲା —

କ) ସଞ୍ଜ ପାଇଲେ ଗୋଷ୍ଠୁ ଗୋପାଳ, ଆଲୋ !
ରଖୁଆଳ ସଙ୍ଗେ ନେଉଛୁ କାଳ ଲୋ ! ।୨।
(ଯଶୋଦା କୋଇଲି, ଗୋ. କୃ. ଗ୍ର., ପୃ-୨୮୩)

ପଦାବଳୀ— ବନ୍ଧୁ କୈଲ ଗୋପ-ଜାତି ଗୋଧନ-ପାଳନ-ବୃତ୍ତି
ତେଞି ବନେ ପାଠାଇୟା ଦିବ ।
(ବୈ. ପ., ନଂ ୭, ପୃ-୧୭)

ଖ) ଧେନୁ ପଛେ ବୁଲୁଁ ବଥାଇଲେ ପ୍ରପଦ ।
କେତେଠାରେ ବିନ୍ଧୁ ଥିବଟି ମୋ ନେତ୍ର-ସଂପଦ ଯେ ।୧୭।
(ଦୋଳଗୀତ, ଗୋ. କୃ. ଗ୍ରଂ., ପୃ-୨୮୬)

ପଦାବଳୀ— ଚଞ୍ଚଳ ବାଛୁରୀ ସନେ କେମନେ ଧାଇଁବା ବନେ
କୋମଳ ଦୁଖାନି ରାଙ୍ଗା ପାୟ ।
(ବୈ. ପ., ନଂ. ୬, ପୃ-୧୬)

ଗ) କରମାଳୀ କର ଲାଗି ଲୁଲିଯିବ,
ଶିରୀଷ କୋମଳ ଅପଘନରେ ।୪।
(ଗୋ. କୃ. ଗ୍ରଂ, ପୃ-୨୯୨)

ପଦାବଳୀ— ଥାକିହ ତରୁର ଛାୟ ମିନତି କରିଛେ ମାୟ
ରବି ଯେନ ନା ଲାଗୟେ ଗାୟ । (ବୈ. ପ., ନଂ ୮, ପୃ ୧୮)

ଘ) ଘେନୁଛୁ ମୁଁ ଆଜ୍ଞା ବୋଲି ମାଗି, ଆଲୋ !
ଘନଶ୍ୟାମ ଯା ହୋଇଲା ଓଳଗି ଲୋ ! ।୪।
(ଯଶୋଦା କୋଇଲି, ଗୋ. କୃ. ଗ୍ରଂ., ପୃ ୨୭୮)

ପଦାବଳୀ— ପ୍ରଭାତେ କରମ୍ଭା ମାସ୍ତ ଚଳିଲ ଯାଦବ ରାୟ
ଆଗେ ପାଛେ ଧାୟ ଶିଶୁଗଣ ।
(ବୈ. ପ., ନଂ ୧୦, ପୃ ୧୯)

**ପାହାନ୍ତ ଅବକାଶ**—ଗୁଜୁରୀ ଭାଷାରେ 'ପ୍ରଭାତୀଆ ସଙ୍ଗୀତ' ପରି (ନରସିଂହ ମେହେଟା) ଓଡ଼ିଆରେ କେତେକ 'ପାହାନ୍ତ ଅବକାଶ' (ଶିଶୁ କୃଷ୍ଣଙ୍କର ଶଯ୍ୟା ତ୍ୟାଗକୁ ଭିତ୍ତି କରି) ଗୀତ ରଚିତ ହୋଇଛି । ଭଗବତୀ ପୌର୍ଣ୍ଣମାସୀ ଓ ସଖାମାନଙ୍କ ଉପସ୍ଥିତି ଓ ଅହ୍ୱାନରେ ନିଦ୍ରାତ୍ୟାଗ କରିବା ପାଇଁ ଯଶୋଦା ଶ୍ରୀକୃଷ୍ଣଙ୍କୁ ସ୍ନେହସିକ୍ତ ମଧୁ-ବାଣୀ ଶୁଣାଉଛନ୍ତି । ଗୋପାଳକୃଷ୍ଣଙ୍କର 'ପାହାନ୍ତ ଅବକାଶ' ଗୀତଟି ପାଠ କଲେ ଭକ୍ତକବି ବନମାଳୀଙ୍କର 'ପ୍ରଭାତ ଅବକାଶ' ଓ ପ୍ରଭାତ ଶୀର୍ଷକ ଦୁଇଟି ଗୀତ (୧୦୪) ସ୍ମରଣକୁ ଆସେ । ପ୍ରଥମ ଗୀତଟି ବାତ୍ସଲ୍ୟଭାବ ମୂଳକ, ଅନ୍ୟଟି ସଖ୍ୟଭାବାତ୍ମକ । 'ପ୍ରଭାତ ଅବକାଶ' ଗୀତଟିରେ କବି ଯଶୋଦାଙ୍କ ଉଦ୍‌ବୋଧନରେ ସଖାମାନଙ୍କ ସହିତ ଗୋଷ୍ଠକୁ ଯିବାପାଇଁ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ କରାଯିବାର ଏବଂ 'ପ୍ରଭାତ' ଗୀତଟିରେ ସଖାମାନଙ୍କ ଦ୍ୱାରା ନିଦ୍ରା ଭଙ୍ଗର ବର୍ଣ୍ଣନା କରିଛନ୍ତି । ପରମ୍ପରା କ୍ରମେ ଗୋପାଳକୃଷ୍ଣ ଏ ଗୀତ ରଚନା କଲେ ମଧ୍ୟ ବନମାଳୀଙ୍କ ପରି ଏଥିରେ ସେପରି ଭାବଗତ ଚମତ୍କାରିତା ନାହିଁ ।

**ବୋହୂଣୀ ପ୍ରତି ଯଶୋଦା**—'ବୋହୂଣୀ ପ୍ରତି ଯଶୋଦା' ଶୀର୍ଷକ ଗୀତଟି କବିଙ୍କ କଳ୍ପନା କୁଶଳତାର ଏକ ମନୋଜ୍ଞ ନିଦର୍ଶନ । ଅନିନ୍ଦ୍ୟ ରୂପଲାବଣ୍ୟମୟୀ ସର୍ବ ସୁଲକ୍ଷଣୀ ଯେଉଁ ରାଧାଙ୍କୁ ବଧୂ ରୂପେ ଲାଭ କରିବା ପାଇଁ ଯଶୋଦା ଅଭିଳାଷ ପୋଷଣ କରିଛନ୍ତି, ରଜନୀରେ ସ୍ୱପ୍ନାବେଶରେ ଦେଖୁଛନ୍ତି ତାଙ୍କୁ ପ୍ରକୃତ ବଧୂ ରୂପରେ । ନୂତନ ବସ୍ତ୍ର ଭୂଷଣରେ ଭୂଷିତା ହୋଇ ନବବଧୂପରି ତାଙ୍କର ପାଦରେ ରାଧା ପ୍ରଣାମ କରନ୍ତେ, ଯଶୋଦା ତାଙ୍କୁ ଆନନ୍ଦରେ ଛାତିରେ ଟେକି ଧରନ୍ତି । ଶ୍ରୀକୃଷ୍ଣ-ବକ୍ଷର ଶୁଭ୍ର ମଲ୍ଲିକାହାର କାଢ଼ିନେଇ ଶ୍ରଦ୍ଧାରେ ହସି ହସି ରାଧାଙ୍କର କୃଷ୍ଣକେଶରେ ପିନ୍ଧାଇ ଦିଅନ୍ତି । ରାଧାଙ୍କର ଉପସ୍ଥିତିରେ ତାଙ୍କର ମନେ ହେଉଥାଏ : ପରମଲକ୍ଷ୍ମୀ ମୂର୍ତ୍ତି ସତେ ଯେପରି ତାଙ୍କର ଘରରେ ଉଦ୍ଭାସିତ ହୋଇଛନ୍ତି । ସମସ୍ତ ମଙ୍ଗଳ (ଶ୍ରେୟ) ସତେ ଯେପରି ଗୃହରେ ପୂର୍ଣ୍ଣ ହୋଇଯାଇଛି (୧୦୫) । ଶ୍ୟାମ ସୁନ୍ଦର ଗୃହକୁ ଆସନ୍ତେ ରାଧା ବଧୂ ସୁଲଭ ବ୍ରୀଡ଼ା ହେତୁ ପଛକୁ ଘୁଞ୍ଚି ଯାଉଥାନ୍ତି । ଏ ନୟନ-ସୁଭଗ ଦୃଶ୍ୟରେ କୋଟିନିଧି ପାଇଲି ପରି ତାଙ୍କର ମନେ ହେଉଥାଏ । ପୀଠରେ ଆସି ନ ବସୁଣୁ ରାଧା ଭୋଜ୍ୟ ବାଢ଼ିଦେଇ ରନ୍ଧନ-ଗୃହରେ ଗୃହିଁଥାନ୍ତି । ଶ୍ରୀକୃଷ୍ଣଙ୍କ ଭୋଜନ ପରେ ସାଧ୍ୱୀ ନାରୀ ସ୍ୱାମୀର ଉଚ୍ଛିଷ୍ଟକୁ ନୈବେଦ୍ୟ ପାଇଲି ପରି ରାଧା ତାଙ୍କର ଭୁକ୍ତାବଶେଷ ପାଖରେ ବସନ୍ତି । ଯଶୋଦାଙ୍କର ରାଧାଙ୍କୁ ବଧୂ-ରୂପେ ଲାଭ କରିବାର ଅଭିଳାଷ, ଶ୍ରୀକୃଷ୍ଣଙ୍କର ସ୍ୱନକ୍ଷତ୍ରରେ ତାଙ୍କୁ ନିମନ୍ତ୍ରଣ କରି ଆଣି ତାଙ୍କ ହସ୍ତର ଅମୃତ ସ୍ପର୍ଶରେ ଅମୃତ ତୁଲ୍ୟ ଭୋଜ୍ୟ ପ୍ରସ୍ତୁତ କରାଇବା, ତାଙ୍କ ହସ୍ତରେ

(୧୦୪) ବନମାଳୀ ପଦାବଳୀ, ୨ୟ ସଂ., ସଂ : ବୈ. ଚ. ଦାସ, ପୃ ୧୦/୧୯୦
(୧୦୫) ଗୋ. କୃ. ଗ୍ରଂ., ପୃ-୨୧୦

କୃଷ୍ଣଙ୍କୁ ଭୋଜ୍ୟ ପରିବେଷଣ କରାଇବା, ତାଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କର ଅଧରାମୃତ (ଉଚ୍ଛିଷ୍ଟ) ସେବନ ଏବଂ ବସ୍ତ୍ରାଲଙ୍କାରରେ ଭୂଷିତ କରି ତାଙ୍କୁ ବିଦାୟ ଦେବାର କଳ୍ପନା କୃଷ୍ଣ ଦାସ କବିରାଜଙ୍କର ହୋଇଲେ ମଧ୍ୟ ସ୍ୱପ୍ନରେ ବଧୂ ରୂପରେ ଲାଭ କଳ୍ପନାଟି କବିଙ୍କର ନିଜସ୍ୱ । ଯେ କୌଣସି ଜନନୀ ପକ୍ଷରେ ସୁଲକ୍ଷଣା କନ୍ୟାଟିଏ ବଧୂରୂପେ ଲାଭ କରିବା ପରମ ଆନନ୍ଦର ବିଷୟ । କବି ଯଶୋଦାଙ୍କର ସ୍ୱପ୍ନ ବ୍ୟାଜରେ ରାଧାଙ୍କୁ ତାଙ୍କର ବଧୂ ରୂପରେ ଲାଭଜନିତ ଆନନ୍ଦର ଆଲେଖ୍ୟ ଦେବା ଦ୍ୱାରା ନୈସର୍ଗିକ ବାତ୍ସଲ୍ୟଭରା ଜନନୀ ହୃଦୟର ରସୋଚ୍ଛଳ ଚିତ୍ର ଅଙ୍କନ କରିଛନ୍ତି । ଏ ପ୍ରକାର ଅଲେଖ୍ୟ ଆମ ଉତ୍କଳର ଗୃହକୋଣର ଏକ ନବବଧୂର ନେତ୍ର ସୁଭଗ ଆଗମନର ମଧୁର ସ୍ମୃତି ଜାଗରିତ କରାଏ । ରାଧା ଯଶୋଦାଙ୍କ ନେତ୍ରରେ ମଙ୍ଗଳମୟୀ ପରମାଲକ୍ଷ୍ମୀ ପ୍ରାୟ ପ୍ରତୀତ ହେବା, ତାଙ୍କର ବଧୂ-ସୁଲଭ ଲଜ୍ଜା, ଏବଂ ପାକଶାଳାରେ ପ୍ରିୟତମଙ୍କ ନିମିତ୍ତ ସ୍ୱହସ୍ତରେ ଭୋଜ୍ୟ ପରିବେଷଣର ଚିତ୍ର ବାତ୍ସଲ୍ୟମମତାମୟୀ ଜନନୀ ଯଶୋଦାଙ୍କ ନିକଟରେ ଅପୂର୍ବ ଓ ଅନନ୍ୟ । ଯଶୋଦାଙ୍କର ଏ କଳ୍ପନାରେ ମନୋରାଜ୍ୟର ଏକ ସତ୍ୟର ଚମତ୍କାର କାବ୍ୟିକ ପ୍ରତିଫଳନ ଘଟିଛି, ତାହା ହେଉଛି : ମନୁଷ୍ୟ ଅଭିଳଷିତ ବସ୍ତୁକୁ ସ୍ୱପ୍ନ ରାଜ୍ୟରେ ବାସ୍ତବରୂପେ ଦର୍ଶନ କରି କିଛିକାଳ ପାଇଁ ବିଶେଷ ଆନନ୍ଦ ଅନୁଭବ କରେ । ଏ ଦୃଷ୍ଟିରୁ ବିଚାର କଲେ ଏ ସ୍ୱପ୍ନର କାବ୍ୟିକ ପରିକଳ୍ପନାରେ ଯଶୋଦା ଚରିତ୍ରରେ ଏକ ଗଭୀର ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଛି । ସ୍ୱପ୍ନର ଆନନ୍ଦକୁ କବି କେବଳ ଯଶୋଦାଙ୍କଠାରେ ସୀମିତ ନକରି ରୋହିଣୀଙ୍କୁ ଶ୍ରବଣ କରାଇବା ଦ୍ୱାରା ତାହା ସାର୍ବଜନୀନ କରିଛନ୍ତି । ଗୀତଟିର ଭାବ କଳ୍ପନା ମୌଳିକ ନହେଲେ ମଧ୍ୟ ସହୃଦୟଙ୍କ ପକ୍ଷରେ ରସ ସୌଷ୍ଠବରେ ଅତି ଚମତ୍କାର ଓ ସ୍ୱାଦ୍ୟ ।

ସତ୍ୟେନ୍ଦ୍ର କୁମାର ପାଣିଗ୍ରାହୀ ସଂକଳିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ (୧ମଭାଗ) ଅଧିକ ଗୁଡ଼ିଏ ବାତ୍ସଲ୍ୟଭାବମୂଳକ ଗୀତର ସନ୍ନିବେଶ ହୋଇଛି । ତନ୍ମଧ୍ୟରୁ 'କୋଳ ଧରିନେବରେ' (ପୃ-୩୪), 'କଳାକାହ୍ନୁ ଉଠରେ' (ପୃ-୧୯୨) ଓ 'ବସ୍ତ୍ରା ଚରାଇ ଯିବ ମା' (ପୃ-୩୨୮) ଗୀତ ଗୁଡ଼ିକ ଗୋପାଳକୃଷ୍ଣଙ୍କର ପ୍ରତିଷ୍ଠିତ ଗୀତ ତୁଳନାରେ କବିତ୍ୱ ଦୃଷ୍ଟିରୁ ଯେ ନିକୃଷ୍ଟ ଶ୍ରେଣୀର, ଏହା ସ୍ପଷ୍ଟ ଜଣା ପଡ଼ିଯାଏ । ରଚନା ଅନେକାଂଶ ନୀରସ, ଗଦ୍ୟଧର୍ମୀ, ପ୍ରତ୍ୟକ୍ଷ ଓ ସୌନ୍ଦର୍ଯ୍ୟବିହୀନ । ଚିତ୍ର ଓ ଭାବାଭିବ୍ୟକ୍ତି କବିତ୍ୱହୀନ । ଭାଷା ଓ ପଦ ପ୍ରୟୋଗରେ ସମତାର ଅଭାବ (ବସ୍ତ୍ରା ଚରାଇ ଯିବ ମା) ଲକ୍ଷିତ ହୁଏ । ମନେହୁଏ : ଏ ରଚନା ଗୋପାଳକୃଷ୍ଣଙ୍କର ନୁହେଁ; ସାମ୍ପ୍ରତିକ କାଳର କୌଣସି କବିମନ୍ୟ ବ୍ୟକ୍ତିର ଅପଚେଷ୍ଟା ମାତ୍ର । 'ନୀଳହୀରା ! ଲୁଚି ଯିବ ମୁଁ ତୋହ ପାଇଁ କି' (ପୃ-୩୨୫) ଗୀତଟିରେ (ଲବଣୀ ଚୋରି ଜନିତ ନିନ୍ଦାରେ ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କୁ ସସ୍ନେହ ଭର୍ତ୍ସନା) ପୂର୍ବୋକ୍ତ ଦୋଷ ବିଶେଷ ପରିଲକ୍ଷିତ ନହେଲେ ମଧ୍ୟ କେତେକ ପଦପ୍ରୟୋଗ ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ଏହା ଗୋପାଳକୃଷ୍ଣଙ୍କର ବୋଲି ସନ୍ଦେହ ଜାତ ହୁଏ ।

# ସପ୍ତମ ପରିଚ୍ଛେଦ

## ବିଭିନ୍ନ ଦିଗର ଆଲୋଚନା (୩)

## ରାଧାକୃଷ୍ଣଙ୍କର ପ୍ରେମଲୀଳାମୂଳକ ଗୀତ

### କାହାଣୀ କ୍ରମରେ ଗୀତିଗୁଡ଼ିକର ସଜ୍ଜୀକରଣ ଓ ଗୀତିନାଟ୍ୟର ଆବେଦନ:

ବ୍ରଜ ଓ ବୃନ୍ଦାବନରେ ରାଧାକୃଷ୍ଣଙ୍କର ପ୍ରେମଲୀଳାକୁ କେନ୍ଦ୍ର କରି ରଚିତ ଗୀତଗୋବିନ୍ଦ, ବିଦଗ୍ଧ ମାଧବ ନାଟକ, ଜଗନ୍ନାଥବଲ୍ଲଭ ନାଟକ, ଗୋବିନ୍ଦବଲ୍ଲଭ ନାଟକ, ବିଦଗ୍ଧ ଚିନ୍ତାମଣି ଓ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂରେ ଯେପରି ଏକ ନିର୍ଦ୍ଦିଷ୍ଟ କାହାଣୀର ପରିକଳ୍ପ ଏବଂ ବିଭିନ୍ନ ଦୃଶ୍ୟ ଓ ଘଟଣାର ସମାବେଶରେ ଚରିତ୍ର ଗୁଡ଼ିକର ବିକାଶ ପରିଲକ୍ଷିତ ହୁଏ, ଗୋପାଳକୃଷ୍ଣ ପଦାବଳୀରେ ତାହା ପରିଦୃଷ୍ଟ ହୁଏ ନାହିଁ । ବ୍ରଜବୁଲି ଓ ବଙ୍ଗୀୟ ବୈଷ୍ଣବ ପଦାବଳୀ ଏବଂ ବନମାଳୀ ପଦ୍ୟାବଳୀ ପରି କବି ରାଧାକୃଷ୍ଣଙ୍କର ବୃନ୍ଦାବନ ଲୀଳାର ବିଭିନ୍ନ ଘଟଣା, ଦୃଶ୍ୟ, ଚରିତ୍ର ଏବଂ ସେମାନଙ୍କର ହାବଭାବ ଓ ଚେଷ୍ଟାକୁ ଭିତ୍ତି କରି ଅଜସ୍ର ଗୀତ (ମଧୁର ରସାତ୍ମକ) ରଚନା କରିଛନ୍ତି । ଫଳରେ ରାଧାକୃଷ୍ଣ ପ୍ରେମଲୀଳାର ଗୋଟିଏ ଗୋଟିଏ ବିଭାବ ଅବଲମ୍ବନରେ ବହୁ ଗୀତ ରଚିତ ହୋଇଛି । ବିଭିନ୍ନ ବିଭାବର ପୁନରାବୃତ୍ତି ବହୁଳ ଗୀତ ଗୁଡ଼ିକ ପାଠ କଲାବେଳେ ବୈଷ୍ଣବ ବା ଗାୟକ ଚିତ୍ତରେ ହୁଏତ କ୍ଳାନ୍ତି ଆସି ନପାରେ, କିନ୍ତୁ ସାଧାରଣ ପାଠକ ଓ ସମୀକ୍ଷକ ଚିତ୍ତରେ କ୍ଳାନ୍ତି ଜାତ ହେବା ସ୍ୱାଭାବିକ । କାହାଣୀର ବିଭିନ୍ନ ଘଟଣାର ବିକାଶ କ୍ରମରେ ଗୀତ ଗୁଡ଼ିକ ନିର୍ଦ୍ଦିଷ୍ଟ ସମୟରେ ଯେପରି ପାଠକ ଓ ଶ୍ରୋତା ଚିତ୍ତରେ ଗୀତିନାଟ୍ୟ ଓ ରସଗତ ଆବେଦନ ସୃଷ୍ଟି କରନ୍ତି, ଏ ଗୁଡ଼ିକ ସେ ପ୍ରକାର ଆବେଦନ ସୃଷ୍ଟି କରନ୍ତି ନାହିଁ । କିନ୍ତୁ ପାଠକ ଓ ଶ୍ରୋତା ଚିତ୍ତରେ କବିଙ୍କର ପଦାବଳୀର ଆବେଦନ ଅନ୍ୟ ଉପାୟରେ ସୃଷ୍ଟି କରାଯାଇପାରେ । କବିଙ୍କ ରଚନାରେ ରାଧାକୃଷ୍ଣଙ୍କର ବୃନ୍ଦାବନ-ପ୍ରେମଲୀଳାର ପ୍ରାୟ ସମସ୍ତ ଦିଗର ଚିତ୍ର ଅଙ୍କିତ ହୋଇଥିବାରୁ ସହୃଦୟ ପାଠକ ବା ଶ୍ରୋତା କାହାଣୀ କ୍ରମରେ ବିଭିନ୍ନ ଭାବର ଗୀତ ଗୁଡ଼ିକୁ ସଜ୍ଜିତ କରି ପାଠ କଲେ ବା ଶୁଣିଲେ ଗୀତିନାଟ୍ୟର ଆବେଦନର କିଛି ଅଭାବ ହୁଏ ନାହିଁ । କେବଳ କାହାଣୀ କ୍ରମରେ ସେ ଗୁଡ଼ିକର ନିର୍ବାଚନ (ଭାବ ଓ ରସାନୁରୂପ) ଓ ସଜ୍ଜୀକରଣରେ କୁଶଳତା ଉପରେ ଗୋପାଳକୃଷ୍ଣ ପଦାବଳୀର ଗୀତିନାଟ୍ୟ ରୂପର ସାର୍ଥକତା

ନିର୍ଭର କରେ । ବିଚ୍ଛିନ୍ନ ଭାବରେ ଗୀତ ଗୁଡ଼ିକ ରଚିତ ହୋଇଥିଲେ ମଧ୍ୟ କବିଙ୍କର ସ୍ୱକୀୟ ପ୍ରତିଭା, ଗଭୀର ଅନୁଭୂତି, ଭାବାବେଶ, ଜୀବନବୋଧ, ରସାନୁରୂପ ସ୍ୱରବ୍ୟଞ୍ଜନା ଓ ତାଳର ସଙ୍କେତ ହେତୁ ଦୀର୍ଘକାଳ ଧରି ସେଗୁଡ଼ିକ ଓଡ଼ିଶାର ସାହିତ୍ୟିକ, ସଙ୍ଗୀତଜ୍ଞ ଓ ଗାୟକମାନଙ୍କ ଦ୍ୱାରା ସମାଦୃତ । ବିଭିନ୍ନ ସଙ୍ଗୀତ ଆସର, ନାଟ୍ୟାଭିନୟ ଏପରିକି ଚଳଚ୍ଚିତ୍ରରେ ମଧ୍ୟ ଗୋପାଳକୃଷ୍ଣ ଗୀତର ସଂଯୋଜନା ଓ ଗାନ ତା'ର ଲୋକପ୍ରିୟତାର ସାକ୍ଷର ବହନ କରେ ।

ଗୀତ ଗୁଡ଼ିକ ବିଚ୍ଛିନ୍ନ ଭାବରେ ରଚିତ ହୋଇଥିଲେ ମଧ୍ୟ ବିଭିନ୍ନ ଚରିତ୍ରର ଉକ୍ତି ପ୍ରତ୍ୟୁକ୍ତି ମାଧ୍ୟମ ହେତୁ ପାଠକ ଓ ଶ୍ରୋତା ତନ୍ମଧ୍ୟରେ ଗୀତନାଟ୍ୟର ସଂଳାପଗତ ସୌଷ୍ଠବ, ଗତିମୁଖରତା ଓ ଆବେଗ ତଥା ଉତ୍କଣ୍ଠାଗତ ସୌନ୍ଦର୍ଯ୍ୟର ସନ୍ଧାନ ପାଏ (ଯଦିଓ ଏହି ପ୍ରେମଲୀଳାତ୍ମକ ଗୀତ ଗୁଡ଼ିକୁ ଗୀତନାଟ୍ୟ କହି ହେବ ନାହିଁ, କାରଣ କାବ୍ୟ ଓ ଖଣ୍ଡକାବ୍ୟ ପରି ଏହାର ରସ ମୁଖ୍ୟତଃ ଅଭିଧେୟ, ଅଭିନେୟ ନୁହେଁ (୧) ।

ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦାବଳୀରେ ରାଧାକୃଷ୍ଣଙ୍କର ବୃନ୍ଦାବନ ଲୀଳାର ବୈଚିତ୍ର୍ୟମୟ ଆଲେଖ୍ୟ ସମ୍ବଳିତ ଗୀତ ଗୁଡ଼ିକୁ ଲକ୍ଷ୍ୟ କଲେ ବୈଷ୍ଣବ ଗୋସ୍ୱାମୀ ଓ ଅନ୍ୟମାନଙ୍କ ଦ୍ୱାରା ରଚିତ ବିଖ୍ୟାତ କାବ୍ୟ, ନାଟକ ଏବଂ ବଙ୍ଗୀୟ ବୈଷ୍ଣବ ପଦାବଳୀର ଅନୁରୂପ ଚିତ୍ର ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇଉଠେ । କବିଙ୍କ ରଚନା ପାରମ୍ପରିକ ଭଙ୍ଗିରେ ପ୍ରଦର୍ଶିତ ହୋଇ ଥିବାରୁ ତୁଳନାତ୍ମକ ଆଲୋଚନା ପାଇଁ ପ୍ରବୃତ୍ତି ହେବା ସ୍ୱାଭାବିକ । ଲୀଳାତ୍ମକ ଗୀତଗୁଡ଼ିକର ଆଲୋଚନା ପୂର୍ବରୁ ଏଠାରେ ବଙ୍ଗୀୟ ବୈଷ୍ଣବ ପଦାବଳୀର ବିଷୟ କ୍ରମର ସୂଚନା ଦିଆଯାଉଛି ।

**ବଙ୍ଗୀୟ ବୈଷ୍ଣବ ପଦାବଳୀର ବିଷୟକ୍ରମ :**

ବୈଷ୍ଣବ ପଦାବଳୀ ସାହିତ୍ୟରେ କୃଷ୍ଣଲୀଳା ବିଷୟ ଓ ଭାବାନୁସାରେ ଦୁଇଟି ପର୍ଯ୍ୟାୟରେ ବିନ୍ୟସ୍ତ, ଯଥା—(୧) ପିତାମାତା, ସଖା ଓ ଗୋପୀଙ୍କ ସହିତ ବିବିଧ ଲୀଳା; (୨) ରାଧାଙ୍କ ସହିତ ନିଭୃତ ପ୍ରେମଲୀଳା । ପ୍ରଥମ ପର୍ଯ୍ୟାୟର ବିଷୟବସ୍ତୁ ସମ୍ପର୍କରେ ତୃତୀୟ ପରିଚ୍ଛେଦରେ ସୂଚନା ଦିଆଯାଇଛି । ଦ୍ୱିତୀୟ ପର୍ଯ୍ୟାୟର ବିଷୟବସ୍ତୁ ଓ ବିଷୟକ୍ରମ ହେଉଛି—(କ) ରାଧାଙ୍କର ପୂର୍ବରାଗ; (ଖ) କୃଷ୍ଣଙ୍କର ପୂର୍ବରାଗ, (ଗ) ରାଧାକୃଷ୍ଣଙ୍କର ପାରସ୍ପରିକ ରୂପାନୁରାଗ ଓ ମିଳନୋତ୍କଣ୍ଠା; (ଘ) ରାଧାଙ୍କର ଅଭିସାର ପ୍ରସ୍ତୁତି, ମିଳନ ବେଶଧାରଣ (ବାସକସଜ୍ଜା) ଏବଂ ବିଭିନ୍ନ କାଳରେ ଅଭିସାର; (ଙ) ପ୍ରତିଦ୍ୱନ୍ଦ୍ୱୀ ଚନ୍ଦ୍ରାବଳୀ ହେତୁ କୃଷ୍ଣଙ୍କର ଅନାଗମନରେ ରାଧାଙ୍କର ଦୁଃଖ (ଖଣ୍ଡିତା ଅବସ୍ଥା); (ଚ) କୃଷ୍ଣଙ୍କର ଅନାଗମନରେ ରାଧାଙ୍କର ଆକ୍ଷେପୋକ୍ତି, ପ୍ରତ୍ୟାଖ୍ୟାନ ଓ ମାନ; (ଛ) ରାଧାଙ୍କର କଳହାନ୍ତରିତା ଅବସ୍ଥା; (ଜ) ମାନିନୀ ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଦୈନ୍ୟ ଓ ସ୍ତୁତୋକ୍ତି; (ଝ) ଦୌତ୍ୟ; (ଞ) ପ୍ରେମ ବୈଚିତ୍ତ୍ୟ; (ଟ) ଆକ୍ଷେପାନୁରାଗ; (ଠ) ରସୋଦ୍‌ଗାର;

(୧) ଡଃ. ସୁଧୀର କୁମାର ଦାସଗୁପ୍ତ, କାବ୍ୟାଲୋକ, ୨ୟ ସଂ., ୧୯୬୬, କଲିକତା, ପୃ-୧୬୮

(ଢ) ନର୍ତ୍ୟାରାସ; (ଢ଼) କୃଷ୍ଣଙ୍କ ବିରହାଶଙ୍କା (ଭାବୀ ବିରହ); (ଣ) ମଥୁରା ଗମନକାଳରେ ବିରହ ଦୁଃଖ (ଭବନ ବିରହ); (ତ) ବିରହ ସନ୍ତାପ ଓ ବୈକ୍ଳବ୍ୟ (ମାଥୁର); (ଥ) ପ୍ରଳାପ; (ଦ) ସ୍ୱପ୍ନ ରସୋଦ୍‌ଗାର; (ଧ) ଭାବ ସମ୍ମେଳନ ବା ଭାବୋଲ୍ଲାସ (୨)।

ଗୋପାଳକୃଷ୍ଣଙ୍କର ରାଧାକୃଷ୍ଣ ପ୍ରେମଲୀଳା ସଂପର୍କିତ ଗୀତ ଗୁଡ଼ିକରେ ସ୍ଥୂଳତଃ ଏହି ବସ୍ତୁ ଓ ବିଷୟକ୍ରମର ଅନୁସରଣ ପରିଦୃଷ୍ଟ ହୁଏ। କବିଙ୍କର ରଚନା ସଂସ୍କୃତ କାବ୍ୟ, ନାଟକ ଏବଂ ବହୁଳ ବଙ୍ଗୀୟ ପଦାବଳୀ ସାହିତ୍ୟ ପରମ୍ପରା ପିଣ୍ଡିତ ହେଲେ ମଧ୍ୟ ବହୁ ଗୀତ ହିଁ ନିଜସ୍ୱ ପ୍ରତିଭା ଓ ନିଜସ୍ୱ ରାଗିଣୀରେ ମୂର୍ଚ୍ଛିତ।

## ମଧୁର ରସ ଓ ତା'ର ବିଭିନ୍ନ ପ୍ରକରଣ ଶାଖାର ଗୀତ :

**ବିପ୍ରଲମ୍ଭ**—ରାଧାକୃଷ୍ଣ ପ୍ରେମଲୀଳା ସଂପର୍କୀୟ ଗୀତଗୁଡ଼ିକ ମଧୁର ରସର ଗୀତ। ଏଗୁଡ଼ିକୁ ପୂର୍ବରାଗ, ଅଭିସାର, ମାନ, ରସୋଦ୍‌ଗାର, ଆକ୍ଷେପାନୁରାଗ, ମାଥୁର ଓ ଭାବ ସମ୍ମେଳନ ଆଦି ବିଭିନ୍ନ ପ୍ରକରଣ ଶାଖାରେ ବିଭକ୍ତ କରି ଯାଇପାରେ। ପୁଣି ସେମାନେ ରାଧାଙ୍କୁ ମୁଗ୍ଧା, ମଧ୍ୟା, ପ୍ରଗଲ୍‌ଭା, ଅଭିସାରିକା, ବାସକ ସଜ୍ଜା, ଉତ୍କଣ୍ଠିତା, ଖଣ୍ଡିତା, ବିପ୍ରଲବ୍ଧା, କଳହାନ୍ତରିତା, ପ୍ରୋଷିତଭର୍ତ୍ତୃକା, ସ୍ୱାଧୀନଭର୍ତ୍ତୃକା ଇତ୍ୟାଦି ବିବିଧ ପ୍ରକାରର ନାୟିକା ରୂପେ କଳ୍ପନା କରିଯାଇ ଗୀତମାନ ରଚିତ ହୋଇଛି। ରୂପ ଗୋସ୍ୱାମୀ ତାଙ୍କର ଉଜ୍ଜ୍ୱଳ ନୀଳମଣି ଏବଂ କବି କର୍ଣ୍ଣପୂର ତାଙ୍କର 'ଅଳଙ୍କାର କୌସ୍ତୁଭ'ରେ ଅନ୍ୟ ଆଳଙ୍କାରିକଙ୍କ ପରି ମଧୁର ରସକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି; ଯଥା ବିପ୍ରଲମ୍ଭ ଓ ସମ୍ଭୋଗ। ମର୍ତ୍ତ୍ୟ ଗୋଲୋକ-ବୃନ୍ଦାବନରେ ଭଗବାନ ଶ୍ରୀକୃଷ୍ଣଙ୍କର ପ୍ରକଟ ଲୀଳାରେ ବିରହ ବା ବିପ୍ରଲମ୍ଭ ମୁଖ୍ୟ ଉପଜୀବ୍ୟ ହୋଇଥିବାରୁ ସମ୍ଭୋଗ ଅପେକ୍ଷା ବିପ୍ରଲମ୍ଭର ଗୀତ ସଂଖ୍ୟା ଅଧିକ ପରିଦୃଷ୍ଟ ହୁଏ। ସମଗ୍ର ବୈଷ୍ଣବ ସାହିତ୍ୟର ଅନ୍ତଃସ୍ୱର ହେଉଛି ବିରହ ବା ବିପ୍ରଲମ୍ଭ। ସେଥିପାଇଁ କବିମାନେ ସମ୍ଭୋଗରେ ମଧ୍ୟ ପ୍ରେମିକ ଓ ପ୍ରେମିକାଙ୍କ ଚିତ୍ତରେ ବିରହର ଆଶଙ୍କା ସୃଷ୍ଟି କରିଥାନ୍ତି (୩), ଯାହାକୁ ବୈଷ୍ଣବୀୟ ଆଳଙ୍କାରିକ ଭାଷାରେ କୁହାଯାଏ 'ପ୍ରେମବୈଚିତ୍ତ୍ୟ'। ବିପ୍ରଲମ୍ଭ ଚାରି ଭାଗରେ ବିଭକ୍ତ, ଯଥା—ପୂର୍ବରାଗ, ମାନ, ପ୍ରେମବୈଚିତ୍ତ୍ୟ ଓ ପ୍ରବାସ। ବିପ୍ରଲମ୍ଭରେ ପୂର୍ବରାଗ ମୁଖ୍ୟସ୍ଥାନ ଅଧିକାର କରିଥିବାରୁ ଏହି ପ୍ରକରଣରେ ଗୀତ ସଂଖ୍ୟା ଅଧିକ।

**ପୂର୍ବରାଗ**—ରସ ଶାସ୍ତ୍ରର ନିୟମାନୁସାରେ ଯେଉଁ ରତି ପ୍ରେମିକ ପ୍ରେମିକାଙ୍କର ମିଳନ ପୂର୍ବରୁ ଉଭୟଙ୍କର ଦର୍ଶନ ଓ ଉଭୟଙ୍କ ସମ୍ପର୍କରେ ଶ୍ରବଣ ଦ୍ୱାରା ଜାତ ହୁଏ, ତାହାକୁ ପୂର୍ବରାଗ (୪) କହନ୍ତି। ରାଧାଙ୍କର ପୂର୍ବରାଗ ପ୍ରୌଢ଼ ପୂର୍ବରାଗର ଅନ୍ତର୍ଭୁକ୍ତ (୫)। ଏହାର ବ୍ୟାଧି, ଶଙ୍କା, ଔତ୍ସୁକ୍ୟ ପ୍ରଭୃତି ସଞ୍ଚାରୀ ଭାବ ରହିଛି। କବି କର୍ଣ୍ଣପୂରଙ୍କ ମତରେ

---

(୨) କାଳିଦାସ ରାୟ, ପଦାବଳୀ ସାହିତ୍ୟ।

(୩) ଚଣ୍ଡୀଦାସ, ପଦାବଳୀ ସାହିତ୍ୟ; ସଂପା: କାଳିଦାସ ରାୟ, ପୃ-୧୪୦

(୪) ରୂ. ଗୋ., ଉ. ନୀ., ଶୃଙ୍ଗାର ଭେଦଃ, ପୂର୍ବରାଗଃ ପୃ-୮୩୮

(୫) ଉ. ନୀ. ପୂର୍ବରାଗ ପ୍ରକରଣ ଶ୍ଳୋକ ୯

ପୂର୍ବରାଗର ଆଠଟି ବିଭାଗ ରହିଛି, ଯଥା—(୧) ସାକ୍ଷାତ୍ ଦର୍ଶନ, (୨) ଚିତ୍ରପଟରେ ଦର୍ଶନ, (୩) ସ୍ୱପ୍ନ ଦର୍ଶନ, (୪) ବନ୍ଦୀ ବା ଭାଟ ମୁଖରୁ ଶ୍ରବଣ, (୫) ଦୂତୀ ମୁଖରୁ ଶ୍ରବଣ, (୬) ସଖୀ ମୁଖରୁ ଶ୍ରବଣ, (୭) ଗୁଣୀ ଜନଙ୍କର ଗାନରୁ ଶ୍ରବଣ, (୮) ବଂଶୀ ଧ୍ୱନି ଶ୍ରବଣ । ଚଣ୍ଡୀଦାସଙ୍କର ପଦାବଳୀରେ 'ନାମାନୁରାଗ' ଉପରେ ଗୁରୁତ୍ୱ ପ୍ରଦତ୍ତ ହୋଇଛି । ସାକ୍ଷାତ୍ ଦର୍ଶନରେ ରୂପାନୁରାଗର ସଞ୍ଚାର ହୋଇଥାଏ ।

ଗୋପାଳକୃଷ୍ଣ ପଦ୍ୟାବଳୀରେ ପୂର୍ବରାଗ ପ୍ରକରଣର ଗୀତ ସଂଖ୍ୟା ହେଉଛି ୨୪୬ଟି । ଏଥିରେ ରାଧା ଓ କୃଷ୍ଣ ଉଭୟଙ୍କର ପୂର୍ବରାଗ ସମ୍ବଳିତ ଗୀତମାନ ସନ୍ନିବେଶିତ ।

**ନାମାନୁରାଗ**—ଚଣ୍ଡୀଦାସଙ୍କ ପରି କବି ନାମାନୁରାଗକୁ ମୁଖ୍ୟଭାବରେ ଗ୍ରହଣ କରି ସଖୀ ମୁଖରୁ ରାଧାଙ୍କର କୃଷ୍ଣ ନାମ (୬) ଶ୍ରବଣଜନିତ ମୋହ, ତନ୍ମୟତା ଓ ମାଧୁର୍ଯ୍ୟର ଚମତ୍କାର ବର୍ଣ୍ଣନା କରିଛନ୍ତି ।

ଲଳିତାଙ୍କ ମୁଖରୁ କୃଷ୍ଣ ନାମ ଶ୍ରବଣ କରି ରାଧା ସେହି ନାମର ଅନିର୍ବଚନୀୟ ମାଧୁର୍ଯ୍ୟ ବର୍ଣ୍ଣନାରେ ଶତଜିହ୍ୱ ହୋଇ ପଡ଼ିଛନ୍ତି । ଥରେ ମାତ୍ର ଶ୍ରବଣରେ ସେ ତୃପ୍ତ ନୁହନ୍ତି । ସେହି ସୁଧାପୂର୍ଣ୍ଣ ନାମର ବାରବାର ଶ୍ରବଣ କାମିଲ ଚିତ୍ତରେ ତାଙ୍କର ଲାଳସାର ଶତ ଊର୍ମି ସମୁତ୍ଥିତ । ସେହି ନାମ ତାଙ୍କର ସର୍ବାଙ୍ଗରେ ଅପୂର୍ବ ପୁଲକ ସଞ୍ଚାର କରିବା ସଙ୍ଗେ ସଙ୍ଗେ ତାଙ୍କର ମନ ଓ ପ୍ରାଣରେ ଅଲୌକିକ ଆକର୍ଷଣର ଯାଦୁ ସୃଷ୍ଟି କରିଛି । ନାମର ସେହି ଅପ୍ରାକୃତ ସ୍ୱରୂପ ଉପଲବ୍ଧି କରି ଦୁଇଟି ଶ୍ରବଣରେ ତୃପ୍ତ ନହୋଇ କୋଟିଏ କର୍ଣ୍ଣ ଲାଭର ଲାଳସା ପୋଷଣ କରିଛନ୍ତି । କବିଙ୍କ ଭାଷାରେ—

କରେ ଆକର୍ଷଣ କେଣେ ମନ ପ୍ରାଣ ?
ଅପ୍ରାକୃତ ମଣେ ସେ ବେନି ଅକ୍ଷର ।୨।
ଯେବେ ଥାନ୍ତି ହେଲେ, ମା ଏହି ଗୋକୁଳେ
ଏକାବେଳେ କୋଟି ଶ୍ରବଣ ଗହ୍ୱର ।୩।

(ଗୋ. କୃ. ଗ୍ରଂ., ପୃ-୩୭୭)

କୃଷ୍ଣ ନାମ ରାଧାଂଙ୍କର ପ୍ରତ୍ୟେକ ଇନ୍ଦ୍ରିୟରେ, ପ୍ରାଣର ପ୍ରତ୍ୟେକ ତନ୍ତ୍ରୀରେ ପ୍ରେମୋନ୍ମାଦନାର ଯେଉଁ ଅନୁରଣନ ସୃଷ୍ଟି କରିଛି, ତାହା ଯେ ଲୋକାତୀତ, ଅପ୍ରାକୃତ; ତାହା ଯେ ସ୍ଥୂଳ କର୍ଣ୍ଣର ସୀମା ଅତିକ୍ରମ କରିଯାଇ ମର୍ମକର୍ଣ୍ଣର ନିଗୂଢ଼ ଦେଶରେ ବାଜି ପ୍ରାଣକୁ ତାଙ୍କର ବ୍ୟାକୁଳ କରୁଛି, ରାଧା ନାନାଭାବରେ ଏହି ଉପଲବ୍ଧି ସଖୀ ନିକଟରେ ପ୍ରକାଶ କରୁଛନ୍ତି ।

ଚଣ୍ଡୀଦାସଙ୍କର ରାଧା କୃଷ୍ଣନାମ ଶ୍ରବଣ ଜନିତ ଏହି ଅନିର୍ବଚନୀୟ ଅନୁଭୂତି ସଖୀ ନିକଟରେ ପ୍ରକାଶ କରିବାକୁ ଯାଇ କହୁଛନ୍ତି—

(୬) ଡଃ. ରାଧାଗୋବିନ୍ଦ ନାଥ, ଗୌ. ବୈ. ଦ., ୫ମ ଖଣ୍ଡ, ପୃ-୨୬୩୫

ସଇ, କେବା ଶୁନାଇଲ ଶ୍ୟାମ ନାମ ।
କାନେର ଭିତର ଦିୟା ମରମେ ପଶିଲ ଗୋ
ଆକୁଲ କରିଲ ମୋର ପ୍ରାଣ ॥
ନ ଜାନି କତେକ ମଧୁ ଶ୍ୟାମ-ନାମେ ଆଛେ ଗୋ
ବଦନ ଛାଡ଼ିତେ ନାହି ପାରେ ।
ଜପିତେ ଜପିତେ ନାମ ଅବଶ କରିଲ ଗୋ
କେମନେ ପାଇବ ସଇ ତାରେ ॥

ନାମ ଶ୍ରବଣଜନିତ ଅନୁରାଗ ତାଙ୍କ ପ୍ରାଣରେ ଅଗଣିତ ବାସନାର ହିଲ୍ଲୋଳ ସୃଷ୍ଟି କରିଛି । ପ୍ରାଣର ଆବେଗରେ କହୁଛନ୍ତି—

ନାମ-ପରତାପେ ଯାର ଐଛନ କରିଲ ଗୋ
ଅଙ୍ଗେର ପରଶେ କିବା ହୟ ।
ଯେଖାନେ ବସତି ତାର ନୟନେ ଦେଖିୟା ଗୋ
ଯୁବତୀ-ଧରମ କୈଛେ ରୟ ॥

ନବୋଢ଼ା କୁଳବତୀ ପରପୁରୁଷର ନାମ ଶ୍ରବଣଜନିତ ଏ ଅହୈତୁକୀ ଅନୁରାଗରେ ବିଚଳିତ ହୋଇ ନାମ ଭୁଲିବାକୁ ଚେଷ୍ଟାକଲେ ମଧ୍ୟ ପାରୁନାହିଁ—

ପାସରିତେ କରି ମନେ ପାସରା ନା ଯାୟ ଗୋ
କି କରିବ କି ହବେ ଉପାୟ । (୭)

'ଲଳିତ ମାଧବ'ର ରାଧା ଶ୍ରୀକୃଷ୍ଣଙ୍କର ଶାଶ୍ୱତ କାଳର ପ୍ରିୟା (ମର୍ତ୍ତ୍ୟ ବୃନ୍ଦାବନରେ ଯୋଗମାୟାଙ୍କ ପ୍ରଭାବରେ ତାଙ୍କଠାରେ ପରକୀୟାତ୍ୱ ଆରୋପିତ ହେଲେ ମଧ୍ୟ ସେ ସ୍ୱକୀୟା) । ପ୍ରଥମ କରି କୃଷ୍ଣଙ୍କ ନାମ ଶ୍ରବଣରେ ପ୍ରାଣରେ ଅପୂର୍ବ ଅନୁରାଗ ଓ ପୁଲକ ସଞ୍ଚାର ଲକ୍ଷ୍ୟ କରି ସଖୀ ଲଳିତାକୁ ପ୍ରଶ୍ନ କରିଛନ୍ତି—'ସଖି, ଏହି କୃଷ୍ଣ କିଏ, ଯା'ର ନାମ ମୋର ଶ୍ରବଣରେ ବାଜିବା ମାତ୍ରେ ମୋତେ ପାଗଳିନୀ ପ୍ରାୟ କରି ଦେଉଛି ? (୮) ।' ପାର୍ଶ୍ୱବର୍ତ୍ତିନୀ କୁନ୍ଦଲତା ସଙ୍ଗେ ସଙ୍ଗେ ଉତ୍ତର ଦେଇଛି—ତୁମେ ନିତ୍ୟକାଳ ଧରି ଯା' ସହିତ ମିଳିତ, ତାଙ୍କର ନାମ ତୁମର ନିତ୍ୟସଙ୍ଗୀ, ସେହି ନାମ ହେଉଛି ଅଲୌକିକ । ଅଲୌକିକ ବସ୍ତୁର ଲକ୍ଷଣ ହେଉଛି : ଏହା ବାରମ୍ବାର ଉପଭୁକ୍ତ ହେଉଥିଲେ ମଧ୍ୟ ମନେ ହୁଏ, ଯେପରି ଏହାର ଆସ୍ୱାଦ ଅପୂର୍ବ (୯) ।

---

(୭) ଖଗେନ୍ଦ୍ରନାଥ ମିତ୍ର ଓଗେର ସମ୍ପାଦିତ ବୈଷ୍ଣବ ପଦାବଲୀ (ଚୟନ), ପୃ-୨୮

(୮) ରୂ. ଗୋ., ଲ. ମା., ପ୍ର: କୃଷ୍ଣଦାସ ବାବା, ମଥୁରା, ୧୯୬୭, ପୃ ୩୩

(୯) ତତ୍ରୈବ, ପୃ ୭୮

ରୂପ ଗୋସ୍ୱାମୀ ତାଙ୍କର ବିଦଗ୍ଧ ମାଧବ ନାଟକରେ ନାନ୍ଦୀମୁଖୀଙ୍କର ସଂଳାପରେ କୃଷ୍ଣନାମ ଶ୍ରବଣରେ ପ୍ରେମାନ୍ୱିତା ରାଧାଙ୍କର ଅନିର୍ବଚନୀୟ ଭାବ ଓ ଅତିଶୟ "ଉତ୍କର୍ଷ" ପ୍ରାପ୍ତ ଅନୁରାଗର ସୂଚନା ଦେଇ ପୌର୍ଣ୍ଣମାସୀଙ୍କ ମୁଖରେ କୃଷ୍ଣନାମର ମାଧୁର୍ଯ୍ୟ ବର୍ଣ୍ଣନା କରିଛନ୍ତି—

ତୁଣ୍ଡେ ତାଣ୍ଡବିନୀରତିଂ ବିତନୁତେ ତୁଣ୍ଡାବଲୀଲବ୍ଧୟେ
କର୍ଣ୍ଣକ୍ରୋଡ଼କଡ଼ମ୍ବିନୀ ଘଟୟତେ କର୍ଣ୍ଣାର୍ବୁଦେଭ୍ୟଃ ସ୍ପୃହାମ୍ ।
ଚେତଃ ପ୍ରାଙ୍ଗଣସଙ୍ଗିନୀ ବିଜୟତେ ସର୍ବେନ୍ଦ୍ରିୟାଣାଂ କୃତିଂ
ନୋ ଜାନେ ଜନିତା କିୟଦ୍‌ଭିରମୃତୈଃ କୃଷ୍ଣେତି ବର୍ଣ୍ଣଦ୍ୱୟୀ । (୧୦)

ଅର୍ଥାତ୍ ବିଧାତା କି ପରିମାଣରେ ଅମୃତ ଦ୍ୱାରା 'କୃଷ୍ଣ' ଏହି ବର୍ଣ୍ଣଦ୍ୱୟ ନିର୍ମାଣ କରିଛନ୍ତି, ତାହା ବୁଝି ହୁଏନା । କାରଣ ଏହା ତୁଣ୍ଡରେ ନୃତ୍ୟ କଲେ ଅସଂଖ୍ୟ ବଦନ ପ୍ରାପ୍ତିର ଆଗ୍ରହ ବିସ୍ତାର କରେ । କର୍ଣ୍ଣ କ୍ରୋଡ଼ରେ ଏହା ଅଙ୍କୁରିତ ହେଲେ ଅର୍ବୁଦ ଅର୍ବୁଦ କର୍ଣ୍ଣ ଲାଭ ନିମିତ୍ତ ଅଭିଳାଷ ଜାତ କରାଏ ଏବଂ ଚିତ୍ତ-ପ୍ରାଙ୍ଗଣରେ ସଞ୍ଚାରିତ ହେଲେ ସମସ୍ତ ଇନ୍ଦ୍ରିୟ ବ୍ୟାପାରକୁ ପରାଜିତ କରେ ।

ରୂପ ଗୋସ୍ୱାମୀଙ୍କର ବିଦଗ୍ଧ ମାଧବ ଅନୁସରଣରେ ଅଭିମନ୍ୟୁ ସାମନ୍ତସିଂହାର ପୌର୍ଣ୍ଣମାସୀ ମୁଖରେ ରାଧାଙ୍କୁ କୃଷ୍ଣନାମ ଶ୍ରବଣ କରାଇ ତଡ଼ିତ୍ ସଞ୍ଚାର ତୁଲ୍ୟ ତାଙ୍କ ପ୍ରାଣରେ ଜନ୍ମାନ୍ତର ସଂସ୍କାର ଜନିତ ଅନୁରାଗ ଓ ବିସ୍ମୟ ସୃଷ୍ଟି କରିଛନ୍ତି । କବିଙ୍କ ଭାଷାରେ—

ଇକ୍ଷୁ ରସସାର ନାମକୁ ଶୁଣାଇ ଗଲେ ଭଗବତୀ ।
ଇସି କି ମଧୁର ନାମକୁ ଶୁଣିଲି, ଭାବେ ରସବତୀ ।୧୪।
ଇନ୍ଦ୍ରିୟେ ମୋହୋର ବାଞ୍ଛା କଲେନି ତ ବିଶେଷ ହେବାକୁ ।
ଇନ୍ଦୁର ହେଲି ଭଗବତୀ ଭାରତୀ ଦନ୍ତ-ବସନକୁ ।୧୫।

(ବି. ଚି., ପ୍ରାଚୀ ସଂ., ୭।୧୪-୧୫, ପୃ ୪୪।୪୫)

ପୁଣି ଅନ୍ୟତ୍ର କବି ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ସେ ନାମ ଗଢ଼ା ମିଶି କେତେ ଅମୃତ ।
ଯେ ଶୁଣିବ ତାର ଜନ୍ମିବ ଅମୃତ ଯେ ।
ବିଚିତ୍ର ସୁଖ ହୋଏ ତାହା ଶ୍ରବଣେ ।
ଲାଳସ ହୋଏ କୋଟି କୋଟି ଶ୍ରବଣେ ଯେ ।

(ବି. ଚି., ପ୍ରାଚୀ ସଂ.; ୯।୨; ପୃ ୫୧)

ସଖୀ ଦ୍ୱାରା ରାଧାଙ୍କ କର୍ଣ୍ଣରେ କୃଷ୍ଣନାମ ଶ୍ରବଣ କରାଇବା ବ୍ୟାଜରେ କୃଷ୍ଣଙ୍କ ପ୍ରତି ତାଙ୍କର ଅନୁରାଗ ଓ ପ୍ରାଣରେ ଉତ୍କଣ୍ଠା ଘନୀଭୂତ କରିବା ପାଇଁ କବି ଚମତ୍କାରିକ ଭଙ୍ଗୀରେ

(୧୦) ରୂ. ଗୋ., ବି. ମା., ୧।୩୩, ପୃ ୨୪

(ନାଟକୀୟ ଛଟାରେ) ଅନ୍ୟ କେତୋଟି ଗୀତ ରଚନା କରିବାକୁ ଭୁଲି ନାହାନ୍ତି । ସେଥିରେ ଶ୍ରୀକୃଷ୍ଣଙ୍କର ବୟଃସନ୍ଧି, ଅପୂର୍ବ ଅଙ୍ଗସୁଷମା, ନେପଥ୍ୟ ଓ ଭାବଭାବର ମଞ୍ଜୁଳ ଆଲେଖ୍ୟ ରହିଛି । ଦଳିତାଞ୍ଜନ ଓ ନବନୀରଦକାନ୍ତି କୃଷ୍ଣଙ୍କୁ ଲଳିତା ବୃନ୍ଦାବନର 'କାଳିଆ ଦେବତା' ଭାବରେ ବର୍ଣ୍ଣିତ କରି ଚନ୍ଦ୍ରାବଳୀଠାରେ ଆବଦ୍ଧ ହେଲି ପରି ହର୍ଜନ ଲତା-କୁଞ୍ଜରେ ପୁଷ୍ପ ଓ ପୁଷ୍ପଚୟନରତା ରାଧାଙ୍କଠାରେ ଆବଦ୍ଧ ହେବା କିଛି ବିଚିତ୍ର ନୁହେଁ ବୋଲି କହିଛନ୍ତି । ଏହା ଦ୍ୱାରା ତାଙ୍କ ପ୍ରାଣରେ ଏକ ଅଜଣା ଭୀତି-ସଞ୍ଚାର ବ୍ୟାଜରେ ତାଙ୍କ ଚିତ୍ତ-କେଦାରରେ କୃଷ୍ଣ-ପ୍ରେମର ବୀଜ ନାଟକୀୟ ଭାବରେ ପ୍ରୋଥିତ (୧୧) । ଗୀତଟିର ରଚନାମୂଳରେ ବିଦଗ୍ଧ ମାଧବର ପ୍ରେରଣା ଅତି ସ୍ପଷ୍ଟ । କୃଷ୍ଣ ନାମର ମାଧୁର୍ଯ୍ୟରେ ମୋହିତା ରାଧାଙ୍କ ମୁଖରେ ରୂପ ଗୋସ୍ୱାମୀ ପ୍ରକାଶ କରିଛନ୍ତି—'ଯାହାଙ୍କର ନାମ ମାତ୍ର ସୁନ୍ଦରୀ ମାନଙ୍କର ଚିତ୍ତକୁ ଏ ପ୍ରକାର ମୋହିତ କରୁଛି, ଜାଣେନା, ସେହି ନାମଧାରୀ କିଶୋର ଦେଖିବାକୁ କିପରି ? (୧୨) ।' ଅବହିତ୍ଥା (ଭାବଗୋପନ) ପୂର୍ବକ ସେ ନିକୁଞ୍ଜରେ ପୁଷ୍ପ ଚୟନ କରିବାକୁ ଉଦ୍ୟତ ହୁଅନ୍ତେ ଲଳିତା ତାଙ୍କ ପ୍ରାଣରେ ଏକ ସାଭିଳାଷ ଛଦ୍ମ-ଭୀତି ସଞ୍ଚାର କରି କହୁଛି—'ତୁମର ଦେହ ଦୁର୍ଲଭ ଶୋଭାର କ୍ରୀଡ଼ାସ୍ଥଳୀ, ଏଠାରେ ମଞ୍ଜୁଳ ଅଞ୍ଜନକାନ୍ତିନିଭ ଏକ କୁଞ୍ଜବିହାରୀ ଦେବତା ଅଛନ୍ତି, ଯେ ବନ ମଧ୍ୟରେ ସୁନ୍ଦରୀ ନବକିଶୋରୀମାନଙ୍କୁ ଆକର୍ଷଣ କରିଥାଏ (୧୩) ।

ଶ୍ରୀକୃଷ୍ଣଙ୍କର ନାମ, ଶୋଭା ଓ ଗୁଣରେ ଆତ୍ମ-ହୃଦନକାରୀ ନିବିଡ଼ ପରିଚୟ ଲାଭ ପୂର୍ବରୁ ଯମୁନା ପଥରେ ବା ବୃନ୍ଦାବନର କୁଞ୍ଜ ପଥରେ ଇନ୍ଦ୍ରନୀଳମଣିଜିତ ନବକିଶୋରଙ୍କ ସହ କିଶୋରୀଙ୍କର ନାଟକୀୟ ଭାବରେ କେତେଥର ଭେଟ ହୋଇଛି । ନବକିଶୋରଙ୍କ ଅଙ୍ଗ-ପରିମଳ-ଆମୋଦିତା ରାଧା ସନ୍ଧ୍ୟାର ଆଗମନରେ ଅଞ୍ଜନନିଭ ମେଘର ପରିବେଶରେ ଚକିତା କୁରଙ୍ଗୀ ପ୍ରାୟ ପ୍ରତ୍ୟାବର୍ତ୍ତନ ପାଇଁ ସଖୀମାନଙ୍କୁ ଚେତାଇଛନ୍ତି । ଏକାକିନୀ ଯମୁନା ପଥରେ ଯାଉଁ କାଳରେ ନିର୍ଜନ ମୁହୂର୍ତ୍ତରେ ତ୍ରିଭଙ୍ଗ ଠାଣି-ମୁଗ୍ଧା କିଶୋରୀ ସଖୀର ପ୍ରଶ୍ନରେ ନିଜର କୁଳବଧୂ-ସୁଲଭ ଆତଙ୍କର ଛଳନା କରିଛନ୍ତି । କିଶୋରମଣିଙ୍କର ପରିଚୟ ସମ୍ପର୍କୀୟ ନିଜର ନିର୍ଦ୍ଦୋଷ ଅଜ୍ଞତା ସୂଚାଇ (୧୪) ତାଙ୍କର ବିଶେଷ ପରିଚୟ ଜିଜ୍ଞାସା କରିଛନ୍ତି ।

ଚତୁରୀ ସଖୀ ଲଳିତା ରାଧାଙ୍କୁ ବୃନ୍ଦାରଣ୍ୟର ମଦନ ଶ୍ରୀକୃଷ୍ଣଙ୍କର ବିଶେଷ ପରିଚୟ ପ୍ରଦାନ ଛଳନାରେ ତାଙ୍କର ଭୁବନଭୁଲା ମୂର୍ତ୍ତିର ମୋହନତ୍ୱ ଓ ଅଙ୍ଗ-ଲାବଣ୍ୟର ବିଶେଷ ପ୍ରଶଂସା କରି ତାଙ୍କ ପ୍ରତି କଟାକ୍ଷପାତ ନ କରିବା ପାଇଁ ଷୋଡ଼ଶୀ କିଶୋରୀଙ୍କୁ ସତର୍କ କରାଇ ଦେଇଛି । ଲଳିତା ମୁଖରେ କବି ପ୍ରକାଶ କରିଛନ୍ତି—

---

(୧୧) 'କୁଞ୍ଜବନରେ କାଳିଆ ଦେବତା ବୁଲୁଛି' ଗୀତ ଦ୍ରଷ୍ଟବ୍ୟ । ଗୋ. କୃ. ଗ୍ରଂ., ପୃ ୩୨୭

(୧୨) ବି. ମା., ୧।୬୩, ପୃ ୫୨

(୧୩) ବି. ମା., ୧।୬୪, ପୃ ୫୨

(୧୪) ଗୋ. କୃ. ଗ୍ରଂ., ପୃ ୩୨୮/୩୨୯

ଏଣିକି ସଖିରେ ଆହ୍ନ ରୁ ସେ ହରେ
ଅନାଇବୁ ନାହିଁ ନେଇ ନବେଣୀ ।
ତା ନେଇ କଟାକ୍ଷ, ଭୁରୁ ବାଙ୍କ ଦ୍ରୁଷ୍ଟ
ମରମକୁ ତୋର ଦେବଟି ଭୁଞ୍ଜି ।୩ (ଗୋ. କୃ. ଗ୍ରଂ., ପୃ ୩୩୦)

ସଖୀର ସସ୍ନେହ ଚେତାବନୀର କଲ୍ପନା ରାଧାଙ୍କର ପ୍ରେମସ୍ନିଗ୍ଧ ଅନ୍ତରକୁ ଉଦ୍ଦୀପ୍ତ ଓ ଆହ୍ଲାଦ ଅନୁରଞ୍ଜିତ କରିବା ପାଇଁ ଏକ ମନୋଜ୍ଞ ପ୍ରକାଶ-ବ୍ୟଞ୍ଜନା । ସଖୀର ବଚନୋକ୍ତି ଲଜ୍ଜାବତୀ କିଶୋରୀଙ୍କର ଅଧରରେ ସ୍ମିତ ସଞ୍ଚାର କରିବା ସ୍ୱାଭାବିକ ।

**ବଂଶୀ ଅନୁରାଗ**—ଶ୍ରୀକୃଷ୍ଣଙ୍କର ସୁଧା ସମ୍ମିତ ନାମ ପରି ତାଙ୍କର ବଂଶୀଧ୍ୱନିର ଉଚାଟ ଓ ମୋହକାରୀ ମୂର୍ଚ୍ଛନାରେ ରାଧା ଓ ବ୍ରଜସୁନ୍ଦରୀମାନେ ଦେହ, ମନ, ପ୍ରାଣ, ସଂସାର, ପତି, ପାତିବ୍ରତ୍ୟ ସବୁ କିଛି ଭୁଲି ବଂଶୀବାଦକର ଦର୍ଶନ ଓ ତାଙ୍କ ସହ ମିଳନ ପାଇଁ ଉନ୍ମନା ଓ ଚଞ୍ଚଳ ହୋଇ ଉଠିଛନ୍ତି । ବ୍ରଜାଙ୍ଗନା ତଥା ରାଧାଙ୍କ ପ୍ରାଣରେ ବଂଶୀର ଅଲୌକିକ ପ୍ରଭାବ ସମ୍ପର୍କରେ ସଂସ୍କୃତ କାବ୍ୟ, ନାଟକ, ଦେଶୀୟ କାବ୍ୟ ଓ ପଦାବଳୀ ସାହିତ୍ୟରେ ଅଜସ୍ର ଛାନ୍ଦ ଓ ଗୀତ ପରିଲକ୍ଷିତ ହୁଏ । ପରମ୍ପରା କ୍ରମେ କବି ରାଧାଙ୍କର ବଂଶୀନାଦ ଶ୍ରବଣ ଓ ତଜ୍ଜନିତ ଅନୁରାଗ ସଂପର୍କରେ ଆଠଟି ଗୀତ ରଚନା କରିଛନ୍ତି । ତନ୍ମଧ୍ୟରୁ 'କାନନର ବିତାନରେ ଏ କି ଗାନ ଶୁଭୁଛି ମା', 'କଦମ୍ବ ବନେ ବଂଶୀ ବାଜିଲାରେ ସଙ୍ଗାତ', 'କି ନାଦରେ ପ୍ରାଣ ସଙ୍ଗିନି !' ଏବଂ 'ବଂଶୀ ବାଜୁଛି କାହାର କାନନରେ' ଗୀତଗୁଡ଼ିକ ଓଡ଼ିଶାରେ ବିଶେଷ ଜନପ୍ରିୟ ।

ବୈଷ୍ଣବୀୟ ଅଳଙ୍କାର ଶାସ୍ତ୍ରରେ 'ବଂଶୀ'କୁ ଶ୍ରୀକୃଷ୍ଣ ବିଷୟିଣୀ ରତିର ଉଦ୍ଦୀପନ ବିଭାବର ଅନ୍ତର୍ଭୁକ୍ତ କରା ଯାଇଛି । ବେଣୁନାଦ ହେଉଛି ଶ୍ରୀକୃଷ୍ଣଙ୍କର ଲଗ୍ନସମ୍ବନ୍ଧୀ ବସ୍ତୁରୂପକ ଉଦ୍ଦୀପନ ତାଙ୍କର ଅଙ୍ଗ ସୌରଭ, ଭୂଷଣ-ଶିଞ୍ଜନ ଓ ଚରଣ ଚିହ୍ନ ପରି (୧୫) । ପୁଣି ଏହା (ବଂଶୀ) ଶ୍ରୀକୃଷ୍ଣଙ୍କର ପ୍ରେୟସୀର ସହାୟିକା ସ୍ୱୟଂ-ଦୂତୀ ଭାବରେ ଗୃହୀତ (ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର କଟାକ୍ଷ ଯେପରି ସ୍ୱୟଂ ଦୂତୀର କାର୍ଯ୍ୟ କରେ) । ଏହି ବଂଶୀ କୁଳବଧୂ ରାଧାଙ୍କୁ ଲଜ୍ଜା ଓ ଭୟ ପରିତ୍ୟାଗ କରାଇ ଶ୍ରୀକୃଷ୍ଣଙ୍କ ନିକଟକୁ ଆକୃଷ୍ଟ କରି ଆଣି ନିସୃଷ୍ଟାର୍ଥା-ଦୂତୀ ଭୂମିକାରେ ଅବତୀର୍ଣ୍ଣ (୧୬) । ନାମାନୁରାଗ ପରି ବଂଶୀଧ୍ୱନି ଶ୍ରବଣରେ ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ଅନୁରାଗ ଦେହ ଓ ଇନ୍ଦ୍ରିୟର ଅତୀତ, ଅପ୍ରାକୃତ । କୌଣସି ମନୋହର ଗୀତ ଶ୍ରବଣରେ ମନୁଷ୍ୟ ହୃଦୟରେ ବଦ୍ଧମୂଳ ଜନ୍ମାନ୍ତରୀଣ କୌଣସି ଆକର୍ଷଣ-ବସ୍ତୁର ସ୍ମୃତି ଯେପରି ଅଜ୍ଞାତ ସାରରେ ତା'ର ଚିତ୍ତରେ ଜାଗରୂକ ହୋଇ ପ୍ରାଣକୁ ବ୍ୟାକୁଳ କରେ (୧୭) ସେହିପରି ମଧୁର ମୁରଲୀନାଦ ଶ୍ରବଣରେ ରାଧାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠିଛି । ଚିତ୍ତରେ ଆତ୍ମ-ବିସ୍ମୃତି ଜାଗିଛି, କାରଣ ରାଧା ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳାର ନିତ୍ୟ ସଙ୍ଗିନୀ ।

(୧୫) ଡଃ ରାଧା ଗୋବିନ୍ଦ ନାଥ, ଗୌ. ବୈ. ଦ., ୫ମଖଣ୍ଡ, ପୃ ୨୭୩୮
(୧୬) ତତ୍ରୈବ ପୃ ୩୩୬୯
(୧୭) ଅଭିଜ୍ଞାନ ଶାକୁନ୍ତଳମ୍, ସମ୍ପା: ରାଜେନ୍ଦ୍ରନାଥ ବିଦ୍ୟାଭୂଷଣ, ୧୦ମ ସଂ., ପୃ ୧୧୯

ଯମୁନା ପୁଳିନସ୍ଥ କଦମ୍ବ ବାଥିରୁ ମଳୟର ହିଲ୍ଲୋଳରେ ଭାସି ଆସୁଥିବା ମୁରଳୀ ନାଦରେ ରାଧାଙ୍କର ପ୍ରାଣ ଉନ୍ମାଦିତ । ତାଙ୍କର ହୃତାହୃତ ଜ୍ଞାନ, ବିବେକ ଓ ବୁଦ୍ଧିର ଘଟିଛି ଅବସାନ । ତାଙ୍କର ଧୃତିହରା ଚିତ୍ତ ବେଣୁନାଦ-ସୁଧାରେ ନିମଜ୍ଜିତ । ସାଧ୍ୱୀ କୁଳବଧୂର ଚିତ୍ତ ମନ୍ମଥର ମୋହନ ମନ୍ତ୍ରରେ କାମ-ବିହ୍ୱଳ; ପାତିବ୍ରତ୍ୟର ଅଭିମାନ ଚୂର୍ଣ୍ଣୀଭୂତ । ଅପୂର୍ବ ପୁଲକ ହେତୁ ସର୍ବାଙ୍ଗ କଳେବର କଦମ୍ବବୃକ୍ଷ ପ୍ରାପ୍ତ ରୋମାଞ୍ଚିତ । କମ୍ପ, ସ୍ୱେଦ ଆଦି ସାତ୍ତ୍ୱିକ ଭାବର ଉଦ୍‌ବେଳନ । ତା'ର ଅଦ୍ଭୁତ ପ୍ରଭାବରେ ନିଶି କି ଦିବସ, ବନ କି ଆବାସ, ଜାଗରଣ କି ସ୍ୱପ୍ନ— ଏ ସମ୍ପର୍କରେ ସେ ଚେତନାଶୂନ୍ୟ । କବିଙ୍କ ଭାଷାରେ—

କ) କାନନର ବିତାନରେ ଏ କି ଗାନ ଶୁଭୁଛି ମା ?
କାନରେ ଏ ନିସ୍ୱନ ପ୍ରସରି ଜ୍ଞାନ ହରୁଛି ମା, । ଘୋଷା ।
କିବା ଜୀବ ଗ୍ରନ୍ଥି ସାଧିବ ! ବଧୀର ପିନ୍ଧୁଛି ମା,
କି ବିନ୍ଧୁଛନ୍ତି ବିଦ୍ଧ ବିବେକ ବୁଦ୍ଧି ନାଶୁଛି ମା ।୧।
ନାଦର ଏ କି ମାଦକ ଉନମାଦ କରୁଛି ମା,
ଆଦର ରହୁ ପାଦରେ ସୁଧା-ସ୍ୱାଦ ଦଳୁଛି ମା ।୨।

(ଗୋ. କୃ. ଗ୍ରଂ., ପୃ ୩୩୩)

ଖ) ଶ୍ୟାମ ସୁନ୍ଦର ମୁରଲୀ-ନିନାଦ ଜାତ ନବ ମଣିଲି । ଘୋଷା ।
ପୂରିଲା ପୁଲକ ଦେହ ଗୋଟା ଯାକ ବନା ଶୀତରେ ମୁଁ କେତେ ଥରିଲି ।୨
କାହିଁଗଲା ମନ ବୁଡ଼ିଗଲା ଜ୍ଞାନ ନେତ୍ରନୟନ ମୁଁ ବୁଜି ରହିଲି ।୩।
ନିଶି କି ଦିବସ ବନ କି ଆବାସ ଜାଗର କି ସ୍ୱପନ ନ ହେଜିଲି ।୪।

(ଗୋ. କୃ. ଗ୍ରଂ., ପୃ ୩୩୪)

ଗ) ଆହା ଏ କି ପରମାଦ ଦେହେ ପୂରେ କମ୍ପ ସ୍ୱେଦ,
କ୍ଷଣେ ଲବେ ଦମ୍ଭ ନ ପାରୁଛି ଧରି ମା ।୩।
ହା ହା କୁଳୀନ ଗୃହିଣୀ- ଗଣ ମାନସ ହାରିଣୀ
ବିଚିତ୍ର ମୃଗବନ୍ଧନୀ ସଚିତ୍ର ବିସ୍ତାରି ମା ।୭।

(ତତ୍ରୈବ, ପୃ ୩୩୭)

ଉଦ୍ଧୃତ ପଦଗୁଡ଼ିକର ଭାବ ରୂପ ଗୋସ୍ୱାମୀଙ୍କର ବିଦଗ୍ଧ ମାଧବରେ ରାଧାଙ୍କର ମୁରଲୀ-ନାଦ ଶ୍ରବଣ ଜନିତ ଅନୁରାଗର ଅନୁରୂପ । ଅକାରଣରେ ରାଧାଙ୍କର ଅଙ୍ଗର ବିବଶତା ଲକ୍ଷ୍ୟ କରି ଲଳିତା ପ୍ରଶ୍ନ କରିବାରୁ ରାଧା ସଲଜ୍ଜ ଭାବରେ କହୁଛନ୍ତି—

ନାଦଃ କଦମ୍ବବିଟପାନ୍ତରତୋ ବିସର୍ପନ୍
କୋ ନାମ କର୍ଣ୍ଣପଦବୀମବିଶନ୍ନ ଜାନେ ।

ହା ହା କୁଳୀନଗୃହିଣୀଗଣଗର୍ହଣୀୟାଂ
ଯେନାଦ୍ୟ କାମପି ଦଶାଂ ସଖି ଲମ୍ଭିତାସ୍ମି ।

(ବି. ମା., ୧।୨୯, ପୃ ୫୪)

ଅର୍ଥାତ୍ ସଖି ! କଦମ୍ବ ବୃକ୍ଷର ଅନ୍ତରାଳରୁ କି ଏକ ନାଦ ଆସି ମୋର କର୍ଣ୍ଣରେ ପ୍ରବେଶ କରିଛି; ମୁଁ ସେଥିରେ କୁଳୀନ ଗୃହିଣୀ ମାନଙ୍କର ନିନ୍ଦନୀୟ କି ଏକ ଦଶା ପ୍ରାପ୍ତ ହୋଇଛି (୧୮) ।

ବଂଶୀଧ୍ୱନି ଭଗବାନଙ୍କର ଚିତ୍‌ଶକ୍ତିର ଅନ୍ୟତମ ବୃତ୍ତି ହୋଇ ଥିବାରୁ କେବଳ ମାନବ ନୁହେଁ, ସମଗ୍ର ବିଶ୍ୱ ପ୍ରକୃତିରେ ତା'ର ଅଲୌକିକ ଶକ୍ତିର ବିସ୍ମୟକର ପ୍ରଭାବ ସମ୍ପର୍କରେ କବି ରାଧାଙ୍କର ଅନୁଭୂତିରେ ସୂଚିତ କରି କହିଛନ୍ତି—'ଏହି ଧ୍ୱନିର ପ୍ରଭାବରେ ତରଳ ଜଳ ଶିଳାରେ ପରିଣତ ହୁଏ; ଶିଳା ଦ୍ରବୀଭୂତ ହୁଏ । ବିହଗ ବିବଦରେ ଖଗ ଓ ମୃଗମାନେ ଜଡ଼ ପ୍ରାପ୍ତ ହୋଇ ଯାଆନ୍ତି । ସନକ ସନାତନାଦି ଯୋଗୀମାନଙ୍କର ଧ୍ୟାନସ୍ଥ ଚିତ୍ତରେ ଚଞ୍ଚଳତା ଦେଖାଦିଏ (୧୯) । ଅନୁରୂପ ଚିତ୍ର ରୂପ ଗୋସ୍ୱାମୀଙ୍କର ଭକ୍ତିରସାମୃତ ସିନ୍ଧୁ (ଦୀପ୍ତ ସାତ୍ତ୍ୱିକର ଦୃଷ୍ଟାନ୍ତ ଭାବରେ—୨।୪।୪୬); ଉଜ୍ଜ୍ୱଳ ନୀଳମଣି (ସାତ୍ତ୍ୱିକ ଭାବ, ଶ୍ଳୋ. ୭୩) ଓ ବିଦଗ୍ଧ ମାଧବରେ; କୃଷ୍ଣଦାସ କବିରାଜଙ୍କର ଗୋବିନ୍ଦ ଲୀଳାମୃତ ଏବଂ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି ଓ ପ୍ରେମ ଚିନ୍ତାମଣିରେ ପାଠକ ଲକ୍ଷ୍ୟ କରେ ।

ବିଦଗ୍ଧ ମାଧବରେ ବଳରାମଙ୍କ ମୁଖରେ ଶ୍ରୀକୃଷ୍ଣଙ୍କର ବେଣୁନାଦର ପ୍ରଭାବ ପ୍ରଦତ୍ତ ହୋଇଛି (୨୦) । ଗୋବିନ୍ଦ ଲୀଳାମୃତର ବର୍ଣ୍ଣନାନୁସାରେ ସଖାଙ୍କ ସହ ଶ୍ରୀକୃଷ୍ଣ କ୍ରୀଡ଼ାରତ ଅବସ୍ଥାରେ ବୃନ୍ଦାବନର ବୃକ୍ଷଲତାଦିରେ ନୂତନ ଜୀବନ ସଞ୍ଚାର ନିମିତ୍ତ ବଂଶୀବାଦନ କରନ୍ତି । ବେଣୁନାଦ ଫଳରେ ସ୍ଥାବରଠାରେ ଜଙ୍ଗମ ଏବଂ ଜଙ୍ଗମଠାରେ ସ୍ଥାବର ଧର୍ମ ଓ ସାତ୍ତ୍ୱିକ ବିକାର ଦେଖାଯାଏ । ସ୍ଥାବର ସମୂହରେ କମ୍ପ, ଜଙ୍ଗମ ସମୂହରେ ସ୍ତବ୍ଧତା, ଦ୍ରବୀଭୂତ ପାଷାଣରେ ସ୍ୱେଦ ପରିଦୃଷ୍ଟ ହୁଏ (୨୧) ।

ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିର ଏକସପ୍ତତି ଛନ୍ଦରେ ବଂଶୀନାଦର ଅଲୌକିକ ଗୁରୁତ୍ୱ ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା କରିଛନ୍ତି । କବିଙ୍କ ବର୍ଣ୍ଣନାନୁସାରେ ବଂଶୀନାଦ ନାରାୟଣଙ୍କର (ଭଗବାନଙ୍କର) ଚିଚ୍ଛକ୍ତି (୭୧।୨୨) । ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଏହାଦ୍ୱାରା ଲୋକାତୀତ ଶକ୍ତିରେ ପ୍ରଭାବିତ । ଏହାର ଗୋଟିଏ ମାତ୍ର ସ୍ୱରରେ ବିଶ୍ୱ ଦ୍ରବୀଭୂତ ହେଉଥିବାରୁ ତା'ର ଗୁଣ ଅତୀବ ଗୂଢ଼ ଓ ବର୍ଣ୍ଣନାତୀତ ଥିବାରୁ ଶ୍ରୀକୃଷ୍ଣ ତା' ସାହାଯ୍ୟରେ ଅସାଧ୍ୟ ସାଧନ କରନ୍ତି—

---

(୧୮) Sukumar Sen, ed, History of Brajabuli PP 182/183
(୧୯) ଗୋ. କୃ. ଗ୍ରଂ., ପୃ-୩୩୩ ଓ ୩୩୨
(୨୦) ବି. ମା., ୧।୪୨, ପୃ-୩୪
(୨୧) କୃ. ଦା. କ, ଗୋ. ଲୀ. ମୃ., ୭।୧୪/୧୫

ଗୁଣ ଅତି ଗହନ,       ନାଦ ବଶୀମୋହନ,
ଅସାଧ୍ୟ ସାଧନ୍ତି ଯାହା ସେହି ମୋହନ ।୨୯।
ଜୀବ ତେଜେ ସଜୀବ,       ଜୀବ ପାଏ ଅଜୀବ,
ଜଳ ଶିଳ ବିପରୀତ ଧର୍ମ ଭଜିବ ।୩୦।

ବୈଷ୍ଣବ ପଦାବଲୀରେ ରାୟ ବସନ୍ତ (ଷୋଡ଼ଶ ଶତାବ୍ଦୀ), ଯଦୁନନ୍ଦନ ଦାସ, (ସପ୍ତଦଶ), ବଲ୍ଲଭ ଦାସ (ସପ୍ତଦଶ), ଉଦ୍ଧବ ଦାସ (ଅଷ୍ଟାଦଶ) ଓ କମଳାକାନ୍ତ ଦାସଙ୍କ କେତେକ ପଦରେ ଅନୁରୂପ ଚିତ୍ର ଲକ୍ଷିତ ହୁଏ । ରାଧାଙ୍କ ଦେହ ଓ ମନରେ ବଂଶୀର ଅଦ୍ଭୁତ ପ୍ରଭାବ ଲକ୍ଷ୍ୟ କରି କେତେକ କବି ବଂଶୀନାଦକୁ ବଂଶୀର ଦଂଶନ ବୋଲି କହି ସେହି ଦଂଶନ-ଜ୍ୱାଳାର ମଞ୍ଜୁଳ ଚିତ୍ର ଆଙ୍କିଛନ୍ତି, ଯଥା—

ଶୁନଇତେ ମଧୁର ମୁରଲୀ ରବ ଥୋର ।
ଖସୟେ କାଁଖେର କୁମ୍ଭ ନୀବି ନିଗୋର ।
ସଖି ହେ, ବଂଶୀ ଦଂଶିଲ ମୋର କାନେ ।
ଡାକିୟା ଚେତନ ହରେ       ପରାଣ ନା ରହେ ଧଡ଼େ
ତନ୍ତ୍ରମନ୍ତ୍ର କିଛୁଇ ନା ମାନେ । (୨୨)
(କମଳାକାନ୍ତ ଦାସ)

ଯାହାଙ୍କର ବଂଶୀଧ୍ୱନି ତାଙ୍କର ପ୍ରାଣରେ ଅନୁରାଗର ଅଗଣିତ ହିଲ୍ଲୋଳ ଉତ୍‌ଥିତ କରିଛି, ବ୍ରଜର ପ୍ରତ୍ୟେକ ତରୁଲତାରେ ପୁଲକ ସଞ୍ଚାର କରିଛି, ତାଙ୍କର ଦର୍ଶନ ପାଇଁ (ରୂପଦର୍ଶନ ଲାଲସା) ନୟନ ସତୃଷ୍ଣ ହୋଇ ଉଠିବା ସ୍ୱାଭାବିକ ।

**ଦର୍ଶନାନୁରାଗ**—ନାମ ଓ ବଂଶୀଧ୍ୱନି ଶ୍ରବଣରେ ମୁଗ୍ଧ ରାଧାଙ୍କର ଚିତ୍ତ ଶ୍ରୀକୃଷ୍ଣଙ୍କର ଦର୍ଶନ ପାଇଁ ଉତ୍କଣ୍ଠିତ । ଏହି ଦର୍ଶନ ସ୍ୱପ୍ନ, ଚିତ୍ରପଟ ଓ ପ୍ରତ୍ୟକ୍ଷ ଦର୍ଶନ ମାଧ୍ୟମରେ ସମ୍ପାଦିତ ହୋଇଛି । ଯେଉଁ ସାକ୍ଷାତ୍ (ପ୍ରତ୍ୟକ୍ଷ) ଦର୍ଶନ ହେତୁ ରାଧାଙ୍କର ରୂପାନୁରାଗ ଅଙ୍କୁରିତ, ତାହା ତ୍ରିବିଧ ଦର୍ଶନ ମଧ୍ୟରେ ପ୍ରଧାନ । ବଙ୍ଗୀୟ ଓ ବ୍ରଜବୁଲି ବୈଷ୍ଣବ ପଦାବଲୀରେ ଏହି ତ୍ରିବିଧ ଦର୍ଶନର ବହୁଗୀତ ପରିଦୃଷ୍ଟ ହୁଏ ।

ଗୋପାଳକୃଷ୍ଣଙ୍କ ରଚନାରେ ରାଧାଙ୍କର ନବାନୁରାଗ ପର୍ଯ୍ୟାୟର ସ୍ୱପ୍ନ-ଦର୍ଶନାନୁରାଗ ଗୀତ କେବଳ ଗୋଟିଏ ('ନିଦ କେଉଁଣେ ଦେଲୁ ରାତ୍ରିରେ', ଗ୍ରଂ., ପୃ-୩୭୦) । ଚିତ୍ରପଟ ଦର୍ଶନ ମୂଳକ ସ୍ୱଳ୍ପ କେତୋଟି ଗୀତ ବାଦ ଦେଲେ ସାକ୍ଷାତ୍ ଦର୍ଶନ ସମ୍ବଳିତ ଗୀତର ସଂଖ୍ୟା ଅଧିକ (ଉଣେଇଶିଟି) ।

ଆଲେଖ୍ୟ ନିପୁଣା ସଖୀ ବିଶାଖାଙ୍କ ଦ୍ୱାରା ଅଙ୍କିତ ଶ୍ରୀକୃଷ୍ଣଙ୍କର ଭୁବନଭୁଲା ଚିତ୍ରପଟ (୨୩) ଦର୍ଶନରେ ରାଧା ମୋହିତ ହୋଇ ତାଙ୍କଠାରେ ଅଜ୍ଞାତରେ ନିଜକୁ ସମର୍ପଣ

(୨୨) କାଳିଦାସ ରାୟ, ପ. ସା., ୩ୟ ସଂ., ୧୩୮୩, ପୃ-୭୩/୭୪
(୨୩) ବି. ମା., ୧ମ ଅଙ୍କର ଶେଷ ଛନ୍ଦ ଦ୍ରଷ୍ଟବ୍ୟ ।

କରି ଦେଇଛନ୍ତି । ଚିତ୍ରପଟରେ ଦର୍ଶନମାତ୍ରେ ଯେ ମନ ମୋହିତ ହେଉଛି, ସ୍ପର୍ଶ ମାତ୍ରେ ଅବସ୍ଥା କଣ ହେବ, ତାହା ତାଙ୍କ ପକ୍ଷରେ କଳ୍ପନାତୀତ । ପାଢ଼ବୃତ୍ତ୍ୟରେ ଜଳାଞ୍ଜଳି ଦେଇ ଆଲେଖ୍ୟଟିକୁ ବକ୍ଷରେ ଜଡ଼ାଇ ଧରିବା ପାଇଁ ତାଙ୍କର ସ୍ୱତଃ ପ୍ରବୃତ୍ତି ହୋଇଛି (୨୪) ।

ପ୍ରିୟତମଙ୍କର ପ୍ରତ୍ୟକ୍ଷ ଦର୍ଶନ ନିମିତ୍ତ ରାଧାଙ୍କର ଉତ୍କଣ୍ଠା ଅସୀମ । ମୁହୂର୍ମୁହୁ ଅଙ୍ଗପ୍ରତ୍ୟଙ୍ଗରେ ମଦନପୀଡ଼ା ଅନୁଭବ କରନ୍ତି । କ୍ଷଣେ ମାତ୍ର ପ୍ରିୟତମଙ୍କର ଚିତ୍ରପଟ ମୂର୍ତ୍ତି ପାରନ୍ତି ନାହିଁ । ଆକାଶରେ ନବନୀରଦକୁ ଗୃହିଲା ମାତ୍ରେ ନିଜର ଅଙ୍ଗରେ ଅପୂର୍ବ ପୁଲକର ସଞ୍ଚାର ସହ ଏକାନ୍ତରେ କ୍ରୀଡ଼ାର ଅଭିଳାଷ ଜାତହୁଏ । ବୃନ୍ଦାଟବୀର ଚଲା ପଥରେ ପୁଣି ଗୋବର୍ଦ୍ଧନ ଗିରିର ସୂର୍ଯ୍ୟକାନ୍ତ ମଣି ବେଦୀରେ ଶ୍ୟାମଙ୍କର ଭେଟ ପାଇଁ ରାଧା ସତୃଷ୍ଣ ପ୍ରତୀକ୍ଷାରେ ବସି ରହନ୍ତି । ଦୁଇଟି ନୟନରେ ପ୍ରିୟତମଙ୍କର ମଧୁମୟୀ ମୂର୍ତ୍ତି-ସୁଷମା କଳନାରେ ନିଜର ଅକ୍ଷମତା ନିମିତ୍ତ ବିଧାତାଙ୍କୁ କେତେ ନିନ୍ଦା କରନ୍ତି । ଶ୍ରୀକୃଷ୍ଣଙ୍କର ସ୍ୱପକ୍ଷୀୟା ଦୂତୀ ବୃନ୍ଦା ରାଧାଙ୍କର ଏ ହାବଭାବରେ ଅଧୀର ଆଗ୍ରହ ଓ ଆନନ୍ଦ ପ୍ରକାଶ କରି ସତ୍ୟତା ପରୀକ୍ଷା ନିମିତ୍ତ ଶତପ୍ରଶ୍ନ ଅଜାଡ଼ି ପକାଏ—

ସ୍ମରଣା କରୁଛ ଅଦୃଷ୍ଟକୁ, ଯାହା ମୂରତିକି ଦେଖିବାକୁ
ଯୋଡ଼ିଏ ନୟନ ଦେଲୁ ବୋଲି କେତେ
ନିନ୍ଦା କରୁଥାଉ ବିଧାତାକୁ । ୧ ।
କ୍ଷଣେ ତ ନ ମୂର୍ଚ୍ଛ ଚିତ୍ରପଟ, ବନକୁ ଯିବା ଆସିବା ବାଟ
ଜଗି ବସିଥାଉ ଶିଖଣ୍ଡମୁକୁଟ,
ଭେଟକୁ କେ କଲା ଏତେ କୂଟ । ୨ ।
ନିରେଖି ନଭରେ ନୀରଦକୁ ପୁଲକାଇ ଦେଇ ଶ୍ରୀଅଙ୍ଗକୁ
ଯା ତନୁ କାନ୍ତିକି ଲକ୍ଷ୍ୟ ବୋଲି ପକ୍ଷ
ନେଉଥାଉ ପରିରମ୍ଭଣକୁ । ୩ । (୨୫)
( ଗୋ କୃ ଗ୍ରଂ ପୃ ୩୩୧ )

ବିଦଗ୍ଧ ମାଧବରେ ରାଧା ଶ୍ରୀକୃଷ୍ଣଙ୍କ ମୁରଲୀ ନାଦର ମୋହିନୀ ଶକ୍ତିରେ ଅବଶ ହୋଇ କୃଷ୍ଣ-ସଙ୍ଗର ତୀବ୍ର ଲାଳସା ପୋଷଣ କରନ୍ତି । ଅଙ୍ଗରେ ସ୍ୱେଦ, ରୋମାଞ୍ଚ ଓ ବେପଥୁ ଆଦି ସାତ୍ତ୍ୱିକ ଭାବର ସଞ୍ଚାର । ଅଳି ଓ ଅନ୍ତରରେ ନେତ୍ର ପଡ଼ିବା ମାତ୍ରେ ମନ୍ମଥ-ପୀଡ଼ା ବଢ଼ିଉଠେ । ପୀଡ଼ାର ପ୍ରଶମନ ନିମିତ୍ତ ବିଶାଖା ସ୍ୱହସ୍ତ ଅଙ୍କିତ ଚିତ୍ରପଟ (ଶ୍ରୀକୃଷ୍ଣଙ୍କର) ହସ୍ତରେ ରାଧାଙ୍କ ପରିଚର୍ଯ୍ୟାରେ ନିଜକୁ ନିୟୋଜିତ କରିବାର ସୂଚନା ରୂପ ଗୋସ୍ୱାମୀ ଦେଇଛନ୍ତି । ଚିତ୍ରପଟ ଅଙ୍କିତ କୃଷ୍ଣଙ୍କୁ ଲକ୍ଷ୍ୟ କରି ସ୍ୱଗତଭାବେ ରାଧା କହିଛନ୍ତି—

(୨୪) ଗୋ. କୃ ଗ୍ରଂ
(୨୫) ବି. ମା. ୩।୨୩, ପୃ ୧୪୭

ଶିଶିରସ୍ଯ ଦୃଶୌ ଦୃଷ୍ଟ୍ୱା ଦବାଂ କଶୋରମିଙ୍ଗାଷତଃ
ପରଜନଗିରାଂ ବଶ୍ରମ୍ଭାଣ୍ଡାଂ ବଳାସଫଳକାଙ୍କିତଃ ।
ଶିବ ଶିବ କଥଂ ଜାନମନ୍ତ୍ୱାମବନଧ୍ୱସ୍ତୋ ବଯ୍ଂ
ନବଡ଼ବଡ଼ବାବହ୍ନିଜ୍ୱାଲାକଳାପବକାଶିନମ୍ । (ବି. ମା. ୨୮୩୨)

ଅର୍ଥାତ୍ ହେ କୃଷ୍ଣ ! ପୂର୍ବରୁ ପରଜନମାନଙ୍କ ବାକ୍ୟରେ ବିଶ୍ୱାସ କରି ତୁମର ଶିଶିରତୁଲ୍ୟ ସ୍ନିଗ୍ଧ ଲୋଚନଦ୍ୱୟ ଦର୍ଶନ କରି ତୁମର ଦିବ୍ୟ କିଶୋର ଅବସ୍ଥା ଲକ୍ଷ୍ୟ କରିଥିଲି, କିନ୍ତୁ ଦୁଃଖର ବିଷୟ, ଆମ୍ଭେମାନେ ସରଳମନା । ତୁମେ ଯେ ନବଡ଼ ବାଡ଼ବାଗ୍ନି ଜ୍ୱାଳା ପ୍ରକାଶ କରିଛ—ଏହା କପରି ଜାଣି ପାରିବୁ ?

ପୂର୍ବାଲୋଚିତ ଗୀତ ବ୍ୟତୀତ ଏହି ପର୍ଯ୍ୟାୟରେ ଯେତୋଟି ଗୀତ ସନ୍ନିବେଶିତ, ତନ୍ମଧ୍ୟରେ ରାଧା ଓ ତାଙ୍କର ସଖୀର ସଂଳାପ ମାଧ୍ୟମରେ ରାଧାଙ୍କର ଶ୍ରୀକୃଷ୍ଣ ଦର୍ଶନ ଜନିତ ଉତ୍କଣ୍ଠା ଓ ବ୍ୟାକୁଳତା ସୂଚିତ । ଦୂରରୁ ଓ ନିକଟରେ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ଦର୍ଶନ ଜନିତ ଅନିର୍ବଚନୀୟ ଆନନ୍ଦ ଓ କୁଳବଧୂ ସୁଲଭ ମାନସିକ ଦ୍ୱନ୍ଦ୍ୱ ଏବଂ ପ୍ରାୟ ସମସ୍ତ ଗୀତରେ ପ୍ରଣୟିନୀ ରାଧା ଓ ପରମ ପ୍ରେଷ୍ଠା ସଖୀ ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କର ରୂପଲାବଣ୍ୟ ଓ ନେପଥ୍ୟର (ବେଶ ପ୍ରସାଧନ) ମୁଗ୍ଧ ପ୍ରଶଂସା (ପାରମ୍ପରିକ ରୀତିରେ) ପାଠକ ଲକ୍ଷ୍ୟ କରେ । ପାଞ୍ଚଟି ଗୀତରେ ନୀପମୂଳରେ ତ୍ରିଭଙ୍ଗ ଠାଣିରେ ଏବଂ ଅନ୍ୟ ମନୋଜ୍ଞ ପରିବେଶରେ ଦଣ୍ଡାୟମାନ ଶ୍ରୀକୃଷ୍ଣଙ୍କ ଶୋଭା ଓ ଶୃଙ୍ଗାର (ବେଶ-ପ୍ରସାଧନ), ଦୁଇଟି ଗୀତରେ ଲୀଳାପ୍ରିୟ କୃଷ୍ଣଙ୍କର କଟାକ୍ଷ ବିଳାସ ଓ ମୋହନ ମାଧୁରୀ, ଗୋଟିଏ ଗୀତରେ ସଖାମେଳରେ ଶ୍ୟାମଙ୍କର ଗୋଧନ ବାହୁଡ଼ା କାଳର ଶୋଭା ଏବଂ ଦୁଇଟି ଗୀତରେ ମୁହାଁମୁହିଁ କିଶୋର କିଶୋରୀଙ୍କର ଏବଂ ରାଧାଙ୍କର ମାନସିକ ଦ୍ୱନ୍ଦ୍ୱର ମଞ୍ଜୁଳ ଆଲେଖ୍ୟ ଅଙ୍କିତ । କେତୋଟି ସଙ୍ଗୀତରେ ରାଧାଙ୍କ ମୁଖରେ ଏବଂ ଅନ୍ୟ କେତୋଟିରେ ସଖୀମୁଖରେ ଶ୍ୟାମଙ୍କର ଦର୍ଶନ ମହିମା ଓ ରାଧାଙ୍କର ପ୍ରଣୟ ହେତୁକ ରୋମାଣ୍ଟିକ୍ ଅନୁଭୂତି ଚର୍ଚ୍ଚିତ । ଏହି ପର୍ଯ୍ୟାୟର ଗୀତଗୁଡ଼ିକ ମଧ୍ୟରୁ 'ପୂର୍ବାନୁରାଗ ବୋଲି' ଶୀର୍ଷକ 'ଜଳ ଆଣି ଯାଇ କାଲି କଳିନ୍ଦ ସୁତାକୁ' (ତ୍ରିଂ ପୃ ୩୧୪), 'ଦେଖିଲେ ଦେଖିଲି ପରି ଥରେ ରସିକରାଜଙ୍କୁ' (ପୃ ୩୧୫), 'କରୁଥିଲି ମୁଁ ନାହିଁ ନାହିଁରେ' (ପୃ ୩୬୪) ଏବଂ 'ମୁହାଁମୁହିଁ କିଶୋର ଚନ୍ଦ୍ରମାଙ୍କର ମୋର' (ପୃ ୩୯୯) ଗୀତ କେତୋଟି ବିଶେଷ ଲୋକପ୍ରିୟ ।

ଜଳ ଆଣିବା ନିମିତ୍ତ ଯମୁନାକୁ ଯାଇଥିବା କୁଳବତୀ କିଶୋରୀ ରାଧାଙ୍କର ପ୍ରିୟତମଙ୍କ ସହ ପ୍ରଥମ ସାକ୍ଷାତ୍‌ରେ ନବାନୁରାଗର ସ୍ନିଗ୍ଧ ସ୍ପର୍ଶ ଏବଂ ତତ୍‌ସହିତ ଭୀରୁ କୁଳବଧୂର କିଶୋରୀ ପ୍ରାଣୋଚିତ ଶଙ୍କା ଓ ହୃତ୍‌ସ୍ପନ୍ଦନର ଚମତ୍କାର ମନସ୍ତାତ୍ତ୍ୱିକ ଚିତ୍ର କବିଙ୍କ ଦ୍ୱାରା ଅଙ୍କିତ 'ପୂର୍ବାନୁରାଗ ବୋଲି' ଶୀର୍ଷକ ଗୀତଟିରେ ହୋଇଛି । ଏଠି ରାଧା ନିଜର ପ୍ରାଥମିକ ଅନୁଭୂତି ବର୍ଣ୍ଣନା କରିଛନ୍ତି ସଖୀ ଲଳିତା ନିକଟରେ । ଏକ ମଞ୍ଜୁଳ ରୋମାଣ୍ଟିକ୍ ତଥା ନାଟକୀୟ ପରିବେଶରେ କବି ପ୍ରେମିକ ଓ ପ୍ରେମିକା ପରସ୍ପରକୁ ଦର୍ଶନ କରିବାର ମନୋଜ୍ଞ ଅବସର ସୃଷ୍ଟି କରିଛନ୍ତି । ଯମୁନା ତୀରସ୍ଥ କଦମ୍ବତରୁ ସ୍ତବ୍ଧ ନାଟକୀୟ ଭାବେ ରାଧାଙ୍କର

ଦୃଷ୍ଟି ଆକୃଷ୍ଟ ହୋଇଛି । ସଦ୍ୟସ୍ନାତ ସ୍ନୁରଣ କରି ଭାବାବେଶରେ ଚାହିଁ ଗ୍ଭଲିଛନ୍ତି—ଯେଉଁ କମନୀୟ ପ୍ରତିମା ତାଙ୍କର ନେତ୍ର ସମକ୍ଷରେ ସର୍ବଦା ନୃତ୍ୟ କରୁଛି, ସେ ନୀରଦ କି ନୀଳମଣି ପ୍ରତିମା, ସେହି ଅପ୍ରତ୍ୟାଶିତ ମୁହୂର୍ତ୍ତିରେ ସ୍ଥିର କରି ପାରୁନାହାନ୍ତି । ସେ ଦିଗରୁ ଭାସିଆସୁଥିବା ନୀଳୋତ୍ପଳ ଓ କସ୍ତୁରୀ ଗନ୍ଧରେ ପ୍ରାଣ ତାଙ୍କର ଅବଶ ହୋଇପଡ଼େ । ସେତେବେଳେ ସେହି ପ୍ରତିମାର ପୃଷ୍ଠପଟରେ ଉତ୍ପୃଚ୍ଛ କେକୀଙ୍କର ପ୍ରମତ୍ତ କେକାଧ୍ୱନି ସହ ନୃତ୍ୟ ତାଙ୍କର ମନମୟୂରୀକୁ ନୃତ୍ୟ ଚପଳ କରିଦିଏ । ନୂପୁର ଶିଞ୍ଜନରେ ରାଧା ଚକିତା କୁରଙ୍ଗୀପ୍ରାୟ ଇତସ୍ତତଃ ଗ୍ଭହୁଁଥିବା ବେଳେ ସେହି ନୀଳମଣି ପ୍ରତିମାର ନାଟକୀୟ ଆବିର୍ଭାବ ତାଙ୍କର ହୃଦୟର ସ୍ପନ୍ଦନ ସହସା ବର୍ଦ୍ଧିତ କରେ । କୁଳବତୀ ସୁଲଭ ଲଜ୍ଜା ହେତୁ ମଥା ଅବନତ ହୋଇଯାଏ । ସେହି ଶିଖୀପିଚ୍ଛ, ଅଳକା ପନ୍ତି ଓ ଦୀପ୍ତ କୁଣ୍ଡଳ ଶୋଭିତ କିଶୋରଙ୍କର ଅପୂର୍ବ ଅଙ୍ଗକାନ୍ତି ଦର୍ଶନରେ ସର୍ବାଙ୍ଗରେ ତାଙ୍କର ସ୍ୱେଦ, ବେପଥୁ ଓ ପୁଲକାଦି ସାତ୍ତ୍ୱିକର ସଞ୍ଚାର ହୋଇଯାଏ । ଯିବାପାଇଁ ତରତର ହେଲେ ମଧ୍ୟ ପାଦ ଚଳେନା । କିଶୋରଙ୍କର ସ୍ନିଗ୍ଧ ସମ୍ବୋଧନରେ କଣ୍ଠ ତାଙ୍କର ବାଷ୍ପ ବିଜଡ଼ିତ ହୋଇଯାଏ । ତାଙ୍କର ପ୍ରଣୟ-ମଦିର-ସିକ୍ତ ନେତ୍ରରେ ସେ ମନେ ହେଉଥାନ୍ତି, 'ଶୃଙ୍ଗାର ରସ କି ସ୍ଫୁର ହେବେ ସେ ମୂରତି' । ପୁଣି ବୃଦ୍ଧା ଜଟିଳାର ଅପ୍ରତ୍ୟାଶିତ ଆହ୍ୱାନ ତାଙ୍କର ଏହି ସୁଖମୟ ମୁହୂର୍ତ୍ତିର ଅବସାନ ଘଟାଇ ମୁହୂର୍ତ୍ତିର ଅନୁଭୂତିକୁ ସ୍ମୃତିରେ ମହିମାମୟ କରିବାର ଅବସର ସୃଷ୍ଟି କରେ ।

କବିଙ୍କ ପରିବେଶରେ ପ୍ରେମିକଙ୍କ ସହିତ ପ୍ରେମିକାର ପ୍ରଥମ ଅପ୍ରତ୍ୟାଶିତ ସାକ୍ଷାତ-ଜନିତ ଅନୁଭୂତିର ଚିତ୍ର କେତେ ଦୂର ସ୍ୱାଭାବିକ ଓ ପ୍ରାଣବନ୍ତ, ତାହା ଏଠାରେ ଲକ୍ଷ୍ୟ କରାଯାଇପାରେ । ଶ୍ରୀକୃଷ୍ଣଙ୍କର ଅଙ୍ଗଲାବଣ୍ୟ, ବେଶ ଓ ପ୍ରସାଧନ ଚିତ୍ରରେ ପରମ୍ପରାର ଅନୁସରଣ ଥିଲେ ମଧ୍ୟ କବିଙ୍କର ସ୍ୱକୀୟ କମନୀୟ ରଚନା ଭଙ୍ଗୀରେ ତାହା ସମୃଦ୍ଧ । ପ୍ରେମିକା ଅନ୍ତରର ସ୍ନିଗ୍ଧ ଅନୁରାଗର ଅରୁଣିମାରେ ତାହା ରଞ୍ଜିତ ହୋଇ ତା'ର ମୁଖରେ ଆତ୍ମପ୍ରକାଶ କରିଛି । ଦୃଷ୍ଟାନ୍ତ ସ୍ୱରୂପ—

ନୀରଦ କି ନୀଳମଣି ପ୍ରତିମା ସେ କିଛି-
ବାରି ପାରିଲି ନାହିଁରେ ସଙ୍ଗାତ !
ନୟନେ ନାଚୁଛି ରେ, ସଙ୍ଗାତ ! । ୨ ।
ଘମଘମ ନୀଳୋତ୍ପଳ କସ୍ତୁରୀ ସୁବାସ,
ଘନଘନ ଆସୁଥିଲା ରେ, ସଙ୍ଗାତ !
ହୋଇଲି ଅବଶରେ, ସଙ୍ଗାତ ! । ୩ । (ଗୋ କୃ ଗ୍ର° ପୃ ୩୧୪)

ଭାଷା, ଅଳଙ୍କାର (ଉତ୍ପ୍ରେକ୍ଷା) ଓ ପଦ ପ୍ରୟୋଗ (ଯୁଗ୍ମପଦ) ଏକ ସାଥିରେ ପ୍ରେମିକା ପ୍ରାଣର ଭାବର ସ୍ପନ୍ଦନ ସହ ସମତାଳରେ ଗତିକରି ଗ୍ଭଲିଛି, ଯଥା—

ଝୁମୁ ଝୁମୁ ଧ୍ୱନି ଶୁଣି ଏତେତେଣେ ମୁହିଁ,
ଅନାଇଁ ଅନାଇଁ ରହିଲିରେ, ସଙ୍ଗାତ !

ବୋଇଲି କେ ନାହିଁରେ, ସଙ୍ଗାତ ! । ୭ ।
ଦର ଦରଶନ କରି ଚମକି ପଡ଼ିଲି,
ଦମଦମ ହେଲା ଗୁଡରେ, ସଙ୍ଗାତ !
ମଥା ପୋତି ଦେଲିରେ, ସଙ୍ଗାତ ! । ୭ ।

ଉକ୍ତ ପଦ ଗୁଡ଼ିକରେ 'ଝୁମୁଝୁମୁ', 'ଅନାଇ ଅନାଇ', 'ଦରଦର', 'ଦମଦମ' ଇତ୍ୟାଦି ଯୁଗ୍ମ ପଦର ବିନ୍ୟାସ ଓ ଲୀଳାୟିତ ଭଙ୍ଗୀ ରାଧାଙ୍କର ହୃତ୍‌ସ୍ପନ୍ଦନ ସହ ସମତାଳରେ ନୃତ୍ୟକରି ସଙ୍ଗୀତର ଛନ୍ଦରେ ସ୍ୱାଭାବିକ ଗତିମୁଖରତା ଆଣିଦେଇ କରିଛି ।

ଶ୍ରୀକୃଷ୍ଣଙ୍କର ରୂପଲାବଣ୍ୟ ଓ ବେଶ ପ୍ରସାଧନ ବର୍ଣ୍ଣନାରେ ପ୍ରଥାନୁସରଣ ଥିଲେ ମଧ୍ୟ ରାଧା ଓ ସଖୀର ନିବିଡ଼ ଅନୁଭୂତି ରଞ୍ଜିତ ହୋଇଥିବାରୁ ସେଗୁଡ଼ିକରେ ସହୃଦୟ ପାଠକ ଏକ ପ୍ରକାର ନୂତନ ସ୍ୱାଦ ଅନୁଭବ କରନ୍ତି । ରାଧା ସଖୀନିକଟରେ ନିଜର ଆନନ୍ଦ ପ୍ରକାଶ କରି କହନ୍ତି—ନୀପମୂଳରେ ବେଣୁପାଣିଙ୍କର ସପ୍ତାଧିକ ତ୍ରିଭଙ୍ଗ ଠାଣିର ଶୋଭା ବର୍ଣ୍ଣନାତୀତ । ସର୍ବାଙ୍ଗ କଳେବର କର୍ପୂର ଚନ୍ଦନ ବିଲେପିତ । ନୀଳ ନୀରଦତୁଲ୍ୟ ତାଙ୍କର ନଟବର ବେଶ ବୃନ୍ଦାଟବୀରେ ଅନଙ୍ଗର ଭ୍ରାନ୍ତି ସୃଷ୍ଟି କରୁଛି । ଗଳଦେଶରେ ମଞ୍ଜୁଳ ବଞ୍ଜୁଳ କଳିକାର ମାଳା, ଚୂଳରେ ଶିଖିପିଞ୍ଛ ଏବଂ ଗଣ୍ଡଦେଶରେ କୁଣ୍ଡଳର ଦୀପ୍ତି କ୍ରୀଡ଼ା କରୁଛି । ନୃତ୍ୟ ଓ ତାଳକୁଶଳ ଶ୍ୟାମଙ୍କର ଖଞ୍ଜନତୁଲ୍ୟ ଚଞ୍ଚଳ ନୟନ ମଦନର ବାଣ ଓ ଭ୍ରୂଭଙ୍ଗୀ ତା'ର ଧନୁର ଭ୍ରାନ୍ତି ସୃଷ୍ଟି କରେ । କୁଳାଙ୍ଗନାଙ୍କର ପାତିବ୍ରତ୍ୟଭଙ୍ଗ ନିମିତ୍ତ ଏହା ସତେ ଯେପରି ତାଙ୍କର ଜଗନ୍ମୋହନ ବେଶ ।

କବି ଅନନ୍ୱୟ, ବ୍ୟତିରେକ ଓ ଉତ୍ପ୍ରେକ୍ଷା ପ୍ରୟୋଗରେ ପ୍ରେୟସୀ ଦୃଷ୍ଟିରେ ପ୍ରେୟସୀର ଅଙ୍ଗସୌଷ୍ଠବ ଓ ଭୁବନଭୁଲା ବେଶର ପ୍ରଶଂସା ଗାନରେ ମୁଖର—

ପ୍ରତି ପ୍ରତୀକରେ ଶୋଭା ପୂରିଅଛି
ତୁଳନା ଦେବାକୁ ନାହିଁ ।
ନବଘନ ନୀଳ ତରୁଣ ତମାଳ
ବରଣକୁ ସରି କାହିଁ ? । ୪ ।
ଦଳିତ ଅଞ୍ଜନ ଅତସୀ ସୁମନ
ସଜ ନୀଳୋତ୍ପଳ କାନ୍ତି ।
ବର୍ଣ୍ଣିବୁ ତ ଲକ୍ଷ୍ୟ ନ ହୋଇ ପାରିଲେ
ସର୍ବେ ପାଇ ମହାଭ୍ରାନ୍ତି । ୫ ।

( ଗୋ କୃ ଗ୍ରଂ, ପୃ ୭୬୭-୭୬୮ )

ପ୍ରାକୃତର ଉପମାସ୍ଥଳରେ ନୀପତଳଶୋଭୀ ଶ୍ରୀକୃଷ୍ଣଙ୍କର ବେଶ ଓ ଶୋଭାର ବର୍ଣ୍ଣନାରେ କବିଙ୍କର କଳ୍ପନା କୁଶଳତାର ପରିଚୟ ମିଳେ । କବି ବ୍ୟାପକ ଅର୍ଥରେ ଉପମାର ପ୍ରୟୋଗ କରିଥିବାରୁ ସଙ୍ଗୀତଟିରେ ବ୍ୟତିରେକ, ଉତ୍ପ୍ରେକ୍ଷା, ଉପମା ଓ

ରୂପକର ପ୍ରୟୋଗ ଲକ୍ଷିତ ହୁଏ । କବିଙ୍କର କଳ୍ପନାରେ ଶ୍ରୀକୃଷ୍ଣଙ୍କର ଶ୍ୟାମତନୁ ନବୋଦିତ ମେଘ ଏବଂ କୁଣ୍ଡଳର ଦୀପ୍ତି ଭାନୁର ପ୍ରଭାକୁ ତୁଚ୍ଛ କରେ । ହୃଦୟରେ ଦୋଳାୟିତ ମଲ୍ଲୀ କଳିକାର ମାଳା ଶୁଭ୍ର ବକପଙ୍‌କ୍ତି, କଟିତଟର ସୂକ୍ଷ୍ମ ପୀତପଟ ସୌଦାମିନୀ ଏବଂ କଙ୍କିଣୀର ନୃତ୍ୟ ଜଳଦ ଧ୍ୱନିର ଭ୍ରମ ଜାତ କରନ୍ତି । ଏ ବର୍ଷାରେ ଶୃଙ୍ଗାର ଯଦି ସରିତ ପ୍ରବାହ ହୁଏ, ରସବତୀ ରାଧା ନବ ବାରିଧିତୁଲ୍ୟ (୨୬) ।

'ଦର୍ଶନାନୁରାଗ' ଶୀର୍ଷକ ଦୁଇଟି ଗୀତ ମଧ୍ୟରୁ ଗୋଟିକରେ ଶ୍ୟାମ ଦର୍ଶନରେ ଗୋଟିଏ ସଖୀ ଅନ୍ୟଠାରେ (ଗ୍ରଂ, ପୃ ୩୫୦) ଏବଂ ଅନ୍ୟ ଗୀତରେ (ପୃ ୩୪୨) ସଖୀ ରାଧାଙ୍କ ସମକ୍ଷରେ ଶ୍ରୀକୃଷ୍ଣଙ୍କର ବେଶ ଓ ଅଙ୍ଗ ସୁଷମାର ଯେଉଁ ବର୍ଣ୍ଣନା କରିଛନ୍ତି, ଭାବ ଓ ଚିତ୍ର ଦୃଷ୍ଟିରୁ ସେଗୁଡ଼ିକ ନୂତନତ୍ୱହୀନ, ଗତାନୁଗତିକତାର ରୋମନ୍ଥନ ମାତ୍ର । ପୁଣି ଦ୍ୱିତୀୟଟିରେ ସାଧୁ ସମାସାନ୍ତ ପଦର ବହୁଳତାରେ ଶ୍ରୀକୃଷ୍ଣଙ୍କର ଶୋଭା ଆଚ୍ଛନ୍ନ ହୋଇଯିବା ପରି ବୋଧହୁଏ (୨୭) ।

ଗୋଧୂଳି ସମୟରେ ସଖା ଓ ସୁରଭିମେଳରେ ଶ୍ରୀକୃଷ୍ଣଙ୍କ ବନବାହୁଡ଼ା କାଳୀନ ବେଶ, ଅଙ୍ଗସୁଷମା ଓ ମୁରଲୀବାଦନର ପ୍ରଶଂସା ଲଳିତାଦି ସଖୀ ମୁଖରେ ଚଉତିଶି ଗୀତରେ ଅନ୍ତର୍ଭୁକ୍ତ । ବର୍ଣ୍ଣନାରେ ପ୍ରଥା ଜର୍ଣ୍ଣତାର କ୍ଳାନ୍ତି ସତ୍ତ୍ୱେ ଚିତ୍ର ଓ ଭାବାନୁରୂପ ସ୍ୱର ବ୍ୟଞ୍ଜନାରେ ଶ୍ରୀକୃଷ୍ଣଙ୍କର ଆରଣ୍ୟକ ସୁଷମା ଉତ୍କଳୀୟତାର ମଞ୍ଜୁଳ ସ୍ପର୍ଶରେ ଏକାନ୍ତ ଉପଭୋଗ୍ୟ । 'ଗୋଧନ ବାହୁଡ଼ା କରିରେ ସଜନୀ ବନୁ ଆସୁଛନ୍ତି ହରି' ଗୀତଟିରେ (ପୃ ୪୩୨) ଲୋକଗୀତ-ଛନ୍ଦର ମାଧୁର୍ଯ୍ୟ ଶ୍ରୀକୃଷ୍ଣଙ୍କର ନୈସର୍ଗିକ ସୁଷମାକୁ ଅଧିକ ଉପଭୋଗ୍ୟ କରିଛି । ଗତାନୁଗତିକ ବର୍ଣ୍ଣନା ସତ୍ତ୍ୱେ 'ଅଙ୍ଗାଳି ଦର୍ଶନେ ସଖୀଉକ୍ତି' ଶୀର୍ଷକ ଗୀତଟି ଅଧିକ ଚିତ୍ତାକର୍ଷକ ହୋଇଛି 'ଘୋଷା' ପଦର ସଂଯୋଗ ହେତୁ । ରସରାଜ କୃଷ୍ଣଙ୍କୁ ନିଖିଳ ବ୍ରଜବାସୀଙ୍କ ନେତ୍ରର ପୁଞ୍ଜୀଭୂତ ପୁଣ୍ୟ ଭାବରେ କଳ୍ପନା କରିବା ଏବଂ 'ଦେଖିଲେ ଦେଖିଲି ପରି ଥରେ ରସିକରାଜଙ୍କୁ' (ପୃ ୩୪୫) ସଖୀର ଏହି ସରଳ ଅଥଚ ବୈଦଗ୍‌ଧ୍ୟ-ବ୍ୟଞ୍ଜକ ଉକ୍ତିର ଅଯତ୍ନ ସୁଷମା ସଙ୍ଗୀତଟିରେ ଏକ ଯାଦୁ ସଞ୍ଚାର କରିଛି ।

ଏହି ପର୍ଯ୍ୟାୟର ଗୀତ ଗୁଡ଼ିକ ମଧ୍ୟରେ କବି ରାଧାଙ୍କୁ ସହୃଦୟ ପାଠକ ମାନଙ୍କର ଅତି ଆପଣାର କରିଛନ୍ତି ତାଙ୍କର ଚଳଣି ଓ ଆଚରଣରେ ପଲ୍ଲୀସୁଲଭ ସ୍ପର୍ଶ ଦେଇ । ରାଧାଙ୍କର ଶ୍ୟାମ ଦର୍ଶନର ଆକାଙ୍‌କ୍ଷା ନିବିଡ଼, କିନ୍ତୁ ଏ ଆକାଙ୍‌କ୍ଷା ତାଙ୍କଠାରେ କୁଳବଧୂର ଅଭିମାନକୁ ଅତିକ୍ରମ କରି ଦୁଃସାହସିକ ହୋଇ ପାରିନାହିଁ । ଆମ ଉତ୍କଳର ପଲ୍ଲୀ କୁଳବତୀସୁଲଭ ସମସ୍ତ ଆକଟ ଓ ଅଭିମାନ ମଧ୍ୟରେ ପ୍ରିୟତମଙ୍କର ସାକ୍ଷାତ୍ ଦର୍ଶନର ପ୍ରଚ୍ଛନ୍ନ ବାସନା ପୋଷଣ କରି ଯମୁନାକୁ ଯାଇଛନ୍ତି ସ୍ନାନାର୍ଥିନୀ ରାଧା । କିନ୍ତୁ ସଖୀ ନିକଟରେ ଯେତେ ଅବହିତ୍ଥା ଏବଂ ସ୍ନାନ ନିମିତ୍ତ ବାହ୍ୟତଃ ଯେତେ ଅନିଚ୍ଛା ପ୍ରକାଶ କଲେ ମଧ୍ୟ ସେହି ଅନିଚ୍ଛାରେ ତାଙ୍କର ଇଚ୍ଛା ଓ ଉତ୍କଣ୍ଠା ଅଭିବ୍ୟଞ୍ଜିତ । ତା' ନ ହୋଇଥିଲେ ଶ୍ରୀକୃଷ୍ଣଙ୍କର କାମନନ୍ଦୀ ସୌନ୍ଦର୍ଯ୍ୟରେ

(୨୬) ଦର୍ଶନାନୁରାଗେ ସଖୀଉକ୍ତି, ଗୋ କୃ ଗ୍ରଂ, ପୃ ୩୩୮

(୨୭) ଗୋ କୃ ଗ୍ରଂ, ପୃ ୩୪୨

ରାଧାଙ୍କର ପାତିବ୍ରତ୍ୟର ଧୃତି ଟଳି ନଥାନ୍ତି । ଏକ ଦିଗରେ ପ୍ରିୟଦର୍ଶନ, ଅନ୍ୟ ଦିଗରେ ପାତିବ୍ରତ୍ୟର ଅଭିମାନ : ଏହି ଦ୍ୱନ୍ଦ୍ୱଟିର ଚିତ୍ର କିପରି ହୃଦ୍ୟ ହୋଇଛି, ଲକ୍ଷ୍ୟ କରାଯାଉ—

କେ ଦେଖିଦେଲେ ମୋର ସରିଯିବ ସଂସାର,
ହେଲେ ନିକଟ କରି ପରିହାସରେ ।୪।
ଏଣେ ତେଣେ ଅନାଇଁ ଶ୍ୟାମ ହୃଦେ ଲଗାଇ
ଘେନିଗଲେ ଗୋପାଳକୃଷ୍ଣ କହିରେ ।୫।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ ୩୭୪)

ପ୍ରେମିକର ଅପ୍ରତ୍ୟାଶିତ ଆବିର୍ଭାବ ଫଳରେ ସ୍ନାନାର୍ଥିନୀ କୁଳବଧୂର ବିପର୍ଯ୍ୟସ୍ତ ବେଶ-ଭୂଷା, ଅସଜ୍ଜ-ସୁଷମା ଓ ଭାବ ବିଚେଷ୍ଟା ମଣ୍ଡିତ ମୂର୍ତ୍ତିଟି କିପରି ଚିତ୍ତାକର୍ଷକ ହୋଇଛି, ନିମ୍ନୋକ୍ତ ଉଦ୍ଧୃତିରେ ଲକ୍ଷ୍ୟ କରାଯାଇ ପାରେ—

ବେଳା ଶିଳାରେ ବସି ହେଲାବେ ତନୁ ଘସି
ହେଉଥିଲି ବୟସୀ ଠାରିଦେଲେ ମା ।୧।
ଉଠୁ ମୁଁ ଝଟକରି ଆଳୀ ଆପଟ କରି
ପ୍ରତି ପ୍ରତୀକ ଯାକ ଅଭରିଗଲା ମା ।୨।
ଫିଟି ଚରମେ କେଶ ଲେଟୁଥିଲା ଗୋ ବାସ
ଥିବାଠାରେ ଯତନରେ ନ ଥିଲା ମା ।୩।

(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୪୦୦)

କୁଳବଧୂର ଲଜ୍ଜା ଓ ସମ୍ଭ୍ରମ ମଧ୍ୟରେ ବ୍ୟଞ୍ଜନାରେ ରାଧାଙ୍କର ଅନୁରାଗର ପ୍ରକାଶ ଯେପରି ସ୍ୱାଭାବିକ, ସେହିପରି ସଂଯତ ଓ ଚିତ୍ତାକର୍ଷକ, ଯଥା—

ଆଉରି ରହି ବୋଲି ସେ କାଳେ ଭୁରୁବଲ୍ଲୀ
ସ୍ଖଳି ସ୍ଖଳୁଁ ମୋ ଜ୍ଞାନ ହଜିଗଲା ମା ।୪।
ପଥରକୁ ଆସୁଁ ସେ, ପଥ ମୋତେ ନ ଦିଶେ
ପାଥରେ ଗୁଡ଼ ଆଳ କହି ଦେଲା ମା ।୫। (ତତ୍ରୈବ)

ଏହି ସାକ୍ଷାତ୍ ଦର୍ଶନ ପର୍ଯ୍ୟାୟର ଗୀତଗୁଡ଼ିକର ବିଭିନ୍ନ ସ୍ଥଳରେ ରୂପ ଗୋସ୍ୱାମୀଙ୍କର ରଚନାର ଗ୍ରସ୍ତ ଲକ୍ଷ୍ୟ କରା ଯାଇପାରେ । ଗୋଟିଏ ଦୃଷ୍ଟାନ୍ତ ଦିଆ ଯାଉଛି । ଅଟ୍ଟାଳିକା ଉପରୁ ଗବାକ୍ଷ ଜାଲ-ରନ୍ଧ୍ର ମଧ୍ୟ ଦେଇ ରାଧା ଶ୍ରୀକୃଷ୍ଣଙ୍କୁ ଦେଖି ବିଶାଖାଙ୍କୁ କହୁଛନ୍ତି— ଯାହାଙ୍କର ଅଙ୍ଗକାନ୍ତି ଇନ୍ଦୀବରର ମଧ୍ୟ ଦେଶ ପରି କୋମଳ ଓ ସ୍ନିଗ୍ଧ, ଯାହାଙ୍କର ପରିଧାନରେ ଗଳିତ-କାଞ୍ଚନନିଭ ବସନ, ଯାହାଙ୍କର ମନୋହର ବକ୍ଷସ୍ଥଳରେ ମୁକ୍ତାମାଳା ବିରାଜିତ ଏବଂ ସମସ୍ତ ଜଗତକୁ ଯେ ଅନଙ୍ଗମୟ କରିଛନ୍ତି, ସେହି ଯୁବକଟି କିଏ ? (୨୮) ।

(୨୮) ରୂ. ଗୋ., ପଦ୍ୟାବଳୀ, ଉ. ନୀ., ଶୃଙ୍ଗାରଭେଦ, ଶ୍ଳୋକ-୫

ସେହିପରି ଅନ୍ୟାନ୍ୟ ସାମ୍ନାରେ ବନ ପ୍ରତ୍ୟାବର୍ତ୍ତନଶୀଳ ବ୍ରଜଚନ୍ଦ୍ରମାଙ୍କୁ ଦେଖି ଅନୁରାଗ ବଶତଃ ରାଧା ଭାବୁଛନ୍ତି—'ଏ ମୂର୍ତ୍ତି ତ ପୂର୍ବେ କେବେ ସେ ଦେଖି ନାହାନ୍ତି ।' ଲଳିତାଙ୍କଠାରୁ ତାଙ୍କର ପ୍ରାଣପ୍ରିୟ ଶ୍ୟାମ ବୋଲି ଜାଣିବା ପରେ କହନ୍ତି—'ଏ କ'ଣ ସେହି ଗୋପିକା-କୁମୁଦିନୀଗଣର ଚନ୍ଦ୍ର ? ଏ କ'ଣ ତାଙ୍କର ମନ-କୋକିଳର ବସନ୍ତ ? ଏ ତାଙ୍କର ନେତ୍ର ଯୁଗଳକୁ ଅମୃତ ରାଗରେ ପରିସିକ୍ତ କରିଛନ୍ତି (୨୯) ।'

'କୃଷ୍ଣ'ନାମଧାରୀ ବ୍ୟକ୍ତି, ବଂଶୀବାଦକ ଓ ଚିତ୍ରପଟର ଯୁବା ଏ ତିନିଜଣ ପୃଥକ୍ ବ୍ୟକ୍ତି ବୋଲି ରାଧାଙ୍କ ମନରେ ଭ୍ରମ ଜାତ ହୁଏ । ଏକକାଳୀନ ତିନିଜଣ ପୁରୁଷଙ୍କ ପ୍ରତି ଅନୁରାଗିଣୀ ହେବା ଚିନ୍ତାରେ ସେ ନିଜକୁ ଧିକ୍କାର କରନ୍ତି । କୁଳବଧୂସୁଲଭ ଲଜ୍ଜା ଓ ବେଦନାରେ ହୃଦୟ ତାଙ୍କର ମଥିତ ହୋଇପଡ଼ୁଛି । ରାଧାଂକର ଏ ବ୍ୟଥାର ଯେଉଁ ମାର୍ମିକ ଚିତ୍ର କବି 'ଶ୍ରୀରାଧାଂକ ତିନିପୁରୁଷ ଭ୍ରମ' ଶୀର୍ଷକ ଗୀତରେ ଅଙ୍କନ କରିଛନ୍ତି, ତାହା କପରି ରୂପ ଗୋସ୍ୱାମୀଂକର ବିଦଗ୍ଧ ମାଧବ ନାଟକର ଏକ ଶ୍ଳୋକ (୨।୧୯) ଭିତ୍ତିରେ ରଚିତ, ତା'ର ଆଲୋଚନା ପଞ୍ଚମ ପରିଚ୍ଛେଦରେ ଦ୍ରଷ୍ଟବ୍ୟ ।

ଶ୍ରୀକୃଷ୍ଣଙ୍କର ନାମ, ବେଣୁନାଦ ଶ୍ରବଣ ଓ ଚିତ୍ରପଟ ଦର୍ଶନ ପରେ ପ୍ରେମିକଙ୍କର ବିଶେଷ ପରିଚୟ ଲାଭ ନିମନ୍ତେ ନବାନୁରାଗିଣୀ ରାଧାଙ୍କ ମନରେ ନିବିଡ଼ ଆଗ୍ରହ ଓ ଉତ୍କଣ୍ଠା ଜାତ ହୋଇଛି । ଅପରାହ୍ଣରେ ଅଳସ-ମୁହୂର୍ତ୍ତରେ ରାଧା ଓ ପରମ ପ୍ରେଷ୍ଠା ତଥା ପରିହାସ ନିପୁଣା ସଖୀ ଲଳିତାଙ୍କର ଦୀର୍ଘ ସଂଳାପ (ସାଙ୍ଗୀତିକ କଥନିକା) ମାଧ୍ୟମରେ 'ନବାନୁରାଗ ବୋଲି' ଶିରୋନାମାରେ କବି ଶ୍ରୀକୃଷ୍ଣଙ୍କର ପରିଚୟ, ରୂପ, ଗୁଣ, ସ୍ୱଭାବ, ବେଶ, ପ୍ରସାଧନ, ଭୂଷଣ ଲୀଳା ସମ୍ବନ୍ଧୀ ଓ ଶୃଙ୍ଗାର-ନାୟକତ୍ୱର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ଏହି ଦୀର୍ଘ ଗୀତଟି (୧୦୫ ପଦ) 'ମଧୁଶ୍ରୀ' ରାଗରେ ନାଟକୀୟ ଭଙ୍ଗୀରେ ରଚିତ ହେଲେ ମଧ୍ୟ ଏଥିରେ ନାଟକୀୟତାର ଅଭାବ ଲକ୍ଷିତ ହୁଏ । ରାଧାଙ୍କର ଅସୀମ ଆଗ୍ରହ ଓ ଅଧୀରତାପୂର୍ଣ୍ଣ ଅଗଣିତ ପ୍ରଶ୍ନ ଏବଂ ଚତୁରା ପ୍ରଗଲ୍ଭା ଲଳିତାଙ୍କର ଶୃଙ୍ଗାରୋଦ୍ଦୀପକ ସୂଚନାଧର୍ମୀ ବୈଦଗ୍ଧ୍ୟପୂର୍ଣ୍ଣ ଉତ୍ତର ସଙ୍ଗୀତଟିର ଆକାରକୁ ଦୀର୍ଘ ଓ ଗତିକୁ ମନ୍ଥର କରିଥିଲେ ମଧ୍ୟ ସହୃଦୟ ପାଠକ ମାନଙ୍କ ପକ୍ଷରେ କମ ଆସ୍ୱାଦ୍ୟ ଓ ଉପଭୋଗ୍ୟ ହୋଇନାହିଁ । ଦୃଷ୍ଟାନ୍ତ ସ୍ୱରୂପ କେତୋଟି ପଦ ଉଦ୍ଧାର କରାଯାଉଛି—

ରାଧା— କି ନାମ ବୋଇଲୁ ତୁହି ?
ଲଳିତା— ପୁଣି ଶୁଣିବାକୁ ଚିତ୍ତ ବଳିଲା କି
କୃଷ୍ଣ ବୋଲି ଥିଲି କହିରେ, ପ୍ରାଣମିତ ।୨।
ରାଧା— କେ ଚିତ୍ର ପଟର ଯୁବା ?
ଲଳିତା— କୃଷ୍ଣ, ବୈଣବିକ, ଚିତ୍ର ତିନି ଯାକ
ଏକ ତରୁଣ ମଘବାରେ ପ୍ରାଣମିତ ।୩।

---

(୨୯) ରୂ. ଗୋ., ଲଳିତମାଧବ, ୧।୫୩ ଏବଂ ଗୌ. ବୈଦ., ୫ମ ଖଣ୍ଡ ପୃ-୨୮୭୮

ରାଧା—କେମନ୍ତ ସେ ଦେଖିବାକୁ ?

ଲଳିତା—କୋଟିଏ କନ୍ଦର୍ପ ଗୋଟିଏ ହୋଇଲେ
ସମାନ ବୋଲିବ ତାଙ୍କୁରେ, ପ୍ରାଣମିତ ।୪। (୩୦)

ରାଧା—ବୟସ କେତେ ତାଙ୍କର ?

ଲଳିତା—ନବ ତରୁଣିମ ଅବସ୍ଥା, ବୟସ-
ହୋଇଥିବ ବାର ତେରରେ, ପ୍ରାଣମିତ ।୭।

ରାଧା—ବିବାହ ହୋଇଲେଣି କି ?

ଲଳିତା—ବଧୂ ସଧେ ହାତ— ଭାର୍ଗି ହେଉଛନ୍ତି
ଯଶୋଦା ତୋତେ ବଳେକରେ, ପ୍ରାଣମିତ ।୮।

ରାଧା—ମୋ ଅଡ଼କୁ କେଣେ ତାଙ୍କ ?

ଲଳିତା—ଯଥାଯୋଗ୍ୟ ବୋଲି ମନ ଲୋଭାଇଲି
କଥାକୁ କାହିଁକି ଛନ୍ଦୁରେ, ପ୍ରାଣମିତ ।୯।

(ଗୋ. କୃ. ଗ., ପୃ. ୨୧୫-୨୧୭)

ସଙ୍ଗୀତରୁ ଉଦ୍ଧୃତ ଏହି କେତୋଟି ପଦରେ କବିଙ୍କର ରସବୋଧ ଓ ସୌନ୍ଦର୍ଯ୍ୟ ଚେତନାର ସୁସ୍ପଷ୍ଟ ପରିଚୟ ମିଳେ । କିନ୍ତୁ ଶ୍ରୀକୃଷ୍ଣଙ୍କ ଶୃଙ୍ଗାର ନାୟକତ୍ୱ ସହ ରୂପ, ଗୁଣ, ବୃତ୍ତି ଓ ବନବେଶର ଦୀର୍ଘ ବର୍ଣ୍ଣନାରେ କବି ବୈଷ୍ଣବ ଅଳଙ୍କାର ଶାସ୍ତ୍ର ଓ ଦର୍ଶନ ଗ୍ରନ୍ଥ ଏବଂ ଲୌକିକ ଅଳଙ୍କାର ଶାସ୍ତ୍ର ସଚେତନ ହୋଇପଡ଼ିଛନ୍ତି । ଶାସ୍ତ୍ରୀୟତା ଏବଂ ରୀତି-କାବ୍ୟର ବସ୍ତୁତ ଓ କୃତ୍ରିମତାର ଅନୁସରଣ ହେତୁ ରଚନାର ସ୍ୱାଭାବିକ ସୌନ୍ଦର୍ଯ୍ୟ କ୍ଷୁର୍ଣ୍ଣ ହୋଇଛି । ଭକ୍ତି ରସାମୃତ ସିନ୍ଧୁର ବିଭାବ ପର୍ଯ୍ୟାୟର (ଦକ୍ଷିଣ ଭାଗ, ପ୍ରଥମ ଲହରୀ) ଅନୁକରଣରେ କବି ଶ୍ରୀକୃଷ୍ଣଙ୍କୁ ଧୀର ଲଳିତ ଦକ୍ଷିଣ ନାୟକର ଲକ୍ଷଣ, ସାଧୁ ସ୍ୱଭାବ ଓ ସଲ୍ଲକ୍ଷଣରେ ଭୂଷିତ କରି ତାଙ୍କର ଲୀଳାବିଳାସ, ଚତୁଃଷଷ୍ଟି ଗୁଣ, ସୁରମ୍ୟାଙ୍ଗ, ବେଶ ଓ ଅଳଙ୍କାରର ସୂଚନା ଦେଇଛନ୍ତି । ତନ୍ମଧ୍ୟରୁ କେତୋଟିର ଦୃଷ୍ଟାନ୍ତ ଦିଆଯାଉଛି—

ନାୟକ ଲକ୍ଷଣ—ଧୀର, ଲଳିତ ପରି ଦକ୍ଷେ ବିଗ୍ରହ,
ରୂପ, ଚିହ୍ନ, ଆଚରଣରେ, ପ୍ରାଣମିତ ।୨୦।

ସ୍ୱଭାବ—ସାଧୁ ସୁଧୀର ଅମ୍ବୁଧିରୁ ଗମ୍ଭୀର
ପ୍ରେୟସୀ-ଜନ ଅଧୀନରେ, ପ୍ରାଣମିତ ।୨୧।

ସୁରମ୍ୟାଙ୍ଗ—ଅଙ୍ଗ ପ୍ରତ୍ୟଙ୍ଗ ସମ୍ବୃଦ୍ଧ ସୁଗଠିତ
ଆଜନ୍ମ ପ୍ରଶଂସନୀୟରେ, ପ୍ରାଣମିତ ।୨୨।

(୩୦) ଗ. କୃ. ଓ କୃ. ନ. ସମ୍ପାଦିତ ଗୋ. କୃ. ପ.ରେ ଏ ପଦ ସହିତ ଆହୁରି ୨୩ଟି ପଦ ନାହିଁ । ଗ. କୃ. ସମ୍ପାଦିତ ପଦ୍ୟାବଳୀରେ ଏ ଗୀତର ପଦ ସଂଖ୍ୟା ୮୧ ।

ସ୍ୱରୂପ—ସଂସାର ବାହାର ସରସ ସୁନ୍ଦର
ସ୍ୱରୂପ ନିତ୍ୟନୂତନରେ, ପ୍ରାଣମିତ ।୮।
ଗୁଣ—ଅସଂଖ୍ୟଗୁଣ- ଗଣହୁଁ ମୁଖ୍ୟଗୁଣ
ଗଣନାରେ ଚଉଷଠିରେ, ପ୍ରାଣମିତ ।୯।

ଏତଦ୍‌ବ୍ୟତୀତ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ, ବଦୂଷତା, ବୀରତ୍ୱ, ରୁଚିରତା, ଅପରାଧୀ ପ୍ରତି ଦୟା, ଗାମ୍ଭୀର୍ଯ୍ୟ, ଦକ୍ଷିଣ ସ୍ୱଭାବ, ସାଧୁ ସମାଶ୍ରୟତା, ଅବିରସାନନ୍ଦମୟତ୍ୱ, ଲୀଳାପ୍ରିୟତା, ପ୍ରେମମୟତ୍ୱ, ପ୍ରପନ୍ନେ ଅନୁକମ୍ପା ଓ କ୍ଷମା ଇତ୍ୟାଦି ଗୁଣର ବର୍ଣ୍ଣନା ସହ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ଓ ନେପଥ୍ୟର ସୌନ୍ଦର୍ଯ୍ୟ (ମୁଖ, ଚିକୁର, ଲଲାଟ, ତିଲକ, ଭ୍ରୂବିଳାସ, ଇକ୍ଷଣ ରୀତି, ଦୃଷ୍ଟିବାଣୀ, ନାସା, ଗଣ୍ଡଦ୍ୟୁତି, ଶ୍ରବଣ, କର୍ଣ୍ଣାବତଂସ ଇତ୍ୟାଦି), ସମ୍ବନ୍ଧୀ, ଭୂଷଣ ଓ ବେଶ ପରିପାଟୀର ଦୀର୍ଘ ବର୍ଣ୍ଣନା କରିଛନ୍ତି । ଏଥିରେ ଭକ୍ତି ରସାମୃତ ସିନ୍ଧୁ ସହ ନୈଷଧ ଚରିତ, ସୁଭଦ୍ରା ପରିଣୟ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଓ ବିଦଗ୍ଧ ଚିନ୍ତାମଣିର ବର୍ଣ୍ଣନା ରୀତି ଏବଂ ବ୍ୟତିରେକ, ରୂପକ, ଉତ୍ପ୍ରେକ୍ଷା ଓ ଉପମା ପ୍ରଭୃତି ଆଲଙ୍କାରିକ ଛଟାର ପ୍ରଭାବ ସୁସ୍ପଷ୍ଟ (୩୧) । ସର୍ବୋପରି ଗୀତ ଗୋବିନ୍ଦକାର ଜୟଦେବଙ୍କ ଆଦର୍ଶରେ କବି ଶ୍ରୀକୃଷ୍ଣଙ୍କୁ ଶୃଙ୍ଗାର ରସର ମୂର୍ତ୍ତିମନ୍ତ ବିଗ୍ରହ ରୂପେ କଳ୍ପନା କରିଛନ୍ତି—

ମୂର୍ତ୍ତିମନ୍ତ ହେଲ- ପରି ମୁଁ ମଣୁଛି
କିଷ୍ଟଙ୍କେ ଶୃଙ୍ଗାର ରସ । ୬୯ । (୩୨)

( ଗୋ. କୃ. ଗ୍ରଂ ପୃ ୩୦୪ )

ସଙ୍ଗୀତ ଗୁଡ଼ିକର ଆକାର କ୍ଷୁଦ୍ର ହୋଇଥିବାରୁ ସେଗୁଡ଼ିକରେ ଶ୍ରୀକୃଷ୍ଣଙ୍କ ରୂପ, ଗୁଣ, ଅଲଙ୍କାର ଓ ନେପଥ୍ୟର ବିସ୍ତୃତ ବର୍ଣ୍ଣନା ଦେବାର ଅବସର ନାହିଁ । ମନେହୁଏ, କବି ବୈଷ୍ଣବ ଦର୍ଶନ ଓ ଅଲଙ୍କାର ଶାସ୍ତ୍ର ନିର୍ଦ୍ଦିଷ୍ଟ ଆଲମ୍ବନ ବିଭାବ ରୂପେ ଶ୍ରୀକୃଷ୍ଣଙ୍କର ପୁଙ୍ଖାନୁପୁଙ୍ଖ ଚିତ୍ର ଦେବା ପାଇଁ ଏ ପ୍ରକାର ଦୀର୍ଘ ସାଙ୍ଗୀତିକ କଥନିକାର ପରିକଳ୍ପନା କରିଛନ୍ତି ଏବଂ ବର୍ଣ୍ଣନାରେ ବିସ୍ତୃତର ଅବକାଶ ହେତୁ ରୀତିକାବ୍ୟ ସୁଲଭ ବର୍ଣ୍ଣନାଭଙ୍ଗୀ ଓ ଆଲଙ୍କାରିକତା ସମ୍ପର୍କରେ କିଞ୍ଚିତ ଉତ୍ସାହିତ ହୋଇଛନ୍ତି ।

**ପୂର୍ବରାଗ ପ୍ରସଙ୍ଗରେ ବୟଃସନ୍ଧି ଓ କୈଶୋର :**

ରାଧା ଓ କୃଷ୍ଣଙ୍କର ପୂର୍ବରାଗ ପ୍ରସଙ୍ଗରେ ବୈଷ୍ଣବ କବିମାନେ ବୟଃସନ୍ଧିର ବର୍ଣ୍ଣନା କରିଥାନ୍ତି । ଉଭୟ ରାଧା ଓ କୃଷ୍ଣଙ୍କର ବୟଃସନ୍ଧି ଉଦ୍ଦୀପନ ବିଭାବର ଅନ୍ତର୍ଭୁକ୍ତ । ଉଦ୍ଦୀପନ ବିଭାବ ପ୍ରସଙ୍ଗରେ ରୂପ ଗୋସ୍ୱାମୀ ତାଙ୍କର ଭକ୍ତିରସାମୃତ ସିନ୍ଧୁ ଓ ଉଜ୍ଜ୍ୱଳ ନୀଳମଣିରେ ଶ୍ରୀକୃଷ୍ଣଙ୍କର କାୟିକଗୁଣ, ବାଚିକ, ମାନସିକ ଗୁଣ ଏବଂ ନାମ, ଚରିତ, ମଣ୍ଡନ, ସମ୍ବନ୍ଧୀ ଓ ତଟସ୍ଥ—ଏହି ବିଶେଷ ଉଦ୍ଦୀପନ ବିଭାବ ସଂପର୍କରେ ଆଲୋଚନା କରିଛନ୍ତି । ଶ୍ରୀକୃଷ୍ଣଙ୍କର

(୩୧) ଭ.ର.ମୃ.ସିଂ , ଦ. ୧ମ ଲହରୀ; କୋ. ବ୍ର. ସୁ., ୧୬।୧୪; ନୈଷଧଚରିତମ୍ ୧।୨୨
(୩୨) ଗୀ. ଗୋ., ସଂପା: ହରେକୃଷ୍ଣ ମୁଖୋପାଧ୍ୟାୟ, ୧।୪୮, ପୃ. ୩୦

ବୟସ, ସୌନ୍ଦର୍ଯ୍ୟ, ରୂପ ଓ ମାର୍ଦ୍ଦବ ପ୍ରଭୃତି କାୟିକ ଗୁଣରେ ଅନ୍ତର୍ଭୁକ୍ତ । ବୟସର ତ୍ରିବିଧ ଭେଦ ମଧ୍ୟରେ (ବାଲ୍ୟ, ପୌଗଣ୍ଡ ଓ କୈଶୋର) କୈଶୋର ହିଁ ମଧୁର ରସରେ ଶ୍ରେଷ୍ଠ । କୈଶୋର ତିନିପ୍ରକାର, ଯଥା—ଆଦ୍ୟ, ମଧ୍ୟ ଓ ଶେଷ କୈଶୋର । ଆଦ୍ୟ କୈଶୋରରେ ବର୍ଣ୍ଣର ଅନିର୍ବଚନୀୟ ଔଜ୍ଜ୍ୱଲ୍ୟ, ନେତ୍ରାନ୍ତରେ ଅରୁଣକାନ୍ତି ଓ ବକ୍ଷରେ ରୋମାଳି ପ୍ରକାଶ ପାଏ (୩୩) । ମଧ୍ୟ କୈଶୋରରେ ଉରୁ, ବାହୁ, ଓ ବକ୍ଷସ୍ଥଳର ଅନୁପମ ସୁଷମା ଏବଂ ଶ୍ରୀକୃଷ୍ଣଙ୍କର କମନୀୟ ମୂର୍ତ୍ତିର ମାଧୁର୍ଯ୍ୟ ପ୍ରକାଶ ପାଏ । ସ୍ମିତ ମଣ୍ଡିତ ମୁଖମଣ୍ଡଳ, ବିଳାସ ଘୂର୍ଣ୍ଣିତ ଚଞ୍ଚଳ ନୟନ ଓ ଜଗନ୍ମୋହନକାରୀ ଗୀତ ଆଦି ମଧ୍ୟ କୈଶୋରର ମାଧୁରୀ । ରସିକତା, କୁଞ୍ଜକ୍ରୀଡ଼ା ଓ ରସାଦି ଲୀଳାର ଆରମ୍ଭ ହେଉଛି ମଧ୍ୟ କୈଶୋରର ଚେଷ୍ଟା (୩୪) । ଶେଷ କୈଶୋରରେ ପୂର୍ବାପେକ୍ଷା ଅଙ୍ଗପ୍ରତ୍ୟଙ୍ଗ ଅତୀବ ଚମତ୍କାରିତା ଲାଭ କରିବା ସଙ୍ଗେ ସଙ୍ଗେ ତ୍ରିବଳି ରେଖା ସ୍ପଷ୍ଟରୂପେ ପ୍ରକାଶ ପାଏ (୩୫) । ଏହି ସମୟରେ ଶ୍ରୀକୃଷ୍ଣଙ୍କର ଅଙ୍ଗଶୋଭା ମଦନର ମାଧୁରୀକୁ ତୁଚ୍ଛ କରେ । ଅଙ୍ଗ ପ୍ରତ୍ୟଙ୍ଗରେ ଶିଳ୍ପନୈପୁଣ୍ୟ ଓ ନେତ୍ରାଞ୍ଚଳରେ ଚମତ୍କୃତି ପ୍ରକାଶିତ ହୁଏ । ଏହି ଶେଷ କୈଶୋର ହେଉଛି ଶ୍ରୀକୃଷ୍ଣଙ୍କର ନବଯୌବନ (୩୬) । ରୂପ ଗୋସ୍ୱାମୀ ଉଜ୍ଜ୍ୱଳ ନୀଳମଣିରେ ବୟସ, ରୂପ, ଲାବଣ୍ୟ, ସୌନ୍ଦର୍ଯ୍ୟ, ଅଭିରୂପତା, ମାଧୁର୍ଯ୍ୟ ଓ ମାର୍ଦ୍ଦବାଦିକୁ କାୟିକ ଗୁଣରେ ଅନ୍ତର୍ଭୁକ୍ତ କରିଛନ୍ତି । ଭକ୍ତି ରସାମୃତ ସିନ୍ଧୁରେ କୈଶୋରର ତ୍ରିବିଧା ବୈଚିତ୍ର୍ୟ ସମ୍ପର୍କରେ ସୂଚନା ଦିଆଯିବା ସ୍ଥଳେ ଉଜ୍ଜ୍ୱଳ ନୀଳମଣିରେ ଚାରିପ୍ରକାର ବୈଚିତ୍ର୍ୟ କଥା କୁହାଯାଇଛି । ଉଜ୍ଜ୍ୱଳ ନୀଳମଣି ଅନୁସାରେ ପ୍ରଥମ କୈଶୋରର ପୂର୍ବଭାଗ ହେଉଛି ବୟଃସନ୍ଧି (୩୭), ପରଭାଗ ନବ୍ୟବୟସ, ମଧ୍ୟ କୈଶୋର ହେଉଛି ବ୍ୟକ୍ତ ବୟସ ଏବଂ ଶେଷ କୈଶୋର ପୂର୍ଣ୍ଣ ବୟସ । ବୈଷ୍ଣବ ଗୋସ୍ୱାମୀ ଓ କବିମାନଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ହେଉଛନ୍ତି ନିତ୍ୟ କିଶୋର । କୌମାର ବା ବାଲ୍ୟ ଓ ପୌଗଣ୍ଡକୁ ସେମାନେ କୈଶୋରର ଧର୍ମ ଭାବରେ ଗ୍ରହଣ କରିଥାନ୍ତି । ଲୀଳାରସ ବୈଚିତ୍ର୍ୟର ବିଶେଷ ଆସ୍ୱାଦନ ପାଇଁ ସେ (ଶ୍ରୀକୃଷ୍ଣ) ପ୍ରକଟ ଲୀଳାରେ ବାଲ୍ୟ, ପୌଗଣ୍ଡକୁ ସ୍ୱୀକାର କରି ତା'ର ଅବସାନରେ ନିଜର ସ୍ୱରୂପାନୁବନ୍ଧୀ କୈଶୋରରେ ନିତ୍ୟ ଅବସ୍ଥାନ କରନ୍ତି । ରାଧା ପ୍ରଭୃତି ବ୍ରଜସୁନ୍ଦରୀମାନଙ୍କର ବୟସ ଓ ବୟସର ଭେଦ ଶ୍ରୀକୃଷ୍ଣଙ୍କର ବୟସର ଅନୁରୂପ । ସେମାନଙ୍କର କୈଶୋରର ଅବସାନ ଘଟେ ନାହିଁ । ଶ୍ରୀକୃଷ୍ଣଙ୍କ ଅନନ୍ତଗୁଣ ମଧ୍ୟରୁ ଯେପରି ଚଉଷଠିଟି ଶ୍ରେଷ୍ଠ, ସେହିପରି ରାଧାଙ୍କର ଅସଂଖ୍ୟ ଗୁଣ ମଧ୍ୟରୁ ପଚିଶ ଗୁଣ ଶ୍ରେଷ୍ଠ (୩୮) ।

---

(୩୩) ଭ ର ମୃ ସିଂ, ୨ । ୧ । ୧୬୦,

(୩୪) ତତ୍ରୈବ ୨ । ୧ । ୧୬୩

(୩୫) ତତ୍ରୈବ, ୨ । ୧ ୧୬୪

(୩୬) ତତ୍ରୈବ, ୨ । ୧ ୧୬୫

(୩୭) ଉ. ନୀ. ଉଦ୍ଦୀପନ ପ୍ରକରଣମ୍, ଶ୍ଳୋକ ୭, ପୃ ୪୩୯

(୩୮) ଉ. ନୀ., ରାଧାପ୍ରକରଣମ୍, ଶ୍ଳୋ ୯, ପୃ ୧୦୫-୧୦୭

**ଶ୍ରୀକୃଷ୍ଣଙ୍କର ପୂର୍ବରାଗ :**

ରାଧାଙ୍କ ପରେ କବି ଶ୍ରୀକୃଷ୍ଣଙ୍କର ପୂର୍ବରାଗ ପ୍ରସଙ୍ଗରେ ମଧୁର ରତିର ଉଦ୍ଦୀପନ ଭାବରେ ତାଙ୍କର (ଶ୍ରୀକୃଷ୍ଣଙ୍କର) ନବ କୈଶୋର ଅବସ୍ଥାକୁ ଭିତ୍ତି କରି ଗୀତଟିଏ ରଚନା କରିଛନ୍ତି । ନାନ୍ଦୀମୁଖୀଙ୍କ ପ୍ରତି ପୌର୍ଣ୍ଣମାସୀ ଉକ୍ତ ଛଳରେ ଗୀତଟିର ଆଦ୍ୟ ପଙ୍‌କ୍ତି ହେଉଛି— ମୋହନ ନୟନାଞ୍ଚଳ ନାଚଲାଣି, ଗ୍ରଂ. ପୃ. ୨୯୬ । ରାଧାକୃଷ୍ଣଙ୍କର ପ୍ରଣୟର ଯୋଗସୂତ୍ର-କାରିଣୀ ଭଗବତୀ ପୌର୍ଣ୍ଣମାସୀ ଶ୍ରୀକୃଷ୍ଣଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ଆଦ୍ୟ କୈଶୋରର ଆବିର୍ଭାବ ଓ ତଜ୍ଜନିତ ଭାବବିଚେଷ୍ଟାରେ ଆନନ୍ଦ ପ୍ରକାଶ କରି ନିଜର ନାତୁଣୀ ସମକ୍ଷରେ ଭାବୀ-ଲୀଳା ବୈଚିତ୍ର୍ୟ ସମ୍ଭାବନାରେ ପରମ ଉତ୍ସାହ ପ୍ରକାଶ କରିଛନ୍ତି । କବିଙ୍କ ବର୍ଣ୍ଣନାନୁଯାୟୀ କୌମାରର ସ୍ୱଭାବ-ସ୍ଥିରତା ସ୍ଥାନରେ ଶ୍ୟାମଙ୍କର ନେତ୍ରାଞ୍ଚଳରେ ଚଞ୍ଚଳତା ପ୍ରକାଶ ପାଇଛି । ତନୁ-ତମାଲ ବନରେ ତାରୁଣ୍ୟ-କେଶରୀର ଆବିର୍ଭାବ ହେତୁ ଶୈଶବ-କରୀ ଅପସରି ଯାଇଛି । ନୀଳମଣି-ଦର୍ପଣନିନ୍ଦୀ ସ୍ନିଗ୍ଧ ଗଣ୍ଡ ଦେଶରେ ମକର କୁଣ୍ଡଳ ପ୍ରତିବିମ୍ବିତ ହୋଇଛି । ମୁଖରୁ ମୃଦୁମନ୍ଦ ହାସଯୁକ୍ତ ବାଣୀ-ସୁଧା ଝରିପଡୁଛି । ଶ୍ରୀକୃଷ୍ଣ ବ୍ରଜବାଳାଙ୍କର କୋଟିଏ ଜନ୍ମର ପୁଣ୍ୟଫଳ ସ୍ୱରୂପ । ତାଙ୍କର କମନୀୟ ଭ୍ରୂ ଗୋପଯୁବତୀଙ୍କ ଚିତ୍ତରେ ମଦନ ଭାବାବେଶ ଅଙ୍କୁରିତ କରୁଛି । ପାରମ୍ପରିକ କବି ସମୟ ପ୍ରସିଦ୍ଧି ଓ ଗାଢ଼ ଚେତନା ସମ୍ମତ ରୂପକ, ବ୍ୟତିରେକ ଓ ଉପମା ପ୍ରୟୋଗ ବ୍ୟତୀତ ଚିତ୍ର ଯୋଜନା ଓ ବର୍ଣ୍ଣନା ଭଙ୍ଗୀରେ ନୂତନତ୍ୱର ସ୍ୱାଦ ମିଳେନା ।

ରାଧା ଓ ଲଳିତାଙ୍କର ଦୀର୍ଘ ସାଙ୍ଗୀତିକ କଥୋପକଥା ପରେ କବି ବୟଃସନ୍ଧି କାଳରେ ରାଧାଙ୍କର ବିଶେଷ ପରିଚୟ ଶ୍ରୀକୃଷ୍ଣ ଓ ସ୍ୱପକ୍ଷୀୟା ଦୂତୀ ବୃନ୍ଦାଙ୍କର ସଂଳାପ (ସାଙ୍ଗୀତିକ କଥୋପକଥା) ମାଧ୍ୟମରେ (କେଶରି କୁଞ୍ଜ ଶେଯରେ, ଗ୍ରଂ. ପୃ. ୩୦୯) ପ୍ରଦାନ କରିଛନ୍ତି । ରାଧାଙ୍କର ପୀୟୂଷ ସର୍ମ୍ମିତ ନାମ ଶ୍ରବଣରେ ଅପୂର୍ବ ଆନନ୍ଦ ଅନୁଭବ କରି ଅହୈତୁକୀ ଅନୁରାଗ ବଶତଃ କୌତୂହଳୀ ହୋଇ ଶ୍ରୀକୃଷ୍ଣ ବୃନ୍ଦାଙ୍କୁ ରାଧାଙ୍କର ଆଦ୍ୟ କୈଶୋର କାଳୀନ (ବୟଃସଂଧି) ମାଧୁରୀ ଓ ଚେଷ୍ଟା ସମ୍ପର୍କରେ ଜିଜ୍ଞାସା କରନ୍ତି । ବୃନ୍ଦା ଅନୁପମା-ମୟୀ ରାଧାଙ୍କର ବୟଃସଂଧିକାଳୀନ ଅଙ୍ଗପ୍ରତ୍ୟଙ୍ଗର ଅନିର୍ବଚନୀୟ ଶୋଭା, ମାଧୁର୍ଯ୍ୟ, ହାବଭାବ ଓ ବିଚେଷ୍ଟା ବର୍ଣ୍ଣନା କରି ଶ୍ରୀକୃଷ୍ଣଙ୍କର ବାସନାଲୋକରେ ଆଲୋଡ଼ନ ସୃଷ୍ଟି କରନ୍ତି । କବି ରାଧାଙ୍କର ବୈଷ୍ଣବ ଶାସ୍ତ୍ରୋକ୍ତ ମହିମା ସମ୍ପର୍କରେ ସୂଚନା ଦେଇ ତାଙ୍କର ଅପୂର୍ବ ଶୋଭା ଓ ମାଧୁର୍ଯ୍ୟର ସମୟୋଚିତ କାବ୍ୟିକ ଅଭିବ୍ୟକ୍ତି ଘଟାଇଛନ୍ତି । କବିଙ୍କ ବର୍ଣ୍ଣନାନୁଯାୟୀ ରାଧା ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତିଭୂତା ପରାନନ୍ଦ-ସ୍ୱରୂପିଣୀ । ସେ ନିଖିଳ ସଦ୍‌ଗୁଣର ଆଧାର, ଦ୍ୱାତ୍ରିଂଶ ଲକ୍ଷଣ ବିଶିଷ୍ଟା (୩୯), କୋଟି ବ୍ରହ୍ମାଣ୍ଡର ସୁନ୍ଦରୀ କିଶୋରୀମାନଙ୍କର ଶିରୋଭୂଷା । ଲକ୍ଷ୍ମୀ, ହିମାଦ୍ରିତନୟା ପାର୍ବତୀ, ଶଚୀ ଓ ରତିଙ୍କର ସୌନ୍ଦର୍ଯ୍ୟ ତାଙ୍କ ନିକଟରେ ତୁଚ୍ଛ । ବିଧାତା ସୃଷ୍ଟିରେ ତାଙ୍କ ଶୋଭାର ଯୋଗ୍ୟ

(୩୯) ଗୋ. କୃ, ଗ୍ରଂ., ପୃ-୩୧୦, କବି କର୍ଣ୍ଣପୂର, ଅଳଙ୍କାର କୌସ୍ତୁଭ ।

ଉପମା ନାହିଁ । ନିଜର ଉପମା ନିଜେ (୪୦) । ସନ୍ଧିକାଳ ହେତୁ ଭାବ ଓ ବୟସ ଦୃଷ୍ଟିରୁ ରାଧା ଶୈଶବାବସ୍ଥା ପୂର୍ଣ୍ଣ ଅତିକ୍ରମ କରିନାହାନ୍ତି, ବୟସ ଏଗାର କି ବାର । ଅଙ୍ଗଭଙ୍ଗୀରେ କିଶୋରୀସୁଲଭ ଲଜ୍ଜା ପ୍ରକାଶ ପାଇନାହିଁ । କୁମାରୀ କ୍ରୀଡ଼ାରୁ ଚେତନା ଭୃତି ନ ଥିବାରୁ ମଥାରେ ଓଢ଼ଣା (ଉତ୍ତରୀୟ) ଦେଇ ନାହାନ୍ତି । ପୂର୍ବସଙ୍ଗିନୀଙ୍କୁ ଦେଖିଲେ ପରିହାସ ବାଣୀରେ ତୁଣ୍ଡ ଉଚ୍ଛଳ ହୋଇ ଉଠୁଛି । କେଳି ପ୍ରସଙ୍ଗ ଶ୍ରବଣରେ ବାଳିକେ ଯାବନ୍ତିତ୍ରିଆ ରମଣୀ ଭ୍ରାନ୍ତ ଶ୍ରୁତି ଫେରାଇ ନେଉଛନ୍ତି । ପୁଣି ବାଲ୍ୟ ଦଶା ଧୀରେ ଧୀରେ ଅପସରି ଯାଉଥିବାରୁ ଯୌବନସୁଲଭ ଗାମ୍ଭୀର୍ଯ୍ୟ ଧୀରେ ଧୀରେ ସ୍ପର୍ଶ କରି ଆସୁଛି (୪୧) । ରାଧାଙ୍କର ମାଧୁର୍ଯ୍ୟ, ଅଙ୍ଗ ପ୍ରତ୍ୟଙ୍ଗର ଶୋଭା ଓ ସୌରଭ (ଅଙ୍ଗାମୋଦ) ଏବଂ ହାବ, ଭାବ ଓ ବିଚେଷ୍ଟା ବର୍ଣ୍ଣନାରେ ଗୀତ ପରମ୍ପରାର ପୁନରାବୃତ୍ତି ଘଟିଥିଲେ ମଧ୍ୟ ଭାବର ସରଳତା ଓ ଛନ୍ଦର ସଙ୍ଗୀତମୟୀ ତରଳତା ହେତୁ ଗୀତକାବ୍ୟର ବିଶିଷ୍ଟତା ପରିଦୃଷ୍ଟ ହୁଏନା । ଦୃଷ୍ଟାନ୍ତ ସ୍ୱରୂପ—

କି ଶୋଭା ବର୍ଣ୍ଣିବ ଅବା, ଅଧର ନିନ୍ଦଇ ବନ୍ଧୁଳି ଜବା,
ରସରାଜ ହେ ! ମଞ୍ଜୁଳ ଶ୍ରୀମୁଖ ଆଭା ।୨୧।
ବଦନର ସୁନା ନଳିନ, ସାମ୍ୟକୁ ଭାବିଲେ ପଛକୁ ମନ,
ରସରାଜ ହେ ! ପଳାଇ ଯାଉଛି ଘେନ ।୨୨।
ଛଡ଼ାଇ ହୃଦରୁ ମସୀ, ଗୋଟିଏ ହୋଇଲେ କୋଟିଏ ଶଶୀ,
ରସରାଜ ହେ ! ତୁଲ୍ୟ ପରି ଯିବେ ବସି ।୨୩।
ଦେହଳରେ ଗଲେ ସ୍ନାନ, ପଦାବ୍ଜ ଚିହ୍ନକୁ ଚୁମ୍ବୁଛି ଅଳି,
ରସରାଜ ହେ ! ଅଙ୍ଗାମୋଦ ନୋହେ କଳି ।୨୪।
ଭାଷି ଲବେଲେ ବାଣୀକି, ପିକ ମୂକ ହେବେ କାନେ ଶୁଣିକି,
ରସରାଜ ହେ ! ବୀଣା ତେଜିବେ ବାଣୀକି ।୨୫। (୪୨)

ରାଧାଙ୍କ ସମ୍ପର୍କରେ ଶ୍ରୀକୃଷ୍ଣଙ୍କର ଆଗ୍ରହ ଓ ଅନୁରାଗକୁ ନିବିଡ଼ତର କରିବା ପାଇଁ ବୃନ୍ଦା ଯେତେବେଳେ କହନ୍ତି—

ଶ୍ୟାମ ସୁନ୍ଦରକୁ ମୋର, ଏକା ରାଧିକା ଥିଲା ପଟାନ୍ତର,
ବୋଲୁଁ ଜନନୀ, ନାମ ଶୁଣିଲି ତାହାର ।୧୫।

ସେତେବେଳେ ଶ୍ରୀକୃଷ୍ଣ ରାଧାଙ୍କର ବୟସ ଓ ଭାବବିଚେଷ୍ଟା ଜାଣିବାକୁ ଅଧିକ ଆଗ୍ରହୀ ହୋଇ ଉଠିଛନ୍ତି । ଅନ୍ୟ ଏକ ଗୀତରେ (ହେ କିଶୋର ! ଗୋଷ୍ଠାଚଳ କଳାକର; ଗ୍ରଂ. ପୃ. ୩୫୭) କବି ବୃନ୍ଦାଙ୍କ ମୁଖରେ ରାଧାଙ୍କର ଅନୁପମ ସୌନ୍ଦର୍ଯ୍ୟ, ବୈଦଗ୍ଧ୍ୟ, ସୁଲକ୍ଷଣ ଓ ସ୍ୱର୍ଣ୍ଣନିନ୍ଦୀ କାନ୍ତିର ସୂଚନା ଦେଇ ବୟଃସନ୍ଧି ସମ୍ପର୍କରେ ବର୍ଣ୍ଣନା କରିଛନ୍ତି—

(୪୦) ଗୋ. କୃ. ଗ୍ରଂ., ପୃ-୩୧୬ ଓ ବ. ଚ. ୪।୧୫
(୪୧) ବ. ଚ., ୪।୧୦, ପୃ-୨୮
(୪୨) ବ. ଚ., ୪।୧୭, ପୃ. ୩୧

ଲାବଣ୍ୟ ମାଧୁରୀ ଯଉବନ ଶିରୀ
ଛୁଇଁ ଆସୁଛି ତା ଦେହେ ।
କେ ବୋଲେ ବାଳିକା କେ ବୋଲେ କିଶୋରୀ
ନବ ତରୁଣୀ କେ କହେ ।୩।
ଶୈଶବ ଯୌବନ ଦ୍ୱନ୍ଦ୍ୱେ ପଡ଼ୁଁ ବାଳା
ଅଙ୍ଗେ ଝାଙ୍କେ ପଞ୍ଚବାଣ ।୪।

ବିଦଗ୍‌ଧ ମାଧବ ନାଟକରେ ରୂପ ଗୋସ୍ୱାମୀ ଶ୍ରୀକୃଷ୍ଣଙ୍କ ସମକ୍ଷରେ ପୌର୍ଣ୍ଣମାସୀଙ୍କ ମୁଖରେ ରାଧାନାମ ଉଚ୍ଚାରଣ କରାଇ ତାଙ୍କ ଅଙ୍ଗରେ ପୁଲକ ସଞ୍ଚାର କରିବା ସଙ୍ଗେ ସଙ୍ଗେ ତାଙ୍କ ଅନ୍ତରର ଗୂଢ଼ ବାସନାକୁ ଉଦ୍ଦୀପ୍ତ କରିଛନ୍ତି । ଅଭିମନ୍ୟୁଙ୍କ ସହିତ ନନ୍ଦର ନାତୁଣୀ ରାଧାର ବିବାହ ସମ୍ପନ୍ନ କରାଇ ମୁଖରା ପୌର୍ଣ୍ଣମାସୀଙ୍କ ହସ୍ତରେ ମିଷ୍ଟାନ୍ନ (ଲଡ଼ୁ) ପ୍ରଦାନ କରିବାରୁ ପ୍ରସଙ୍ଗ କ୍ରମେ ଶ୍ରୀକୃଷ୍ଣ ପୌର୍ଣ୍ଣମାସୀଙ୍କ ମୁଖରୁ ରାଧାନାମ ଶ୍ରବଣ କରି ରୋମାଞ୍ଚିତ ହୋଇ ସ୍ୱଗତୋକ୍ତି କରିଛନ୍ତି—

"କୃଷ୍ଣଃ—(ସରୋମାଞ୍ଚଂ ସ୍ୱଗତଂ) ଶ୍ରୁତଂ ନୂନମନୟୋଃ ସମ୍ବାଦେ
ଶଶ୍ୱଦସ୍ୟାଃ ସୌଷ୍ଠବମ୍‌ (ଇତି କମ୍ପମାନୋ ବ୍ରୀଡ଼ାଂ ନାଟୟତି) ।" (୪୩)

ଅର୍ଥାତ୍‌ ରୋମାଞ୍ଚିତ ହୋଇ କୃଷ୍ଣ ସ୍ୱଗତରେ କହିଲେ—ମାତୃ ଯୁଗଳଙ୍କର କଥୋପକଥନରେ ଏହାର (ରାଧାଙ୍କର) ସୌଷ୍ଠବ କଥା ନିଶ୍ଚୟ ଶ୍ରବଣ କରିଛି (ଏହା କହି କମ୍ପିତ ହୋଇ ଲଜ୍ଜାପ୍ରକାଶ କଲେ) ।

ବିଦ୍ୟାପତି ଓ ଅନ୍ୟ ପଦାବଳୀର ରଚନାରେ ରାଧାଙ୍କର ବୟଃସନ୍ଧି ବର୍ଣ୍ଣନାରେ ପାରମ୍ପରିକ ଶୃଙ୍ଗାରିକାବ୍ୟସୁଲଭ ଯେଉଁ ଐନ୍ଦ୍ରିକ ଆବେଦନ ପରିଦୃଷ୍ଟ ହୁଏ ଗୋପାଳକୃଷ୍ଣଙ୍କ ରଚନା ତାର ବ୍ୟତିକ୍ରମ । ବିଦ୍ୟାପତି ଜଣେ ସୌନ୍ଦର୍ଯ୍ୟ ଶିଳ୍ପୀ ଭାବରେ ରାଧାଙ୍କର ବୟଃସନ୍ଧିର (୪୪) ଚିତ୍ର ଆଙ୍କିଛନ୍ତି । କିନ୍ତୁ ଗୋପାଳକୃଷ୍ଣ କବି ହେଲେ ମଧ୍ୟ ଭକ୍ତିର ସ୍ପର୍ଶରେ ତାଙ୍କର ସୌନ୍ଦର୍ଯ୍ୟ ଚେତନା ଆଧ୍ୟାତ୍ମିକ ଉତ୍ତରଣ ଲାଭ କରିଛି । ନିଜେ ସ୍ୱାମମନୀ ରାଧାଙ୍କ ସେବାରେ ନିଜକୁ ମଞ୍ଜରୀ ଭାବରେ ଉପସ୍ଥାପିତ କରିବାର ଅନୁକୂଳ ସଙ୍କେତ ଦେଇ ଥିବାରୁ ତାଙ୍କ ଲେଖମାନଙ୍କରେ ରାଧାଙ୍କର ବୟଃସନ୍ଧି ବର୍ଣ୍ଣନା ସଂଯତ ହେବା ସ୍ୱାଭାବିକ । ରୂପ ବର୍ଣ୍ଣନା ପ୍ରସଙ୍ଗରେ ରୂପର ଅନିର୍ବଚନୀୟତା ପ୍ରକାଶରେ କବିପ୍ରାଣର ବ୍ୟାକୁଳତା ଓ ଆର୍ତ୍ତି (ଅଭାବ ବୋଧ ହେତୁ) ବ୍ୟତିରେକ, ଅତିଶୟୋକ୍ତି ଓ ଅନନ୍ୱୟ ପ୍ରଭୃତି ପ୍ରଥାନୁଗ ଅଳଙ୍କାର ଯୋଜନାରେ ଆତ୍ମପ୍ରକାଶ କରିଛି ।

---

(୪୩) ବି. ମା, ୧ମ ଅଙ୍କ, ପୃ. ୪୩

(୪୪) ବିଦ୍ୟାପତି-ଚଣ୍ଡୀଦାସ ପଦାବଳୀ, ସମ୍ପା: ଗୁରୁଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ, ଦେବ ସାହିତ୍ୟ କୁଟୀର, ପୁନର୍ମୁଦ୍ରଣ, ୧୩୫୭, ପୃ ୪୦

## ରୂପାନୁରାଗ :

ରୂପ ସୃଷ୍ଟି ଓ ରୀତିସିଦ୍ଧତା—ବୈଷ୍ଣବ ପଦାବଳୀ ସାହିତ୍ୟରେ କାବ୍ୟ ସୃଷ୍ଟିର ଦୁଇଟି ଦିଗ ପରିଲକ୍ଷିତ ହୁଏ—ଗୋଟିଏ ହେଉଛି ରୂପନିର୍ମିତ୍ସ, ଅନ୍ୟଟି ରୂପ ଅନୁଭବ । ରୂପନିର୍ମିତ୍ସରେ ଦେହର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ସନ୍ଧାନରେ କବି ମନର ଉତ୍ସୁକତା ଏବଂ ରୂପାନୁଭବ କ୍ଷେତ୍ରରେ ହୃଦୟର ନିବିଡ଼ ଅନୁଭୂତି ପଟରେ ରୂପର ମୋହ ପ୍ରକାଶ ପାଏ । ହୃଦୟ ଦ୍ୱାରା ଅନୁଭୂତ ରୂପରେ ବସ୍ତୁର ତୁଳ୍ୟଯୋଗିତା କ୍ୱଚିତ୍ ପରିଦୃଷ୍ଟ ହୁଏ । ସେଠାରେ ଅସଲ କଥା ହେଉଛି, ହୃଦୟାବେଗର ପ୍ରବାହ । ଆରୋପ ଓ ଆବେଗ ଏହି ଦୁଇଟି ଦିଗରେ ବୈଷ୍ଣବର ରୂପକବିତା ଅଗ୍ରସର ହୋଇଛି (୪୫) ।

ବୈଷ୍ଣବ କବିତାରେ ଉପମା ପ୍ରୟୋଗର ଗୋଟିଏ ବୈଶିଷ୍ଟ୍ୟ ହେଉଛି ରୂପର ପ୍ରବହମାନତା । ଗୀତ ମଧ୍ୟରେ ବିଭିନ୍ନ ଅଳଙ୍କାର ଗୋଟିଏ ଭାବନା କ୍ରମରେ ପ୍ରଯୋଜିତ ହୋଇ ଏକ ପାରମ୍ପର୍ଯ୍ୟ ଓ ପ୍ରବାହ ସୃଷ୍ଟି କରେ, ଯାହାକୁ ବହିର୍ଲକ୍ଷଣଗତ ବା ପ୍ରତ୍ୟକ୍ଷଗମ୍ୟ ରୂପପ୍ରବାହ କୁହାଯାଏ, ଭାଷା ଓ ଛନ୍ଦ ହେଉଛି ଯା'ର ବାହନ । ଏହାର ଅନ୍ୟ ଦିଗଟି ହେଉଛି ଭାବଗମ୍ୟ, ଯାହା କବିଚିତ୍ତର ଅନୁପ୍ରାଣନା ଉପରେ ନିର୍ଭର କରେ । ବୈଷ୍ଣବର ଭକ୍ତି ଚର୍ଚ୍ଚା କହିଲେ ତାହା ଏପରି ଏକ ବିଶିଷ୍ଟ ଅନୁଭବ, ଯେଉଁଠି ଭଗବାନ୍ ହେଉଛନ୍ତି ସାକାର, ସଗୁଣ, ଶରୀରଧାରୀ—ଲୀଳା ମାଧ୍ୟମରେ ମାନବର ଅତି ନିକଟ ଆତ୍ମୀୟ । ଏ ପ୍ରକାର ଆତ୍ମୀୟ, ଅତି ଆପଣାର ଲୋକକୁ ନେଇ ବୈଷ୍ଣବ କବି କମ୍ ଆତ୍ମନିର୍ଭରତା ପ୍ରକାଶ କରିନାହିଁ । ଦୁର୍ଲଭ ଯେତେବେଳେ ସହଜ ଲଭ୍ୟ ବୋଲି ମନେ ହୁଏ, ଦୁର୍ଜ୍ଞେୟ ପ୍ରତି ମୁହୂର୍ତ୍ତରେ ଯେତେବେଳେ ମନୁଷ୍ୟର ପରିଚୟ ସୀମାରେ ପ୍ରକାଶିତ, ସେତେବେଳେ ମାନବ କଣ୍ଠରେ ଏକ ଅପରୂପ ଆତ୍ମନିର୍ଭରତା ଜାଗେ । ବୈଷ୍ଣବ କାବ୍ୟ ସେହି ଆତ୍ମନିର୍ଭର ମନୁଷ୍ୟର ପ୍ରବଳ ଭାବାବେଗର ଅନ୍ତରଙ୍ଗ ପ୍ରତିରୂପ (୪୬) ।

କମନୀୟ ମୁଖ ଦର୍ଶନରେ ଯେଉଁ ରୂପ ମୋହ ଘନୀଭୂତ ହୁଏ, ତାହା ପ୍ରକାଶ ନ କରିବା ପର୍ଯ୍ୟନ୍ତ ମାନବ ତୃପ୍ତି ପାଏନା; କିନ୍ତୁ ତାର ପ୍ରକାଶର ମାଧ୍ୟମ ସୀମିତ ଓ ସମ୍ଭାରହୀନ । ହୃଦୟର ଆନନ୍ଦ ଓ ଅନୁରାଗକୁ ରୂପମୟ କରିବାରେ ସେ ନିଜକୁ ଶକ୍ତିହୀନ ମନେକରେ । ମନୁଷ୍ୟର ଏକମାତ୍ର ସମ୍ବଳ ଭାଷା, ତାକୁ ରୂପବାନ୍ କରିବା ଦିଗରେ ଅତି ଦୁର୍ବଳ । ଏ ସମ୍ପର୍କରେ ତା' ମନର ଅଭାବବୋଧ ଓ ଅତୃପ୍ତି ତାକୁ ଉପମାର (ବ୍ୟାପକ ଅର୍ଥରେ) ସାହାଯ୍ୟ ନେବାକୁ ପ୍ରରୋଚିତ କରେ । ଏହା ସାହାଯ୍ୟରେ କବି ଏକ ନୂତନ ବାସ୍ତବ ସୃଷ୍ଟି କରେ, ଯାହାକୁ କୁହାଯାଏ କାବ୍ୟିକ ବାସ୍ତବ (Poetic Reality) ।

---

(୪୫) ଶିବଚନ୍ଦ୍ର ଲାହିଡ଼ୀ, ବାଂଲାକାବ୍ୟେ ଉପମାଲୋକ, ୧ମ ଖଣ୍ଡ, ୧୯୬୫, ପୃ-୧୮୭
(୪୬) ତତ୍ରୈବ

ଭଗବନ୍ତ ଅନୁରାଗର ଆବେଗ ଓ ବ୍ୟାକୁଳତା ନେଇ କବି କାବ୍ୟରେ 'କରେ ଭାବ ଓ ରୂପ-ସାଧନା (୪୭) ।

ରସାପ୍ଲୁତ ହୃଦୟରେ କବି ଶ୍ରୀକୃଷ୍ଣଙ୍କ ରୂପରେ ଦର୍ଶନ କରେ ଏକ ଅନବଚ୍ଛିନ୍ନ ଲାବଣ୍ୟ ପ୍ରବାହ, ଯେଉଁଥିରେ ସେ ଅନୁଭବ କରେ ପ୍ରାଣର ଗଭୀର କାତରତା, ବ୍ୟାକୁଳତା । ପ୍ରାଣର ଗଭୀର ଆବେଗରେ ପ୍ରକାଶିତ ହୁଏ ପ୍ରଣୟୀ ଓ ପ୍ରଣୟିନୀଙ୍କର ପ୍ରେମାର୍ତ୍ତି ।

ରସବୋଧ ଗଭୀର ଅନୁଭୂତିର ବିଷୟ ହୋଇଥିବାରୁ ରୂପାନୁରକ୍ତିର ସାର୍ଥକ ପ୍ରକାଶ ନିମିତ୍ତ ଅଳଙ୍କାରର ସୂକ୍ଷ୍ମ ପ୍ରୟୋଗ ଏକାନ୍ତ ପ୍ରୟୋଜନ । ରାଧାକୃଷ୍ଣ ଲୀଳା ବିଳାସରେ ବିସ୍ମୟ ବିମଣ୍ଡିତ କବି ତା'ର ସାର୍ଥକ ରୂପାୟନ ନିମିତ୍ତ ପ୍ରକାଶ ମାଧ୍ୟମରେ ଗଭୀର ଅତୃପ୍ତି ଓ ଅଭାବ ଉପଲବ୍ଧି କରିଛନ୍ତି । କଶୋରୀ ରାଧାଙ୍କର ଦିବ୍ୟ ଅଙ୍ଗ ସୁଷମା ଓ ଲାବଣ୍ୟ ଦର୍ଶନରେ କବି ରୂପ ପ୍ରକାଶରେ ସାର୍ଥକ ଉପମାନର ସନ୍ଧାନ ନ ପାଇ ପ୍ରାଣର ଆବେଗରେ ଗାଇଛନ୍ତି—

ରାଧାପରି ରାଧା ସିନାରେ ସର୍ଜନି ! ରାଧାପରି ରାଧା ସିନା ।
ତ୍ରିଭୁବନ ମାଝାରେ ଯେତେକ ଅଛନ୍ତି ସବୁ ଅଛନ୍ତି ଉଣା ।

(ଗୋ. କୃ. ଗ୍ରଂ., ପୃ. ୪୨୩)

ଏ ପ୍ରକାର ବର୍ଣ୍ଣନାରେ ଅନୁରାଗର ତୀବ୍ରତା ଓ ପ୍ରାଣର ଅପୂର୍ବ ବ୍ୟାକୁଳତା ପ୍ରକାଶିତ ହୋଇଛି । ଏଠାରେ ଉପମେୟ (ରାଧାଙ୍କର ରୂପ) ଯେ କୌଣସି ଉପମାନକୁ ଅତିକ୍ରମ କରି ଚାଲିଛି ।

ନିଜର ମନର ମାଧୁରୀ ଦେଇ ରାଧା ପ୍ରିୟତମ ଶ୍ରୀକୃଷ୍ଣଙ୍କ ରୂପରେ ଆତ୍ମହରା । ପଦକର୍ତ୍ତା ଜ୍ଞାନ ଦାସ ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ରୂପ ଲାଗି ଆଁଖି ଝୁରେ ଗୁଣେ ମନ ଭୋର ।
ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର ॥
ହିୟାର ପରଶ ଲାଗି ହିୟା ମୋର କାନ୍ଦେ ।
ପରାଣ ପିରୀତି ଲାଗି ଥିର ନାହି ବାନ୍ଧେ ॥ (ବୈ. ପ.,ପୃ. ୪୦)

ରାଧାଙ୍କର ଏ ରୂପତୃଷ୍ଣା କେବଳ ରୂପର ସୀମା ମଧ୍ୟରେ ଆବଦ୍ଧ ହୋଇଯାଇନାହିଁ, ରୂପ ତୃଷ୍ଣାକୁ ମହିମାମୟ କରିଛି ତାଙ୍କର ପ୍ରେମତୃଷ୍ଣା । ରାଧାଙ୍କର ଅନୁରାଗ ବା ପ୍ରଣୟ-ବୋଧ ସୀମିତ ନୁହେଁ । ଯେତେ ଅନୁଭବ କଲେ ମଧ୍ୟ ପ୍ରତି ମୁହୂର୍ତ୍ତରେ ତାହା ନୂତନ-ବୋଧ ହେଉଥାଏ । ସେଥିପାଇଁ ରାଧା ଜନ୍ମାବଧି ଶ୍ରୀକୃଷ୍ଣଙ୍କ ରୂପ ବାରମ୍ବାର ଦର୍ଶନ କରୁଥିଲେ ମଧ୍ୟ ଏହି ନୂତନତ୍ୱ ହେତୁ ନୟନରେ ତୃପ୍ତି ଭରେନା । ରାଧା ସଖୀ ନିକଟରେ

(୪୭) ଚଣ୍ଡୀଦାସ

ଜିକର ପ୍ରୀତିର ଅନୁଭବ ବର୍ଣ୍ଣନା କରିଛନ୍ତି—

ସଖି, କି ପୁଛସି ଅନୁଭବ ମୋୟ ।
ସୋଇ ପୀରିତି ଅନୁ- ରାଗ ବାଖାନିତେ
ତିଲେ ତିଲେ ନୂତନ ହୋୟ ।।
ଜନମ ଅବଧି ହାମ ରୂପ ନେହାରଲୁଁ
ନୟନ ନା ତିରପିତ ଭେଲ ।

× × ×

ଲଖ ଲଖ ଯୁଗ ହିୟେ ହିୟେ ରାଖଲୁଁ
ତବ ହିୟା ଜୁଡ଼ନ ନା ଗେଲ ।।

( କବି ବଲ୍ଲଭ, ବୈ. ପ. (ଚୟନ), ପୃ. ୪୬ )

'ଯେଉଁ ଅନୁପମ ରୂପଦେଖି ରାଧା ମୁଗ୍ଧ ଓ ଆତ୍ମହରା, ସେ ରୂପ ସ୍ଥୂଳ ଦେହକୁ ଅତିକ୍ରମ କରି ବିଶ୍ୱପ୍ରକୃତିର ପରିବ୍ୟାପ୍ତ । ସେ ରୂପ ଆକାଶରେ, ମେଘମାଳାରେ, ବନର ତମାଳଶ୍ରୀରେ, ଯମୁନାର ଜଳପ୍ରବାହରେ, ମୟୂର ମୟୂରୀ କଣ୍ଠର ଚକ୍‌କଣତାରେ ଇନ୍ଦ୍ରଜାଲ ସୃଷ୍ଟି କରିଛି' (୪୮) । ରାଧାଙ୍କର ରୂପାନୁରାଗରେ ଫୁଟିଉଠେ ଶ୍ରୀକୃଷ୍ଣ ରୂପର ବିଶ୍ୱମୟତା । ଏହି ଅସୀମ ଅନୁରାଗ ବୋଧ ହେତୁ ପ୍ରଣୟିନୀ ପ୍ରାଣର ବ୍ୟାକୁଳତା କପରି ଅସୀମ, ତାହା ପୂର୍ବ ଉକ୍ତିରେ ଲକ୍ଷ୍ୟ କରାଯାଇପାରେ । ପ୍ରଣୟୀର (କୃଷ୍ଣଙ୍କର) ସତ୍ତାରେ ଓତଃପ୍ରୋତ ବଜଡ଼ିତ ହୋଇଯିବାର ହ୍ଲାଦିନୀସ୍ୱରୂପା ପ୍ରଣୟିନୀ-ବଳାସର ଗୋଟିଏ ଦିଗରେ ରହିଛି ରୂପାକର୍ଷଣ, ଅନ୍ୟଦିଗରେ ରହିଛି ଅରୂପର ବ୍ୟଞ୍ଜନା । ତେଣୁ ଉପମା ଯୋଜନାରେ ଇନ୍ଦ୍ରିୟ ଚେତନା ସହିତ ଅତୀନ୍ଦ୍ରିୟ ଚନ୍ତାର ସମନ୍ୱୟ ଲକ୍ଷ୍ୟ କରାଯାଇପାରେ (୪୯) ।

ବୈଷ୍ଣବ ପଦାବଳୀର କବିମାନେ ଯେଉଁ ଉଚ୍ଚାଙ୍ଗ ପ୍ରେମାଦର୍ଶରେ ଅନୁପ୍ରାଣିତ, ତା'ର ବ୍ୟଞ୍ଜନା ରହି ଯାଇଛନ୍ତି ପ୍ରଣୟିନୀ ରାଧାଙ୍କର ରୂପ, ଭାବ, ବ୍ୟଥା ଓ ବେଦନାରେ । ସେମାନଙ୍କର ପ୍ରଯୁକ୍ତ ଉପମାରେ ଅଭିବ୍ୟକ୍ତିତ ହୋଇଛି ଅନୁପମା ରାଧାଙ୍କର ଦିବ୍ୟରୂପ ଓ ଚିନ୍ମୟ ପ୍ରେମ ।

ରାଧାକୃଷ୍ଣ ଓ ସଖାସଖୀଙ୍କର ପ୍ରାକୃତମାନବସୁଲଭ ଅଭ୍ୟର ଓ ଆଚରଣ ବର୍ଣ୍ଣିତ ହେଲେ ମଧ୍ୟ ବୈଷ୍ଣବ କବିଙ୍କର ଭାବନାରେ ସେମାନେ ପବିତ୍ର ଓ ମହାନ୍ । କବି ହୃଦୟର ଭକ୍ତି ପୂଜିତ ଭାବଦେବୀଙ୍କୁ ବୈଷ୍ଣବ ପଦାବଳୀର ପାତ୍ରପାତ୍ରୀ ପୃଥିବୀ ଲୀଳାରେ ଅବତୀର୍ଣ୍ଣ । ସେଥିପାଇଁ ସେମାନଙ୍କର ଚିତ୍ର ରଚନା ସାମାନ୍ୟ ମାନବୀୟତା ମଧ୍ୟରେ ଏପରି ଅଲୌକିକ ସାମାନ୍ୟ ହୋଇଉଠିଛି । ପଦାବଳୀର ଉପମା କବିମନର ପ୍ରସାରିତ ଭାବ-ଭୂମିରେ ଲାଳିତ ପାଳିତ ହୋଇ ଦେବତା ରୂପରେ ଏହିପରି ମାନବ-ବ୍ୟଞ୍ଜନା ଦେଇ ପାରିଛି ।

(୪୮) କାଳିଦାସ ରାୟ ପ. ସା, ୩ୟ ସଂ, ପୃ ୩୫

(୪୯) ବାଂଲାକାବ୍ୟେ ଉପମାଲୋକ

କେବଳ ଉପମେୟ ପ୍ରକାଶ ପ୍ରୟାସରେ ନୁହେଁ, ଉପମାନ ନିର୍ବାଚନରେ କବିମାନଙ୍କର ଗଭୀର ଅନ୍ତର୍ଦୃଷ୍ଟି ବ୍ୟତିରେକ ଓ ଅପହ୍ନୁତି ପ୍ରଭୃତି ଅଲଙ୍କାର ପ୍ରୟୋଗରେ ପ୍ରକାଶ ପାଇଛି । କିନ୍ତୁ ଅଭିନବ ପ୍ରଚେଷ୍ଟା, ପ୍ରକାଶର ତୀବ୍ର ଅନୁରାଗ, ନିବିଡ଼ ଆବେଗର ପ୍ରଲେପ, ଶବ୍ଦର ଧ୍ୱନିଝଙ୍କାର ଓ ଅନୁପ୍ରାସ ପ୍ରୟୋଗରେ ନିଜର ଆକାଙ୍‌କ୍ଷା ପୂର୍ତ୍ତିର ପ୍ରୟାସ ସେମାନେ କରିଛନ୍ତି ।

ଚୈତନ୍ୟ ପରବର୍ତ୍ତୀ ଯୁଗରେ ବୈଦଗ୍‌ଧ୍ୟ ଓ ଆଧ୍ୟାତ୍ମିକତାର ମିଳନରେ ବୈଷ୍ଣବ ପଦାବଳୀର ସମୁନ୍ନତି ଘଟିଥିଲେ ମଧ୍ୟ ଆଲଙ୍କାରିକ ରୂପ ସୃଷ୍ଟି ଓ ରସସ୍ଫୂର୍ତ୍ତି ବୈଷ୍ଣବ ଗୋସ୍ୱାମୀମାନଙ୍କର ରସଶାସ୍ତ୍ର ତଥା କାବ୍ୟନାଟକ ନିର୍ଦ୍ଦିଷ୍ଟ ରସବିଧି ଓ ରୂପରୀତି ଦ୍ୱାରା ନିୟନ୍ତ୍ରିତ ହୋଇଛି । ଫଳରେ ନାୟକ ନାୟିକାଙ୍କ ନିର୍ବିଶେଷ ମାନବ ରୂପ ସବିଶେଷ ବା ନିର୍ଦ୍ଦିଷ୍ଟ ନାୟକ ନାୟିକା ରୂପ ଗ୍ରହଣ କରିଛି । କବିମାନଙ୍କର ଜୀବନକୁ ବ୍ୟକ୍ତ କରିବାର ସ୍ୱତଃସ୍ଫୂର୍ତ୍ତି ଆବେଗରେ ବାଧା ଆସି ପଡ଼ିଅଛି । ପଦାବଳୀର କାହାଣୀରେ ଆଭିଜାତ୍ୟ (କୌଳିନ୍ୟ) ଦେଖା ଦେଇଥିଲେ ମଧ୍ୟ ରୂପ ସୃଷ୍ଟି ଅନେକତ୍ର କ୍ଳାନ୍ତ ଓ ଗତାନୁଗତିକ ହୋଇ ପଡ଼ିଛି (୫୦) ।

ନାୟକ ନାୟିକାଙ୍କର ପ୍ରେମ ପ୍ରକାଶରେ ପୂର୍ବରୁ ଯେଉଁ ସ୍ୱାତନ୍ତ୍ର୍ୟ ଥିଲା, ତାହା ବ୍ରଜର ନିଜସ୍ୱ ପ୍ରେମ-ପଦ୍ଧତିରେ ସୀମିତ ହୋଇପଡ଼ିଛି । ପ୍ରେମାଙ୍କୁରଠାରୁ ଆରମ୍ଭ କରି ମିଳନ ପର୍ଯ୍ୟନ୍ତ ସମସ୍ତ ଅବସ୍ଥା ରସଶାସ୍ତ୍ରୋକ୍ତ ବିଧିଦ୍ୱାରା ନିୟନ୍ତ୍ରିତ ହୋଇଛି । ପୂର୍ବରାଗର ଉଦୟ, ପୂର୍ବରାଗର ଦଶା, ମାନସିକ ଅବସ୍ଥାନୁସାରେ ନାୟିକାର ବିଭାଗୀକରଣ (ଅଭିସାରିକା, ବାସକ ସଜ୍ଜା, ଖଣ୍ଡିତା ଇତ୍ୟାଦି), ନାୟକ ନାୟିକାଙ୍କର ରୂପ, ଭୂଷଣ ଓ ପ୍ରସାଧନ; ଏ ସମସ୍ତର ବର୍ଣ୍ଣନା ରୀତିସିଦ୍ଧ । ରାଧାଙ୍କର ଅଭିସାର, ବିହାର ଓ ମାନ ଇତ୍ୟାଦି ବର୍ଣ୍ଣନାରେ ଆଲଙ୍କାରିକ ପରିପାଟୀ ଅତ୍ୟଧିକ; ଅନେକ କ୍ଷେତ୍ରରେ ବକ୍ରୋକ୍ତି ଓ ଶ୍ଳେଷର ଆତିଶଯ୍ୟ ପରିଦୃଷ୍ଟ । ଏହି ଆଲଙ୍କାରିକ ଚାତୁର୍ଯ୍ୟ ସୃଷ୍ଟି ସତେ ଯେପରି ସେମାନଙ୍କର ଉପାସନା ବା ସାଧନାର ଅନ୍ୟ ଏକ ଅଙ୍ଗ ହୋଇ ପଡ଼ିଛି (୫୧) । ଏପରିକି ସମ୍ଭୋଗର (ରସୋଦ୍‌ଗାର) ରତି ପ୍ରକରଣ ବାତ୍ସାୟନଙ୍କର କାମସୂତ୍ର ଦ୍ୱାରା ନିୟନ୍ତ୍ରିତ ହୋଇଛି ।

ରାଧାଙ୍କର ଭାବ-ଦ୍ୟୁତି ଅବଶ୍ୟ ବୈଷ୍ଣବ ଭାବାକାଶକୁ ଉଜ୍ଜ୍ୱଳ କରିଛି ଏବଂ ତାଙ୍କର ରୂପଦ୍ୟୁତି କାବ୍ୟଶିଳ୍ପକୁ ଲୀଳାରୁଚି ଦାନ କରିଛି । କିନ୍ତୁ ତାଙ୍କର ପୂର୍ବରାଗ ପ୍ରସଙ୍ଗରେ ତାଙ୍କର ବିଭିନ୍ନ ଅଙ୍ଗର ଶୋଭା, ଭୂଷଣ ଓ ପ୍ରସାଧନର ସୌଷ୍ଠବ ବର୍ଣ୍ଣନାରେ ନିର୍ଦ୍ଦିଷ୍ଟ ପ୍ରଥାସିଦ୍ଧ କ୍ଳାନ୍ତିକର ଅଲଙ୍କାର ପ୍ରୟୋଗ ସ୍ୱାଧୀନ ଶିଳ୍ପରୁଚିର କରୁଣ ପରିଣତି ଘଟାଇ ରୂପର ଉଲ୍ଲେଖଯୋଗ୍ୟତା ଓ ସୌଷ୍ଠବ ନଷ୍ଟ କରିଛି । (୫୨) ଗୋପାଳକୃଷ୍ଣଙ୍କର ଗୀତସମ୍ଭାର

(୫୦) ଶିବଚନ୍ଦ୍ର ଲାହିଡ଼ୀ, ବାଂଲାକାବ୍ୟେ ଉପମାଲୋକ. ୧ମ ଖଣ୍ଡ, ପୃ. ୧୯୯

(୫୧) କାଳିଦାସ ରାୟ ପ. ସା. ୩ୟ ସଂ, ୧୩୮୩, ପୃ-୨୧

(୫୨) ବାଂଲା କାବ୍ୟେ ଉପମାଲୋକ

ଚୈତନ୍ୟୋତ୍ତର ପରମ୍ପରାରେ ପୁଷ୍ଟ ହୋଇଥିବାରୁ ଭାବ ଓ ରୂପ ସୃଷ୍ଟିରେ ଏ ସାଦୃଶ୍ୟତା ଉପରି ଅନେକତ୍ର ଲକ୍ଷିତ ହୋଇଛି, ପୂର୍ବ ଓ ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ।

**ରାଧାଙ୍କର ରୂପାନୁରାଗ :**—କ ଗୋପାଳକୃଷ୍ଣ ପଦାବଳୀ, କ ବଙ୍ଗୀୟ ପଦାବଳୀ ସାହିତ୍ୟ ସର୍ବତ୍ର ରାଧାଙ୍କର ପୂର୍ବରାଗ ପ୍ରସଙ୍ଗରେ ପ୍ରତ୍ୟକ୍ଷ ବା ସାକ୍ଷାତ୍ ଦର୍ଶନରେ ପ୍ରଧାନ ହୋଇଛି ରୂପାନୁରାଗ (୫୩) ।

ପ୍ରଥମ ଦର୍ଶନ କାଳରେ ବ୍ରଜଚନ୍ଦ୍ରମା ଶ୍ରୀକୃଷ୍ଣଙ୍କ ଅଲୌକିକ ରୂପଲାବଣ୍ୟ ନବାନୁରାଗିଣୀ ଶ୍ରୀମତୀଙ୍କର ସ୍ନିଗ୍ଧ ଚିତ୍ତରେ ଅଗଣିତ ଆକର୍ଷଣର ତରଙ୍ଗ ଉତ୍ଥିତ କରିଛି । ତାଙ୍କର ଜନ୍ମାନ୍ତରର ସୂକ୍ଷ୍ମତମ ବାସନା ଉଦ୍ଦୀପ୍ତ ହୋଇ ଉଠିଛି । ପ୍ରିୟତମଙ୍କର ଦିବ୍ୟ ରୂପାଲୋକରେ ରାଧା ନିଜର କୁଳବଧୂ ସୁଲଭ ପାତିବ୍ରତ୍ୟର ଅଭିମାନ, ସମାଜର ଶତବନ୍ଧନ ଓ ଶୃଙ୍ଖଳା ବିସ୍ମୃତ ହୋଇଛନ୍ତି । ସେ ନିଜର ମନର ମାଧୁର୍ଯ୍ୟ-ସିକ୍ତ ରୂପମୁଗ୍ଧ ନେତ୍ରରେ ଶ୍ରୀକୃଷ୍ଣଙ୍କର ରୂପରେ ଅସାମାନ୍ୟତା ଆବିଷ୍କାର କରିଛନ୍ତି (୫୪) । ଏହି ଅସାମାନ୍ୟ ରୂପ ବାରମ୍ବାର ତାଙ୍କର ନେତ୍ର-ପଥାରୂଢ଼ ହେଲେ ମଧ୍ୟ ତାଙ୍କର ରୂପତୃଷ୍ଣା ମେଣ୍ଟି ନାହିଁ, ନୟନରେ ତୃପ୍ତି ଆସି ନାହିଁ । ଏ ରୂପଦର୍ଶନର ଅନୁରାଗ ପାର୍ଥିବ ଅନୁରାଗ ପରି ନୁହେଁ । ଏ ଅନୁରାଗର ବେଦନା ପ୍ରେମାର୍ତ୍ତି ମାତ୍ର ନୁହେଁ । ଏହା ପ୍ରିୟତମଙ୍କ ପ୍ରତି ଅନୁରାଗ, କିନ୍ତୁ ସଂସାର ପ୍ରତି, ନିଜର ଦେହ ଓ ପ୍ରାଣ ପ୍ରତି ବିରାଗ । ଶ୍ରୀକୃଷ୍ଣଙ୍କ ରୂପମାଧୁର୍ଯ୍ୟ ଆସ୍ୱାଦନ ନିମିତ୍ତ ନାନାବିଧ ପରିବେଶରେ କବିମାନେ ଶ୍ରୀକୃଷ୍ଣଙ୍କୁ ରାଧାଙ୍କର ନେତ୍ରାତିଥି କରାଇ ମଧ୍ୟ ରାଧା ଓ ତାଙ୍କଭାବ ପରାୟଣ ସେମାନେ (କବିମାନେ) ନିଜ ନିଜ ସୃଷ୍ଟିରେ ଅନନ୍ତ ଅତୃପ୍ତି ପ୍ରକାଶ କରିଛନ୍ତି ।

ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ରାଧାଙ୍କର ରୂପାନୁରାଗ ସମ୍ବଳିତ ପ୍ରାୟ ଚବିଶଟି ଗୀତ ସନ୍ନିବିଷ୍ଟ (ତନ୍ମଧ୍ୟରୁ ଅନ୍ୟୂନ ସାତଟି ଗୀତର ଜନକତ୍ୱ ସନ୍ଦେହ ଜନକ) । ବିଭିନ୍ନ ପରିବେଶ ଓ ପୃଷ୍ଠପଟରେ (କେତୋଟି ଗୀତ ଶ୍ରୀକୃଷ୍ଣଙ୍କର ବନ ପ୍ରତ୍ୟାବର୍ତ୍ତନକାଳୀନ ଏବଂ ଅନ୍ୟଗୁଡ଼ିକ ପ୍ରଧାନତଃ ମଞ୍ଜୁଳ ପ୍ରାକୃତିକ ପରିବେଶରେ ନୀପତଳସ୍ଥ ଶ୍ରୀକୃଷ୍ଣ ଶୋଭାକୁ କେନ୍ଦ୍ର କରି ରଚିତ) କବି ରାଧାଙ୍କ ମୁଖରେ ଶ୍ରୀକୃଷ୍ଣଙ୍କର ଅଲୌକିକ ରୂପମାଧୁର୍ଯ୍ୟ ଓ ତଜ୍ଜନିତ ଆନନ୍ଦ ଅଭିବ୍ୟକ୍ତ କରିବାକୁ ଚେଷ୍ଟା କରିଛନ୍ତି । ପ୍ରେମିକା ଓ କବି ଦୃଷ୍ଟିରେ ଯେଉଁ ରୂପ ଅପ୍ରାକୃତ, ତାକୁ ରୂପ ଦେବାପାଇଁ ମାନବୀ ଭାଷା ଅତି ଦୁର୍ବଳ, ଅଥଚ କବି ନିଜର ପ୍ରକାଶ ଜନିତ ଅତୃପ୍ତି ଓ ବ୍ୟାକୁଳତା ହେତୁ ନିଜର ଅନୁରାଗର ତୀବ୍ରତା ନେଇ ସେହି ଭାଷାରେ ନାନା ଭଙ୍ଗୀରେ, ନାନା ଛନ୍ଦରେ କୃଷ୍ଣରୂପ ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କର ଅସାମାନ୍ୟ ରୂପ ବର୍ଣ୍ଣନାରେ ବହୁ ଦିଗରୁ ସଂସ୍କୃତ ଓ ରୀତି କବିମାନଙ୍କର ଭଙ୍ଗୀ ଓ ଅଳଂକୃତିର ଅନୁସରଣ ରହିଥିଲେ ମଧ୍ୟ ଅନେକତ୍ର ସ୍ୱକୀୟତାର ସ୍ୱାକ୍ଷର ଉଜ୍ଜ୍ୱଳ ।

---

(୫୩) ଉ. ନୀ. ଉଦ୍ଦୀପନ ପ୍ରକରଣଂ ଶ୍ଳୋକ ୧୫, ପୃ-୪୪୮

(୫୪) ଜ୍ଞାନଦାସ ଗ୍ରନ୍ଥ, ପ. ସା., ୩ୟ ସଂ, ପୃ-୭୫

ଗୋଟିଏ ଗୀତରେ (କେ ସହି ! କେଲି ନୀପମୂଳେ ସେ ? ଗ୍ରଂ ପୃ ୩୩୯) ପ୍ରକୃତିର କମନୀୟ ପୃଷ୍ଠପଟରେ କେଳି କଦମ୍ବମୂଳେ ଦଣ୍ଡାୟମାନ କିଶୋରଙ୍କ ସମ୍ପର୍କରେ ସଖୀଙ୍କୁ ପ୍ରଶ୍ନ ବ୍ୟାଜରେ ରାଧା ତାଙ୍କର ରୂପ ଓ ବେଶର ପ୍ରାଣୋନ୍ମାଦକାରୀ ସୌନ୍ଦର୍ଯ୍ୟ ସତୃଷ୍ଣ ଆଗ୍ରହରେ ବର୍ଣ୍ଣନା କରିଛନ୍ତି । କିଶୋରମଣିଙ୍କର ପୃଷ୍ଠପଟରେ ନର୍ତ୍ତନଶୀଳ ଇନ୍ଦ୍ରଧନୁ ପରି, ମସ୍ତକରେ ଆନ୍ଦୋଳିତ ଶିଖିପୁଚ୍ଛ, କଟିତଟରେ ଚପଳାର ଦ୍ୟୁତିନିଭ ପୀତ ବସ୍ତ୍ର, ଗଣ୍ଡ ଦେଶରେ ଦ୍ୟୁମଣି ତୁଲ୍ୟ ଉଜ୍ଜ୍ୱଳ ମକର କୁଣ୍ଡଳର ଆନ୍ଦୋଳନ, ନବବାରିବାହର ପୃଷ୍ଠପଟରେ ଶୁଭ୍ର ବକପଙ୍କ୍ତି ପ୍ରାୟ କଣ୍ଠଦେଶରେ ଶୁଭ୍ର ମୁକ୍ତାମାଳା । ରାଧାଙ୍କର ପ୍ରେମ-ସ୍ନିଗ୍ଧ ନେତ୍ରରେ ସେହି କିଶୋର ମୂର୍ତ୍ତିମନ୍ତ ଶୃଙ୍ଗାର ପ୍ରାୟ ପ୍ରତୀତ । ନିସର୍ଗର ମନୋଜ୍ଞ ପୃଷ୍ଠଭୂମିରେ କିଶୋର କୃଷ୍ଣଙ୍କର ଏ ରୂପ ଶୋଭା ରାଧାଙ୍କର ବାସନାଲୋକରେ ଆଲୋଡ଼ନ ସୃଷ୍ଟି କରି ପ୍ରାଣତନ୍ତ୍ରୀକୁ ସ୍ପନ୍ଦିତ କରିଥିବାରୁ ମୂର୍ତ୍ତିମାନ୍ ଶୃଙ୍ଗାର ପ୍ରାୟ ପ୍ରତୀତ ହେବାର କଳ୍ପନା ଏକାନ୍ତ ସ୍ୱାଭାବିକ । କଳ୍ପନାଟି ଅବଶ୍ୟ ପ୍ରଥାନୁସରଣ । ବୃନ୍ଦାରଣ୍ୟର ମନୋଜ୍ଞ ପ୍ରକୃତିରୁ କବି ଉପମାନ ଚୟନ କରି ଉପମା ଓ ଉତ୍ପ୍ରେକ୍ଷା ପ୍ରୟୋଗରେ ଶ୍ରୀକୃଷ୍ଣଙ୍କର ରୂପସୌଷ୍ଠବ ବର୍ଣ୍ଣନା କରିଛନ୍ତି । ଏଠାରେ ପ୍ରକୃତି ସତେ ଯେପରି ଗଭୀର ଆବେଗରେ ମାନବ-ସତ୍ତାରେ ବିଜଡ଼ିତ । କବିଙ୍କ ଭାଷାରେ—

କେ ସହି ! କେଲି ନୀପମୂଳେ ସେ ?
ନବ ବାରିବାହ ପରାୟେ ଦିଶେ ଗୋ !
× × ×
ଇନ୍ଦ୍ରଧନୁ ଉଦେ ହୋଇଛି ପରି ?
କି କେକୀ-ଶିଖଣ୍ଡ-ମୁକୁଟ ତୋରି ଗୋ ।୨।
କଟିରେ କି ପୀତ-ବାସ ଶୋହୁଛି !
କ୍ଷଣପ୍ରଭା ଅବା ସ୍ଥିର ହୋଇଛି ଗୋ ।୩।
× × ×
ବକ ଆବଳୀ କି ମୁକୁତା-ହାର ?
ଜଗଜ୍ଜନ-ମନ-ମୃଗ ବାଗୁରି ଗୋ ।୪।
(ଗୋ. କୃ. ଗ୍ରଂ., ପୃ. ୩୩୯)

ଏଠାରେ ଉପମାନଗୁଡ଼ିକ ନିଜର ସ୍ୱତନ୍ତ୍ର ରୂପଚେତନା ନେଇ ନିର୍ଲିପ୍ତ ଭାବରେ ଉପମେୟ ସହ ସଂଲଗ୍ନ ହୋଇନାହାନ୍ତି । କବି-ପ୍ରାଣର ଆବେଗରେ ସେଗୁଡ଼ିକ ନିବିଡ଼ ଭାବରେ ଉପମେୟ (ଶ୍ରୀକୃଷ୍ଣ, ତାଙ୍କର ପ୍ରତ୍ୟଙ୍ଗ ଓ ବେଶ ପରିପାଟୀ) ମଧ୍ୟରେ ନିମଜ୍ଜିତ ହୋଇ ସୌନ୍ଦର୍ଯ୍ୟ ସମ୍ପାଦନ କରିଛନ୍ତି । ରାଧାଙ୍କର ଭାବତନ୍ମୟତାରେ ନିସର୍ଗ (ଉପମାନ) ଏଠାରେ ତାଙ୍କର ଆନନ୍ଦ ଓ ସୌନ୍ଦର୍ଯ୍ୟର ପ୍ରତିଫଳକ ହୋଇଛି ।

ରାଧାଙ୍କ ପ୍ରାଣରେ ରୂପାନୁରାଗ ଓ ରୂପୋଲ୍ଲାସକୁ ନିବିଡ଼ତର କରିବା ପାଇଁ ସଖୀର ଭୂମିକା ମଧ୍ୟ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ଗୀତରେ ('ପ୍ରାଣସଙ୍ଗିନୀରେ ଦେଖିଆ',

ଗ୍ରଂ. ପୃ ୩୪୩) ଶ୍ରୀରାଧାଙ୍କ ସମକ୍ଷରେ ସଖୀ ଶ୍ରୀକୃଷ୍ଣଙ୍କର ନର୍ତ୍ତନଶୀଳ ନେତ୍ରଭଙ୍ଗୀର ପ୍ରଶଂସା କରି କହେ—ଗୃହିଁ ନ ଗୃହିଲ ପରି ଡୋଳା ଖେଳାଇ ଭ୍ରୂଭୁଜଙ୍ଗିମାକୁ କିଶୋରମଣି ତ୍ରିଭୁବନୟୁବତୀଙ୍କ ତରଙ୍ଗାର୍ପିତ କରୁଛନ୍ତି (୫୫)। ଅଧରତଟରେ ବଂଶୀ, ପୀତପଟ ପରିଧାନର ପରିପାଟୀ ମୂର୍ଚ୍ଛିତ ହୁଏ ନାହିଁ। କିଶୋରୀ-ହୃତ୍ପଦ୍ମର ମଧୁପ ସେହି ଯୁବାମଣି ନିଜର ପୀୟୂଷ ସମ୍ମିତ ମନ୍ଦହାସ ଓ ଅପାଙ୍ଗକୁ ସ୍ମର (କନ୍ଦର୍ପ) ଶାଣରେ ଶାଣିତ କରୁଛନ୍ତି। ପାରମ୍ପରିକ ବର୍ଣ୍ଣନା ଓ ଅଳଙ୍କାର ଯୋଜନା ରାଧାଙ୍କ ଚିତ୍ତରେ କାମୋଦ୍ଦୀପନାର ବ୍ୟଞ୍ଜନା ସୃଷ୍ଟି କରିଛି।

ସଖୀ ରାଧାଙ୍କୁ ଶ୍ରୀକୃଷ୍ଣଙ୍କୁ ଦେଖାଇ କହୁଛି ଯେ (ସହି ! ସେହି ଏ ବ୍ରଜେନ୍ଦ୍ର କୁମାର, ଗ୍ରଂ. ପୃ, ୩୪୩) ଶୃଙ୍ଗାର ମୂର୍ତ୍ତିମନ୍ତ ହୋଇ ତାଙ୍କ ସମକ୍ଷରେ ଦଣ୍ଡାୟମାନ. ଯାହାଙ୍କର ଅଟବୀରେ ସେ କୁସୁମ ଚୟନ କରୁଥିଲେ, ଯାହାଙ୍କର ବେଣୁନାଦ ଶ୍ରବଣରେ ପ୍ରାଣରେ ଚଞ୍ଚଳତା ଖେଳୁଥିଲା, ଯାହାଙ୍କର କମନୀୟ ଚିତ୍ରପଟ ଆଙ୍କି ବିଶାଖା ତାଙ୍କ ହସ୍ତରେ ଦେଇଥିଲା। ତାଙ୍କର (ରାଧାଙ୍କର) ପଦଚିହ୍ନର ଧୂଳି ହୃଦୟରେ ବୋଳି ହୋଇ (୫୬) ଅନୁରାଗର ଆତିଶଯ୍ୟରେ ଯେ ନୟନର ଅଶ୍ରୁ ପୋଛୁଥିଲେ, ସେ ସମକ୍ଷରେ ଦଣ୍ଡାୟମାନ। ରାଧାଙ୍କ ଚିତ୍ତରେ ପ୍ରଣୟସ୍ମୃତି ଜାଗ୍ରତ କରାଇ, ତାଙ୍କ ପାଦାଙ୍କ ରଜ ହୃଦୟରେ ବୋଳି ହୋଇ ନେତ୍ର ଅଶ୍ରୁ ସଜଳ କରିବା ଛଳରେ କବି ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ସ୍ୱତଃସ୍ଫୂର୍ତ୍ତି ଅନୁରାଗର ପରିଚୟ ଦେବା ସଙ୍ଗେ ସଙ୍ଗେ ସ୍ମୃତି ଚାରଣା ବ୍ୟାଜରେ ତାଙ୍କର (ରାଧାଙ୍କର) ଅନୁରାଗକୁ ଉଦ୍ଦୀପ୍ତ କରିଛନ୍ତି।

କଦମ୍ବ ତଳସ୍ଥ କୃଷ୍ଣଙ୍କୁ ଚାହିଁ ରୂପମୁଗ୍ଧା ରାଧାଙ୍କର ସର୍ବାଙ୍ଗରେ ରୋମାଞ୍ଚ ଓ ବେପଥୁ ଏବଂ ନେତ୍ରରେ ଅଶ୍ରୁର ଉଦ୍‌ଗମ ହୋଇଛି ('କହୁଥିଲି ପରା ନାହିଁରେ ସଙ୍ଗିନି !' ଗ୍ରଂ: ପୃ, ୩୫୩) ଶ୍ୟାମଙ୍କ ପ୍ରତି ଏ ଅହୈତୁକୀ ଅନୁରାଗ ଲକ୍ଷ୍ୟ କରି ଏ ଦର୍ଶକ, ରୂପମୁଗ୍ଧତା ଓ ଅନୁରାଗର ପରିଣାମ ନିନ୍ଦା ଓ ଅପବାଦ ବୋଲି ସଖୀ ଚମ୍ପୂର (କ. ଚ. ଚମ୍ପୂ) ଚତୁରା ଲଳିତା ପରି ରାଧାଙ୍କୁ ସତର୍କ କରାଇ ଦେଇଛି (୫୭)। ବିପ୍ରଲମ୍ଭକୁ ପରିପୁଷ୍ଟ କରିବା ପାଇଁ କବି ଗୀତଟିରେ ନାଟକୀୟ ଭାବରେ ବିପଦ୍‌ସ୍ଥାନରର ସୂଚନା ଦେଇଛନ୍ତି ଏବଂ ରାଧାଙ୍କ ଚିତ୍ତରେ କୁଳବତୀ ସୁଲଭ ଭୀତି ସଞ୍ଚାର କରିବା ସଙ୍ଗେ ସଙ୍ଗେ ନୈରାଶ୍ୟର କୁହେଳିକା ସୃଷ୍ଟି କରିଛନ୍ତି। କିନ୍ତୁ ଅନ୍ୟ ଏକ ଗୀତରେ ଏହାର ବିପରୀତ ଭାବ ଲକ୍ଷିତ ହୁଏ। ରୂପମୁଗ୍ଧା ରାଧାଙ୍କ ସର୍ବାଙ୍ଗ କଳେବରରେ ସାତ୍ତ୍ୱିକ ଓ ପୁଲକ ସଞ୍ଚାର ଲକ୍ଷ୍ୟ କରି ସ୍ନେହରେ ତାଙ୍କୁ 'ପ୍ରୀତିର କଳ୍ପଲତା', 'କାନ୍ତକୁଳର ଅଧିଷ୍ଠାତ୍ରୀ ଦେବୀ' ରୂପେ ସମ୍ବୋଧନ କରି ନିଜର ଆନନ୍ଦ ପ୍ରକାଶ କରିଛି ଏବଂ ଆତ୍ମଗୋପନ ନ କରିବା ପାଇଁ ସସ୍ନେହ ନିର୍ଦ୍ଦେଶ ଦେଇଛି।

---

(୫୫) 'ହା କଷ୍ଟ ! ନିଖିଳଙ୍ଗିଲା ସଖି ! ଦୃଶୋର୍ଭଙ୍ଗୀ ଭୁଜଙ୍ଗୀ ତୁ ସା' (ରାଧିକା ଉକ୍ତି)। ବି. ମା, ୨ । ୬୮

(୫୬) ବି. ଚ, ୪୮ । ୩୧

(୫୭) ଗୋ. କୃ. ଗ୍ରଂ, ପୃ ୩୫୩ ଓ କ. ଚ. ଚଂ, 'ଖ' ଗୀତ

କବି ରାଧାଙ୍କର ପରମ ପ୍ରେଷ୍ଠା ସଖୀଙ୍କୁ ତାଙ୍କର ପ୍ରବକ୍ତା ରୂପେ ଚିତ୍ରିତ କରି ତାଙ୍କର ରୂପମୁଗ୍ଧତାକୁ ଆହୁରି ମନୋଜ୍ଞ କରିଛନ୍ତି । ସେହି ଶିଖଣ୍ଡଚୂଳ, ମକରକୁଣ୍ଡଳ ଓ ମୁରଲୀ-ଖଚିତ ମୁଖରାଜୀବର ଉଲ୍ଲେଖ ସହ ବନବାହୁଡ଼ା କାଳରେ ନୃତ୍ୟରଙ୍ଗ, ମନ୍ଦହାସ, ସାଭିଳାଷ କଟାକ୍ଷଭଙ୍ଗୀ, କୁଞ୍ଜସ୍ଥ ପୁଷ୍ପଶଯ୍ୟାରେ ବିଶ୍ରମ୍ଭ ଆଳାପ ଓ ମୁଗ୍ଧ ଚତୁରାକ୍ଷର ଉଲ୍ଲେଖ ଥିଲେ ମଧ୍ୟ ପ୍ରକାଶଭଙ୍ଗୀର ସ୍ୱାଭାବିକତା ଓ ସ୍ୱତଃସ୍ଫୂର୍ତ୍ତି ତାକୁ ଅଭିନବ ସୁଷମା-ମଣ୍ଡିତ କରିଛି । ଏହା ରୂପମୁଗ୍ଧତାର ନିଜସ୍ୱ ଭାଷାଭଙ୍ଗୀ । ଦୃଷ୍ଟାନ୍ତ ସ୍ୱରୂପ—

ଯେ ଦେଖିଛି ସେ ସିନାରେ ଜାଣିବ । ଘୋଷା ।
ନୂତନ-ଶିଖଣ୍ଡ-ଚୂଳ          ନୂଆ ମକର କୁଣ୍ଡଳ
ମୁରଲୀବସା ଶ୍ରୀମୁଖରାଜୀବ । ୧ ।

ଅଳପ ହସି ଆକୂତ          ରଖି ଡାଳିଲେ ନେତ୍ରାନ୍ତ
କଥା ନୋହୁଁ ମଥାରେ ତ ଠାରିବ । ୩ ।
କ୍ଷଣେ ନିମିଷେ ବେଳେ,     ବସିବା ବସାଇ କୋଳେ
ମଜା-ଆଦରଣ ଆଗରେ ଥିବ । ୪ ।

( ଗୋ. କୃ. ଗ୍ରଂ, ପୃ ୩୮୨ )

ସଖାଙ୍କ ସହ ଶ୍ରୀକୃଷ୍ଣଙ୍କର ଗୋଧନବାହୁଡ଼ା କାଳୀନ ଶୋଭା, ନୃତ୍ୟ, ବେଣୁବାଦନ ଓ ଗାନକୁ ଆଶ୍ରୟ କରି କୃଷ୍ଣଙ୍କର ଗୀତ ରଚିତ ହୋଇଛି । ଏକାନ୍ତ ଅଧୀର ପ୍ରତୀକ୍ଷାରେ ରହିଥିବା ଜନନୀ ଯଶୋଦା ଓ ସଖୀବୃନ୍ଦ ସହ ଅଟ୍ଟାଳି ଆରୂଢ଼ା ରାଧାଙ୍କର ନେତ୍ରରେ ସେ ଶୋଭା ଏକ ଉତ୍ସବ ମୁଖରତାର ମୁହୂର୍ତ୍ତ ସୃଷ୍ଟି କରେ । ଗୋଟିଏ ଗୀତରେ ସଖୀର ଆବେଗପୂର୍ଣ୍ଣ ବର୍ଣ୍ଣନା ମାଧ୍ୟମରେ କବି ରାଧା ପ୍ରାଣରେ ରୂପୋଲ୍ଲାସର ତରଙ୍ଗ ସୃଷ୍ଟି କରିଛନ୍ତି । ବସ୍ତୁ ବର୍ଣ୍ଣନା ଓ ଅଳଙ୍କାର ଯୋଜନାରେ ପ୍ରଥାନୁସରଣ ସତ୍ତ୍ୱେ ପଦାନ୍ତରେ 'ଆ' ପ୍ରତ୍ୟୟ ସଖୀ ଓ ରାଧାଙ୍କର ଉଲ୍ଲାସ ତଥା ଉତ୍ସବ ମୁଖରତାର ସାର୍ଥକ ବ୍ୟଞ୍ଜନା ସୃଷ୍ଟି କରିଛି, ଯଥା—

ସହି ଏହି ପଶୁପୀ ଲମ୍ପଟିଆ ।
ବରହା-ବରହି-ମୁକୁଟିଆ । ଘୋଷା ।
ନୂତନ ବାଶବାହି          ପରି ଦଶୁଛି ଦେହି,
ଅନା କଳନ୍ଦି-ସୁତାତଟିଆ । ୧ ।

(ଗୋ. କୃ. ଗ୍ରଂ, ପୃ ୪୩୫)

ସେହି ନେତ୍ର-ସୁଭଗ ରୂପକୁ ପ୍ରାଣଭରି ଏକାକିନୀ ଦର୍ଶନ କରିବାକୁ ପ୍ରଣୟିନୀର ଅଭିଳାଷ କମ୍ ତୀବ୍ର ନୁହେଁ—

ଗୋପାଳ କୃଷ୍ଣ ଭଣେ,        ରାଧା ବୋଲନ୍ତି କ୍ଷଣେ
ଦାଣ୍ଡିଲେ ଦେଖନ୍ତି ଏକୁଟିଆ ।

(ତତ୍ରୈବ, ପୃ ୪୩୭)

ଅନ୍ୟ ଏକ ଗୀତରେ ଶ୍ରୀକୃଷ୍ଣଙ୍କର ଦିବ୍ୟ ରୂପସୌଷ୍ଠବ ଓ ବେଶଭୂଷାର ସେହି ପାରମ୍ପରିକ ଉଲ୍ଲେଖ ରହିଥିଲେ ମଧ୍ୟ ରାଧାଙ୍କର ରୂପମୁଗ୍ଧତାକୁ ରୂପ ଦେବାପାଇଁ କବି ନିଜର ଅତୃପ୍ତି ଓ ପ୍ରକାଶ-ଦୈନ୍ୟ ଉପଲବ୍ଧି କରି ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ଆଜ ଶ୍ରୀଗୋଷ୍ଠ ଚନ୍ଦ୍ରମା ସାଜିବା ମନ ।
କେବେ ମୁଁ ଦେଖି ନାହିଁ ମା ।
କୋଟି ସ୍ମର ସୁଷମା ନସ୍ତନ ସୁଖ ସୀମା
ଆହା ସେ ମଧୁରିମା, ନାହିଁ ଆଉ ଉପମା । (୫୮)
(ଗୋ. କୃ. ପ., ପୃ ୧୬୩)

କବି ରୂପ ଓ ପ୍ରଣୟବିହ୍ୱଳା ରାଧାଙ୍କ ହୃଦୟର ଅପୂର୍ବ ଉଲ୍ଲାସ ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କର ଅଲୋକ-ସାମାନ୍ୟ ରୂପାଲେଖ୍ୟର ଅନୁରୂପ ଭାଷା ଖୋଜି ନପାଇ 'ବ୍ୟତିରେକ'ରେ ନିଜର ଅତୃପ୍ତି ଓ ଅକ୍ଷମବୋଧ ପ୍ରକାଶ କରିଛନ୍ତି । ଶ୍ୟାମଙ୍କର ରୂପ ସମକ୍ଷରେ କୋଟିଏ କନ୍ଦର୍ପର ସୌନ୍ଦର୍ଯ୍ୟ ତୁଚ୍ଛ । ତାଙ୍କର ମାଧୁର୍ଯ୍ୟ ଅନୁପମ । ସେ ରୂପ ଦର୍ଶନରେ ବିସ୍ମୟବିମୂଢ଼ା ଶ୍ରୀମତୀଙ୍କ ପ୍ରାଣରେ ଜାଗିଛି ଦେହାତୀତର ଚେତନା—

ଲଭିଲି ଜଡ଼ ରୂପକୁ, ପାସୋରି ଦେଲି ଦେହକୁ ।୪। (ତତ୍ରୈବ)

କୃଷ୍ଣଙ୍କର ରୂପ ଓ ବେଶ ଭୂଷଣରେ ଗତାନୁଗତିକ ଉଲ୍ଲେଖ ସତ୍ତ୍ୱେ ଦୁଇଟି ଗୀତ ପାଠକ ଚିତ୍ତ ଆକର୍ଷଣ କରନ୍ତି । ତନ୍ମଧ୍ୟରୁ ଗୋଟିଏ ଗୀତରେ କେଳିନୀପମୂଳେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ରାଧା ନିଜର ରୂପୋଲ୍ଲାସ ଜନିତ ଅନୁରାଗ ସଖୀ ସମକ୍ଷରେ ବର୍ଣ୍ଣନା କରିଛନ୍ତି । ବ୍ୟତିରେକ, ଶ୍ରବଣ ସୁଖକର ଅନୁପ୍ରାସ, ଶବ୍ଦ ରାଜିର ଧ୍ୱନି ଝଙ୍କାର ଓ ଛନ୍ଦର ନର୍ତ୍ତନଶୀଳତାରେ କବି ରାଧାଙ୍କର ରୂପମୁଗ୍ଧତା, ଉଲ୍ଲାସ-ଆବେଗ ଓ ହୃତ୍ସ୍ପନ୍ଦନର ମଞ୍ଜୁଳ ଚିତ୍ର ଆଙ୍କିଛନ୍ତି, ଯଥା—

କି ଦେଖିଲି ବେଣୁପାଣିରେ, ମିତଣି । ଘୋଷା ।
କଳିନ୍ଦଜା କୂଳେ କେଳି-ନୀପ ମୂଳେ
ଥିଲେ ତ୍ରିଭଙ୍ଗି ମାଠାଣି, ରେ ମିତଣି ।୧।
ଚଳ ଚଳ ବେଣୀ କୁଟିଳ ଚାହାଣୀ .
ହୃଦୟ ଦେଲା ମୋ ହାଣି, ରେ ମିତଣି ।୪।
ଗଳେ ରତ୍ନହାର ହୃଦେ ବନମାଳ
ନିନ୍ଦେ ତେଲ ସୌଦାମିନୀ, ରେ ମିତଣି ।୬।
କଟିରେ କିଂକଣୀ ଚରଣେ ବାଜେଣି
ନାଦ କରେ କଣି କଣି, ରେ ମିତଣି ।୭।
(ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୪୭୪।୪୧୫)

(୫୮) ଉ. ନୀ., ସାତ୍ତ୍ୱିକ ପ୍ରକରଣଂ, ଶ୍ଳୋ. ୪, ପୃ-୫୪୮

ଅନ୍ୟ ଗୀତଟିରେ କବି ରାଧାଂକର ଗଭୀର ପ୍ରେମାନୁଭୂତି ଓ ପ୍ରାଣର ଆବେଗରେ କୃଷ୍ଣଂକର ସେହି ଅନବଦ୍ୟ ରୂପମାଧୁରୀ ଓ ତଜ୍ଜନିତ ଉଲ୍ଲାସର ବର୍ଣ୍ଣନା ଦେଇଛନ୍ତି । ପ୍ରଥାନୁସରଣ ସତ୍ତ୍ୱେ ଉପମା, ଉତ୍ପ୍ରେକ୍ଷା, ବ୍ୟତିରେକର ଚାତୁର୍ଯ୍ୟପୂର୍ଣ୍ଣ ପ୍ରୟୋଗ, ଆନୁପ୍ରାସିକ ମାଧୁର୍ଯ୍ୟ, ଶବ୍ଦାଳଙ୍କାର ଓ ଦୋଳାୟିତ ଛନ୍ଦରେ ଶ୍ରୀକୃଷ୍ଣ ରୂପର ଅପୂର୍ବତା ପ୍ରକାଶିତ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ—

କାହା ଶବ୍ଦ ତାହା ଗୁହିଁ ନ ବଳିବ, ଯାହା ଦେଖିଲି ଗୋ ମା !
ଆହା ନବତାରୁଣ୍ୟ, ଆହା କି ସେ ଲାବଣ୍ୟ,
ଆହା ବ୍ରଜେନ୍ଦ୍ର ପୁଣ୍ୟପୁଞ୍ଜ ଗୋଷ୍ଠଚନ୍ଦ୍ରମା । ଘୋଷା ।
ବଳାହକ ନବନ୍ଧ କଳାରୁ ବଳି ଦେହ,
ଡୋଳାରେ ନାଚୁଛି ଗୋ ମା,
ଚଳାଚୂଳ ଧ୍ୱଜକୁ, ତୁଳା କୋଟି ତଳକୁ
ବଳାଉଁ ଦୃଷ୍ଟି ସରିଗଲା ସବୁ ଗାରିମା ।୧।
ଯୁବା ନିକର ବର ନବାବତାର ମାର,
କିବା ସେ ହୋଇଛି ଗୋ ମା ।
ନିବାସ ମୁରଳୀର ଜୀବାତୁ ଯୁବତୀର,
କିବା ରବାପହର ଅଧର ଅରୁଣିମା ।୪।
(ଗୋ. କୃ ଗ୍ରଂ., ପୃ-୩୬୩।୩୬୪)

ଗୋଟିଏ ଗୀତରେ (କାଳୀୟ ମର୍ଦ୍ଦନ ଶରୀର; ଗ୍ର. ପୃ ୬୧୧) କବି ରାଧାଙ୍କ ଭାବନାରେ 'ଭ୍ରାନ୍ତିମାନ' ଅଳଙ୍କାରରେ ଶ୍ରୀକୃଷ୍ଣଙ୍କ ଅଙ୍ଗର ନୀଳକାନ୍ତିର ଉତ୍କର୍ଷ ବର୍ଣ୍ଣନା କରିଛନ୍ତି । ଶ୍ୟାମଙ୍କର ଅଙ୍ଗକାନ୍ତି ଦେଖି ଧେନୁମାନଙ୍କର ଯମୁନାଭ୍ରାନ୍ତି, ମୟୂରମାନଙ୍କର ମେଘଭ୍ରାନ୍ତି ଏବଂ ବଲ୍ଲବୀ ମାନଙ୍କର ତମାଳ ଭ୍ରାନ୍ତି (୬୯) ଜାତ ହୋଇଛି । ପ୍ରେମିକାର ଦୃଷ୍ଟିରେ ପ୍ରେମିକର ରୂପ ଓ କାନ୍ତିର ବିଶ୍ୱମୟତାର ବ୍ୟଞ୍ଜନା ଏଠାରେ ସୃଷ୍ଟି କରାଯାଇଛି ।

ରାଧାଂକ ପ୍ରାଣରେ ଶ୍ରୀକୃଷ୍ଣଂକର ରୂପୈଶ୍ୱର୍ଯ୍ୟର ଯେଉଁ ଦୁର୍ନିବାର ପ୍ରଭାବ ଲକ୍ଷିତ ହୋଇଛି, ତା ଦ୍ୱାରା ଶ୍ୟାମ ରୂପର ଅପୂର୍ବ ମାଦକତା ଓ ମୋହନତା ଦ୍ୟୋତିତ ହୋଇଛି । ଏହି ପ୍ରଭାବ ଚୂଡ଼ାନ୍ତ ରସରୂପ ଗ୍ରହଣ କରିଛି ବିଦ୍ୟାପତିଂକର ଏକ ପଦରେ, ଯଥା—

ଅନୁଖନ ମାଧବ ମାଧବ ସୋଙରିତେ ସୁନ୍ଦରୀ ଭେଲି ମାଧାଇ ।
ଓ ନିଜ ଭାବ ସ୍ୱଭାବହି ବିଛୁରଲ ଆପନ ଗୁଣ ଲୁବଧାଇ ।। (୭୦)

ସର୍ବଦା ମାଧବଙ୍କୁ ଚିନ୍ତା କରି କରି ରାଧା ନିଜେ ମାଧବ ହୋଇ ଯାଇଛନ୍ତି । ତାଂକର ଅନ୍ତର ବାହାର ସବୁ ହୋଇଛି ଶ୍ୟାମମୟ ।

---

(୬୯) ବି. ଚ., ପ୍ରାଚୀ ସଂ, ୩ୟ ଖଣ୍ଡ, ୫୨। ୩, ପୃ ୫୪
(୭୦) ପ. ସା., ପୃ ୨୧୪

**ଶ୍ରୀକୃଷ୍ଣଙ୍କର ରୂପାନୁରାଗ**—ପ୍ରଣୟୀର ସନ୍ତୃପ୍ତ ସ୍ନିଗ୍ଧ ଦୃଷ୍ଟି ରାଧାଙ୍କଠାରେ ରୂପର ଉଚ୍ଛଳ ବନ୍ୟା ସୃଷ୍ଟି କରିଛି । ସଂସ୍କୃତ କବି, ପଦାବଳୀର କବି ଓ ଗୋପାଳକୃଷ୍ଣ ପ୍ରଭୃତି ନିଜ ନିଜ କଳ୍ପନାର କୋଟି କମରେ ନିଖିଳ ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ରାଧାଙ୍କର ଯେଉଁ ରୂପ ନିର୍ମାଣ କରିଛନ୍ତି, ତାହା ବୈଷ୍ଣବ ଓ ସହୃଦୟ ପାଠକ ଦୃଷ୍ଟିରେ ସତେ ଯେପରି ରୂପର ଶାଶ୍ୱତ ମହୋତ୍ସବ ସୃଷ୍ଟି କରି ଆସିଛି । ଗୋପାଳକୃଷ୍ଣଙ୍କ ରଚନାରେ ବୈଷ୍ଣବ ପଦାବଳୀ ତୁଳନାରେ ଏ ଶ୍ରେଣୀର ଗୀତସଂଖ୍ୟା ସ୍ୱଳ୍ପ ( ଆଠଟି ) । ଏତନ୍ମଧ୍ୟରେ 'ଶ୍ରୀକୃଷ୍ଣଙ୍କର ରୂପାନୁରାଗ' ଶୀର୍ଷକ ଗୀତ ହେଉଛି ଗୋଟିଏ । ଅନ୍ୟ ସାତଟି ସଖୀମୁଖରେ ରାଧାଙ୍କର ରୂପ, ଗୁଣ ଓ ସୌଭାଗ୍ୟ ସୂଚକ ଗୀତ ।

ରାଧାଙ୍କର ଅନୁପମ ରୂପଲାବଣ୍ୟରେ ବିସ୍ମିତ ଓ କୌତୂହଳୀ ହୋଇ ସଖୀଙ୍କୁ ଶ୍ରୀକୃଷ୍ଣ ଅଧୀର ଆଗ୍ରହରେ ତାଙ୍କ ସମ୍ପର୍କରେ ପ୍ରଶ୍ନ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଦୃଷ୍ଟିରେ ରାଧା ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ । ସେ ତାଙ୍କର ସ୍ୱର୍ଣ୍ଣକାନ୍ତିରେ ଦଶଦିଗ ସ୍ୱର୍ଣ୍ଣାଭ କରି ଅର୍ଥାତ୍ ସମଗ୍ର ବିଶ୍ୱକୁ କାନ୍ତିମୟ କରି ତାଙ୍କ ଚିତ୍ତରେ ମଦନ ଭାବାବେଶ ଅଙ୍କୁରିତ କରୁଛନ୍ତି (୭୧) । ବରବର୍ଣ୍ଣିନୀ ରାଧା ପରିହିତ ନୂପୁର ଓ ମଣି-ଭୂଷାର ଶିଞ୍ଜନରେ ବ୍ରଜ-ଲକ୍ଷ୍ମୀର ଭ୍ରାନ୍ତି ଜାତ କରୁଛନ୍ତି । ନିତ୍ୟ ଧାମର ବିଭୂତି ରାଧା ରୂପରେ ମୂର୍ତ୍ତିମନ୍ତ ହୋଇ ବ୍ରଜରେ କ୍ରୀଡ଼ା କରୁଛକି ? ବ୍ରଜର ସଖୀ ଓ ମଞ୍ଜରୀମାନଙ୍କର କୋଟି କୋଟି ଜନ୍ମର ଭାଗ୍ୟ ପ୍ରାପ୍ତ ପ୍ରତୀତ ହେଉଛନ୍ତି । ସ୍ୱଭାବତଃ ପ୍ରେମିକ ଦୃଷ୍ଟିରେ ରାଧା ତାଙ୍କର ଅତୁଳନୀୟ ସୌନ୍ଦର୍ଯ୍ୟରେ ସମଗ୍ର ବିଶ୍ୱକୁ କାନ୍ତିମୟ କରି ନିଜର ସୌଭାଗ୍ୟ-ଚନ୍ଦନରେ ବ୍ରଜବାସିନୀଙ୍କୁ ଅଭିଷିକ୍ତ କରୁଛନ୍ତି । କେବଳ ବ୍ରଜଭୂମି ନୁହେଁ, ସମଗ୍ର ବିଶ୍ୱର କଲ୍ୟାଣ ଓ ଆନନ୍ଦମୟୀ ମୂର୍ତ୍ତି ରୂପରେ କବି ତାଙ୍କୁ କଳ୍ପନା କରିଛନ୍ତି । ପାରମ୍ପରିକ ଉପମା ଓ ଉତ୍ପ୍ରେକ୍ଷାର ଊର୍ଦ୍ଧ୍ୱରେ ଶ୍ରୀକୃଷ୍ଣଙ୍କର ଆବେଗ ଓ ବ୍ୟାକୁଳତାରେ କବି ରାଧାଙ୍କର ଆଙ୍ଗିକ ଓ ଆତ୍ମିକ ସୁଷମାର ଅତୁଳନୀୟତା ସୂଚିତ କରିଛନ୍ତି । କବି ଶ୍ରୀକୃଷ୍ଣଙ୍କ ମୁଖରେ ପ୍ରକାଶ କରିଛନ୍ତି—

ପରଂଧାମର ବିଭୂତି କିବା ମୋ ନେତ୍ର ସମ୍ପତ୍ତି
ମୂର୍ତ୍ତିମନ୍ତ ହୋଇ ବିଳସୁଛି କି ଅନା । ୩ ।
ବୃନ୍ଦାରଣ୍ୟ ଜନଙ୍କର କୋଟିଏ କୋଟି ଜନ୍ମର
ଭାଗ୍ୟରାଶି ପରି ହେଉଛି ମୋ ଭାବନା । ୪ ।

(ଗୋ. କୃ. ଗ୍ରଂ, ପୃ ୩୫୭)

ରାଧା ରୂପ ନିର୍ମାଣରେ ପରମ୍ପରାର ଅନୁସରଣ ପଦେ ପଦେ ରହିଛି । ବିଦଗ୍ଧ ମାଧବର କୃଷ୍ଣଙ୍କ ଦୃଷ୍ଟିରେ ସମଗ୍ର ବିଶ୍ୱ ହୋଇଛି ରାଧାମୟ (୭୨) । ରୂପ ଗୋସ୍ୱାମୀଙ୍କର ଉଜ୍ଜ୍ୱଳନୀଳମଣି (ରାଧା ପ୍ରକରଣ), ଭକ୍ତିରସାମୃତ ସିନ୍ଧୁ, ରାଧାକୃଷ୍ଣ ଗଣୋଦ୍ଦେଶ ଦୀପିକା,

(୭୧) ଗୋ: କୃ: ଗ୍ରଂ, ପୃ ୩୫୭
(୭୨) ବି. ମା, ୫।୨୭, ପୃ. ୨୭୫

ବୃହଦ୍ ଗୌତମୀୟତନ୍ତ୍ର, ଭାପନୀ ଶ୍ରୁତି, ଋକ୍ ପରିଶିଷ୍ଟ ଓ ବିଦଗ୍ଧ ଚନ୍ଦ୍ରାମଣିରୁ ରାଧାଙ୍କର ସୌନ୍ଦର୍ଯ୍ୟ, ସୌଭାଗ୍ୟ ଓ ଗୁଣର ଅନୁରୂପ ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ, ଯଥା—

(କ) ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା ।
ସର୍ବଲକ୍ଷ୍ମୀମୟୀ ସର୍ବକାନ୍ତିଃ, ସମ୍ମୋହିନୀ ପରା ।

( ବୃହଦ୍ଧ ଗୌତମୀୟ ତନ୍ତ୍ର )

(ଖ) ଶ୍ରଧୂନସ୍ତତ ରାଧିକେ ନିଜଗଦେଷ ରୁପୋସ୍ତବଃ । ୨ ।

(ଉ. ନୀ, ରାଧାପ୍ରକରଣ, ପୃ ୧୦୩)

(ଗ) କାନ୍ତୀନାଂ କୁଳଦେବତା ବଳସିଦ୍ଧୁଂ ବୃନ୍ଦାଟବୀ ବନ୍ଦତ ।

(ଶ୍ରୀକୃଷ୍ଣ ଉକ୍ତ, ବି ମା, ୨ । ୬୬, ପୃ ୧୦୭)

(ଘ) କମିତଃ ମୁଷମା ବପୁଷ୍ଟ କମଭିବ୍ୟକ୍ତିରଳଂ ଗୁଣଶ୍ରିୟଃ ।
ଅଥବା ପ୍ରଣୟସ୍ୟାଭିସମ୍ପଦଃ କମିୟଂ ମୂର୍ତ୍ତିରୁଦେତି ରାଧିକା ।

(ବି ମା, ୭ । ୫୫, ପୃ ୪୧୦)

ଅର୍ଥାତ୍ ବୃନ୍ଦା ଲଳିତାଙ୍କୁ କହୁଛନ୍ତି—ଦେଖ, ଏଠାରେ କ'ଣ ସୌନ୍ଦର୍ଯ୍ୟ ନିଜେ ଶରୀର ଧାରଣ କରିଛି ନା ଗୁଣଶ୍ରୀର ଚରମ ଅଭିବ୍ୟକ୍ତି ଅଥବା ପ୍ରଣୟ ସମ୍ପଦର ମୂର୍ତ୍ତି ରାଧିକା ରୂପେ ଉଦିତ ହୋଇଛନ୍ତି ।

ରାଧାଙ୍କୁ କାନ୍ତିକୁଳର ଅଧିଷ୍ଠାତ୍ରୀ ଦେବୀରୂପେ ଏବଂ ଅଙ୍ଗକାନ୍ତିରେ ଦଶଦିଗ କାଞ୍ଚନାଭ ହୋଇଯିବାର କଳ୍ପନା ବିଦଗ୍ଧ ଚନ୍ଦ୍ରାମଣିର ପ୍ରତ୍ୟକ୍ଷ ଅନୁସରଣ ପ୍ରାପ୍ୟ ମନେହୁଏ । ସଖୀନିକଟରେ କୃଷ୍ଣ ରାଧାଙ୍କର ରୂପର ପ୍ରଶଂସା କରି କହୁଛନ୍ତି—

(କ) କାନ୍ତିକୁଳଦେବୀ ପଦ୍ମିନୀ ବଳେ ।
ହୋଇଥିଲା ପରା ସୁନ୍ଦର ସାଜେ ସେ । ୫ ।
କାନ୍ତି ପ୍ରତିବିମ୍ବି ମହୀମଣ୍ଡଳ ।
ପ୍ରଶାନ୍ତ ଜାଗୁଡ଼ି ଜନମ ସ୍ଥଳ ।
ଗଉର ହରିଲା କାନନ ଯାକ ।
ହେମେ ସର୍ଜନା କଲା ବିଶ୍ୱସୃକ ସେ । ୨ ।

( ବି ଚ, ପ୍ରାଚୀ ସଂ, ୨ୟ ଖଣ୍ଡ, ଗ୍ରୁ ୪୬, ପୃ ୧୮୩)

(ଖ) ବିଶ୍ୱକାନ୍ତି ସାର ପୀୟୂଷେ ବୋଳି ।
ବେଧି ବନାଇଛି ଶୋଭା ପିତୁଳୀ ।
ବରଦୀପ୍ତ ଅଙ୍ଗଣାରେ ଝାଳିଲା ।
ବିଚକ୍ଷଣ ହେମରସାଣେ ଶାଣିଲା ସେ ।

(ଦୂତୀଉକ୍ତି, ବି ଚ, ୧ମ ଖଣ୍ଡ, ୨୬ । ୭, ପୃ ୧୪୩)

ଅନ୍ୟ ଗୋଟିଏ ଗୀତରେ କବି ଅନୁରାଗିଣୀ ରାଧାଙ୍କର ରୂପ, ଗୁଣ ଓ ଭାଗ୍ୟର ପ୍ରଶଂସା କରି ସଖୀମୁଖରେ କବି ପ୍ରକାଶ କରିଛନ୍ତି—

କି ସୁକୃତ କରିଥିଲା ସେ କିଶୋରୀ
ଅନ୍ୟ ଜନମରେ କହ ସହଚରୀ ? । ଘୋଷା ।
ଯେ ନେତ୍ରାନ୍ତ କୋଣରେ ଅନାଇ ଦେଲେ ଥରେ,
ବ୍ରଜବଧୂ ହୋଇଛନ୍ତି ଦାସୀ ପରି । ୧ ।
( ଗୋ କୃ ଗ୍ରଂ, ପୃ ୩୮୧ )

ଗୀତଗୋବିନ୍ଦ (ଦେହି ପଦପଲ୍ଲବମୁଦାରମ୍) ଓ ପଦାବଳୀ ଆଦର୍ଶରେ କବି ଏଠାରେ ରାଧାଙ୍କ ରକ୍ତାଭ ଚରଣରେ ଶ୍ରୀକୃଷ୍ଣଙ୍କର ଦାସତ୍ୱ-ଅନୁରକ୍ତି ପ୍ରକାଶ କରି ତାଙ୍କର ରୂପମୁଗ୍ଧତାର ବ୍ୟଞ୍ଜନା ସୃଷ୍ଟି କରିଛନ୍ତି । ବୈଷ୍ଣବ ସାଧକ ଓ କବିଗଣ ରାଧାଙ୍କର ପ୍ରଣୟାନୁଭୂତିରେ ବିଗ୍ରହିତ ଦାସ୍ୟ ଭାବର (୭୩) ସଙ୍କେତ ଦେବା ସଙ୍ଗେ ସଙ୍ଗେ ଶ୍ରୀମତୀଙ୍କଠାରେ ଶ୍ୟାମଙ୍କର ଦାସ୍ୟଭାବ ପ୍ରକାଶରେ ଦ୍ୱିଧା ପ୍ରକାଶ କରିନାହାନ୍ତି, ଯଥା—

କିଶୋରୀର ଦାସ ଆମି ପୀତବାସ
ଇହାତେ ସନ୍ଦେହ ଯାର ।
କୋଟି ଯୁଗ ଯଦି ଆମାରେ ଭଜୟେ
ବିଫଲ ଭଜନ ତାର ।।
(ଚଣ୍ଡୀଦାସ)

ରାଧାଙ୍କର ରୂପର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ କବି ସଖୀମୁଖରେ ବ୍ୟତିରେକ ଅଳଙ୍କାରରେ ପୁଣି ପ୍ରକାଶ କରିଛନ୍ତି— ଯେତେ ରସକୋବିଦ ହେଲେ ମଧ୍ୟ, ଯେତେ ଆକଳ୍ପ (ବେଶ) ରଚନା କଲେ ମଧ୍ୟ ଅନ୍ୟ ପକ୍ଷରେ ରାଧାଙ୍କର ଶ୍ରୁଷା ସହ ତୁଳିତ ହେବା ଅସମ୍ଭବ, ଏପରିକି ଚନ୍ଦ୍ରାବଳୀ ମଧ୍ୟ ନୀରସ ଦେଖାଯିବା କିଛି ବିଚିତ୍ର ନୁହେଁ ।

'ରାଧାଗୀତ ସଂସାର ତାହାର' ଗୀତଟିରେ (ଗୋ କୃ ଗ୍ରଂ, ପୃ ୪୩୯) ମଧ୍ୟ କବି ରାଧାଙ୍କର ଗୁଣ, ଶୋଭା ଓ ସୌଭାଗ୍ୟର ପ୍ରଶସ୍ତି ଗାନ କରିଛନ୍ତି, କିନ୍ତୁ କବିଙ୍କର ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପ୍ରାଧାନ୍ୟ ହେତୁ ଗୀତଟି ନୀରସ ହୋଇ ପଡ଼ିଛି । କବିଙ୍କ ବର୍ଣ୍ଣନାନୁଯାୟୀ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତିର ହ୍ଲାଦିନୀବୃତ୍ତି ରାଧା ବ୍ରହ୍ମା, ଶଙ୍କର ଓ ନାରଦଙ୍କର ଧ୍ୟାନାତୀତ ହୋଇ ମଧ୍ୟ ସାଧାରଣ ମାନବୀତୁଲ୍ୟ ଦାସୀର ଅଧୀନ ହୋଇଛନ୍ତି । ଲକ୍ଷ୍ମୀ ତାଙ୍କ ପଦନଖଚ୍ଛଟାର ସାମାନ୍ୟ ପ୍ରାପ୍ତି ନିକଟରେ ତୁଚ୍ଛ । ବ୍ରଜବାସୀଙ୍କ ମଧ୍ୟରେ ସେ ବିଲକ୍ଷଣ ଗୁଣର ଆଧାର ହୋଇଥିବାରୁ ତାଙ୍କ ଦର୍ଶନରେ ସେମାନେ ନୟନ ସାର୍ଥକ ମଣନ୍ତି—

ଏ ଗୋଷ୍ଠବାସୀ ସକଳ ଆଖି ବହିବାର ଫଳ
ଏକା ସିନା ତାକୁ ଦେଖିବାର । ୪ ।
( ଗୋ କୃ ଗ୍ରଂ, ପୃ ୪୪୦ )

(୭୩) ସବ ସମର୍ପିୟା ଏକମନ ହୈୟା ନିଶ୍ଚୟ ହୈଲାମ ଦାସୀ—ଚଣ୍ଡୀଦାସ

ରାଧାଙ୍କର ରୂପାଲେଖ୍ୟରେ ସେହି ଉପମାନ ଚୟନରେ ଅତୃପ୍ତିବୋଧ ସଂସ୍କୃତ ଓ ପଦାବଳୀର କବିପରି କବିଙ୍କର ଅନ୍ୟ ଦୁଇଟି ଗୀତରେ ପରିଲକ୍ଷିତ ହୁଏ । ରାଧାଙ୍କ ରୂପର ସାର୍ଥକ ଉପମାନ ନ ପାଇ କବି ଶଶୀମୁଖରେ ଅନନ୍ୱୟ ଅଳଙ୍କାରରେ ନିଜର ବ୍ୟାକୁଳତା ପ୍ରକାଶ କରିଛନ୍ତି (୬୪) ।

ଉପମାନ ନିର୍ବାଚନରେ ଅତୃପ୍ତିବୋଧ ତା'ର ସନ୍ଧାନରେ କବିଙ୍କୁ କ୍ଲାନ୍ତ କରିନାହିଁ, ବରଂ ତାଙ୍କର ଉତ୍ସାହକୁ ବେଗବତୀ କରିଛି ! ନୂତନ ନୂତନ କଳ୍ପନା ଦ୍ୱାରା ଉପମେୟର ଉତ୍କର୍ଷ ସାଧନରେ ସେ ବ୍ରତୀ ହୋଇଛନ୍ତି । ଶ୍ରୀମତୀଙ୍କର ଅଙ୍ଗପ୍ରତ୍ୟଙ୍ଗର ସୌଷ୍ଠବ ବର୍ଣ୍ଣନରେ ରୀତିକାବ୍ୟସୁଲଭ ପାରମ୍ପରିକ ଅଳଙ୍କାରର ଆଟୋପ ଦେଖା ଦେଇଛି । ପ୍ରଥାନୁଗ ବ୍ୟତିରେକର ପ୍ରୟୋଗରେ କବି ଲେଖିଛନ୍ତି—

କଳାକର ତ କଳାକରେ ରହିଲା ମୁଖକୁ ନୋହି ତୁଳନା ।
ଏପାରେ ତପ କରୁଛି ଗଙ୍ଗାତଟେ ହରଜଟା ବନେ ଅନା ।୨।
ଆଖିକି ତାର ଅନାଇଁ ଦେଇ ମୁଖ ବୁଲାଇ ଦେଲେ ଏଣିକି ।
ଦଶଦିଶ ଯାକ ନୀଳୋତ୍ପଳମୟ ଦିଶୁଛି ହେବା କଥାକି ।୩।

(ଗୋ. କୃ. ପ., ପୃ-୨୨୮)

ଚତୁର୍ଦ୍ଦିଗ ନୀଳୋତ୍ପଳମୟ ହେବାର ତାତ୍ପର୍ଯ୍ୟ ହେଉଛି : ରାଧା ନିଜର ଅମୃତ-ଦୃଷ୍ଟିପାତ ଦ୍ୱାରା ଚତୁର୍ଦ୍ଦିଗ ଶୋଭାମୟ କରୁଛନ୍ତି (୬୫) ।

ଅନ୍ୟ ଗୀତଟିରେ ଲକ୍ଷିତ ଲକ୍ଷଣାରେ କବି ସେହି ରୀତିଯୁଗୀୟ କାବ୍ୟିକ ରୀତି ଅନୁସରଣ କରିଛନ୍ତି । ସେହି ବ୍ୟତିରେକ ଓ ଅନନ୍ୱୟ ପ୍ରୟୋଗରେ କବି ବର୍ଣ୍ଣନା କରିଛନ୍ତି—

ମୁଖଶୋଭାକୁ ଚନ୍ଦ୍ରମା ସରି ହେବାକୁ ଗାରିମା
କରି ଅତୁଲ୍ୟ ହେତୁରୁ କଳଙ୍କ ଧାରି ।୧।
ବକ୍ଷୋଜ ଶୋଭାକୁ ହାରି ଶମ୍ଭୁ ଯେ ପାଷାଣ ସରି,
ମଙ୍ଗଳ ବଧିକ ସେବେ ଗଜକ ଶିବାକୁ ହାରି ।୨।
କଟି ଶୋଭା ବିଲୋକନେ କେଶରୀ ପଶିଲା ବନେ
ନାନା ବର୍ଣ୍ଣ ଧରେ ଘନ ଦେଖି କବରୀ ।୩।
ଦର ଗ୍ରୀବାଭଙ୍ଗୀ ଦେଖି ଆଶ୍ରୟ କଲା ହରିଙ୍କି
ଦଶନ କାନ୍ତିକି ଦେଖି ହୀରା ଶାଣେ ହୁଏ ଯାରି ।୪।
ନେତ୍ରକୁ ବିଲୋକି ମୀନେ ବାସ କଲେ ଜଳେ ଛନ୍ନେ
ବାଣୀ ଶୁଣି ବୀଣା କଲା ସରସ୍ୱତୀଙ୍କି ଗୁହାରି ।୫।

(୬୪) ଗୋ. କୃ. ପ, ପୃ ୨୨୮
(୬୫) ଭାରତଚନ୍ଦ୍ର, ବିଦ୍ୟାସୁନ୍ଦର କାବ୍ୟ, ପୃ-୧୦୨

ଉପମା କାହାକୁ ମୁହିଁ ଦେବ ରେ ଚନ୍ଦ୍ରମା ମୁହିଁ
ମୋ ବଗ୍ୟରେ ଉପମା ତୁ ଅଟୁ ତୋହର ।୬।
(ଗୋ. କୃ. ଗ୍ରଂ., ପୃ ୪୨୪-୪୨୫)

ଏ ପ୍ରକାର ବର୍ଣ୍ଣନାରେ ବ୍ୟବହାରଜାଣ୍ଡ ଉପମାନ ଚୟନରେ କବିଙ୍କର ଆଳଙ୍କାରିକ କୁଶଳତାର ପରିଚୟ ମିଳେନା; କିନ୍ତୁ ପ୍ରକାଶର ଅନୁରାଗ ଓ ବ୍ୟାକୁଳତାରେ କବି ରାଧାଙ୍କର ପ୍ରାତ୍ୟହିକ ସୁଷମାର ଶ୍ରେଷ୍ଠତ୍ୱର ସୂଚନା ମାତ୍ର ଦେଇଛନ୍ତି । ପୂର୍ବୋକ୍ତ ବର୍ଣ୍ଣନାର ଅନୁରୂପ ଚିତ୍ର ସଂସ୍କୃତ କାବ୍ୟ, ନାଟକ, ପଦାବଳୀ ସାହିତ୍ୟ ଓ ଓଡ଼ିଆ ରୀତିକାବ୍ୟରେ (ବିଦଗ୍ଧ ଚିନ୍ତାମଣି, ଲାବଣ୍ୟବତୀ) ପ୍ରାୟ ସର୍ବତ୍ର ପରିଦୃଷ୍ଟ ହୁଏ । କେତୋଟି ଦୃଷ୍ଟାନ୍ତ ଦିଆ ଯାଉଛି—

ଶ୍ରୀହର୍ଷ—ହୃତସାରମିବେନ୍ଦୁମଣ୍ଡଳଂ ଦମୟନ୍ତୀ ବଦନାୟ ବେଧସା ;
କୃତମଧ୍ୟବିଲଂ ବିଲୋକ୍ୟତେ ଧୃତଗମ୍ଭୀରଖନୀଖନୀଳିମ ।୭୬।

ଅଭିମନ୍ୟୁ—ରାଧାଙ୍କର ମୁଖଶୋଭା ବର୍ଣ୍ଣନାରେ ଅଭିମନ୍ୟୁ ଲେଖିଛନ୍ତି—

କ) ମୁଖସାନ୍ଦ୍ରକୁ ପୂର୍ଣ୍ଣଚନ୍ଦ୍ର ନ ଘଟି ଘଟିଲା ଦେହଚିନ୍ତା ବନ୍ଧ । (ବି. ଚି, ୪-୧୭)

ଖ) ଦର ଦର ଦରଶନରେ ବହଇ ସୁକଣ୍ଠୀ ଗ୍ରୀବା ବିଲୋକନେ ।

* * *

ଦନ୍ତକୁ, ଗ୍ରହିଁ ହୀର ଶାଣେ ବସିଲା । (ବି. ଚି. ୪।୨୩)

ଉପେନ୍ଦ୍ର—ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀର ଯୌବନ ବର୍ଣ୍ଣନାରେ ବ୍ୟତିରେକ ପ୍ରୟୋଗ କରି ଲେଖିଛନ୍ତି—

କ) କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତିରୁ,
ସମ ନୋହେ ବୋଲି ତାକେ ପ୍ରୀତିରୁ ।୪।
ନେତ୍ର ସଙ୍ଗେ ଲକ୍ଷି ବେକ ସୁମରି,
ମୀନ ଜଳସ୍ଥାନରେ ଯାଏ ମରି ।୫। (ଲା. ବ., ୩ୟ ଛାନ୍ଦ)

ଖ) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଶୋଭା ବର୍ଣ୍ଣନାରେ ଉପେନ୍ଦ୍ର ଉପମାନର ନ୍ୟୂନତା ସମ୍ପର୍କରେ ସଚେତ ରହି ଉପମେୟର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି—

ଉପମା ପବିତ୍ର ହେବା ସମୟ ।
ପଡ଼ିଲା ଏଥିରେ ନାହିଁ ସଂଶୟ ସେ ।
କାହିଁଛୁ ଲକ୍ଷ୍ୟେ ଲକ୍ଷଣା ଯେ ।୩।
ସାର ଭାଗକଲା ନୃପ-କେମାକୁ
ଅସାର ଭାଗ କଲା ଉପମାକୁ ।'୭। (କୋ. ବ୍ର. ସୁଂ, ୭ମ ଛାନ୍ଦ)

(୭୬) ନୈଷଧଚରିତମ୍, ସମ୍ପା : ହରିଦାସ ସିଦ୍ଧାନ୍ତବାଗୀଶ, ୧୮୩୧ ଶକାବ୍ଦ ପ ୧୧୪

ପଦାବଳୀ ସାହିତ୍ୟ—ବଡ଼ୁ ଚଣ୍ଡୀଦାସ ରାଧାରୂପ ବର୍ଣ୍ଣନାରେ ଲେଖିଛନ୍ତି—

କନକ କମଳ ରୁଚି ବିମଳ ବଦନେ ।
ଦେଖି ଲଜେ ଗେଲା ଚାନ୍ଦ ଦୂରଲାଖ ଯୋଜନେ ।

*　　*　　*

କଣ୍ଠଦେଶେ ଦେଖିୟା ଶଙ୍ଖ ତ ଭୈଲ ଲାଜେ ।
ସହରେ ପଶିଲ ସାଗରେର ଜଲ ମାଝେ ।　　(ବ. ଚ. ପ:, ପୃ ୪୩)

ଶ୍ରୀକୃଷ୍ଣଙ୍କର ରୂପୋଲ୍ଲାସର ଆଉ ଗୋଟିଏ ଗୀତ ରହିଛି ଯେଉଁଥିରେ ତାଙ୍କର ଛନ୍ଦୋକ୍ତି ମାଧ୍ୟମରେ (ରାଧାଙ୍କ ପ୍ରତି ) କବି ରାଧାଙ୍କର ରୂପର ପ୍ରଶଂସା କରିଛନ୍ତି । ଏଥିରେ ରାଧାଙ୍କର ରୂପାଲେଖ୍ୟରେ ପ୍ରଥାସିଦ୍ଧ ଉପମା ଓ ରୂପକର ପ୍ରୟୋଗ ସତ୍ତ୍ୱେ ପ୍ରଣୟୀର ସୌନ୍ଦର୍ଯ୍ୟାବେଶରେ ତାହା ପ୍ରାଣବନ୍ତ ଓ ଅଭିନବ-ଶ୍ରୀରେ ମଣ୍ଡିତ ହୋଇଛି । ସିନ୍ଦୂର ବିନ୍ଦୁ ଶୋଭିତା ପ୍ରଣୟିନୀ ସମକ୍ଷରେ ପ୍ରଣୟୀ ନିଜର ଅନ୍ତରରେ ଅନୁଭବ କରୁଛି ଆନନ୍ଦ ଓ ଆଲୋକର ବନ୍ୟା । ଘନକୃଷ୍ଣ ଚିକୁରଦାମ ଦୋଳାୟିତ ହୋଇଛି ପୃଷ୍ଠଦେଶରେ । ପ୍ରଣୟୀମୁଖରେ କବି ପ୍ରକାଶ କରିଛନ୍ତି—

ସୁନ୍ଦର ବଦନେ ସିନ୍ଦୂର ବିନ୍ଦୁଟି ଶ୍ୟାମଲ-ଚିକୁର ଭାର ।
ଯେହ୍ନେ ରବିଶଶି ଏକତ୍ରେ ଉଦିତ ପଛକୁ କରି ଅନ୍ଧାର ।।
( ଗୋ କୃ ଗ୍ରଂ ପୃ ୬୭୬ )

ଚନ୍ଦ୍ର ଓ ବାଳାରୁଣର ଉଦୟରେ ଅନ୍ଧକାର ଦୂରୀଭୂତ ହେଲାପରି ରାଧାଙ୍କର ମୁଖଚନ୍ଦ୍ର ଓ ସିନ୍ଦୂରାରୁଣର ଉଦୟରେ ଶ୍ରୀକୃଷ୍ଣଙ୍କର ବିରହ ବା ନୈରାଶ୍ୟରୂପକ ଅନ୍ଧକାର କେଶ ଛଳରେ ପଶ୍ଚାତ୍ ଦେଶକୁ ଅପସରି ଯାଉଛି । ତାଙ୍କର ଅଞ୍ଜନଶୋଭିତ ତରଳ ନୟନର ଅପାଙ୍ଗ ମଳୟତାଡ଼ିତ ଅଳିଯୁକ୍ତ ଇନ୍ଦୀବର ପ୍ରାୟ ପ୍ରତୀତ ହେଉଛି । ନୀଳପଟାଚ୍ଛାଦନ ସତ୍ତ୍ୱେ ସ୍ୱର୍ଣ୍ଣଶୈଳ ତୁଲ୍ୟ ପୀନ ବକ୍ଷୋଜ ପ୍ରଣୟୀର ଦୃଷ୍ଟି ଏଡ଼ାଇ ପାରୁନାହିଁ । ରାଧାରୂପର ଏ ଆଲେଖ୍ୟ ପଦାବଳୀ ସାହିତ୍ୟରେ (କିଞ୍ଚିତ୍ ଭିନ୍ନ ରୂପରେ) ଯଥେଷ୍ଟ ଦୁର୍ଲଭ ନୁହେଁ, ଯଥା—

(କ)　କେଶପାଶେ ଶୋଭେ ତାର ସୁରଙ୍ଗସିନ୍ଦୂର ।
ସଜଲ ଜଲଦେ ଯେହ୍ନେ ଉଇଲ ନବ ସୂର ।
( ବଡ଼ୁ ଚଣ୍ଡୀଦାସ )

(ଖ)　ଆଁଖି ତାରା ଦୁଟି　　ବିରଲେ ବସିୟା
ସୃଜନ କରେଛେ ବିଧି ।
ନୀଳପଦ୍ମ ଭାବି　　ଲୁବ୍ଧ ଭ୍ରମରା
ଛୁଟିତେଛେ ନିରବଧି ।
(ଦ୍ୱିଜ ଚଣ୍ଡୀଦାସ)

ସଂସ୍କୃତ କାବ୍ୟ ଓ ପଦାବଳୀ ସାହିତ୍ୟ ପରି ଗୋପାଳକୃଷ୍ଣଙ୍କ ରଚନାରେ ସଦ୍ୟସ୍ନାତା ଓ ସ୍ନାନାନ୍ତର ରାଧାଙ୍କର ଇନ୍ଦ୍ରିୟ ଭାବୋଦ୍ଦୀପକ ଚିତ୍ର ନାହିଁ । କେବଳ ଯମୁନା ସ୍ନାନ ଘାଟରେ ସଖୀ ସହ ସ୍ନାନାର୍ଥିନୀ ରାଧାଙ୍କର ଉପସ୍ଥିତି ଏବଂ ଶ୍ରୀକୃଷ୍ଣଙ୍କର ଅପ୍ରତ୍ୟାଶିତ ଆବିର୍ଭାବରେ ବେଶ ବିପର୍ଯ୍ୟସ୍ତ ରାଧାଙ୍କର ପଲ୍ଲୀ କୁଳବଧୂ ସୁଲଭ ବ୍ରୀଡ଼ାର ସଂଯତ ଚିତ୍ର ଥିବା ଗୀତଟିଏ (ମୁହାଁମୁହିଁ କିଶୋରୀ ଚନ୍ଦ୍ରମାଙ୍କର ମୋର, ଗ୍ରଂ ପୃ ୩୧୯) ପରିଦୃଷ୍ଟ ହୁଏ ।

ରାଧାକୃଷ୍ଣଙ୍କର ବୃନ୍ଦାବନ-ପ୍ରେମଲୀଳା, ଗୀତଗୋବିନ୍ଦ, ପଦାବଳୀ ସାହିତ୍ୟ ଓ ଓଡ଼ିଶାର ବିଖ୍ୟାତ ଚଉପଦୀକାର କବିସମ୍ରାଟ୍ ବଳଦେବଙ୍କର ସଙ୍ଗୀତର ବସ୍ତୁ ହେଲେ ମଧ୍ୟ ପୂର୍ବସୂରି ଓ ଗୋପାଳକୃଷ୍ଣ—ଏମାନଙ୍କର ଦୃଷ୍ଟିଭଙ୍ଗୀରେ ପାର୍ଥକ୍ୟ ରହିଛି । ଜୟଦେବ, ବିଦ୍ୟାପତି, ଚଣ୍ଡୀଦାସ ଓ ବଳଦେବ ପ୍ରଭୃତି ମୁଖ୍ୟତଃ ହେଉଛନ୍ତି ସୌନ୍ଦର୍ଯ୍ୟ ଶିଳ୍ପୀ, କିନ୍ତୁ ଗୋପାଳକୃଷ୍ଣ ହେଉଛନ୍ତି ଶିଳ୍ପୀ ଓ ପ୍ରେମ ଭକ୍ତି ସାଧକ । ଜୟଦେବ ପ୍ରକୃତି ପୁରୁଷ ସ୍ୱରୂପୀ ରାଧାମାଧବଙ୍କର ଅପ୍ରାକୃତ ପ୍ରେମ ମଧ୍ୟରେ ପ୍ରାକୃତ ପ୍ରେମର ହୃଦୟାବେଗ ଓ ରସାନୁଭୂତିର ସ୍ପର୍ଶ ଦେଇଛନ୍ତି ଲୌକିକ ଅଳଙ୍କାର ଶାସ୍ତ୍ର ଆଲୋଚିତ ନାୟକନାୟିକାର ଲକ୍ଷଣ ଓ ଶୃଙ୍ଗାର ପ୍ରାଧାନ୍ୟର ପ୍ରବାହ ସୃଷ୍ଟିକରି । ଜୟଦେବ ସୃଷ୍ଟ ପରମ୍ପରାର ପ୍ରତିଧ୍ୱନି ସଂସ୍କୃତ ଓ ଅନ୍ୟାନ୍ୟ ଦେଶୀୟ ସାହିତ୍ୟ ସହ ଓଡ଼ିଆ ସାହିତ୍ୟରେ ଉଭୟ ଲୌକିକ ତଥା ବୈଷ୍ଣବ କାବ୍ୟ ଓ ସଙ୍ଗୀତ ରଚନାରେ ପରିଲକ୍ଷିତ ହୋଇଛି (୬୭) । ପଶ୍ଚାତ୍ତରେ ରାଧାଭାବଦ୍ୟୁତିସୁବଳିତବିଗ୍ରହ ଚୈତନ୍ୟଙ୍କର ଭାବାବେଶ, ଗଭୀର ପ୍ରେମାନୁଭୂତି ଓଡ଼ିଆ ବୈଷ୍ଣବ କାବ୍ୟ ଓ ସଙ୍ଗୀତ ଧାରାରେ ଆଣି ଦେଇଥିଲା ଯେଉଁ ସଂଯମ, ଭକ୍ତିବିହ୍ୱଳତା ଓ ଦିବ୍ୟାନୁଭୂତିର ପ୍ରେରଣା, ତାର ପ୍ରତିଧ୍ୱନି ରହିଛି ବନମାଳୀ, ସଦାନନ୍ଦ, ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ସୃଷ୍ଟିରେ । ଗୋପାଳକୃଷ୍ଣ ଥିଲେ ରାଗାନୁଗା ଭକ୍ତିମାର୍ଗର ମର୍ମଜ୍ଞ ସାଧକ । ଶ୍ରୀମତୀଙ୍କର ସେବା ତାଙ୍କ କାବ୍ୟ-ସାଧନାର ଚୂଡ଼ାନ୍ତ ଲକ୍ଷ୍ୟ । କବି ସଙ୍ଗୀତ ମାଧ୍ୟମରେ ଭକ୍ତିଭାବର ନୈବେଦ୍ୟ ଅର୍ପଣ କରିଛନ୍ତି ତାଙ୍କର ଉପାସ୍ୟ ଓ ଉପାସ୍ୟାଙ୍କ ନିକଟରେ । ଫଳରେ ରାଧାକୃଷ୍ଣଙ୍କର ରୂପାନୁରାଗ ଚିତ୍ରରେ ମାନୁଷୀ ପ୍ରେମାନୁଭୂତିର ଊର୍ଦ୍ଧ୍ୱରେ କବି ଏକ ଦିବ୍ୟ ସୌନ୍ଦର୍ଯ୍ୟ ଚେତନା ଓ ରୂପଲୋକର ସନ୍ଧାନ ଦେଇଛନ୍ତି । ତେଣୁ ନାୟକନାୟିକାଙ୍କର ରୂପୋଲ୍ଲାସ ଚିତ୍ରରେ ଦୈହିକ ରୂପତୃଷ୍ଣା ଓ ଐନ୍ଦ୍ରିକ ସୁଖ ସ୍ପର୍ଶ ସ୍ୱପ୍ନର ବିଷୟ । ତାଙ୍କର ରସ ତଥା ସୌନ୍ଦର୍ଯ୍ୟଦୃଷ୍ଟିର ଆଧ୍ୟାତ୍ମିକ ଉତ୍ତରଣ ସହଜ ଅନୁଭବ କରିହୁଏ; କିନ୍ତୁ କବିସମ୍ରାଟ୍ ବଳଦେବ ମୁଖ୍ୟତଃ ସମ୍ଭୋଗ ଶୃଙ୍ଗାରର କବି । ତାଙ୍କର ଚଉପଦୀଗୁଡ଼ିକ ପ୍ରେମ, କାମ ଓ ସୌନ୍ଦର୍ଯ୍ୟର ସଙ୍ଗୀତ । ତାଙ୍କର ପୂର୍ବରାଗାନନ୍ତର ଓ ମାନାନ୍ତର ସମ୍ଭୋଗ ଚିତ୍ରରେ ନାୟକନାୟିକାଙ୍କର ଦୈହିକ ସୌନ୍ଦର୍ଯ୍ୟ ଆଲେଖ୍ୟରେ କବିଙ୍କର ଅଧିକ ଉତ୍ସାହ ଲକ୍ଷିତ ହୁଏ । ସେଥିପାଇଁ ତାଙ୍କର ପ୍ରେମରେ ରୂପ ମୁଖ୍ୟ ଭୂମିକା ଗ୍ରହଣ କରିଛି । ନାୟକର ରୂପ ଦର୍ଶନରେ ନାୟିକା ଚିତ୍ତରେ ଉପସ୍ଥିତ ହୋଇଛି

(୬୭) ଦ୍ୱିତୀୟ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

କାମସ୍ଵଚ୍ଛନ୍ଦ୍ୟ । ନାୟକର ରୂପାନୁରାଗ ନାୟିକା ଅପେକ୍ଷା ଅଧିକ କାମଚଞ୍ଚଳ । ରୂପଦର୍ଶନ ମୁହୂର୍ତ୍ତରୁ ଉଭୟଙ୍କର ବିଶେଷତଃ ନାୟକର ଦୈହିକ ମିଳନ ବାସନା ଉଦିତ ହୋଇ ଉଠେ । ଏହି ମିଳନ ବାସନା ମୂଳରେ ରହିଥାଏ ସେମାନଙ୍କର କାମାର୍ତ୍ତି ପୁଣି ସେମାନଙ୍କର ଚିନ୍ତା ଓ ସ୍ମୃତିରେ ଖେଳିଥାଏ ସେହି କାମତୃଷ୍ଣା ଓ ଯୌନ ସମ୍ଭୋଗର ରୋମନ୍ଥନ ମାତ୍ର (୭୮) । କବିସୂର୍ଯ୍ୟଙ୍କର ଲୌକିକ ଓ ରାଧାକୃଷ୍ଣ ପ୍ରେମ ସମ୍ବଳିତ ଚଉପଦୀରୁ ଏହିପରି ବହୁ ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ ।

ବୈଷ୍ଣବ କବିମାନେ ରାଧାକୃଷ୍ଣଙ୍କର ବୃନ୍ଦାବନ ଲୀଳାର ଅନାସକ୍ତ ଶିଳ୍ପୀ ନୁହନ୍ତି । ସେମାନେ ନିଜକୁ ଲୀଳାର ସହଚର ବା ସହଚରୀ ମନେକରନ୍ତି । ନିଜକୁ ରାଧାଙ୍କର ସଖୀସ୍ଥାନରେ କଳ୍ପନା କରି ତାଙ୍କ ଉଦ୍ଦେଶ୍ୟରେ ନିଜର ସମବେଦନା, ଆଶ୍ୱାସ, ଆନନ୍ଦ ଓ ଉପଦେଶାଦିର ଇଙ୍ଗିତ ପ୍ରଦାନ କରନ୍ତି । ସେହି ଭାବରେ ଅନୁପ୍ରାଣିତ ହୋଇ ଗୋପାଳକୃଷ୍ଣ ସଖୀମୁଖରେ 'ଯୁଗଳ ରୂପ ପ୍ରଶଂସା' (ଗୋପାଳକୃଷ୍ଣ ପୃ ୪୨୩) ଶୀର୍ଷକ ଗୀତ ରଚନା କରିଛନ୍ତି । ମଞ୍ଜରୀଭାବାପନ୍ନ କବିଙ୍କ ଦୃଷ୍ଟିରେ ଅଲୌକିକ ରୂପଲାବଣ୍ୟସମ୍ପନ୍ନ ରାଧା ଓ କୃଷ୍ଣ ପରସ୍ପରର ଅନୁରୂପ (ଶ୍ୟାମ ଅନୁରୂପେ ରାଧା ରଚିଲରେ) । ତ୍ରିଭୁବନର ସୁନ୍ଦର କନ୍ଦର୍ପ ଓ ରତି ରାଧାକୃଷ୍ଣଙ୍କର ପଦତଳର ଯୋଗ୍ୟ ନୁହନ୍ତି । ଉଜ୍ଜ୍ୱଳରସର ମୂର୍ତ୍ତିମନ୍ତ ବିଗ୍ରହ ଶ୍ରୀକୃଷ୍ଣ ଏବଂ ପରାନନ୍ଦ ସ୍ୱରୂପିଣୀ ରାଧା ବୃନ୍ଦାବନଲୀଳାରେ ପ୍ରେମର ସାର୍ଥକ ପ୍ରକାଶ ନିମିତ୍ତ ଆରୋପିତ ପରକୀୟା ଭାବର ଆଶ୍ରୟ ନେଇଛନ୍ତି । ସେହି ଯୁଗଳ ପଦ ସରୋଜରେ କବି ନିଜର ମନ ଓ ଜୀବନକୁ ନୈବେଦ୍ୟ ସ୍ୱରୂପ ଅର୍ପଣ କରିଛନ୍ତି । ଉପମାନ ଚୟନରେ ଅତୃପ୍ତ ଭକ୍ତକବିର ପ୍ରାଣ ସେମାନଙ୍କର ଚିନ୍ମୟ ସ୍ୱରୂପର ସଙ୍କେତରେ ସତେ ଯେପରି ଆଶ୍ୱସ୍ତ ହୋଇଛି ।

**ନବାନୁରାଗ :**

'ନବାନୁରାଗ' ଶିରୋନାମାରେ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ପ୍ରାୟ ଅର୍ଦ୍ଧଶତାଧିକ ଗୀତ ରହିଛି । ରାଧାକୃଷ୍ଣଙ୍କର ନବାନୁରାଗରେ ଦର୍ଶନାନୁରାଗ ଓ ରୂପାନୁରାଗ ସ୍ତରର କିଞ୍ଚିତ୍ ପରିପକ୍ୱତା ଲକ୍ଷିତ ହେଲେ ମଧ୍ୟ ଏଗୁଡ଼ିକରେ ଦର୍ଶନ ତଥା ରୂପାନୁରାଗର ଭାବ ମିଶ୍ରିତ ରହିଛି । ବୈଚିତ୍ର୍ୟମୟୀ ଘଟଣା ପରିବେଶ ଓ ପରିସ୍ଥିତିରେ କବି ରାଧାକୃଷ୍ଣଙ୍କର ଏହି ନବାନୁରାଗର ଚିତ୍ର ଅଙ୍କନ କରିଛନ୍ତି ।

**ରାଧାଙ୍କର ନବାନୁରାଗ :**

ନିତ୍ୟ କିଶୋର ମୂର୍ତ୍ତି ଶ୍ୟାମ ରୂପମୁଗ୍ଧା ରାଧାଙ୍କ ଦୃଷ୍ଟିରେ ଅନୁପମ (ବ୍ରଜବଧୂ ପରି ମୋତେ କେ ଦିଶୁନାହିଁ, ଗୋ କୃ ଗ୍ରଂ, ପୃ ୩୯୬) । ବ୍ୟତିରେକରେ କବି ପ୍ରକାଶ କରିଛନ୍ତି— •

---

•(୭୮) ଦାଶରଥି ଦାସ, କବିସୂର୍ଯ୍ୟ କାବ୍ୟବିଭା, ପୃ ୧୭୬-୧୮୭

କୋଟିଏ କୋଟିମାର ପଦ ନଖ କୋଣର
ଅଂଶ ଲେଶକୁ ସମ ହେବ ନାହିଁ ।୩।

ଶ୍ରୀକୃଷ୍ଣଙ୍କ ବପୁସ ପରି ଏ ଅନନ୍ୟ ରୂପ ଦର୍ଶନରେ ମନ ତାଙ୍କର ତୃପ୍ତ ହେଉ ନାହିଁ (ମନ ପ୍ରବୃଦ୍ଧ ହେଲେ କିଏ ରୁହେଁ ? ) । ପଦାବଳୀର କବି ରାଧାଙ୍କର ଏହି ଅଲୌକିକ ରୂପ ତୃଷ୍ଣାର ସଙ୍କେତ ଦେବାକୁ ଯାଇ ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି –

ଜନମ ଅବଧି ହାମ ରୂପ ନେହାରଲୁ
ନୟନ ନା ତିରପିତ ଭେଲ । (କବିବଲ୍ଲଭ)

ଏ ରୂପ ବାସ୍ତବ ଜଗତର ରକ୍ତମାଂସ ଦେହର ରୂପ ନୁହେଁ; ଏ ରୂପ ଅଲୌକିକ ଭାବ ଜଗତର । ରାଧାଙ୍କର ଭାବ ଦୃଷ୍ଟିରେ ଶ୍ରୀକୃଷ୍ଣଙ୍କ ପ୍ରଣୟ ପରିହାସ ମିଶା ଭାଷା, ସ୍ମିତ ସ୍ନିଗ୍ଧ ବଚନ ପୀୟୂଷ, କାନନ ପ୍ରତ୍ୟାବର୍ତ୍ତନ କାଳୀନ ଲୋଭନୀୟ ରୂପ ବାଣୀ ଅପୂର୍ବ ମାଧୁର୍ଯ୍ୟ ମଣ୍ଡିତ । ହୃଦୟରେ ତାଙ୍କର ରୂପୋତ୍ସବ ଚାଲିଥିଲେ ମଧ୍ୟ ସେହି ପ୍ରେମିକର ପଦସେବା ପାଇଁ ପ୍ରାଣରେ ତାଙ୍କର ଦୁର୍ବାର ଆକାଙ୍‌କ୍ଷା । ପ୍ରେମିକା ହେଲେ ମଧ୍ୟ ମଧୁର ଭାବରେ ତାଙ୍କର ଦାସ୍ୟଭାବ ନିଗୂହିତ । ପ୍ରତ୍ୟେକ ନିମେଷରେ କିଶୋର କୃଷ୍ଣଙ୍କର ରୂପ ଅନୁପମ ଓ ନୂତନପ୍ରାୟ ପ୍ରତୀତ ହେଉଥିବାରୁ ତାଙ୍କ ଦର୍ଶନରେ ଅତୃପ୍ତି ରହିବା ସ୍ୱାଭାବିକ । ହୃଦୟ ଦ୍ୱାରା ଅନୁଭୂତ ଏ ରୂପର ସୀମା ନାହିଁ । କବିଙ୍କର ସୌନ୍ଦର୍ଯ୍ୟ ଚେତନା ସ୍ଥୂଳ ବସ୍ତୁ ଜଗତ ଛାଡ଼ି ସୂକ୍ଷ୍ମଭାବ ଜଗତରେ ବିହାର କରିଛି ।

ଗୋଟିଏ ଗୀତରେ (ଦେଖିଲୁଁ ଟି ମୋହନ ମାଧୁରୀ, ଗ୍ରଂ, ପୃ-୩୪୭) ସଖୀ ରାଧାଙ୍କ ସମକ୍ଷରେ ଶ୍ରୀକୃଷ୍ଣଙ୍କର ମଧ୍ୟ କୈଶୋରର ମଧୁରିମା ବର୍ଣ୍ଣନା କରି ଚାଲିଛି । ସଖୀର ବର୍ଣ୍ଣନାନୁସାରେ ଶ୍ରୀକୃଷ୍ଣଙ୍କର ଭ୍ରୂଭଙ୍ଗୀଠାରୁ ରାଧାଙ୍କର ସତୀତ୍ୱ-ଧୃତି-ହରଣ-କୁଠାର ତୁଲ୍ୟ, ତାଙ୍କର କଟାକ୍ଷ ପାତିବ୍ରତ୍ୟକଣ୍ଟା ଛୁରିକା ତୁଲ୍ୟ । ଶ୍ୟାମଙ୍କର ଜଗନ୍ମୋହନ ମାଧୁରୀ ବର୍ଣ୍ଣନାରେ କାମ୍ପିକଗୁଣ ରାଧାଙ୍କର କୃଷ୍ଣାନୁରାଗକୁ ଉଦ୍ଦୀପ୍ତ କରିଛି ।

ଅନୁରାଗର ନିବିଡ଼ତା ହେତୁ ପ୍ରିୟତମଙ୍କର ଗୁଣଭାବନାରେ ରାଧାଙ୍କର ଚିତ୍ତ ଅସହନୀୟ ହୁଏ ( ପ୍ରିୟସହି ! ଶ୍ୟାମ ଗୁଣ ଗୁଣି ଚିତ୍ତ ନ ସରଇ ଗୋ, ଗୋ ଗ୍ରଂ, ପୃ ୩୬୦ ) । ମଞ୍ଜିଷ୍ଠା ରାଗ ଓ କ୍ଷୀର ନୀର ସମ୍ପର୍କ ପରି ଶ୍ୟାମଙ୍କର ରୂପମାଧୁରୀ ରାଧାଙ୍କର ଦେହ ଓ ମନରେ ଭରି ରହିଛି । ସେହି ଅନିର୍ବଚନୀୟ ମାଧୁରୀ ନିରନ୍ତ ନେତ୍ରରେ ନୃତ୍ୟ କରିବାରୁ ଚକ୍ଷୁରେ ଚଞ୍ଚଳତା ପ୍ରକାଶ ପାଉଛି । ହୃତ୍‌ସ୍ପନ୍ଦନର ବୃଦ୍ଧି ସଙ୍ଗେ ସଙ୍ଗେ ଦେହ ଓ ମନରେ ଦିବ୍ୟପୁଲକର ସଞ୍ଚାର ହେଉଛି ଏବଂ ମାଦକ ପ୍ରାୟ ସମଗ୍ର ସତ୍ତାକୁ ବିହ୍ୱଳ କରୁଛି । ସେହି ଶ୍ୟାମ ରୂପର ବୈଚିତ୍ର୍ୟମୟ ଭଙ୍ଗୀ ଜୀବନାନ୍ତରେ ମଧ୍ୟ ଶ୍ରୀମତୀଙ୍କ ପକ୍ଷରେ ଅପୂର୍ବ (୭୯) ।

ଶ୍ୟାମଙ୍କର ନେତ୍ର କୁନ୍ତ ଘାତରେ ଅହତା ଶ୍ରୀମତୀଙ୍କର ଶ୍ୟାମପଦରେ ଆତ୍ମ ନିବେଦନର ରହସ୍ୟ ନିଃସ୍ୱାର୍ଥୀ ପରିଚାରିକା ସଖୀ ଲଳିତା ନିକଟରେ ଗୋପନୀୟ ହୋଇ ରହିନାହିଁ (ଜଳ

(୭୯) ଗୋବିନ୍ଦ ଦାସ, ବୈ. ପ., ପୃ-୪୧

ଆଣିବା ପାଇଁ ରାଧାଙ୍କର ଘନ ଘନ ଯମୁନା ଯାତ୍ରା ହେତୁ) । ରାଧାଙ୍କର ଗୁରୁ ଓ ଗୁରୁଜନ ଲଳିତାର ପରିହାସକୁ ଉଦ୍ବୁଦ୍ଧ କରିଛି । ଅନ୍ତରାଳରୁ ଶ୍ୟାମଙ୍କର ଶ୍ରୀମନ୍ତଙ୍କ ପ୍ରତି ବଂଶୀ ବାଣୀ ସଖୀର ସତର୍କ ଶ୍ରୁତିପଥକୁ ଏଡ଼ି ପାରି ନାହିଁ (ଜଣାଗଲଣି ଗୁରୁଜନୀ ଗ୍ରଂ. ପୃ-୩୬୧) ।

ଘନ ଘନ ଶ୍ରୀକୃଷ୍ଣଙ୍କ ସହ ଅପ୍ରତ୍ୟାଶିତ ଭେଟରେ ରାଧାଙ୍କର ପାତିବ୍ରତ୍ୟର ଅଭିମାନ କ୍ରମଶଃ ଶିଥିଳ ହୋଇ ଆସୁଛି । ପ୍ରାଣରେ ପୁଲକର ସ୍ପର୍ଶ ଲାଗିଛି, ଫଳରେ ମିଳନର ବାସନା ଅନ୍ତରରେ ଉଙ୍କିମାରିବା ସ୍ୱାଭାବିକ (ବ୍ରଜେନ୍ଦ୍ର ଆଗରେ ଆଜ ପଡ଼ିଲୁ ମା, ଗ୍ରଂ, ପୃ-୩୬୧) ।

ଶ୍ୟାମଙ୍କ ଚିନ୍ତାରେ ଶ୍ରୀମନ୍ତଙ୍କର ଅବସ୍ଥାର ଚିତ୍ର ଦେଇ କବି ଲେଖିଛନ୍ତି (ବ୍ରଜ ପ୍ରାଙ୍ଗଣେ ସଖି, ଗ୍ରଂ, ପୃ-୩୬୨) – ବ୍ରଜ ପ୍ରାଙ୍ଗଣରେ ବରର୍ହି ନୃତ୍ୟ ଦେଖି ପ୍ରିୟତମଂକର ଅଙ୍ଗକାନ୍ତି ଭ୍ରମରେ ତାଂକର ତନୁ କମ୍ପିତ ହେଉଛି । ଶ୍ୟାମଂକର କାନ୍ତି ସାଦୃଶ୍ୟ ଧାରଣ କରିଥିବା ତମାଳକୁ କୋଳକରି ବୁକୁରେ ଲଗାଉଛନ୍ତି । ଆକାଶରେ ନବନୀରଦକୁ ଚାହିଁ ଅଙ୍ଗ ପୁଲକିତ ଓ କଦମ୍ବ କୁସୁମ ପ୍ରାପ୍ତ ରୋମାଞ୍ଚିତ ହେଉଛି (୭୦) । ସ୍ୱପ୍ନାବେଶରେ ପ୍ରିୟତମଙ୍କୁ ପାଇ ନେତ୍ରରୁ ଝରି ପଡ଼ୁଛି ଅଶ୍ରୁ । ଏ ସମସ୍ତ ମଧୁମୟୀ ପ୍ରିୟଦୃଶ୍ୟର ସ୍ମରଣ ହେତୁକ ଚିନ୍ତାରେ ତାଂକର ସୁନାର ତନୁ ଶୀର୍ଣ୍ଣ ହୋଇ ଯାଉଛି । ରାଧା କାମ-ତାପରେ ଦଗ୍ଧ ହୋଇ ବସନ୍ତ ବଦନରେ ବଧୀତାଙ୍କୁ ସ୍ମରଣ କରୁଛନ୍ତି । ସଖୀ ଚେତାଇଲେ ଅଶ୍ରୁସଜଳ ଚକ୍ଷୁରେ ବ୍ୟାଜରୋଷ ପ୍ରକାଶ କରି ଲଜ୍ଜାନତ ମୁଖରେ ମସ୍ତିଷ୍କୁ ଚାହିଁ ରହନ୍ତି । ଗୀତଟିର ଅନୁରୂପ ଭାବ ଓ ଚିତ୍ର ବିଦଗ୍ଧ ମାଧବ, ବୈଷ୍ଣବ ପଦାବଳୀ ଓ ବିଦଗ୍ଧ ଚିନ୍ତାମଣିରେ ପରିଦୃଷ୍ଟ ହୁଏ । ଦ୍ୱିଜ ଚଣ୍ଡୀଦାସ ରାଧାଂକର ପୂର୍ବରାଗ ପ୍ରସଙ୍ଗରେ ଲେଖିଛନ୍ତି,

ରାଧାର କି ହୈଲ ଅନ୍ତରେ ବ୍ୟଥା ।
ବସିୟା ବିରଲେ ଥାକୟେ ଏକଲେ
ନା ଶୁନେ କାହାରେ କଥା ।।

ସଦାଇ ଧେୟାନେ ଚାହେ ମେଘପାନେ
ନା ଚଲେ ନୟାନ-ତାରା ।
ବିରତି ଆହାରେ ରାଙ୍ଗାବାସ ପରେ
ଯେମତ ଯୋଗିନୀ-ପାରା ।।

ଏଲାଇୟା ବେଣୀ ଫୁଲେର ଗାଁଥନି
ଦେଖୟେ ଖସାୟେ ଚୁଲି ।
ହସିତ ବୟାନେ ଚାହେ ମେଘପାନେ
କି କହେ ଦୁହାତ ତୁଲି ।।

(୭୦) ବ: ଚ:, ପ୍ରାଚୀ ସଂ, ୫୨ ଗ୍ରନ୍ଥ

ରାଧାଙ୍କର ସଦୃଶ ବସ୍ତୁ ଦର୍ଶନ ଜନିତ ସ୍ମୃତିର ଦୃଷ୍ଟାନ୍ତ ଛଳରେ ରୂପ ଗୋସ୍ୱାମୀ ଭକ୍ତି ରସାମୃତ ସିନ୍ଧୁରେ ଶ୍ଳୋକଟିଏ ଉଦ୍ଧାର କରିଛନ୍ତି, ଯଥା—

ବିଲୋକ୍ୟ ଶ୍ୟାମମମ୍ଭୋଦମମ୍ଭୋରୁହବିଲୋଚନା ।
ସ୍ମାରଂ ସ୍ମାରଂ ମୁକୁନ୍ଦ ତ୍ୱାଂ ସ୍ମରବନ୍ଧମମନ୍ୱଭୂତ୍ ।। (୭୧)

ସଖୀ ଶ୍ରୀକୃଷ୍ଣଙ୍କୁ କହୁଛି ଯେ କମଳନୟନା ରାଧା ଶ୍ୟାମଜଳଧର ଦର୍ଶନ କରି ବାରମ୍ବାର ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି କନ୍ଦର୍ପ ବନ୍ଧନ ଅନୁଭବ କରୁଛନ୍ତି ।

ନନ୍ଦପୁରକୁ ନିମନ୍ତ୍ରିତା ରାଧା ରୋହିଣୀଙ୍କ ସହ ରନ୍ଧନ ଶାଳାରେ ଥିବାବେଳେ କିଶୋରମଣିଙ୍କ ସହ ତାଙ୍କର ଭେଟ ହୋଇଯାଏ (ଆଜ ବ୍ରଜରାଜପୁରେ ଲଜେ ବୁଡ଼ିଲି ମା, ଗ୍ରଂ. ପୃ-୩୭୫) । ସେ ଅବସ୍ଥାରେ ତାଙ୍କର ହୃଦୟର ସ୍ପନ୍ଦନ ବଢ଼ି ଯାଏ । କୁଳାଗ୍ରରସୁଲଭ ବୁଦ୍ଧିର ଶିଥିଳତା ଦେଖାଯାଏ । ଅମୃତ ତୁଲ୍ୟ ପ୍ରେମ ଜଳରେ ସେ ନିମଜ୍ଜିତ ହୋଇ ପଡ଼ନ୍ତି । ପରିହାସପ୍ରିୟା କୁନ୍ଦବଲ୍ଲୀ ଜାଣି ଜାଣି ପାଖରୁ ଅପସରି ଯାଏ । ସାଙ୍ଗ ପଠନର ସତର୍କତା ସୂଚକ ଧ୍ୱନିରେ ମଥାର ଓଢ଼ଣା ଟାଣି ଦିଅନ୍ତି । ରାଧାଙ୍କଠାରେ ପଲ୍ଲୀ କୁଳବଧୂ ସୁଲଭ ଲଜ୍ଜା ପ୍ରକାଶ ପାଏ । ନବାନୁରାଗିଣୀଠାରେ ଲଜ୍ଜାର ଓଢ଼ଣା ଦେଇ କବି ପ୍ରଣୟିନୀ ଭାବରେ ରାଧା ଚରିତକୁ ମାର୍ଜିତ, ସଂଯତ ଅଥଚ ସୁନ୍ଦର କରିଛନ୍ତି । ପାକ ସମ୍ଭାରର ପ୍ରସ୍ତୁତି ସମ୍ପର୍କରେ ପ୍ରିୟତମଙ୍କଠାରୁ ଅପ୍ରତ୍ୟାଶିତ ପ୍ରଶ୍ନ ଶୁଣି ତାଙ୍କର ଧୈର୍ଯ୍ୟ ଲୋପପାଏ; ସେ ଉତ୍ତର ଭୁଲିଯାନ୍ତି । ରାଧାଙ୍କର ଅଧର କମ୍ପନ ଗୁହାଁ ଅନ୍ତରାଳରେ କୃଷ୍ଣ ହାସ ପ୍ରକାଶ କରିବାରୁ ସେ ଅଧର ପୀଡ଼ନ (ଦଶନ ଦ୍ୱାରା) କୃଷ୍ଣଙ୍କୁ ସଂଯତ ରହିବାର ସଙ୍କେତ ଦିଅନ୍ତି । ଶାଶୁ ଜଟିଳାଙ୍କର ଆଗମନ ସଙ୍କେତରେ ରାଧାଙ୍କର ସ୍ୱାଭାବିକ ଆଶଙ୍କାର ଚିତ୍ର ଦିଆଯାଇଛି । ଏ ଚିତ୍ରକଳ୍ପନା କୃଷ୍ଣଦାସ କବିରାଜଙ୍କ ଗୋବିନ୍ଦ ଲୀଳାମୃତ ଓ ଅଭିମନ୍ୟୁଙ୍କ ପ୍ରେମ ଚନ୍ଦ୍ରାମଣି ଚିତ୍ରର ଅନୁରୂପ (୭୨) ।

ଗୋବିନ୍ଦ ଲୀଳାମୃତର ସେହି ମନୋଜ୍ଞ କଳ୍ପନା ଦ୍ରୁପଦରେ ଆଉ ଗୋଟିଏ ଗୀତରେ (ଶ୍ୟାମ ସଙ୍ଗ ରାଧା ସୁଧାକର ମୁହାଁ କି ? ଗ୍ରଂ. ପୃ-୩୯୧) କବି ସଖୀ ମୁଖରେ ରାଧାକୃଷ୍ଣଙ୍କର ଯୁଗଳ ରୂପର ପ୍ରଶଂସା କରିଛନ୍ତି । ସଖୀ ଦୃଷ୍ଟିରେ ଏକମାତ୍ର ଚନ୍ଦ୍ରମୁଖୀ ରାଧା ଶ୍ୟାମଙ୍କର ଅନୁରୂପ । ରୋହିଣୀଙ୍କ ପାକଶାଳାରେ ଅମୃତହସ୍ତା ରାଧାଂକର ସୁମିଷ୍ଟ ଭୋଜ୍ୟ ପ୍ରସ୍ତୁତି, ସଖାଙ୍କ ସହ କୃଷ୍ଣଙ୍କୁ ଭୋଜନ କରାଇ ଅଧରାମୃତ (ଉଚ୍ଛିଷ୍ଟ) ସେବନରେ କୃଷ୍ଣଙ୍କ ପ୍ରତି ରାଧାଙ୍କର ଅନୁରାଗର ମଞ୍ଜୁଳ ଚିତ୍ର ଦିଆ ଯାଇଛି । 'ଦାତୁଂ ଧନିଷ୍ଠା ହରିଭୁକ୍ତଶେଷୈଃ' (ଗୋବିନ୍ଦ ଲୀଳାମୃତ) ଅର୍ଥାତ୍ ଧନିଷ୍ଠାଙ୍କ ଦ୍ୱାରା ଯଶୋଦା (ପ୍ରେମ ଚନ୍ଦ୍ରାମଣିରେ ରୋହିଣୀ) ସ୍ନେହାର୍ଦ୍ର ଚିତ୍ତରେ ଶ୍ରୀକୃଷ୍ଣଙ୍କର ଉଚ୍ଛିଷ୍ଟ ରାଧାଙ୍କୁ ଭୋଜନ କରାଇଛନ୍ତି ଏବଂ ତାଙ୍କୁ ନିଜର ବଧୂ କରିବା ମାନସରେ କୃଷ୍ଣଙ୍କ ବିବାହ ପାଇଁ ସମ୍ପୁଟରେ ସଞ୍ଚିତ ଭୂଷଣସହ

(୭୧) ରୂ. ଗୋ., ଭ. ର ମୃ ସିଂ ୨।୪।୭୫ ଏବଂ ଗୌ. ବୈ. ଦ., ୫ମ ଖଣ୍ଡ ପୃ-୨୮୭୯
(୭୨) ଗୋ. ଲୀ. ମୃ. ୪ର୍ଥ ସର୍ଗ, ଶ୍ଳୋକ ୬୮-୭୯ ଓ ପ୍ରେମ ଚନ୍ଦ୍ରାମଣି, ୧୬ଶ ଛାନ୍ଦ

ତାମ୍ବୂଲ, ଚନ୍ଦନ ଓ ସିନ୍ଦୂର ତାଙ୍କୁ ସମର୍ପଣ କରାଇ ପରମ ତୃପ୍ତି ଲାଭ କରିଛନ୍ତି (୭୩)। ଗୋପାଳକୃଷ୍ଣ ସଖୀ ମୁଖରେ ଏ କଥାର ସୂଚନା ମାତ୍ର ଦେଇ ଉଲ୍ଲେଖ କରିଛନ୍ତି ଯେ କୀର୍ତ୍ତିଦା (ରାଧାଙ୍କର ଜନନୀ) ରାଧାଙ୍କୁ କୃଷ୍ଣଙ୍କୁ ସମର୍ପଣ କରି ନ ଥିବାରୁ ଏବେ ବିଧାତାଙ୍କୁ ନିନ୍ଦୁଛନ୍ତି। ଶ୍ୟାମ ଓ ଶ୍ରୀମତୀ ଉଭୟଙ୍କର ପରିଣୟ ସମ୍ପନ୍ନ ହୋଇଥିଲେ ଯମୁନାର ନୀଳ ଜଳରେ ସ୍ୱର୍ଣ୍ଣ ପଦ୍ମର ଆଭା ଉକୁଟି ଉଠୁଥାନ୍ତା। ଉପମାର କଳ୍ପନା କପରି ଚମତ୍କାର ଓ ବ୍ୟଞ୍ଜନାଧର୍ମୀ ତାହା ଏଠାରେ ଲକ୍ଷ୍ୟ କରାଯାଇ ପାରେ।

ଅନ୍ୟ ଏକ ଗୀତରେ (ଗୋଷ୍ଠଚନ୍ଦ୍ରମାଙ୍କୁ ଆସ ବୋଲି ସହି ! ଗ୍ରଂ., ପୃ. ୩୬୮) କବି ରାଧାଙ୍କୁ ଉତ୍କଳର ପୂରପଲ୍ଲୀର ଏକ ବାସ୍ତବ ଚରିତ୍ର ଭାବରେ ଉପସ୍ଥାପିତ କରିଛନ୍ତି। ପାଠକ ରାଧାଙ୍କୁ ଗୋଟିଏ ଅନଭିଜ୍ଞା ନବାନୁରାଗିଣୀ ପଲ୍ଲୀ କିଶୋରୀ କୁଳାଙ୍ଗନା ଭାବରେ ଆବିଷ୍କାର କରେ, ଯାହାଙ୍କଠାରେ ସମାଜ ଓ ଗୁରୁଜନଙ୍କର ଅନୁଶାସନ ଏବଂ ଶାଶୁ-ନଣନ୍ଦଙ୍କର ନିନ୍ଦା ଓ ଗଞ୍ଜଣାର ଆଶଙ୍କା ପୂର୍ଣ୍ଣମାତ୍ରାରେ ରହିଛି, ଅଥଚ ଅନୁରାଗର ବଳବତୀ ତୃଷ୍ଣା ହେତୁ ପ୍ରାଣରେ ବ୍ୟାକୁଳତାର ସୀମାନାହିଁ ! ଏକ ଦଗରେ ଅନୁଶାସନ ଓ ଗଞ୍ଜଣାର କର୍କଶ ଦୃଷ୍ଟି, ଅନ୍ୟ ଦଗରେ ଦୁର୍ବାର ଅନୁରାଗ—ଏହାର ଦ୍ୱନ୍ଦ୍ୱରେ ରାଧାଙ୍କର ପ୍ରାଣ ଅସ୍ଥିର (୭୪)। ପ୍ରିୟତମଙ୍କର ଆଗମନ ପ୍ରତୀକ୍ଷାରେ ରାଧାପ୍ରାଣ ବ୍ୟାକୁଳ ଓ ଅଧୀର ଥିଲେ ମଧ୍ୟ ତାଙ୍କଠାରେ ଅନୁଶାସନ ଓ ସାତ୍ତ୍ୱିକର ପୀଡ଼ନ ଦେଖା ଦେଇଛି। ଅଙ୍ଗରେ ତାଙ୍କର ବେପଥୁ, ଗୃହ କର୍ମରେ ଅନ୍ୟମନସ୍କତା। ନବାନୁରାଗ ସ୍ତରରେ ସମାଜ ଓ ନିନ୍ଦାକୁ ଅତିକ୍ରମ କରିବାର ସାହସ ତାଙ୍କ ପ୍ରାଣରେ ଆସିନାହିଁ। କେତେବେଳେ କିଏ ଦେଖି ଦେବ, ସେଥିପାଇଁ ଅଜଣା ଆଶଙ୍କାରେ ତାଙ୍କର ଗ୍ରୀବ ଦମଦମ ହେଉଛି। ନଷ୍ଟୁରୀ ନଣନ୍ଦ ପ୍ରତି ତାଙ୍କର କ୍ରୋଧ ଓ ଈର୍ଷା କିଛି କମ ନୁହେଁ। ଅଥଚ ପ୍ରଣୟୀଙ୍କର ପ୍ରତ୍ୟେକ ହାବଭାବ ସଖୀମୁଖରୁ ଜାଣିବା ସମ୍ପର୍କରେ ତାଙ୍କର ଅଧୀର ଆଗ୍ରହର ସୀମା ନାହିଁ। ପ୍ରଣୟିନୀ ରାଧା ତାଙ୍କର ପ୍ରବଳ ବାସନା ସତ୍ତ୍ୱେ ଚନ୍ଦ୍ରାବଳୀର ବିପର୍ଯ୍ୟସ୍ତ ସ୍ଫୁରଣ କରି ସମାଜର କ୍ରୂର କଟାକ୍ଷକୁ ଏଡ଼ିବା ପାଇଁ ତାଙ୍କର ଆଗମନ ଚାହିଁ ନାହାନ୍ତି।

ବିଭିନ୍ନ ଗୀତରେ ସ୍ଥାନେ ସ୍ଥାନେ କେବଳ ଭଣିତାରେ କବି ରାଧାକୃଷ୍ଣଙ୍କ ବୃନ୍ଦାବନ ଲୀଳାର ବିଭିନ୍ନ ଘଟଣାର ସଙ୍କେତ ମାତ୍ର ପ୍ରଦାନ କରିଛନ୍ତି, କିନ୍ତୁ ଏହା କାହାଣୀର ସ୍ୱାଭାବିକ ନାଟକୀୟ ବିକାଶ ପକ୍ଷେ ଯଥେଷ୍ଟ ନୁହେଁ। ବୃନ୍ଦାବନ ପ୍ରେମଲୀଳ ପାଠକଙ୍କ ପକ୍ଷରେ ଅତି ପରିଚିତ ବସ୍ତୁ ହୋଇଥିବାରୁ ଏବଂ ରାଧାକୃଷ୍ଣ ଓ ସଖୀ ସିଦ୍ଧ ରସମୂର୍ତ୍ତି (୭୫) ହୋଇଥିବାରୁ କାହାଣୀ ମଧ୍ୟସ୍ଥ ବିଭିନ୍ନ ଘଟଣା ଓ ପରିସ୍ଥିତିର ସମ୍ପୃକ୍ତ ଘଟିତ ଏକ କ୍ଷୀଣ ଯୋଗସୂତ୍ର ପାଠକ ଚିତ୍ତରେ ଉଦିତ ହେବା ସ୍ୱାଭାବିକ। ପାଠକର ଅଭ୍ୟସ୍ତ ଚିତ୍ତ ବିଭିନ୍ନ ଗୀତକୁ କାହାଣୀ ବିକାଶ କ୍ରମର ଅଭାବ ସତ୍ତ୍ୱେ ସହଜ ଚିତ୍ତରେ ଗ୍ରହଣ କରିଥାଏ।

---

(୭୩) ଗୋ. ଗ୍ରୀ. ମୃ., ୪।୭୬,୭୦
(୭୪) ବି. ମା, ୨।୨୬,ପୃ. ୬୪
(୭୫) ଡଃ ସୁଧୀର କୁମାର ଦାସଗୁପ୍ତ, କାବ୍ୟାଲୋକ, ୧ମ ଖଣ୍ଡ ୨ୟ ସଂ., ପୃ-୨୮୨

ବୃନ୍ଦାବନର ପଥ ଘାଟରେ କୃଷ୍ଣଙ୍କ ସହ ରାଧାଙ୍କର ଭେଟ ଓ ତାଙ୍କର ମାନସିକ ପ୍ରତିକ୍ରିୟାର ଚିତ୍ର ଅଧିକାଂଶ ଗୀତରେ ପରିଦୃଷ୍ଟ ହୁଏ । ଅପ୍ରତ୍ୟାଶିତ ଭେଟ ଫଳରେ ରାଧାଙ୍କ ଅଙ୍ଗରେ ନବାନୁରାଗ ଜନିତ ବେପଥୁ ଏଣେ କୁଳବତୀ ସୁଲଭ ଆଶଙ୍କା ପୂର୍ଣ୍ଣ ରୀତି ପରି ବହୁ ଗୀତରେ ପରିସ୍ଫୁଟ ହୋଇଛି । ପ୍ରେମିକଙ୍କୁ ସମକ୍ଷରେ ଦେଖି ତାଙ୍କର ହୃଦସ୍ଥରେ ସ୍ପନ୍ଦନ ଖେଳିଯାଏ । କୁଳବତୀ ସୁଲଭ ଧୈର୍ଯ୍ୟର ଅବସାନ ଘଟେ । କଣ୍ଠରେ ମୌନତା ପ୍ରକାଶ ପାଏ । ମୁରଲୀ ସ୍ପର୍ଶରେ ସର୍ବାଙ୍ଗ କଳେବର ରୋମାଞ୍ଚିତ ହୋଇ ଉଠେ । ବେପଥୁମତୀ ରାଧା ମୁକ୍ତି ପାଇଁ ଶିରରେ କରଯୋଡ଼ି ପ୍ରାର୍ଥନା କରନ୍ତି । ଏ ଅପ୍ରତ୍ୟାଶିତ ଭେଟ ଓ ସ୍ପର୍ଶରେ ତାଙ୍କର ମନେହୁଏ : ସତେ ଯେପରି ସେ ଧନ, ଜନ, ଗୌରବ, ଗୁରୁଜନଙ୍କର ସମ୍ଭ୍ରମ ଓ କୁଳାଗ୍ରର ଧର୍ମରେ ଜଳାଞ୍ଜଳି ଦେଇଛନ୍ତି (ଛୁଇଁଲ ବର ଘୁମୁରେ ପଡ଼ିଲି ମା, ଗ୍ରଂ. ପୃ. ୪୧୨) ।

ସେହି ବୈଧ ସାମାଜିକ ଜୀବନର କୁଳବଧୂ ସୁଲଭ ଅଭିମାନର ଅନୁରୋଧରେ ରାଧାଙ୍କ ମୁଖରୁ ଝରିପଡ଼ିଛି—'ଶ୍ୟାମକୁ ଜାଣିବାର ତାର ପ୍ରେମକୁ ଜାଣିବାର ମା' (ଗୋ. କୃ. ଗ୍ରଂ., ପୃ ୩୬୮) (ଅଥଚ ଅନ୍ତରର ନିଭୃତ କୋଣରେ ଶ୍ୟାମ ଓ ତାଙ୍କର ପ୍ରେମ ପ୍ରତି ବଳବତୀ ବାସନା) । ଚନ୍ଦ୍ରାବଳୀ ସମ୍ପର୍କୀୟ ନିନ୍ଦା, ଦଧି ବିକ୍ରୟ ନିମିତ୍ତ ମଥୁରା ଯାତ୍ରା କାଳରେ ଗୋପରୁଆଣୀଙ୍କ ସହ କୃଷ୍ଣଙ୍କ କଟାକ୍ଷ ସମ୍ପର୍କରେ ସଚେତନ ରାଧା ପ୍ରେମିକର କବଳରେ ପଡ଼ି ଦୁଃଖ ଓ ନିନ୍ଦା ବରଣ କରିବାକୁ ଏକାନ୍ତ କୁଣ୍ଠିତା । ସଙ୍ଗୀତଟିରେ ଭାବଗତ ଉତ୍କର୍ଷ ଲକ୍ଷିତ ନ ହେଲେ ମଧ୍ୟ ଛନ୍ଦମାଧୂର୍ଯ୍ୟ ଓ ଆଖ୍ୟାନମୂଳକ ଭଙ୍ଗୀ ହେତୁ ଓଡ଼ିଶାରେ ଅତୀବ ଲୋକପ୍ରିୟ ।

ସଖୀର ପରିହାସରୁ ନିଜକୁ ବଞ୍ଚାଇବାର ବୃଥା ଚେଷ୍ଟା କରି ଏବଂ ନିଜର ସରଳ ନିର୍ଦ୍ଦୋଷିତାର ଛଳନା କରି ରାଧା ସଖୀକୁ କହନ୍ତି ଯେ ତମାଲ ଭ୍ରମରେ ସେ ବ୍ରଜେନ୍ଦ୍ରଙ୍କୁ ଚାହିଁ ଦେଇଥିଲେ । ଶିଖଣ୍ଡ ଖଞ୍ଜିଣିର ଶୋଭା ଓ କିଶୋରଙ୍କ କଟାକ୍ଷ ବୃଷ୍ଟିରେ ସେ ହତାହତ ଜ୍ଞାନଶୂନ୍ୟ ହୋଇଛନ୍ତି, କିନ୍ତୁ ବ୍ରଜେନ୍ଦ୍ର କିଏ—ସେ ତାଙ୍କୁ ଜାଣନ୍ତି ନାହିଁ । ସେହି ଅପୂର୍ବ ଶୋଭା ରାଧାଙ୍କ ପକ୍ଷରେ ହୋଇଛି ଅବିସ୍ମରଣୀୟ (ମୋ ମନରୁ ଯାଉ ନାହିଁରେ, ସଙ୍ଗାତ; ଗ୍ରଂ., ପୃ ୪୧୧) । କବି ମନୋଜ୍ଞ ଭଙ୍ଗୀରେ ରାଧାଙ୍କର ଯେଉଁ ରୂପ ମୁଗ୍ଧତାର ଛବି ଆଙ୍କିଛନ୍ତି, ବଚନ ବର୍ତ୍ତି ବାଗରେ ତାହା ପ୍ରାଣବନ୍ତ ହୋଇଛି । ସଖୀ ମୁଖରେ ରାଧାଙ୍କର ପ୍ରେମ ଓ ବୈଦଗ୍ଧୀର ପ୍ରଶଂସା କରାଯାଇଛି (ଘନଶ୍ୟାମ ପ୍ରେମ ଭାବନା; ବନଜାକ୍ଷୀ ଜାଣୁ ତୁ ସିନା; ଗୋପାଳକୃଷ୍ଣ ପଦ୍ୟାବଳୀ, ପୃ ୧୮୨) । ରାଧା କେବଳ କୃଷ୍ଣଙ୍କର ପ୍ରେମ ଭାବନା ମର୍ମେ ମର୍ମେ ଉପଲବ୍ଧି କରନ୍ତି । ରାଧାଙ୍କର ବ୍ୟାଜ-ମାନରେ ଥାଏ ଶ୍ରୀକୃଷ୍ଣ ଚିତ୍ତାକର୍ଷଣର ଅପୂର୍ବ ମାୟା । ବ୍ରଜେନ୍ଦ୍ରଙ୍କ ଆହ୍ୱାନରେ ସଖୀ ପଛରେ ସେ ଆତ୍ମଗୋପନ କରନ୍ତି ପୁଣି ମୁହୂର୍ତ୍ତେମାତ୍ର ପ୍ରିୟତମଙ୍କର ମୁଖଚନ୍ଦ୍ର ଅଦର୍ଶନରେ ଗଣ୍ଡରେ କର ସ୍ଥାପନ କରି ଅଶ୍ରୁ ମୁଞ୍ଚନ କରନ୍ତି । ସମକ୍ଷକୁ ଆସିଲେ ପ୍ରିୟତମଙ୍କର ମୁଖକୁ ନ ଚାହିଁ ସଖୀଙ୍କ ଦ୍ୱାରା କାର୍ଯ୍ୟ ନିର୍ବାହ କରନ୍ତି । ନବନୀରଦକୁ ଚାହିଁ କାନ୍ତ ସାମ୍ୟହେତୁ

ଚେତନା ହରନ୍ତି । ନିକୁଞ୍ଜ-ନିଳୟର ନିକଟବର୍ତ୍ତୀ ହେଲେ ଅଙ୍ଗରେ ବେପଥୁର ସଞ୍ଚାର ହୁଏ । ଶ୍ରୀକୃଷ୍ଣ ବିନୟ ପ୍ରକାଶ କଲେ ବାରଣ-ଭଙ୍ଗୀ ପ୍ରକାଶ କରନ୍ତି । କ୍ରମାନୁବର୍ତ୍ତନ ବା ସଙ୍ଗୀକୃତ ଶୃଙ୍ଖଳାରେ ଗୀତଗୁଡ଼ିକୁ ଲକ୍ଷ୍ୟକଲେ ଜଣାଯିବ ଯେ ଧୀରେ ଧୀରେ ରାଧାଙ୍କର ଅନୁରାଗର ପରିପକ୍ୱତା ପ୍ରକାଶ ପାଇ ଆସିଛି ।

'ଭ୍ରମର ପ୍ରତି ରାଧାଙ୍କର ପ୍ରଶ୍ନ' ଶୀର୍ଷକ ଗୀତଟି (ଅଳି କେଶର କୁଞ୍ଜରୁ ଅଇଲୁ କି ? ଗ୍ରଂ. ପୃ-୩୮୦) କବିଙ୍କର ଏକ ମନୋଜ୍ଞ ପରିକଳ୍ପନା । ଭ୍ରମରକୁ ଦେଖିବା ମାତ୍ରେ ପ୍ରିୟତମଙ୍କ ସହିତ କାନ୍ତି ସାଦୃଶ୍ୟ ହେତୁ ରାଧାଙ୍କର ପ୍ରାଣ ଆବେଗବିଭୋର ଓ ନେତ୍ର ଅଶ୍ରୁସଜଳ ହୋଇ ପଡ଼ୁଛି । ଭ୍ରମର ରାଧାଙ୍କର ମୁଖପଦ୍ମର ନିକଟବର୍ତ୍ତୀ ହୁଅନ୍ତେ ପ୍ରିୟତମଙ୍କ ସମ୍ପର୍କରେ ଅଧୀର ଆବେଗରେ (ଅନ୍ତରରେ ମିଳନର ଗଭୀର ବାସନା ପୋଷଣ କରି) ପ୍ରଶ୍ନ କରୁଛନ୍ତି : ସତେ କ'ଣ ସେ ଶ୍ୟାମଙ୍କର ବିହାର ପ୍ରାଙ୍ଗଣ କେଶର କୁଞ୍ଜରୁ (ନାଗେଶ୍ୱର କୁଞ୍ଜ) ଆସିଲି ! ସତେ କ'ଣ ସେ ପ୍ରାଣବନ୍ଧୁଙ୍କୁ ଦେଖିଛି ? କାଳିଦାସଙ୍କର ବିରହୀ ଯକ୍ଷ ପ୍ରେମା-ବେଶରେ ସଞ୍ଚାରଶୀଳ ମେଘକୁ ଚୈତନ୍ୟମୟ ମନେ କରି ହୃଦୟର ପୁଞ୍ଜୀଭୂତ ଅଭିଳାଷ ଆବେଗରେ ଅଭିବ୍ୟକ୍ତ କଲା ପରି ପତଙ୍ଗ ଭ୍ରମରଠାରେ ଦୂତତ୍ୱ ଆରୋପ କରି କର୍ଣ୍ଣିକାବତଂସ ଖଚିତ ପୁଷ୍ପରେ ଉପବେଶନ କରି ପ୍ରାଣବନ୍ଧୁଙ୍କର ସନ୍ଦେଶ ପ୍ରକାଶ କରିବା ନିମିତ୍ତ ଅନୁରୋଧ କରିଛନ୍ତି । ପ୍ରଣୟ କ୍ଷେତ୍ରରେ ପ୍ରେମିକର ସାହସ ପାଇ ପ୍ରଣୟିନୀ ଅଗ୍ରସର ହୁଏ । ଭ୍ରମର ପଦ୍ମ ନିକଟକୁ ଯାଏ, କିନ୍ତୁ ପଦ୍ମ ଭ୍ରମରଠାକୁ ଯାଏନା (ତୁ ଯାଉନା ପଦ୍ମଠାକୁ ? କଞ୍ଜ ଚଳେ ତୋ ପାଖକୁ ?)—ଏହି ସାଭିଳାଷ ବ୍ୟଞ୍ଜନାମୂଳକ ଉକ୍ତି କରିଛନ୍ତି । ଏହା ଭାବିଲାମାତ୍ରେ ନେତ୍ରରୁ ଅଶ୍ରୁବିନ୍ଦୁ ଝରି ପଡ଼ୁଛି । ସଖୀ ଦୃଷ୍ଟିରେ ଭ୍ରମର ପ୍ରତି ରାଧାଙ୍କ ପ୍ରଶ୍ନ ଏକ ଭ୍ରାନ୍ତି ହେଲେ ମଧ୍ୟ, ପ୍ରଣୟିନୀ ଦୃଷ୍ଟିରେ ଭ୍ରାନ୍ତି ନୁହେଁ, ସତ୍ୟ ।

ଭ୍ରମରକୁ କେନ୍ଦ୍ର କରି ଶ୍ରୀମଦ୍ ଭାଗବତରେ ଅପୂର୍ବ ଭ୍ରମର ଗୀତିକା ରଚିତ ହୋଇଛି । ବୈଷ୍ଣବ କବିମାନଙ୍କ ରଚନାରେ ତାର ପ୍ରତିଧ୍ୱନି ରହିବା ସ୍ୱାଭାବିକ (୭୬) । କିନ୍ତୁ ଏ ପ୍ରତିଧ୍ୱନି ବିପରୀତ ଭାବର ଦ୍ୟୋତନା ଦେଇଛି । କୃଷ୍ଣଙ୍କ ପ୍ରବଞ୍ଚନା ହେତୁ ରାଧା ହୋଇଛନ୍ତି ମାନିନୀ । ଭ୍ରମରକୁ ଲକ୍ଷ୍ୟକରି ରାଧାଙ୍କର କୃଷ୍ଣଭ୍ରାନ୍ତି ହୋଇଥିବାରୁ ସେ ତା ପ୍ରତି ଭର୍ତ୍ସନା ବାକ୍ୟ ପ୍ରୟୋଗ କରିଛନ୍ତି । ରୂପ ଗୋସ୍ୱାମୀ ଉଜ୍ଜ୍ୱଳ ନୀଳମଣିରେ ଶ୍ରୀମଦ୍ ଭାଗବତର ଭ୍ରମର ଗୀତିଟିର ଦଶଟି ଶ୍ଳୋକ (ଦଶମ ସ୍କନ୍ଧ) ଦିବ୍ୟୋନ୍ମାଦନା ବା ଚିତ୍ରଜଳ୍ପ ଭାବରେ ପ୍ରଜଳ୍ପ ପ୍ରଭୃତି ଦଶଟି ସୂକ୍ଷ୍ମ ଭାବର ଦୃଷ୍ଟାନ୍ତ ରୂପେ ବ୍ୟବହାର କରିଛନ୍ତି । ଏଠାରେ ରାଧା ଭ୍ରମରକୁ କୃଷ୍ଣଦୂତ ଭାବରେ ଗ୍ରହଣ କରି ପ୍ରବଞ୍ଚକ ରୂପେ ତାକୁ ଭର୍ତ୍ସନା ନ କରି ସୌହାର୍ଦ୍ଦ୍ୟପୂର୍ଣ୍ଣ ଭଙ୍ଗୀରେ ସମ୍ବୋଧନ କରିଛନ୍ତି ।

ରାଧାଂକ ପ୍ରତି କୃଷ୍ଣଙ୍କର ଅନୁରାଗ କ୍ରମଶଃ ଘନୀଭୂତ ହୋଇଛି । ପଥଘାଟରେ ଅପ୍ରତ୍ୟାଶିତ ମିଳନାବସ୍ଥାରେ କୁଳବତୀ ରାଧାଙ୍କର ଅନ୍ୟ ଏକ ପ୍ରମାଦ ଆସି ପହଞ୍ଚିଛି । ସେହି ଚନ୍ଦ୍ରିକଚୂଡ଼ ନଟବର ବେଶ ଶ୍ୟାମ କାନ୍ତାର ଗ୍ରହ୍ୟାପରି ଶ୍ରୀମତୀଙ୍କ ସମକ୍ଷରେ

---

(୭୬) ଉଦ୍ଧବ ସନ୍ଦେଶ କାବ୍ୟ, ବାଂଲା କାବ୍ୟେ ଉପମାଲେକ, ପୃ-୨୩୦ରୁ ଉଦ୍ଧୃତ ।

ଆବର୍ଭୂତ ହୋଇ ପଥ ଓଗାଳୁଛନ୍ତି । ରାଧାଙ୍କର କୁଳବତୀ ସୁଲଭ ଲଜ୍ଜା କ୍ରମଶଃ ଅପସର ଯାଉଛି । ତାଙ୍କର ଭର୍ତ୍ସନା, ରୋଷକଳିତଅଧର ଦଂଶନ ଓ କୃଷ୍ଣବେଣୀରେ ମୃଦୁ ପ୍ରହାର ପ୍ରଭୃତ ବ୍ୟାଜ-ଶାସନ ତାଙ୍କର ନିବିଡ଼ ଅନୁରାଗର ସାର୍ଥକ ସଙ୍କେତ ବହନ କରୁଛି । ଏହା ନ ହୋଇଥିଲେ ଶାସନ ସତ୍ତ୍ୱେ ପ୍ରେମିକ ଶିରୋମଣି ରାଧାଙ୍କ ହୃଦୟରେ ଜଡ଼ିତ ହୋଇ ନ ଥାନ୍ତେ, ଶ୍ୟାମଙ୍କ ପ୍ରଣୟ-ସିନ୍ଧୁରେ ଶ୍ରୀମତୀ ନିମଜ୍ଜିତ ହୋଇ ନ ଥାନ୍ତେ (ଏ କି ପରମାଦ ଆସି ପଡ଼ିଲା ମା, ଗୃଂ, ପୃ-୪୧୬)

ପୂର୍ବୋକ୍ତ ଗୀତର ଭାବ ଓ ବସ୍ତୁ ଅନୁରୂପ ଆହୁରି ଅନେକଟି ଲୋକପ୍ରିୟ ଗୀତ ରଚିତ ହୋଇଛି । ତନ୍ମଧ୍ୟରୁ ଗୋଟିକରେ (ମୋହନ ! ଯା ଯା ତୁ ଛୁଅଁ ନା, ଗୃଂ, ପୃ-୩୭୩) ମିତ୍ର ପୂଜା ଉଦ୍ଦେଶ୍ୟରେ ଯାତ୍ରା କରୁଥିବା ରାଧାଙ୍କ ବର୍ତ୍ମରୋଧନ ଓ ସ୍ପର୍ଶ ଉଦ୍ୟମରେ ରାଧାଙ୍କର କିଲକିଞ୍ଚିତ ଭାବ ବର୍ଣ୍ଣନା କରିଛନ୍ତି । ଏହି ଭାବ କାନ୍ତାରତିର ବିଶେଷ ଅନୁଭାବ, ସ୍ୱଭାବଜ ଅଲଙ୍କାର । ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରାଗ ହେତୁ ରାଧାଙ୍କ ଅନ୍ତରରେ ଜାତ ହୋଇଥିବା ହର୍ଷ ଜନିତ (ଶ୍ରୀକୃଷ୍ଣଙ୍କ ଆବିର୍ଭାବ, ବର୍ତ୍ମରୋଧନ ଓ ସ୍ପର୍ଶ ଚେଷ୍ଟା ହେତୁ) ଏକ ସମୟରେ ଗର୍ବ, ଅଭିଲାଷ, ରୋଦନ, ହାସ, ଅସୂୟା, ଭୟ ଓ କ୍ରୋଧର ଉଦୟ ହେଉଛି କିଲ-କିଞ୍ଚିତ (୭୭) । ପ୍ରେମିକ ଦର୍ଶନରେ ରାଧାଂକର ହର୍ଷ ଜାତ ହେଲେ ମଧ୍ୟ ସମାଜର କୁଳବତୀ ସୁଲଭ ଅଭିମାନ ସମ୍ପୂର୍ଣ୍ଣ ଦୂର ହୋଇନାହିଁ । ସୂର୍ଯ୍ୟପୂଜା ପାଇଁ ପ୍ରସ୍ତୁତ ରାଧାଙ୍କୁ ବାଟଘାଟରେ ସ୍ପର୍ଶ ନ କରି ପାଟକ ଜାତିରେ ନିନ୍ଦିତ ନ କରିବା ପାଇଁ ତାଙ୍କର ଅନୁରୋଧ । ପୁଣି ଭୟ ପ୍ରଦର୍ଶନ କରି ସେ କାନ୍ତ ଆଗମନ ଓ କଂସ ସମକ୍ଷରେ ଫେରାଦ ହେବାର ସଙ୍କେତ ଦଅନ୍ତି । ଚନ୍ଦ୍ରାବଳୀ ପ୍ରତି ତାଙ୍କର ଟାପରା ସିନା ଶୋଭାପାଏ, କିନ୍ତୁ ତାଙ୍କ ପ୍ରତି ଏ ବ୍ୟବହାରରେ ସେ ସଖୀମାନଙ୍କର ନିନ୍ଦାବାକ୍ୟର ଶରବ୍ୟ ହେବେ ।

ଅନ୍ୟ ଗୀତଟି (ନବାନୁରାଗ, ବନମାଳୀ ଗୀତ, ଦାନଲୀଳା, ପଥ ଛାଡ଼ିଦେ ମୁଁ ଯିବି ଫୁଲତୋଳି ଯେ, ବନମାଳି !) ଅପେକ୍ଷାକୃତ ଦୀର୍ଘ, ୪୧ ପଦ ବିଶିଷ୍ଟ । ସ୍ନାନାର୍ଥିନୀ ରାଧା ମିତ୍ରପୂଜା ଉଦ୍ଦେଶ୍ୟରେ ପୁଷ୍ପଚୟନ ନିମିତ୍ତ ପ୍ରସ୍ତୁତ ଥିବାବେଳେ ଶ୍ରୀକୃଷ୍ଣ ତାଙ୍କର ପଥରୁନ୍ଧ କରନ୍ତି । ପ୍ରେମିକଙ୍କ ଦର୍ଶନରେ ଅନ୍ତରରେ ଆନନ୍ଦ ପ୍ରଚ୍ଛନ୍ନ ରଖି ନିଜର ଛଳରୋଷ ଜନିତ ପ୍ରଗଳ୍‌ଭ ବାକ୍ୟରେ ତାଙ୍କୁ ଶାସନ କରିବାର ପ୍ରୟାସ କରନ୍ତି । କବିଙ୍କର ଲଳିତ ଛନ୍ଦବିନ୍ୟାସ, ନାଟକୀୟ ଭଙ୍ଗୀ ଏବଂ ଦ୍ୱବ୍ୟାଦ୍ୱବ୍ୟ ଭାଷାର ପ୍ରୟୋଗ ଚାତୁର୍ଯ୍ୟ ତଥା ଶ୍ରୁତିମାଧୁର୍ଯ୍ୟରେ ରାଧାଙ୍କର ବଚନିକା ଏକାନ୍ତ ସରସ ଓ ଉପଭୋଗ୍ୟ ହୋଇଛି । ଅଭିଳାଷ ବ୍ୟଞ୍ଜକ ଅନୁଶାସନୀ ବାକ୍ୟରେ ପାଠକ ଏକ ପ୍ରଗଳ୍‌ଭା ପଲ୍ଲୀ କୁଳବଧୂର ନିତ୍ୟପରିଚିତ ଅଥଚ ଅନବଚମୟ ମଧୁର ମୂର୍ତ୍ତି ଆବିଷ୍କାର କରେ । କେତୋଟି ପଦ ଉଦ୍ଧାର କରାଯାଉଛି—

ଗୁନ୍ଥିବାକୁ ଆଣି ଡାଳି ଡାଳି ନୁହଇଟି ମୁଁ ଚନ୍ଦ୍ରାବଳୀ
ବରିଜ ଦାଣ୍ଡରେ ବଜାର ବସାଇ
ବଇର ହାତେ ନ ମରା ତାଳି ଯେ; ବନମାଳି ! ।୨। •

(୭୭) ଉ. ନୀ, ଅନୁଭବ ପ୍ରକରଣ, ପୃ, ୫୧୬-୫୧୮; ଦାନକେଳି କୌମୁଦୀ, ଶ୍ଳୋ-୧ •

ଲୁହାଇ ମୁଁ ତୋ ଝାପରା ଭଳି     ରଖି ଯା ଘରେ ଏ ଗୁରୁରାଳି
ନିକଟେ ଅଛନ୍ତି ଲଳିତା ଜାଣିଲେ
ମୁହଁକୁ ନ ଚାହିଁ ଦେବେ ଗାଳି ଯେ, ବନମାଳି ! ।୭।

ନାରୀ ମନ-ଧନ ହରିବାର     ଶିଖିଛୁଲେ ଗୁରୁ ତୁ ନାଗର
ରୂପ ଗୁଣ ବଂଶୀ ଆକୃତି ପ୍ରକୃତି
ଘଟାଇ ଦେଇଛୁ ବେଦବର ଯେ, ବନମାଳି ! ।୧୩।

ପତ୍ନୀ ଶ୍ରଦ୍ଧାଥିଲେ ବ୍ରଜେଶ୍ୱରୀ     ଆଗେ କହି ଦେବେ ବିଷକରି
ପର ପରମଦା ପରେ ଆଶା କଲେ
ମନୁ ଯିବ କେତେ ସଧ ସରି ଯେ, ବନମାଳି ! ।୧୭।

କାଳି ପରି ଧୂଳିଖେଳର କୃଷ୍ଣଙ୍କର ନବକୈଶୋରରେ ଉଚ୍ଛୃଙ୍ଖଳତା, ଗୋପାଙ୍ଗନାଙ୍କ ପ୍ରତି ନଦୀ ଓ ପଥ ମଧ୍ୟରେ ଜଞ୍ଜାଳ ତାଂକ ଚରିତରେ କମ ବିସ୍ମୟ ସୃଷ୍ଟି କରିନାହିଁ । ପୁଣି ଶାଶୁ ଜଟିଳାର ଗରଳଠୁ ବଳି ଜ୍ୱାଳାମୟୀ ବାଣୀ ଓ କଟାଳ ଏବଂ ପାଟକ ଜାତିର ନିନ୍ଦା ପ୍ରତି ରାଧାଙ୍କର ଭୟ କମ୍ ନୁହେଁ । ଗ୍ରାମ ପ୍ରବଚନକୁ ସଙ୍ଗୀତର ମାଧୁର୍ଯ୍ୟରେ ମୂର୍ଚ୍ଛିତ କରି କବି କିପରି ଚମତ୍କାର ହାସ୍ୟବୋଧର ସୂଚନା ଦେଇଛନ୍ତି, ଲକ୍ଷ୍ୟ କରାଯାଉ —

ଜନ୍ମଜନ୍ମାନ୍ତରେ ତପ କରି     ପତି ପାଇଥିଲେ ଏହି ପରି
ହାତପଛ ଆଡେ ଲୁହ ପୋଛୁ ପୋଛୁ
ହିନ ନେବ ସିନା ମନ ମାରି ଯେ, ବନମାଳି ! ।୧୮।

(ଗୋ: କୃ. ଗ୍ରଂ., ପୃ ୩୧୭-୩୧୮)

ରାଧାଙ୍କର ଅନୁଶାସନର ନିର୍ମୋକ ଧୀରେ ଧୀରେ ଖସି ଯାଇଛି ଶ୍ରୀକୃଷ୍ଣଙ୍କର ମୁରଲୀ ସ୍ୱର୍ଣ ଓ ବସ୍ତ୍ରାକର୍ଷଣରେ ଏବଂ ତାଙ୍କର ଲୀଳାକମଳର ଲୀଳାୟିତ ପ୍ରହାରରେ । ବର୍ତ୍ମରୋଧନରେ ତାଙ୍କର ବ୍ୟାଜରୋଷ ନିର୍ମଳନିବେଦନରେ ରୂପାନ୍ତରିତ ହୋଇଛି । ତାଙ୍କର ହାସପରିହାସକୁ ସେ ଶିରୋଧାର୍ଯ୍ୟ କରିନେଇଛନ୍ତି ଏବଂ ସେହି ପଥରେ ପୁନରାଗମନର ଶପଥ କରିଛନ୍ତି, କିନ୍ତୁ ସଖୀ ଓ ଲୋକଙ୍କର ଡାକ ତାଂକ ହୃତ୍‌ସ୍ପନ୍ଦନ ବଢ଼ାଉଛି । ଧୀରେ ଧୀରେ କବରୀଭାର ଶିଥିଳ ହୋଇ ପଡ଼ିଛି (ଧମିଲ୍ଲ ବା ଜୂଡ଼ାସ୍ଖଳନ କାନ୍ତାରତିର ବିଶେଷ ଉଦ୍‌ଭାସ୍ୱର ଅନୁଭବ) । ଅଙ୍ଗରେ ସାତ୍ତ୍ୱିକ ସ୍ୱେଦର ସଞ୍ଚାର ହୋଇଛି । ଅଳିପୁଞ୍ଜ ରାଧାଙ୍କର ତନୁସୁରଭିରେ ଆକୃଷ୍ଟ ହୋଇ ତାଙ୍କୁ ବିବ୍ରତ କରନ୍ତି । ମଧୁକର ବିବ୍ରତା ଶକୁନ୍ତଳାଙ୍କ ପାର୍ଶ୍ୱରେ ଦୁଷ୍ମନ୍ତଙ୍କର ଆବିର୍ଭାବ ପରି ଶ୍ରୀକୃଷ୍ଣ ସ୍ୱହସ୍ତରେ ମଧୁବ୍ରତ ବାରଣ କରି ରାଧାଙ୍କୁ ଆଶ୍ଳେଷ କରନ୍ତି ଏବଂ ସେବକରୂପେ ତାଙ୍କର ନିର୍ଦ୍ଦେଶ ପ୍ରତୀକ୍ଷାରେ ରହନ୍ତି । ପୁଣି ବକ୍ଷବିଲମ୍ବିତ ନକ୍ଷତ୍ରମାଳା ରାଧାଙ୍କ କଣ୍ଠରେ ଭୂଷିତ କରି କମ୍ପିତ କଳେବରରେ ମଧୁରବାଣୀ ପ୍ରକାଶ କରନ୍ତି । ଅନ୍ୟ ଏକ ଗୀତରେ (ବି. ମା ଚ୍ଛନ୍ଦାରେ)

(ଦେଖିଲେ ପରିଣ ଯିବ ଗ୍ରନ୍ଥି ମୋହନ) ବସ୍ତ୍ରାକର୍ଷଣ, ସ୍ପର୍ଶପୂଜା ନିମିତ୍ତ ସଂଗୃହୀତ ପୁଷ୍ପର ଉତ୍କ୍ଷେପ ସହ ପୂର୍ବଗୀତ ପରି କେଳିକୁଞ୍ଜ ଫୁଲ ଶେଯରେ ମିଳନର ଚିତ୍ର (ସଂକୀର୍ଣ୍ଣ ସମ୍ଭୋଗ) ଏବଂ ପୁଷ୍ପ ବ୍ୟଜନ ଛନ୍ଦରେ ମନ୍ତ୍ରମୁଗ୍ଧ କବିଙ୍କର ଦାସ୍ୟଭାବ ସୂଚିତ । ଉଜ୍ଜ୍ୱଳ ନୀଳମଣି, ବିଦଗ୍ଧ ମାଧବ, ପଦାବଳୀ ସାହିତ୍ୟ ଓ ଓଡ଼ିଆ ବୈଷ୍ଣବ ସାହିତ୍ୟରୁ (ବିଦଗ୍ଧ ଚିନ୍ତାମଣି) ରାଧାଙ୍କର ଏହି ଭାବର ବହୁ ତୁଳନାତ୍ମକ ଚିତ୍ର ଉଦ୍ଧାର କରାଯାଇପାରେ (୭୮) ।

ପୂର୍ବଗୀତ ପରି ରାଧାଙ୍କର ଦେହ ଓ ମନରେ ସେହି କାଳକାକ୍ଷିତ ଭାବ ପରିସ୍ଫୁଟ କରିବା ପାଇଁ କବି ବଡ଼ୁ ଚଣ୍ଡୀଦାସ (କୃଷ୍ଣ କୀର୍ତ୍ତନ), ଜ୍ଞାନ ଦାସ ଓ ବଂଶୀବଦନଙ୍କ ପରି ରାଧା-କୃଷ୍ଣଙ୍କର ନୌକାବିଳାସର ଛବି ଆଙ୍କିଛନ୍ତି । ସଖୀ ନିକଟରେ ନିଜର ଅନୁଭବ ବର୍ଣ୍ଣନା କରି ରାଧା କହନ୍ତି ଯେ ପାରିକରି ଦେବା ପାଇଁ କୃଷ୍ଣ ରାଧା ଓ ଅନ୍ୟ ଗୋପୀମାନଙ୍କୁ ନୌକାରେ ବସାଇ ଅଗାଧ ଜଳରେ କ୍ଷେପଣୀ ଭସାଇ ଦିଅନ୍ତି । କରରେ ବଂଶୀ ଧାରଣ କରି ନୌକା ଆନ୍ଦୋଳିତ କରି ଭାସିଗଲା ବୋଲି କହନ୍ତି । ପୁଣି ଦ୍ୱୀପ (ଚଡ଼ା) ନିକଟରେ ଆକଣ୍ଠ ଜଳରେ ନୌକା ଖଟାଇ ପ୍ରତ୍ୟେକଙ୍କୁ ଅନ୍ୟ ପାରରେ ଛାଡ଼ିବାର ବ୍ୟବସ୍ଥା କରନ୍ତି । ସେହି ସମୟରେ ସ୍ପର୍ଶ, ଚୁମ୍ବନ ଆଦି ସଂକୀର୍ଣ୍ଣ ସମ୍ଭୋଗ ରୀତିମାନ ତାଙ୍କ ଆଚରଣରେ ପ୍ରକାଶ ପାଏ । ଏହି ଲୀଳାଚିତ୍ରରେ ରାଧାକୃଷ୍ଣଙ୍କର ପ୍ରେମର ଉତ୍କର୍ଷ ନାହିଁ । କବିଙ୍କର ବର୍ଣ୍ଣନାରେ କେବଳ କୃଷ୍ଣଙ୍କର କାମୋଦ୍ଦୀପନାର ସୂଚନା ମିଳେ । 'କୃଷ୍ଣକୀର୍ତ୍ତନ'ର ନୌକା ଖଣ୍ଡରେ ଏକ କାହାଣୀ ବିବର୍ତ୍ତି ସୂତ୍ରରେ କବି କୃଷ୍ଣଙ୍କ ନୌକାବିଳାସ ବର୍ଣ୍ଣନା କରିଛନ୍ତି । ନୌକାଖଣ୍ଡି ଜର୍ଜର, ଆକାଶରେ ଘନଘଟା, ଯମୁନାବକ୍ଷ ତରଙ୍ଗକ୍ଷୁବ୍ଧ । ରାଧାଙ୍କର ସର୍ବାଙ୍ଗରେ ଭୀତି-ଜନିତ କମ୍ପନ । ଦଇବା ନାବରେ ଜଳ ପ୍ରବେଶ କରିବାରୁ ନାବିକର ଗୋପୀମାନଙ୍କୁ ସତର୍କବାଣୀ ଜଳରେ କ୍ଷୀର ଦଧି ଢାଳିଦେବା ପାଇଁ, ଦେହର ଭୂଷଣ ଜଳରେ ନିକ୍ଷେପ କରିବାକୁ । ଶେଷରେ ରାଧାଙ୍କର ବସନ ଭାର ମଧ୍ୟ ଅସହ୍ୟ ହୋଇଛୁ ।

ଗୋଟିଏ ମନୋଜ୍ଞ ଗୀତରେ ରାଧା ଶ୍ୟାମଙ୍କ ତୁଲ୍ୟ ପ୍ରେମିକ ଶିରୋମଣିଙ୍କ ନିକଟରେ ପ୍ରଣୟିନୀ ଭାବରେ ନିଜର ଅଯୋଗ୍ୟତା ଉପଲବ୍ଧି କରି ପ୍ରାଣର ଆବେଗରେ ଅତି ବିନମ୍ରର ସହିତ ପ୍ରକାଶ କରିଛନ୍ତି—ମୁଁ ଶ୍ୟାମବନ୍ଧୁ ଭଳିକ ଗୋ !

ସମ ନୋହିବ ଯେ ପଦଧୂଳିକ ।ପଦା

ପ୍ରଥାସିଦ୍ଧ ଉପମାର ପ୍ରବାହରେ କବି ରାଧାଙ୍କର ପ୍ରଣୟିନୀ ସୁଲଭ ନମ୍ରତାର ମଞ୍ଜୁଳ ପରିଚୟ ପ୍ରଦାନ କରିଛନ୍ତି । ମାଲୋତ୍ପ୍ରେକ୍ଷାରେ କବି ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ତାମରସ ବନ କେଳି ଅଳିକ ।
କି ମଣି କଯୋଜ୍ରି ଗିରି ମଲ୍ଲୀକ ।୧।
ମିଳୋତ୍ପଳ ଗର୍ଭଦଳ ଝଲକ ।
ତୁଳୁଛି ଛିଡ଼ା ହରିଦ୍ରା ମଳକ ।୪।

(୭୮) ଉ. ନୀ., ଅନୁଭବ ପ୍ରକରଣ, ଶ୍ଳୋ.୭୨, ପୃ-୫୧୬-୫୧୭ ଓ ବି.ମା., ୭ଅଙ୍କ ପୃ-୩୬୫

ପ୍ରେମରତ୍ନ ଚିନ୍ତାମଣି ଆଳକ ।
ଗୁନ୍ଥିବ ଭଲକୁ କାଚ ମାଳକ ।୫। (ଗୋ. କୃ. ପ., ପୃ-୧୫୬)

ଏ ପ୍ରକାର ଉତ୍ପ୍ରେକ୍ଷାର ପ୍ରବାହରେ କବି ରୂପ ଓ ଗୁଣମୁଗ୍ଧା ରାଧାଙ୍କ ଦୃଷ୍ଟିରେ ପ୍ରଣୟୀ ଭାବରେ ଶ୍ରୀକୃଷ୍ଣଙ୍କର ଅସମୋର୍ଦ୍ଧ୍ୱ ସ୍ୱରଜିକ ମହତ୍ତ୍ୱର ବ୍ୟଞ୍ଜନା ସୃଷ୍ଟି କରିଛନ୍ତି ।

ପ୍ରଣୟିନୀ ଭାବରେ ରାଧାଚରିତ୍ରର ଚରମୋତ୍କର୍ଷ ଓ ପ୍ରେମର ପୂର୍ଣ୍ଣତମ ପ୍ରକାଶ ଘଟିଛି 'ଦୟା ନ କରନ୍ତୁ ମୁଁ ଦାସୀ ସିନାରେ' ଗୀତଟିରେ (ଗୋ. କୃ ପ; ପୃ ୧୫୮) । ରାଧା ଶ୍ରୀକୃଷ୍ଣଙ୍କର ନିତ୍ୟପ୍ରିୟା । ତତ୍ତ୍ୱ ଦୃଷ୍ଟିରୁ ସେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ହ୍ଲାଦିନୀ ବୃତ୍ତିର ସାର । ମର୍ତ୍ତ୍ୟ ବୃନ୍ଦାବନରେ ଉଭୟେ ମାନବ ବିଗ୍ରହ ଧାରଣ କଲେ ମଧ୍ୟ ସେମାନଙ୍କର ଦେହ, ପ୍ରେମ ଓ ଲୀଳା ହୋଇଛି ଅପ୍ରାକୃତ, ଚିନ୍ମୟ । ସେମାନଙ୍କ ପ୍ରେମରେ ସାଧାରଣ ମାନବ ସୁଲଭ ଦୈହିକ ଭୋଗଲାଳସା, ଐନ୍ଦ୍ରିକ ସୁଖବାସନା ଲେଶମାତ୍ର ନାହିଁ । ଦେହ, ସଂସାର ଓ କାଳର ଊର୍ଦ୍ଧ୍ୱରେ ସେମାନଙ୍କ ପ୍ରେମ ଅନିର୍ବଚନୀୟ ଆତ୍ମିକ ସ୍ତରର । ବୃନ୍ଦାବନ ଲୀଳାରେ ରାଧା ଶ୍ରୀକୃଷ୍ଣଙ୍କର ସର୍ବଶ୍ରେଷ୍ଠ ପ୍ରେମିକା । କବି ଉଦ୍ଧୃତ ଗୀତଟିରେ ରାଧାଙ୍କର ଦାସୀଭାବର ସଙ୍କେତ ଦେଇଛନ୍ତି । ଯାହାଠାରେ ଅନ୍ତରର ପ୍ରେମ ନିବେଦନ କରାଯାଏ, ତା'ର ସେବା ପରିଚର୍ଯ୍ୟା ନିମିତ୍ତ ଅନ୍ତରରେ ସ୍ୱତଃ ବାସନା ଜାଗରିତ ହୁଏ । ଏହି ଦୃଷ୍ଟିରୁ ପ୍ରେମିକା ଶିରୋଭୂଷା ରାଧାଙ୍କ ପ୍ରାଣରେ ଦାସୀଭାବର ସ୍ୱତଃ ଉତ୍ସାରିତ ବାସନା ଉଦ୍‌ବେଳିତ ହୋଇପଡ଼ିଛି (୭୯) । ପ୍ରେମିକଙ୍କର ତୃପ୍ତି ପାଇଁ ସମସ୍ତ ଦୁଃଖ, ତ୍ୟାଗ ଓ ଉପେକ୍ଷାର ପୀଡ଼ନ ସହ୍ୟ କରିବାକୁ ସେ ପ୍ରସ୍ତୁତ; କିନ୍ତୁ ନିଜର ସୁଖ ପାଇଁ ଅଭିମାନିନୀ ହୋଇ ଶ୍ୟାମଙ୍କ ପ୍ରାଣରେ ଦୁଃଖ ଦେବାକୁ ସେ ଇଚ୍ଛୁକ ନାହିଁ । ଶ୍ୟାମଙ୍କର ସୁଖ ପାଇଁ ଯେ ତାଙ୍କର ପ୍ରେମିକା, ତା'ର କିଙ୍କରୀତ୍ୱ ବରଣ କରି ସେ ଧନ୍ୟ ହେବାର ଅଭିଳାଷ ପୋଷଣ କରିଛନ୍ତି —

ଯେ ତାଙ୍କ ମନୋହାରୀ ତା ନଉକରି କରି
ଧନ ହେବ ପଛକେ ଗୁମାନ ନାହିଁରେ ।୨।

ପ୍ରେମିକର ଅନ୍ୟ ପ୍ରଣୟିନୀ ସମ୍ପର୍କରେ ପ୍ରେମିକା ଚିତ୍ତରେ ଈର୍ଷାଜାତ ହେବା ସ୍ୱାଭାବିକ; କିନ୍ତୁ ରାଧା ପ୍ରଣୟିନୀସୁଲଭ ସଂକୀର୍ଣ୍ଣ ଈର୍ଷାର ବହୁ ଊର୍ଦ୍ଧ୍ୱରେ । ପ୍ରେମିକର ସୁଖପାଇଁ ଅତି ଉଦାର ଚିତ୍ତରେ ତାଙ୍କର ଅନ୍ୟ ପ୍ରଣୟିନୀଗତ ସେବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ଶ୍ୟାମ ତାଙ୍କର ଯେ କୌଣସି ସୌଭାଗ୍ୟବତୀ ପ୍ରେମିକାର ବଶୀଭୂତ ହୋଇ ରହନ୍ତୁ, କିନ୍ତୁ ସେ ସୁଖୀ ହୋଇଥିଲେ ତାହା ତାଙ୍କ ନିକଟରେ କୋଟିନିଧି ସାହୁ ତୁଲ୍ୟ ହେବ—

ଯାହାରେ ହେଲେ ସଖୀ ସେ ହୋଇଥିଲେ ସୁଖୀ
ମିଳିଲା ପରି କୋଟି ଲକ୍ଷ ସୁନାରେ ।୩।

(୭୯) ବି.ଚ., ୪ର୍ଥ ଓ ୭୫ତମ ଗ୍ରନ୍ଥ ଦ୍ରଷ୍ଟବ୍ୟ ।

ସେ ଗ୍ରହିଛନ୍ତି : ଜନନୀ ଯଶୋଦାଙ୍କ ପୂର୍ବରେ ସେ ଚରଂଙ୍କଣ ହୋଇ ରହିଥାନ୍ତି । ଦୂରରେ କମ୍ବା ନିକଟରେ ପ୍ରତ୍ୟକ୍ଷ ଶ୍ରୀମୁଖ ଦର୍ଶନହିଁ ତାଙ୍କ ପକ୍ଷରେ ପରମ ସୌଭାଗ୍ୟ । ରାଧାଙ୍କର ଏହି ଦାସ୍ୟଭାବର ସଙ୍କେତ ପଦାବଳୀ ଓ ଓଡ଼ିଆ ବୈଷ୍ଣବ କାବ୍ୟରେ ଯଥେଷ୍ଟ ପରିଦୃଷ୍ଟ ହୁଏ । ଦ୍ୱିଜ ଚଣ୍ଡୀଦାସଙ୍କର ରାଧା ପ୍ରାଣର ଆବେଗରେ କହିଛନ୍ତି—

ସବ ସମର୍ପିୟା ଏକମନ ହୈୟା
ନିଶ୍ଚୟ ହଇଲାମ ଦାସୀ ॥ (ବୈ. ପ., ପୃ ୮୨)

ଅଭିମନ୍ୟୁଙ୍କର ରାଧା ଦୂତୀ ନିକଟରେ ନିଜର ପ୍ରଣୟ ବେଦନା ପ୍ରକାଶ କରି କହୁଛନ୍ତି—

କଣିଥିଲେ ପୁଣି ବନାଶନ୍ତେ କେହି ସେବକା ? ।୨।
ଶ୍ରୀଚରଣେ ଦେହ ପ୍ରାଣ ବିକଅଛୁ ମୁହିଁତ ।
ତାଙ୍କ ଅନୁଗ୍ରହ ବିନା ମୋ କପାଳ ଲିହିତ ।୩।
(ବ. ଚ., ୪ର୍ଥ ଖଣ୍ଡ, ଛା,୭୫)

କୃଷ୍ଣଙ୍କ ସହ ମିଳନ ପାଇଁ ରାଧାପ୍ରାଣର ବ୍ୟାକୁଳତା ଅସୀମ । ପ୍ରେମ୍ଯେମ୍ନ ଚରିତରେ ମଧ୍ୟ ଏ ଭାବ ଉଦିତ ହେଉଛି : ପ୍ରେମିକଙ୍କୁ ସ୍ମରଣ କରି କରି ଜୀବନ କ'ଣ ତାଙ୍କର ଚାଲିଯିବ ? (ଜୀବନ ଯିବ ପରା ସୁମରି ସୁମରି ମା, ଗ୍ରଂ. ପୃ ୩୭୯) । ଗିରି ଅଗ୍ନିରେ କ'ଣ ଗିରିଜାତ କୋମଳ ରଙ୍ଗଣ ଲତା ବଞ୍ଚି ପାରିବ ? ବଂଶୀଧାରୀଙ୍କର ଶିଖଣ୍ଡଚୂଳର ମାଧୁରୀ ନୟନରେ ତାଙ୍କର ନାଚ ଉଠୁଛି । ବନୟ ମିଶ୍ର ଅପାଙ୍ଗଭଙ୍ଗୀ ମନକୁ ତାଙ୍କର ଯାଉନାହିଁ । ସତେ କ'ଣ ଯଶୋଦାଙ୍କର ବାତ୍ସଲ୍ୟଲକ୍ଷ୍ମୀଙ୍କର ସେବିକା ହେବାର ସୌଭାଗ୍ୟ ତାଙ୍କୁ ମିଳିବ ? ରାଧାଙ୍କର ସାନ୍ତ୍ୱନା ପାଇଁ କୃଷ୍ଣଂକଠାରୁ ଅନଙ୍ଗ ପତ୍ରିକା (କାମ-ଲେଖ)' ହସ୍ତରେ ମଞ୍ଜରୀ ଭାବାବିଷ୍ଟ କବିଂକର ପ୍ରବେଶର କଳ୍ପନା ବିଦଗ୍ଧ ମାଧବର ଅନୁରୂପ (୮୦) ।

'କୁନ୍ଦଲତା ସଖୀଂକ ଦୌତ୍ୟ' ଶୀର୍ଷକ ଗୀତରେ (ଗ୍ରଂ. ପୃ ୪୦୪) କବି ସଙ୍ଗ-ସୁଖାବଧିର ସାରନିଧି କେଳିକଳ୍ପବଲ୍ଲୀ ରାଧାଂକର ମୋହନ ଚିତ୍ତାକର୍ଷଣକାରୀ ଗୁଣର ପ୍ରଶଂସା କରି ତାଂକ ଚରିତର ଉତ୍କର୍ଷ ପ୍ରତିପାଦନ କରିଛନ୍ତି । ଗୋଟିଏ ଗୀତରେ (ଧନ୍ୟ ସଜନି ! ଧନ୍ୟ ତୋ ତୋଳାଡଳାରେ, ଗ୍ରଂ.,ପୃ.୩୯୨) ରାଧାଂକର ଅପାଙ୍ଗର ପ୍ରଶଂସା କରି ସଖୀ କହେ ଯେ ତାହା ବୃନ୍ଦାଟବୀର ମତ୍ତକରୀନ୍ଦ୍ର କୃଷ୍ଣଙ୍କୁ ଆବଦ୍ଧ କରିବାର ଶୃଙ୍ଖଳ ତୁଲ୍ୟ । ରାଧାଂକର ସେହି ଗୋଟିଏ ପ୍ରତ୍ୟଙ୍ଗରେ ଅଖିଳ ଇନ୍ଦ୍ରିୟବୃତ୍ତି ପ୍ରକାଶ ପାଏ । ବିଦଗ୍ଧ ମାଧବର ଚତୁର୍ଥ ଅଂକର ବେଣୁହରଣ ପ୍ରସଙ୍ଗ ଅବଲମ୍ବନରେ ଏ ଗୀତଟି ରଚିତ । ଉମିଗିଭିସାର ନିମିତ୍ତ ପ୍ରସ୍ତୁତ ହୋଇ ରାଧା ଲଳିତାଂକ ଦ୍ୱାରା ସଜ୍ଜିତ କେଳିକୁଞ୍ଜରେ ପ୍ରତୀକ୍ଷମାଣା । ଚନ୍ଦ୍ରାବଳୀ ଅଭିସାରପ୍ରମତ୍ତ ଶ୍ରୀକୃଷ୍ଣଂକ ଦ୍ୱାରା ରାଧା ଉପେକ୍ଷିତା ହୋଇ ଉତ୍କଣ୍ଠିତା ଓ ବିପ୍ରଲବ୍ଧା ଦଶା ଭୋଗ କରନ୍ତି । ପ୍ରଭାତରେ କୃଷ୍ଣଂକ

(୮୦) ବି. ମା. ନାଟକର ୨ୟ ଅଂକ ପୃ. ୯୧

ଗ୍ଭ୍ୟ ପ୍ରତି ରାଧା ଆକ୍ଷେପୋକ୍ତି ପ୍ରକାଶ କରନ୍ତି । ରାଧାଂକ କଟାକ୍ଷ ବାଣରେ ମୋହିତ କୃଷ୍ଣ ପୁଷ୍ପ ଯଷ୍ଟିକା ପ୍ରଦାନ କରୁ କରୁ ଅଜ୍ଞାତରେ ନିଜର ବେଣୁକୁ ମଧ୍ୟ ରାଧାଂକର ଅଞ୍ଚଳରେ ପ୍ରଦାନ କରନ୍ତି । କୌଶଳରେ ରାଧାଂକ ଦ୍ୱାରା ବେଣୁ ଅପହୃତ ହୁଏ । ଗୋପାଳକୃଷ୍ଣ ସେହି ପ୍ରସଙ୍ଗର ସୂଚନାମାତ୍ର ଦେଇ ଲେଖିଛନ୍ତି—

ସୁମନ-ଯଷ୍ଟିକା ଭୁଲେ ବଂଶୀ ଦେଉଁ ତୋ ଅଞ୍ଚଳେ
କର, ଉର, ଅଧର କି ଅରୁଥିଲାରେ ।୨।
ନ ପାରନ୍ତି କେହି ଛୁଇଁ ଯା ବଂଶୀକି ଥିଲେ ଶୋଇ,
ପଣ୍ୟ ତୋହର ସଦୃଶ ହରି ହେଲାରେ ।୩।
(ଗୋ. କୃ. ଗ୍ରଂ, ପୃ-୬୯୩)

ସେତେବେଳେ କୃଷ୍ଣଙ୍କ ଗଣ୍ଡ ଦେଶରେ ସାତ୍ତ୍ୱିକ ସ୍ୱେଦର ସଞ୍ଚାର ହୁଏ । ଶ୍ରୀକୃଷ୍ଣ ବ୍ୟଙ୍ଗ ପ୍ରକାଶ କରନ୍ତେ ରାଧାଙ୍କର ଅଧରରେ ସ୍ମିତ ପ୍ରକାଶ ପାଏ । ତାଙ୍କର କଟାକ୍ଷ ଭଙ୍ଗୀରେ ଶ୍ୟାମ ପୁଲକିତ ହୋଇ ଉଠନ୍ତି । ପ୍ରିୟନର୍ମସଖା ମଧୁମଙ୍ଗଳ ସମକ୍ଷରେ ଶ୍ରୀକୃଷ୍ଣଙ୍କ ମୁଖରେ ରାଧାଙ୍କର କଟାକ୍ଷ ମାଧୁରୀର ଚିତ୍ର ଦେବାକୁ ଯାଇ ରୂପ ଗୋସ୍ୱାମୀ ଲେଖିଛନ୍ତି—

ପ୍ରମଦରସତରଙ୍ଗସ୍ମେରଗଣ୍ଡସ୍ଥଳାୟାଃ
ସ୍ମରଧନୁରନୁବନ୍ଧଭ୍ରୂଲତା ଲାସ୍ୟଭାଜଃ ।
ମଦକଳ-ଚଳଭୃଙ୍ଗୀଭ୍ରାନ୍ତିଭଙ୍ଗୀଂ ଦଧାନୋ
ହୃଦୟମିଦମଦାଂକ୍ଷୀତ୍ ପକ୍ଷ୍ମଲାକ୍ଷ୍ୟାଃ କଟାକ୍ଷଃ । (ବି. ମା., ୨।୭୮)

ଅର୍ଥାତ୍ ପରମାନନ୍ଦ ରସତରଙ୍ଗ ପୂର୍ଣ୍ଣ ହାସରେ ଯାହାଙ୍କର ଗଣ୍ଡସ୍ଥଳ ପ୍ରଫୁଲ୍ଲ, କନ୍ଦର୍ପ ଧନୁ ଜିଣି ଯାହାଙ୍କର ଭ୍ରୂଲତା ନୃତ୍ୟ କରୁଛି, ସେହି ବିସ୍ତାରିତ ପକ୍ଷ୍ମଲ-ନୟନ ବିଶିଷ୍ଟା ରାଧା ତାଙ୍କର ମଦମତ୍ତ ଚପଳ ଭୃଙ୍ଗୀ ସଦୃଶ କଟାକ୍ଷ ଦ୍ୱାରା ମୋର ହୃଦୟକୁ ଦଂଶନ କଲେ ।

ନବାନୁରାଗ ପ୍ରସଙ୍ଗରେ ରାଧାଙ୍କର ଉତ୍କଣ୍ଠିତା ଓ ବିପ୍ରଲବ୍ଧା ଅବସ୍ଥାର ବେଣୁହରଣ ସମ୍ପର୍କୀୟ ଘଟଣା-ସଙ୍କେତର କୌଣସି ଯଥାର୍ଥତା ନାହିଁ । କବି ଘଟଣାର ପାରମ୍ପରିକ ସଂପୃକ୍ତି ରକ୍ଷା କରି ନାହାନ୍ତି, କେବଳ ପୂର୍ବସୂରି ବର୍ଣ୍ଣିତ ଗୋଟିଏ ଗୋଟିଏ ସୁନ୍ଦର ଆଲେଖ୍ୟ କବିଙ୍କ ମାନସ ପଟରେ ଅଂକିତ ହେବା ମାତ୍ରେ ସଂପୃକ୍ତି ନଥିଲେ ମଧ୍ୟ ମନ୍ତ୍ରମୁଗ୍ଧ ସୁଲଭ ଭାବାବେଶରେ ରୂପ ପ୍ରଦାନ କରିଛନ୍ତି ।

**ଶ୍ରୀକୃଷ୍ଣଙ୍କର ନବାନୁରାଗ**—ସଂଖ୍ୟାରେ ସ୍ୱଳ୍ପ ହେଲେ ମଧ୍ୟ ରାଧାଂକ ପରି ଶ୍ରୀକୃଷ୍ଣଂକର ନବାନୁରାଗ ସମ୍ବଳିତ କେତୋଟି ଗୀତ ରଚିତ ହୋଇଛି । ରାଧାଂକ ନବୀନ ଅନୁରାଗରେ ଶ୍ୟାମଂକର ତନୁ, ମନ, ବଦନ ଓ ନୟନ ଭରି ଉଠିଛି । ଗୋଟିଏ ଗୀତରେ (ଜଣା ଯାଉଛି ଏଥିରୁ, ଗ୍ରଂ, ପୃ-୩୪୭) ରାଧାଂକ ମୁଖରେ ଶ୍ରୀକୃଷ୍ଣଂକର ନବାନୁରାଗର ସୂଚନା ଦେଇ କବି ବର୍ଣ୍ଣନା କରିଛନ୍ତି ଯେ ତାଂକର (ରାଧାଙ୍କର) ତନୁର ଶ୍ରୀ ଓ ସୌରଭରେ ମୁଗ୍ଧ କୃଷ୍ଣ ପ୍ରାଙ୍ଗଣରେ ମାଳତୀ ଲତାଟିଏ ରୋପଣ କରିଛନ୍ତି । ମାଳତୀର ସୌନ୍ଦର୍ଯ୍ୟ,

ସୌରଭ ଓ କୋମଳତାରେ ତାଂକର ସ୍ମୃତିକୁ ଚିତ୍ତରେ ଉଜ୍ଜୀବିତ ରଖି ପ୍ରତ୍ୟଙ୍ଗ ଚକ୍ଷୁ ଲୋତକ ସଙ୍କାଶ କରୁଛନ୍ତି । ଗଙ୍ଗତୂଳ ସାହାଯ୍ୟରେ ଭିତ୍ତିରେ ତାଙ୍କର (ରାଧାଙ୍କର) ଆଲେଖ୍ୟ ଅଙ୍କନ କରୁଛନ୍ତି । ତାଙ୍କର ଚଲାପଥର ଧୂଳିକୁ ହସ୍ତରେ ତୋଳି ଆବେଗରେ ମସ୍ତକ ଓ ହୃଦୟରେ ବୋଳି ହେଉଛନ୍ତି (୮୧) । ବଂଶୀରେ ଅଧର ଦଂଶନ କରି କରାଙ୍ଗୁଳି ଦ୍ୱାରା ତାଙ୍କର ନାମଗାନ କରି ପାଗଳ ପ୍ରାୟ ହେଉଛନ୍ତି । ତାଙ୍କର ପଦାବ୍ଜରେ ଲକ୍ଷା ରେଖା ଆଙ୍କି (୮୨) ସାହାଡ଼ା ପକାଇ ପର୍ଯ୍ୟନ୍ତ ମଣାଇ ନେବାକୁ କଳ୍ପନା ଜଳ୍ପନା କରୁଛନ୍ତି ।

ଦୂତୀ ମୁଖରେ କବି ଶ୍ରୀକୃଷ୍ଣଙ୍କର ପ୍ରେମାତୁରତା ବର୍ଣ୍ଣନା କରି କହୁଛନ୍ତି ଯେ ପ୍ରତ୍ୟହ ରାଧାଙ୍କର ଦର୍ଶନର ସୁଯୋଗ ପାଇବା ପାଇଁ କୃଷ୍ଣ ଏକାକୀ ଯମୁନା ତୀରସ୍ଥ ନୀପତରୁତଳେ ଗୋଧନ ଚାରଣ ବ୍ୟାଜରେ ପଥକୁ ସତୃଷ୍ଣ ନୟନରେ ଚାହିଁ ରହୁଥାନ୍ତି । ପଥରେ ସଖୀ ମୁଖରୁ ସୁଧାନନ୍ଦୀ ରାଧାନାମ ଶ୍ରବଣ କରି ପକ୍ଷ୍ମ ନ ପକାଇ ଧ୍ୟାନସ୍ଥ ହୋଇ ବସି ରହନ୍ତି । ରାଧାଙ୍କର ପଦଚିହ୍ନର ପଦ୍ମଗନ୍ଧ ପ୍ରତି ଆକୃଷ୍ଟ ହୋଇ ଭ୍ରମରମାନେ ପଦ୍ମଭ୍ରାନ୍ତିରେ ବସି ଯାଆନ୍ତି । ଏ କେଉଁ ସୁଭଗ ଅଳିବଧା ପଦଚିହ୍ନ ଦର୍ଶନରେ ବାୟୁ ଆନ୍ଦୋଳିତ ପର୍ଣ୍ଣ ପରି ତାଙ୍କର ସର୍ବାଙ୍ଗରେ ବେପଥୁର ସଞ୍ଚାର ହୁଏ । ସେ ଲୋଭବଶତଃ ସେହି ପଦଚିହ୍ନର ଧୂଳି ବୋଳି ହୋଇ ପଡ଼ନ୍ତି (୮୩) । ବନ ପ୍ରତ୍ୟାଗମନ କାଳରେ ରାଧାଙ୍କର ଅଟ୍ଟାଳିଆଡ଼େ ତୋଳା ଚାଳନ୍ତେ, ଚତୁରକ୍ଷ ହେବାରୁ ଲଜ୍ଜାବଶତଃ ରାଧା ପଛଘୁଞ୍ଚା ଦେଇ ଚାଲି ଯାଆନ୍ତି । ସମଗ୍ର ବ୍ରଜ ଓ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ଗତାଗତ ହେଉଥିଲେ ମଧ୍ୟ ରାଧାଙ୍କ ପ୍ରତି ତାଙ୍କର ଧ୍ୟାନ ନିରତ ରହୁଥାଏ (ବ୍ରଜବଧୂ ତୋଟତ ବିଲୋକିବା ପାଇଁରେ, ଗ୍ରନ୍ଥାବଳୀ, ପୃ-୩୮୮) ।

ଶ୍ରୀକୃଷ୍ଣଙ୍କର ସକଳ କଳାକ୍ଷେମ ଗୁଣର (କଳା କୁଶଳତା) ପରିଚୟ ନିମିତ୍ତ କବି ଏକ ସ୍ୱତନ୍ତ୍ର ଗୀତ ରଚନା କରିଛନ୍ତି । ଏଥିରେ କୁଞ୍ଜ ଭିତ୍ତିରେ ରାଧାଙ୍କର କମନୀୟ ଚିତ୍ରଟିଏ ଅଙ୍କନ କରିବାରେ ଶ୍ରୀକୃଷ୍ଣଙ୍କର ଅପୂର୍ବ କଳାକୁଶଳତା ପ୍ରଦର୍ଶନ ବ୍ୟାଜରେ ରାଧାଙ୍କ ପ୍ରତି ଗଭୀର ଅନୁରାଗର ପରିଚୟ ଦେଇଛନ୍ତି (ଦୂତୀମୁଖରେ) । ଛବିଟିର ବସ୍ତୁ ହେଉଛି : ରାଧା ନନ୍ଦପୁରସ୍ଥ ପାକଶାଳାର ଦ୍ୱାରଦେଶ ପାର୍ଶ୍ୱରେ ନବବଧୂ ପ୍ରାୟ ରୋହିଣୀଙ୍କ ହସ୍ତରେ ଭୋଜ୍ୟ ସାମଗ୍ରୀ ବଢ଼ାଇ ଦେଇ ଅନ୍ୟର ଅଜାଣତରେ ଶ୍ରୀକୃଷ୍ଣଙ୍କ ପ୍ରତି ଅପାଙ୍ଗ ସୁଷମା ଢାଳି ଦେଇଛନ୍ତି । ଅଯତ୍ନ ଭାବରେ ମଥାରୁ ଅଗ୍ରବସ୍ତ୍ର ଖସି ଯାଇଛି । ପୃଷ୍ଠ ଦେଶରେ କୃଷ୍ଣବେଣୀ ବିଲମ୍ବିତ, ଶ୍ରୀମୁଖରେ ସ୍ୱେଦ ଓ ଗଣ୍ଡଦେଶରେ ରୋମାଞ୍ଚ । ଭାଲପଟ୍ଟରେ ସିନ୍ଦୂର ଓ ଚିବୁକରେ ମୃଗମଦ ବିନ୍ଦୁର ଶୋଭା । ଅଙ୍ଗ ପ୍ରତ୍ୟଙ୍ଗରେ ଖଚିତ ଭୂଷଣ ଓ ପରିହିତ ନୀଳ ଦୁକୂଳ ଲକ୍ଷ୍ୟ କରି ଦୂତୀ ଚକ୍ଷୁରେ ସତେ ଯେପରି ରାଧାଙ୍କର ଜୀବନ୍ତ ପ୍ରତିମା ପ୍ରତିଭାତ

(୮୧) ବ. ଚ. ଗ୍ରୁ ୪୮

(୮୨) ବ. ଚ. ୭୬।୧୨

(୮୩) ୮୧ ସଂଖ୍ୟକ ପାଦଟୀକା ଦ୍ରଷ୍ଟବ୍ୟ ।

ହୋଇଛି । ସମକ୍ଷକୁ ଯିବା ସମୟରେ କୃଷ୍ଣ ଚରଣପଟ ଅଙ୍କିତ ରାଧାଙ୍କର ପାଦରେ ଯାବକ ରେଖା ଅଙ୍କନ କରୁଥିଲେ । ଉତ୍କଳର ଆଲେଖ୍ୟ ଓ ସ୍ଥାପତ୍ୟ ଶିଳ୍ପ ପରମ୍ପରା ବିଶ୍ୱବିଦିତ । ଉତ୍କଳର ସୂକ୍ଷ୍ମ କାରୁଶିଳ୍ପ ପୂର୍ଣ୍ଣ ମନ୍ଦିର ଏବଂ ପୁରାଣ, କାବ୍ୟ ଓ ସଙ୍ଗୀତରେ ଏହି ଶିଳ୍ପ ପରମ୍ପରାର ଉଜ୍ଜ୍ୱଳ ସ୍ୱାକ୍ଷର ରହିଛି । ପାରଳା ଖିମୁଣ୍ଡିରେ ଅଦ୍ୟାବଧି ଜୀବନ୍ତ ଏହି ଆଲେଖ୍ୟ ଶିଳ୍ପ ପରମ୍ପରା ଶ୍ରୀକୃଷ୍ଣଙ୍କୁ ଆଲେଖ୍ୟ-କୁଶଳୀ ତଥା ସକଳ କଳାକ୍ଷେମ ଗୁଣ ନିପୁଣ କରିବା ଏକାନ୍ତ ସ୍ୱାଭାବିକ ।

ପ୍ରେମମୂର୍ତ୍ତି ରାଧାକୃଷ୍ଣଙ୍କ ଯୁଗଳ ରୂପ ପ୍ରଶଂସା ଓ ପାରସ୍ପରିକ ଅନୁରାଗ ସମ୍ପର୍କରେ ଦୁଇଟି ଗୀତ ରହିଛି । ଗୋଟିଏ ଗୀତରେ (ବ୍ରଜେନ୍ଦ୍ର ନନ୍ଦନ ସହି ଏକା ଶ୍ରୀରାଧାର, ଗ୍ରନ୍ଥାବଳୀ, ପୃ-୩୮୬) ଦୁଇଟି ସଖୀଙ୍କର ଉକ୍ତି ପ୍ରତ୍ୟୁକ୍ତିରେ ରାଧା ଓ କୃଷ୍ଣଙ୍କର ପାରସ୍ପରିକ ପ୍ରେମର ନିବିଡ଼ତା ପରିସ୍ଫୁଟ । ରାଧା ତନୁ ହେଲେ ଶ୍ରୀକୃଷ୍ଣ ପ୍ରାଣ । ଉଭୟଙ୍କ ପ୍ରୀତିରେ ତାରତମ୍ୟ ନାହିଁ । ପ୍ରତ୍ୟେକଙ୍କଠାରେ ଶୋଭା, ସୁଗୁଣ ଓ ସୁଲକ୍ଷଣ ସମମାତ୍ରାରେ ବିରାଜିତ । କବି ନିଜର ମଞ୍ଜରୀ ସୁଲଭ ଅଭିଳାଷ ପ୍ରକାଶ କରି କହିଛନ୍ତି ଯେ ଯୁଗଳ ପ୍ରେମମୂର୍ତ୍ତିର ଦର୍ଶନ ଫଳରେ ତାଙ୍କର ଅନ୍ୟ ଅଭିଳାଷର ପ୍ରଶ୍ନ ଉଠୁନାହିଁ —

ଯା ମନ କୃଷ୍ଣଙ୍କୁ ରସି          ଭଜିବ ରାଧାର ଦାସୀ
ହେଉ ଗୋପାଳକୃଷ୍ଣ ପ୍ରକାର ।୧।

(ଗ୍ରନ୍ଥାବଳୀ ପୃ-୩୮୭)

ଅନ୍ୟ ଗୀତଟିରେ ଶ୍ରୀକୃଷ୍ଣ ପକ୍ଷୀୟା ଦୂତୀ ବୃନ୍ଦାଦେବୀଙ୍କ ମୁଖରେ ରାଧା ଓ କୃଷ୍ଣ ଉଭୟଙ୍କର ପାରସ୍ପରିକ ଅନୁରାଗ ଚମତ୍କାର ଭାବରେ ବ୍ୟଞ୍ଜିତ ହୋଇଛି ! ରାଧାଙ୍କ ନିକଟରେ କୃଷ୍ଣଂକର ସାଭିଳାଷ ସସ୍ନେହ ମଧୁର ଅନୁଭୂତି ବର୍ଣ୍ଣନା କରି ବୃନ୍ଦା କହୁଛନ୍ତି ଯେ ଯମୁନାରୁ ସଖୀ ଗହଣରେ ଘୁରି ପ୍ରତ୍ୟାବର୍ତ୍ତନ କାଳରେ ସେ (ରାଧା) ବାରମ୍ବାର ପଛକୁ ଫେରି ଚାହୁଁଥିଲେ । ତାଂକର ମୁଖ ସମକ୍ଷରେ ଚକୋର ଉଡୁଥିଲା ଏବଂ ଭ୍ରମର ସମୂହ ତାଂକ ସମକ୍ଷରେ ଉଡ଼ି ତାଙ୍କୁ ବିବ୍ରତ କରୁଥିବାରୁ ସେ ହସ୍ତର ଲୀଳାପଦ୍ମରେ ସେମାନଙ୍କୁ ବିତାଡ଼ନ କରୁଥିଲେ । କବି ଏଠାରେ ରୂପକ ପ୍ରୟୋଗରେ ରାଧାଂକର ମୁଖ ମାଧୂର୍ଯ୍ୟ ଓ ଅଙ୍ଗ ସୌରଭର ବ୍ୟଞ୍ଜନାଧର୍ମୀ ଚିତ୍ର ଅଂକନ କରିଛନ୍ତି । ଚକୋରର ଚନ୍ଦ୍ରଜ୍ୟୋତ୍ସ୍ନା ପାନର କାବ୍ୟିକ ପ୍ରସିଦ୍ଧି ରହିଛି (୮୪) । ଏଠାରେ ରାଧାଂକର ମୁଖଚନ୍ଦ୍ରର ଜ୍ୟୋତ୍ସ୍ନାପାନ ନିମିତ୍ତ ଲୁବ୍ଧ ଶ୍ରୀକୃଷ୍ଣ ଚକୋର ରୂପେ କଳ୍ପିତ । ରାଧାଂକର ସୁରଭିତ ଅଙ୍ଗକୁ ପଦ୍ମଭାବି (ବ୍ୟଞ୍ଜନାରେ ରାଧା ପଦ୍ମିନୀ ଜାତୀୟା କିଶୋରୀ) ଭ୍ରମରମାନେ ତାଂକର ମୁଖ ସମକ୍ଷରେ ଉଡ଼ି ବିବ୍ରତ କରୁଥିବାରୁ ସେ ସେମାନଙ୍କୁ ଲୀଳାପଦ୍ମ ଦ୍ୱାରା ବାରଣ କରୁଥିଲେ । ଭ୍ରମର ପଦ୍ମଗନ୍ଧ ପ୍ରତି ଆକୃଷ୍ଟ ହେବା ପରି ଏଠାର ଶ୍ରୀକୃଷ୍ଣରୂପୀ ଭ୍ରମର ରାଧାଂକ ମୁଖ କମଳକୁ ମଧୁପାନ ପାଇଁ ସତେ ଯେପରି ଉତ୍କଣ୍ଠିତ : ଏହି ବ୍ୟଞ୍ଜନା ଏଠାରେ ରହିଛି ।

---

(୮୪) ଗୀ. ଗୋ., ୧୦।୧୧।୨, ପୃ-୧୧୬

ରାଧାଙ୍କ ପାଳିତ ହରିଣୀ 'ରଙ୍ଗିଣୀ' ନିକଟକୁ କୃଷ୍ଣ ପାଳିତ କୃଷ୍ଣସାର ଆସିବାରୁ ରାଧା ଚମକି ପଡ଼ି ଅନୁରାଗାମୋଦରେ ସଖୀ ଲଳିତାଙ୍କୁ ଆହ୍ୱାନ କରନ୍ତି । ଏଠାରେ ରଙ୍ଗିଣୀ ନିକଟକୁ କୃଷ୍ଣଙ୍କର ହରିଣର ଆଗମନର ଉଲ୍ଲେଖ ଦ୍ୱାରା କବି ବ୍ୟଞ୍ଜନାରେ କୃଷ୍ଣଙ୍କର ରାଧା-ପ୍ରୀତିର ମନୋଜ୍ଞ ସୂଚନା ଦେଇଛନ୍ତି । ବିଦଗ୍ଧ ମାଧବ ନାଟକର ଭାବ ଅବଲମ୍ବନରେ ଏ ଚଉତି ଅଙ୍କିତ (୮୫) । ଯମୁନାର ସ୍ନାନ ଘାଟରେ ତାଙ୍କ (ରାଧାଙ୍କର) କବରୀର ଛଡ଼ା ମଲ୍ଲୀମାଳା କୃଷ୍ଣ ତାଙ୍କର ବସ୍ତ୍ରାଞ୍ଚଳରେ ବାନ୍ଧି ମଲ୍ଲିକା ସହିତ ତାଙ୍କର ତନୁ ସୁରଭିର ଅପୂର୍ବ ଆମୋଦ ଅନୁଭବ କରନ୍ତି ।

ଗୋଟିଏ ଗୀତରେ କବି କୃଷ୍ଣଙ୍କ ମୁଖରେ (ରାଧାଙ୍କ ସଖୀ ସମକ୍ଷରେ) ଅଭିମାନିନୀ ରାଧାଙ୍କର ଅନୁରାଗର ଗମ୍ଭୀରତା ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣ ଉପଲବ୍ଧି କରି ପାରିଛନ୍ତି ଯେ ପ୍ରଣୟିନୀ ରାଧାଙ୍କର ମନଜଗି ଯେତେ ସତର୍କ ଭାବରେ ଗତି କରୁଥିଲେ ମଧ୍ୟ ତାଙ୍କର (ରାଧାଙ୍କର) ହୃଦୟ କଳନା କରିବା ସାଧ୍ୟାତୀତ । ଭୁଜଙ୍ଗର ଗତି ପରି ରାଧାଙ୍କର ପ୍ରେମର ସ୍ୱଭାବ ସର୍ବଦା କୁଟିଳ (ଅହେରିବ ଗତି ପ୍ରେମଣଃ ସ୍ୱଭାବ କୁଟିଳା ଭବେତ୍) । ସେଥିପାଇଁ ସେ ତାଙ୍କର ବାଣୀକୁ ସର୍ବଦା ଉଚ୍ଚସ୍ଥାନ ଦେଇଥାନ୍ତି—

ଭୁଜଙ୍ଗ ପରିାୟେ ଗତି ତା ପ୍ରେମର
ସ୍ୱଭାବ ସଦା କୁଟିଳ ।
ଏ ଯେଣୁ କରୁଛି ସହି ତାର ବାଣୀ
ଉପର, ମୋ ଶିରତଳ ।୧।

(ଗୋ. କୃ. ଗ୍ର°., ପୃ ୪୦୫)

ରାଧାଙ୍କର ସାଧାରଣ କିଶୋରୀ ସୁଲଭ ଈର୍ଷା ଓ ଅଭିମାନର ପରିଚୟ ଦେବାକୁ ଯାଇ କୃଷ୍ଣ କହନ୍ତି ଯେ ତାଙ୍କ ମୁକ୍ତାହାରସ୍ଥ ପଦକ-ମଣିରେ ପ୍ରତିବିମ୍ବିତ ନିଜର ରୂପ ଚାହିଁ ତାଙ୍କ (କୃଷ୍ଣଙ୍କ) କୋଳରେ ଅନ୍ୟ କିଶୋରୀ ରହିଛି ବୋଲି ଭାବି ଅଭିମାନ ବଶତଃ ସେ ରୁଷିଯାଆନ୍ତି । ତାଙ୍କ ଅଙ୍ଗରେ ନଖକ୍ଷତ (ପ୍ରେମିକା ଦତ୍ତ) ଚାହିଁ ସେ (ବିଳାସ ବହ୍ୱଳା ରାଧା) କୌଣସି ଉତ୍ତର ନ ଦେଇ ଅବନତ ମୁଖୀ ହୋଇ 'ରହିଯା'ନ୍ତି । ନିଜର ଶିର ଥୋଇ ତାଙ୍କର (ରାଧାଙ୍କର) ପଦପ୍ରାନ୍ତରେ ପକାଇ (ଦାସ୍ୟଭାବର ବ୍ୟଞ୍ଜନା) ନିଜର ପ୍ରଣୟ ନିଷ୍ଠାର ପରିଚୟ ଦେବା ଅବସରରେ ତାଙ୍କର ପ୍ରତିଦ୍ୱନ୍ଦ୍ୱିନୀ ଚନ୍ଦ୍ରାବଳୀ ପ୍ରତି କଟାକ୍ଷପାତ କରିବା ମନ୍ତବ୍ୟ ପ୍ରାଣ କବିଙ୍କ ଭାଷାରେ ଯୁକ୍ତିଯୁକ୍ତ ହୋଇନାହିଁ ।

ଅନ୍ୟ ଏକ ଗୀତରେ (ତାକବି ରାଧାରମଣ ବୋଲିକି ?) କବି ଶ୍ରୀକୃଷ୍ଣଙ୍କର ବଲ୍ଲଭୀ ପ୍ରେମ ଓ ଆଭୀର ବାଳାଙ୍କର କୃଷ୍ଣୈକାନୁରାଗର ପରିଚୟ ଦେଇଛନ୍ତି ସୂଚନାତ୍ମକ ବର୍ଣ୍ଣନା ଭଙ୍ଗୀରେ । ସରଳ ଉପମା ପ୍ରୟୋଗରେ କବି କୃଷ୍ଣଙ୍କର ରସିକତାର ପରିଚୟ ଦେବାକୁ

(୮୫) ବି. ମା., ୭ମ ଅଙ୍କ, ପୃ. ୩୮-୩୯

ଯାଇ କହନ୍ତି ଯେ ହସ୍ତୀର କଳେବର ପ୍ରକ୍ଷାଳିତ ହେଲେ ମଧ୍ୟ ସେ ଯେପରି ପର ମୁହୂର୍ତ୍ତିରେ ଧୂଳି ଧୂସରିତ ହୁଏ କୃଷ୍ଣ ସେହିପରି ଆଭୀରୀ-ପ୍ରେମ ଉଦାସୀନ ପ୍ରାୟ ପ୍ରତୀତ ହେଲେ ମଧ୍ୟ ବଲ୍ଲବୀ-ପ୍ରେମଧୂଳିରେ ଆଚ୍ଛନ୍ନ ହୋଇଥାନ୍ତି । ବହୁନାୟିକାଠାରେ ସମସ୍ନେହୀ ରସିକ ଶିରୋମଣି ଶ୍ରୀକୃଷ୍ଣ ଆଭୀର-ଯୁବତୀଙ୍କର ମୁଖକମଳର ମଧୁପାନରେ ଏକାନ୍ତ କୁଶଳୀ । ଏକ ବ୍ୟଞ୍ଜନାଧର୍ମୀ ଉପମା ପ୍ରୟୋଗରେ କବି ଲେଖିଛନ୍ତି—

ଅଧର ସଙ୍ଗ ଗୋକୁଳ ବାଳୀ,
ମଧୁ ପିଇବାର ଅଧୁଆ ଥାଳି । (ଗୋ. କୃ. ଗ୍ରଂ., ପୃ ୩୨୪)

## ରୂପାନୁରାଗର ପ୍ରତିକ୍ରିୟା :

ରାଧା ଓ କୃଷ୍ଣଙ୍କର ପାରସ୍ପରିକ ରୂପମୁଗ୍ଧତା ଓ ତଜ୍ଜନିତ ଚିତ୍ତଚାଞ୍ଚଲ୍ୟ କେତୋଟି ଗୀତରେ କବି ମଞ୍ଜୁଳ ଭାବରେ ବର୍ଣ୍ଣନା କରିଛନ୍ତି । ବଙ୍ଗୀୟ ବୈଷ୍ଣବ ପଦାବଳୀ ସାହିତ୍ୟରେ ଏ ଶ୍ରେଣୀର ଗୀତ ସଂଖ୍ୟା ପ୍ରଚୁର । ବିପ୍ରଲମ୍ଭର ବିଭିନ୍ନ ବିଭାବର ଚିତ୍ରରେ ପରମ୍ପରା କ୍ରମେ କବି ରୂପମୁଗ୍ଧା କିଶୋରୀଙ୍କର ଚିତ୍ତଚାଞ୍ଚଲ୍ୟ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ରୂପାନୁଗ୍ଧା ରାଧା—ଗୋଟିଏ ଗୀତରେ (କାହିଁକି ସେହି ଶ୍ୟାମ ମୂରତି ଗୋ !, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୩୭୨) ରାଧାଂକର ଚିତ୍ତଚାଞ୍ଚଲ୍ୟର ଚିତ୍ର ଦେବାକୁ ଯାଇ କବି ଉଲ୍ଲେଖ କରିଛନ୍ତି ଯେ ଶ୍ୟାମଂକର ମୂର୍ତ୍ତି ଅହରହ ତାଂକ ଚକ୍ଷୁରେ ନୃତ୍ୟ କରୁଛି । ତାଂକର ପ୍ରଣୟ ମୁଗ୍ଧ ଦୃଷ୍ଟିରେ ଚତୁର୍ଦ୍ଦିଗ ହୋଇଛି ଶ୍ୟାମମୟ(୮୬) । ପ୍ରତି ମୁହୂର୍ତ୍ତିରେ ମନେହୁଏ ସତେ ଯେପରି ପ୍ରିୟତମ ତାଂକର ପଶ୍ଚାତ୍ ଅନୁସରଣ କରୁଛନ୍ତି, କିନ୍ତୁ ଫେରି ପଛ ଚାହିଁଲେ ସେ ଦେଖାଯାନ୍ତି ନାହିଁ । ଚକ୍ଷୁ ନିମୀଳିତ କଲେ ସ୍ୱପ୍ନରେ ବୃନ୍ଦାଟବୀର କୁଞ୍ଜବନରେ ଘୂରାଇବା ପରି ପ୍ରତୀତ ହେଉଛି । ଏକ ଦିଗରେ ଶ୍ୟାମଂକର ରୂପର ମୋହ, ଅନ୍ୟ ଦିଗରେ କୁଳବତୀର ଶାଶୁ ଓ ଅନ୍ୟ ଗୁରୁଜନମାନଂକ ପ୍ରତି ଭୀତି ଏହି ଦ୍ୱନ୍ଦ୍ୱ ତାଂକ ଚିତ୍ତରେ ଅହରହ ଲାଗିଛି ! ସେଥିପାଇଁ 'କୃଷ୍ଣନାମ' କାନରେ ପଡ଼ିବାମାତ୍ରେ ଛାତି ଥରି ଉଠୁଛି, ଏପରିକି ଗୃହରୁ ପ୍ରାଙ୍ଗଣ ପର୍ଯ୍ୟନ୍ତ ଯିବାରେ ତୀକ୍ଷ୍ଣ ଶାସନୀ ଦୃଷ୍ଟିର ଭୀତି ମନରୁ ଯାଉନାହିଁ ।

ବ୍ରଜବଧୂଙ୍କର ଅଲୋକ ସାମାନ୍ୟ ରୂପଦର୍ଶନକୁ ରାଧା ନିଜ ଜୀବନର ପରମ ଭାଗ୍ୟ ମନେ କରିଛନ୍ତି, କିନ୍ତୁ ସେ ରୂପର ଏତେ ଜ୍ୱାଳା ! ସ୍ମର ପିଡ଼ାରେ ତାଂକର ହୃଦୟ କ୍ଷତବିକ୍ଷତ । କବିଂକ ଭାଷାରେ—

ତହିଁରେ ପୁଣିକି ଏତେ ଜ୍ୱାଳା,
ମନମଥ କି ଅନ୍ୟାୟ କଲା ? ( ଗୋ କୃ ଗ୍ରଂ, ପୃ ୪୧୬ )

---

(୮୬) ସଖୀଉକ୍ତି, ଗୋବିନ୍ଦ ଦାସ, ପ. ସା., ପୃ ୯୧

ଯେଉଁଆଡ଼େ ଚାହିଁଲେ ସେହି ମନୋହର ଶ୍ୟାମରୂପ ନାଚି ଯାଉଛି, ଅଥଚ ଜ୍ୱାଳାରେ ପ୍ରାଣ ଛଟପଟ ହେଉଛି । ସୁଖର ସାମଗ୍ରୀ ତାଙ୍କ ପକ୍ଷରେ ଦୁଃଖଦାୟକ ହେଉଛି । ପିଣ୍ଡରେ ପ୍ରାଣ ରହିବକି ଚାଲିଯିବ—ଏକପ୍ରକାର ରୁଦ୍ଧଶ୍ୱାସ ଅବସ୍ଥା ସେ ଅନୁଭବ କରୁଛନ୍ତି । କବିଙ୍କ ଭାଷାରେ—

କେଣେ ଚାହିଁ ଦେଲି ଶ୍ୟାମରୂପ, ଯହିଁରେ ଭୋଗୁଛି ପରିତାପ;
ସୁଖର ସାମଗ୍ରୀ ଦୁଃଖକର ହେଲା ନ ପୂରୁ ମନର ସଂକଳପ ।୩।
ଯିବକି ରହିବ ଏ ପିଣ୍ଡେ ଜୀବନ ଧିକ ଧିକ ନାରୀଜନ୍ମ ବୃଥା ।୪।

(ଗୋ. କୃ. ଗ୍ରଂ., ପୃ ୪୧)

ବୈଷ୍ଣବ ପଦକର୍ତ୍ତାମାନେ ରାଧାଙ୍କ ଆକ୍ଷେପାନୁରାଗରେ ଶ୍ୟାମଙ୍କର ଏହି ରୂପ ଓ ପ୍ରେମଜ୍ୱାଳାର ବର୍ଣ୍ଣାଢ଼୍ୟ ଚିତ୍ର ଅଙ୍କନ କରିଛନ୍ତି । ରୂପ ଯାହାଙ୍କର ଝଲମଲ ପରି, ଯାହାଙ୍କର ସ୍ପର୍ଶରେ ଅଗ୍ନି ଜଳି ଉଠେ, ତାଙ୍କର ପ୍ରେମରେ ତୃପ୍ତି କେଉଁଠି ? (୮୭) । ଜ୍ଞାନ ଦାସଙ୍କର ରାଧା କହନ୍ତି—

ରୂପଲାଗି ଆଁଖି ଝୁରେ ଗୁଣେ ମନ ଭୋର ।
ପ୍ରତିଅଙ୍ଗ ଲାଗି କାଁଦେ ପ୍ରତି ଅଙ୍ଗ ମୋର ।।
ହିୟାର ପରଶଲାଗି ହିୟା ମୋର କାନ୍ଦେ ।
ପରାଣ ପୀରିତି ଲାଗି ଥିର ନାହି ବାନ୍ଧେ ।।

ଚଣ୍ଡୀ ଦାସ ରାଧାଙ୍କର ପ୍ରେମର ଜ୍ୱାଳାକୁ ରୂପ ଦେଇ ଲେଖିଛନ୍ତି—

ଏକେ କୁଳବତୀ ଧନୀ ତାହେ ସେ ଅବଲା ।
ଠେକଲ ବିଷମ ପ୍ରେମେ କତ ସବେ ଜ୍ୱାଲା ।।
ଅକଥନ ବେୟାଧି କହନ ନାହି ଯାୟ ।
ଯେ କରେ କାନୁର ନାମ ଧରେ ତାର ପାୟ ।। (ବୈ.ପ.,ପୃ ୩୯)

ରାଧାଙ୍କର ଅନ୍ତରରେ ପ୍ରିୟତମ ସର୍ବଦା ନାଚି ଉଠୁଛନ୍ତି । ଯେତେବାର ଦର୍ଶନ କଲେ ମଧ୍ୟ ପ୍ରିୟତମ ତାଙ୍କୁ ନୂତନ ବୋଧ ହେଉଛନ୍ତି । ଅନ୍ତରର ଯେଉଁ ଅନୁରାଗ ପ୍ରିୟତମଙ୍କୁ ନିତ୍ୟନୂତନ ଭାବରେ ଆବିଷ୍କାର କରିଛି, ବାରମ୍ବାର ଦର୍ଶନରେ, ବାରମ୍ବାର ଅନୁଭବରେ ତୃପ୍ତି କେଉଁଠି ? (୮୮) । ପଦକର୍ତ୍ତା ବଲ୍ଲଭ ସେଥିପାଇଁ ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ଜନମ ଅବଧି ହାମ୍ ରୂପ ନେହାରଲୁଁ
ନୟନ ନା ତିରପିତ ଭେଲ ।

(୮୭) କାଳିଦାସ ରାୟ, ପ. ସା., ପୃ. ୧୫୬

(୮୮) ତତ୍ରୈବ ପୃ. ୧୫୬

ଏହି ରୂପ ଦର୍ଶନ ଜନିତ ଅତିଶୟ ଆନନ୍ଦରେ ରାଧାଙ୍କ ଆଖିରୁ ଲୁହ ଝରିଯାଉଛି । ଏଣେ ପ୍ରିୟତମଙ୍କ ସହ ମିଳନର ଉତ୍କଣ୍ଠା, ଅନ୍ୟ ପଟରେ କୁଳବତୀ ଅଭିମାନସୁଲଭ ଧୃତି, ଲଜ୍ଜା ଓ ଗୁରୁଜନମାନଙ୍କର ଗାଞ୍ଜିଣ୍ଟଲୋଚନ କଣ୍ଟକ—ଏହି ଦ୍ୱନ୍ଦ୍ୱରେ ହୃଦୟ ତାଙ୍କର କ୍ଷତବିକ୍ଷତ ହୋଇ ପଡ଼ିଛି । ଗୋବିନ୍ଦ ଦାସଙ୍କର ରାଧା ଏହି ଦ୍ୱନ୍ଦ୍ୱର ଆଘାତରେ ଅତିଷ୍ଠ ହୋଇ କହିଉଠିଛନ୍ତି—

ତାହେ ଗୁରୁ ଦୁରୁଜନ ଲୋଚନ-କଣ୍ଟକ
ସଙ୍କଟ କତହୁ ବିଥାର ।
କୁଳବତୀ ବାଦ ବିବାଦ କରତ କତ
ଧୈରଯ ଲାଜ ବିଗାର ।। (ପ. ସା., ପୃ. ୧୫୧)

ପ୍ରଣୟିନୀ ରାଧା ଅନୁଭବ କରୁଛନ୍ତି—କୃଷ୍ଣ ପ୍ରେମରେ ଏକ ପଟରେ ରହିଛି ଯେପରି ଅମୃତ, ଅନ୍ୟ ପଟରେ ରହିଛି ସେହିପରି ବିଷର ଜ୍ୱାଳା (୮୯) । ଏହି ପ୍ରେମ ଓ ରୂପ ମୁଗ୍ଧତାର ନିଜସ୍ୱ ଜ୍ୱାଳାରେ ରାଧାଙ୍କର ପ୍ରାଣ ଛଟପଟ ହେଉଛି । ବଳରାମ ଦାସ ରାଧାଙ୍କ ମୁଖରେ ଏହି ଅନୁଭୂତିର ଚିତ୍ର ଦେଇଛନ୍ତି—

ଖାଇତେ ଯୋଯାଁଥ ନାଇ ନିନ୍ଦ ଦୂରେ ଗେଲ ଗୋ,
ହିୟା ଉହିଉହି ମନ ଝୁରେ ।
ଉଡ଼ୁ ଉଡ଼ୁ ଆନ ଗ୍ରାନ ଧକ ଧକ କରେ ପ୍ରାଣ
କି ହୋଇଲ ରହିତେ ନାରି ଘରେ । (ପ. ସା., ପୃ ୧୫୨)

ରାଧାଙ୍କର ଏ ଭାବାନ୍ତର, ପ୍ରାଣର ଦ୍ୱନ୍ଦ୍ୱ ଓ ବେଦନା ଚତୁରା ସଖୀ ଲଳିତାର ଦୃଷ୍ଟି ଏଡ଼ାଇ ପାରିନାହିଁ । ପରିହାସ ଛଳରେ ଲଳିତା କିଶୋରୀଙ୍କ ପ୍ରାଣର ପ୍ରତ୍ୟେକ ତନ୍ତ୍ରୀରେ ମୃଦୁ କମ୍ପନ ସୃଷ୍ଟିକରି ତାଙ୍କର ଅନ୍ତର ଉଦ୍‌ଘାଟନ କରିଛି । ତା'ର (ଲଳିତାର) ବୈଦଗ୍‌ଧ୍ୟପୂର୍ଣ୍ଣ ପ୍ରଶ୍ନଗୁଚ୍ଛରେ ସଖୀ ସମ୍ପର୍କରେ ରାଧାଙ୍କର ଅନ୍ୟମନସ୍କତା ଓ ଭ୍ରାନ୍ତି ଧରା ପଡ଼ିଯାଇଛି । ଲଳିତା ପରିହାସ କରି କହୁଛି—ବୃନ୍ଦାରଣ୍ୟର ମଦନ ତାଙ୍କ ହୃଦୟରେ ଭୂତପ୍ରାୟ ଆବିଷ୍ଟ ହୋଇଛନ୍ତି କି ? ସଖୀର ଉପସ୍ଥିତି ମାତ୍ରକେ ଯେ ଅଧୀର ଆଗ୍ରହରେ ପାଖେଇବା ପାଇଁ ଆଗେଇ ଆସୁଥିଲେ ଆଜି ସେହି ସଖୀର ଡାକ ପ୍ରତି ତାଙ୍କର ଧ୍ୟାନ ନାହିଁ, ପଦେ କଥା ବି ନାହିଁ । କେହି ଲୋକ ନଥିଲେ ମଧ୍ୟ ଭାବତନ୍ମୟତାରେ 'ଅଞ୍ଚଳ ଗ୍ରାଡ଼' ବୋଲି କହି ଉଠୁଛନ୍ତି । ହସ୍ତରେ ଲୀଳାପଦ୍ମ ଥିଲେ ମଧ୍ୟ ସଖୀକୁ ତାହା ଦେବାକୁ ସଙ୍କେତ ଦେଉଛନ୍ତି । ସଦନରେ ରହିଲେ ମଧ୍ୟ ପଥ ଗ୍ରାଡ଼ିବା ପାଇଁ ଜାହାକୁ (ଶ୍ରୀକୃଷ୍ଣଙ୍କୁ) ନିର୍ଦ୍ଦେଶ ଦେଉଛନ୍ତି । ସଖୀମାନଙ୍କ ସମକ୍ଷରେ ଏହା ପ୍ରକଟ କରିଦେବା ପାଇଁ କହିଲେ ପ୍ରକୃତସ୍ଥା ରାଧାଙ୍କ ଚକ୍ଷୁରୁ ଲୁହ ଝରି ପଡ଼ୁଛି ଏବଂ ମୁଖ ଅବନତ ହୋଇ ଯାଉଛି ।

(୮୯) ବିଷାମୃତେ ଏକତ୍ର ମିଶ୍ରଣେ (ପାଠାନ୍ତର : ବିଷାମୃତେ ଏକତ୍ର କରିଯା) ଯଦୁନନ୍ଦନ ଦାସ

ରାଧାଙ୍କର ଏ ଚିତ୍ତଚାଞ୍ଚଲ୍ୟ ଓ ଭାବାନ୍ତର ସଖୀମାନଙ୍କର ଉଦ୍‌ବେଗ ଓ ଉତ୍କଣ୍ଠା କମ୍ କରାଇ ନାହିଁ । ସଖୀମାନେ କିଛି ନ ଜାଣିବାର ଛଳନା କରି କୌତୂହଳୀ ହୋଇ ନାନା ପ୍ରଶ୍ନ କରିଛନ୍ତି । ବିଦଗ୍ଧ ମାଧବ ଭାବାବଲମ୍ବନରେ ରଚିତ ଗୋଟିଏ ଗୀତରେ (ମିତ ! ତୋ ଚିତ୍ତ ନୋହୁଛି କାହିଁରେ, ଗ୍ରଂ. ପୃ. ୬୭୦) ଜଣେ ସଖୀ କହୁଛି ଯେ ରାଧାଙ୍କ ଚିତ୍ତର ରହସ୍ୟ ଭେଦ ସେମାନଙ୍କ ପକ୍ଷରେ କଷ୍ଟକର । ସଖୀମାନଙ୍କ ହିତବାଣୀ ପ୍ରତି ତାଙ୍କର ଧ୍ୟାନ ନାହିଁ, କୌଣସି ବସ୍ତୁରେ ତାଙ୍କର ଶ୍ରଦ୍ଧା ଲକ୍ଷିତ ହେଉନାହିଁ । ସଖୀ ସଙ୍ଗ ତ୍ୟାଗ କରି ନିର୍ଜନରେ ସେ ସମସ୍ତ ଅତିବାହିତ କରୁଛନ୍ତି । ତାଙ୍କର ବ୍ୟାଧିଗ୍ରସ୍ତ ଦେହର ଶୀର୍ଣ୍ଣତା, ବନ୍ଧୂଳି ଅଧରର ବିବର୍ଣ୍ଣତା, ନେତ୍ରର ରକ୍ତିମା, ଉଷ୍ଣଶ୍ୱାସ, ଅଙ୍ଗରେ ନିର୍ହେତୁକ ପୁଲକ, ନୟନର ଅଶ୍ରୁ ସେମାନଙ୍କୁ ଚିନ୍ତାଗ୍ରସ୍ତ କରିଛି । କୃଷ୍ଣବସ୍ତୁରେ ତାଙ୍କର ଶ୍ରଦ୍ଧା ବଢ଼ି ଉଠିଛି । ତମାଳ ବୃକ୍ଷରେ ନିଜର ଦେହ ମିଳିତ କରାଉଛନ୍ତି । ନବଘନକୁ ଅପଲକ ନେତ୍ରରେ ଚାହିଁ ରହୁଛନ୍ତି (୯୦) । ନୀଳପଦ୍ମ ପ୍ରତି ଶ୍ରଦ୍ଧା ବଢ଼ି ଉଠିଛି । ସଖୀର ଚତୁର ପ୍ରଶ୍ନରେ ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ବର୍ଦ୍ଧିତ ଅନୁରାଗ ଏଠାରେ ବ୍ୟଞ୍ଜିତ ହୋଇଛି ।

ତାପରେ କବି ଶ୍ୟାମସୁନ୍ଦର ରାଧାଙ୍କର ପ୍ରୌଢ଼ପୂର୍ବରାଗରେ ବିରହର ଯେଉଁ ଦଶା ସଖୀମୁଖରେ ବର୍ଣ୍ଣନା କରିଛନ୍ତି ତାହା ଲୌକିକ ଓ ବୈଷ୍ଣବୀୟ ଅଲଙ୍କାର ଶାସ୍ତ୍ର ସମ୍ମତ (୯୧) । ରାଧାଙ୍କର ବିରହଦଶା ବର୍ଣ୍ଣନାରେ ଗୀତଗୋବିନ୍ଦ, ପଦାବଳୀ ସାହିତ୍ୟ, ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣି ପ୍ରଭୃତି ଓଡ଼ିଆ ବୈଷ୍ଣବ କାବ୍ୟ ପରମ୍ପରାର ପ୍ରତିଧ୍ୱନି ପଦେ ପଦେ ଲକ୍ଷିତ ହୁଏ ।

ଗୋଟିଏ ଗୀତରେ (ଅନ୍ତର ବେଦନା ଯାହା, ଗ୍ରଂ. ପୃ ୩୫୬) ରାଧା ସଖୀ ସମକ୍ଷରେ ନିଜର ବ୍ୟାଧିଦଶା ବର୍ଣ୍ଣନା କରି କହୁଛନ୍ତି ଯେ ବିଧାତାଙ୍କର ବିମୁଖତା ହେତୁ ତାଙ୍କଠାରେ ଯେଉଁ ବ୍ୟାଧିର ସଞ୍ଚାର ହୋଇଛି ତାହା ଦୁରାରୋଗ୍ୟ, ସେଥିରେ ପ୍ରାଣସଙ୍କଟ ସୁନିଶ୍ଚିତ । ସଖୀମାନଙ୍କର ପ୍ରତିକାର ପ୍ରୟାସ ବୃଥାମାତ୍ର । ଏ ବ୍ୟାଧିର ନିଦାନ (ହେତୁ) ମୁଖରେ କହିବାକୁ ଲଜ୍ଜା ଜାତ ହୁଏ ।

"ଇୟଂ ସଖୀ ସୁଦୁଃସାଧ୍ୟା ରାଧାହୃଦୟବେଦନା ।
କୃତା ଯତ୍ର ଚିକିତ୍ସାପି କୁତ୍ସାୟାଂ ପର୍ଯ୍ୟବସ୍ୟତି ।"

ଏହି ଶ୍ଳୋକର ଭାବାବଲମ୍ବନରେ ଗୀତଟି ରଚିତ ହେଲେ ମଧ୍ୟ ପ୍ରତ୍ୟକ୍ଷ ପ୍ରକାଶ ଭଙ୍ଗୀ ଓ ନୀରସ ପଦଯୋଜନା ହେତୁ ଗୀତଟିର ଜନକତ୍ୱ ସମ୍ପର୍କରେ ସନ୍ଦେହ ଜାତ ହୁଏ ।

ଅନ୍ୟ ଏକ ଗୀତରେ (କି ପଡ଼ିଗଲୁ ଶ୍ୟାମ ଆସୁଛେ ଆହା ! ଗ୍ରଂ. ପୃ ୩୫୫,) ଶ୍ୟାମ ବିରହଶୀର୍ଣ୍ଣା ଶ୍ରୀମତୀଙ୍କ ପ୍ରତି ସମବେଦନାରେ ସଖୀ କହୁଛି—ସେହି ପ୍ରିୟତମ ଶ୍ୟାମଙ୍କର ନାମ ଜପି ଜପି ସେ ଭୂଷଣ, ଭୋଜନ ଓ ଶୟନ ତ୍ୟାଗ କଲେଣି । ପ୍ରେମିକ ପ୍ରତି

(୯୦) ବି. ଚି. ଗ୍ରନ୍ଥ ୫୭ ଓ ପ. ସା. ପୃ-୯୧

(୯୧) ଉ. ନୀ. ପୂର୍ବରାଗ ପ୍ରକରଣ, ପୃ-୮୪୫; ଗୌ. ବୈ. ଦ, ୫ମ ଖଣ୍ଡ, ପୃ-୩୫୯୩

ଆକ୍ଷେପୋକ୍ତି କରି କହୁଛି—ଶିଶୁବୟସରେ ଯେ କ୍ଷୀର ପାନକରି ନାସିକାଗ୍ର କଟିଛୁ, ଯେ ଧୂର୍ତ୍ତମାନଙ୍କର ଗୁରୁ ଓ ଶଠମାନଙ୍କର ଶିରୋମଣି; ସେହି ଶ୍ୟାମ ସମ୍ପର୍କରେ ତାଙ୍କର ସତର୍କବାଣୀ ପ୍ରତି ଉପେକ୍ଷା କରି ରାଧା ଆଜି କାନନ କୁରଙ୍ଗୀ ଠାରୁ ବଳି ଦଶା ଭୋଗୁଛନ୍ତି। ଭୂମି ଶଯ୍ୟା ସାର ହୋଇଛି। ଦିବାନିଶି ନେତ୍ରରୁ ଶ୍ରାବଣର ଧାରା ଛୁଟୁଛି। କାମର ଦାରୁଣ ପୀଡ଼ା ସହ୍ୟ କରି ନିଜର ଧୈର୍ଯ୍ୟକୁ ନିନ୍ଦା କରୁଛନ୍ତି (୯୨)। ପଦକର୍ତ୍ତା ଘନଶ୍ୟାମ ଦାସଙ୍କର ପଦର କେତୋଟି ପଙ୍କ୍ତି ସ୍ମରଣକୁ ଆସିଯାଏ, ଯଥା—

ସଖୀଗଣ ସଙ୍ଗେ ନାହି ହାସ ପରିହାସ।
ଅନୁଖଣ ଧରଣୀ ଶୟନେ ଅଭିଲାଷ ॥
ଏ ହରି ସବ ଧରି ପେଖଲ ତୋୟ।
ତବ ଧରି ଦିନେ ଦିନେ ଐଛନ ହୋୟ ॥
ନୟନ କମଲେ ଜଲ ଗଲୟେ ସଦାଇ।
ବିରଲେ ବସିୟା ସେ ତୋହରି ଗୁଣ ଗାଇ ॥
ତଁହି ସବ ପ୍ରିୟ ସଖୀ ଆଓତ କୋଇ।
ଚରଣେ ଲିଖୟେ ମହୀ ନିଶବଦ ହୋଇ ॥
ଯତନେ ପୁଛୟେ ସବ ମରମକ ବୋଲ।
ଉତ୍ତର ନା ଦେଇ ରୋୟ ଉତରୋଲ। (ବୈ. ଚ. ପ)

ରାଧାଂକର ବିରହ ଦଶା ଯେତେବେଳେ ସଖୀମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଏ, ଆଉ ପ୍ରତିକାର ବିଧାନ ନିମିତ୍ତ ସେମାନେ ଅନନ୍ୟୋପାୟ ହୋଇ ଶ୍ରୀକୃଷ୍ଣଙ୍କ ନିକଟରେ ଉଦ୍‌ବିଗ୍ନ ଚିତ୍ତରେ ତାଂକର ଅବସ୍ଥା ବର୍ଣ୍ଣନା କରନ୍ତି। ରାଧାଂକର 'ନବମଦଶା' (ମୋହାବସ୍ଥା) ବର୍ଣ୍ଣନା କରି ଦୂତୀ କୃଷ୍ଣଙ୍କୁ କହୁଛି—ରାଧାଂକର ଜୀବନ ବର୍ତ୍ତମାନ ସଂଶୟାପନ୍ନ। ବିରହତାପ ପ୍ରଶମନ ନିମିତ୍ତ କିଶଳୟ ଶଯ୍ୟା ରଚନା କରାଯାଇଛି, କିନ୍ତୁ ତାପ ପ୍ରଶମିତ ହେବା ଦୂରେ ଥାଉ, ସ୍ମର କୋପ ପ୍ରଚଣ୍ଡ ହୋଇଉଠୁଛି। ଚନ୍ଦ୍ର, ଚନ୍ଦନ ଓ ମଳୟ ସ୍ୱଭାବ ଶୀତଳତା ତ୍ୟାଗ କରି ଜ୍ୱାଳାରେ ତାଙ୍କୁ ଦଗ୍ଧ କରୁଛନ୍ତି। ତାଙ୍କର (ଶ୍ରୀକୃଷ୍ଣଙ୍କର) ଦର୍ଶନ ପାଇଁ କୌଣସି ମତେ ସେ ଜୀବନଧାରଣ କରି ରହିଛନ୍ତି। ପ୍ରିୟତମଙ୍କର ନାମୋଚ୍ଚାରଣ ତାଂକ ପକ୍ଷରେ ଅସମ୍ଭବ ହେଲାଣି, ବହୁ କଷ୍ଟରେ କେବଳ 'କୃ' ବର୍ଣ୍ଣର ଅର୍ଦ୍ଧମାତ୍ର ଉଚ୍ଚାରଣ କରୁଛନ୍ତି। କେଉଁ ମୁହୂର୍ତ୍ତରେ କ'ଣ ଘଟିଯିବ, ତାହା କିଏ କହିପାରେ? (ଶୁଣ ହେ ନଟନାଗର, ଗ୍ରଂ. ପୃ. ୬୫୪)।

ଅନ୍ୟ ଦୁଇଟି ଗୀତରେ (ଆହେ ନାଗରବର, ଗ୍ରଂ., ପୃ ୬୬୧ ଏବଂ ହେ ମାଧବ ! ଶୁଣ ଦୁଃଖ-ସମାଚାର, ଗ୍ରଂ: ପୃ ୬୮୦) ସଖୀ ଶ୍ୟାମଙ୍କ ନିକଟରେ ଶ୍ରୀମତୀଙ୍କର ବିରହର ଦଶମୀ ଦଶା (ମୃତ୍ୟୁ) ବର୍ଣ୍ଣନା କରୁଛି। ଉଭୟ ଗୀତରେ ରାଧାଙ୍କର ଅବସ୍ଥାର ସମ ଚିତ୍ରଣ

(୯୨) କବିସୂର୍ଯ୍ୟଙ୍କର ଉନ୍ମାଦଦଶା ଶୀର୍ଷକ ଗୀତ ପୃ ୬୭୪

କରାଯାଇଛି । ସଖୀର ବର୍ଣ୍ଣନାନୁଯାୟୀ ରାଧା ହୋଇଛନ୍ତି ମୋହଗ୍ରସ୍ତା । ଯମୁର ଅଶ୍ରୁର ଫଳରେ କୃଷ୍ଣ ଚିକୁର ଦାମ ମଳିନ ଓ ବିପର୍ଯ୍ୟସ୍ତ ଏବଂ ଦେହ ଶୀର୍ଣ୍ଣ ହୋଇ ପଡ଼ିଛି । କରତଳରେ ଗଣ୍ଡ ସ୍ଥାପନ କରି ସେ ଦାରୁଣ ଚିନ୍ତାମଗ୍ନ ଏବଂ ଇନ୍ଦୀବର ନେତ୍ର ଯୁଗଳ ସର୍ବଦା ଅଶ୍ରୁମ୍ଳାନ । ଭୂମିରେ ଲୋଟି ଯାଇ କ୍ଷଣକୁ କ୍ଷଣ ରୁଦ୍ଧଶ୍ୱାସ ଏବଂ ପଦ୍ମଦଳ ଶଯ୍ୟାରେ ବେଳେବେଳେ ସଂଜ୍ଞାଶୂନ୍ୟ ହୋଇପଡ଼ୁଛନ୍ତି । କୌଣସି ସଖୀର 'କୃଷ୍ଣ-ଆଗମନ' ସମ୍ବାଦରେ ପିଣ୍ଡରେ ପ୍ରାଣ ଫେରି ପାଇ ତାଙ୍କ ପ୍ରତୀକ୍ଷାରେ ବସି ରହି ଅଦର୍ଶନରେ ବିପଦର ସମ୍ମୁଖୀନ ହୋଇଥିବେ । ସଖୀମାନଙ୍କର ବିକଳ କ୍ରନ୍ଦନରେ ପୁରୀ ପୂରି ଉଠିଛି । ତାଙ୍କର ସାନୁକମ୍ପ ଉପସ୍ଥିତିହିଁ ଏକମାତ୍ର କାମ୍ୟ ।

ଶ୍ୟାମବିରହଶୀର୍ଣ୍ଣା ପୂର୍ବରାଗଦଶାପ୍ରାପ୍ତା ରାଧାଙ୍କର ଅନୁରୂପ ଚିତ୍ର ଗୀତଗୋବିନ୍ଦ, ଜଗନ୍ନାଥ ବଲ୍ଲଭ ନାଟକ, ବିଦଗ୍ଧ ମାଧବ, ପଦାବଳୀ ସାହିତ୍ୟ ଏବଂ ଓଡ଼ିଆ ବୈଷ୍ଣବ କାବ୍ୟ ଓ ସଙ୍ଗୀତରେ ଇତସ୍ତତଃ ପରିଦୃଷ୍ଟ ହୁଏ । ଗୀତଗୋବିନ୍ଦରେ ସଖୀ ଯମୁନାତୀରସ୍ଥ ବେତସ କୁଞ୍ଜରେ ଉପବିଷ୍ଟ ପ୍ରେମୋଦ୍‌ଭ୍ରାନ୍ତ ମାଧବଙ୍କ ନିକଟରେ ବିରହିଣୀ ରାଧାଙ୍କର ଅବସ୍ଥା ବର୍ଣ୍ଣନା କରି କହୁଛି—

ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରମ୍ ।
ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରମ୍ ।
ସା ବିରହେ ତବ ଦୀନା ।
ମାଧବ ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା । ୧ ।
ଅବିରଳନିପତିତମଦନଶରାଦିବ ଭବଦବନାୟ ବିଶାଳମ୍ ।
ସ୍ୱହୃଦୟମର୍ମଣି ବର୍ମ କରୋତି ସଜଳନଳିନୀଦଳଜାଳମ୍ । ୨ ।

× × ×

ବହତି ଚ ବଳିତ-ବିଲୋଚନ-ଜଳଧରମାନନକମଳମୁଦାରମ୍ । ୫ ।

(ଗୀ. ଗୋ., ୪।୮; ପୃ. ୫୪-୫୬)

ଅର୍ଥାତ୍ ରାଧା ଚନ୍ଦନ ଓ ଚନ୍ଦ୍ରକିରଣ ନିନ୍ଦା କରୁଛନ୍ତି । ଯେଉଁମାନଙ୍କର ସ୍ୱଭାବ ଶୀତଳ ସେମାନେ ଅଗ୍ନିବତ୍ ଜ୍ୱାଳାବିସ୍ତାର କରି ତାଙ୍କୁ ଅଧୀର କରୁଛନ୍ତି । ଚନ୍ଦନତରୁ କୋଟରସ୍ଥିତ ସର୍ପଗଣର ସଙ୍ଗହେତୁ ମଳୟ ପବନ ତାଙ୍କୁ ବିଷମୟ ପ୍ରତୀତ ହେଉଛି । ବିରହରେ ଅତିଶୟ କାତର ହୋଇ କାମର ବାଣବର୍ଷଣ ଭୟରେ ତୁମର ଭାବନାରେ ସେ ତନ୍ମୟ ହୋଇ ଯାଉଛନ୍ତି । ସେ ମଦନ ଶରାଘାତରୁ ନିଜ ହୃଦୟ ମଧ୍ୟସ୍ଥ ତୁମକୁ ରକ୍ଷା କରିବା ପାଇଁ ବର୍ମତୁଲ୍ୟ ବିସ୍ତୃତ ପଦ୍ମପତ୍ରରେ ବକ୍ଷ ଆଚ୍ଛାଦନ କରୁଛନ୍ତି । × × × ତାଙ୍କର ନୟନ ରୂପକ ମେଘରୁ କମନୀୟ ବଦନକମଳରେ ଅବିରଳ ଜଳଧାର (ଅଶ୍ରୁ) ଝରି ପଡ଼ୁଛି ।

ରାୟ ରାମାନନ୍ଦଙ୍କର ଜଗନ୍ନାଥ ବଲ୍ଲଭ ନାଟକରେ ଭଗବତୀ ମଦନିକା (ବିଦଗ୍ଧ ମାଧବରେ ପୌର୍ଣ୍ଣମାସୀ) ଶ୍ରୀକୃଷ୍ଣଙ୍କ ନିକଟରେ ରାଧାଙ୍କର ବିରହ ବେଦନା ବର୍ଣ୍ଣନା କରି କହୁଛନ୍ତି—

ବନ୍ଧୁ ! ସାପି ଲାବଣ୍ୟମାତ୍ରଶେଷା କଲ୍ୟାଣୀ । ୨୩ ।

ତଥାହି

ଶିଳାପଟ୍ଟେ ହୈମେ ତ୍ରୁଟ୍ୟକରଣଚନ୍ଦନରସୈ-
ରସ୍ୟଂ ତନ୍ୱୀ ପିଷ୍ଟ୍ୱା ତନୁମନୁବିଲେପଂ ମୃଗୟତେ ।
କ୍ଷଣଂ ସ୍ଥିତ୍ୱା ହା ହା ସରସ ବିସିନୀପତ୍ରଶୟନେ
ସମୁତ୍ତିଷ୍ଠୌ ଯାବନ୍ତ୍ୱଲତି ନ ତଦାନ୍ତର୍ମରମିଦମ୍ । ୨୪ ।

ଜରବଧି ନୟନ ସଲିଲ ଉତସାଦେ ।
ପତତି କୃଶା ପରିଚଲତି ଚ ପାଦେ ।
ମାଧବ ଗୁରୁତର ମଦନଜିତବାଧା ।
ହରି ହରି କଥମପି ଜୀବତି ରାଧା । ଧ୍ରୁ । (୧୩)

ଅର୍ଥାତ୍ ହେ ବନ୍ଧୁ ! ସେ କଲ୍ୟାଣୀର (ରାଧାର) ଲାବଣ୍ୟ ମାତ୍ର ଶେଷ । ସେ ଅତିଶୟ କ୍ଷୀଣା ହୋଇଛି । ହେମଶିଳାରେ ଚନ୍ଦନ ଘର୍ଷଣ କରି ତନୁରେ ଅନୁଲେପନ ଦେବାକୁ ଚେଷ୍ଟା କରୁଛି । ସଖୀଗଣ ସଜଳ ପଦ୍ମଜଳରେ ଶଯ୍ୟାରଚନା କରି ସେଥିରେ ତାକୁ ଶୟନ କରାଉଛନ୍ତି, ଯେ ପର୍ଯ୍ୟନ୍ତ ଦେହ ତାପରେ ପଦ୍ମଦଳଗୁଡ଼ିକ ଶୁଷ୍କ ନ ହୋଇଛନ୍ତି । ସେ କ୍ଷଣକାଳ ରହି ପୁଣି ହାହାକାର କରି ଉଠିଯାଉଛି । ମାଧବ ! ମଦନର ବାଧା ଅତି ଗୁରୁତର । ହରି ହରି ! ରାଧା ଅତି କଷ୍ଟରେ ଜୀବନ ଧାରଣ କରିଛି । ତା'ର ନେତ୍ରଜଳରେ ଭୂମି ସିକ୍ତ ହୋଇ ପଡ଼ୁଛି ।

ବିଦଗ୍ଧ ଚିନ୍ତାମଣିରେ ପୂର୍ବରାଗରେ ଅଭିମନ୍ୟୁ ରାଧାଙ୍କର ଦଶାବଚେଷ୍ଟା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

ଉପଶ୍ୱର ପ୍ରସ୍ତର ସଜନୀ କରୁଛନ୍ତି ।
ଶତଦଳ ଦଳେ ଗୁଣୀମଣି ଶୋଇଛନ୍ତି ।
ବ୍ୟସ୍ତ ଦିଶୁଛି ଏସନ ।
ମାଳାମଣ୍ଡଳରେ ଦ୍ୱିତୀୟ ଶଶୀ କି ପତନ ? । ୪ ।

( ବି. ଚି: ଛା. ୨୬ )

ପୁଣି ଅନ୍ୟତ୍ର—

ରତି ପତି ଗ୍ରତି କରତିବାରେ ।
ରସ ହ୍ରାସ ଗ୍ରାସ ଦେଶ ବାସରେ ।
ରହିତ ଆଦର ହେ ।
ରସାରସି ସାରେ ନଶି ବାସର । ୧ ।

× × ×

(୧୩) ରାମ ନାରାୟଣ ବିଦ୍ୟାରତ୍ନେନାନୁବାଦିତଂ ଜଗନ୍ନାଥ ବଲ୍ଲଭ ନାଟକମ୍, ପୃ-୮୧ ।

ବଶୀଣ୍ଠି ଏମନ୍ତ ଯେ ।
ବଧୂ ଦ୍ୱିଜସ୍ତ୍ରୀ ଉଥିରେ ଯେମନ୍ତ । ୩ ।
ଧଗ୍ରଣସ୍ତନରେ ସରଲ ଧନ ।
ଧଗ୍ରଜନ ପଗ୍ର ମନ ବମନ ।
ଧବଲକର ପଗ୍ର ଦଶେ ଚନ୍ଦ୍ର ।
ଧର ଧର ମିତ ଜାତ ବଦନୁ ।
ଧଗ୍ରବ କେ ଗ୍ରହ ଗୋ ।
ଧଗ୍ରମଣ୍ଡନାର ଦେଖି ବପତ୍ତି । ୪ । (୧୪)

ପ୍ରୌଢ଼ ପୂର୍ବଗ୍ରଗରେ ଗ୍ରଧାଙ୍କର ବରହଦଶା ସମ୍ବଳିତ ଗୀତର ସଂଖ୍ୟା ତୁଳନାରେ ଶ୍ରୀକୃଷ୍ଣଙ୍କ ବରହଦଶା ସମ୍ପର୍କିତ ଗୀତର ସଂଖ୍ୟା ନଗଣ୍ୟ କହିଲେ ଚଳେ । ଗ୍ରମକୃଷ୍ଣ ଓ କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ଏ ପ୍ରକାର ଗୀତ ନାହିଁ । ବାବାଜୀ ବୈଷ୍ଣବ ଚରଣ ସଂପାଦିତ ଗ୍ରନ୍ଥାବଳୀରେ ଏ ପ୍ରକାର ଦୁଇଟି ଗୀତ ରହିଛି । ଗୋଟିଏ ଗୀତରେ (ବ୍ରଜରେ କେ ଅଛୁ ସତେ, ଗ୍ରଂ. ପୃ. ୩୮୭) ଶ୍ରୀକୃଷ୍ଣପକ୍ଷୀୟା ଦୂତୀ ବୃନ୍ଦାଙ୍କ ମୁଖରେ ଶ୍ରୀକୃଷ୍ଣଙ୍କର ପୂର୍ବଗ୍ରଗ ଦଶା ବର୍ଣ୍ଣନା କରାଯାଇଛି । ବୃନ୍ଦା କହୁଛନ୍ତି— ଗ୍ରଧାଙ୍କର ଗୁଣ ଗୁଣି ଅଶ୍ରୁଳ ନୟନରେ ଶ୍ରୀକୃଷ୍ଣ ନିଜର ବ୍ୟାକୁଳତା ପ୍ରକାଶ କରୁଛନ୍ତି । ବରହରେ ଉନ୍ମାଦପ୍ରାପ୍ତ ହୋଇ ବେଳେବେଳେ ସଂଜ୍ଞାଶୂନ୍ୟ ହୋଇ ପଡ଼ୁଛନ୍ତି । ଅନୁଗ୍ରଗ-ଜନିତ ଉତ୍କଣ୍ଠା ହେତୁ ଦେହ ଓ ମନୋଧର୍ମ ବିସ୍ମୃତ ହୋଇ ପଡ଼ୁଛନ୍ତି । ଶ୍ରୀମତୀଙ୍କ ବରହରେ ଲୀଳାପ୍ରିୟ ଶ୍ୟାମ ଝାଉଁଳିବା ତମାଲର ମ୍ଳାନଶ୍ରୀ ଧାରଣ କଲେଣି (୧୫) ।

ଅନ୍ୟ ଗୀତଟିରେ (ଶ୍ୟାମ ହେ ! ନବ ନାଗର ଗ୍ରଜ, ଗ୍ରଂ ପୃ ୬୬୮) କବିସୂର୍ଯ୍ୟଙ୍କର ଲଳିତା ପରି ଦୂତୀ ଶ୍ରୀକୃଷ୍ଣଙ୍କର ବ୍ୟାଧିଦଶା ଲକ୍ଷ୍ୟ କରି ବ୍ୟାକୁଳାବେଗରେ ପ୍ରଶ୍ନବାଣରେ ତାଙ୍କୁ ବ୍ୟସ୍ତ କରି ପକାଇଛି । ମୁଖର ବିପର୍ଯ୍ୟତା, ଜୃମ୍ଭା ଓ ଦୀର୍ଘଶ୍ୱାସ ଲକ୍ଷ୍ୟ କରି ଅସୁସ୍ଥତା ସମ୍ପର୍କରେ ପ୍ରଶ୍ନ କରିଛି । ତାଙ୍କର ଅଶ୍ରୁ, ଚିନ୍ତା ଓ ଶୀର୍ଣ୍ଣତାରେ ବ୍ୟସ୍ତ ହୋଇ ଅନ୍ତରର ବେଦନା ଫିଟାଇ କହିବା ପାଇଁ ସନିର୍ବନ୍ଧ ଅନୁରୋଧ କରିଛି । ଗୀତଟିରେ କବିସୂର୍ଯ୍ୟଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର 'ଙ' (ନୂଆନଟ ପଟଳୀ ମୁକୁଟ) ଓ 'ଝ' ଗୀତର (ଝଗଡ଼ ମାନ ହେଲ ହେ ଶ୍ୟାମ) ପରିକଳ୍ପନା, ଭାବ, ଛନ୍ଦ, ପଦଗୁମ୍ଫନ ଓ ଆବେଗଧର୍ମିତାର ପ୍ରତିଧ୍ୱନି ପରିଲକ୍ଷିତ ହୁଏ ।

ଗୀତଗୋବିନ୍ଦରେ ସଖୀ ଗ୍ରଧିକାଙ୍କ ନିକଟରେ ମାଧବଙ୍କର ବିରହ ଦଶା ବର୍ଣ୍ଣନା କରି କହୁଛି—

(୧୪) ଅଧିକ ଦୃଷ୍ଟାନ୍ତ ନିମନ୍ତେ ବ. ଚ. ର ୧ମ, ୧୧ଶ, ୨୫ଶ, ୩୮ଶ, ୩୧ଶ ଓ ୫୨ଗ୍ରନ୍ଦ

(୧୫) କ. ସୂ. ଗ୍ରଂ., ୪ର୍ଥ ମୁଦ୍ରଣ, ୧୯୪୭ ଓ କ. ଚ. ଚଂ., 'ଝ' ଗୀତ ।

ବହତି ମଲୟସମୀରେ ମଦନମୁପନିଧାୟ ।
ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ ॥
ସଖି, ସୀଦତି ତବ ବିରହେ ବନମାଳୀ ।୨। ଧ୍ରୁ ।
ଦହତି ଶିଶିରମୟୂଖେ ମରଣମନୁକରୋତି ।
ପତତି ମଦନବିଶିଖେ ବିଲପତି ବିକଲତରୋଽତି ।୩।
ବସତି ବିପିନବିତାନେ ତ୍ୟଜତି ଲଳିତଧାମ ।
ଲୁଠତି ଧରଣିଶୟନେ ବହୁ ବିଲପତି ତବ ନାମ ।୪।

(ଗୀ. ଗୋ., ୪।୧୦, ପୃ. ୬୭-୬୮)

ପଦକର୍ତ୍ତା ଗୋବିନ୍ଦ ଦାସ ରାଧାଙ୍କ ସମୀପରେ ସଖୀ ମୁଖରେ ଶ୍ୟାମଙ୍କର ଅବସ୍ଥା ବର୍ଣ୍ଣନା କରିଛନ୍ତି—

କଏଛେ ହିମକର-କର କଏଛେ ନିରଝର-ଝର
କଏଛେ କୁସୁମିତ ପରୟଙ୍କ ।
କଏଛେ କମଲସ୍ତ କଏଛେ ମଲୟ ସମୀରଣ
ଜ୍ୱଲତହିଁ ଚନ୍ଦନ ପଙ୍କ ।
ଅବ ଅବଧାରଲୁଁ ରେ କାନୁ ଉପ୍ସା ପରଶକ ରଙ୍ଗ ।

(ପ. ସା., ପୃ୯୩)

ବଦଗ୍ଧ ଚନ୍ତାମଣିରେ ଅଭିମନ୍ୟୁ ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କ ମୁଖରେ ତାଙ୍କର ସ୍ମର-ପୀଡ଼ାର ଚିତ୍ର ପ୍ରଦାନ କରିଛନ୍ତି, ଯଥା—

ରାଧା ନା କହିତ ହେଉଛୁ ମୁଁ ହିତ ଦହୁଛୁ ଦେହିତ ମାରଶରେ ।
ଆଜ ମୋର ଜୀବ ଯମପୁର ଯିବ ନିଶ୍ଚୟ ରାଜୀବମୁଖୀ ନାରେ ।୨।
ବଜ୍ରକ ପଡ଼ିଲା ସାହସ ଉଡ଼ିଲା ଚେତନା ବୁଡ଼ିଲା ରହୁଁ ରହୁଁ ।
ଜ୍ଞାନ ନ ରହିଲା ଲୋତକ ବହିଲା ମରମ ଦହିଲା କାମ ଯହୁଁ ।୪।
ସେ କୃଷ୍ଣଗୃମଙ୍ଗି-କେଶୀ ନା ସୁମର ନିଷ୍ଠା ଯିବ ମର ନ ପାଇଲେ ।
ପ୍ରାଣ ପ୍ରୟାଗରେ କି ଶିବ ନଗରେ କି ଗଙ୍ଗା ସାଗରେ ଦେବି ବଳେ ।୧୨।

(ବି. ଚି., ଗ୍ର.୧୬)

**କଳଙ୍କିନୀ ରାଧା**—ଶ୍ୟାମଙ୍କ ପ୍ରତି ରାଧାଙ୍କର ଅନୁରାଗ ସ୍ୱତଃସ୍ଫୂର୍ତ୍ତ ଓ ଦୁର୍ନିବାର । ନାମ ଓ ମୁରଲୀନାଦ ଶ୍ରବଣ ଏବଂ ଅଲୋକସାମାନ୍ୟ ରୂପ ଦର୍ଶନ ଫଳରେ ରାଧାଙ୍କର ଜନ୍ମଜନ୍ମାନ୍ତର ବାସନା ଉଦ୍‌ବୁଦ୍ଧ ହୋଇଉଠିଛି । ଦେହ, ମନ ଓ ପ୍ରାଣ ଅଯାଚିତ ଭାବରେ ତାଙ୍କଠାରେ ନିବେଦିତ ହୋଇଛି । ପ୍ରିୟତମଙ୍କର ଦର୍ଶନ ପାଇଁ ରାଧାଙ୍କର ଅହର୍ନିଶ କେତେ ଚିନ୍ତା, କେତେ ଭାବନା, କେତେ ଲୀଳା ବୈଚିତ୍ରୀ, ଅଥଚ ରାଧା ହେଉଛନ୍ତି ସତୀ, ସାଧ୍ୱୀ, କୁଳବଧୂ । ଶାଶୁ, ନଣନ୍ଦ, ସ୍ୱାମୀ ଓ ଗୁରୁଜନଙ୍କର ସଂସାର

ମଧ୍ୟରେ ଅହୈତୁକୀ ପ୍ରୀତିର ବନ୍ଧନ କି ଦୁର୍ବିସହ, ରାଧା ମର୍ମେ ମର୍ମେ ଅନୁଭବ କରିଛନ୍ତି, ପଦେ ପଦେ ଦାରୁଣ ଯନ୍ତ୍ରଣା ଭୋଗିଛନ୍ତି । କୁଳବଧୂର ଅଭିମାନ ଓ ସମାଜର ଅନୁଶାସନୀ ଦୃଷ୍ଟିର ତୀକ୍ଷ୍ଣତା ଅତିକ୍ରମ କରିବାର ଦୁଃସାହସ ଯେ ପର୍ଯ୍ୟନ୍ତ ନ ଆସିଛି, ସେ ପର୍ଯ୍ୟନ୍ତ ଶ୍ୟାମ-ପ୍ରେମ ତାଙ୍କ ପକ୍ଷରେ ଜ୍ୱାଳାମୟ, ପ୍ରୀତି ବେଦନା ବଳୀୟାର । ସେଥିପାଇଁ କୁଳବତୀ ପକ୍ଷରେ କୁଳଟା ଅପବାଦ, ସମାଜ ନିନ୍ଦା, ଲୋକ ନିନ୍ଦା ହୋଇଛି ଦୁର୍ବିସହ । ସେହି ବିଷମ ପ୍ରୀତି ଓ ଶ୍ୟାମ ସ୍ନେହ ଭୁଲିବାର ଉପାୟ ସମ୍ପର୍କରେ ବ୍ୟାକୁଳ ଚିତ୍ତରେ ସଖୀଙ୍କୁ ପ୍ରଶ୍ନ କରିଛନ୍ତି । ରାଧାଙ୍କର ପୂର୍ବରାଗର ଏହି ଲୀଳା ବୈଚିତ୍ର୍ୟକୁ ଭିତ୍ତି କରି ପ୍ରାୟ ନ'ଟି ଗୀତ ରଚିତ ହୋଇଛି । ଗୀତ ଗୁଡ଼ିକରେ ଶ୍ୟାମ ପ୍ରୀତି ସତ୍ତ୍ୱେ ସମାଜର ଅନୁଶାସନ, କୁଳଧର୍ମ ପାତିବ୍ରତ୍ୟ ତଥା ସତୀତ୍ୱ ସମ୍ପର୍କରେ ରାଧାଙ୍କର ଭୀତି-ଚେତନା ସ୍ପଷ୍ଟ ହୋଇ ଉଠିଛି ତାଙ୍କର ବ୍ୟାକୁଳତାପୂର୍ଣ୍ଣ ଶଙ୍କିତ ଭଙ୍ଗିରେ ।

ଗୋଟିଏ ଗୀତରେ (ଲାଗି ଲାଗି ସଙ୍ଗିନି ! ମୋତେ; ଗ୍ରଂ. ପୃ. ୩୭୩) ଲଳିତା ପ୍ରତି ଆକ୍ଷେପୋକ୍ତି କରି ରାଧା କହୁଛନ୍ତି ଯେ ତାଙ୍କର ଅନିଚ୍ଛା ସତ୍ତ୍ୱେ ଫୁଲ ତୋଳା ବ୍ୟାଜରେ ସେ ତାଙ୍କୁ କୁଞ୍ଜ କାନନକୁ ଭୁଲାଇ ନେଇ ତାଙ୍କର ଅଲଙ୍ଘ୍ୟ ପାତିବ୍ରତ୍ୟ ଶିରରେ କୁଠାରାଘାତ କରିଛି । ପ୍ରିୟତମ ଶ୍ୟାମ ହସି ହସି ତାଙ୍କ ସମକ୍ଷରେ ବସି ତାଙ୍କୁ ମାଳା ଦେବାର ପ୍ରସଙ୍ଗ ବୃନ୍ଦା ଓ ତାଙ୍କର ସଖୀମାନେ ଅବଗତ ଅଛନ୍ତି । ଏ ସମ୍ବାଦ ଗୋପ, ଗୋପାଙ୍ଗନା, ମାନ୍ୟଗଣ୍ୟା ଭଗବତୀ ପୌର୍ଣ୍ଣମାସୀଙ୍କର ଶ୍ରୁତିଗୋଚର ହେଲେ ଚନ୍ଦ୍ରାବଳୀ ପରି ତାଙ୍କୁ ଆଉର ସମାଜରେ ନିନ୍ଦିତ ହେବାକୁ ହେବ ।

ଯେଉଁ ଶ୍ୟାମଙ୍କର ମୂହୂର୍ତ୍ତମାତ୍ର କଟାକ୍ଷପାତରେ ତାଙ୍କ ଅଙ୍ଗରେ ବେପଥୁର ସଞ୍ଚାର ହୁଏ, ପାତିବ୍ରତ୍ୟର ଧୈର୍ଯ୍ୟ ତୁଟିଯାଏ, ସେ କପରି ଏ ଗୋପ ସମାଜରେ ଜାତି କୁଳଧର୍ମ ରକ୍ଷା କରି ଚଳିବେ ! ଶାଶୁ ଜରତୀ ଜଟିଳାର କର୍ଣ୍ଣରେ ବ୍ରଜାଙ୍ଗନାଙ୍କ ମୁଖରୁ ସମ୍ବାଦ ପହଞ୍ଚିଲେ ଜାତି ଓ କୁଳରୁ ନିର୍ବାସନ ନିଶ୍ଚିତ । ତାଙ୍କର ସାମାଜିକ ବ୍ୟକ୍ତିତ୍ୱରେ ଭୀତି-ସଞ୍ଚାରକାରୀ ଶ୍ୟାମଙ୍କର ଆଗମନ ଯେପରି ରଜନୀ ଭାଗରେ ନ ହୁଏ, ତା'ର ବ୍ୟବସ୍ଥା କରିବାକୁ ସେ ସଖୀ ନିକଟରେ ବ୍ୟାକୁଳ ମିନତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କର ଦୁର୍ବିସହ ପ୍ରୀତି ପ୍ରତି ଦୂରରୁ ନମସ୍କାର ଜଣାଇଛନ୍ତି (ଜୁହାର 'ସେ ମୋହନ ପ୍ରୀତିକି, ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପୃ-୩୭୮) ।

ରୂପ ଓ ପ୍ରଣୟମୁଗ୍ଧା ଶ୍ରୀମତୀଙ୍କ ପକ୍ଷରେ ଲୋକନିନ୍ଦାର ଆଶଙ୍କା ହୋଇଛି ଅଙ୍କୁଶ ତୁଲ । ହାତେ ମାପି ଗୃହଖଣ୍ଡେ ଗୃହିବା ସତ୍ତ୍ୱେ ବଘ୍ନ-ଅକ୍ଟୋପାସ୍‌ର ସର୍ପିଲ ବାହୁ ବିସ୍ତାର ଅତି ପ୍ରବଳ । ଶାଶୁ ଜଟିଳାର ତୀକ୍ଷ୍ଣ ଅନୁଶାସନୀ ଦୃଷ୍ଟି, ନଣନ୍ଦ କୁଟୀଳାର କ୍ରୂର ଭର୍ତ୍ସନା, ପଥଭ୍ରଷ୍ଟା ଚନ୍ଦ୍ରାବଳୀର ଚରିତ ତାଙ୍କର ପ୍ରଣୟ ପଥକୁ କରିଛି ଜଟିଳ ଓ କଣ୍ଟକାକୀର୍ଣ୍ଣ । ଶ୍ୟାମବନ୍ଧୁଙ୍କ ପ୍ରତି ଦୁର୍ନିବାର ପ୍ରେମ ସତ୍ତ୍ୱେ ତାଙ୍କର ସାମାଜିକ ବ୍ୟକ୍ତିତ୍ୱ ତାଙ୍କୁ ଛଳୋକ୍ତିର ଇଙ୍ଗିତ ଦେଇଛି । ସଖୀର ବ୍ରଜବଧୂ ପ୍ରସଙ୍ଗ ଉତ୍ଥାପନ ମାତ୍ରକେ, ସହସା ବଚନ-ବୈଦଗ୍ଧ୍ୟ ପ୍ରକାଶ କରି କହିଛନ୍ତି--"ନବ ଶିଖଣ୍ଡ ମୁକୁଟ କଲା,କି ଗୋରା,

ଭୟରେ କେବେହେଲେ ସେ ପ୍ରାଣଭରି ବୁହିଁ ନାହାନ୍ତି । ତେଣୁ ବ୍ରଜବଧୂଙ୍କ ସହିତ ତାଙ୍କୁ ଜଡ଼ିତ ନ କରିବା ପାଇଁ ସେ ସଖୀକୁ ଅନୁରୋଧ କରିଛନ୍ତି । ମଞ୍ଜରୀଭାବାପନ୍ନ କବି କୃଷ୍ଣ-କଣ୍ଠର ମାଳା ପ୍ରଦାନ କରି ପ୍ରିୟତମଙ୍କର 'ରଣ'ର ସଙ୍କେତ ଦେଇ ସମାଜଭୀତା ସ୍ୱାମିନୀ ରାଧାଙ୍କ ଦ୍ୱାରା ବୁଝି ନ କରିବାକୁ ନିବେଦନ କରିଛନ୍ତି । ବାସ୍ତବ ଅନୁଭୂତି; ପ୍ରାଣସ୍ପର୍ଶୀ ସ୍ୱର ମୂର୍ଚ୍ଛନା, ନାଟକୀୟତା ଓ ଚିତ୍ତାକର୍ଷକ ବାଗ୍‌ଭଙ୍ଗୀ ହେତୁ ଗୀତଟି ଓଡ଼ିଶାରେ ବିଶେଷ ଲୋକପ୍ରିୟ । ଦୃଷ୍ଟାନ୍ତ ସ୍ୱରୂପ କେତୋଟି ପଦ ଉଦ୍ଧାର କରାଯାଉଛି—

ମୋତେ ଲଗାନାରେ (ସହି !) ବ୍ରଜବଧୂ-ଲଟ ।
ତୃଣରୁ ତୁଚ୍ଛ ଜଟିଳା କରିବ କପଟ । ଘୋଷା ।
ଅରେ ହେଲେ ସ୍ୱଚ୍ଛ କରି ବିଲୋକ ନାହିଁ ମୁଁ ଡରି
କଲା କି ଗୋରୀ ସେ ନବ-ଶିଖଣ୍ଡ-ମୁକୁଟ । ୧ ।
ଅତି ମନ୍ଦ ମୋ ନଣନ୍ଦ, ଜାଣିଲେ ଷଣି ଅଳନ୍ଦ
ସନ୍ଦୋଧ ହୋଇ ବଦନ କରୁଛି ବିକଟ । ୨ ।
ଘୂଲୁଁ ପାଦ କଣ୍ଟି କଣ୍ଟି ପଡ଼ୁଛି ନାନା ଅରିଷ୍ଟି
ତୁଚ୍ଛାକୁ ଲୋକେ ତରକ ବାନ୍ଧୁଛନ୍ତି ବାଟ । ୪ ।

( ଗୋ. କୃ. ଗ୍ରଂ., ପୃ ୩୯୫ ଓ ଗୋ. କୃ. ପ. ପୃ ୧୩୦ )

ଶତ ସତର୍କ ପଦକ୍ଷେପ ଓ ବଚନ ବୈଦଗ୍‌ଧ୍ୟ ସତ୍ତ୍ୱେ ରାଧାଙ୍କ ନିନ୍ଦା ଗୁଞ୍ଜ ନାହିଁ । ପ୍ରଣୟ ଯେଉଁଠି, ବେଦନା ସେଇଠି । ଲୋକନିନ୍ଦାରେ ଦୁଃଖିତା ରାଧା ଆତ୍ମପକ୍ଷ ସମର୍ଥନ ପାଇଁ ତଥାପି ନିଟୋଳ ଯୁକ୍ତି ନାହାନ୍ତି । ନିଜର ନିର୍ଦ୍ଦୋଷତାର ପ୍ରମାଣ ନିମିତ୍ତ ଦୁର୍ବଳ ଯୁକ୍ତି ଉତ୍ଥାପନ କରି କହିଛନ୍ତି—

ଆଜନମରୁ ଆଜକୁ ମୁହିଁ, ସଦନ-ଅଳନ୍ଦ ଜାଣି ନାହିଁ,
ଦେଖ ପାଦ କଣ୍ଟି ଘୂଲୁ ଘୂଲୁ ହେଲି ଏତେ ପରି ମା । ୧ ।

( ଗ୍ରଂ. ପୃ. ୩୯୫ )

ବୃନ୍ଦାବନ ପଥରେ କେବେ କାପରି ଦେଖା ହୋଇ ଯାଇଥିବ । ଦୋଷ ଯଦି ତାଙ୍କର ଧରାଯାଏ, ତା'ହେଲେ ଏହି ଏକମାତ୍ର ଦୋଷ ହୋଇପାରେ । ଇତର ଯୁବତୀ ପରି ତାଙ୍କ ସହ ସମ୍ଭାଷଣ ହୋଇଥିଲେ ଜାତି ଓ ସମାଜରୁ ସେ ନିର୍ବାସିତା ହୋଇ ସାରନ୍ତେଣି । ବିନା ସାକ୍ଷ୍ୟରେ ଅଭିଯୋଗର ବିଚାର ହୁଏନା । ରାଧାଙ୍କର ସମାଜ ସଚେତନ ପ୍ରାଣ ବ୍ରଜବଧୂଙ୍କ ସହ ଥିବାର ପ୍ରତ୍ୟକ୍ଷ ସାକ୍ଷ୍ୟ ପ୍ରମାଣ ଦାବୀ କରିଛି । ସତ୍ୟତାର ପ୍ରମାଣ ନଥାଇ ବୃଥା ଅପବାଦ ପ୍ରଚାର କୌଣସିମତେ ଧର୍ତ୍ତବ୍ୟ ନୁହେଁ । ମଞ୍ଜରୀପ୍ରାଣ କବି ସ୍ୱାମିନୀଙ୍କର ନିର୍ଦ୍ଦୋଷତା ପ୍ରମାଣିତ କରିବା ପାଇଁ ବଦ୍ଧପରିକର (ଏ କି ହଟ ବ୍ରଜ ଗୋଷ୍ଠୀଯାକ ପଞ୍ଚାଳନ ହୁରି ମା, ଗ୍ରଂ. ପୃ ୩୯୫) । ଆତ୍ମପକ୍ଷ ସମର୍ଥନର ଦୁର୍ବଳତା ସତ୍ତ୍ୱେ ରାଧାଙ୍କ

ମୁଖରେ ଏ ପ୍ରକାର ଯୁକ୍ତି-ସଂହତ ସଂଳାପ ଦେଇ କବି ନିଜର ସମାଜ ସଚେତନ ବାସ୍ତବ ଦୃଷ୍ଟିଭଙ୍ଗୀର ସଙ୍କେତ ଦେଇଛନ୍ତି ।

ପ୍ରେମିକା ରାଧାଙ୍କର ଆତ୍ମପକ୍ଷର ଯୁକ୍ତି ଧୀରେ ଧୀରେ ହାର ମାନିଛି । କୃଷ୍ଣଙ୍କ ସହିତ ତାଙ୍କର ସମ୍ପର୍କର ପ୍ରତ୍ୟକ୍ଷ ପ୍ରମାଣ ସଖୀର ସଂଳାପରେ ସ୍ପଷ୍ଟ ହୋଇଉଠିଛି । କାନନ ପ୍ରତ୍ୟାବର୍ତ୍ତନ କାଳରେ କୃଷ୍ଣଙ୍କ ସହ ଅଟ୍ଟାଳିକା ଚୂଡ଼ାସ୍ଥ ରାଧାଙ୍କର ଚତୁର୍ଦ୍ଦୃଷ୍ଟି ହେବା ଘଟଣା ପ୍ରଥମ ପ୍ରମାଣ । ବ୍ରଜବଧୂଙ୍କର ପୀତପଟ ଏବଂ ରାଧାଙ୍କର ନୀଳ ଦୁକୂଳ ପାଲଟ ହେବାର ଘଟଣା ଉଭୟଙ୍କର ବୃନ୍ଦାବନ କୁଞ୍ଜରେ ମିଳନର ପ୍ରତ୍ୟକ୍ଷ ପ୍ରମାଣ । ଯମୁନାର ଜଳରେ ଘଟ ନ ବୁଡ଼ାଇ ନୀପରୁ ପ୍ରତିବିମ୍ବିତ ବ୍ରଜବଧୂଙ୍କ ରୂପକୁ ରାଧାଙ୍କର ଚାହିଁ ରହିବା ହେଉଛି ତୃତୀୟ ପ୍ରମାଣ । ପୁଣି ଶ୍ରୀକୃଷ୍ଣ 'ଜୟ ରାଧେ ରାଧେ' ବୋଲି ପାଗଳ ପ୍ରାୟ ପ୍ରଳାପ କରୁଥିବାର ଚନ୍ଦ୍ରାବଳୀ ଉକ୍ତି ହେଉଛି ଶ୍ୟାମ ଶ୍ରୀମତୀଙ୍କର ଗୂଢ଼ ପ୍ରଣୟ ସମ୍ପର୍କରେ ଚତୁର୍ଥ ପ୍ରମାଣ । କିନ୍ତୁ ମଞ୍ଜୁସଙ୍ଗ ଭାବାପନ୍ନ କବିଙ୍କର ଯୁକ୍ତି ହେଉଛି ଆପଣାର ଦୋଷ ଅନ୍ୟ ଉପରେ ଲଦିଦେବା ଚନ୍ଦ୍ରାବଳୀ ସହିତ ଅନ୍ୟ ଈର୍ଷାପରାୟଣା ଗୋପୀମାନଙ୍କର କୌଶଳ ମାତ୍ର । ନାୟିକା ଚରିତ୍ରର ଦୁର୍ବଳତାର ସଂକେତ ଦେଇ କବି ନିଜର ବାସ୍ତବ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି ।

ଆତ୍ମପକ୍ଷ ସମର୍ଥନର ଦୁର୍ବଳ ଯୁକ୍ତି ଓ ଛଳୋକ୍ତି ପ୍ରଭୃତି ରାଧାଙ୍କୁ ସମାଜ ନିନ୍ଦାରୁ ଅଭୟ ଦେଇ ପାରିନାହିଁ । ବ୍ରଜବଧୂଙ୍କ ସହ ତାଙ୍କର ସମ୍ପର୍କ ଦିବାଲୋକ ପରି ସ୍ପଷ୍ଟ ହୋଇ ଉଠିଛି । ସେଥିପାଇଁ ତାଙ୍କୁ ଅବଶ୍ୟମ୍ଭାବୀ ସାମାଜିକ ନିନ୍ଦା ଓ କୁଳବତୀ ମାନଙ୍କର ପରିହାସର ଶରବ୍ୟ ହେବାକୁ ପଡ଼ିଛି । ଏ ଅବସ୍ଥାରେ ପ୍ରଣୟତ୍ୟାଗର ସଂକଳ୍ପ ତାଙ୍କ ପକ୍ଷରେ ଦୁରୂହ; ଅଥଚ କୁଳଧର୍ମ, ପାତିବ୍ରତ୍ୟ ଓ ସତୀତ୍ୱ ଲଙ୍ଘନ ହେତୁ ଏବଂ ପ୍ରାଣସମା ସଖୀ ଲଳିତା ଓ ବିଶାଖାଙ୍କୁ କଷ୍ଟ ଦେଇଥିବାରୁ ମର୍ମ ଯନ୍ତ୍ରଣା ତାଙ୍କର କମ୍ ନୁହେଁ ! କୁଳବତୀମାନଙ୍କ ମଧ୍ୟରେ କୁଳ ହରାଇ ସେ ଯେ ଧୈର୍ଯ୍ୟ ଧରି ଜୀବନ ଧାରଣ କରିଛନ୍ତି, ଏଥିପାଇଁ ସେ ନିଜକୁ କମ୍ ଧିକ୍କାର କରିନାହାନ୍ତି—

ଧିକ ହେଉ ଧୈର୍ଯ୍ୟ- ଧରିକି ଜୀଇଛି
ପାମରୀ ମୁଁ କୁଳଜାଙ୍କର ଭିତରେ । (ଗୀ.,ପୃ-୩୬୯)

ରାଧାଙ୍କର ମାନସିକ ଦ୍ୱନ୍ଦ୍ୱର ଚିତ୍ରରେ ତାଙ୍କର ଚରିତ୍ରଟି କିପରି ବାସ୍ତବ ଓ ମର୍ମସ୍ପର୍ଶୀ ହୋଇଛି, ତାହା ଏଠାରେ ଲକ୍ଷ୍ୟ କରିବାର ବିଷୟ । ଗୀତଟି (କି କରି ନାହିଁ ପଙ୍କଜ ମୁଖ ଶ୍ୟାମ ଅଙ୍ଗ ସୁଖ ଆଶାରେ, ଗୀ., ପୃ-୩୬୯) ବିଦଗ୍ଧ ମାଧବ ନାଟକର ଏକ ମନୋଜ୍ଞ ଶ୍ଳୋକର ଗୀତ ରୂପ । ସାମୟିକ ଉପେକ୍ଷା ଦ୍ୱାରା ରାଧାଙ୍କର ଭାବ ପରୀକ୍ଷା (କୃଷ୍ଣଙ୍କ ଦ୍ୱାରା) ଫଳରେ ତାଙ୍କ ମନରେ ଜାତ ହୋଇଛି ଦାରୁଣ ବେଦନା । ନାଟ୍ୟକାର ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ଯଦ୍ୟୋସ୍ତଙ୍ଗସୁଖାଶୟା ଶିଥିଳତା ଗୁର୍ବୀ ଗୁରୁଭ୍ୟସ୍ତ୍ରପା
ପ୍ରାଣେଭ୍ୟୋଽପି ସୁହୃତ୍ତମା ସଖି ! ତଥା ଯୂୟଂ ପରିକ୍ଳେଶିତାଃ ।

ଧର୍ମଃ ସୋଽପି ମହାନ୍ମୟା ନ ଗଣିତଃ ସାଧ୍ୱୀଭିରଧ୍ୟାସିତୋ
ଧିଗ୍ ଧୈର୍ଯ୍ୟଂ ତଦୁପେକ୍ଷିତାପି ଯଦହଂ ଜୀବାମି ପାପୀୟସୀ ।

(ବି. ମା., ୨।୭୦, ପୃ-୧୦୨-୧୦୩)

ଅର୍ଥାତ୍ ହେ ସଖି ! ଯାହାଙ୍କ କୋଳରେ ସ୍ଥାନ ପାଇବା ସୁଖର ଆଶାରେ ଗୁରୁଜନଙ୍କ ଠାରେ ଗୁରୁତର ଲଜ୍ଜାକୁ ଶିଥିଳ କରିଛୁ, ପ୍ରାଣ ଅପେକ୍ଷା ପ୍ରିୟତମା ସଖୀ ତୁମ୍ଭମାନଙ୍କୁ କେତେ ପ୍ରକାର କ୍ଲେଶ ଦେଇଛୁ, ସାଧ୍ୱୀଗଣ ପରିସେବିତ ସେହି ମହାନ୍ ଧର୍ମକୁ ମୁଁ ଗ୍ରାହ୍ୟ କରିନାହିଁ, ସେତେବେଳେ ତାଙ୍କ ଦ୍ୱାରା ଉପେକ୍ଷିତା ହୋଇ ମୁଁ ପାପୀୟସୀ ଯେ ବର୍ତ୍ତମାନ ସୁଦ୍ଧା ଜୀବନ ଧାରଣ କରିଛୁ, ଏଥିରେ ମୋର ଧୈର୍ଯ୍ୟକୁ ଧିକ୍ ।

ବିଶାଖା ପ୍ରଦତ୍ତ ଶ୍ୟାମ-ଲଗି ରଙ୍ଗଣ ମାଳା ସ୍ପର୍ଶରେ ରାଧାଙ୍କର ଯନ୍ତ୍ରଣାକ୍ଳିଷ୍ଟ ହତାଶ ପ୍ରାଣରେ ଆଶା ଓ ନିର୍ଭରତାର କ୍ଷୀଣ ଝଲକ ଦେଖା ଦେଇଛି । ସ୍ୱାମିନୀ ରାଧାଙ୍କର ପ୍ରସନ୍ନତାରେ ମଞ୍ଜରୀ ପ୍ରାଣ କବି ସାନ୍ତ୍ୱନା ଲାଭ କରିଛନ୍ତି । ବିଦଗ୍ଧ ମାଧବ (୨ୟ ଅଙ୍କ) ଗ୍ରନ୍ଥରେ କବି ଏଠାରେ କୃଷ୍ଣ ଲଗି ରଙ୍ଗଣମାଳାର ସୂଚନା ଦେବା ଦ୍ୱାରା ରାଧା ପ୍ରାଣର ଆବେଗ-ମୋକ୍ଷଣର (Catharsis) ବ୍ୟଞ୍ଜନା ସୃଷ୍ଟି କରିଛନ୍ତି ।

ଗୌରୀ (୯୬) ଅବସ୍ଥାରୁ ଶ୍ରୀକୃଷ୍ଣଙ୍କ ପ୍ରତି ଅହୈତୁକୀ ଅନୁରାଗ ହେତୁ ଆଜି ସେ ଲୋକନିନ୍ଦାର ଶରବ୍ୟ । ବ୍ରଜନାରୀଙ୍କ ଚକ୍ଷୁରେ ସେ ସ୍ୱୈରିଣୀ (କୁଳଟା), ଏଣେ ତାଙ୍କର ପ୍ରଣୟ ପଥର ପ୍ରତିଦ୍ୱନ୍ଦ୍ୱିନୀ ହୋଇଛି ଚନ୍ଦ୍ରାବଳୀ । ଯାହାଙ୍କୁ ଜୀବନର ସର୍ବଶେଷ ଭରସା ମନେ କରି ସମାଜର ନିନ୍ଦା କଳଙ୍କକୁ ମୁଣ୍ଡପାତି ସହି ନେଇଛନ୍ତି, ପ୍ରଣୟ ପାଳନରେ ତାଙ୍କର ଅସ୍ଥିରତା ତାଂକର ଧୈର୍ଯ୍ୟଚ୍ୟୁତି ଘଟାଇଛି । ଶ୍ୟାମ ପ୍ରେମରୁ ଏକ ପ୍ରକାର ବଞ୍ଚିତା ହୋଇ ସେ ଦାରୁଣ ମର୍ମପୀଡ଼ା ଭୋଗୁଛନ୍ତି ! ବିଦଗ୍ଧ ମାଧବ ଗ୍ରନ୍ଥରେ କବି ଏଠାରେ ମୁରାରିଙ୍କର ଚନ୍ଦ୍ରାବଳୀର ଚଣ୍ଡିକା ଅର୍ଚ୍ଚନା ସ୍ଥାନ ଗୌରୀ ତୀର୍ଥ ଯାତ୍ରାର ସୂଚନା ଦେବା ଦ୍ୱାରା ରାଧାଙ୍କର ଶ୍ୟାମ ପ୍ରେମ ତଥା ଶ୍ୟାମ ମିଳନ ଆଶାକୁ କୁଜ୍ଝଟିକାଚ୍ଛନ୍ନ କରିଛନ୍ତି (ଧୃତକି ଧରିବରେ ସଜନି କି କରି ?, ଗ୍ରଂ., ପୃ ୩୯୬) ।

ଶ୍ୟାମପ୍ରେମ ଅମୃତ ଓ ବିଷର ବିଚିତ୍ର ସମନ୍ୱୟ । ପ୍ରେମ କ୍ଷୁଧାର୍ତ୍ତିନୀ ରାଧା ଅସୀମ ଆଶା ଓ ଭରସା ପୋଷଣ କରି ତା'ର ସ୍ୱଳ୍ପ ଆସ୍ୱାଦନ ପରେ ଦାରୁଣ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ବଂଶୀ ଧ୍ୱନିର ଅପୂର୍ବ ଯାଦୁରେ ତାଙ୍କର ମନ, ପ୍ରାଣ ଓ ଆତ୍ମା ଆଚ୍ଛନ୍ନ । ପ୍ରେମର ଅନିର୍ଦ୍ଦେଶ୍ୟ ଆହ୍ୱାନରେ ସେ କୁଳବଧୂ ସୁଲଭ ଲଜ୍ଜା ଓ ଧର୍ମ ହରାଇଛନ୍ତି । କୁଳବତୀର ମହତ୍ତ୍ୱ, ଧୈର୍ଯ୍ୟ ଓ ବିବେକ ତାଙ୍କର ଯାଇଛି । ସେ ଅପକୀର୍ତ୍ତି, କଳଙ୍କ ଓ ଖଳନିନ୍ଦାର ଶରବ୍ୟ ହୋଇଛନ୍ତି । ନୟନର ଅଶ୍ରୁ ଓ ଦାରୁଣ ଚିନ୍ତାରେ ଚତୁର୍ଦ୍ଦିଗ ତାଙ୍କର ତମସାଚ୍ଛନ୍ନ । ସେ ସମାଜର ସହାନୁଭୂତି ହରାଇଛନ୍ତି, ଅଥଚ ପ୍ରଣୟ ପଦେ ପଦେ ତାଙ୍କୁ ପ୍ରବଞ୍ଚିତ କରିଛି । ପ୍ରୀତିକୁ ଅନନ୍ତ, ଅବ୍ୟୟ ଓ ଶାଶ୍ୱତ କୁହାଯାଏ, କିନ୍ତୁ କ୍ଷଣକୁ କ୍ଷଣ

(୯୬) ବିଦ୍ୟାରତ୍ନ ପଣ୍ଡିତ, ସଂସ୍କାର, ବିବାହ କର୍ମକାଣ୍ଡ, ୪ର୍ଥ ସଂ.,

ଏହାର ନବନବ ରୂପ, ନବନବ ସ୍ୱରୂପ ତାଙ୍କ ଚିତ୍ତରେ ସଂଶୟ ଓ ହତାଶାର ଅସରନ୍ତି ଝଡ଼ ସୃଷ୍ଟି କରିଛି । ତା'ର ଜ୍ୱାଳାରେ ଅନ୍ତର ତାଙ୍କର ଦଗ୍ଧ ହେଉଛି । ସେଥିରେ ତୃପ୍ତି କାହିଁ ? କବି ବଲ୍ଲଭ ସେଥିପାଇଁ କହୁଛନ୍ତି—

ଯେଉ ପୀରିତି ଅନୁଖନ ବାଖାନତେ
ତିଲେ ତିଲେ ନୂତନ ହୋୟ । (ବୈ. ପ., ପୃ-୪୫)

ସେହି ପ୍ରୀତିର ଜ୍ୱାଳା ରାଧାଙ୍କ ପକ୍ଷରେ ହୋଇଛି ଅସହ୍ୟ । ସେହି ପ୍ରୀତିକୁ (ଶ୍ୟାମ ସ୍ନେହକୁ) ସେ ଭୁଲିବାକୁ ଚାହୁଁଛନ୍ତି । ସେଥିପାଇଁ ବ୍ୟାକୁଳ ଭାବରେ ସଖୀକୁ କହୁଛନ୍ତି—

ଆଗୋ ଶ୍ୟାମସ୍ନେହ
ପାଶୋରିବାକୁ ଉପାୟ ଥିଲେ କହ । (ତ୍ରି., ପୃ. ୪୨୦)

ବୈଷ୍ଣବ ପଦାବଳୀ ଓ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ପ୍ରୀତିର ଜ୍ୱାଳା, ପ୍ରୀତିର ନିନ୍ଦା ଆବେଗପୂର୍ଣ୍ଣ ଭାଷାରେ ବର୍ଣ୍ଣିତ । ଏ କ୍ଷେତ୍ରରେ ଚଣ୍ଡୀଦାସଙ୍କର ପଦଗୁଡ଼ିକ ବିଶେଷ ପ୍ରାଣସ୍ପର୍ଶୀ । ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—

ବଁଧୁ କି ଆର ବଲିବ ତୋରେ ।
ଅଲପ ବୟସେ ପୀରିତି କରିୟା
ରହିତେ ନା ଦିଲି ଘରେ ।
କାମନା କରିୟା ସାଗରେ ମରିବ
ସାଧିବ ମନେର ସାଧା ।
ମରିୟା ହଇବ ଶ୍ରୀନନ୍ଦେର ନନ୍ଦନ
ତୋମାରେ କରିବ ରାଧା ।।

× × ×

ଚଣ୍ଡୀଦାସ କୟ ତଖନ ଜାନିବେ
ପୀରିତି କେମନ ଜ୍ୱାଲା । ( ବୈ. ପ., ପୃ ୭୫ । ୭୬ )

ବିଦଗ୍ଧ ଚିନ୍ତାମଣିର ଦୁଇଟି ଛାନ୍ଦରେ ( ୩୯ ଓ ୪୨ ) ପ୍ରୀତିର ସ୍ୱରୂପ ଓ ତାର ଜ୍ୱାଳାର ଚମତ୍କାର ବର୍ଣ୍ଣନା ରହିଛି (୯୭) । ଶ୍ୟାମ ପ୍ରୀତି ବେଦନାରେ ବ୍ୟଥିତ ହୋଇ ରାଧା ବିଶାଖାଙ୍କ ନିକଟରେ ନିଜର ବ୍ୟାକୁଳତା ପ୍ରକାଶ କରିଛନ୍ତି—

କହି ଶ୍ରାମରେ ଗୋ ପୀରତି କାହିଁ ।
କହିଲେ ତହିଁକି ଯିବଇ ମୁହିଁ ।
ବେଗେ କହିକରି
ପ୍ରୀତି ପାସୋରି ମନ୍ତ୍ରର ଅଛି ନା । ୨୯ ।

---

(୯୭) ବି. ଚି.ର ୩୯ ଛାନ୍ଦର ୧୪ଶ ପଦଠାରୁ ୩୯ ପଦ ଏବଂ ୪୨ ଛାନ୍ଦର ୨୪ଶ ପଦଠାରୁ ୪୮ ପଦ ପର୍ଯ୍ୟନ୍ତ ଦ୍ରଷ୍ଟବ୍ୟ ।

ପ୍ରୀତିର ନିନ୍ଦା ଓ ପ୍ରଶଂସା ସମ୍ପର୍କରେ 'ବନମାଳୀ ପଦ୍ୟାବଳୀ'ରେ ସତରଟି ଗୀତ ରହିଛି । ତନ୍ମଧ୍ୟରୁ ସାତଟି ଗୀତରେ ପ୍ରୀତିର ଜ୍ୱାଳା ବର୍ଣ୍ଣିତ । ଅନ୍ୟ ଗୀତପରି କବିଙ୍କର ଏହି ଗୀତଗୁଡ଼ିକ ଓଡ଼ିଶାରେ ବିଶେଷ ଲୋକପ୍ରିୟ । ପ୍ରାଣଛୁଆଁ ଭାଷାରେ କବି ରାଧାଙ୍କ ଲକ୍ଷ୍ୟରେ ସଖୀମୁଖରେ ପ୍ରକାଶ କରିଛନ୍ତି—

(କ) ପ୍ରୀତି ଛୁରୀ ଶାଣ ଦିଆରେ,
ବାଜିବ ଗ୍ରଥିକ କର ଲୁହାରେ ।
ସ୍ନେହ-ଲୁହା ଯତ୍ନେ ତତାଇ ଅଶ୍ରୁଜଳ ତହିଁରେ ଦେଇ
ମାର-କାରିଗର ଯତନେ ଗଢ଼ିଛି ତହିଁରେ କଳଙ୍କ ବିଷପିଆରେ । ୧ ।

( ବନମାଳୀ ପଦ୍ୟାବଳୀ, ପୃ ୮୧ )

(ଖ) ଝୁରିଝୁରି ଜାଣି ଦିନେ ଝରଇ ନୀର ନୟନେ
ନଦୀ ପରି ହୋଇ ବହି ଯାଉଛି ଗୋ । ୩ ।
ଶୁଣିଲୋ ପରାଣ ସଖି ! ନ ପାରେ ଜୀବନ ରଖି
ସ୍ନେହ ଏତେ ସର କଲା, କହୁଛି ଗୋ ।୪ ।

( ତତ୍ରୈବ, ପୃ ୮୪ )

(ଗ) ପୀରତି କରି କେ ହୋଏ ସୁଖୀ,
ସଖି, ମୁଁ ହେଲି ପରମ ଦୁଃଖୀ
ଦେଖୁଥିଲେ ମନ ତୃପତ ନୁହଇ
ନ ଦେଖିଲେ ଫୁଟିଯାଏ ଆଖି । ୧ ।

( ତତ୍ରୈବ, ପୃ ୯୩ )

ଶ୍ରୀକୃଷ୍ଣ ରାଧାଙ୍କର ଅନୁପମ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ମୁଗ୍ଧ । ବୟସ୍ୟ ମଧୁମଙ୍ଗଳ ସହ ବୃନ୍ଦାବନରେ ପ୍ରଣୟ ସଂକ୍ରାନ୍ତ ହାସପରିହାସରେ ମଗ୍ନ ଥିବାବେଳେ ଲଳିତା ହସ୍ତରୁ ରାଧାଙ୍କର ଅନଙ୍ଗ-ଲେଖ ପ୍ରାପ୍ତ ହୁଅନ୍ତି । କାମଲେଖର ବସ୍ତୁ ହେଉଛି—"ତୁମେ ଚଞ୍ଚଳ ସ୍ୱରୂପ ଧାରଣ କରି ମୋର ମନ୍ଦିରରେ ବାସ କରୁଛ । ମୁଁ ତୁମକୁ ଦେଖି ଚକିତ ହୋଇ ଯେଉଁ ଯେଉଁ ଦିଗରେ ପଳାୟନ କରେ, ତୁମେ ବଳପୂର୍ବକ ସେହି ସେହି ଦିଗରେ ମୋର ଗତି ରୋଧ କର ।" କୁଳବତୀମାନେ ସ୍ୱଭାବତଃ ଧର୍ମଭୀରୁ ବୋଲି ଶ୍ରୀକୃଷ୍ଣ ଜାଣନ୍ତି । ଉପେକ୍ଷା ଦ୍ୱାରା ରାଧାଙ୍କର ଭାବ ପରୀକ୍ଷା କରିବା ପାଇଁ ସ୍ଥିର କରି କହନ୍ତି ଯେ ସେ ସଖାମାନଙ୍କ ସହ କାନନରେ ଧେନୁ ଅନୁସରଣ କରନ୍ତି । ହୃଦୟରେ ଯୁବତୀ ଚିନ୍ତା ନ ଥିଲେ ହେଁ ସେହି ସ୍ୱେଚ୍ଛାଚାରିଣୀ ଯୂଥ ଇଚ୍ଛାପୂର୍ବକ ବାତାବରଣକୁ ଦୂଷିତ କରୁଛନ୍ତି । ବୃଦ୍ଧ ଗୋପାଳମାନଙ୍କ ସଭାରେ ଏ ପ୍ରସଙ୍ଗ ଉତ୍ଥାପନ କରିବାକୁ କହନ୍ତେ କୃଷ୍ଣ ଓ ବିଶାଖାଙ୍କ ମଧ୍ୟରେ ବାଗ୍ଯୁଦ୍ଧ ଚାଲେ । ଲଳିତା କ୍ରୋଧରେ ଶ୍ରୀକୃଷ୍ଣଙ୍କୁ କପଟୀ ଓ ଲମ୍ପଟ ବୋଲି ଆକ୍ଷେପ କରେ । ବିଶାଖା ରାଧା ପ୍ରେରିତ ଗୁଞ୍ଜମାଳା କୃଷ୍ଣଙ୍କୁ ଅର୍ପଣ କରନ୍ତେ ସେ

ତାହା ଗ୍ରହଣ କରିବାକୁ ଛଳନାରେ ନିଜର ଅନିଚ୍ଛା ପ୍ରକାଶ କରନ୍ତି ଏବଂ ଅନ୍ୟମନସ୍କ ଭାବରେ ନିଜ କଣ୍ଠରୁ ରଙ୍ଗଣମାଳା ଅର୍ପଣ କରନ୍ତି । ଲଳିତା ଓ ବିଶାଖାଙ୍କ ପ୍ରସ୍ଥାନ ପରେ ଶ୍ରୀକୃଷ୍ଣ ନିଜର ପରିହାସ ସମ୍ପର୍କରେ ସଚେତ ହୋଇ ନିଜର ନିଷ୍ଠୁରତା ପାଇଁ ଅନୁତାପ କରନ୍ତି । ରୂପ ଗୋସ୍ୱାମୀଙ୍କର ବିଦଗ୍ଧ ମାଧବ ନାଟକର (୨ୟ ଅଙ୍କ) ଏହି ପ୍ରସଙ୍ଗକୁ ଭିତ୍ତି କରି କବି 'ଶ୍ରୀକୃଷ୍ଣଙ୍କର ପଶ୍ଚାତ୍ତାପ' ଶୀର୍ଷକ ଗୀତଟିଏ (ମୁଁ କି ମୂଢ଼ବୁଦ୍ଧି କଲିରେ, ରସନିଧି !) ରଚନା କରିଛନ୍ତି । ଶ୍ରୀକୃଷ୍ଣ ଅନୁତାପ କରି କହନ୍ତି ଯେ ସଖୀମୁଖରୁ ତାଙ୍କର (ଶ୍ରୀକୃଷ୍ଣଙ୍କର) ପରିହାସ ପ୍ରଚ୍ଛନ୍ନ ନିଷ୍ଠୁରବାକ୍ୟ ଶୁଣି ରାଧା ଦୁଃଖରେ ଦୀର୍ଘଶ୍ୱାସ ତ୍ୟାଗ କରୁଥିବ ହତାଶା ଓ ଭଗ୍ନ ହୃଦୟରେ ତାଙ୍କ ପ୍ରତି ଜାତ ହୋଇଥିବା ଅନୁରାଗ ଅଙ୍କୁରଟିକୁ ନଷ୍ଟ କରି ଦେବ କି ? ନିଜର ପିଶୁନତା ହେତୁ ସେ ପ୍ରେମ-ବୃକ୍ଷରେ କୁଠାରାଘାତ କରିଛନ୍ତି । କୋମଳାଙ୍ଗୀ ରାଧା ଦାରୁଣ ମର୍ମଯନ୍ତ୍ରଣାରେ ସଖୀମାନଙ୍କର ଅଗୋଚରରେ ହୁଏତ ପ୍ରାଣ ବିସର୍ଜନ କରିପାରେ । କବି ମନ୍ତ୍ରଶ୍ରୀ ସୁଲଭ ଆଶ୍ୱାସନାର ଇଙ୍ଗିତ ଦେଇ କହନ୍ତି ଯେ ଶ୍ୟାମଂକର ଅଙ୍ଗଲଗି ରଙ୍ଗଣମାଳା କିଶୋରୀମଣିଂକର କଣ୍ଠରେ ଶୋଭା ପାଉଛି । ଗୀତଟି ବିଦଗ୍ଧ ମାଧବର ଗୋଟିଏ ଶ୍ଲୋକର ଏକ ପ୍ରକାର ଭାବ ବିସ୍ତୃତି ମାତ୍ର, ଯଥା—

ଶ୍ରୁତ୍ୱା ନିଷ୍ଠୁରତାଂ ମମେନ୍ଦୁବଦନା ପ୍ରେମାଙ୍କୁରଂ ଭିନ୍ଦତି
ସ୍ୱାନ୍ତେ ଶାନ୍ତିଧୁରାଂ ବିଧାସ୍ୟବିଧୁରେ ପ୍ରାୟଃ ପରିଶ୍ୱସ୍ୟତି ।
କସ୍ମା ପାମରକାମକାର୍ମୁକପରିତ୍ରସ୍ତା ବିମୋକ୍ଷ୍ୟତ୍ୟସୂନ୍
ହା ମୌଗ୍ଧ୍ୟାତ୍ ଫଳିନୀ ମନୋରଥଲତା ମୃଦ୍ୱୀ ମୟୋନ୍ମୂଳିତା ।

(ବି. ମା, ୨।୫୯, ପୃ ୧୦୧)

ଅର୍ଥାତ୍ ଶ୍ରୀକୃଷ୍ଣ ଅନୁତାପ କରି କହୁଛନ୍ତି—ଆହା ! ଶଶିମୁଖୀ ରାଧା ମୋର ନିଷ୍ଠୁରତା କଥା ଶ୍ରବଣ କରି ହୁଏତ ପ୍ରେମାଙ୍କୁର ଛେଦନ ପୂର୍ବକ ଦୁଃଖିତ ହୃଦୟରେ କୌଣସି ରୂପେ ଧୈର୍ଯ୍ୟ ଧାରଣ କରି ବ୍ୟଥିତା ହେବ, ନତୁବା ପାମର କନ୍ଦର୍ପର ଧନୁ ଶବ୍ଦରେ ଭୀତା ହୋଇ ପ୍ରାଣ ତ୍ୟାଗ କରିବ । ହାୟ ! ମୁଁ ମୂଢ଼ତା ବଶତଃ ଏହି ସୁକୋମଳା ଫଳବତୀ ମନୋରଥ-ଲତାକୁ ଉତ୍ପାଟିତ କଲି ।

ସାମୟିକ ଭାବ ପରୀକ୍ଷାର ପରିଣତି କେବଳ ପ୍ରଣୟିନୀକୁ ଭୋଗ କରିବାକୁ ହୋଇ ନାହିଁ, ପ୍ରଣୟୀକୁ ମଧ୍ୟ । କୁଳ ଓ ପାତିବ୍ରତ୍ୟର ଅଭିମାନରେ ଜଳାଞ୍ଜଳି ଦେଇ ପ୍ରଣୟୀ ଉପରେ ପୂର୍ଣ୍ଣ ଭରସା ପୋଷଣ କରିଥିବା ପ୍ରଣୟିନୀ ଯେତେବେଳେ ପ୍ରବଞ୍ଚନାର ଶୀକାର ହୁଏ, ହତାଶ ମୁହୂର୍ତ୍ତରେ ଏକମାତ୍ର ଅଭିମାନହିଁ ତା'ର ଅସ୍ତ୍ର । ରାଧାଙ୍କର ସେହି ଅଭିମାନର ଶରବ୍ୟ ହୋଇଛନ୍ତି ଶ୍ରୀକୃଷ୍ଣ । ଭାବ ପରୀକ୍ଷା ନିମିତ୍ତ ସେ କମ୍ ଅନୁତପ୍ତ ନୁହନ୍ତି । ହତାଶ ମୁହୂର୍ତ୍ତରେ ଲଳିତାଙ୍କ ସମକ୍ଷରେ ମୋହନଙ୍କୁ ନ ଛୁଇଁବାର ସଙ୍କଳ୍ପ ତାଙ୍କ (ଶ୍ରୀକୃଷ୍ଣଙ୍କ) ପ୍ରାଣରେ ଦାରୁଣ ପୀଡ଼ା ଦେଇଛି । ଆଜି ଲଳିତାର ଉପସ୍ଥିତି ଓ କୁଶଳ ସମାଚାର ଜିଜ୍ଞାସା ନିଜର ବେଦନା ପ୍ରକାଶରେ ତାଙ୍କୁ ଆବେଗ ବିହ୍ୱଳ କରିବା ସଙ୍ଗେ

ସଙ୍ଗେ ମନର ଭାବ ପ୍ରକାଶରେ କିଞ୍ଚିତ୍ ସାହସ ଦେଇଛି । କବିସୂର୍ଯ୍ୟଙ୍କର ଶ୍ରୀକୃଷ୍ଣ ଲଜ୍ଜାର ଉପସ୍ଥିତି ଓ ସଙ୍କୁଚିତରେ ଆଶାନ୍ୱିତ ହେବା ପରି (୯୮) ଗୋପାଳକୃଷ୍ଣଙ୍କର ଶ୍ରୀକୃଷ୍ଣ ଆଶାନ୍ୱିତ ହେବା ସଙ୍ଗେ ସଙ୍ଗେ ପ୍ରଣୟିନୀ ସମ୍ପର୍କରେ କିଞ୍ଚିତ୍ ଉତ୍ସାହର ଭରସା ପାଇ ପାରିଛନ୍ତି (ତୋତେ କହିଲି ପରି, ମୋତେ, ଚରମ କରି, ଗ୍ରଂ, ପୃ. ୩୮୩) ।

କିନ୍ତୁ ଆଶାର ଝଲକ ଓ ନୈରାଶ୍ୟର ପଚ୍ଛପବାଣୀରେ (୯୯) ବଳଦେବଙ୍କର ଲଳିତା କୃଷ୍ଣଙ୍କ ଚିତ୍ତରେ ମିଶ୍ର ଭାବନାର ଦ୍ୱନ୍ଦ୍ୱ ସୃଷ୍ଟି କଲାପରି ଏଠାରେ ସେହି ଦ୍ୱନ୍ଦ୍ୱର ଶୀକାର ହୋଇଛନ୍ତି ଶ୍ରୀକୃଷ୍ଣ । କୃଷ୍ଣଙ୍କର ଗୁଡ଼ୁରେ ରାଧାଙ୍କର ସଖୀ ନିଜର ଭୂମିକାର ଦାୟିତ୍ୱ ଭୁଲି ଯାଇନାହିଁ । ଅଭିମାନିନୀ ରାଧାଙ୍କର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ନିମିତ୍ତ ସେ ଗୁଡ଼ୁଳି-ଚତୁର ଶ୍ୟାମଙ୍କର ଚିତ୍ତକୁ ନିଜର ବଚନ-ବାଣରେ କ୍ଷତବିକ୍ଷତ କରିଛି । ସଖୀ ମୁଖରେ କବି ପ୍ରକାଶ କରିଛନ୍ତି—

(ଶ୍ୟାମ ଦୁରାଶା ବଢ଼ାଇ) କହ କେବେ ଗୁଡ଼ାଇ ?
ଏ ଚନ୍ଦ୍ରାବଳୀ ନୁହଇ ଆସିବ ଗୋଡାଇ । ଘୋଷା ।
ଯା ପଦକୁ ଆଶ୍ରେ କରି      ଯାବତ ଯୌବନ ଶିରୀ,
ଧନ୍ୟ ବୋଲାଇଛି ଗିରିଧାରୀ ।      (ଗ୍ରଂ., ପୃ. ୩୮୪)

ଯୌବନ ଓ ସୌନ୍ଦର୍ଯ୍ୟ ଯାହାଙ୍କର ପଦତଳେ ଆଶ୍ରିତ ହୁଏ, ଶ୍ରୀକୃଷ୍ଣ ତାଙ୍କ ପଦର ଦାସତ୍ୱ ବରଣ କରି ନିଜକୁ ଧନ୍ୟ କରିଛନ୍ତି । ଶତ ବ୍ରଜବଧୂଙ୍କ ଦ୍ୱାରା ଯେ ସ୍ୱାଧୀନ ଭାବରେ ଉପଭୁକ୍ତ, ତାଙ୍କ ପ୍ରତି ନବୋଢା କଲ୍ୟାଣୀ ରାଧା କିପରି ଅନୁରକ୍ତ ପ୍ରକାଶ କରିବେ ? ରାଧାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ କବି ପାରମ୍ପରିକ ଶାସ୍ତ୍ର ସଚେତନ ହୋଇ ପଡ଼ିଥିବାରୁ ଗୀତଟି ରସଗତ ସୌଷ୍ଠବ ହରାଇଛି । କବିଙ୍କ ବର୍ଣ୍ଣନାନୁସାରେ ରାଧା ହେଉଛନ୍ତି ସାଧ୍ୱୀ ଶିରୋମଣି, ଅଖିଳ ମାଧୁର୍ଯ୍ୟ ଶ୍ରେଷ୍ଠା, ସାଧୁବର୍ତ୍ମାନୁସାରିଣୀ, ସୁମର୍ଯ୍ୟାଦାଶାଳିନୀ, ସକଳ ସଦ୍‌ଗୁଣର ଆଧାର ଏବଂ ସଖୀମାନଙ୍କର କଣ୍ଠଭୂଷଣ ତୁଲ୍ୟ । ସେ ପୁଣି ଗୋକୁଳ ବାସୀଙ୍କର ପ୍ରେମାସ୍ପଦ, ସମସ୍ତ ଦିବ୍ୟ ଐଶ୍ୱର୍ଯ୍ୟର ନିଳୟ, ଯଶୋଦାଙ୍କର ମୂର୍ତ୍ତିମନ୍ତ ବାତ୍ସଲ୍ୟ । ମହାଭାବ ରତ୍ନଚିନ୍ତାମଣି ସ୍ୱରୂପା ରାଧାଙ୍କର କୀର୍ତ୍ତି ସମଗ୍ର ଜଗତରେ ପରିବ୍ୟାପ୍ତ । ପରମ ପ୍ରେମମୟୀ ରାଧାଂକଠାରେ ଲଜ୍ଜା, ଉଜ୍ଜ୍ୱଳସ୍ମିତ, ବିନୟ, ନର୍ମ ପାଣ୍ଡିତ୍ୟ, ସଙ୍ଗୀତ ପ୍ରବୀଣତା, ଧୃତି, ଗାମ୍ଭୀର୍ଯ୍ୟ ଓ କରୁଣାଦି ଗୁଣ ପ୍ରକାଶିତ ହୋଇଛି । ବିଳାସପ୍ରିୟା ରାଧାଙ୍କର ଅଙ୍ଗରୁ କର୍ପୂର ଓ କମଳ ସୁରଭି ପ୍ରସରୁ ଥାଏ । ଅଙ୍ଗ ପ୍ରତ୍ୟଙ୍ଗରେ ବଳୟ, ଇନ୍ଦୁଲେଖା ଓ କୁଣ୍ଡଳ ପ୍ରଭୃତି ଆଭରଣ ଏବଂ ପାଦରେ ସୌଭାଗ୍ୟରେଖା ପରି ଶୋଭିତ ହୋଇଛି । ମନ୍ତ୍ରଗିଭାବାପନ୍ନ କବି ଏଠାରେ କୃଷ୍ଣଚିତ୍ତମୋହିନୀ ପ୍ରେମିକା ରାଧାଙ୍କର ବର୍ଣ୍ଣନା

(୯୮) କ. ତ ଚଂ., କ. ସୂ. ଗ୍ରନ୍ଥାବଳୀ, ସଂପା: କୁଳମଣି ଦାଶ, ପୃ-୧୧୭
(୯୯) ତତ୍ରୈବ, ପୃ-୧୨୦

ଅପେକ୍ଷା ନିଜର ଧ୍ୟାନ ବଳୟରେ ସ୍ୱାମିନୀ ରାଧାଙ୍କୁ ସ୍ମରଣ କରିଛନ୍ତି । ରାଧାଙ୍କର ସୂକ୍ଷ୍ମ କାନ୍ତିସ୍ୱରୂପ, ଦିବ୍ୟଗୁଣ ଓ ଆଭରଣ ବର୍ଣ୍ଣନାରେ କବି ଉଜ୍ଜ୍ୱଳନୀଳମଣିକୁ ପଦେପଦେ ଅନୁସରଣ କରିଛନ୍ତି (୧୦୦ ) ।

ଅନୁତପ୍ତ ଶ୍ରୀକୃଷ୍ଣ ରାଧାଙ୍କର ଅଭିମାନ ଦୂର କରିବା ପାଇଁ ବିଦଗ୍ଧ ସୁଲଭ ପ୍ରୟାସ ଆରମ୍ଭ କରିଛନ୍ତି; କିନ୍ତୁ ରାଧା ପ୍ରଣୟୀ ନିକଟରେ ନିଜକୁ ଏତେ ସୁଲଭ କରି ନାହାନ୍ତି । ନିଜ ଅଭିମାନର ମୃଦୁ ଆଘାତରେ ପ୍ରଣୟୀର ହୃଦୟତନ୍ତ୍ରୀରେ କମ୍ପନ ସୃଷ୍ଟି କରି ତା'ର ବୈଦଗ୍ଧ୍ୟ-କୁସୁମକୁ କୋରକିତ କରିଛନ୍ତି । ଶ୍ରୀକୃଷ୍ଣଙ୍କର ଭାବନାରେ ରାଧାଙ୍କର ମୃଦୁ ଅଭିମାନମଣ୍ଡିତ ପ୍ରଣୟିନୀ ମୂର୍ତ୍ତିଟି ଯେପରି ଚିତ୍ତାକର୍ଷକ ହୋଇଛି, ଶ୍ରୀକୃଷ୍ଣଙ୍କର ବିଦଗ୍ଧ ମୂର୍ତ୍ତିଟି ମଧ୍ୟ ସେହିପରି ଉପଭୋଗ୍ୟ ହୋଇଛି (କାହୁଁ ଏ ନୂଆ ରୂପା ଶିଖିଲରେ ? ଗୀ, ପୃ ୩୮୫) । ଶ୍ରୀକୃଷ୍ଣ ରାଧାଙ୍କର ଏ ଅଭିନବ ଅଭିମାନରେ ବିସ୍ମୟ ପ୍ରକାଶ କରିଛନ୍ତି । ଶିଥିଳ ଚିକୁରଦାମକୁ ପ୍ରସାଧିତ କରିବାକୁ କହନ୍ତେ ସେଥିପ୍ରତି ସେ (ରାଧା) ଔଦାସୀନ୍ୟ ପ୍ରକାଶ କରନ୍ତି । କାନ୍ତା କୁସୁମମାଳା ଚିକୁରରେ ଖଚିତ କରିବାକୁ କହନ୍ତେ ଶିରରେ କର ସ୍ଥାପନ କରି ଶିର-ବ୍ୟଥାର ଛଳନା କରନ୍ତି । ପଦତଳେ ସେହିକ ପ୍ରାୟ ଯାବକରେଖା ଅଙ୍କନ କରିବା ପାଇଁ ଅଲକ୍ତକ ରସ ଗୋଳାଉଁ ଗୋଳାଉଁ ଏହା ଅସୁନ୍ଦର ବୋଲି ଶିର-ଶପଥ ପକାଇ ନିଷେଧ କରନ୍ତି, ପୁଣି ତାଙ୍କୁ ସ୍ନିଗ୍ଧ ଦନ୍ତରେ ରସନା ଦଂଶନ କରି ମନ୍ଦହାସ ପ୍ରକାଶ କରନ୍ତି । ମାନିନୀ ପ୍ରଣୟିନୀର ମାନ ଦୂରୀକରଣ ନିମନ୍ତେ କଣ୍ଠଠାରୁ ଆରମ୍ଭ କରି ଅଙ୍ଗପ୍ରତ୍ୟଙ୍ଗରେ ବିଭିନ୍ନ ଆକଳ୍ପ ଯୋଜନା ଓ ଶେଷରେ ପଦରେ ଅଲକ୍ତକ ରେଖା ବିଭିନ୍ନ ଅଙ୍କନ ପର୍ଯ୍ୟନ୍ତ ନାୟକ-ସେବାର ରସାଳ ଚିତ୍ର ସଂସ୍କୃତ ଓ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ପରିଦୃଷ୍ଟ ହୁଏ । ଗୀତଗୋବିନ୍ଦରେ ଶ୍ରୀକୃଷ୍ଣ ଚପଳବଧ୍ୟା ଅଭିମାନିନୀ ରାଧାଙ୍କର ଚରଣ-କିଶଳୟ ବକ୍ଷରେ ସ୍ଥାପନ କରି ଅଲକ୍ତକ ରାଗ ରଚନା କରନ୍ତି (୧୦୧) ପୁଣି ଅନ୍ୟତ୍ର ମାନିନୀଙ୍କର ମାନାପନୟନ ନିମିତ୍ତ କହନ୍ତି, ହେ ମଧୁରଭାଷିଣି ! ତୁମେ ଆଦେଶ ଦିଅ— ମୋର ହୃଦୟର ଶୋଭାବର୍ଦ୍ଧନକାରୀ, ସ୍ଥଳକମଳର ଶୋଭାହାରୀ, ରତିରଙ୍ଗରେ ପରମ ରମଣୀୟ ତୁମର ଏହି ଚରଣକମଳ ସରସ ଅଲକ୍ତକ ରାଗରେ ରଞ୍ଜିତ କରେଁ (୧୦୨) ।

ବିଦଗ୍ଧ ମାଧବ ନାଟକରେ ଶ୍ରୀକୃଷ୍ଣ ନିଜର ଗୂଢ଼ୋକ୍ତିରେ ପ୍ରଣୟିନୀ ରାଧାଙ୍କର ସେବାଦ୍ୱାରା ତାଙ୍କ ଅନୁଗ୍ରହ ଲାଭର ଅଭିଳାଷ ପୋଷଣ କରିଛନ୍ତି, ଯଥା—

କିଂ ଚନ୍ଦନେନ କୁଚୟୋ ରଚୟାମି ଚିତ୍ର-
ମୁଲ୍ଲଂଘୟାମି କବରୀଂ ତବ କିଂ ପ୍ରସୂନୈଃ ।
ଅଙ୍ଗାନି ରଙ୍ଗିମତରଙ୍ଗି ! କରେଣ କିଂବା
ସଂବାହୟାମ୍ୟତନୁଖେଦକରମ୍ପିତାନି । (ବି. ମା. ୩।୪୩; ପୃ-୧୬୨)

(୧୦୦) ଉ. ନୀ., ଉ. ନୀ, ରାଧାପ୍ରକରଣମ୍ ପୃ-୧୦୫।୧୦୬ ।
(୧୦୧) ଗୀ. ଗୋ., ୭।୧୫।୨୭, ପୃ-୯୪
(୧୦୨) ଗୀ. ଗୋ, ୧୦।୧୯।୮, ପୃ-୧୧୯

**ପ୍ରେମନିଷ୍ଠା ଓ ବିରହ :**—ପ୍ରଣୟ କ୍ଷେତ୍ରରେ ରାଧା ଯେତିକି ଅଗ୍ରସର ହୋଇଛନ୍ତି କୁଳବତୀର ଅଭିମାନ କ୍ରମଶଃ ସେତିକି ଅପସରି ଯାଇଛି । ସମାଜର ଅନୁଶାସନୀ ଦୃଷ୍ଟିର ତୀକ୍ଷ୍ଣତା ଅତିକ୍ରମ କରିବାର ସାହସ ସେ ସଞ୍ଚୟ କରିପାରିଛନ୍ତି । ତିଭି ତାଙ୍କର ଦ୍ୱନ୍ଦ୍ୱର ଘନାବର୍ତ୍ତରୁ ଧୀରେ ଧୀରେ ମୁକ୍ତି ପାଇ ଆସିଛି । ପ୍ରେମରେ ନିର୍ଭରଶୀଳତା ଯେତିକି ବଢ଼ି ଉଠିଛି, ତାର ଜ୍ୱାଳା ଓ ଯନ୍ତ୍ରଣା ସେତିକି କମି ଆସିଛି । ସମାଜରେ ଯଶ, ଅପଯଶ ଓ ନିନ୍ଦା ପ୍ରଶଂସା ମଧ୍ୟରେ ତାଙ୍କ ଚିତ୍ତରେ ଆସିଛି ସ୍ଥିତପ୍ରଜ୍ଞ-ସୁଲଭ ଏକ ସମାହିତ ଅବସ୍ଥା । ଶ୍ୟାମପ୍ରେମ ଆଉ ତାଙ୍କ ପକ୍ଷରେ ଜ୍ୱାଳାମୟ ନ ହୋଇ ହୋଇଛି ମଧୁମୟ, ଜୀବନ ଓ ମୃତ୍ୟୁର ଏକମାତ୍ର ସମ୍ପଦ, ଏକମାତ୍ର ପାଥେୟ । ପ୍ରେମାସ୍ପଦ ସହିତ ମିଳନର ସମ୍ଭାବନା ତଥା ମିଳନରେ ସେ ପାଇଛି ଅନିର୍ବଚନୀୟ ତୃପ୍ତି, ବିରହରେ ଭୋଗିଛି ଦାରୁଣ ମର୍ମଦାହ, ଅନ୍ତରରେ ଅନୁରଣିତ ହୋଇଛି କାରୁଣ୍ୟର ମୂର୍ଚ୍ଛନା । ରାଧାଙ୍କର ଏହି ପ୍ରେମନିଷ୍ଠା ଓ ବିରହ ବେଦନା ଅବଲମ୍ବନରେ କେତୋଟି ଉଚ୍ଚାଙ୍ଗ ଗୀତ ରଚିତ ହୋଇଛି । ଏଗୁଡ଼ିକ ମଧ୍ୟରୁ କେତୋଟିରେ ପାଠକ ସଖୀମାନଙ୍କୁ ଆବିଷ୍କାର କରେ ସ୍ନେହଶୀଳା ଦରଦୀ ଭୂମିକାରେ ।

ଗୋଟିଏ ଗୀତରେ (କେତେକାଳ ହେଲା ଦେଖିନାହୁଁ ସହି ! ଗ୍ରଂ, ପୃ-୩୬୮) ସଖୀର ନିର୍ଦ୍ଦୋଷ ପରିହାସଯୁକ୍ତ ଦରଦଭରା ଉକ୍ତିରେ କବି ରାଧାଙ୍କର ସାମୟିକ ବିରହାନୁଭୂତିର ମଞ୍ଜୁଳ ଚିତ୍ର ଆଙ୍କିଛନ୍ତି । ସୂର୍ଯ୍ୟପୂଜା ବ୍ୟାଜରେ କୃଷ୍ଣଙ୍କ ସହ ରାଧା ବୃନ୍ଦାବନର କୁଞ୍ଜରେ ମିଳିତ ହୋଇଛନ୍ତି । କାନନ ବାହୁଡ଼ା କାଳରେ ଧେନୁର ପଶ୍ଚାଦ୍‌ଭାଗରେ ବେଣୁବାଦନ କରି ଆସୁଥିବା ପ୍ରେମିକଙ୍କର ପଥକୁ ଅପଲକ ନୟନରେ ଗୃହିଁ ରହିଛନ୍ତି ରାଧା, କିନ୍ତୁ ସ୍ୱଳ୍ପକାଳର ଅଦର୍ଶନରେ ତାଙ୍କର ବକ୍ଷବାସ ଅଶ୍ରୁସିକ୍ତ । ସ୍ନେହଶୀଳା ସଖୀର ପରିହାସ ସ୍ନିଗ୍ଧ ଅଭିଯୋଗ ହେଉଛି ଯେ ରାଧା ପ୍ରେମିକକୁ କ'ଣ ନିଶି ଦିନ ବେକରେ ବାନ୍ଧି ବୁଲୁଥିବ !

କବି ପ୍ରଣୟିନୀଙ୍କର ହାବଭାବ ଓ ଅଗଣିତ ଲୀଳାବୈଚିତ୍ର୍ୟ ମଧ୍ୟରୁ ଗୋଟିକର ଛବି ଆଙ୍କିଛନ୍ତି ଏକ ଗୀତରେ (ମୋ ଜୀବର ଜୀବନ, ଗ୍ରଂ ପୃ ୩୬୯) । ସଦା ପ୍ରସନ୍ନ ପ୍ରିୟତମଙ୍କର ମୁଖର ମ୍ଳାନିରେ ରାଧାଙ୍କ ଚିତ୍ତରେ ଜାତ ହୋଇଛି ଅବସାଦ । ସୂର୍ଯ୍ୟ ଆରାଧନା ପରେ ପରେ ପୁର ପ୍ରତ୍ୟାବର୍ତ୍ତନ ମୁଖରେ ସେ ହସି ହସି ପ୍ରିୟତମଙ୍କ ଗଣ୍ଡରେ ଚୁମ୍ବନର ମୁଦ୍ରା ଆଙ୍କିଥିଲେ । ପ୍ରିୟତମ କଣ୍ଠରେ ତାଙ୍କର କରିଲସ୍ତ ସହ ସୁରଭିତ ପ୍ରସୂନ କଣ୍ଠାବତଂସ ରୂପରେ ଖଚିତ କରିଥିଲେ । ତାଙ୍କଠାରେ ଅଭିମାନର ଆଶଙ୍କା କରି ଜାଲେ ବିପନ୍ନ ହୋଇଥିବେ ସେଥିପାଇଁ ସେ ପ୍ରଣୟିନୀର ଆନ୍ତରିକତା ବ୍ୟଞ୍ଜକ 'ରାଣ' ଦେବା ସଙ୍ଗେ ସଙ୍ଗେ ଚନ୍ଦ୍ରାବଳୀର ସ୍ମୃତିକୁ ଏହାର କାରଣ ରୂପେ କଳ୍ପନା କରି ଛଳୋକ୍ତି ପ୍ରକାଶ କରିଛନ୍ତି, ଯେଉଁଥିରେ ତାଙ୍କର ସାପତ୍ନ୍ୟ-ସୁଲଭ ଈର୍ଷା ଅଭିବ୍ୟକ୍ତି । ପ୍ରିୟତମଙ୍କର ରସିକତା ସୁଲଭ ଚପଳ୍ୟରେ ଅତିଷ୍ଠ ହୋଇ ପତି (ଅଭିମନ୍ୟୁ) ତାଙ୍କୁ ମଥୁରା ନେବାକୁ ପ୍ରସ୍ତୁତ ଥିବା ସମ୍ବାଦରେ ବୋଧହୁଏ ଏ ପ୍ରକାର ଅବସାଦ ଜାତ ହୋଇଥିବ ବୋଲି ସମ୍ଭାବନା କରନ୍ତି ।

କିନ୍ତୁ ମନ୍ତ୍ରଗାମ୍ଭୀର୍ଯ୍ୟାପନ୍ନ କବିଙ୍କର ଉକ୍ତିରେ ପୌର୍ଣ୍ଣମାସୀଙ୍କ ଦ୍ୱାରା ଯେ ପ୍ରକାର ପ୍ରସ୍ତାବ ଛଳିତ ଓ ସମସ୍ୟାର ସମାଧାନ ହୋଇଥିବାର ସୂଚନା ଦ୍ୱାରା (୧୦୩) ଶ୍ରୀକୃଷ୍ଣଙ୍କର ଅବସାଦର ହେତୁ ପ୍ରେମିକା ନିକଟରେ ରହସ୍ୟାଚ୍ଛନ୍ନ ରଖାଯାଇଛି ।

ପ୍ରଣୟିନୀ ରାଧାଙ୍କର ଦୋଦୁଲ୍ୟମାନ ଚିତ୍ତ ବର୍ତ୍ତମାନ ସମସ୍ତ ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱରେ ଏକ ସ୍ଥିର ସଂକଳ୍ପ-ବିନ୍ଦୁରେ ପରିନିଷ୍ଠିତ । ଶ୍ୟାମ-ପ୍ରେମରେ ଯେତେବେଳେ ଚରମନିଷ୍ଠା ଆସି ଯାଇଛି, ସେତେବେଳେ ସମାଜର ବନ୍ଧନ, କୁଳବତୀର ଅଭିମାନ ଓ ଲୋକନିନ୍ଦା ତାଙ୍କ ନିକଟରେ ହୋଇପଡ଼ିଛି ତୁଚ୍ଛାତିତୁଚ୍ଛ । ଶ୍ୟାମ-ପ୍ରେମରେ ସଂପୂର୍ଣ୍ଣ ନିର୍ଭରଶୀଳତା ଓ ଚରମନିଷ୍ଠା ତାଙ୍କୁ ଦୁରୂହ ପ୍ରଣୟ ପଥରେ କରିଛି ସାହସିନୀ, ସେଥିପାଇଁ ସେ ମୁକ୍ତକଣ୍ଠରେ କହି ପାରିଛନ୍ତି—

ସହିରେ ! ଏ ମୋ ଦୃଢ଼ବ୍ରତ ।
ମୁଁ ଛିନି ନ ପାରିବି ଶ୍ୟାମ ପୀରତି । ( ଗ୍ରଂ., ପୃ ୪୦୩ )

ବାନ୍ଧବମାନେ ତାଙ୍କୁ ପଛେ ତ୍ୟାଗ କରନ୍ତୁ, ଗୁରୁଜନମାନେ ତାଙ୍କର ନିନ୍ଦା କରନ୍ତୁ, ଶାଶୁ ନଣନ୍ଦ ତାଙ୍କୁ ଗଞ୍ଜଣା ଦିଅନ୍ତୁ, ବ୍ରଜବଧୂ ହେଉଛନ୍ତି ତାଙ୍କର ଜୀବନର ସଙ୍ଗୀନି (୧୦୪) । ତାଙ୍କ ଚରଣରେ ଦାସୀତ୍ୱ ତାଙ୍କ ଜୀବନର ଚରମ ଅଭିଳାଷ । ଯେଉଁ ପ୍ରିୟତମଙ୍କର ଶ୍ରୀମୁଖକୁ ଚାହିଁଦେଲେ କୋଟି କୋଟି ଜନ୍ମର ଦୁଃଖ ଦୂର ହୋଇଯାଏ, ସେ କ୍ଷେତ୍ରରେ ଅନ୍ୟର ଅପସ୍ପୃହା ତାଙ୍କ ନିକଟରେ ମୂଲ୍ୟହୀନ । ଏହା ନ ହୋଇଥିଲେ ତାଙ୍କୁ କେନ୍ଦ୍ର କରି ଉଠୁଥିବା ଶ୍ୟାମ ଅପବାଦକୁ ସେ ସ୍ୱାଗତ କରି ନଥାନ୍ତେ କିମ୍ବା ସେହି ଚନ୍ଦ୍ରାରେ ଧନାଢପାତର କଳ୍ପନା କରି ନଥାନ୍ତେ । ଶ୍ରୀମତୀଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—

ଶ୍ୟାମ ଅପବାଦ ମୋତେ ଲଗିଥାଉ ରେ, ପ୍ରାଣସହି !
ନିତ ସେହି ଚନ୍ଦ୍ରାରେ ମୋ ଧନ ଯାଉ ରେ । ଘୋଷା ।
( ଗୋ: କୃ. ଗ୍ରଂ. ପୃ ୪୦୨ )

ବନମାଳୀଙ୍କର ରାଧା ଶ୍ୟାମ ଅନୁରାଗ ସମ୍ପର୍କରେ ପ୍ରାଣର ଆବେଗରେ କହିଛନ୍ତି—

ପ୍ରିୟସହି ! ଜୀବନ ପଛକେ ଯିବ ଗୋ !
ପରାଣୁ ଅଧିକ ଯାହାକୁ ମଣିଛି
ସେ କାହ୍ନୁ ମନରୁ ଯିବ ଗୋ । ଘୋଷା ।
ପର ପରିବାଦ ମୋତେ ତ ସୁଆଦ
ହେ ଶ୍ୟାମ ପୀରତି ଲାଗି ଗୋ ।
ପଛରେ ପୁରତେ କହନ୍ତୁ ଯେ ଯେତେ
ତହିଁକି ମୁଁ ଅନୁରାଗୀ ଗୋ । ୧ ।
( ବନମାଳୀ ପଦ୍ୟାବଳୀ, ୨ୟ ସଂ, ପୃ ୧୪ )

(୧୦୩) ବୃ. ଗୋ. ବ. ମା, ୭ମ ଅଙ୍କ, ପୃ-୩୭୨।୩୭୦
(୧୦୪) ଗୋ. କୃ. ଗ୍ରଂ., ପୃ ୪୦୩ ଓ ବ. ଚ. ୪୮।୫୬

ଶ୍ୟାମ ପ୍ରେମ ହେତୁ ସମାଜର ସହସ୍ର ନିନ୍ଦା ଓ ଅପଖ୍ୟାତି ମଧ୍ୟରେ ସେ ନିଜର କ୍ଳିଷ୍ଟ ଦଗ୍ଧ ପ୍ରାଣ ଧାରଣ କରି ରହିଛନ୍ତି । ପ୍ରିୟତମଙ୍କର ଅନନ୍ତଗୁଣ ଆବୋରି ସେ ରହିଛନ୍ତି । ସେହି ଅହୈତୁକୀ ପ୍ରେମ ହେତୁ ବିରହରେ ଚକ୍ଷୁରୁ ତାଙ୍କର ଲୋତକ ବିଗଳିତ ହେଉଛି, ହୃଦୟ ବିଦୀର୍ଣ୍ଣ ନ ହୋଇ ରହିଛି ( କହିବାକୁ ସିନା ଶ୍ୟାମ ପ୍ରୀତି କରିଛି, ଛ°, ପୃ ୪୦୧ ) ।

କେବଳ ଗୋଟିଏ ଜନ୍ମରେ ନୁହେଁ, ଅଗଣିତ ଜନ୍ମରେ ଶ୍ୟାମଙ୍କର ପଦସେବା ପରମପ୍ରେମିକା ରାଧାଙ୍କର ଏକମାତ୍ର ଅଭିଳାଷ । ତାଙ୍କ ହୃଦୟର ଦୁଃଖାଗ୍ନି ନିର୍ବାପିତ କରି ପାରିବେ ତାଙ୍କ ଜୀବନର ଶ୍ୟାମ । ପ୍ରେମିକଙ୍କ ସହ ତାଙ୍କର ମିଳନ ତୃଷ୍ଣା କେବଳ ଗୋଟିଏ ଜୀବନକାଳ ମଧ୍ୟରେ ସୀମିତ ନୁହେଁ, ଅନନ୍ତ କାଳରେ ପରିବ୍ୟାପ୍ତ । ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—

ଯାହା ଭଳିଥିଲି ହୋଇଥିଲେ ଆଜି
ଚନ୍ଦ୍ରାନନ ଦର୍ଶନ୍ତା କି ? ।୧।
ଶତ ଅବସ୍ଥିତ ତେଜିଲେ ରାଜୀବ
ପଦସେବା ମିଳନ୍ତା କି ? ।୨। (ଗୋ. କୃ. ଗ୍ର°., ପୃ-୩୯୮)

ଜୀବନରେ ନହେଲେ ମଧ୍ୟ ମୃତ୍ୟୁରେ ପ୍ରେମିକଙ୍କର ସଙ୍ଗ ଓ ସେବା-ତୃଷ୍ଣାର ଚିତ୍ର ସଂସ୍କୃତ ଓ ଦେଶୀୟ ବୈଷ୍ଣବ କାବ୍ୟମାନଙ୍କରେ ପରିଦୃଷ୍ଟ ହୁଏ । ଗୋଟିଏ ଉକ୍ତି ଅଛି—

'ମୃତ୍ୟୁସୀମାଗତୁ ସ୍ୱଚ୍ଛନ୍ଦେ ରପି ସଙ୍ଗତୃଷ୍ଣା' (ଉ. ନୀ., ସ୍ଥାୟୀଭାବ, ପୃ-୭୯୫)

କିମ୍ବା ଉଜ୍ଜ୍ୱଳ ନୀଳମଣିରେ ଉଦ୍ଧୃତ ରାଧାଙ୍କର ଅଭିଳାଷ ସୂଚକ ଗୋଟିଏ ଶ୍ଳୋକର ଭାବ ସହ ତା'ର ତୁଳନା କରାଯାଇପାରେ, ଯଥା—

ପଞ୍ଚତ୍ୱଂ ତନୁରେତୁ ଭୂତନିବହାଃ ସ୍ୱାଂଶେ ବିଶନ୍ତୁ ସ୍ଫୁଟଂ
ଧାତାରଂ ପ୍ରଣିପତ୍ୟ ହନ୍ତ ଶିରସା ତତ୍ରାପି ଯାଚେ ବରମ୍ ।
ତଦ୍‌ବାପୀଷୁ ପୟସ୍ତଦୀୟମୁକୁରେ ଜ୍ୟୋତିସ୍ତଦୀୟାଙ୍ଗନ-
ବ୍ୟୋମ୍ନି ବ୍ୟୋମ ତଦୀୟ ବର୍ତ୍ମନି ଧରା ତତ୍ତାଳବୃନ୍ତେଽନିଳଃ । (୧୦୫)

ପ୍ରୀତି ଲଗି ରାଧାଙ୍କର ଚରମ ତ୍ୟାଗ ଓ ଶ୍ୟାମଙ୍କଠାରେ ତାଙ୍କର ଆତ୍ମସମର୍ପଣ ଭାବ କେତୋଟି ଚଉତିଶା ସଙ୍ଗୀତରେ ପରିସ୍ଫୁଟ ହୋଇଛି । ଗୋଟିଏ ଗୀତରେ (ଶ୍ୟାମ-ନିର୍ମଳ-ଜଳଧର ଛବିକି) ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—ଶ୍ୟାମଙ୍କ ନିମିତ୍ତ ସେ ଲଜ୍ଜା, ପତି, ପିତୃକୁଳ-ସାଗରକୁ ଚଳୁ କରି ସାରିଲେଣି । ପ୍ରୀତିଲାଗି ନିଜର ଦେହର ମମତା ତ୍ୟାଗ କଲେଣି । ସୀମିତ ଜୀବନକାଳ ମଧ୍ୟରେ ଶ୍ୟାମପ୍ରେମ-ବସ୍ତୁଟି ତାଙ୍କ ପକ୍ଷରେ ଅସହ୍ୟ । ଜନ୍ମାବଧି ଅନ୍ତରର ସମସ୍ତ ନିଷ୍ଠା ଅକାଡ଼ି ଦେଇ କେତେ ବ୍ରତ ଆଚରଣ କରି ସୂର୍ଯ୍ୟଦେବଙ୍କ ଠାରେ ସେହି ଗୋଟିଏ ମାତ୍ର ପ୍ରାର୍ଥନା : ସେହି ଇନ୍ଦ୍ରନୀଳମଣି-ବିଗ୍ରହ

(୧୦୫) କାଳିଦାସ ରାୟ, ବ୍ରଜବାଂଶରୀ, ପ. ସା., ୩ୟ ସଂ., ୧୩୮୩, ପୃ-୨୬

ଶ୍ୟାମ ତାଙ୍କ ଗଳାର ହାର ତୁଲ୍ୟ ରହିଥାନ୍ତୁ । ସେ ଯଦି ସଂସାର-ଵିତୃଷ୍ଣ ହୋଇ ଯୋଗିଙ୍କ ବ୍ରତ ଆଚରଣ କରନ୍ତି, ତା'ହେଲେ ହେହି ପ୍ରିୟତମ ହେଉଛନ୍ତି ତାଙ୍କର ଥାଳ ତୁଲ୍ୟ—

ବଳାଇବ ମଣି ମୋର ଗଳାର ଛଇଳାବର
ମୁଁ ଯୋଗିନୀ, ସେ ଥାଳ, ଚେଜି ବରଉବ କି ? (ଗ୍ରଂ., ପୃ-୪୦୮)

ଅନ୍ୟ ଏକ ଗୀତରେ (ଦେଲ ସହି ! କୂଳକୁ ମୁଁ ଟେକି ଜଳାଞ୍ଜଳି, ଗ୍ରଂ., ପୃ-୪୩୦) ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—ଶ୍ୟାମ ପ୍ରୀତିକି ଜୀବନର ସର୍ବସ୍ୱ ମଣି ସେ କୁଳରେ ଜଳାଞ୍ଜଳି ଦେଇଛନ୍ତି । ଜୀବନର ସମସ୍ତ ସୁଖ ତାଙ୍କ ପଦତଳେ ନିଉଛାଳି କରିଛନ୍ତି । ଶ୍ୟାମ ପ୍ରୀତିକୁ ସେ କୋଟି ଜନ୍ମାନ୍ତର ପୁଣ୍ୟଫଳ ମନେ କରନ୍ତି । ସେହି ଲୋକପ୍ରିୟ ରୂପକଟିର ପୁନରାବୃତ୍ତି ଘଟାଇ ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି ('ମୁଁ ଯୋଗିନୀ ଜାଣ ଆଲି ! ସେ ମୋହର ଥାଳି' ।୨। ଗ୍ରଂ., ପୃ-୪୩୦) । ଶ୍ୟାମ ତାଙ୍କ ହୃଦୟର ନବ ମୃଗମଦ ପତ୍ରାବଳୀ ତୁଲ୍ୟ । ସେ ଯଦି ନିଆଳି ହୁଅନ୍ତି, ତା'ହେଲେ ପ୍ରିୟତମ ଶ୍ୟାମ ହେଉଛନ୍ତି ମତ୍ତମଧୁକର । ପ୍ରିୟତମଙ୍କର ସୌନ୍ଦର୍ଯ୍ୟ, ବୈଦଗ୍ଧ୍ୟ ଓ ସୁଗୁଣ ଚିନ୍ତା କରି କରି ତାଙ୍କ ନାମକୁ ଗୁଣ୍ଡିର ହାର କରିଥିବେ ।

ଅନ୍ୟ ଏକ ଗୀତରେ (ମୋ ସହି ରେ ! କୃଷ୍ଣ ଅନୁରାଗ ଗୁଣେ) କବି ରାଧାଙ୍କ ମୁଖରେ କୃଷ୍ଣାନୁରାଗର ପ୍ରଶଂସା କରି ତା' ନିକଟରେ ଗୁରୁ ଗୌରବ, ଯଶ ଅପଯଶ, ନିନ୍ଦା ପ୍ରଶଂସାକୁ ତୁଚ୍ଛ କରାଇଛନ୍ତି । ସେ ଜାତିକୁଳଶୀଳ ପ୍ରିୟତମଙ୍କ ପାଦପଦ୍ମରେ ନିଉଛାଳି କରିଛନ୍ତି । ଗୁରୁଗୌରବକୁ ତୁଚ୍ଛ କରି 'କୁଳକଳଙ୍କିନୀ' ଅପବାଦକୁ ସ୍ୱାଗତ କରିଛନ୍ତି । ପ୍ରେମାସ୍ପଦର ପ୍ରଣୟରେ ଚୂଡ଼ାନ୍ତ ନିଷ୍ଠା ଓ ନିର୍ଭରତା ନ ରହିଲେ ପ୍ରେମିକା ଠାରେ ଏ ପ୍ରକାର କୁଳ ତଥା ସମାଜାତିରିକ୍ତ ମନୋଭାବର ପ୍ରକାଶ ଅସମ୍ଭବ । କୁଳଶୀଳ ସମ୍ପର୍କରେ ସଖୀର ସମସ୍ତ ଉପଦେଶ ଓ ପରାମର୍ଶ ରାଧାଙ୍କ ନିକଟରେ ମୂଲ୍ୟହୀନ ହୋଇ ପଡ଼ିଛି । କୃଷ୍ଣ ଶୂନ୍ୟ ଏ ଗୁରୁଗରବତ ଗୃହବାସ ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠୁଛି । କୃଷ୍ଣ ପ୍ରେମୋନ୍ମାଦନାରେ ଯୋଗିନୀ ହୋଇଯିବାକୁ ସେ ଶ୍ରେୟସ୍କର ମନେକରିଛନ୍ତି ।

ସେହିପରି ଆଉ ଏକ ଗୀତରେ (ସହି ! କହୁଛନ୍ତି ସତ, ଗ୍ରଂ., ପୃ-୪୨୯) କବି ଶ୍ରୀମତୀଙ୍କର କୃଷ୍ଣୈକଲାଳସାମୟୀ ମର୍ମୋକ୍ତିର ସୂଚନା ଦେବାକୁ ଯାଇ ତାଙ୍କ ମୁଖରେ ପ୍ରକାଶ କରିଛନ୍ତି—କୃଷ୍ଣ ହେଉଛନ୍ତି ତାଙ୍କ ଜୀବନର ସର୍ବସ୍ୱ । ପ୍ରିୟବାନ୍ଧବଗଣ ତାଙ୍କର ନିନ୍ଦା କରନ୍ତୁ, ଗୁରୁଜନମାନେ କୁଳରେ ତାଙ୍କୁ ରଖନ୍ତୁ ବା ତ୍ୟାଗ କରନ୍ତୁ, ଇତର ଲୋକେ ତାଙ୍କର ଦୁର୍ନାମ ରଟନା କରନ୍ତୁ, ବ୍ରଜ ଭୂମିରେ ସେ କୁଳକଳଙ୍କିନୀ ହୁଅନ୍ତୁ ପଛକେ, ବ୍ରଜେନ୍ଦ୍ରଙ୍କ ପ୍ରେମରେ ତାଙ୍କର ନାମ ଗାନ କରି ସେ ବହୁଳତା ହେଉଥିବେ । ଗୀତଟି ଅବଶ୍ୟ ଏକ ସଂସ୍କୃତ ଶ୍ଳୋକର ମର୍ମାନୁବାଦ (୧୦୬) ।

(୧୦୬) ଗୋ. କୃ. ଗ୍ରଂ, ପୃ-୪୨୯

ଆତ୍ମସମର୍ପଣ ଭାବମୂଳକ ଗୀତଗୁଡ଼ିକୁ ଅନୁଧ୍ୟାନ କଲେ ଗୀତଗୋବିନ୍ଦ, ପଦାବଳୀ ମାହାତ୍ମ୍ୟ, ବିଦଗ୍ଧ ଚିନ୍ତାମଣି ଓ କବିସୂର୍ଯ୍ୟ ଗ୍ରନ୍ଥାବଳୀର (୧୦୭) ଅନୁରୂପ ଛନ୍ଦମାନ ସ୍ମରଣକୁ ଆସିଯାଏ । ଗୀତଗୋବିନ୍ଦରେ ମାଧବ ପ୍ରେମମୁଗ୍ଧା ରାଧାଙ୍କ ମୁଖରେ ଜୟଦେବ ସୂଚିତ କରିଛନ୍ତି—

ଗଣୟତି ଗୁଣଗ୍ରାମଂ ଭାମଂ ଭ୍ରମାଦପି ନେହତେ
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।
ଯୁବତିଷୁ ବଲସ୍ତୃଷ୍ଣେ କୃଷ୍ଣେ ବିହାରିଣି ମାଂ ବିନା
ପୁନରପି ମନୋ ବାମଂ କାମଂ କରୋତି କରୋମି କିମ୍ ।
(ଗୀ. ଗୋ., ୨।୫।୧୦, ପୃ-୩୭-୩୮)

ଅର୍ଥାତ୍ ଶ୍ରୀକୃଷ୍ଣ ମୋତେ ତ୍ୟାଗକରି ଅନ୍ୟ ଯୁବତୀଗଣଙ୍କୁ ନେଇ ବିହାର କରୁଛନ୍ତି, ତଥାପି ମୁଁ ତାଙ୍କୁ କାମନା କରୁଛି । ମନରେ ଭ୍ରମବଶତଃ କ୍ରୋଧକୁ ସ୍ଥାନ ଦେଉନାହିଁ । ଅଥଚ ତାଙ୍କର ଗୁଣସମୂହ ଗଣନା କରୁଛି । ଅନ୍ତର ଦୋଷ ସମୂହ ପରିହାର କରି ତାଙ୍କର ସ୍ମରଣରେ ସନ୍ତୋଷ ଲଭ କରୁଛି । ମନ ମୋର ବଶୀଭୂତ ନୁହେଁ, ମୁଁ କଣ କରିବି ?

ଗୀତଗୋବିନ୍ଦର କୃଷ୍ଣଙ୍କ ପରି ରାଧା କୃଷ୍ଣଙ୍କ ବିନା ଧନ, ଜନ, ଜୀବନ ଓ ଗୃହକୁ ତୁଚ୍ଛ ମନେ କରୁଛନ୍ତି । ଗୀତଗୋବିନ୍ଦର ଭାଷାରେ—

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ ।
( ଶ୍ରୀକୃଷ୍ଣଉକ୍ତି, ଗୀ. ଗୋ., ୩।୭।୪, ପୃ ୪୭ )

ଏ ସମ୍ପର୍କରେ ରୂପ ଗୋସ୍ୱାମୀଙ୍କର 'ପଦ୍ୟାବଳୀ'ର ଶ୍ଳୋକଟିଏ ସ୍ମରଣୀୟ । ଶ୍ରୀକୃଷ୍ଣଙ୍କୁ କିପରି ପ୍ରାପ୍ତ ହେବେ ରାଧା ସେହି ଚିନ୍ତାରେ ନିମଗ୍ନା । ବିଶାଖା ତାହା ଜାଣି ପାରି ରସିକତାରେ ତାଙ୍କୁ ପ୍ରଶ୍ନ କରନ୍ତି—

ଆହାରେ ବିରତିଃ ସମସ୍ତବିଷୟଗ୍ରାମେ ନିବୃତ୍ତିଃପରା
ନାସାଗ୍ରେ ନୟନଂ ଯଦେତଦପରଂ ଯଚ୍ଚୈକତାନଂ ମନଃ ।
ମୌନଞ୍ଚେଦମିଦଞ୍ଚ ଶୂନ୍ୟମଖିଳଂ ଯଦ୍ବିଶ୍ୱମାଭାତି ତେ
ତଦ୍‌ବ୍ରୂୟାଃ ସଖି ଯୋଗିନୀ କିମସି ଭୋଃ କିମ୍ବା ବିୟୋଗିନ୍ୟସି । (୧୦୮)
( ରୂ. ଗୋ, ପଦ୍ୟାବଳୀ ଶ୍ଳୋ ୨୩୮, ପୃ ୧୩୦ )

ଅର୍ଥାତ୍ ବିଶାଖା ରାଧାଙ୍କୁ କହୁଛନ୍ତି—ହେ ସଖି ! ତୁମର ଆହାରରେ ରୁଚି ନାହିଁ । ସାଂସାରିକ ସମସ୍ତ ବିଷୟରେ ତୁମର ନିବୃତ୍ତି । ତୁମର ନେତ୍ର ନାସିକାର ଅଗ୍ରଭାଗରେ ସ୍ଥିର । ତୁମର ମନ ଏକନିଷ୍ଠ ହୋଇଛି । ତୁମେ ଯେପରି ମୌନତା ଆଚରଣ କରିଛ;

(୧୦୭) କ. ସୂ. ଗ୍ରଂ, ପୃ-୨୧୧
(୧୦୮) ଉ. ନୀ. ଓ ଗୌ. ବୈ. ଦ. (୫ମ) ପୃ-୨୮୭୩

ଏଥିରୁ ସାରା ସଂସାର ତୁମକୁ ଶୂନ୍ୟ ପ୍ରତୀତ ହେଉଛି । ସଖି ! ତୁମେ କୁହ, ତୁମେ ଯୋଗିନୀ ନା ବିୟୋଗିନୀ ?

ବୈଷ୍ଣବ ପଦାବଳୀରେ ରାଧାଙ୍କର ଆତ୍ମସମର୍ପଣରେ ପ୍ରାଣସ୍ପର୍ଶୀ ଚିତ୍ର ରହିଛି । ସମସ୍ତ ସାଂସାରିକ ବାଧା ଓ ପ୍ରତିବନ୍ଧକର ଊର୍ଦ୍ଧ୍ୱରେ ମୁରାରି ଗୁପ୍ତଙ୍କର ରାଧା ବିଜୟିନୀ ରୂପେ ଆତ୍ମପ୍ରକାଶ କରିଛନ୍ତି । ସଖୀକୁ ସମ୍ବୋଧନ କରି ସେ କହୁଛନ୍ତି—

ସଖି ହେ ! ଫିରିୟା ଆପନ ଘରେ ଯାଓ ।
ଜୀୟନ୍ତେ ମରିୟା ଯେ    ଆପନା ଖାଇୟାଛେ
ତାରେ ତୁମି କି ଆର ବୁଝାଓ ।।
ନା ଜାନିୟା ମୂଢ଼ ଲୋକେ    କି ଜାନି କି ବଲେ ମୋକେ
ନା କରିୟେ ଶ୍ରବଣ ଗୋଚର ।
ସ୍ରୋତ ବିଥାର ଜଲେ    ଏ ତନୁ ଭାସାୟେଛି
କି କରିବେ କୁଲେର କୁକୁରେ । ( ପ. ସା., ପୃ-୧୫୯ )

କୁଳ ତ୍ୟାଗର ଦୃଢ଼ ସଂକଳ୍ପବଦ୍ଧା ବଳରାମ ଦାସଙ୍କର ରାଧା କହୁଛନ୍ତି—

ଗୁଡ଼େ ଗୁଡ଼ୁକ ପତି    କି ଘର ବସତି
କି ବା ବଲିବେ ବାପ ମାୟ ।
ଜାତି ଜୀବନ ଧନ    ଏ ରୂପ ଯୌବନ
ନିଛନି ସଁପିବ ଶ୍ୟାମ ପାୟ । ( ତତ୍ରୈବ, ପୃ-୧୫୯।୧୬୦ )

ସପ୍ତଦ୍‌ମର୍ତ୍ତୃକା ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି —

ଶ୍ୟାମବଁଧୁ, ଆମାର ପରାଣ ତୁମି ।
କୋନ୍ ଶୁଭଦିନେ    ଦେଖା ତୋମା ସନେ
ପାସରିତେ ନାରି ଆମି ।
× × ×
ମୋରେ କର ଦୟା    ଦେହ ପଦଛାୟା
ଶୁନ ଶୁନ ପରାଣ-କାନୁ ।
କୁଳ ଶୀଳ ସବ    ଭାସାଇନୁ ଜଲେ
ନା ଜୀୟବ ତୁୟା ବିନୁ । (ବି. ଚ. ପ.)

ଶ୍ୟାମଙ୍କୁ ନେଇ କୁଣ୍ଡଳ ସିଦ୍ଧ ଯୋଗିନୀ ହେବାର କଳ୍ପନା ପଦାବଳୀ ସାହିତ୍ୟରେ ଯଥ ଚିତ୍ର ପରିଦୃଷ୍ଟ ହୁଏ । ଅଭିମନ୍ୟୁ ବିଦଗ୍‌ଧ ଚିନ୍ତାମଣିରେ ଶ୍ରୀକୃଷ୍ଣଙ୍କ ଉକ୍ତିରେ ଏ ଭାବର ସଂକେତ ଦେଇଛନ୍ତି—

ତା ନାମ ଗାଇ ତୁଣ୍ଡରେ    ପ୍ରୀତି ଡମ୍ବରୁ ବଜାଇ ଦାଣ୍ଡରେ ଗୋ !
ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ । ସଜନି ଗୋ ! ।୩୬। (ବି. ଚ., ଛା: ୪୮)

ପରାଧୀନା କଶୋରୀଙ୍କର ବେଦନା ବଜଡ଼ିତ ଭାବ ଓ ଅନୁଭୂତିର ବାସ୍ତବ ଅଥଚ କମନୀୟ ଅଭିବ୍ୟକ୍ତି ଘଟିଛି ଗୋଟିଏ ଗୀତରେ (କୁଞ୍ଜବନଯାକ ଲୋଡ଼ୁଥିବେ ପରା, ଗୀ., ପୃ-୪୩୦) । ଏକ ଦଗରେ ନଜର ନାରୀ ଜନ୍ମ, ଅନ୍ୟ ଦଗରେ ତାଙ୍କର ପରାଧୀନତା ହେତୁକ ଅନୁଶାସନ-ପୀଡ଼ା ପ୍ରତି ଧିକ୍‌କାର କରି ରାଧା କହୁଛନ୍ତି—ଉଭୟଙ୍କର ମିଳନ ପଥରେ କେତେ ପ୍ରତିବନ୍ଧକ ! ତାଙ୍କର ଜୀବର ଜୀବନ ସଙ୍କେତ କୁଞ୍ଜରେ ତାଙ୍କୁ ନ ପାଇ ନୟନ ଅଶ୍ରୁସିକ୍ତ କରୁଥିବେ । ବୃନ୍ଦାଙ୍କୁ ପଗ୍ଭରବାବେଳେ କଣ ତାଙ୍କର ବାଷ୍ପରୁଦ୍ଧ ହୋଇ-ଉଠୁଥିବ । ପ୍ରିୟତମଙ୍କୁ ଦେଖି ଦେହ ଉଲ୍ଲସାଇ ସାରକା ତାଙ୍କ ନାମ ଉଚ୍ଚାରଣ କଲେ ବୃନ୍ଦାରଣ୍ୟର ସଖୀମାନଙ୍କୁ ପଠାଇ ପଥକୁ ଚାହିଁ ବସିଥିବେ । ଅସତର୍କତା ହେତୁ ଶ୍ରୀହସ୍ତରୁ ମୁରଲୀ ଖସି ପଡ଼ୁଥିବ, ଚନ୍ଦ୍ରାନନୀ ମୁଖ ମ୍ଳାନ ଦେଖା ଯାଉଥିବ । ମଞ୍ଜୁଗୀର୍ବାପନ୍ନ କବ ସ୍ୱାମିନୀଙ୍କର ନୂପୁର ଯୁଗଳ ପଦରୁ ବାହାର କରି ଶାଶୁ ଜଟିଳାଙ୍କର ଶୟନର ସଙ୍କେତ ଦ୍ୱାରା ତାଙ୍କର (ଶ୍ରୀମତୀଙ୍କର) ଅଭିସାର ଆନୁକୂଲ୍ୟରେ ବ୍ୟଞ୍ଜନା ସୃଷ୍ଟି କରିଛନ୍ତି ଗୀତଗୋବିନ୍ଦ ଆଦର୍ଶରେ ।

ପ୍ରେମର ସଞ୍ଚାର ଓ ବକାଶ କ୍ଷେତ୍ରରେ ନେତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦେଶ ବଦେଶର ବଭିନ୍ନ ଯୁଗର ଅଗଣିତ କବଙ୍କ ଲେଖନୀରେ ଏ ସମ୍ପର୍କରେ ଚମତ୍କାର ସଙ୍ଗୀତ କବତାମାନ ରଚିତ ହୋଇଛି । ଗୋଟିଏ ଗୀତରେ (ପ୍ରୀତି ରତି ସହି ଜଣାପଡ଼େ ନୟନେ ଗୀ. ପୃ-୪୨୬) ସଖୀର ଉକ୍ତି ଛଳରେ କବ ବର୍ଣ୍ଣନା କରିଛନ୍ତି—ପ୍ରୀତିର ସ୍ୱରୂପ ନେତ୍ର-ଭଙ୍ଗୀରୁ ଜଣାପଡ଼େ । ଏହା ଚକ୍ଷୁରେ ବକାର ସୃଷ୍ଟି କରି ଅନ୍ତରର ନିଗୂଢ଼ତମ ପ୍ରଦେଶରେ ସଂକ୍ରମିତ ହୁଏ ଏବଂ ମିଳନରେ ପରମସୁଖର ସମ୍ଭାବନା ଜାତ କରାଏ । ପ୍ରେମିକ ପ୍ରେମିକା ଉଭୟଙ୍କର ଦେହ ଓ ମନର ମିଳନ ଘଟିଲେ କେହି କାହାକୁ ମୂର୍ଚ୍ଛି ପାରନ୍ତି ନାହିଁ । ଉଭୟେ ଅମୃତରେ ଅଭିଷିକ୍ତ ହେଲା ପ୍ରାୟ ମନେ କରନ୍ତି । କନ୍ତୁ ବରହ କାଳରେ ଶୟନ, ସ୍ୱପ୍ନ, ଜାଗରଣ ଓ ଚନ୍ତନରେ ଏହାର ବପରୀତ ଭାବ ଯୋଗୁଁ ସେମାନଙ୍କର ଚତ୍ତ ଭାରାକ୍ରାନ୍ତ ହୋଇପଡ଼େ । ଉଭୟଙ୍କର ଦୈହିକ ବ୍ୟବଧାନ ସତ୍ତ୍ୱେ ଉଭୟେ ଏକମନ ଓ ଏକପ୍ରାଣ ହୋଇଥାନ୍ତି । ଏହାହିଁ ଜଗତରେ ସୁଜନ-ପ୍ରୀତିର ଲକ୍ଷଣ । ରୂପ ଗୋସ୍ୱାମୀ ପ୍ରଣୟିନୀ ରାଧାଙ୍କର ନେତ୍ର-ସୁଷମା ନାନାଭଙ୍ଗୀରେ ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଲଳିତା ମୁଖରେ କୁହାଯାଇଛି—

ଅସ୍ମିନ୍ନେବ ସବ୍ରେଜସମ୍ଭବ କୁତସ୍ତ୍ୱୋନ୍ନୋଽସି ବୃନ୍ଦାବନେ ।
ରାଧା ଭୂରି ହିରଣ୍ୟଗର୍ଭରଚିତପ୍ରତ୍ୟଙ୍ଗକାନ୍ତିସ୍ତବା ।
ହସ୍ତୋଦସ୍ତମହୀଧରସ୍ତ୍ୱମସକୃନ୍ନେତ୍ରାନ୍ତଭଙ୍ଗୀଚ୍ଛଟା-
କୃଷ୍ଟୋଚ୍ଚୈର୍ଧରଣୀଧରା ମମ ସଖୀ ତଦ୍‌ବାରମାହକୃଥାଃ । (ବ. ମା.)

ଅର୍ଥାତ୍ ଏହି ବୃନ୍ଦାବନରେ ଏକମାତ୍ର ବ୍ରହ୍ମା ତୁମର (କୃଷ୍ଣଙ୍କର) ସ୍ତବ କରିଥାନ୍ତି, କନ୍ତୁ ରାଧାଙ୍କର ପ୍ରତ୍ୟଙ୍ଗ କାନ୍ତିକୁ ବହୁ ହିରଣ୍ୟଗର୍ଭ ସ୍ତବ କରିଥାନ୍ତି । ତୁମେ ଥରେ ମାତ୍ର ପର୍ବତକୁ ହସ୍ତରେ ଧାରଣ କରିଛ, କନ୍ତୁ ମୋର ସଖୀ (ରାଧା) ନେତ୍ରାନ୍ତଭଙ୍ଗୀଚ୍ଛଟାରେ

ତୁମ ପରି ଧରଣୀଧରଙ୍କୁ କେତେ ବାର ଆକୃଷ୍ଟ କରିଛୁ । ଅତଏବ ହେ ବୀର ! ଆଉ ଅହଂକାର କରନା ।

ପଦାବଳୀ ସାହିତ୍ୟରୁ ନେତ୍ରର କରିଣୀ ସମ୍ପର୍କରେ ବହୁପଦ ଉଦ୍ଧାର କରାଯାଇପାରେ । ଗୋବିନ୍ଦ ଦାସଙ୍କ ପଦର ଦୁଇଟି ପଙ୍‌କ୍ତି—

"ରୂପ ନିରଖିତେ ଆଁଖିର ଲାଜ
ଭାସିଲ ଆନନ୍ଦ ଜଲେ ।"

× × ×

ରଙ୍ଗିଣୀ ଲୋଚନ ଖଞ୍ଜନ ବାନ୍ଧତେ
ପାତଲ ବିଷମ ଫାନ୍ଦେ ।" (ବି. ଚ. ପ:)

ବଳରାମ ଦାସ—

"ଆଁଖିର ଠାରେ ପାଗଲ କରିଲେ
କି ଜାନି କି ମନ୍ତ୍ର ଦିୟା ।" (ବି.ଚ.ପ)

ଅଭିମନ୍ୟୁ ମଧୁମଙ୍ଗଳଙ୍କ ମୁଖରେ ପ୍ରକାଶ କରିଛନ୍ତି—

ତା ଦେହେଁ ନେତ୍ର କି ନେତ୍ର ସେ ଅଛୁ ।
କି ଶ୍ରୁତି ବଚନ ମିଶି ରହିଛୁ ।୬। (ବି. ଚି., ଛା. ୪୨)

ବନମାଳୀ—

ଭଲ୍ଲ ତାର ଯେଉଁ ନୟନଠାରୁ
ସେ କି ମାର ବୀର ଜୟ କୁଠାର
ଭୂରୁ ବାଙ୍କ-ଛୁରୀ ଚଳିବା ଚାତୁରୀ
ତଉଦ ପୁରେ କେ ନଥିବେ ଦେଖି ।୨। (ବନମାଳୀ ପଦ୍ୟାବଳୀ, ପୃ-୨୪)

କବି କେତୋଟି ଗୀତରେ ନବାନୁରାଗିଣୀ ରାଧାଙ୍କର ବିରହ, ବିରହରେ ମୃତ୍ୟୁବାଞ୍ଛା ଏବଂ ରାଧା ବିରହରେ ଶ୍ରୀକୃଷ୍ଣଙ୍କର ଉତ୍କଣ୍ଠା ଓ ବିରହଦଶାର ବର୍ଣ୍ଣନା ଦେଇଛନ୍ତି । ବିରହ ଓ ବିରହଦଶା ବର୍ଣ୍ଣନାରେ ପ୍ରଥାସିଦ୍ଧ ପାରମ୍ପରିକତାର ଅନୁସୃତି ବହୁପରିମାଣରେ ଲକ୍ଷିତ ହୁଏ ।

ଗୋଟିଏ ଗୀତରେ (ସହି ! କି କାର୍ଯ୍ୟ ଜୀବନେ ? ଗ୍ରଂ., ପୃ-୩୭୭) ବିରହିଣୀ ରାଧା ସଖୀ ନିକଟରେ ନିଜର ବିରହବେଦନା ବର୍ଣ୍ଣନା କରୁଛନ୍ତି—ବିରହରେ ଜୀବନ ଯେତେବେଳେ ହାହାକାରମୟ ହୋଇ ଉଠିଛି, ସେତେବେଳେ ଜୀବନଧାରଣର କୌଣସି ଅର୍ଥ ନାହିଁ, ମୃତ୍ୟୁହିଁ ଶ୍ରେୟସ୍କର । ଶ୍ୟାମଙ୍କର ପ୍ରତି ଅଙ୍ଗରେ ନେତ୍ର ପଡ଼ନ୍ତ ମାତ୍ରେ ରତି କାମବାଣରେ ଜର୍ଜରିତ ହୋଇ ପଡ଼ୁଛି । ତାଙ୍କ ସହ ପ୍ରଥମ ସାକ୍ଷାତରୁ ଗୃହ ଅରଣ୍ୟ ପ୍ରାୟ ପ୍ରତୀତ ହେବା ସଙ୍ଗେ ସଙ୍ଗେ ବିରହରେ ଚନ୍ଦନ ଦେହରେ ଜ୍ୱାଳା ସୃଷ୍ଟି କରୁଛି ! ମଳୟ ଓ ଚନ୍ଦ୍ର ଅସହ୍ୟ ହୋଇ ଉଠିଛି । ସମ୍ପୃତ ପତ୍ରଦଳର ଶଯ୍ୟା ତାଙ୍କର ଏକମାତ୍ର ଆଶ୍ରୟ ।

ଅନ୍ୟ ଏକ ଗୀତରେ (ହେ ନାଗର ! ରସିକେନ୍ଦ୍ର ବଂଶୀପାଣି, ଛଂ, ପୃ-୪୦୬) କବି ସଖୀ ମୁଖରେ ରାଧାଙ୍କର ବିରହ ବିକାରର ସୂଚନା ଦେଇଛନ୍ତି । ଶ୍ୟାମ ବିରହରେ ରାଧାଙ୍କର ଶରୀର ଶୀର୍ଣ୍ଣ ହୋଇ ପଡ଼ିଛି । ସ୍ତନୋପରି ବିନ୍ୟସ୍ତ ମଞ୍ଜୁଳ ହାରକୁ ସେ ଭାରପ୍ରାପ୍ତ ଦୁଃଖ ମନେ କରୁଛନ୍ତି । ଶରୀରରେ ପ୍ରଲିପ୍ତ ଚନ୍ଦନ ହଳାହଳର ଜ୍ୱାଳା ସୃଷ୍ଟି କରୁଛି । ପଦ୍ମଦଳକୁ ବାଣ ବିକାର୍ଣ୍ଣ ହେବା ପ୍ରାପ୍ତ ତାଙ୍କର ନେତ୍ର ଇନ୍ଦୀବରରୁ ଅଶ୍ରୁଧାରା ବିଗଳିତ ହେଉଛି । କୋମଳ ପଲ୍ଲବଶଯ୍ୟା ଅଗ୍ନିଶଯ୍ୟାପ୍ରାପ୍ତ ପ୍ରତୀତ ହେଉଛି । ସମସ୍ତ ବିରହୋପଚାର ତାପ ପ୍ରଶମିତ କରିବା ଦୂରେ ଥାଉ ବିରହତାପ ଦ୍ୱିଗୁଣିତ କରୁଛି । ଏ ଅବସ୍ଥାରେ ମୃତ୍ୟୁକୁ ଶ୍ରେୟସ୍କର ମନେ କରି ଜନ୍ମାନ୍ତରରେ ଶ୍ରୀକୃଷ୍ଣଙ୍କ ସଙ୍ଗସୁଖ କାମନାରେ ତାଙ୍କର ନାମ ଜପ କରୁଛନ୍ତି । ବିରହ ଦଶା ବର୍ଣ୍ଣନାରେ ଗୀତଗୋବିନ୍ଦ ଓ ରାଧା କାବ୍ୟର ପରମ୍ପରା ଅବିକଳ ଅନୁସୃତ । ଜୟଦେବ ବିରହିଣୀ ରାଧାଙ୍କର ଅବସ୍ଥା ସଖୀମୁଖରେ ପ୍ରକାଶ କରିଛନ୍ତି—

ସ୍ତନବିନିହିତମପି ହାରମୁଦାରମ୍ ।
ସା ମନୁତେ କୃଶ ତନୁରିବ ଭାରମ୍ ।
ରାଧିକା ! ତବ ବିରହେ କେଶବ ।୧। (ଧ୍ରୁ)
ସରସମସୃଣମପି ମଳୟଜପଙ୍କଜମ୍ ।
ପଶ୍ୟତି ବିଷମିବ ବପୁଷି ସଶଙ୍କମ୍ ।୨।
ଶ୍ୱସିତପବନମନୁପମପରିଣାହମ୍ ।
ମଦନଦହନମିବ ବହତି ସଦାହମ୍ ।୩।
ଦିଶି ଦିଶି କିରତି ସଜଳକଣଜାଲମ୍ ।
ନୟନନଳିନମିବ ବିଦଳିତନାଳମ୍ ।୪।
ନୟନବିଷୟମପି କିଶଳୟତଲ୍ପମ୍ ।
ଗଣୟତି ବିହିତହୁତାଶବିକଳ୍ପମ୍ ।୫।
ହରିରିତି ହରିରିତି ଜପତି ସକାମମ୍ ।
ବିରହବିହିତମରଣେବ ନିକାମମ୍ ।୬। (ଗୀ. ଗୋ., ୪।୯, ପୃ-୫୯।୬୧)

ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ ରଚନାରେ ରାଧା ବିରହର ଅନୁରୂପ ଚିତ୍ର ଇତସ୍ତତଃ ପରିଲକ୍ଷିତ ହୁଏ (୧୦୯) । ଅଭିମନ୍ୟୁଙ୍କ ପ୍ରେମଚିନ୍ତାମଣିରେ ବିରହିଣୀ ରାଧା ତରିଙ୍କର ମଦ୍ଦମାମସ୍ୱତା ତାଙ୍କର ଗୋଟିଏ ଉକ୍ତିରୁ ଜଣାପଡ଼େ । ରାଧାଙ୍କ ବିରହ ଯନ୍ତ୍ରଣା ପାଇଁ ସଖୀମାନେ କୃଷ୍ଣଙ୍କୁ ଧିକ୍କାର କରିବାରୁ ରାଧାଙ୍କ ପକ୍ଷରେ ପ୍ରିୟତମଙ୍କର ନିନ୍ଦା ଅସହ୍ୟ ହୋଇଛି । ସେ କହୁଛନ୍ତି—

ତାଙ୍କୁ ମୋ ହୃଦ ଚନ୍ଦ୍ରକାନ୍ତ ଶିଳ,
ପ୍ରୀତି-ଚନ୍ଦ୍ର ଉଦୟରେ ତରଳ ।

(୧୦୯) କବିସୂର୍ଯ୍ୟ ବଳଦେବ ରଥ, ସଙ୍ଗୀତ କଳ୍ପଲତା, କ. ସୂ. ଗ୍ରଂ. ପୃ-୧୯।୨୦

ମୋ ଦୁଃଖ ପାଇଁ କି ଭାଳୁଛୁ ମୁହିଁ ?
ମୋ ବିନା କ୍ଳେଶୀ ହୋଇଥିବେ ସେହି ।
ସେହି କଥା ଚେତି
ନିରବଧି ଗ୍ଳାନି ହୋଏ କରତି । (ପ୍ରେମଚନ୍ତାମଣି, ୫୭।୨୭)

କେତୋଟି ଗୀତରେ ଶ୍ରୀକୃଷ୍ଣଙ୍କର ବିରହ ଦଶାର ବର୍ଣ୍ଣନା କରାଯାଇଛି । ରାଧାଙ୍କ ସମକ୍ଷରେ ଶ୍ୟାମଙ୍କର ବିରହ ଦଶା ବର୍ଣ୍ଣନା କରି ସଖୀ କହୁଛି—ଦିଶୋରୀଙ୍କ ଝୁରି ଝୁରି ଶ୍ୟାମଙ୍କର ତନୁ ଶୀର୍ଣ୍ଣ ହୋଇ ପଡ଼ିଛି । ତାଙ୍କର (ରାଧାଙ୍କର) ବିରହ ବେଦନାର ବର୍ଣ୍ଣନା ଶୁଣି ଶ୍ୟାମଙ୍କର ବ୍ୟାକୁଳତା ବୃଦ୍ଧି ପାଉଛି । ବିରହତାପ ପ୍ରଶମନ ପାଇଁ ଅଙ୍ଗରେ ଚନ୍ଦନ ଲେପନ କରୁଛନ୍ତି । ଅଭିସାରଯୋଗ୍ୟ ଶ୍ୱେତନିଚୋଳ ତାଙ୍କ ପକ୍ଷରେ ଦୁର୍ବହ ହୋଇଛି । ଶରୀ ତାଙ୍କର ବିକାରଗ୍ରସ୍ତ ହୋଇ ପଡ଼ିଥିବାରୁ ତାଙ୍କର (ରାଧାଙ୍କର) ନାମ ନିର୍ଜନରେ ଜପି ଚାଲିଛନ୍ତି । ଏକାନ୍ତ ନିବିଡ଼ ବର୍ଦ୍ଧନଶୀଳ ଉତ୍ୟନ୍ତ ନିବିଡ଼ ଅନୁରାଗର ଶକ୍ତିରେ ସଖୀ ବିସ୍ମୟ ପ୍ରକାଶ କରି କହୁଛି—କେଉଁ ଅଘଟନ ଅସମ୍ଭବ ନୁହେଁ

କି ନ କରେ ନବରାଗ ? ।୫। (ଗ୍ରଂ., ପୃ-୬୭୩)

ଅନ୍ୟ କେତୋଟି ଗୀତରେ ଦୂତୀ ଓ ସଖୀ ମୁଖରେ କବି ଶ୍ରୀକୃଷ୍ଣଙ୍କ ପ୍ରଣୟ ସ୍ପୃହାଜନିତ ବ୍ୟାକୁଳତା, ତାଙ୍କର ଚେଷ୍ଟା ଓ ମୁଗ୍‌ଧ ଭଙ୍ଗୀ ଏବଂ ତାଙ୍କ ଦୃଷ୍ଟିରେ ରାଧାଙ୍କର ପ୍ରେମୋତ୍କର୍ଷର ବର୍ଣ୍ଣନା ଦେଇଛନ୍ତି । ଏହାଦ୍ୱାରା ବିରହିଣୀ ରାଧାଙ୍କ ପ୍ରାଣରେ ଆଶ୍ୱାସନାର ବାରି ସିଞ୍ଚନ କରିବା ସଙ୍ଗେ ସଙ୍ଗେ ତାଙ୍କ ଚିତ୍ତରେ ଶ୍ୟାମପ୍ରେମ ନିର୍ଭରତାର ଭିତ୍ତି ଦୃଢ଼ କରିଛନ୍ତି । ଗୋଟିଏ ଗୀତରେ (ମନସିଜ ମନମୋହନ ଘନଶ୍ୟାମ ସୁନ୍ଦର ରେ ସଜନି ! ଗ୍ରନ୍ଥାବଳୀ ପୃ-୪୨୦) ଦୂତୀ ଶ୍ୟାମଙ୍କର ଚେଷ୍ଟା ଓ ମୁଗ୍‌ଧଭଙ୍ଗୀ ବର୍ଣ୍ଣନା କରି କହୁଛି— ଶ୍ରୀକୃଷ୍ଣଙ୍କର ଚିତ୍ତ ରାଧାଙ୍କ ପ୍ରେମରେ ସଦା ଜରଜର । ସ୍ଫୁଟ ଚମ୍ପକ ବଲ୍ଲୀକୁ ଦୂରରୁ ଚାହିଁବା ମାତ୍ରେ ତାଙ୍କ ତନୁରେ ବେପଥୁର ସଞ୍ଚାର ହେଉଛି । ନାଗକେଶର କୁଞ୍ଜ ଶଯ୍ୟାରେ ବସି ଧୀରେ ଧୀରେ 'ରାଧେ ରାଧେ' ବୋଲି ଗୀତ ଗାଉଛନ୍ତି । ଯମୁନାର ନୀଳ ତରଙ୍ଗରେ ରାଜହଂସର ସ୍ୱନକୁ ତାଙ୍କ (ରାଧାଙ୍କର) ପଦର ନୂପୁର ଧ୍ୱନି ପ୍ରାୟ ମନେ କରୁଛନ୍ତି । କେତକୀ ଦଳରେ କାମଲେଖ ଲେଖି ତା ହସ୍ତରେ ଦେବାବେଳେ ନେତ୍ର ତାଙ୍କର ବାଷ୍ପ ସଜଳ ହୋଇ ଉଠୁଛି । ବିରହରେ ତାଙ୍କର (ରାଧାଙ୍କର) ଅପୂର୍ବ ସୌନ୍ଦର୍ଯ୍ୟ ଓ ଗୁଣରାଜି ସଦା ଗୁଣି ହେଉଛନ୍ତି ।

ଅନ୍ୟ ଏକ ଗୀତରେ (ପ୍ରାଣମିତ କି କହିବି ତୋତେ ହିତ ? ଗ୍ରଂ, ପୃ-୪୧୦) ରାଧାଙ୍କ ସହିତ ମିଳିତ ହେବା ପାଇଁ କବି ସଖୀ ମୁଖରେ ଶ୍ରୀକୃଷ୍ଣଙ୍କର ଉତ୍କଣ୍ଠା ଓ ସ୍ପୃହା ଜନିତ ବ୍ୟାକୁଳତାର ଚିତ୍ର ଦେବାକୁ ଯାଇ ଅଭିନବ ଭଙ୍ଗୀରେ କବିକଳ୍ପିତ ନିସର୍ଗ ଜଗତର ଏକ ମଞ୍ଜୁଳ ବୈପରୀତ୍ୟର ସଙ୍କେତ ଦେଇଛନ୍ତି । ନବଘନକୁ ଚାହିଁ ଚାତକ ତୃଷାତୁର ହୁଏ, ଚକୋର ଚନ୍ଦ୍ରଙ୍କର ଅମୃତମୟ କିରଣ ପାନ କରେ—ଏ ହେଉଛି ନିସର୍ଗ ଜଗତର ସ୍ୱାଭାବିକ ଧର୍ମ । କିନ୍ତୁ କବି କଳ୍ପନାରେ ଆଜି ଚାତକିନୀ ରାଧାଙ୍କୁ ଚାହିଁ ନବଘନ ଶ୍ରୀକୃଷ୍ଣ

ତୃଷାତୁର ହୋଇ ଉଠିଛନ୍ତି । ଚକୋରୀ ରାଧାଙ୍କୁ କୃଷ୍ଣରୂପୀ ଚନ୍ଦ୍ର ଅପଲକ ନେତ୍ରରେ ଖୋଜି ରହିଛନ୍ତି । କୃଷ୍ଣରୂପୀ ତମାଳତରୁ କିଶୋରୀ ରୂପିଣୀ ମାଧବୀ ଲତାଠାରେ ଆଶ୍ରୟ ନେବାକୁ ସତେ ଯେପରି ବ୍ୟାକୁଳ । ବିରହ ଅବସ୍ଥାରେ ବ୍ରଜେନ୍ଦ୍ର ମୂହୂର୍ତ୍ତିକୁ କଳ୍ପ-ପ୍ରସାରିତ ମନେ କରୁଛନ୍ତି ।

ଗୋଟିଏ ଗୀତରେ କବି ରାଧାଙ୍କର ପ୍ରେମୋତ୍କର୍ଷ ବର୍ଣ୍ଣନା ବ୍ୟାଜରେ ତାଙ୍କର ଅନୁରାଗରେ କିପରି ଶ୍ୟାମଙ୍କର ତନ୍, ମନ. ଓ ଆତ୍ମା ଭରି ଉଠିଛି, ତାର ସୂଚନା ଦେଇଛନ୍ତି । ଅନ୍ୟ ବ୍ରଜସୁନ୍ଦରୀଙ୍କ ପ୍ରତି କଟାକ୍ଷପାତ ନ କରି କୁଞ୍ଜ ମାର୍ଗରେ ଶ୍ୟାମ ରାଧାଙ୍କ ପ୍ରତୀକ୍ଷାରେ ଉପବେଶନ କରିଛନ୍ତି, ପୁଣି ନିର୍ଜନ କୁଞ୍ଜରେ ଶ୍ରୀମତୀଙ୍କ ଗୁଣ ସ୍ମରଣ କରି ବ୍ୟଥିତ ପ୍ରାଣରେ ଅଶ୍ରୁ ମୁଞ୍ଚନ କରୁଛନ୍ତି । ପ୍ରେମ ତରଙ୍ଗିଣୀ ଶ୍ରୀମତୀଙ୍କର ପୀୟୂଷ ସମ୍ମିତ ରସ ପ୍ରବାହର ଶୀତଳସ୍ପର୍ଶ ବିନା ଶ୍ୟାମଙ୍କର ବିରହତାପ ପ୍ରଶମନର ସମ୍ଭାବନା ନାହିଁ (୧୧୦) ।

ଶ୍ରୀକୃଷ୍ଣଙ୍କ ବିରହ ଦଶା ବର୍ଣ୍ଣନାରେ (ରାଧାଙ୍କର ବିରହ ଦଶାର ଠିକ ପରି) ଗୀତ-ଗୋବିନ୍ଦ, ପଦାବଳୀ ସାହିତ୍ୟ ଓ ବଳଦେବଙ୍କର ରଚନାର ପ୍ରେରଣା ଓ ପ୍ରଭାବ ଅନସ୍ୱୀକାର୍ଯ୍ୟ (୧୧୧) ।



(୧୧୦) ଗୀ. ଗୋ: ୩।୭, ପୃ-୫୨

(୧୧୧) ଗୀ. ଗୋ. ୫।୧୦।୨, ୩, ୫, ପୃ-୬୬-୬୮ ଓ ପ. ସା., ଗୋବିନ୍ଦ ଦାସଙ୍କର ପଦ, ପୃ ୯୧-୯୨ ଏବଂ କ. ସ୍ମୃ. ଗ୍ରଂ: କ. ଚ. ଚ., 'ଙ' ଗୀତ, ପୃ-୧୧୪

# ଅଷ୍ଟମ ପରିଚ୍ଛେଦ

## ରାଧାକୃଷ୍ଣଙ୍କର ପ୍ରେମଲୀଳାମୂଳକ ଗୀତ

### ଅଭିସାର :

ସଂସ୍କୃତ ସାହିତ୍ୟ ଓ ବୈଷ୍ଣବ ସାହିତ୍ୟ ବିଶେଷତଃ ଶୁଦ୍ଧାଭକ୍ତି ସମ୍ବଳିତ ବୈଷ୍ଣବ କାବ୍ୟ, ନାଟକ ଓ ଗୀତମାନଙ୍କରେ ନାୟିକାର ଅଭିସାର ପ୍ରସଙ୍ଗର ବିଚିତ୍ର ବର୍ଣ୍ଣାଢ଼୍ୟ ଆଲେଖ୍ୟ ପରିଦୃଷ୍ଟ ହୁଏ । ରୂପ ଗୋସ୍ୱାମୀ ଅଭିସାରିକାର ସଂଜ୍ଞା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି—

ଯାଭିସାରୟତେ କାନ୍ତଂ ସ୍ୱୟଂବାଭିସରତ୍ୟପି !
ସା ଜ୍ୟୋତ୍ସ୍ନୀ ତାମସୀ ଯାନଯୋଗ୍ୟବେଶାଭିସାରିକା ।।
ଲଜ୍ଜୟା ସ୍ୱାଙ୍ଗଲୀନେବ ନିଃଶବ୍ଦାଖିଳମଣ୍ଡନା ।
କୃତାବଗୁଣ୍ଠା ସ୍ନିଗ୍ଧୈକ ସଖୀଯୁକ୍ତା ପ୍ରିୟଂ ବ୍ରଜେତ୍ (୧)

ଅର୍ଥାତ୍ ଯେଉଁ ନାୟିକା କାନ୍ତକୁ ଅଭିସାର କରାଏ ବା ସ୍ୱୟଂ ଅଭିସାର କରେ ତାହାଙ୍କୁ ଅଭିସାରିକା କୁହାଯାଏ; କିନ୍ତୁ ଏହି ଅଭିସାରିକା ଜ୍ୟୋତ୍ସ୍ନା ଓ ଅନ୍ଧକାର ଗମନଯୋଗ୍ୟ ବେଶ ଦ୍ୱାରା ଜ୍ୟୋତ୍ସ୍ନୀ ଓ ତାମସୀ ଭେଦରେ ଦୁଇ ପ୍ରକାର ହୁଏ । ଶୁକ୍ଳପକ୍ଷରେ ଶୁକ୍ଳ ପରିଚ୍ଛଦଧାରିଣୀ ବା ଗମନକାରିଣୀକୁ ଜ୍ୟୋତ୍ସ୍ନାଭିସାରିକା ଏବଂ କୃଷ୍ଣ ପକ୍ଷରେ କୃଷ୍ଣବର୍ଣ୍ଣ ବସ୍ତ୍ରଭୂଷଣଧାରିଣୀ ଯାତ୍ରାକାରିଣୀକୁ ତମୋଭିସାରିକା ବୋଲି ଚିହ୍ନିତ କରାଯାଏ । ଯେତେବେଳେ ଅଭିସାରିକା କାନ୍ତ ନିକଟକୁ ଗମନ କରେ, ସେତେବେଳେ ନିଜର ଅଙ୍ଗ ଦ୍ୱାରା ଅଙ୍ଗ ସଂଗୋପନ ଏବଂ ଭୂଷଣ ସବୁକୁ ନିଃଶବ୍ଦ ଓ ଅବଗୁଣ୍ଠିତ କରେ ଏବଂ ଗୋଟିଏ ମାତ୍ର ସଖୀ ସଙ୍ଗରେ ଆଏ (୨) ।

### ଅଭିସାରର ତାତ୍ତ୍ୱିକ ଗୁରୁତ୍ୱ :

ପ୍ରେମାବେଗର ଚୂଡ଼ାନ୍ତ ଅବସ୍ଥାରେ ପ୍ରଣୟିନୀ ବା ନାୟିକା ପକ୍ଷରେ ନିଜର ଦେହ, ସଂସାର, କୁଳାଭିମାନ, ପାତିବ୍ରତ୍ୟ, ଗୁରୁଜନଙ୍କର ଅନୁଶାସନ ଓ ଲଜ୍ଜା ବିସ୍ମୃତ ହୋଇ ମିଳନ ନିମିତ୍ତ କାନ୍ତର ସଙ୍କେତ ସ୍ଥଳକୁ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ଯାତ୍ରା କରିବା

(୧) ଉ. ନୀ., ନାୟିକା ଭେଦଃ ପୃ-୧୯୨
(୨) ସାହିତ୍ୟ ଦର୍ପଣଃ, ଲକ୍ଷ୍ମୀ ସଂସ୍କୃତ ଟୀକା, ପୃ-୧୭୭

କମ୍ ଆୟାସସାଧ୍ୟ ବ୍ୟାପାର ନୁହେଁ । ନାୟକଠାରେ ନାୟିକା ସମ୍ପୂର୍ଣ୍ଣ ଆତ୍ମସମର୍ପଣ ନ କରିବା ପର୍ଯ୍ୟନ୍ତ, ନାୟକର ପ୍ରେମରେ ସମ୍ପୂର୍ଣ୍ଣ ନିର୍ଭରଶୀଳା ନ ହେବା ପର୍ଯ୍ୟନ୍ତ କୁଳବତୀ ପକ୍ଷରେ ଏ ଦୁଃସାହସିକତା ସମ୍ଭବପର ହୁଏନା । ପ୍ରଣୟମୁଗ୍ଧା ରାଧା ପ୍ରେମାବେଶର ଏହି ଚରମ ଅବସ୍ଥାରେ ପ୍ରିୟତମଙ୍କ ସହ ମିଳିତ ହେବାପାଇଁ ପ୍ରାଣର ଦୁର୍ବାର ଉତ୍କଣ୍ଠାରେ ସଙ୍କେତ ସ୍ଥଳକୁ ଆଗେଇ ଚାଲିଛନ୍ତି । ସେଥିପାଇଁ ସେ ନିଜର ଦେହ ଓ ପ୍ରାଣ ପ୍ରତି ଭ୍ରୂକ୍ଷେପ କରିନାହାନ୍ତି । ପଥର ବନ୍ଧୁରତା, କଣ୍ଟକ, ଉତ୍ତପ୍ତ ବାଲୁକା, ସର୍ପ, ପ୍ରାବୃଟ ରଜନୀର ବୃଷ୍ଟିଧାରା, ଅଶନିପାତ, ନିରନ୍ଧ୍ର ତମସା ଓ ପୌଷ ରଜନୀର ଦାରୁଣ ଶୈତ୍ୟ ପ୍ରଭୃତି ସମସ୍ତ ପ୍ରାକୃତିକ ପ୍ରତିବନ୍ଧକ ଅତିକ୍ରମ କରି ଚାଲିଛନ୍ତି । ଏହା ଯେପରି ଲୌକିକ ସୀମାର ଊର୍ଦ୍ଧ୍ୱରେ ଆଧ୍ୟାତ୍ମିକ ପ୍ରେମର ସ୍ୱରୂପ ପ୍ରକାଶ କରୁଛି । ସଂସ୍କୃତ ସାହିତ୍ୟରେ ବର୍ଣ୍ଣିତ ଅଭିସାର ଲୌକିକ ସୀମା ମଧ୍ୟରେ ଆବଦ୍ଧ, କିନ୍ତୁ ବୈଷ୍ଣବ ସାହିତ୍ୟରେ ବିଶେଷତଃ ପଦାବଳୀ ସାହିତ୍ୟରେ ବର୍ଣ୍ଣିତ ଅଭିସାର ପାର୍ଥିବ ସୀମା ଅତିକ୍ରମ କରି ଲୋକୋତ୍ତରତା ଲାଭ କରିଛି । ବୈଷ୍ଣବ କବିମାନେ ପ୍ରେମମୁଗ୍ଧା ନାୟିକାକୁ ଦୁଃସାହସିନୀ ଓ ଆତ୍ମବିସ୍ମୃତା କରି ଅପୂର୍ବ ରସ ସୃଷ୍ଟି କରିଯାଇଛନ୍ତି । ଏ ଦେଶର ତନ୍ତ୍ର ଶାସ୍ତ୍ରରେ ପୁରୁଷକୁ ସ୍ଥାଣୁ ଓ ନିଷ୍କ୍ରିୟ ଏବଂ ପ୍ରକୃତିକୁ ଜଙ୍ଗମା ଓ କ୍ରିୟାଶୀଳ କରାଯାଇଛି । ଆମ ଦେଶର ସାହିତ୍ୟକୁ ଏହି ଦାର୍ଶନିକତତ୍ତ୍ୱ ବିଶେଷ ରୂପେ ପ୍ରଭାବିତ କରି ଆସିଛି (୩) । କାଳିଦାସ ରାୟଙ୍କ ଭାଷାରେ—"ପୁରୁଷ ଯାଏ ହରଣ ନିମିତ୍ତ, ଆଉ ନାରୀ ଯାଏ ବରଣ ନିମିତ୍ତ । ତାଛଡ଼ା ଭାରତୀୟ ପ୍ରକୃତି ମଧ୍ୟରେ କବିମାନେ ଦେଖିଛନ୍ତି : ଶୈଳାଗୁହାରୁ ଅବତରଣ କରି ନଦୀ ଗୁଡ଼ିକ ଦୁଇକୂଳ ଭସାଇ ଢଗଡଗ ଜ୍ଞାନଶୂନ୍ୟ ହୋଇ ସାଗର ଉଦ୍ଦେଶ୍ୟରେ ଧାବିତ ହୁଅନ୍ତି । ସେହି ଅନୁରୂପ୍ୟରେ ସାହିତ୍ୟରେ ଯେପରି ନାୟିକାର ଅଭିସାର ।

ରାଧାଙ୍କର ଅଭିସାର ସତେ ଯେପରି ଶାଶ୍ୱତ ଲକ୍ଷ୍ୟରେ ଯାତ୍ରା କରିବାର ଏକ କଠୋର ତପସ୍ୟା । ଅନାହତ ମୁରଲୀ ଧ୍ୱନି ଚିରକାଳ ଅନ୍ତରରେ ବାଜୁଛି । ଯେ ଧ୍ୟାନସ୍ଥ ହୋଇ ଶୁଣେ, ସଂସାରର ସମସ୍ତ ବାଧାବିଘ୍ନ ପାଦରେ ଠେଲି ସେ ଶାଶ୍ୱତ ପ୍ରେମିକା ରାଧାଙ୍କ ପରି ସେହି ଧ୍ୱନିର ଅନୁସରଣ କରି ଛୁଟିଯାଏ । ଯେଉଁ ପଥରେ ଅନିତ୍ୟ ଜୀବ ଶାଶ୍ୱତ ଅଭିମୁଖରେ ପ୍ରଧାବିତ ହୁଏ ସେ ପଥ କୋମଳ ପୁଷ୍ପାକୀର୍ଣ୍ଣ ନୁହେଁ, ନାନା ବିଘ୍ନ-କଣ୍ଟକରେ ଦୁରତିକ୍ରମ୍ୟ, କ୍ଷୁରଧାର ପରି ଶାଣିତ । ବୈଷ୍ଣବ ସାହିତ୍ୟରେ ଅଭିସାର ପଥ ସେହି ହେତୁ ଅତି ଦୁର୍ଗମ ଓ ବିଘ୍ନ ପରିପୂର୍ଣ୍ଣ (୪) । ସେଥିପାଇଁ ଏ ପଥରେ ଅଗ୍ରସର ହେବାକୁ ହେଲେ ସାହସ ଓ କଠୋର ସାଧନା ପ୍ରୟୋଜନ । ପଦାବଳୀର କବି ସେଥିପାଇଁ ଦୁର୍ଗମ ଅଭିସାର ପଥରେ ରାଧାଙ୍କର ପଥଚଲିବା ସାଧନାର ରସୋତ୍ତୀର୍ଣ୍ଣ ବର୍ଣ୍ଣନା ଦେଇ ଲେଖିଛନ୍ତି,

କଣ୍ଟକ ଗାଡ଼ି     କମଳ ସମ ପଦତଳ
ମଞ୍ଜୀର ଚୀରହିଁ ଝାଁପି ।

(୩) କାଳିଦାସ ରାୟ, ପଦାବଳୀ ସାହିତ୍ୟ, ୩୬୨ ସଂ.

(୪) ତଦେବ

ଗାଁଗରି-ବାରି ଚାରି କରୁ ପୀଛଲ
ଚଲତହିଁ ଅଙ୍ଗୁଲି ଗୁପି ।
ମାଧବ, ତୁଯ୍ୟା ଅଭିସାରକ ଲାଗି ।
ଦୂତର ପନ୍ଥ ଗମନ ଧନି ସାଧଯେ
ମନ୍ଦିରେ ଯାମିନି ଜାଗି ।। (୫) (ଗୋବିନ୍ଦ ଦାସ)

**ଅଭିସାରର ପ୍ରକାର ଭେଦ :**

ପଦାବଳୀ ଓ ଅନ୍ୟ ବୈଷ୍ଣବ କବିମାନେ ଜ୍ୟୋତ୍ସ୍ନାମୟୀ ରଜନୀ, ଅନ୍ଧକାର ରଜନୀ, ସନ୍ଧ୍ୟା ଓ ମଧ୍ୟାହ୍ନରେ ଅଭିସାରର ବର୍ଣ୍ଣନା କରିଛନ୍ତି ଏପରିକି ପୂର୍ବାହ୍ନରେ ରାଧାଙ୍କର ସୂର୍ଯ୍ୟାରାଧନା ଯାହାକୁ ଏକ ପ୍ରକାର ଅଭିସାର ଭାବରେ ବର୍ଣ୍ଣନା କରାଯାଇଛି । ପୁଣି ବିଭିନ୍ନ ପ୍ରକାର ଅଭିସାରିକାଙ୍କର ଉପଯୋଗୀ ବେଶଭୂଷଣର ବର୍ଣ୍ଣନା କବିମାନେ କରିଛନ୍ତି । ରୂପ ଗୋସ୍ୱାମୀ ଜ୍ୟୋତ୍ସ୍ନାଭିସାରିକା ରାଧାଙ୍କୁ ଅଙ୍ଗରେ ଶୁଭ୍ର କର୍ପୂର, ଚନ୍ଦନ ଓ ଶୁଭ୍ର-ଦୁକୂଳ ପରିଧାନ କରିବାକୁ ସଖୀ ବିଶାଖାଙ୍କ ମୁଖରେ ସୂଚିତ କରିଛନ୍ତି (୬) । ତମିସ୍ରା-ଭିସାର ସମ୍ପର୍କରେ ଲଳିତା ମୁଖରେ ଶ୍ରୀମତୀଙ୍କୁ ସୂଚନା ଦେଇ କହୁଛନ୍ତି—ଗୋପାଙ୍ଗନା ଗଣ ତମିରମୟ ନୀଳବସନ ଦ୍ୱାରା ଆତ୍ମାଙ୍ଗ ସମ୍ବରଣ କରି କଦମ୍ବବନସ୍ଥ ଶ୍ରୀକୃଷ୍ଣଙ୍କ ସହିତ ଅଭିସାର କରୁଛନ୍ତି (୭) । ପଦକର୍ତ୍ତା ଗୋବିନ୍ଦ ଦାସଙ୍କ ବର୍ଣ୍ଣନାନୁସାରେ ଜ୍ୟୋତ୍ସ୍ନାଭିସାରିକା ରାଧାଙ୍କର ଦେହର ଅପରୂପ ଲାବଣ୍ୟ ସହିତ ଅଙ୍ଗବିଲେପିତ ଚନ୍ଦନ, କର୍ପୂର, ମୁକ୍ତାହାର, କୁନ୍ଦକୁସୁମ, ଶୁଭ୍ର ଦୁକୂଳ ଓ ଜ୍ୟୋତ୍ସ୍ନା ମିଶି ଯାଇଛି । ଫଳରେ ଅଭିସାରିକାକୁ ଚିହ୍ନିବା ସହଜ ହୋଇନାହିଁ । ଶୁଭ୍ର ରଜନୀ ହେମାଙ୍ଗିନୀ ରାଧାଙ୍କ ପକ୍ଷରେ ଅଭିସାରର ଉପଯୁକ୍ତ କାଳ । ତମିସ୍ରାଭିସାରିକା ଅନ୍ୟର ଦୃଷ୍ଟି-ଅନ୍ତରାଳରେ ରହିବା ସ୍ୱାଭାବିକ ହେଲେ ମଧ୍ୟ ସ୍ୱର୍ଣ୍ଣାଙ୍ଗୀ ରାଧା ତା'ର ବ୍ୟତିକ୍ରମ । ସେଥିପାଇଁ ତାଙ୍କୁ ସର୍ବାଙ୍ଗ ନୀଳ ଦୁକୂଳ ଓ ଭୂଷଣରେ ସଜ୍ଜିତ ହେବାକୁ ହୁଏ । ପଦାବଳୀର କବିମାନେ ନିଦାଘର ମଧ୍ୟାହ୍ନ, ବସନ୍ତ ଓ ଶୀତ ନିର୍ଶିଥିନୀ ସହିତ ଏକାନ୍ତ ବିପ୍ନବହୁଳ ବର୍ଷାଭିସାରର ବର୍ଣ୍ଣନା କରିଛନ୍ତି (ଗୋବିନ୍ଦ ଦାସ, ବିଦ୍ୟାପତି ଓ ବଂଶୀବଦନ ପ୍ରଭୃତି) । ବଂଶୀବଦନ ରାଧାଙ୍କର ଭ୍ରମାଭିସାର (ବଂଶୀଧ୍ୱନି ଶ୍ରବଣରେ), ବିଦ୍ୟାପତି ପୁରୁଷବେଶରେ ରାଧାଙ୍କର ଅଭିସାର ଏବଂ ଯଦୁନାଥ ଦାସ ଓ ଘନଶ୍ୟାମ ଦାସ ପ୍ରଭୃତି ସୁବଳ ବେଶରେ ରାଧାଙ୍କର ଅଭିସାର ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି (୮) ।

ଅଭିସାରିକା ରାଧାଙ୍କର ଆତ୍ମବିସ୍ମୃତି ସହ କିଶୋରୀ ସୁଲଭ ଲଜ୍ଜା ଓ ଶାଳୀନତା ବହୁ କବିଙ୍କର ଅଭିସାର ପଦରେ ଲକ୍ଷିତ ହୁଏନା । ବହୁ ପଦାବଳୀର କବି ଛଳୋକ୍ତି ଓ କୌଶଳ

(୫) ବୈଷ୍ଣବ ପଦାବଳୀ (ଚୟନ), ୮ମ ସଂ. ପୃ-୫୧

(୬) ଉ. ନୀ., ନାୟିକା ଭେଦଃ, ଶ୍ଳୋକ-୪୦, ପୃ-୧୯୪

(୭) ତତ୍ରୈବ ପୃ-୧୯୫

(୮) ପଦାବଳୀ ସାହିତ୍ୟ

ମାଧ୍ୟମରେ କେବଳ ନିଜର କଳାପାଟବ ପ୍ରଦର୍ଶନ କରିଛନ୍ତି, କିନ୍ତୁ ଲୋକାତୀତ ଭାବ ବ୍ୟଞ୍ଜନାର ସଙ୍କେତ ଏ ଗୁଡ଼ିକରେ ପରିଦୃଷ୍ଟ ହୁଏ ନାହିଁ (୯) ।

ଇଷ୍ଟବସ୍ତୁରେ ପରମାବିଶିଷ୍ଟତାକୁ (ପରମ ଆବେଶମୂଳକ ପ୍ରେମମୟ ତୃଷ୍ଣା) ରାଗ କୁହାଯାଏ (୧୦); ପୁଣି ପ୍ରେମାତିଶଯ୍ୟ ବଶତଃ ଅତିଶୟ ଦୁଃଖ ଯେତେବେଳେ ସୁଖରୂପେ ଅନୁଭୂତ ହୁଏ, ସେତେବେଳେ ମଧ୍ୟ ତାହାକୁ ରାଗ କହନ୍ତି (୧୧) । ଅଭିସାରରେ ବହୁ ବିଘ୍ନ, ବହୁ କଷ୍ଟ ମଧ୍ୟ ଦେଇ ପ୍ରଣୟିନୀ ଅଗ୍ରେଇ ଚାଲେ ପ୍ରେମାସ୍ପଦ ସହିତ ମିଳିତ ହେବାପାଇଁ । ସେତେବେଳେ ସେହି ବିଘ୍ନ ଓ କଷ୍ଟ ରାଗବଶତଃ ତାକୁ ସୁଖରୂପେ ପ୍ରତୀତ ହୁଏ । ସେହି ରାଗହିଁ ଅଭିସାରର ଜୀବିତ । ପ୍ରାବୃଟ ରଜନୀରେ ରାଧା ଶ୍ୟାମଦର୍ଶନ ଆଶାରେ କିଛି ନ ମାନି ଆଗେଇ ଚାଲନ୍ତି । ସବୁ ଦୁଃଖ ଓ କଷ୍ଟ ତାଙ୍କୁ ସୁଖପ୍ରାୟ ବୋଧହୁଏ (୧୨) । ପୌଷ ଯାମିନୀରେ ଶିଶିରସିକ୍ତ କଣ୍ଟକାକୀର୍ଣ୍ଣ ପଥକଷ୍ଟ ଓ ନିଦାଘ-ମଧ୍ୟାହ୍ନର ଉତ୍ତପ୍ତ ପଥକଷ୍ଟ ପ୍ରିୟତମଙ୍କର ଦର୍ଶନାବେଗରେ ରାଧା ଭୁଲିଯାନ୍ତି । ପ୍ରଣୟିନୀ ନିକଟରେ ନିଜର ବେଦନା ତୁଚ୍ଛ । ବର୍ଷା ରଜନୀରେ ପ୍ରିୟତମ କିପରି ପଥକଷ୍ଟ ସହି ଆସିବେ, ଏଥିପାଇଁ ଶ୍ରୀମତୀଙ୍କର ଉଦ୍‌ବେଗ ଅସୀମ—

ଏ ଘୋର ରଜନୀ ମେଘ ଗରଜନି
କେମନେ ଆୟବ ପିୟା ।
ଶେଯ ବିଛାଇୟା ରହିଲୁଁ ବସିୟା
ପଥପାନେ ନିରଖିୟା ।

ନିଦାଘର ମଧ୍ୟାହ୍ନରେ ଉତ୍ତପ୍ତ ସିକତିଲ ପଥରେ ଅଭିସାରିକାର ନିର୍ମମ ଆତ୍ମନିଗ୍ରହ ଲକ୍ଷ୍ୟ କରାଯାଉ—

ମାଥ ହିଁ ତପନ ତପତ ପଥ ବାଲୁକ
ଆତପ ଦହନ ବିଥାର ।
ନନିକ ପୁତଲୀ ତନୁ ଚରଣ କମଳ ଜନୁ
ଦିନହି କଯ଼ଲ ଅଭିସାର ।। (ଗୋବିନ୍ଦ ଦାସ)

ଗୋପାଳକୃଷ୍ଣଙ୍କ ରଚନାରେ ରାଧାଙ୍କର ଅଭିସାର ସମ୍ବଳିତ ଗୀତର ସଂଖ୍ୟା ହେଉଛି ନଅ । ଏଥିରେ ରାଧାଙ୍କର ଅଭିସାରୋତ୍କଣ୍ଠା, ନିଭୃତ କୁଞ୍ଜାଭିସାର ଓ ଶୁକ୍ଳାଭିସାର ନିମିତ୍ତ ସଖୀର ଉତ୍ତେଜନା, ସଖୀମୁଖରେ ଅଭିସାରିକା ରାଧାଙ୍କର ବେଶଭୂଷଣର ପ୍ରଶଂସା, ମଧ୍ୟାନବାନୁରାଗିଣୀ ଶ୍ରୀମତୀଙ୍କର ଅଭିସାର ଏବଂ କୃଷ୍ଣାଭିସାରରେ ସ୍ୱୟଂଦୌତ୍ୟ ବର୍ଣ୍ଣିତ

(୯) ତତ୍ରୈବ
(୧୦) ରୂ. ଗୋ., ଭ. ର. ସୃ. ସିଂ, ଶ୍ଳୋ. ୬୧, ପୃ ୮୧
(୧୧) ରୂ. ଗୋ., ଉ. ନୀ., ସ୍ଥାୟୀଭାବ ପ୍ରକରଣ ପୃ ୬୩୬
(୧୨) ପ. ସା., ପୃ ୧୦୯

ହୋଇଛି । ଅଭିସାର ଗୀତଗୁଡ଼ିକରେ ଗୀତଗୋବିନ୍ଦ, ବୃନ୍ଦାବନ ଗୋସ୍ୱାମୀଙ୍କର ନାଟକ, ଓଡ଼ିଆ ବୈଷ୍ଣବକାବ୍ୟ (ବିଦଗ୍ଧ ଚିନ୍ତାମଣି) ଓ ଅନ୍ୟ ସଂସ୍କୃତ କାବ୍ୟ ପରମ୍ପରାର ପ୍ରତିଧ୍ୱନି ଲକ୍ଷିତ ହେବା ସ୍ୱାଭାବିକ ।

ଗୋଟିଏ ଗୀତରେ (ମନେ ପଡ଼ୁଛି ମା ସେହି ଚନ୍ଦ୍ରମୁଖ, ଗ୍ରଂ ପୃ ୪୩୮) ସଖୀ ସମକ୍ଷରେ ରାଧାଙ୍କର ସଂଳାପରେ ତାଙ୍କର ଅଭିସାରୋତ୍କଣ୍ଠାର ଚିତ୍ର ଦିଆ ଯାଇଛି । ସମାଜର ତାଡ଼ନାରେ ପ୍ରିୟତମଙ୍କୁ ପାସୋରିବା ପାଇଁ ରାଧା ଯେତେ ଚେଷ୍ଟା କଲେ ମଧ୍ୟ ଭୁଲି ପାରୁନାହାନ୍ତି । ସେହି ଚନ୍ଦ୍ରମୁଖ ବାରମ୍ବାର ତାଙ୍କର ସ୍ମୃତି ପଥାରୂଢ଼ ହେଉଛି । ପ୍ରିୟତମଙ୍କର ଚନ୍ଦ୍ରକଚୂଡ଼ା, ନଟବର ବେଶ, ଲଳିତ ତ୍ରିଭଙ୍ଗ ଠାଣି, ଅଳକାବଳୀ, ଗଣ୍ଡଦେଶର ନୈସର୍ଗିକ ଦୀପ୍ତି, ନାସାମୁକ୍ତାର ମୟୂଖ, ଭାଳପଟର ଗୋରୋଚନା ଚିତା, ନର୍ତ୍ତନଶୀଳ ଭ୍ରୂଲତା, ମନ୍ଦହାସ, କଟାକ୍ଷଭଙ୍ଗୀ ଓ ଅଧରର ମୁରଲୀ ବିନ୍ୟାସ ଦର୍ଶନରେ ଅତୃପ୍ତି କେବେ ଭୁଲିବାର ନୁହେଁ । ତାଙ୍କର ମଧୁର ସ୍ୱପ୍ନର ସୂଚନାରେ ଭାବୀ ମିଳନା-ବେଗବ୍ୟଞ୍ଜକ ଅଭିସାରୋତ୍କଣ୍ଠାର ଏକ ମନୋଜ୍ଞ ପ୍ରାଣସ୍ପର୍ଶୀ ମନସ୍ତାତ୍ତ୍ୱିକ ଚିତ୍ର ଅଙ୍କିତ ହୋଇଛି । ରାଧା ସ୍ୱପ୍ନରେ ଦେଖନ୍ତି ଯେ ନିଭୃତକୁଞ୍ଜ ନିଳୟରେ ଉଭୟଙ୍କର ମିଳନ ଓ ମନ୍ମଥ-ସମରର ସମାପ୍ତି ଘଟିଛି । ରାଧା ତାମ୍ବୂଳ ଭୁଞ୍ଜାଇ ବିଦାୟର ସଂକେତ ଦେବାରୁ ସେ ଅଶ୍ରୁଳନୟନରେ ପ୍ରାଣର ଅକୁହା ବେଦନା ବାଢ଼ିବା ନିମିତ୍ତ ସଖୀମାନଙ୍କର ନିକଟବର୍ତ୍ତୀ ହୁଅନ୍ତି । ସ୍ୱପ୍ନ-ମିଳନର ଏ ମଧୁର ସ୍ମୃତି ଦଂଶନରେ ବିରହପୀଡ଼ିତା ରାଧାଙ୍କର ପ୍ରାଣ ଶ୍ୱାସରୁଦ୍ଧ ହୋଇଉଠେ । ସେଥିପାଇଁ ସଖୀମାନଙ୍କ ପ୍ରତି ତାଙ୍କର ଆବେଗ ଓ କାରୁଣ୍ୟଭରା ଉକ୍ତି—

ଶୁଣ ସବି ସହଚରି କରି କରୁଣା-ମଞ୍ଜରୀ
ଅପରାଧିନୀ ରାଧାର ଯିବା ଜୀବ ରଖ । ୭ । ( ଗୋ. କୃ ଗ୍ରଂ, ପୃ ୪୩୮ )

ରାଧାଙ୍କର କାରୁଣ୍ୟମୟୀ ସ୍ୱରରେ ସମ୍ବେଦନଶୀଳା ସଖୀଗଣ ସହସା କୁଞ୍ଜରେ ମିଳିତ ହୋଇ ଲକ୍ଷ୍ୟ କରନ୍ତି ଯେ ରାଧା-ବିରହ ପୀଡ଼ିତ ଶ୍ୟାମ 'କାମଲେଖ'ରେ ବ୍ୟସ୍ତ ରହିଛନ୍ତି । ସମାଜର ତାଡ଼ନା ଓ ପ୍ରିୟତମଙ୍କର ଭାବପରୀକ୍ଷା ଜନିତ ସାମୟିକ ବଞ୍ଚନାରେ ରାଧା ବ୍ୟଥିତା ହେଲେ ମଧ୍ୟ ପ୍ରିୟତମ ଶ୍ୟାମଙ୍କୁ ଭୁଲିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ବିଦଗ୍ଧ ମାଧବ ନାଟକରେ ଭଗବତୀ ପୌର୍ଣ୍ଣମାସୀ କୃଷ୍ଣଙ୍କର ଅସମ୍ମତି ଜନିତ ସମ୍ବାଦର ସୂଚନା ଦ୍ୱାରା ରାଧାଙ୍କ ମନରେ ସାମୟିକ ବିଷାଦ ଜାତ କରନ୍ତେ ରାଧା କହନ୍ତି— ହେ ଦେବି ! ଆପଣଙ୍କର ନିର୍ଦ୍ଦେଶନାବଶତଃରେ ମୁଁ ସେହି ମୁରାରିଙ୍କ ପ୍ରତି ଅନୁରାଗ ତ୍ୟାଗ କଲି, କିନ୍ତୁ ଆପଣ ମୋ ପ୍ରତି ଅନୁଗ୍ରହଶୀଳା ହୋଇଥିବାରୁ ଏହି ଆଶୀର୍ବାଦ କରନ୍ତୁ, ଯେପରି କୃଷ୍ଣଙ୍କର ମୁଖ-ସୌରଭରେ ମନୋନିବେଶ କରି ଅଦ୍ୟ ସନ୍ଧ୍ୟାକାଳରେ ତାଙ୍କର ବନମାଳାରେ ମଧୁକରୀ ହୋଇ ଶୋଭିତ ହୋଇ ପାରିବି ।

ଅଭିସାର ପ୍ରସଙ୍ଗରେ ଲଜ୍ଜାବତୀ ରାଧାଙ୍କୁ ସଙ୍କେତ କୁଞ୍ଜରେ ଗୋଷ୍ଠଚନ୍ଦ୍ରମାଙ୍କ ପାଇଁ ବେଶଭୂଷାରେ ସଜ୍ଜିତ ହେବାକୁ ସଖୀ ରାଧାଙ୍କୁ ଉତ୍ସାହିତ କରେ (ସାଜ, ସାଜ,

ଗୋଷ୍ଠ ଚନ୍ଦ୍ରମା ଆସିବେ ଆଜ ଗୋ, ଗ୍ରଂ. ପୃ-୪୪୩) । କଣୋଇଙ୍କ ନିକଟରୁ ଶ୍ୟାମ ପ୍ରେରିତ ଝରା (ଫୁଲ ଝାମ୍ପୁଆ) ହେଉଛି ଅଭିସାରର ସଙ୍କେତ ଏବଂ ତାଙ୍କର (କଣୋଇଙ୍କର) ସାନୁକମ୍ପ ସ୍ୱୀକୃତି ସୂଚକ ଲଟି-ସ୍ରଜ (ଲଟି ହେବା ମାଳା) ପ୍ରତୀକ୍ଷାରେ ଶ୍ୟାମ ପ୍ରତୀକ୍ଷମାଣ ।

କେତୋଟି ଗୀତରେ ସଖୀ ମୁଖରେ ଅଭିସାରିଣୀ ରାଧାଙ୍କର କମନୀୟ ବେଶର ପ୍ରଶଂସା କରାଯାଇଛି । ଗୋଟିଏ ଗୀତରେ (ରେ କଣୋଇ ! କନକ ମୁକୁର କାନ୍ତି, ଗ୍ରଂ. ପୃ-୪୪୨) ସଖୀ ମୁଖରେ କୁହାଯାଇଛି ଯେ ସ୍ୱର୍ଣ୍ଣ ମୁକୁର କାନ୍ତି ତୁଲ୍ୟ ରାଧାଙ୍କର ଶ୍ୟାମ ବିଳାସ-ଯୋଗ୍ୟ ତନୁ ଅପୂର୍ବ ପ୍ରଭା ଧାରଣ କରିଛି । ସୂକ୍ଷ୍ମ ନୀଳ ଦୁକୂଳ ପରିହିତା ତାଙ୍କର ଅଙ୍ଗରେ ରତ୍ନଖଚିତ ଭୂଷଣ ମେଘର ବିଦ୍ୟୁତ୍‌କାନ୍ତି ତୁଲ୍ୟ ନେତ୍ର-ସୁଭଗ ହୋଇଛି । ଘନକୃଷ୍ଣ ଚିକୁରଦାମର କମନୀୟ ବେଣୀଟି ତାଙ୍କର ପୀନବକ୍ଷରେ ଆନ୍ଦୋଳିତ । ଭାଲପଟ୍ଟରେ ଉଜ୍ଜ୍ୱଳ ସିନ୍ଦୂର ବିନ୍ଦୁ ଓ ତଦୁପରି ଶୁଭ୍ରଚନ୍ଦନ ତିଳକ ସଞ୍ଚରଣଶୀଳ ନବ ଜଳଦ କୋଳରେ ଅରୁଣ ଓ ନବଇନ୍ଦୁ ପ୍ରାୟ ଶୋଭିତ । ନେତ୍ରରେ ଖଞ୍ଜନର ଚଞ୍ଚଳତା, କଙ୍କିଣୀ ଓ ମଞ୍ଜୀରର ମଧୁର ଧ୍ୱନି ପ୍ରାଣରେ ପୁଲକ ସଞ୍ଚାରି କରୁଛି । ମରାଳ ଓ ଗଜର ଗତିକୁ ତୁଚ୍ଛ କରୁଥିବା ରାଧା ସଖୀର ହସ୍ତ ଅବଲମ୍ବନ କରି ଧୀର ପଦକ୍ଷେପ କରୁଥିବାବେଳେ ଚରଣ ଚିହ୍ନରେ ପଦ୍ମ ଗନ୍ଧ ବାରି ମଧୁପ ନିକର ଉପବେଶନ କରୁଛନ୍ତି (୧୩) । ନବ ସୌଦାମିନୀ ପ୍ରାୟ ରାଧାଙ୍କର ରୂପ ତା'ର ସୁଷମାରେ ସ୍ୱର୍ଣ୍ଣଲତାକୁ ତୁଚ୍ଛ କରୁଛି । ପାରମ୍ପରିକ ବର୍ଣ୍ଣନା ଓ ଉପମାଦିର (ଉପମା, ଉତ୍ପ୍ରେକ୍ଷା ଓ ବ୍ୟତିରେକ) ପ୍ରୟୋଗ ସତ୍ତ୍ୱେ ଶ୍ରୀମନ୍ତଙ୍କର ଅଭିସାରୋପଯୋଗୀ ବେଶ ବର୍ଣ୍ଣନା ରସ ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ କମ୍ ଉପଭୋଗ୍ୟ ହୋଇନାହିଁ ।

ଅନ୍ୟ ଏକ ଗୀତରେ (ଆଉ କାହିଁ ପାଇଁ ହେଲ ?, ଗ୍ରଂ. ପୃ-୪୪୪) ସଖୀ ମୁଖରେ ରାଧାଙ୍କର ଶୁକ୍ଲାଭିସାର ଉପଯୋଗୀ ବେଶର ପ୍ରଶଂସା କରାଯାଇ ଅଭିସାରରେ ଅଗ୍ରସର ହେବାପାଇଁ ତାଙ୍କୁ ଉତ୍ସାହିତ କରାଯାଇଛି । ରାଧାଙ୍କର ଅନିନ୍ଦ୍ୟସୁନ୍ଦର ତନୁରେ ଶୁଭ୍ର ଦୁକୂଳର ପରିଧାନ, ସର୍ବାବୟବରେ କୁଙ୍କୁମ ଓ ଚନ୍ଦନ ଚର୍ଚ୍ଚା, ଅରୁଣ ଅଧରରେ ଶ୍ୱେତ କର୍ପୂର ଶୋଭିତ । ଘନକୃଷ୍ଣ କବରୀ ଉପରେ ଶୁଭ୍ର କୁନ୍ଦ କୁସୁମର ମାଳା, କଣ୍ଠରେ ଶୁଭ୍ର ମୁକ୍ତାମାଳାର ଝଲକ, କରରେ ବିକଶିତ ଶ୍ୱେତ କୁମୁଦ । ଶୁଭ୍ର ଦୁକୂଳ ଓ ଭୂଷଣ ଭୂଷିତ । ରାଧା ଶୁଭ୍ର ଜ୍ୟୋତ୍ସ୍ନାରେ ଅନୁପମ ଶୋଭା ଧାରଣ କରିଛନ୍ତି । ଅନ୍ୟ ଏକ ଗୀତରେ (ଯିବା ପରା ପରାଣ ସଙ୍ଗିନୀ, ଉଠିଆରେ, ଗ୍ରଂ., ପୃ-୪୪୪) ଶୁକ୍ଲାଭିସାର ନିମିତ୍ତ ସଖୀର ପ୍ରୋତ୍ସାହନ- ବାଣୀର ଇଙ୍ଗିତ ଦିଆଯାଇଥିଲେ ମଧ୍ୟ ଭାବ ଓ ଛନ୍ଦ ଦୃଷ୍ଟିରୁ ସେପରି ସୌନ୍ଦର୍ଯ୍ୟ ନାହିଁ (କେବଳ ନାଟ୍ୟ-ସୁଷମା ଓ ସ୍ୱର ମାଧୁର୍ଯ୍ୟକୁ ବାଦ ଦେଲେ) ।

ଶୁକ୍ଲାଭିସାରିଣୀ ରାଧାଙ୍କର ବେଶଭୂଷଣର ବର୍ଣ୍ଣନା ଗୀତଗୋବିନ୍ଦର ଅନୁରୂପ ନ ହେଲେ ମଧ୍ୟ ଅଭିସାର ନିମିତ୍ତ ସଖୀର ପ୍ରୋତ୍ସାହନ ମୂଳରେ ଗୀତଗୋବିନ୍ଦର ପ୍ରେରଣା

(୧୩) ଗୋ. କୃ. ଗ୍ରଂ., ପୃ-୪୪୨

ଉପେକ୍ଷଣୀୟ ନୁହେଁ । ବରଂ ବ୍ୟଥିତ କୃଷ୍ଣଙ୍କ ଉଦ୍ଦେଶ୍ୟରେ ଅଭିସାରରେ ଯାତ୍ରା କରିବା ପାଇଁ ଗୀତଗୋବିନ୍ଦର ସଖୀ ରାଧାଙ୍କୁ ଉତ୍ସାହିତ କରୁଛି—

ରତିସୁଖସାରେ ଗତମଭିସାରେ ମଦନମନୋହରବେଶମ୍ ।
ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶମ୍ । ୮ ।

କିନ୍ତୁ ବୈଷ୍ଣବ ପଦାବଳୀର ଶୁକ୍ଳାଭିସାର ବର୍ଣ୍ଣନା ସହିତ ଏହାର ଅଧିକ ନୈକଟ୍ୟ ଲକ୍ଷିତ ହୁଏ, ଯଥା—

କି କହବ ରାଇକ ହେରି ଅନୁରାଗ । ନିରବଧି ମନହି ମନୋଭବ ଜାଗ ।
ସହଜେ ସୁଚରି ତନୁ ସାଜ କତ ଭାତି । ଅଭିସରୁ ଶାରଦ ପୂର୍ଣ୍ଣିମ ରାତି ॥
ଧବଲ ବସନ ତନୁ ଚନ୍ଦନ ପୂର । ଅରୁଣ ଅଧରେ ଧରୁ ବିଶଦ କପୂର ।
କବରୀ ଉପରେ କରୁ କୁନ୍ଦବିଥାର । କଣ୍ଠେ ବିଲମ୍ବିତ ମୋତିମ-ହାର ॥
କୈରବେ ଝାଁପଲ କରତଳ କାନ୍ତି । ମଳୟଜ ଚନ୍ଦନ ବଲୟେ କୋ ପାଁତି ।
ଚନ୍ଦନ କୌମୁଦୀ ତନୁ ନହେ ଚିନ । ଯୈଛନ ଷୀରନୀର ନହେ ଭିନ ॥
(ଗୋପାଳଦାସ, ବି. ଚ. ପ.)

ଯନେକଟି ଗୀତରେ ଅଭିସାର ପ୍ରସଙ୍ଗରେ ଶ୍ରୀମତୀଙ୍କର ଦୁଃସାହସିକ ହୃଦ୍ଦଂ ଦୌତ୍ୟର ବର୍ଣ୍ଣନା ରହିଛି । ରାଧାକୃଷ୍ଣଙ୍କର ମିଳନର ସଂଯୋଜୟିତ୍ରୀ ରୂପରେ ସଖୀମାନଙ୍କର ଭୂମିକା ଅପରିହାର୍ଯ୍ୟ । ଗୁରୁଗୌରବ ଲଜ୍ଜା ଓ ସମାଜର ବନ୍ଧନ ମଧ୍ୟରେ ଆବଦ୍ଧ ଥିବା ପର୍ଯ୍ୟନ୍ତ ନାୟିକା ସଖୀ ବା ଦୂତୀର ପ୍ରୟୋଜନ ଉପଲବ୍ଧି କରେ, ଏପରିକି ଅଭିସାରରେ ମଧ୍ୟ ସଖୀ ନିକର ସଙ୍ଗିନୀ ହୁଏ । କିନ୍ତୁ ପ୍ରିୟ ସହ ବାରମ୍ବାର ମିଳନ ଫଳରେ ନାୟିକା ଅନ୍ତରରେ ସାହସ ସଞ୍ଚୟ କରିବା ସଙ୍ଗେ ସଙ୍ଗେ ତା'ର ଲଜ୍ଜାଭୟ କ୍ରମଶଃ ଶିଥିଳ ହୋଇ ଆସେ । ସେପରି ଅବସ୍ଥାରେ ନାୟିକା ଏକାନ୍ତ ରାଗମୋହିତା ହେଲେ ସଖୀ ବା ଦୂତୀର ସାହାଯ୍ୟ ନ ଲୋଡ଼ି ନିଜେ ନିଜର ଦୌତ୍ୟ କରି ପ୍ରିୟସହ ମିଳିତ ହୁଏ (୧୪) ।

ଗୋଟିଏ ଗୀତରେ (ରେ ସଙ୍ଗାତ ! ଆଜି ତ ନୂଆ ତୋ ଯାତ, ଗ୍ରଂ: ପୃ ୪୪୦) ସଖୀ ରାଧାଙ୍କର ଅଭିନବ ଆଚରଣରେ ବିସ୍ମୟ ଓ ଆନନ୍ଦ ପ୍ରକାଶ କରି ତାଙ୍କୁ କହେ ଯେ ସେ ଆଜି କୁଳବତୀର ଗୁରୁଗୌରବ ଲଜ୍ଜା ଓ ଭୀତି ପ୍ରତି ଭ୍ରୂକ୍ଷେପ ନ କରି ମଦନମୋହନଙ୍କ ବେଶରେ ସଜ୍ଜିତା ହୋଇଛନ୍ତି । ଶ୍ୟାମରସାବେଶରେ ଅଧରରେ ସ୍ମିତ ଉଜ୍ଜ୍ୱଳାଇ ସଖୀଙ୍କୁ ଦ୍ରୁତ ଅତିକ୍ରମ କରି ଚାଲି ଚଳି ଚଳି ମନ୍ଥର ଗତିରେ ଚାଲିଯାଉଛନ୍ତି । କୃଷ୍ଣ-ନିଳୟରେ ଶ୍ୟାମଙ୍କୁ ମୋହିବା ପାଇଁ ଝୀନ ଉତ୍ତରୀ ଅଙ୍ଗେ ନ୍ୟସ୍ତ କରି ଅଗ୍ରସର ହେଉଛନ୍ତି ! ବ୍ରଜେନ୍ଦ୍ରଙ୍କର ଆଗମନ-ଆଶାରେ ହୃଦୟରେ ସ୍ୱୈରବିହ୍ୱଳତା ଓ କେତେ କଳ୍ପନାର ସଞ୍ଚାର ହେଉଛି ।

(୧୪) ଉ. ନୀ., ଦୂତୀଭେଦଃ, ପୃ-୧୭୬

ଅନ୍ୟ ଏକ ଗୀତରେ (ରେ ସଜନ ! ଦେଖ ମଧୁ ରାତି ଗତ, ଗ୍ରଂ ପୃ ୪୪୧) କବି ମଧ୍ୟାନାୟିକା (୧୫) ଭାବରେ ତାଙ୍କର ରାତିଗତିର ସଙ୍କେତ ଦେଇ ଅଭିସାରରେ ସ୍ୱୟଂ ଦୌତ୍ୟର ଉଲ୍ଲେଖ କରିଛନ୍ତି । ରସବତୀ କିଶୋରୀ ଆଜି ନିଜର ସମାଜ, ଦେହ ଓ ମନୋଧର୍ମ ବିସ୍ମୃତ ହୋଇ ପଥ ବିପଥ ନ ମଣି ଅଭିସାରରେ ଆଗେଇ ଚାଲିଛନ୍ତି । ସ୍ନେହଶୀଳା ସଖୀମାନଙ୍କର ଉପଦେଶ ପ୍ରତି ଧ୍ୟାନ ନାହିଁ । ତାଙ୍କର ତନୁ-ସୌରଭରେ ଦିଗ-ବିଦିଗ ସୁରଭିତ । ଆମୋଦିତ ଭୃଙ୍ଗ ପନ୍ତି ପୁଷ୍ପିତା ଲତା ପରିହାର କରି ତାଙ୍କର ପଶ୍ଚାଦନୁସରଣ କରୁଛନ୍ତି । ରାତି ପରମ୍ପରାର ପ୍ରତିଧ୍ୱନି ଘଟାଇ କବି ମଧୁପ ସ୍ୱନକୁ ମଦନ ବାଦ୍ୟ ରୂପେ କଳ୍ପନା କରିଛନ୍ତି । ନବ ନୀରଦ କୋଳରେ ଚପଳା ପ୍ରାୟ ପ୍ରିୟତମଙ୍କର ଶ୍ୟାମ-ଅଙ୍ଗରେ ଜଡିତ ହେବାର ଅଭିଳାଷ ପୋଷଣ କରି ନିଜର ସାହସିକତାର ପରିଚୟ ଦେଉଛନ୍ତି । ନିକୁଞ୍ଜ ଦ୍ୱାରରେ ଉପନୀତା ରାଧାଙ୍କୁ ବ୍ରଜେନ୍ଦ୍ର ପୁଷ୍ପ ତଳ୍ପକୁ ଘେନି ଯାନ୍ତି । ସ୍ୱୟଂ ଦୌତ୍ୟରେ ସଖୀର ପ୍ରୟୋଜନ ନଥିଲେ ମଧ୍ୟ ରାଧାକୃଷ୍ଣଙ୍କର ମିଳନ ସୁଖ ଦର୍ଶନରେ ନୟନ ସାର୍ଥକ କରିବାର ଅଭିଳାଷ ସଖୀମାନଙ୍କର ଦୁର୍ବାର । ବୈଷ୍ଣବ ପଦକର୍ତ୍ତାଗଣ ଶ୍ରୀମତୀଙ୍କୁ ଶ୍ୟାମଙ୍କ ଉଦ୍ଦେଶ୍ୟରେ ଯାତ୍ରା କରାଇ ପ୍ରତ୍ୟକ୍ଷ ଅନୁଭବ ନିମିତ୍ତ ଗୋପନରେ ସଖୀମାନଙ୍କର ଅନୁସରଣର ଉଲ୍ଲେଖ କରିଥାନ୍ତି । ଉପେନ୍ଦ୍ର ଓ କବିସୂର୍ଯ୍ୟ ବଳଦେବଙ୍କର ଉପମା ପରମ୍ପରାରେ କବି ଉତ୍ପ୍ରେକ୍ଷା ଓ ଉପମା ପ୍ରୟୋଗ କରିଛନ୍ତି, ଯଥା—

(କ) ସେ ମଧୁପସ୍ୱନ ସତେ କି ମଦନ ବାଦ୍ୟ ବଜାଉଛୁ ସ୍ୱଚ୍ଛେ ? ।୪।

(ଖ) ନବଘନ କୋଳେ ତଡ଼ିତ ପରାୟେ ବଲ୍ଲଭ-ମିଳନ ରଙ୍ଗେ ।୬। (୧୬)

ଅନ୍ୟ ଗୀତଟିରେ (ରେ ସଙ୍ଗିନି ! କୃଷ୍ଣାନୁରାଗିଣୀ ଗୋରି, ଗ୍ରଂ. ପୃ-୪୪୫) କବି କୃଷ୍ଣାଭିସାରରେ ଶ୍ରୀମତୀଙ୍କର ସ୍ୱୟଂ ଦୌତ୍ୟର ଉଲ୍ଲେଖ କରିଛନ୍ତି । ରାଧା ଆନନ୍ଦୋତ୍କଣ୍ଠାରେ ଲଜ୍ଜା, ଭୟ ବିସ୍ମୃତ ହୋଇ ତମିସ୍ରାଭିସାରରେ ଆଗେଇ ଚାଲିଛନ୍ତି । ହେମାଙ୍ଗିନୀ କିଶୋରୀ ନୀଳ ମୃଗମଦରେ ସର୍ବାଙ୍ଗ ଅନୁରଞ୍ଜିତ କରିଛନ୍ତି । କଣ୍ଠରେ ନୀଳମଣି ହାର, ଭୁଜରେ ମର୍କତ ବଳୟ । ନୀଳରାଗ ଓ ନୀଳଭୂଷଣରେ ଶ୍ରୀମତୀଙ୍କର କେତକୀ ନିଭ କାନ୍ତି ତାମସୀ ରଜନୀ ତୁଲ୍ୟ କୃଷ୍ଣବର୍ଣ୍ଣ ଧାରଣ କରିଛି । ଲଲାଟ ପଟରେ ନୀଳ ଚୂର୍ଣ୍ଣ କୁନ୍ତଳ-ରାଜି ନୀଳ ସରୋବରରେ ନୀଳପଦ୍ମ ପ୍ରାୟ ହିଲ୍ଲୋଳିତ । ଅଙ୍ଗ ପରିମଳରେ ଆମୋଦିତ ଭ୍ରମରଗୁଡିକ ତାଙ୍କର ଚତୁଃପାର୍ଶ୍ୱରେ ଉଡ଼ି ବୁଲୁଛନ୍ତି । ଶ୍ରୀମତୀଙ୍କର କୃଷ୍ଣାଭିସାର ମୂଳରେ ଗୀତଗୋବିନ୍ଦ, ବିଦଗ୍ଧ ମାଧବ ଓ ପଦାବଳୀ ସାହିତ୍ୟର ପ୍ରେରଣା ଅନସ୍ୱୀକାର୍ଯ୍ୟ । ଗୀତ-ଗୋବିନ୍ଦରେ ସଖୀ ରାଧାଙ୍କୁ ଅଭିସାର ପାଇଁ ଉତ୍ସାହିତ କରି କହୁଛି—

ଚଳ ସଖି କୁଞ୍ଜଂ ସତିମିର ପୁଞ୍ଜଂ
ଶୀଳୟ ନୀଳ ନିଚୋଳମ୍ । (ଗୀ. ଗୋ., ୫।୧୧।୨,ପୃ-୭୧)

(୧୫) ଉ. ନୀ., ନାୟିକାଭେଦଃ, ପୃ-୧୫୯

(୧୬) କ. ସୂ. ଗ୍ରଂ., କ. ଚ. ଚଂ., ପୃ-୧୧୧

ଅର୍ଥାତ୍ ତାମସୀ ଯାମିନୀରେ ନୀଳ ନିଚୋଳ ପରିଧାନ କରି ଚମ୍ପିରଞ୍ଜନ କୁଞ୍ଜକୁ ଗମନ କର ।

ବିଦଗ୍ଧ ମାଧବ ନାଟକରେ ତମିସ୍ରାଭିସାର ପାଇଁ ରାଧାଙ୍କର ପ୍ରସ୍ତୁତି ଜନିତ ବ୍ୟସ୍ତତା ହେତୁ ହାର, କଜ୍ଜଳ ଓ କସ୍ତୁରିକା ଅନୁଚିତ ସ୍ଥାନରେ ଧୃତ ହେବାର ଉଲ୍ଲେଖ ରହିଛି । ରାଧାଙ୍କର ବିଭ୍ରମ ଲକ୍ଷ୍ୟ କରି ଲଳିତା କହେ—ତୁମେ ନୀଳ ରତ୍ନହାର ଧମ୍ମିଲ୍ଲରେ ଧାରଣ କରିଛ । ନୀଳପଦ୍ମ ଗ୍ରଥିତ ଗର୍ଭକ ନାମକ ହାର ସ୍ତନମଣ୍ଡଳରେ ପରିଧାନ କରିଛ । ଅଙ୍ଗରେ କଜ୍ଜଳ ବିଲେପନ କରିଛ, ପୁଣି ବିଲେପନର କସ୍ତୁରିକା ନେତ୍ରରେ ପରିଧାନ କରିଛ । ଅଭିସାରରେ ବ୍ୟସ୍ତ ହୋଇ ତୁମେ କେତେ ବିସ୍ମୃତ ହୋଇ ଯାଇଛ (୧୭) ।

ପଦକର୍ତ୍ତା ଗୋବିନ୍ଦ ଦାସଙ୍କର ତମିସ୍ରାଭିସାର ସମ୍ବଳିତ ପଦ ସହିତ ଗୋପାଳକୃଷ୍ଣଙ୍କର ଏହି ଗୀତର ସାମଞ୍ଜସ୍ୟ ଲକ୍ଷ୍ୟ କରିବାର କଥା—

ନୀଲମ ମୃଗମଦେ ତନୁ ଅନୁଲେପନ
ନୀଲମ ହାର ଉଜୋର ।
ନୀଲ ବଲୟ ଗଣେ ଭୁଜଯୁଗ ମଣ୍ଡିତ
ପହିରଣ ନୀଲ ନିଚୋଳ ।।
ସୁନ୍ଦରୀ ହରି ଅଭିସାରକ ଲାଗି ।
ନବ ଅନୁରାଗେ ଗୋରୀ ଭେଲ ଶ୍ୟାମରି
କୁହୁ-ଯାମିନୀ ଭୟ ଭାଗି । ୧ ।
ନୀଲ ଅଲକାକୁଲ ଅଳକେ ହିଲ୍ଲୋଳିତ
ନୀଲ ତିମିରେ ଚଲୁ ଗୋଇ ।
ନୀଲ ନଳିନୀ ଜନୁ ଶ୍ୟାମର ଯାମୁନେ
ଲଖଇ ନା ପାରଇ କୋଇ ।।
ନୀଲ ଭ୍ରମର ଗଣ ପରିମଳେ ଧାବଇ
ଚୌଦିଗେ କରତ ଝଙ୍କାର ।
ଗୋବିନ୍ଦ ଦାସ ଅତଏ ଅନୁମାନଲ
ରାଈ ଚଲଲି ଅଭିସାର ।। (ବି. ଚ. ପ.)

**ବାସକସଜ୍ଜା :**

ନାୟିକାର ମାନସିକ ଅବସ୍ଥାନୁସାରେ ଲୌକିକ ଓ ବୈଷ୍ଣବ ଅଳଙ୍କାର ଶାସ୍ତ୍ରରେ ଯେଉଁ ଅଷ୍ଟବିଧ ନାୟିକାର ଉଲ୍ଲେଖ ରହିଛି, ତନ୍ମଧ୍ୟରେ ବାସକସଜ୍ଜା ଅନ୍ୟତମ । ବାସକ ଗୃହ ଓ ବାସକସଜ୍ଜାର ପ୍ରେରଣା ଆସିଛି ଗୀତଗୋବିନ୍ଦରୁ (୧୮) । ବିଶ୍ୱନାଥଙ୍କ ସଂଜ୍ଞା ଅନୁଯାୟୀ ବାସକସଜ୍ଜା ହେଉଛି—

(୧୭) ବି. ମା., ୪।୩୦, ପୃ-୬୦୮
(୧୮) ନାଥ ହରେ ସୀଦତି ରାଧା ବାସଗୃହେ ।

କୁରୁତେ ମଣ୍ଡନଂ ଯସ୍ୟାଃ ସଜ୍ଜିତେ ବାସବେଶ୍ମନି ।
ସା ତୁ ବାସକସଜ୍ଜା ସ୍ୟାଦ୍‌ବିଦିତପ୍ରିୟସଙ୍ଗମା । (୧୯)

ଉଜ୍ଜ୍ୱଳ ନୀଳମଣି ମତରେ—

ସ୍ୱବାସକବଶାତ୍ କାନ୍ତେ ସମେଷ୍ୟତି ନିଜଂ ବପୁଃ ।
ସଜ୍ଜୀକରୋତି ଗେହଞ୍ଚ ଯା ସା ବାସକସଜ୍ଜିକା ।।

ଚେଷ୍ଟାଶ୍ଚାସ୍ୟାଃ ସ୍ମରକ୍ରୀଡ଼ାସଂକଳ୍ପୋ ବର୍ତ୍ମବୀକ୍ଷଣଂ ।
ସଖୀବିନୋଦବାର୍ତ୍ତା ଚ ମୁହୁର୍ଦୂତୀକ୍ଷଣାଦୟଃ ।। (୨୦)

ଅର୍ଥାତ୍ ଯେଉଁ କାନ୍ତା କାନ୍ତଙ୍କର ଇଚ୍ଛାବଶତଃ କୁଞ୍ଜନିଳୟରେ ଅବସ୍ଥାନ କରି ତାଙ୍କର ଆଗମନ ପ୍ରତୀକ୍ଷାରେ ନିଜର ଦେହ ଓ ବାସଗୃହ ସୁସଜ୍ଜିତ କରେ, ତାହାକୁ ବାସକସଜ୍ଜିକା କୁହାଯାଏ । ପୁଣି ଏ ନାୟିକାର ସ୍ମରକ୍ରୀଡ଼ା ସଂକଳ୍ପ, କାନ୍ତପଥ ନିରୀକ୍ଷଣ, ସଖୀସହ ବିନୋଦବାର୍ତ୍ତା ଏବଂ ବାରମ୍ବାର ଦୂତୀପ୍ରତି ଅବଲୋକନ ଆଦି ନାନାପ୍ରକାର ଚେଷ୍ଟା ଦେଖାଯାଏ ।

ଗୋପାଳକୃଷ୍ଣ ପଦାବଳୀରେ 'ବାସକସଜ୍ଜା' ଗୀତ ନାହିଁ, କିନ୍ତୁ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଏହି ଶିରୋନାମାର ଦୁଇଟି ଗୀତ ପରିଦୃଷ୍ଟ ହୁଏ । ଗୋଟିଏ ଗୀତ (ସହିରେ ! କର ବିଳମ୍ବ କେତେ ?, ପୃ ୪୫୪) ବିଦଗ୍ଧ ମାଧବ ନାଟକର ଗୋଟିଏ ଶ୍ଳୋକର ଭାବାବଲମ୍ବନରେ ରଚିତ । କେଳିଗୃହ ସଜ୍ଜିତ କରିବା ପାଇଁ ରାଧା ଲଳିତାଙ୍କୁ କହନ୍ତି—

ରଚୟ ବକୁଳ ପୁଷ୍ପୈସ୍ତୋରଣଂ କେଳିକୁଞ୍ଜେ ।
କୁରୁ ବରମରବିନ୍ଦୈସ୍ତଳ୍ପମିନ୍ଦୀବରାକ୍ଷି !
ଉପନୟ ଶୟନାନ୍ତଂ ସାଧୁ ମାଧ୍ୱୀକପାତ୍ରଂ ।
ସହଚରି ! ହରିରଦ୍ୟ ଶ୍ଳାଘତାଂ କୌଶଳଂ ତେ ।।
(ବି. ମା. ୪।୩୨ ପୃ-୨୧୧)

କୁଞ୍ଜ ନିଳୟରେ ପ୍ରିୟତମ ଶ୍ୟାମଙ୍କ ପ୍ରତୀକ୍ଷାରେ ରହିଥିବା କିଶୋରୀ (ଗୋପାଳକୃଷ୍ଣଙ୍କର) ପ୍ରାଣର ସ୍ପର୍ଶ ଦେଇ କେଳି ନିକେତନର ତୋରଣ ବକୁଳ ପୁଷ୍ପ ସ୍ତବକରେ ସଜ୍ଜିତ କରିବା-ପାଇଁ ସଖୀକୁ କହନ୍ତି । ବ୍ରଜବଧୂଙ୍କର ଆନନ୍ଦ ପାଇଁ ସେ ରଖିଛନ୍ତି ବିଚକିଳ (ମଲ୍ଲୀ) ଦଳ ଆସ୍ତୃତ କମଳଦଳର ତଳ୍ପ ଏବଂ ସେବତୀ, ଜାତୀ ଓ କର୍ଣ୍ଣିକାର କୁସୁମ ପ୍ରସ୍ତୁତ ଉପାଧାନ । ମୁଖବାସ ପାଇଁ ଖଦିର, ପୂଗ ଓ କର୍ପୂରଚୂର୍ଣ୍ଣଭରା ତାମ୍ବୂଳ ବାଟି ଏବଂ କ୍ଳାନ୍ତି ଅପନୋଦନ ପାଇଁ ଆଳଟ, ଚାମର ପ୍ରସ୍ତୁତ ରଖିବାକୁ ତାଙ୍କର ଅନୁରୋଧ । ପରମ ପ୍ରେମିକା କିଶୋରୀ ଶ୍ୟାମଙ୍କ ସୁଖରେ ନିଜକୁ ସୁଖୀ ଏବଂ ତାଙ୍କର ଦୁଃଖରେ ନିଜକୁ ଦୁଃଖିନୀ ମନେ କରନ୍ତି । ପ୍ରିୟତମଙ୍କଠାରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିଥିବାରୁ ତାଙ୍କର ସୁଖରେ ନିଜର ଯୌବନ ଓ

(୧୯) ସାହିତ୍ୟ ଦର୍ପଣ, ୩।୮୫, ପୃ ୧୮୪ ।
(୨୦) ଉ. ନୀ, ନାୟିକାଭେଦଃ, ପୃ ୧୯୫।୧୯୬ ।

ଭୂଷଣର ସାର୍ଥକତା ଉପଲବ୍ଧି କରନ୍ତି । ତାଙ୍କ ବିନା ଏ ସମସ୍ତ ଯେପରି ବ୍ୟର୍ଥ, ନିରର୍ଥକ। ଶ୍ୟାମଙ୍କର ଆନନ୍ଦରେ ହିଁ ତାଙ୍କର ବାନ୍ଧବୀ ହେବାର ପରମ ସୌଭାଗ୍ୟ—

ତାଙ୍କ ସୁଖେ ସିନା ମୁହିଁ ସୁଖିନୀ ।
ତାଙ୍କ ଦୁଃଖରେ ମୁଁ ମହା ଦୁଃଖିନୀ ।
ତାଙ୍କ ଲଗି ଏ ଯୌବନ ଭୂଷଣ ।
ବିକଛୁ ତାଙ୍କୁ ଦେହ, ମନ ପ୍ରାଣ ।

× × ×

ଶ୍ୟାମ ମନ ମୁଗ୍ଧ ହେଲେ ବାନ୍ଧବ !
ଏ ଭାଗ୍ୟକୁ କେଉଁ ଭାଗ୍ୟ ଲକ୍ଷିବ ? (ଗୋ. କୃ. ଗ୍ରଂ. ପୃ-୪୫୪)

ଗୀତଗୋବିନ୍ଦର ମାଧବଙ୍କ ଉକ୍ତିର (୨୧) ପ୍ରତିଧ୍ୱନି କରି ରାଧା ପରମ ପ୍ରେମିକା ଭାବରେ ନିଜ ଚରିତର ମହିମାମୟତା ପ୍ରତିପାଦନ କରିଛନ୍ତି ।

ଅନ୍ୟ ଗୀତଟିରେ (ମୋ ସହିରେ ! ସାଜ କେଳି-ପରିଚ୍ଛଦ, ପୃ ୪୫୫) କୃଷ୍ଣ-ନିଳୟରେ ବିଭିନ୍ନ କେଳି ଉପକରଣର (ମଣି ସଂପୁଟକରେ ତାମ୍ବୂଳ ବିଟିକା, ଅଗୁରୁ, ଚନ୍ଦନ, ପନୀର, ପୁଷ୍ପଚନ୍ଦ୍ରାତପ, କର୍ପୂର ପ୍ରଦୀପ) ଈଷତ୍ ବିସ୍ତୃତ ବର୍ଣ୍ଣନା ସହ ପୂର୍ବ ଗୀତ ପରି କୃଷ୍ଣ ସକ୍ତୀକରଣର ପୁନରାବୃତ୍ତି ମାତ୍ର କରାଯାଇଛି । ଏ କ୍ଷେତ୍ରରେ କବିସୂର୍ଯ୍ୟଙ୍କର "ସଙ୍ଗୀତ କଲ୍ପଲତା"ର 'ସଜ ହୋଇଥା ରେ, ଗଜଗାମିନୀ ଆଜ, ରଜନୀ ଆସିବେ ସଜ ନୀଳୋତ୍ପଳ ଶ୍ୟାମ ବ୍ରଜ ଯୁବରାଜ' ଏହି ବାସକସଜ୍ଜା ଗୀତଟି (୨୨) ସ୍ମରଣୀୟ ।

ଶ୍ୟାମଙ୍କର ଆଗମନ ଯେ ସୁନିଶ୍ଚିତ, ଏହି ଆକାଙ୍କ୍ଷା ପୋଷଣ କରି ଶ୍ରୀମତୀ ପ୍ରିୟତମଙ୍କର ପ୍ରତୀକ୍ଷାରେ ବସି ରହିଛନ୍ତି, କିନ୍ତୁ ତାଙ୍କର ପ୍ରତୀକ୍ଷା କେବଳ ପ୍ରତୀକ୍ଷା ଓ ଉତ୍କଣ୍ଠାରେ ପର୍ଯ୍ୟବସିତ ହୁଏ । ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହେଲେ ମଧ୍ୟ ଶ୍ୟାମଙ୍କର ଦେଖା ମିଳେନା । ବାସକସଜ୍ଜିକାର ଉତ୍କଣ୍ଠା ଓ ବିରହ ବେଦନା ବଢ଼ିଗଲେ ।

**ବିରହୋତ୍କଣ୍ଠିତା :**

ରାଧାଙ୍କର ବିରହୋତ୍କଣ୍ଠାକୁ ଭିତ୍ତି କରି ଏକୋଇଶଟି ଗୀତ ରଚିତ ହୋଇଛି । ବିରହୋତ୍କଣ୍ଠିତାର ସଂଜ୍ଞାରେ ରୂପ ଗୋସ୍ୱାମୀ ଲେଖିଛନ୍ତି—

ଅନାଗସି ପ୍ରିୟତମେ ଚିରୟତ୍ୟୁତ୍ସୁକା ତୁ ଯା ।
ବିରହୋତ୍କଣ୍ଠିତା ଭାବବେଦିଭିଃ ସା ସମୀରିତା ।।
ଅସ୍ୟାସ୍ତୁ ଚେଷ୍ଟା ହୃତ୍ତାପୋ ବେପଥୁର୍ହେତୁ ତର୍କଣଂ ।
ଅରତିର୍ବାଷ୍ପମୋକ୍ଷଶ୍ଚ ସ୍ୱାବସ୍ଥାକଥନାଦୟଃ ।।

( ଉ. ନୀ. ନାୟିକାଭେଦଃ, ପୃ ୧୯୭)

---

(୨୧) ଗୀ ଗୋ, ୩।୭।୪, ପୃ ୪୭
(୨୨) କ. ସୂ. ଗ୍ରଂ, ପୃ-୨୪୯

ଅର୍ଥାତ୍ ପ୍ରିୟତମ ବହୁକ୍ଷଣ ଯାବତ୍ ସମାଗତ ନ ହେଲେ ବିରହ ବଶତଃ ଯେଉଁ ନାୟିକା ଅତ୍ୟନ୍ତ ଉତ୍କଣ୍ଠିତା ହୁଏ ତାହାଙ୍କୁ ରସବେତ୍ତାମାନେ ବିରହୋତ୍କଣ୍ଠିତା କହନ୍ତି । ହୃଦୟର ତାପ, ଗାତ୍ର କମ୍ପନ, କାରଣ ବିତର୍କ, ଅସ୍ୱାସ୍ଥ୍ୟ, ବାଷ୍ପ ମୋଚନ ଓ ନିଜର ଅବସ୍ଥାଦି କଥନ ଇତ୍ୟାଦି ସମସ୍ତ ଉତ୍କଣ୍ଠିତା ନାୟିକାର ଚେଷ୍ଟା (୨୩) ।

ପାରମ୍ପରିକ ରୀତିରେ ରଚିତ ଏହି ବିରହୋତ୍କଣ୍ଠା ଗୀତଗୁଡ଼ିକରେ ରାଧାଙ୍କର କୃଷ୍ଣଙ୍କ ପ୍ରତି ଆକ୍ଷେପ, ପ୍ରତିଦ୍ୱନ୍ଦ୍ୱିନୀ ଚନ୍ଦ୍ରାବଳୀ ପ୍ରତି ଈର୍ଷା, କୁଞ୍ଜ-ନିଳୟରେ ପ୍ରିୟତମଙ୍କର ଆଗମନ ଉପଲକ୍ଷେ ଦୀର୍ଘ ପ୍ରତୀକ୍ଷା ଓ ବ୍ୟର୍ଥତା ଜନିତ ବେଦନା ପରିସ୍ଫୁଟ । ପୁଣି ଶ୍ୟାମ ପ୍ରେମରେ ଗଭୀର ଭରସା ଏବଂ କୁଳବଧୂର ଗୁରୁଗୌରବ ଲଜ୍ଜା ତ୍ୟାଗ ଜନିତ ଦୁଃସାହସ ହେତୁ ତୀବ୍ର ଅନୁତାପ, ଭାଗ୍ୟ ପ୍ରତି ନିନ୍ଦା ଓ ସଖୀ-ସାନ୍ତ୍ୱନା ମଧ୍ୟ ଅଭିବ୍ୟକ୍ତ ।

ଯେଉଁ ଶ୍ୟାମ ପ୍ରେମ ଶ୍ରୀମତୀଙ୍କୁ ସାହସିନୀ କରି କୁଳ, ପତି ଓ ଗୁରୁଜନଙ୍କର ଆଢ଼ଟରୁ ଗୃହରୁ କେଳି-କୁଞ୍ଜକୁ ଆକର୍ଷଣ କରି ଆଣିଛୁ, ଯାହାଙ୍କ ଯୋଗୁଁ ସେ ପଥ, ଅପଥ, କାଳ ଅକାଳ ନ ମାନି, ଶତ ବାଧାବିଘ୍ନ ଏଡ଼ି ଦୂଷଣକୁ ଭୂଷଣ ରୂପେ ଶିରୋଧାର୍ଯ୍ୟ କରିନେଇଛନ୍ତି, ଆଜି ତାଙ୍କର ପ୍ରବଞ୍ଚନାରେ ସେ ନିଜକୁ ନିଃସହାୟା ବୋଧ କରିଛନ୍ତି ! ବ୍ୟାଧ ଆହତା ହରିଣୀ ପ୍ରାୟ ହୃଦୟ ତାଙ୍କର ଦଗ୍ଧ ଓ ବିକଳ ହୋଇ ପଡ଼ିଛି । ଶ୍ୟାମଙ୍କର କପଟତା, ଶଠତା ଓ ନିର୍ମମତାରେ ଅତିଷ୍ଠ ହୋଇ ଅଭିଯୋଗ କରି ଗ୍ଭଲିଛନ୍ତି, ଯଦି ହୃଦୟରେ ତାଙ୍କର ଏ ପ୍ରକାର ଦୁରଭିସନ୍ଧି ଥିଲା, ତା'ହେଲେ ହାଟରେ ବାଟରେ ଜଗି କୁଳାଙ୍ଗନାକୁ କୌଶଳ-ଜାଲରେ ଛନ୍ଦି ଗିରି କନ୍ଦରରେ ବୁଲାଇବାର (ବାନ୍ଧବ ! କିସ ଭାବି ନଇଲେ ଘନ ଛବି, ଗ୍ରଂ, ପୃ ୪୫୫) ଏବଂ ଆପାତ ମଧୁର ଛଳ ବଚନରେ ସଙ୍କେତ ସ୍ଥଳକୁ ଅଣାଇ ହଟହଟା କରିବାର ଯଥାର୍ଥତା କେଉଁଠି ? ଶଠ ଦୁଷ୍ଟପଙ୍କ ସ୍ୱଭାବ ଚିତ୍ରଣରେ କବି ରାଧାଙ୍କ ମୁଖରେ ମାନବ ଜୀବନର ଏକ ରୂଢ଼ ବାସ୍ତବ ଅନୁଭୂତି ପ୍ରକାଶ କରିଛନ୍ତି—

ଆଖି ଆଖି ମେଳ କାଳେ ଗୋଟି ଯାକ ମୋର ।
ପିଠି କରି ଗଲେ ପୁଣି ଆଉ କେ କାହାର ? । ୧ ।
କଳି ନ ଥିଲି ହୃଦୟ ବୋଲି ମୁଁ ତାଙ୍କର ।
କଳିଲି ବେଳକୁ ସହି ! ହେଲେ ଏତେ ଦୂର । ୨ । (ଗ୍ରଂ, ପୃ. ୪୫୮)

ପୁଣି ଅନ୍ୟତ୍ର— ପ୍ରୀତି ପାଳିବା ମୋ ଏତିକି ଗୋ !
ଦେଖିଲୁଟି ଶଠ ସ୍ୱଭାବ ଗୋ !
ଭିତରେ ଯାହାର ନ ଥାଇ ସତ ।
ତା ସଙ୍ଗେ କି ଲଭ ସହି ! କହତ । (ତତ୍ରୈବ, ପୃ. ୪୫୮)

ଶଠ ହୃଦୁଷ୍ଟତାରେ ବିଶ୍ୱାସ ନ ଆଏ । ହମସ୍ତ ପଡ଼ିଲେ ଗ୍ରୀଷ୍ମରେ ଭୁଟି ଭଞ୍ଜିବାକୁ ଦ୍ରୁମମାନେ କୁଣ୍ଠାବୋଧ କରନ୍ତି ନାହିଁ (ଗ୍ରଂ., ପୃ. ୪୫୯) । ଯାହାଙ୍କୁ ସେ ନିଜର ଜୀବନ

(୨୩) ସା. ଦ., ୩।୮୬, ପୃ. ୧୮୫

ସ୍ୱରୂପ ମନେ କରିଥିଲେ ଯେ ଯେ ଆଜି ତାଙ୍କ ପ୍ରତି ଏ ପ୍ରକାର ପ୍ରତିକୂଳ ହୋଇ ମଦନ ମୁଖକୁ ଠେଲି ଦେବେ, ଏହା ତାଙ୍କର ସ୍ୱପ୍ନାଗତ ଥିଲା । ଗୁଣ ପକାଇ, କେତେ ଦୈନ୍ୟ ପ୍ରକାଶ କରି ପ୍ରଣୟ-ମଧୁ ଚଖାଇ ତାଙ୍କୁ ସଖୀ ଓ ଅନ୍ୟ ବ୍ରଜାଙ୍ଗନାଙ୍କର ପରିହାସର ଶରବ୍ୟ କରିଛନ୍ତି । ଆଜି ଆପାତ ମଧୁର ପରପ୍ରୀତି-ପାନୀର ପାନକରି ଶେଷରେ ବିଷର ଜ୍ୱାଳାରେ ଛଟପଟ ହେଉଛି—

(କ) ପରପ୍ରୀତି ରସ ପ୍ରଥମ ସରସ
ପଇଡ଼ ରସ ସଦୃଶ ।
ପଛକୁ ଅବଶ୍ୟ ଲୋଡ଼ା ହୁଏ ବିଷ
ଏ କଥା ବଡ଼ ରହସ୍ୟ । ୨ । (ଗୋ. କୃ ଗ୍ରଂ., ପୃ. ୪୫୯)

(ଖ) ହାସ କର୍ପୂର ଗିର ନାରିକେଳ-ସଲିଳ
ଗରଳ କରାଇଲେ ପାନ ରେ । ( ଗ୍ରଂ., ପୃ. ୪୬୭)

ଶ୍ରୀକୃଷ୍ଣଙ୍କର ଉପେକ୍ଷା ହେତୁକ ଭାବ ପରୀକ୍ଷା ଜନିତ ଯନ୍ତ୍ରଣାରେ ବିକଳ ହୋଇ ବିଦଗ୍ଧ ମାଧବର ରାଧା ବିଶାଖାଙ୍କ ନିକଟରେ ଅନୁରୂପ ଭାବ ପ୍ରକାଶ କରିଛନ୍ତି ଯଥା—

ସଖି ଜଲ୍ପିତନାରିକେଳନୀରଂ
ସ୍ମିତକର୍ପୂରବିମିଶ୍ରଂ ହରେର୍ନିପୀୟ ।
ତନୁସଙ୍ଗସୁଧାଂ ବିନା ନ ତସ୍ୟ
ଗ୍ଲପିତାଂ ଗରଳେନ ଜୀବିତାସ୍ମି ॥ (ବି. ମା., ୩।୧୭, ପୃ. ୧୩୭)

ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ବଚନ ରୂପକ ନାରିକେଳ ଜଳ ମୃଦୁହାସ୍ୟରୂପକ କର୍ପୂର ଦ୍ୱାରା ଆବୃତ୍ତ ଥାଏ । ମୁଁ ତାହା ପାନ କରି ଗରଳ ଜ୍ୱାଳାରେ କାତର ହେଉଛି । ତାଙ୍କର ଅଙ୍ଗ ସଙ୍ଗ ରୂପକ ଅମୃତ ବ୍ୟତିରେକେ ଜୀବିତ ରହିବା ସମ୍ଭବ ନୁହେଁ ।

ଆକ୍ଷେପ ସତ୍ତ୍ୱେ ପ୍ରିୟତମଙ୍କ ପ୍ରତି ତାଙ୍କର ଉକ୍ତିରେ ସମ୍ଭ୍ରମର ଅଭାବ ଘଟି ନାହିଁ । ସେ କହିଛନ୍ତି— ସେ ଯଦି ତାଙ୍କର ଅନୁରୂପା ନୁହଁନ୍ତି, ତା'ହେଲେ ତାଙ୍କର ଏତେଦୂର ଆଗେଇ ଆସିବା ଉଚିତ ହୋଇନାହିଁ (ଗ୍ରଂ , ପୃ: ୪୫୭) ।

ସଚରାଚର ସମଗ୍ର ବିଶ୍ୱର ପ୍ରେମ କାହାଣୀ ମୂଳରେ ଥାଏ ଏକ ଶାଶ୍ୱତତ୍ରୟୀ (Eternal Triangle) । ଶ୍ରୀକୃଷ୍ଣଙ୍କର ବୃନ୍ଦାବନୀ ପ୍ରେମଲୀଳାରେ କୃଷ୍ଣଙ୍କୁ କେନ୍ଦ୍ରକରି ଏକ ଦିଗରେ ରାଧା ଓ ଅନ୍ୟ ଦିଗରେ ଚନ୍ଦ୍ରାବଳୀ ମଧ୍ୟରେ ଏହି ଶାଶ୍ୱତ-ତ୍ରୟୀ-ସୂତ୍ର କାର୍ଯ୍ୟ କରୁଛି । ପ୍ରଣୟ କ୍ଷେତ୍ରରେ ଚନ୍ଦ୍ରାବଳୀ ହେଉଛନ୍ତି ରାଧାଙ୍କର ପ୍ରତିଦ୍ୱନ୍ଦ୍ୱିନୀ । ବୃନ୍ଦାବନ ପ୍ରେମଲୀଳାରେ ଶ୍ରୀକୃଷ୍ଣଙ୍କ ନାୟିକାଙ୍କ ମଧ୍ୟରେ ରାଧା ଓ ଚନ୍ଦ୍ରାବଳୀ ହେଉଛନ୍ତି ସର୍ବତୋ-ଭାବରେ ଶ୍ରେଷ୍ଠା । ଏ ଉଭୟଙ୍କ ମଧ୍ୟରେ ରାଧିକା ସର୍ବଶ୍ରେଷ୍ଠା (୨୪) । କୃଷ୍ଣ-ପ୍ରେମିକା ଭାବରେ ରାଧାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ ନିମିତ୍ତ ଚନ୍ଦ୍ରାବଳୀ ଚରିତ୍ର ହେଉଛି ଅପରିହାର୍ଯ୍ୟ ।

(୨୪) ଉ. ନୀ , ରାଧାପ୍ରକରଣଂ, ଶ୍ଳୋ. ୧।୨, ପୃ-୯୯।୧୦୦

ଏହି ଚରିତ୍ରଟି ଯୋଗୁଁ ବୃନ୍ଦାବନ ପ୍ରେମଲୀଳାର ବୈଚିତ୍ର୍ୟ ଓ ସୌଷ୍ଠବ ସମ୍ପାଦିତ ହୋଇଛି । ଏ ଚରିତ୍ରର ପରିକଳ୍ପନା ନଥିଲେ ରାଧାଙ୍କର ପ୍ରଣୟ-ପଥ ସର୍ପିଳ (ଅହେରିବ) ନ ହୋଇ ହୋଇଥାନ୍ତା ଋଜୁ ଓ ପେଲବ ପୁଷ୍ପାକୀର୍ଣ୍ଣ । ବାଧା, ପ୍ରତିବନ୍ଧକ, ବୈଚିତ୍ର୍ୟ ଓ ବିରହର ପ୍ରଶ୍ନ ଉଠି ନଥାନ୍ତା । ସେହି ଚନ୍ଦ୍ରାବଳୀ ହେତୁ ବାସକ-ସଜ୍ଜିକା ରାଧାଙ୍କୁ କୁଞ୍ଜ-ନିଳୟରେ ବିରହୋତ୍କଣ୍ଠିତା ହେବାକୁ ହୋଇଛି । ସଙ୍କେତ କୁଞ୍ଜକୁ ଦଇ-ବାକ୍ ଶ୍ୟାମଙ୍କର ଅନାଗମନ ତଥା ଅତିକ୍ରାନ୍ତ ମୁହୂର୍ତ୍ତର ହେତୁରୂପେ ଚନ୍ଦ୍ରାବଳୀ ସମ୍ପର୍କରେ ତାଙ୍କର ଆଶଙ୍କା ଦୃଢ଼ୀଭୂତ ହୋଇଛି (୨୫) ।

ଗୋପାଳକୃଷ୍ଣଙ୍କର ବିଭିନ୍ନ ଗୀତରେ ପ୍ରତିଦ୍ୱନ୍ଦ୍ୱିନୀ ଚନ୍ଦ୍ରାବଳୀ ପ୍ରତି ରାଧାଙ୍କର ସାପତ୍ନ୍ୟସୁଲଭ ଈର୍ଷା ସ୍ପଷ୍ଟ ହୋଇ ଉଠିଛି । ଗୋଟିଏ ଗୀତରେ (ଆଉ ଆସିବେ ଶ୍ୟାମ କିମ୍ପାଇ ରେ ସହି ! ଗ୍ରଂ ପୃ. ୪୫୭) ଶ୍ୟାମ ଚନ୍ଦ୍ରାବଳୀ ପୁରକୁ ଯାଇଥିବାର ଆଶଙ୍କା କରି ତାଙ୍କର ଆଗମନ ସମ୍ପର୍କରେ ନୈରାଶ୍ୟ ପ୍ରକାଶ କରିଛନ୍ତି । ତାଙ୍କର ବିଶ୍ୱାସ, ପ୍ରତିଦ୍ୱନ୍ଦ୍ୱିନୀ ଶ୍ୟାମଙ୍କୁ ହୃଦୟରେ ଆଶ୍ଳେଷ କରି ଅଙ୍ଗରେ ଅଙ୍ଗ ମିଶାଇ ନିଜର ମନୋରଥ ଚରିତାର୍ଥ କରୁଥିବ । ଅନ୍ୟ ଗୀତରେ କବି ଚନ୍ଦ୍ରାବଳୀ ସମ୍ପର୍କରେ ରାଧାଙ୍କର ଯୁବତୀ ସୁଲଭ ଈର୍ଷା ଓ ଅସହିଷ୍ଣୁତାର ବାସ୍ତବ ଚିତ୍ର ଦେବାକୁ ଯାଇ ତାଙ୍କ ମୁଖରେ ପ୍ରକାଶ କରିଛନ୍ତି—

କେ ପଥ ବଣା କଲରେ, ବ୍ରଜବଧୂଙ୍କୁ ।
ସହି, କେଉଁ ରମଣୀ ମୋ ପ୍ରୀତି ଚିନ୍ତାମଣି
ପାଇ ରଖି ଦେଲା ରେ । ୧ ।
କେତେ ଶ୍ରମରେ ସଜ ସାଜିଥିଲି ମୁଁ ଆଜ
ମୋ ଆଶା ଛିନ୍ନାଇଲା ରେ । ୨ ।
ଜଗିଥିଲି କୋ'ଠାରେ କି କହି ସେ ମୋ ଠାଁରେ
ମାନସ ଭଙ୍ଗାଇଲା ରେ । ୪ । (ଗୋ. କୃ. ଗ୍ରଂ, ପୃ-୪୬୩)

ଯେଉଁ ପ୍ରିୟତମ ଶ୍ୟାମଙ୍କର ନିଶ୍ଚିତ ଆଗମନର ପ୍ରତୀକ୍ଷାରେ କେତେ ଆଶା ଓ ଆବେଗର ଦିହୁଡ଼ି ଜାଳି କିଶୋରୀ ଅପଲକ ନୟନରେ ଦୃଷ୍ଟି ରହିଥିଲେ, ଅତିକ୍ରାନ୍ତ ମୁହୂର୍ତ୍ତରେ ତାର ବ୍ୟର୍ଥତା ସେ ମର୍ମେ ମର୍ମେ ଅନୁଭବ କରୁଛନ୍ତି । ଯାହା ଲାଗି ଅଙ୍ଗେ ଅଙ୍ଗେ ରତ୍ନଖଚିତ ଆଭରଣର ଆଟୋପ, ବେଶ ଓ ପ୍ରସାଧନ, କେଳି ମନ୍ଦିରରେ ନିଜ ସୁଭଗ ଆଲେଖ୍ୟ-ରାଜିର ସେନ୍ଧ୍ଵାରୁର ମଣ୍ଡଣି, ତୋରଣରେ ବକୁଳସ୍ତବକର ଦୋଳନ, କର୍ପୂର ପ୍ରଦୀପର ନିରାଜନା, କୁସୁମ ଆସ୍ତୃତ କୋମଳ ତଳ୍ପ, କୁସୁମମାଳା, ମଳୟଜ (ଚନ୍ଦନ) ଓ ସୁରଭିତ ପନିରର ଆୟୋଜନ, ତାଙ୍କର ଅନାଗମନରେ ସମସ୍ତ ନୀରସ, ମୂଲ୍ୟହୀନ—

(କ) ଖଣ୍ଡିକ ଖଣ୍ଡି ଖଞ୍ଜି ଚିତ୍ରପୁଞ୍ଜ
ମଣ୍ଡିଥିଲି ଯତ୍ନେ ଏ କେଳିକୁଞ୍ଜ

(୨୫) କାଳିଦାସ ରାୟ, ପ. ସା., ୩ୟ ସଂ., ପୃ-୧୩୩-୧୩୮

ତୋରଣେ କମନି ଚନ୍ଦ୍ରାତପ ଟାଣି
କଳାଇଲି ଚନ୍ଦ୍ରାବତଂକ ଗୋ । ୨ ।
ବୋଳିବି ବୋଲି ଶ୍ରୀଅଙ୍ଗେ ତାଙ୍କର
ଗୋଳି ମଳୟଜ ରଜନୀକର
ମୁଁ ହମ୍ପାଦ୍ଧ ଥିଲି ଯତ୍ନ ନାଗବଲ୍ଲୀ
ଗୁନ୍ଥି ମଲ୍ଲୀଯୂଥୀ ଜାତକ ଗୋ । ୩ ।
ଏ ସବୁ ଯଦାର୍ଥ ହୋଇଲା ବାସୀ
ହଜାଗରେ କହି ପାହିଲା ଆସି
ଜୀବନ ଯୌବନେ କିବା କାର୍ଯ୍ୟ ଆଉ
ସନ୍ଧ୍ୟ ସ୍ମରିନଲ ଚାତକ ଗୋ । ୪ ।

( ଗ୍ରଂ., ପୃ-୪୬୮-୪୬୯ )

(ଙ) ରତନ ବେଣୀ ମୋର ହୋଇଲା ନାରଖାର
କେଉଁ କଷ୍ଟୁରି ହୃଦ ବହିଲେ ମା । ୨ ।
ମୁଁ ତାଙ୍କୁ କରି ଆଶ କହି ହୋଇଲି ଶେଷ
ଏବେ ବାସର-ଇଶ ହରିଲେ ମା । ୩ ।

( ଗ୍ରଂ., ପୃ ୪୬୬ )

ଯେଉଁ ପ୍ରିୟତମଙ୍କ ପାଇଁ ତାଙ୍କର ଜୀବନ ଓ ଯୌବନର ଏ ସମାରୋହ ତାଙ୍କର ଅଦର୍ଶନରେ ଏହାର ବ୍ୟର୍ଥତା ଅନୁଭବ କରିବା ସଙ୍ଗେ ସଙ୍ଗେ ନିଜକୁ ନିଃସଙ୍ଗ ଓ ନିଃସହାୟା ମନେ କରି ଦାରୁଣ ସ୍ମର ଜ୍ୱାଳାରେ ତିଳେ ତିଳେ ଦଗ୍ଧ ହେଉଛନ୍ତି । ଆଜି ଦୁଃଖ, ଉଦାସ ହସ ଓ ଭାଗ୍ୟର ବିଡ଼ମ୍ବନା ହୋଇଛି ତାଙ୍କର ତ୍ୟାଗର ଅବାଞ୍ଛିତ ପରିଣତି । ହସ୍ତୀ ଟୋପରେ ପଡ଼ିଲା ପରି, ପତଙ୍ଗ ଆଖି ଝଲସା ଅଗ୍ନିରେ ଝାସ ଦେଲା ପରି ଆଜି ତାଙ୍କୁ ନିର୍ଭରତା ଓ ଦୁଃସାହସର ଅପରିହାର୍ଯ୍ୟ ପରିଣତି ଭୋଗିବାକୁ ହେଉଛି । ସେଥିପାଇଁ ତାଙ୍କର ଅନୁତାପର ଅନ୍ତ ନାହିଁ । ଭାଗ୍ୟ ବା ଅଦୃଷ୍ଟର କରଣିକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ଦୁର୍ଦ୍ଦୈବର ନିର୍ମମ ନିର୍ଦ୍ଦେଶରେ ଆଜି ପ୍ରିୟତମ ଦୂରେଇ ଯାଇଛନ୍ତି । ଅଦୃଷ୍ଟ ଆଜି ତାଙ୍କ ପ୍ରତି ବିମୁଖ (ଗ୍ରଂ., ପୃ-୪୬୯) । ଅଦୃଷ୍ଟର କର୍ତ୍ତୃତ୍ୱ ସ୍ୱୀକାର କରି କବି ରୂପକ ଛଳରେ ସୁନ୍ଦର ଗୀତଟିଏ ରଚନା କରିଛନ୍ତି । ରାଧାଙ୍କ ମୁଖରେ ଭାବ ପ୍ରକାଶ କରିଛନ୍ତି—ବାଲ ଅବସ୍ଥାରୁ କଳ୍ପତରୁ ମୂଳେ ଜଳ ଦାନ କରି ତାହା ଯଦି ନିଷ୍ଫଳ ହୁଏ, କାମଧେନୁ ପ୍ରତି ଏତେ ସେବା ଯତ୍ନ କରି ଯଦି କ୍ଷୀର ଦାନରେ କୃପଣ କରେ, ସୁଧା ସିନ୍ଧୁ ଯଦି ଲବଣାକ୍ତ ହୁଏ, ସ୍ନେହ ରୋପିତ ମଲ୍ଲିକା ଯଦି ତୃଣ ହୋଇଯାଏ, ତା'ହେଲେ ଏ ସବୁ ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଅନ୍ୟ କିଛି ନୁହେଁ (ଗ୍ରଂ., ପୃ-୪୬୫) । ଯେଉଁ ପ୍ରେମିକ ଶ୍ୟାମଙ୍କୁ ସେ କଳ୍ପତରୁ, କାମଧେନୁ, ସୁଧା ସିନ୍ଧୁ ଓ ମଲ୍ଲିକା ମନେ କରି ଏତେ ଶ୍ରଦ୍ଧା, ଯତ୍ନ ଓ ସେବା ଅର୍ପଣ କରିଥିଲେ, ଆଜି ଭାଗ୍ୟର ବିଡ଼ମ୍ବନାରେ ସେ

ହୋଇଛନ୍ତି ତାଙ୍କ ପ୍ରତି ଅକରୁଣ । ଅଦୃଷ୍ଟର କରଣୀର ସ୍ୱୀକାର ସଙ୍ଗେ ରୂପକ ମାଧ୍ୟମରେ ପ୍ରିୟତମଙ୍କ ପ୍ରତି ତାଙ୍କର ବ୍ୟଞ୍ଜନାଗର୍ଭିତ ଆକ୍ଷେପୋକ୍ତି କିପରି ସଂଭ୍ରମ-ଶ୍ରୀ ମଣ୍ଡିତ, ତାହା ଏଠାରେ ଲକ୍ଷ୍ୟ କରାଯାଇପାରେ (ଏହା କାହାକୁ କହିବ ? ଗ୍ରଂ., ପୃ-୪୬୫) । ବିଦଗ୍‌ଧ ମାଧବର ରାଧା ନିଜର ମହାର୍ତ୍ତି ଜନିତ ନିର୍ବେଦଭାବ ପ୍ରକାଶ କରିବାକୁ ଯାଇ କହିଛନ୍ତି—'ଶ୍ରୀକୃଷ୍ଣଙ୍କ ଦ୍ୱାରା ଉପେକ୍ଷିତା ହୋଇ ମୋ ପରି ପାପିନୀ ଯେ ଏ ପର୍ଯ୍ୟନ୍ତ ଜୀବନ ଧରି ରହିଛୁ, ଧିକ୍ ମୋର ଧୈର୍ଯ୍ୟକୁ !' (୨୭) ।

ଗୋଟିଏ ଗୀତ (ମୋହନ ରାତି ଚନ୍ଦ୍ରା ପଡ଼ିଲା ମା, ଗୋ. କୃ. ପ., ପୃ-୧୨୭, ଗ୍ରଂ., ପୃ-୪୬୪) ସଂକ୍ଷିପ୍ତି, ଭାଷାର ସଂଯତ ପ୍ରୟୋଗ, ଭାବର କବିତ୍ୱପୂର୍ଣ୍ଣ ବ୍ୟଞ୍ଜନାଧର୍ମୀ ଅଭିବ୍ୟକ୍ତି ଓ ଛନ୍ଦ ତଥା ସ୍ୱରମାଧୁର୍ଯ୍ୟ ହେତୁ ଓଡ଼ିଶାରେ ବିଶେଷ ଲୋକପ୍ରିୟ । ଏଥିରେ ରାଧାଙ୍କର ଆକ୍ଷେପ, ବେଦନା ଜନିତ କାରୁଣ୍ୟର ଅଭିବ୍ୟକ୍ତି ଯେପରି ସଂଯତ, ସେହିପରି ମନୋଜ୍ଞ ଓ ପ୍ରାଣସ୍ପର୍ଶୀ, ଯଥା—

ଅପାର ରଜନୀ ହେଲା ରେ ସଜନି !
ପ୍ରାଚୀ ବଧୂକୁ ବିଧୁ ଚୁମ୍ବିଲା ମା । ୧ ।
କି ଯୋଗରେ ଆଜ ସାଜିଥିଲି ସଜ
କାନନ ମଲ୍ଲୀ ଦଶା ଘଟିଲା ମା । ୨ ।
ତୋଳି ଦେ ଗୋ ତଳ୍ପ ପୂରିଲା ସଂକଳ୍ପ
ନିକୁଞ୍ଜ-ଭାଗ୍ୟ ଭୋଗ ଅଣ୍ଟିଲା ମା । ୩ ।
ପର ପୀରତିକି ପୁରୁଷ ଜାତିକି
ପରତେ କଲି ଫଳ ମିଳିଲା ମା । ୪ ।

(ଗୋ. କୃ. ପ., ପୃ-୧୨୭।୧୨୮)

ସେହିପରି ଉତ୍କଣ୍ଠିତା ରାଧାଙ୍କର ଆକ୍ଷେପ ଓ ସାପତ୍ନ୍ୟସୁଲଭ ଅସୂୟାବ୍ୟଞ୍ଜକ ଆଉ ଗୋଟିଏ ଗୀତ ମଞ୍ଜୁଳ ପଦଯୋଜନା, ଆନୁପ୍ରାସିକ ମାଧୁର୍ଯ୍ୟ ଓ ସ୍ୱର ବ୍ୟଞ୍ଜନା ଯୋଗୁଁ ବିଶେଷ ଜନପ୍ରିୟ, ଯଥା—

ନିକୁଞ୍ଜ-ବନ-ବସା ଅସାର ହେଲା ଏଣିକି ।
ସନ୍ଧ୍ୟାବେଳରୁ ଗଲା କଞ୍ଜ ଫୁଟିବା ଭଳିକି । ଘୋଷା ।
ଶ୍ୟାମ ମୁଖ ସରୋଜ କେଉଁ ରମା ଉରଜ
ମରଜ କରିଥିବ ବରଜ ମୋ ପ୍ରୀତିକି ।୧।
ଯା'ର ନାହିଁ ଠିକଣା ତାର ପ୍ରୀତିରେ ବଣା
ହେବାର କଣା ପରି ମା କଣା ମୋ ଥିଲା କି ? ।୨।

(୨୭) ବି. ମା., ୨୬୦, ପୃ-୧୦୨-୧୦୩

ଶଠ ଲମ୍ପଟ ଗୃହ୍ଣୁ–          ପାଠରେ ଏତେ କହୁ
ହଠ ନ କର ମଠ ଭେଟିବା ମୋ ଏଡକ ।୪।

(ଗୋ. କୃ. ଗ୍ରଂ., ପୃ. ୪୬୦)

ଶ୍ୟାମଚନ୍ଦ୍ରଙ୍କ ପ୍ରତି ଆକ୍ଷେପ ସତ୍ତ୍ୱେ ଅବସ୍ଥା ବିଶେଷରେ ତାଙ୍କର ଅଦୃଷ୍ଟବାଦିତା ସତ୍ତ୍ୱେ ଚିତ୍ତପଟରୁ ଶ୍ୟାମସ୍ମୃତି କେବେ ପୋଛି ହେବାର ନୁହେଁ । ବାସ୍ତବ ଜୀବନର ହସ କାନ୍ଦର, ମାନ ଅଭିମାନର ଓ କରୁଣା ଅକରୁଣାର ଊର୍ଦ୍ଧ୍ୱରେ ଶ୍ରୀମତୀଙ୍କର ନିଗୂଢ଼ ବାସନାଲୋକରେ ଆକର୍ଷଣର, ଅନୁରାଗର ଯେ ଯେଉଁ ମୃଦୁ ଆଲୋଡ଼ନ, ତା'ର କ'ଣ କେବେ ଅବସାନ ଘଟିପାରେ ? ବ୍ରଜେନ୍ଦ୍ରଙ୍କର ଅନାଗମନରେ ତାଙ୍କର ବାସ୍ତବ ମୂର୍ତ୍ତି ଦର୍ଶନରୁ ସେ ସିନା ବଞ୍ଚିତା, କିନ୍ତୁ ଆଲେଖ୍ୟ ଦର୍ଶନର ଲୋଭ ତ ଛୁଡ଼ି ନାହାନ୍ତି—

'ଚିତ୍ରପଟ ହେଲେ ଦଅ ଅଣାଇ ରେ' ।   (ଗ୍ରଂ, ପୃ-୪୫୬)

ଜୀବନରେ ନହେଲେ ମଧ୍ୟ ମୃତ୍ୟୁରେ ଯେ ତାଙ୍କର (ପ୍ରିୟତମଙ୍କର) ସ୍ନେହ ପ୍ରାପ୍ତିର ଭରସା ତୁଟାଇ ନାହାନ୍ତି—

ଯିବ ଏ ଜୀବନ ସିନା ରେ,
ମୋହନ ପ୍ରୀତି କେ କଳନ ମନା ରେ । ଘୋଷା ।
ଦେହାନ୍ତରେ ଲଭିବାକୁ ସୁମନା,
ସଦା କରୁଛି ଯା'ପଦ ଭାବନା ରେ । ୧ ।   (ଗ୍ରଂ, ପୃ-୪୬୬)

ପୁଣି ଅନ୍ୟ ଏକ ଗୀତରେ ରାଧା କହୁଛନ୍ତି—

ଏହି ରଚିହୁତା ଶରେ ପ୍ରାଣ ଯିବା ଶ୍ରେୟ ।
ଭସୁ ଯମୁନା ତରଙ୍ଗେ ଏ ସନ୍ତପ୍ତ ଦେହ ।  (ଗ୍ରଂ.,ପୃ ୬୫୦)

କୃଷ୍ଣଙ୍କର ନିଷ୍ଠୁରତା ସତ୍ତ୍ୱେ ତାଙ୍କ ପ୍ରତି ହୃଦୟର ଅନୁରକ୍ତି ସେହିପରି ଅକ୍ଷୁଣ୍ଣ ରହିଛି (ଗ୍ରଂ.,ପୃ-୬୫୦) ପୁଣି ନିଜର ସାପତ୍ନ୍ୟ ସୁଲଭ ଈର୍ଷାକୁ ଭୁଲି (ଅନ୍ୟନ) ସେହି ବ୍ରଜସୁନ୍ଦରୀମାନଙ୍କର ପ୍ରଶଂସା କରୁଛନ୍ତି, ଯେଉଁମାନେ ପ୍ରିୟତମଙ୍କର କରୁଣା ଲାଭ କରିଛନ୍ତି (ଗ୍ରଂ. ବ , ପୃ-୬୪୧) । ଏଥିରେ ପ୍ରଚ୍ଛନ୍ନ ଭାବରେ ରାଧା ଚରିତ୍ରର ଉଦାର୍ଯ୍ୟତା ହେତୁକ ଉତ୍କର୍ଷ ପରିସ୍ଫୁଟ ହୋଇଛି ।

ଶ୍ୟାମ ପ୍ରେମ ସମ୍ପର୍କରେ ରାଧାଙ୍କର ଏ ମହିମାନ୍ୱିତ ଭାବନାର ଅନୁରୂପ ଚିତ୍ର ଭାରତୀୟ ସାହିତ୍ୟରେ ଦୁର୍ଲଭ ନୁହେଁ । ଗୀତଗୋବିନ୍ଦରେ ରାଧା ବ୍ରଜସୁନ୍ଦରୀମାନଙ୍କ ମଧ୍ୟରେ ବିହାରଶୀଳ ପ୍ରିୟତମ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ଚନ୍ଦ୍ରାକର ଦୁଃଖିତା ହେଲେ ମଧ୍ୟ ଶାରଦୀୟ କ୍ରୀଡ଼ାସୁଖ ବିସ୍ମୃତ ହୋଇ ପାରୁ ନାହାଁନ୍ତି (୨୭) । ଅନ୍ୟ ଯୁବତୀଙ୍କ ସହ ବିହାର କରୁଥିଲେ ମଧ୍ୟ ସେହି ପ୍ରିୟତମଙ୍କୁ ସେ କାମନା କରୁଛନ୍ତି । ତାଙ୍କର ଗୁଣରାଜି ସ୍ମରଣ କରୁଛନ୍ତି ।

(୨୭) ଗୀ. ଗୋ., ୨।୫।୨, ପୃ-୩୪

ଅନ୍ତର ତାଙ୍କର ଦୋଷରାଜି ପରିହାର କରି ତାଙ୍କର ସ୍ମରଣରେ ସନ୍ତୋଷ ଲଭ କରୁଛୁ (୨୮) । ବିଦଗ୍ଧ ମାଧବର ରାଧା ପ୍ରିୟତମଙ୍କର ବ୍ୟାଜ ଉପେକ୍ଷାରେ ଆହତା ହୋଇ ପୌର୍ଣ୍ଣମାସୀଙ୍କୁ କହୁଛନ୍ତି—“ଶ୍ରୀକୃଷ୍ଣଙ୍କ ଠାରେ ଅନୁରାଗ ତ୍ୟାଗକଲି, ଆଶୀର୍ବାଦ କରନ୍ତୁ ଯେପରି ତାଙ୍କର ମୁଖସୌରଭରେ ମନୋନିବେଶ କରି ସନ୍ଧ୍ୟାରେ ତାଙ୍କର ବିମଳ ମାଳାରେ ମଧୁକରୀ ହୁଏ” (୨୯) । ବିଦଗ୍ଧ ଚନ୍ଦ୍ରାମଣିର ପ୍ରଣୟ-ଦୁଃଖିନୀ ରାଧା ପରକାଳରେ ମଧ୍ୟ ଶ୍ୟାମଙ୍କ ସହିତ ମିଳିତ ହେବାର ଅଭିଳାଷ ପୋଷଣ କରି ସଖୀକୁ (ବିଶାଖାଙ୍କୁ) କହୁଛନ୍ତି—

ଜୀବନ ଗଲେ ଏତିକି କରିବ ।
ଶ୍ୟାମ ନାମ ମୋର ହୃଦେ ଲିହିବ ।
ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଦାଇ ।
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ ।
ଶ୍ୟାମ ଗଡିପଥେ ଗୋ !
ମୋ ଶବ ପୋତିବ ଆପଣା ହାଥେ । (ବି. ଚ., ୩୯।୩୭)

ଏହା ନ ହୋଇଥିଲେ ଚଣ୍ଡୀଦାସଙ୍କର ରାଧା କହି ନ ଥାନ୍ତେ—

ଜୀବନେ ମରଣେ ଜନମେ ଜନମେ
ପ୍ରାଣନାଥ ହଇଓ ତୁମି । (ବୈ. ପ., ପୃ-୮୨)

ଶେଷ ପର୍ଯ୍ୟନ୍ତ ସଖୀମାନେହିଁ କିଶୋରୀଙ୍କର ହତାଶାପୂର୍ଣ୍ଣ ମୁହୂର୍ତ୍ତରେ ଏକମାତ୍ର ସାନ୍ତ୍ୱନାର ଉତ୍ସ । ରାଧାଙ୍କର ପରମପ୍ରେଷ୍ଠା ସଖୀ କେତେବେଳେ ଶ୍ୟାମଙ୍କ ସହିତ ମିଳିତ କରାଇବାର ପ୍ରତିଜ୍ଞା କରିଛୁ, କେତେବେଳେ ମଙ୍ଗଳାଭିଳାଷିବାପନ୍ନ କବି ‘ଦୁଃଖ ସହିଲେ ସୁଖ ପ୍ରାପ୍ତି ହୁଏ’ ବୋଲି ଆଶ୍ୱାସନା ବାଣୀ ଶୁଣାଇଛନ୍ତି (ଗ୍ରଂ., ପୃ-୪୫୭) (୩୦) । କୌଣସି ନିର୍ଦ୍ଦିଷ୍ଟ କାହାଣୀର ଅନୁକ୍ରମରେ ଗୀତଗୁଡ଼ିକ ରଚିତ ହୋଇ ନଥିବାରୁ ବିରହୋତ୍କଣ୍ଠାର ଗୀତ ମଧ୍ୟରେ ରାଧାକୃଷ୍ଣ ମିଳନର ସଙ୍କେତ ଦିଆଯାଇଛି (ଗ୍ରଂ., ପୃ-୪୬୦ ଭଣିତା ପଦ) ।

ଜୟଦେବଙ୍କ ଠାରୁ ଆରମ୍ଭ କରି ଗୋବିନ୍ଦ ଦାସ ଓ ନରୋତ୍ତମ ଦାସ ପ୍ରଭୃତି ବିଭିନ୍ନ ପଦକର୍ତ୍ତା କୃଷ୍ଣଙ୍କର ଅନାଗମନ ସମ୍ପର୍କରେ ରାଧାଙ୍କ ଚିତ୍ତରେ ନାନା ପ୍ରକାର ଭାବ-ସମ୍ଭାବନାର ସଙ୍କେତ ଦେଇଛନ୍ତି । ଜୟଦେବଙ୍କର ରାଧା ବିରହ-ଦହନରେ ବଳସ୍ୱାଦ ମଣି-ଭୂଷଣ ଧାରଣକୁ ଦୂଷଣ ମନେ କରିଛନ୍ତି (୩୧) ଏବଂ ଅନ୍ଧକାରରେ ପଥ ହରାଇ ଅନ୍ୟ ରମଣୀଦ୍ୱାରା ମଧ୍ୟ-ପଥରେ ଅବରୁଦ୍ଧ ହୋଇଛନ୍ତି ବୋଲି ସମ୍ଭାବନା କରିଛନ୍ତି । ମଞ୍ଜରୀ

(୨୮) ଗୀ. ଗୋ:, ୨।୫।୧୦, ପୃ-୩୮
(୨୯) ବି. ମା., ୩।୧୮, ପୃ-୧୩୯
(୩୦) ଜ୍ଞାନ ଚଣ୍ଡୀଦାସ, ପ. ସା., ପୃ-୧୫୬
(୩୧) ଗୀ. ଗୋ.

ଭାବାପନ୍ନ ଗୋବିନ୍ଦ ଦାସ ଶ୍ୟାମଙ୍କର ଦିଗ୍‌ଭ୍ରାନ୍ତ ଘଟିଛି ବୋଲି ରାଧାଙ୍କୁ ସାନ୍ତ୍ୱନା ଦେଇଛନ୍ତି ଏବଂ ନରୋତ୍ତମ ଦାସ ଶ୍ୟାମଙ୍କୁ ଆଣିବାର ଭରସା ଦେଇ ଧୈର୍ଯ୍ୟ ଧାରଣ କରିବା ପାଇଁ ନିବେଦନ କରିଛନ୍ତି (୩୨) ।

ନିର୍ଦ୍ଦିଷ୍ଟ ସମସ୍ତ ଅତିକ୍ରାନ୍ତ ହୋଇଗଲେ ମଧ୍ୟ ଶ୍ୟାମଙ୍କର ଦେଖାନାହିଁ । ରାଧାଙ୍କର ଆଶଙ୍କା ଓ ବେଦନାର ମଧ୍ୟ ଅନ୍ତ ନାହିଁ । ଆଶା ଥିବା ପର୍ଯ୍ୟନ୍ତ ପ୍ରତୀକ୍ଷା; କିନ୍ତୁ ନୈରାଶ୍ୟରେ ଚିତ୍ତ ଆଚ୍ଛନ୍ନ ହେଲେ ପ୍ରତୀକ୍ଷାର ଅବସାନ ଘଟିଯାଏ । କୁଳତ୍ୟାଗ କରିଥିବାରୁ କୁଳରେ ସେ ଅବମାନିତା । ଯେଉଁ ପ୍ରେମରେ ଭରସା କରି ଆଗେଇ ଆସିଲେ ସେହି ପ୍ରଣୟ ରାଜ୍ୟରେ ସେ ନିଜକୁ ଏକାନ୍ତ ଅବମାନିତା ମନେ କରି ବିରହାଗ୍ନିରେ ଦଗ୍‌ଧ ହେବା ସଙ୍ଗେ ସଙ୍ଗେ ହତାଶାରେ ଭାଙ୍ଗି ପଡ଼ନ୍ତି । ନାୟିକାର ଏହି ଦଶା ହିଁ ଏ ବିପ୍ରଲବ୍‌ଧାର ଦଶା ।

ବିପ୍ରଲବ୍‌ଧା :

ରାଧାଙ୍କର ବିପ୍ରଲବ୍‌ଧା ଅବସ୍ଥାକୁ ଆଶ୍ରୟ କରି ଗୋପାଳକୃଷ୍ଣ ନଅଟି ଗୀତ ରଚନା କରିଛନ୍ତି । ସାହିତ୍ୟ ଦର୍ପଣାନୁଯାୟୀ ବିପ୍ରଲବ୍‌ଧାର ଲକ୍ଷଣ ହେଉଛି––

ପ୍ରିୟଃ କୃତ୍ୱାପି ସଙ୍କେତଂ ଯସ୍ୟା ନାୟାତି ସନ୍ନିଧିମ୍ ।
ବିପ୍ରଲବ୍‌ଧା ତୁ ସା ଜ୍ଞେୟା ନିତାନ୍ତମବମାନିତା ।।

(ସା. ଦ., ୩।୮୩, ପୃ-୯୮୨)

ରୂପ ଗୋସ୍ୱାମୀଙ୍କ ଦତ୍ତ ସଂଜ୍ଞା ହେଉଛି—

କୃତ୍ୱା ସଙ୍କେତମପ୍ରାପ୍ତେ ଦୈବାଜ୍ଜୀବିତବଲ୍ଲଭେ ।
ବ୍ୟଥମାନାନ୍ତରା ପ୍ରୋକ୍ତା ବିପ୍ରଲବ୍‌ଧା ମନୀଷିଭିଃ ।
ନିର୍ବେଦଚିନ୍ତାଖେଦାଶ୍ରୁମୂର୍ଚ୍ଛାନିଶ୍ୱସିତାଦିଭାକ୍ ।।

(ଉ. ନୀ., ନାୟିକା ଭେଦଃ, ଶ୍ଳୋ. ୪୭, ପୃ-୨୦୦)

ଅର୍ଥାତ୍ ସଙ୍କେତ ଦେଇ ଯଦି ନାୟକ ଆସନ୍ତି ନାହିଁ, ତା'ହେଲେ ଯେଉଁ ନାୟିକାର ଅନ୍ତର ଅତିଶୟ ବ୍ୟଥିତ ହୁଏ, ତାହାକୁ ବିପ୍ରଲବ୍‌ଧା କୁହାଯାଏ । ନିର୍ବେଦ (ବୈରାଗ୍ୟ), ଚିନ୍ତା, ଖେଦ, ଅଶ୍ରୁ, ମୂର୍ଚ୍ଛା ଓ ଦୀର୍ଘ ନିଃଶ୍ୱାସ ତ୍ୟାଗ ଇତ୍ୟାଦି ବିପ୍ରଲବ୍‌ଧା ନାୟିକାର ଚେଷ୍ଟା ।

ଜୟଦେବଙ୍କ ଠାରୁ ଆରମ୍ଭ କରି ବିଭିନ୍ନ ବୈଷ୍ଣବ କବି ଓ ପଦକର୍ତ୍ତାମାନଙ୍କ ଅନୁସରଣରେ ଗୋପାଳକୃଷ୍ଣ ରାଧାଙ୍କର ବିପ୍ରଲବ୍‌ଧା ଅବସ୍ଥା ବର୍ଣ୍ଣନା କରିଛନ୍ତି । ସୁଖ ଦୁଃଖରେ ସହାୟା, ସମ୍ବେଦନଶୀଳା ସଖୀମାନେ ଶ୍ୟାମଙ୍କ ନିକଟରେ ରାଧାଙ୍କର ପ୍ରତୀକ୍ଷା-ଜନିତ (ସଙ୍କେତ କୁଞ୍ଜରେ) ବ୍ୟଥା ଜଣାଇ ତାଙ୍କ ଚିତ୍ତରେ ଅପରାଧବୋଧ ଜାଗ୍ରତ କରାଇ କିଶୋରୀଙ୍କ ନିକଟରେ ତାଙ୍କୁ କ୍ଷମାପ୍ରାର୍ଥୀ ଭାବରେ ଉପସ୍ଥିତ କରାଇବାର ଭୂମିକା ଗ୍ରହଣ

(୩୨) ପ. ସା., ପୃ-୧୧୩

କରନ୍ତି । ବିଭିନ୍ନ ଗୀତରେ ଉପେକ୍ଷିତା ରାଧାଙ୍କର ଉନ୍ମାଦନା ଅବସ୍ଥା, ବିରହ ଦଶାଜନିତ ଚରମ ବ୍ୟଥାର ଅଭିବ୍ୟକ୍ତି ଘଟିଛି ସଖୀ ଓ ଦୂତୀମାନଙ୍କର ଉକ୍ତିରେ ।

ଗୋଟିଏ ଗୀତରେ (ଆହେ ମନ୍ଦରଧର ! ହେଲଟିକି ଏ ରୀତି ସୁନ୍ଦର ହେ, ଗ୍ରଂ., ପୃ-୫୧୩) ରାଧାଙ୍କର ବିପ୍ରଲବ୍‌ଧା ଅବସ୍ଥା ବର୍ଣ୍ଣନା କରି ଦୂତୀ ଶ୍ରୀକୃଷ୍ଣଙ୍କର ଉପେକ୍ଷା ବିପକ୍ଷରେ ବ୍ୟଥାସିକ୍ତ ମୃଦୁ ଅଭିଯୋଗ ସ୍ୱର ଉତ୍ତୋଳନ କରେ । ସେ କହେ ଯେ ଯେଉଁ କିଶୋରୀଙ୍କ ଦର୍ଶନ ପାଇଁ ଯମୁନାତୀରସ୍ଥ କଦମ୍ବ ମୂଳରେ ସେ (ଶ୍ରୀକୃଷ୍ଣ) ବ୍ୟାକୁଳ ପ୍ରତୀକ୍ଷାରେ ରହୁଥାନ୍ତି, ଆଜି ତାଙ୍କର ଏ ଅପ୍ରତ୍ୟାଶିତ ଉପେକ୍ଷାରେ କିଶୋରୀ ତାଙ୍କ ଗୁଣ ଭାଳି ଭାଳି ଦ୍ୱିତୀୟା ଶଶୀ ପରି ତନୁ କ୍ଷୀଣ କଲେଣି । ଉତ୍କଟ ପ୍ରଣୟ ଦଶାରେ ସେ ଦୁର୍ଦ୍ଧଶାଗ୍ରସ୍ତ ହୋଇ ଦୁଃସହ ବ୍ୟଥା ଭୋଗୁଛନ୍ତି । ଉନ୍ମାଦନାପ୍ରାପ୍ତ କେତେବେଳେ ହାସ୍ୟ, କେତେ-ବେଳେ କ୍ରନ୍ଦନ କରୁଛନ୍ତି । ତାଙ୍କର ଦୁର୍ଲଭ ଦର୍ଶନ ଆଶାରେ ସେ କୌଣସିମତେ ଜୀବନ ଧାରଣ କରି ରହିଛନ୍ତି ।

ଅନ୍ୟ ଏକ ଗୀତରେ (ଶୁଣ ହେ ମାଧବ ! ତୁମ୍ଭେ ବିଦଗ୍‌ଧ ରାଜ, ଗ୍ରଂ., ପୃ-୫୧୪) ତ୍ରୁଥାଜଣ୍ଣି କାବ୍ୟକଳାରେ କଳିତା ମୁଖରେ ରାଧାଙ୍କର ଅବମାନିତା ଅବସ୍ଥାର ବର୍ଣ୍ଣନା ମାତ୍ର ରହିଛି (ବିରହତାପ ପ୍ରଶମନ ନିମିତ୍ତ କିଶଳୟ ଶଯ୍ୟା, ଚନ୍ଦ୍ର, ଚନ୍ଦନ ଓ ମଳୟ ପ୍ରଭୃତିର ଅଗ୍ନିପ୍ରାପ୍ତ ଜ୍ୱାଳା; କଣ୍ଠର ବାଷ୍ପରୁଦ୍ଧତା ହେତୁ ବହୁ କଷ୍ଟରେ ପଦର ଅର୍ଦ୍ଧମାତ୍ର ଉଚ୍ଚାରଣ) । ଅନ୍ୟ ଏକ ଗୀତରେ ସଖୀ କହେ ଯେ ତମିର ଅଭିସାରିଣୀ ଚନ୍ଦ୍ରକୁ ସ୍ୱାଗତ କରେନା । ଚନ୍ଦ୍ରକାନ୍ତ ମଣିଖଚିତ ଅଳିନ୍ଦରୁ ଝରୁଥିବା ଜଳ ଦେଖି ଚନ୍ଦ୍ରୋଦୟ ଆଶଙ୍କାରେ କିଶୋରୀ ବ୍ୟଥାରେ ଭୂମିରେ ଲୋଟି ଯାଉଛନ୍ତି (ଆହେ ଗୋଷ୍ଠ ଚନ୍ଦ୍ରମା, ଗ୍ରଂ. ପୃ-୫୧୫) ।

ଅନ୍ୟ ଏକ ଗୀତରେ (ହେ ନାଗର ! ମନେ ନ ଘେନ ଆନ, ଗ୍ରଂ, ପୃ-୫୧୫) ଜୀବନ ଓ ମୃତ୍ୟୁର ସନ୍ଧିକ୍ଷଣରେ ଉପସ୍ଥିତ ହୋଇଥିବା କିଶୋରୀଙ୍କର ବିଷମ ଦଶା ବର୍ଣ୍ଣନା କରି ଦୂତୀ ବ୍ୟଥିତ କଣ୍ଠରେ କହୁଛି ଯେ ତାଙ୍କ ଅନୁରାଗର ଏ ହେଉଛି ବିଷମୟ ପରିଣତି । କିଶୋରୀ ଅହର୍ନିଶ ତାଙ୍କ ନାମ ଜପୁଛି । ସଙ୍କେତ କୁଞ୍ଜରେ ଚିତ୍ତ ମଧ୍ୟରେ ତାଙ୍କୁ ଧ୍ୟାନ କରି କୌଣସିମତେ ପ୍ରାଣ ଧରିଛି । ଆସିବା ସମୟରେ ମୂର୍ଚ୍ଛିତ ହୋଇ ପଡ଼ିଥିବାର କରୁଣ ଦୃଶ୍ୟ ତା' ପକ୍ଷରେ ବର୍ଣ୍ଣନାତୀତ । ସଖୀର ଏ ଅବସ୍ଥାରେ ତାଙ୍କର ଅନବଧାନତା କ'ଣ ଶୋଭନୀୟ ?

ଅନ୍ୟ ଗୀତଗୁଡ଼ିକରେ ବିଳାଧିକେ ରାଧାଙ୍କର ବିରହଦଶାର ସେହି ଗତାନୁଗତିକତାର ଅନୁକୃତି ମାତ୍ର (ଅଶନ ଓ ବସନରେ ଅରୁଚି, ହାର ବିଷଧର ତୁଲ୍ୟ ପ୍ରତୀତ ହେବା, କିଶଳୟ ଶଯ୍ୟା, କ୍ଷଣକ୍ଷଣ ସଙ୍କଶୂନ୍ୟତା ଇତ୍ୟାଦି) ପରିଦୃଷ୍ଟ ହୁଏ । କେବଳ ଗୋଟିଏ ଗୀତରେ (ଶ୍ରୀମତି ! କି ହେଲୁଟି ଶ୍ୟାମବିନା ଗୋ ! ଗ୍ରଂ. ପୃ-୬୪୩) ରାଧାଙ୍କ ପ୍ରତି ସଖୀର ସମ୍ବେଦନା ଓ ସହାନୁଭୂତି ଏବଂ ଶ୍ୟାମଙ୍କ ପ୍ରତି ଆକ୍ଷେପ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ

ଶ୍ରୀମତୀଙ୍କ ପ୍ରାଣରେ ଆଶାବାରି ସିଞ୍ଚନ କରାଯାଇଛି । ବନମାଳୀଙ୍କ ପରି ସରଳ ତରଳ ଭାଷାରେ ଗୀତଟି ରଚିତ ହୋଇଥିବାରୁ ସୁଖବୋଧ୍ୟତା ଓ ସ୍ୱରମାଧୁର୍ଯ୍ୟ ହେତୁ ଗୀତଟି ଉପଭୋଗ୍ୟ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ କେତୋଟି ପଦ ଉଦ୍ଧାର କରାଯାଉଛି—

କାହିଁ ପାଇଁ ଶ୍ୟାମ ରୂପକୁ ଚାହିଁ,
ବାଇ ହୋଇଗଲୁ ଯମୁନା ଧାଇଁ ।
ଧାଇଁ ପ୍ରାଣସଖିଆ ହେ ବଙ୍କା ଆଖିଆ
ଜାଣୁମଣି ଜାଣୁ ନଥା ଗୋ ।୧।
ପହିଲୁ ତୋତେ କରୁଥିଲି ମନା,
ଅନା ନା ବୋଲି ତା' ନ କଲୁ ଧେନା ।୨।
ଆଖରକୁ ଖାସା ଲଭିଲୁ ଏ ଦଶା
ବ୍ରଜପୁରେ ପଡ଼ି ଚହଲା ଗୋ ।୩। (ଗ୍ରଂ., ପୃ-୬୪୩)

ଉକ୍ତ ଗୀତକୁ ଲକ୍ଷ୍ୟ କଲେ ବଳଦେବଙ୍କର ପଦ ପରମ୍ପରା ସ୍ମରଣକୁ ଆସିଯାଏ, ଯଥା—

ମନା ମୁଁ କରୁଥିଲି ଏହାକୁ ଗୋ,
ଅନା ନା ବୋଲି ବନ ରହାକୁ ଗୋ !
ଅନାଦର ମୋ ଗିରେ, କଲି ଯେ ଏବେ ସ୍ମରେ,
ଲଭିଲି ଦୁଃଖ ହେଲି କାହାକୁ ଗୋ !

(ସଙ୍ଗୀତ କଳ୍ପଲତା, କ. ସ୍ମୃ. ଗ୍ର., ପୃ-୨୨୧)

ଗୀତଗୋବିନ୍ଦର ରାଧା ମାଧବଙ୍କର ଅନାଗମନ ସମ୍ପର୍କରେ ନାନା ତର୍କଣା କରିଛନ୍ତି, କିନ୍ତୁ ତାଙ୍କ (ଶ୍ରୀକୃଷ୍ଣଙ୍କ) ନିକଟରୁ ଏକାକିନୀ ପ୍ରତ୍ୟାବର୍ତ୍ତିନ କରିଥିବା ବିଷଣ୍ଣା ଓ ବାକ୍-ଶୂନ୍ୟା ସଖୀକୁ ଦେଖି ଶ୍ୟାମ ଅପର ନାୟିକା ସହିତ ମିଳିତ ହୋଇଛନ୍ତି ବୋଲି ସ୍ଥିର କରି ନେଇଛନ୍ତି । ବିପ୍ରଲବ୍ଧାର ମୁଖରୁ ବ୍ୟଥାସିକ୍ତ ଅଭିମାନିନୀ ସୁଲଭ ବଚନ ଝରି ପଡ଼ିଛି, କିନ୍ତୁ ସେ ଭର୍ତ୍ସନା ପଡ଼ିନାହାନ୍ତି । ଯୁକ୍ତିନଷ୍ଟ ଚିତ୍ତରେ କରୁଣ ସ୍ୱରରେ ଦୃଢ଼ତା ଆଣି ସଖୀକୁ କହିଛନ୍ତି—ଶ୍ୟାମ ଶଠତା ପୂର୍ବକ ନ ଆସିଲେ ତା'ର (ଦୂତୀର) ବ୍ୟଥିତ ହେବାର କିଛି ନାହିଁ । ସେ ବହୁବଲ୍ଲଭ, ତାଙ୍କ ପକ୍ଷରେ ବହୁ ନାୟିକା ସହ ସ୍ୱଚ୍ଛନ୍ଦରେ ବିହାର କରିବା ସ୍ୱାଭାବିକ । କିନ୍ତୁ ବହୁବଲ୍ଲଭ ଶ୍ୟାମଙ୍କ ପ୍ରତି ତାଙ୍କ ହୃଦୟରେ ବିତୃଷ୍ଣା ଆସି ନାହିଁ କିମ୍ବା ଅନ୍ୟ ନାୟିକା ପ୍ରତି ଉତ୍କଟ ସାପତ୍ନ୍ୟସୁଲଭ ଈର୍ଷା ପ୍ରକାଶିତ ହୋଇନାହିଁ, ବରଂ ଅଭିମାନୋକ୍ତିରେ ତାଙ୍କର ଅନ୍ତରର ବେଦନା ନିଗୂଢ଼ିତ ଅଛି । ଦୟିତଙ୍କ ଗୁଣରେ ଆକୃଷ୍ଟ ହୋଇ (ଉତ୍କଣ୍ଠା ଓ ବେଦନାରେ ତାଙ୍କର ଅନ୍ତର ବିଦୀର୍ଣ୍ଣ ହେଲେ ମଧ୍ୟ) ପ୍ରିୟ-ସଙ୍ଗମ ଆଶାରେ ନିଜେ ଅଭିସାର କରିବାର ବଳବତୀ ବାସନା ପୋଷଣ କରିଛନ୍ତି । ବିପ୍ରଲବ୍ଧାର ବେଦନାର ଚିତ୍ରରେ ପାରମ୍ପରିକତା ରହିଥିଲେ ମଧ୍ୟ ପ୍ରତ୍ୟାଖ୍ୟାତାର ଧୂସର ଛାୟାପାତ ଘଟିନାହିଁ । ଗୋପାଳକୃଷ୍ଣଙ୍କ ରଚନାରେ ମଳୟ ପବନ ବିରହିଣୀ ପକ୍ଷରେ କବି

ପରମାର୍ଥରେ ଶତ୍ରୁ ରୂପେ ଦେଖା ଦେଇଛି; କିନ୍ତୁ ଜୟଦେବଙ୍କର ରାଧା ମଳୟଙ୍କୁ କହୁଛନ୍ତି— "ହେ ମଳୟାନିଳ ! ତୁମେ ପ୍ରତିକୂଳତା ତ୍ୟାଗ କରି ମୋ ପ୍ରତି ଅନୁକୂଳ ଓ ପ୍ରସନ୍ନ ହୁଅ । ହେ ଜଗତ୍‌ପ୍ରାଣ ! ମାଧବଙ୍କୁ କ୍ଷଣକାଳ ପାଇଁ ମୋ ନିକଟକୁ ଆଣି ପରେ ମୋର ପ୍ରାଣ ହରଣ କର, ଏଥିରେ ମୋର କ୍ଷତି ନାହିଁ (୩୩) । ବିପ୍ରଲବ୍ଧା ମୁଖରେ ଏ ପ୍ରକାର ଆନୁକୂଲ୍ୟ-ପ୍ରାର୍ଥନାର ସଙ୍କେତ ଦେବା ଦ୍ୱାରା କବି (ଜୟଦେବ) ପାରମ୍ପରିକ କାବ୍ୟ-ରୀତିରେ ନୂତନତ୍ୱର ଇଙ୍ଗିତ ଦେଇଛନ୍ତି । ପ୍ରିୟତମଙ୍କ ଦ୍ୱାରା ଉପେକ୍ଷିତା ହେଲେ ମଧ୍ୟ ହୃଦୟକୁ ପ୍ରତିନିବୃତ୍ତ କରିବାର ଶକ୍ତି ତାଙ୍କର ନାହିଁ, ହୃଦୟ ତାଙ୍କ ଦିଗରେ ପ୍ରଧାବିତ ହେଉଛି । କାମିନୀମାନଙ୍କର ପ୍ରିୟ ସଙ୍ଗମ ଲାଳସା ଅତ୍ୟନ୍ତ ଦୁର୍ନିବାର (୩୪) ବୋଲି ରାଧାଙ୍କ ମୁଖରେ ସୂଚିତ କରିବା ଦ୍ୱାରା କବି (ଜୟଦେବ) ଚରିତ୍ର ଚିତ୍ରଣରେ ଗଭୀର ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପରିଚୟ ଦେବା ସଙ୍ଗେ ସଙ୍ଗେ ପ୍ରଣୟିନୀ ସୁଲଭ ଗାମ୍ଭୀର୍ଯ୍ୟ ଓ ମହତ୍ତ୍ୱର ବ୍ୟଞ୍ଜନା ଦ୍ୱାରା ରାଧା ଚରିତ୍ରକୁ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ କରିଛନ୍ତି । ଗୋପାଳ-କୃଷ୍ଣଙ୍କର ବିପ୍ରଲବ୍ଧା ରାଧା ସିଦ୍ଧରସ-ପରମ୍ପରା ଦୃଷ୍ଟିରୁ ମହିମାମୟୀ ହେଲେ ମଧ୍ୟ ପ୍ରଥାନୁଗତାରେ ତାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱର ପ୍ରତିଷ୍ଠା ହୋଇ ପାରିନାହିଁ । ଗୀତଗୋବିନ୍ଦର ରାଧାଙ୍କ ପରି ସେ ଯୁକ୍ତି-ସଂହତ ଦୃଢ଼ କଣ୍ଠରେ ନିଜର ବ୍ୟଥା ସଖୀ ନିକଟରେ ବାଢ଼ି ପାରିନାହାନ୍ତି ।

ବିଦଗ୍ଧ ମାଧବରେ ରାଧା ଲତା କୁଞ୍ଜକୁ ମାଧବଙ୍କର ଅନାଗମନରେ ଦୁଃଖ ଓ ହତାଶାରେ ଦୀର୍ଘ ଯାମିନୀ ଅତିବାହିତ କରିଛନ୍ତି । ବକୁଳ କୁଞ୍ଜରେ କର୍ପୂର ସୁରଭିତ ତାମ୍ବୂଳ ଦୂରକୁ ନିକ୍ଷେପ କରିଛନ୍ତି । ଏକାନ୍ତ ଦୁଃଖରେ ମରକତମଣି ଗ୍ରଥିତ ହାର ପରିତ୍ୟାଗ କରି ସୁଗନ୍ଧି-କୁସୁମ ଚୂଡ଼ା କରଜ ଦ୍ୱାରା ଛିନ୍ନ କରିଛନ୍ତି । କୁଞ୍ଜଟି ରାଧାଙ୍କର ବିରହ ଜନିତ ବ୍ୟଥାର ହୋଇଛି ପ୍ରତୀକ (୩୫) ।

କବିସୂର୍ଯ୍ୟଙ୍କର 'ସଙ୍ଗୀତ କଳ୍ପଲତାର' ଗୋଟିଏ ଗୀତରେ (ସଜନି ! ଆଜ ରଜନୀରେ ନଇଲେ ବ୍ରଜମୋହନ, କ. ସୂ. ଗ୍ର, ପୃ-୨୯୦) ବିପ୍ରଲବ୍ଧା କିଶୋରୀଙ୍କର ହୃଦୟ ବେଦନାର ମଞ୍ଜୁଳ ଅଭିବ୍ୟକ୍ତି ରହିଛି । ସେଥିରେ ପ୍ରତିଦ୍ୱନ୍ଦ୍ୱିନୀ ପ୍ରତି ଅସୂୟାର ବ୍ୟଞ୍ଜନା ସହ ପ୍ରବଞ୍ଚକ ପ୍ରିୟତମଙ୍କ ପ୍ରତି ଆକ୍ଷେପୋକ୍ତି କମ ଶାଣିତ ନୁହେଁ, ଯଥା—

ମୋ ଦେହେ ଦେଇ କର- କମଳ ବାରମ୍ବାର
ନିୟମ କରି କେତେ କହିଲରେ,
କପଟ ମତି କଣ୍ଠ ସାହସେ ସେ କପରି
ଧରମ ତାକୁ ସହି ସହିଲରେ ।୧।

(୩୩) ଗୀ. ଗୋ., ୭।୧୬।୩୯, ପୃ-୯୯

(୩୪) ଗୀ. ଗୋ., ୭।୧୬।୪୦, ପୃ-୧୦୦

(୩୫) ବି. ମା., ୪।୩୭, ପୃ-୨୧୪।୨୧୫

ଲଗାଇ ପ୍ରେମରସ- ମଧୁ ଜନ୍ମାଇ ରଙ୍ଗ
ନୟନୁ ଅଶ୍ରୁ ବରଷାଇଲରେ,
ଭକ୍ତ ମୁଁ ଜାଣି ହରି କି ଅପରାଧୀ ଅରି
ମୋଠାରେ ଅବଧାନ ନୋହିଲରେ ।୨।
ଖଞ୍ଜି ରଖିଛୁ ପାନ କର୍ପୂର ଶ୍ରୀଚନ୍ଦନ
ଏବେତ ବେଣ ବାସି ହୋଇଲରେ,
କାହା ପୁରତେ ମାଠ ଆସି ହେଲ ପାହାନ୍ତ
କୁକ୍‌କୁଟ କୁକ୍କୁରବେ ରଡ଼ିଲରେ ।୩।

ବାସର ଜାଣିର ଶେଷ ଯାମରେ ବା ପ୍ରତ୍ୟୁଷ କାଳରେ ହୁଏତ ଶ୍ୟାମଙ୍କର ଆବର୍ତ୍ତ ହୋଇପାରେ । ଏଥିରେ ରାଧାଙ୍କର ଜିଜ୍ଞାସା ଓ ଉଦ୍‌ବେଗର ହୁଏତ ସାମୟିକ ଅବସାନ ଘଟିପାରେ, କିନ୍ତୁ ପ୍ରିୟତମଙ୍କ ସମକ୍ଷରେ ରାଧାଙ୍କର ସ୍ୱରୂପ ଓ ଭୂମିକା ହୁଏ ଭିନ୍ନ ପ୍ରକାର । ଆଲଙ୍କାରିକ ଭାଷାରେ ପ୍ରଣୟିନୀର ସେ ଅବସ୍ଥାର ଅଭିଧାନ ହେଉଛି 'ଖଣ୍ଡିତା' ।

**ଖଣ୍ଡିତା :**

ରାଧାଙ୍କର ଖଣ୍ଡିତାବସ୍ଥାକୁ ଭିତ୍ତି କରି ଗୋପାଳକୃଷ୍ଣ ସତରଟି ଗୀତ ରଚନା କରିଛନ୍ତି । ଉଜ୍ଜ୍ୱଳ ନୀଳମଣି ଅନୁଯାୟୀ 'ଖଣ୍ଡିତା'ର ସଂଜ୍ଞା ହେଉଛି—

ଉଲ୍ଲଙ୍ଘ୍ୟ ସମୟଂ ଯସ୍ୟାଃ ପ୍ରେୟାନନ୍ୟୋପଭୋଗବାନ୍
ଭୋଗଲକ୍ଷ୍ମାଙ୍କିତଃ ପ୍ରାତରାଗଚ୍ଛେତ୍ ସା ହି ଖଣ୍ଡିତା ।।
ଏଷା ତୁ ରୋଷନିଶ୍ୱାସତୂଷ୍ଣୀମ୍ଭାବାଦଭାକ୍ ଭବେତ୍ ।।

(ଉ. ନୀ. ନାୟିକା ଭେଦଃ, ଶ୍ଳୋ. ୫୪, ପୃ-୧୯୮।୧୯୯)

ଅର୍ଥାତ୍ ସଙ୍କେତିତ କାଳ ଅତିକ୍ରମ କରି ଯାହାର ପ୍ରିୟତମ ଅନ୍ୟ ପ୍ରେୟସୀ ସହିତ ଜାଣୀ ଯାପନ କରି ସମ୍ଭୋଗ ଚିହ୍ନ ଧାରଣ ପୂର୍ବକ ଯଦି ପ୍ରାତଃ କାଳରେ ସମାଗତ ହୁଅନ୍ତି, ତାହା ଦେଖି ସେହି ନାୟିକା ଖଣ୍ଡିତାବସ୍ଥା ପ୍ରାପ୍ତ ହୁଏ । କ୍ରୋଧ, ଦୀର୍ଘ ନିଶ୍ୱାସ ତ୍ୟାଗ ଓ ତୂଷ୍ଣୀ ଭାବ ଅବଲମ୍ବନ ଇତ୍ୟାଦ ଖଣ୍ଡିତା ନାୟିକାର ଚେଷ୍ଟା (୩୬) ।

ଖଣ୍ଡିତାର ଆକ୍ଷେପ ଓ ଅଭିମାନମିଶ୍ର ମନୋବେଦନାର ଚିତ୍ରରେ ପ୍ରକାଶଭଙ୍ଗୀଗତ ବୈଶିଷ୍ଟ୍ୟକୁ ବାଦ ଦେଲେ ନ୍ୟୂନାଧିକେ କି ସଂସ୍କୃତ କାବ୍ୟ, କି ପଦାବଳୀ, କି ଓଡ଼ିଆ ବୈଷ୍ଣବ କାବ୍ୟ, ସର୍ବତ୍ର ଆଲଙ୍କାରିକ ପରମ୍ପରାର ଅନୁସରଣ ଦେଖାଯାଏ । ରଜନୀର ପ୍ରାନ୍ତ ଭାଗରେ ନିଦ୍ରା ବର୍ଜନ କଷାୟ ନେତ୍ରରେ ଅନ୍ୟ ରମଣୀ ସମ୍ଭୋଗର ପ୍ରମାଣ ସ୍ୱରୂପ ଲଲାଟରେ ସିନ୍ଦୂର ଲାଞ୍ଛନ, ଅଧରରେ ଅଞ୍ଜନ ଓ ବକ୍ଷରେ ମଣି କଙ୍କଣର ଚିହ୍ନ ଏବଂ ପୀତବସନ ପରିବର୍ତ୍ତେ ନୀଳ ବସନ ପରିଧାନ କରି ରାଧାଙ୍କର କୁଞ୍ଜ-ନିଳୟରେ ଶ୍ୟାମଙ୍କର ଉପସ୍ଥିତି—ଏହି ପାରମ୍ପରିକ ଚିତ୍ରର ଅନୁବର୍ତ୍ତନ ପ୍ରାୟ ସର୍ବତ୍ର ଲକ୍ଷିତ । ପ୍ରଣୟିନୀ

(୩୬) ସା. ଦ., ୩।୭୮, ପୃ-୧୬୯

ନିକଟରେ ଶ୍ୟାମ ଧରାପଡ଼ିଲେ ମଧ୍ୟ ନାନା ଅପ୍ରସ୍ତୁତ କାରଣ ଦର୍ଶାଇ ନିଜର ନିର୍ଦ୍ଦୋଷତା ପ୍ରମାଣର ପ୍ରଚେଷ୍ଟା ଓ ତା'ର ପରିଣତି ସ୍ୱରୂପ ଉଭୟଙ୍କର ରସ କଳହର ଚିତ୍ର ବଙ୍ଗୀୟ ପଦାବଳୀ ସାହିତ୍ୟ ମଣି ଅବଶ୍ୟ ଗୋପାଳକୃଷ୍ଣଙ୍କ ରଚନାରେ ପରିଦୃଷ୍ଟ ହୁଏ ନାହିଁ । ତାଙ୍କର ରଚନାରେ ସଖୀର ଶ୍ୟାମଙ୍କ ପ୍ରତି ଆକ୍ଷେପ, ରାଧାଙ୍କର ପ୍ରତ୍ୟକ୍ଷ ଆକ୍ଷେପ, ସଖୀ ସମକ୍ଷରେ ଶ୍ୟାମ ଓ ତାଙ୍କର ପ୍ରେୟସୀ ପ୍ରତି ଆକ୍ଷେପ ଓ ସଖୀ-ପ୍ରବୋଧନା ମାଧ୍ୟମରେ ରାଧାଙ୍କର ଖଣ୍ଡିତା ଅବସ୍ଥାର ଚିତ୍ର ଦେଖାଯାଏ । କେତୋଟି ଗୀତ ଭାବ ଓ ପ୍ରକାଶ ବୈଚିତ୍ର୍ୟ ହେତୁ ଉପଭୋଗ୍ୟ ହେଲେହେଁ ଅନ୍ୟ ଗୀତ ଗୁଡ଼ିକ ବର୍ଣ୍ଣନୀୟ ବସ୍ତୁ ଦୃଷ୍ଟିରୁ ପ୍ରାୟ ପ୍ରଥା-ଜୀର୍ଣ୍ଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗୋଟିଏ ଗୀତରେ (ରାଧା ପୂରତକୁ ଯାଆନାରେ, ଗ୍ରଂ., ପୃ-୪୬୧) ସଖୀ ମୁଖରେ ଶ୍ୟାମଙ୍କ ପ୍ରତି ଯେଉଁ ଆକ୍ଷେପୋକ୍ତି ପ୍ରକାଶ ପାଇଛି, ସେଥିରେ ତାଙ୍କ ପ୍ରତି ଶଠ, ଲମ୍ପଟ ସମ୍ବୋଧନ ଏବଂ ଦୀର୍ଘ ପ୍ରତୀକ୍ଷା ଓ ଉନ୍ନିଦ୍ରିତା ହେତୁ ମର୍ମ ଯନ୍ତ୍ରଣା ଭୋଗୁଥିବା ଶ୍ରୀମତୀଙ୍କ ପ୍ରତି ସଖୀସୁଲଭ ସମ୍ବେଦନା ପ୍ରକାଶ ପାଇଛି ।

ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ପ୍ରତ୍ୟକ୍ଷ ଆକ୍ଷେପୋକ୍ତିମୂଳକ ଗୀତ ମଧ୍ୟରେ (ପ୍ରାୟ ସାତଟି) କେତୋଟି ଗୀତଗୋବିନ୍ଦ ଆଧାରରେ ଓ ଗୋଟିଏ ବିଦ୍ୟାପତିଙ୍କ ଆଧାରରେ ରଚିତ । ଗୀତ-ଗୋବିନ୍ଦର ବର୍ଣ୍ଣନାନୁଯାୟୀ ରାଧା ଅତି କଷ୍ଟରେ କୌଣସି ପ୍ରକାରେ ରଜନୀ ଅତିବାହିତ କଲେ । ପ୍ରଭାତରେ ଶ୍ରୀକୃଷ୍ଣ ଆସି ତାଙ୍କ ସମ୍ମୁଖରେ ପ୍ରଣତ ହୋଇ ଅନୁନୟ କରିବାକୁ ଲାଗିଲେ । ରାଧା କାମଶରରେ ଜର୍ଜରିତା ହୋଇଥିଲେ ମଧ୍ୟ ଦୟିତ ଅଙ୍ଗରେ ଅନ୍ୟ ନାୟିକାର ସମ୍ଭୋଗ ଚିହ୍ନ ଦର୍ଶନ କରି ପ୍ରବଳ ଈର୍ଷାବଶତଃ ତାଙ୍କୁ କହିଲେ ଯେ ଗତ ରଜନୀର ଜାଗରଣଜନିତ ଆଳସ୍ୟରେ ତାଙ୍କର ରକ୍ତାଭନୟନ ନିମୀଳିତ ହୋଇ ଆସୁଛି । ରହାଲସରେ ଅର୍ଦ୍ଧମୁଦ୍ରିତ ନେତ୍ରର ଅରୁଣିମା ତାଙ୍କ ଦୃଷ୍ଟିରେ ଅନ୍ୟ ନାୟିକାର ଅନୁରାଗର ଅଭିବ୍ୟକ୍ତି । ଅତଏବ କପଟ ବାକ୍ୟ ପ୍ରକାଶ ନକରି ସମ୍ମୁଖରୁ ତାଙ୍କର ସେହି ନାୟିକା ନିକଟକୁ ଚାଲିଯିବା ଉଚିତ । ଜୟଦେବଙ୍କ ଭାଷାରେ—

ହରି ହରି ଯାହି ମାଧବ ଯାହି କେଶବ
ମା ବଦ କୈତବବାଦମ୍ ।
ତାମନୁସର ସରସୀରୁହଲୋଚନେ
ଯା ତବ ହରତି ବିଷାଦମ୍ । ଧ୍ରୁ

(ଗୀ. ଗୋ., ୮।୧୭।୨, ପୃ-୧୦୪)

ସେହି ରମଣୀର କଜ୍ଜଳ-ମଳିନ-ନୟନ-ଚୁମ୍ବନରେ ତାଙ୍କର ଅରୁଣାଧର ମଳିନ ରୂପ ଧାରଣ କରିଛି । ତା'ର ଚରଣ କମଳର ଅଳକ୍ତକ ରାଗରେ ରଞ୍ଜିତ ହେବାରୁ ତାଙ୍କର ବକ୍ଷସ୍ଥଳ କାମତରୁର ବହିଃ ପ୍ରକାଶିତ ନବପଲ୍ଲବରାଜି ପରି ଦର୍ଶନୀୟ ହୋଇଛି । ତା'ର ଦନ୍ତ-ଦଂଶନ ଚିହ୍ନ ତାଙ୍କ ଅଧରରେ ଥାଇ ତାଙ୍କର (ରାଧାଙ୍କର) ଚିତ୍ତ କ୍ଷୁବ୍ଧ

କରୁଛି । ବର୍ତ୍ତମାନ କ'ଣ ସେ କହି ପାରିବେ ଯେ ଜୀବସ୍ତୁଙ୍କର ଦେହ ଅଭିନ୍ନ ? ତାଙ୍କର ମ୍ଳାନ ଦେହର ବାହାର ଅପେକ୍ଷା ମନ ଅନ୍ତର ମଳିନ । ତା' ନ ହୋଇଥିଲେ କାମବାଣ ପୀଡ଼ିତା ତାଙ୍କ ପରି ଅନୁଗତାକୁ ଏପରି ବଞ୍ଚନା କରି ନ ଥାନ୍ତେ । ସେ ଅବଳା ବଧ କରିଥିବା ବନ ମଧ୍ୟରେ ଭ୍ରମଣ କରି ବୁଲୁଛନ୍ତି (୩୭) । ଗୀତଗୋବିନ୍ଦ ଗ୍ରନ୍ଥାରେ କବି (ଗୋପାଳକୃଷ୍ଣ) ଲେଖିଛନ୍ତି—

(କ) ଯା ଯା ଶଠ ଶ୍ୟାମ ମୋତେ ସମଜାନା ଅଉ ।
ଏ ଗୁଣ୍ଟୁ ବନିତ ତୋର କହିବାର ଥାଉ ।। ଘୋଷା ।।
ଯା ରସେ ହୋଇଛୁ ଭୋଳ ବେଗେ ତା ପାଶକୁ ଚଳ
ବୃଥାରେ କେଣେ ଶୁଖିଲ ଘୁଆଗ ଲଗାଉ । ୧ । (ଗୀ°., ପୃ-୪୭୪)

(ଖ) ଯାଅ ଯାଅ ମୋ ପାଶରୁ ଶ୍ୟାମ ଚେଣିକ ହେ । (ତତ୍ରୈବ, ପୃ-୪୭୫)

(ଗ) ଶ୍ୟାମ ଯା ଯା ଜୁହାର ତୋ ପୀରତିକି । (ତତ୍ରୈବ, ପୃ-୪୭୮)

ଏଭିନ୍ନ ଗୀତରେ ହେଉ ଗୋବର୍ଦ୍ଧନ ମଲ୍ଲର ପତ୍ନୀ ଚତୁରା ଚନ୍ଦ୍ରାବଳୀ ସମ୍ଭୋଗ ଏବଂ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ସମ୍ଭୋଗ ସଙ୍କେତଚିହ୍ନ ଓ ଗତ ରଜନୀରେ ଉନ୍ନିଦ୍ରିତା ହେତୁକ ମ୍ଳାନର ଗତାନୁଗତିକ ଉଲ୍ଲେଖ ରହିଛି, ଯେଉଁଥିରେ ଅଭିବ୍ୟକ୍ତି ହୋଇଛି ରାଧାଙ୍କର ସାପତ୍ନ୍ୟ-ସୁଲଭ ଈର୍ଷା । ଦୃଷ୍ଟାନ୍ତ ସ୍ୱରୂପ—

ଅଧରେ କଜ୍ଜଳ ଗାର ଦିଶୁଛି କି ମନୋହର
କରେ ଦେଖ କଙ୍କଣର ମଣିକି ହେ ।୩।
ଭୃମ୍ମି ବରନ ସମାନ ଜାଣି କେ ଦେଲା ବସନ
ଧନ୍ୟ ବୋଲି ସିନା ସେ ରମଣୀକି ହେ ।୪। (ଗୀ°., ପୃ-୪୭୫)

ଗୋଟିଏ ଗୀତରେ ଶ୍ଲେଷଗର୍ଭିତ ବକ୍ରୋକ୍ତିର ଚମତ୍କାର ପ୍ରୟୋଗରେ ରାଧାଙ୍କର ଅଭିମାନ ମିଶ୍ର ଆକର୍ଷଣ ଏବଂ ବ୍ୟଙ୍ଗ୍ୟ ଓ ପରିହାସଗର୍ଭିତ ଆକ୍ଷେପୋକ୍ତି ବିଶେଷ ଉପଭୋଗ୍ୟ ହୋଇଛି । ଅସହ୍ୟ ଅଭିକାନ୍ତ ମୁହୂର୍ତ୍ତରେ ଶ୍ୟାମଙ୍କୁ ଦେଖି ରାଧାଙ୍କ ମୁଖରୁ ସ୍ୱତଃ ସ୍ୱର ପଡ଼ିଛି—

କି ଭାଗ୍ୟ ଆଜ ମୋହର ପ୍ରଭାତୁଁ ମୁଖ ଭ୍ରମ୍ମର
ଦେଖି କେ ଲେଖି ନୋହିବ ଦୁଣିକି ହେ । ୧ । (ଗୀ°., ପୃ-୪୭୫)

ପ୍ରଭାତରେ ପ୍ରେମିକର ମୁଖଦର୍ଶନ ଅବଶ୍ୟ ପ୍ରେମିକା ପକ୍ଷରେ ଭାଗ୍ୟର କଥା, କିନ୍ତୁ ବିଶେଷ ପରିସ୍ଥିତିରେ, ବିଶେଷ ମୁହୂର୍ତ୍ତରେ ଏ ଉକ୍ତିର ଶ୍ଲେଷାର୍ଥ କ'ଣ, ତାହା ସହୃଦୟଙ୍କ ପକ୍ଷରେ ଦୁର୍ବୋଧ ରହେନା ।

ମୈଥିଳୀ କବି ବିଦ୍ୟାପତିଙ୍କ ହାତରେ ରଚିତ ଗୀତଟିରେ ପ୍ରେମପ୍ରବଞ୍ଚକ ଶ୍ୟାମଙ୍କ ପ୍ରତି ରାଧାଙ୍କର ଆକ୍ଷେପୋକ୍ତିରେ ତାଙ୍କର ପରିହାସ ଓ ପ୍ରାଣର ବ୍ୟଥା କପରି ଜଗୁଛନ୍ତି

(୩୭) ଗୀ. ଗୋ., ୮।୧୭।୩, ୫।୮, ପୃ-୧୦୫-୧୦୬

ହୋଇଛି, ଲକ୍ଷ୍ୟ କରାଯାଉ । କରଶୋଭିତ ଚୂଡ଼ୀର ହୀରକଭାରେ ମୁଖ ପ୍ରତିଫଳିତ ହେଲେ ଦର୍ପଣର ପ୍ରୟୋଜନ ନଥାଏ । ଠିକ୍ ସେହିପରି ଶ୍ୟାମଙ୍କର ଅଙ୍ଗ ପ୍ରତ୍ୟଙ୍ଗରେ ଯେତେବେଳେ ଅନ୍ୟ ନାରୀ- ସମ୍ଭୋଗର ଚିହ୍ନମାନ ଏ ପର୍ଯ୍ୟନ୍ତ ଉଜ୍ଜ୍ୱଳ ରହିଛି, ସେତେବେଳେ ଅନ୍ୟ ପ୍ରମାଣର କି ଆବଶ୍ୟକତା ରହିଛି । ସେହି ପ୍ରମାଣ ଗୁଡ଼ିକ ହେଲା : ଶ୍ୟାମଙ୍କର ଲଲାଟରେ ଲାଞ୍ଛିତ ସିନ୍ଦୂରବିନ୍ଦୁ, ଅଧରରେ କଜ୍ଜଳ ଦାଗ । ପ୍ରତିଦ୍ୱନ୍ଦ୍ୱିନୀର ସିନ୍ଦୂରରେଖା ମଦନର ରକ୍ତାକ୍ତ କୃପାଣ ତୁଲ୍ୟ ତାଙ୍କର ହୃଦୟକୁ ଛିନ୍ନ ବିଚ୍ଛିନ୍ନ କରୁଛି, ପୁଣି ତା' ନେତ୍ରର କଜ୍ଜଳ ଶ୍ୟାମଙ୍କର ଅଧରରେ ଲାଞ୍ଛିତ ହୋଇ ତାଙ୍କର ପ୍ରାଣକୁ ଦଗ୍ଧ କରୁଛି । ଶ୍ରୀକୃଷ୍ଣଙ୍କ ପ୍ରତି 'ଚନ୍ଦ୍ରାବଳୀ କୋଡ଼ କୁରଙ୍ଗ' ଓ 'ଶାଖୋଟ-କୁଞ୍ଜ-ଚୂଡ଼ାମଣି ବିଟ' ସମ୍ବୋଧନରେ ରାଧାଙ୍କର ସାପତ୍ନ୍ୟସୁଲଭ ଈର୍ଷା କପରି ଅଭିବ୍ୟକ୍ତିତ, ଲକ୍ଷ୍ୟ କରାଯାଇପାରେ । ବିଦ୍ୟାପତିଙ୍କର ଯେଉଁ ପଦ ଖଣ୍ଡରେ ଏ ଗୀତଟି ରଚିତ, ସେଇଟି ହେଉଛି—

ହାତକ ଦରପଣ ମାଥକ ଫୁଲ ।
ନୟନକ ଅଞ୍ଜନ, ମୁଖକ ତାମ୍ବୂଲ ॥
ହୃଦୟକ ମୃଗମଦ ଗୀମକ ହାର ।
ଦେହକ ସରବସ ଗେହକ ସାର ॥ (ବି. ଚ. ପ.)

ଏ କ୍ଷେତ୍ରରେ ଗୋବିନ୍ଦଦାସଙ୍କର ଖଣ୍ଡିତା ସମ୍ପର୍କୀୟ ପଦ ମଧ୍ୟ ସ୍ମରଣୀୟ । ସଖୀ ଶ୍ରୀକୃଷ୍ଣଙ୍କ ପ୍ରତି ବ୍ୟଙ୍ଗୋକ୍ତି ପ୍ରୟୋଗ କରି କହୁଛି—

ନୟନକ ଅଞ୍ଜନ ଅଧରେ ଭେଲ ରଞ୍ଜିତ
ନୟନହି ତାମ୍ବୂଲ ଦାଗ ।
ସିନ୍ଦୂର ବିନ୍ଦୁ ଚନ୍ଦନ ଝାଁପଲ
ଉରପର ଯାବକ ରାଗ ॥ (ପ. ସା., ପୃ-୧୧୩)

ପୁଣି ଚଣ୍ଡୀଦାସଙ୍କର ରାଧା ଦୁଃଖରେ ରସିକତା କରି କହିଛନ୍ତି—

ବନ୍ଧୁ ତୋମାର ବଲିହାରି ଯାଇ,
ଫିରିୟା ଦାଁଡ଼ାଓ ତୋମାର ଚାଁଦମୁଖ ଚାଇ ॥
ଆଇ ଆଇ ପଡ଼େଛେ ମୁଖେ କାଜରେର ଶୋଭା ।
ଭାଲେ ସେ ସିନ୍ଦୂର ବିନ୍ଦୁ ମୁନି ମନୋଲୋଭା ॥
ନୀଲ ପାଟେର ଶାଡ଼ୀ କୋଁଚାର ବଲନୀ ।
ରମଣୀ ରମଣ ହୈୟା ବଞ୍ଚିଲ ରଜନୀ ॥
ସୁରଙ୍ଗ ଯାବକ ରଙ୍ଗ ଭରେ ଭାଲ ସାଜେ ।
ଏଖନ କହି ମନେର କଥା ଆଇଲ କୋନ କାଜେ ॥ (ପ.ସା.,ପୃ-୧୯୪)

ସଖୀ ସମକ୍ଷରେ ଖଣ୍ଡିତା ରାଧାଙ୍କର ଉକ୍ତି ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରତ୍ୟକ୍ଷ ଉକ୍ତି ପରି ଏତେ ବ୍ୟଙ୍ଗ୍ୟ ଓ ପରିହାସ ଶାଣିତ ନୁହେଁ । ଏ ଗୀତ ଗୁଡ଼ିକରେ ଶ୍ୟାମ ଓ ତାଙ୍କ ପ୍ରେମ ପ୍ରତି

ଆକ୍ଷେପ ଓ ପ୍ରତିଦ୍ୱନ୍ଦ୍ୱିନୀ ଚନ୍ଦ୍ରାବଳୀ ପ୍ରତି ଈର୍ଷାର ସୂଚନା ରହିଥିଲେ ମଧ୍ୟ ଗୋଟିଏ ଗୀତରେ ପ୍ରଣୟିନୀ ହୃଦୟର ଅଭିମାନ ମିଶା ଖେଦ ଓ ପ୍ରବଞ୍ଚନା ଜନିତ ବ୍ୟଥାର ସ୍ୱର ବଡ଼ କରୁଣ ଓ ମର୍ମସ୍ପର୍ଶୀ । ଜୀବନର ଚରମ ବିପଦପୂର୍ଣ୍ଣ ମୁହୂର୍ତ୍ତରେ ସଖୀମାନେ ରାଧାଙ୍କର ଏକମାତ୍ର ସାନ୍ତ୍ୱନାର ଉତ୍ସ । ସଖୀମାନଙ୍କର ସମବେଦନା, ସହାନୁଭୂତି ଓ ଆକର୍ଷଣ ଉନ୍ମୁଖତା ରହିଥିବାରୁ ଏ ଗୀତଟିର ଅନ୍ତର୍ନିହିତ ସ୍ୱର ଏହିପରି ଆବେଗଭରା ଓ କରୁଣ । ଏ ଗୀତଟିରେ (କହ ତା ପ୍ରିୟଙ୍କୁ ସଖି ଯା ଯା ରେ, ଗ୍ର., ପୃ-୪୮୦) ରାଧାଙ୍କର ପ୍ରଣୟର ବିଡ଼ମ୍ବନା ଓ ନିଃସହାୟଭାବ ପରିସ୍ଫୁଟ ହୋଇଛି । ରାଧାଙ୍କର ଅଭିମାନ ମିଶ୍ର ଆକ୍ଷେପ, କାରୁଣ୍ୟ ଓ ବେଦନାଭରା ଅନ୍ତରର ଅଭିବ୍ୟକ୍ତି ପାଇଁ କବିଙ୍କର ସାର୍ଥକ ରୂପକ ଓ ଉପମା କଳ୍ପନା, ପ୍ରକାଶ ଭଙ୍ଗୀର ଏଇ କାନ୍ତ କମନୀୟତା ଗୀତଟିକୁ ଏକ ଉଚ୍ଚାଙ୍ଗ ସୃଷ୍ଟିର ମର୍ଯ୍ୟାଦା ଦାନ କରିଛି । ଶ୍ୟାମଙ୍କ ନିକଟରେ ହୃଦୟର ବେଦନା ବାଢ଼ିବା ପାଇଁ ରାଧା ସଖୀକୁ କହୁଛନ୍ତି—ତାଙ୍କର ଯେଉଁ ମାନସ ମନ୍ଦିରରେ ଶ୍ୟାମଙ୍କର ପ୍ରଣୟରତ୍ନ ବିରାଜିତ, ସେ ମନ୍ଦିରକୁ ଏବେ ମଦନ ଦଗ୍ଧ କରୁଛି, ତାଙ୍କର ଯେଉଁ ନୟନ-ନୃତ୍ୟମଞ୍ଚରେ ତାଙ୍କର (ଶ୍ୟାମଙ୍କର) ମୂର୍ତ୍ତି ନୃତ୍ୟ କରୁଥାଏ, ଆଜି ଦୁଃଖ ସିନ୍ଧୁର ଘୋର ନୀର ପ୍ଲାବନ ତାକୁ ଭସାଇ ଦେଇଛି, ଯେଉଁ ପଦ୍ମମୁଖରେ ତାଙ୍କର ନେତ୍ର-ଭ୍ରମର ରମଣ କରେ, କାମର ପଞ୍ଚବାଣ ରୂପକ ତୁହିନରେ ତାହା ଶ୍ରୀହୀନ ହୋଇ ପଡ଼ିଛି; ତାଙ୍କର ଯେଉଁ ଶୋଭା କାନନରେ ଶ୍ୟାମଙ୍କର ମନ-କୁରଙ୍ଗ କ୍ରୀଡ଼ା କରେ, ଆଜି ଦାରୁଣ ବିରହ ତାକୁ ଛେଦନ କରିଛି ।

ଅନ୍ୟ ଏକ ଗୀତରେ (ଫେରିର ସହି ! ତାଙ୍କୁ ଆନକୁ ଦେଇ ମା, ଗ୍ରଂ., ପୃ-୪୮୨) କେବଳ ଅଭିମାନ ଛଳରେ ଶ୍ରୀକୃଷ୍ଣଙ୍କ ପ୍ରତି ଅଭିଯୋଗ ଓ ପ୍ରତିଦ୍ୱନ୍ଦ୍ୱିନୀ ପ୍ରତି ଅସୂୟା ସହ ନିଃସହାୟ ଭାବ ହେତୁକ ମର୍ମବେଦନା ସଂଯତ ଭାବରେ ପ୍ରକାଶ ପାଇଛି । ସଖୀମୁଖରେ ସେ ଶ୍ୟାମଙ୍କୁ ପ୍ରଶ୍ନ କରିଛନ୍ତି— ଯଦି ଏ ପ୍ରକାର ଅଭିସନ୍ଧି ଚିତ୍ତରେ ଥିଲା, ତା' ହେଲେ ମୁରଲୀକୁ ସ୍ପର୍ଶ କରାଇ ଏପରି ଶପଥ କରୁଥିଲେ କାହିଁକି ? ଆସିବା ସମ୍ପର୍କରେ ନିଶ୍ଚିତ ଭରସା ଓ ସଙ୍କେତ ଦେଇ ଅନ୍ୟ ପୁରରେ ନିଶି ଯାପନ କରି ତାଙ୍କର ବେଶଭୂଷଣର ଅମର୍ଯ୍ୟାଦା କରି ତାଙ୍କୁ ଲୋକହସା କରାଇବା କ'ଣ ଉଚିତ ହେଲା ?

ଅନ୍ୟ ଏକ ଗୀତରେ (ନାହିଁ କରିଦେ ଟେ, କାହିଁ ପାଇଁ ଉପରୋଧ, ଗ୍ରଂ., ପୃ-୪୮୩) ସଖୀ ଶ୍ୟାମଙ୍କର ଦ୍ୱୈତ ଆଚରଣରେ ଉତ୍କ୍ଷିପ୍ତା ହୋଇ ଉପରୋଧ ତ୍ୟାଗ କରିବା ପାଇଁ ସୂଚନା ଦେଇଛି । ଯା'ର କଥାରେ ତିଳେମାତ୍ର ସତ୍ୟତା ନାହିଁ, କେତେବେଳେ କେଉଁଠାରେ ତା'ର ଭ୍ରମଣି ଚାଲିଛି, ଯା ଯୋଗୁଁ କାଳଯାକ ଗଞ୍ଜଣା ସହି ସହି ଚକ୍ଷୁରୁ ଲୋତକର ବନ୍ୟା ଛୁଟିଛି, ସେଠାରେ ଆଉ ଅନୁରାଗର ମୂଲ୍ୟ କ'ଣ ? ରୂପକ ଛଳରେ ଶ୍ୟାମଙ୍କର ଭ୍ରମରଧର୍ମ ପ୍ରକାଶ କରି ସଖୀ କହେ— ଭ୍ରମର ପଦ୍ମକୋଳରେ ଥିଲେ କ'ଣ ନିଶିମଲ୍ଲୀଠାକୁ ଯାଏନା ? ହସ୍ତୀ ଶତବାର ସ୍ନାନ କଲେ କ'ଣ ଧୂଳି ବୋଳି ହୁଏ ନାହିଁ ? ସଖୀ (ରାଧା) ବିରହାଗ୍ନିରେ ପଛେ ଦଗ୍ଧ ହେଉ ସେ ମଦନ-ମହୋତ୍ସବର ମୂଲ୍ୟ କ'ଣ ?

ସଖୀର ଏ ପ୍ରବୋଧନା ଗୀତଟି ପାଠକଲେ ବିଦଗ୍ଧ ମାଧବର ଲଳିତା ଉକ୍ତି ସ୍ମରଣକୁ ଆସେ । ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ କୁଞ୍ଜରେ ରାତି ଯାପନ କରି ପ୍ରାତଃକାଳରେ ରାଧାଙ୍କର ସୂର୍ଯ୍ୟପୂଜା ସ୍ଥଳକୁ ଆସି କପଟ ଚାଟୁବାକ୍ୟ ପ୍ରକାଶରେ ରାଧାଙ୍କୁ ପ୍ରସନ୍ନ କରନ୍ତେ ଅନବଧାନତା ବଶତଃ ସଖା ମଧୁମଙ୍ଗଳ ମୁଖରୁ ସତ୍ୟକଥା ପ୍ରକାଶ ପାଏ । ସେଥିରେ ରାଧାଙ୍କର ଚିତ୍ତ ସନ୍ଦେହ, ବିସ୍ମୟ ଓ ବିଷାଦରେ ଭାରକ୍ରାନ୍ତ ହୋଇପଡ଼େ । ଲଳିତା ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଅପର ନାରୀ ସହ ବିଳାସ ସମ୍ଭୋଗର ଚିହ୍ନ ଦେଖି କ୍ରୋଧରେ ଭର୍ତ୍ସନା କରି ତାଙ୍କଠାରୁ ରାଧାଙ୍କ ଚିତ୍ତ ପ୍ରତ୍ୟାବୃତ୍ତ କରିବା ପାଇଁ କହେ—

ବାଲେ ବଲ୍ଲବଯୌବତସ୍ତନତଟୀଦତ୍ତାର୍ଦ୍ଧନେତ୍ରାଦତଃ ।
କାମଂ ଶ୍ୟାମଶିଲାବଲାସିହୃଦୟାଚ୍ଚେତଃ ପରାବର୍ତ୍ତୟ ॥
ବିଦ୍ମଃ କିଂ ନ ହି ଯଦ୍ ବିକୃଷ୍ୟ କୁଳଜାଃ କେଳିଭିରେଷସ୍ଫିଷୋ ।
ଧୂର୍ତ୍ତଃ ସଙ୍କୁଲୟନ୍ କଳଙ୍କତତିଭିର୍ନିଃଶଙ୍କମୁନ୍ମୁଞ୍ଚତି ॥

(ବି. ମା., ୪।୫୦., ପୃ-୨୨୮)

ଅର୍ଥାତ୍ ହେ ବାଲେ (ଅଜ୍ଞ ରାଧେ !), ଯେ ଗୋପଯୁବତୀମାନଙ୍କର ସ୍ତନତଟ ଅର୍ଦ୍ଧଉନ୍ମୀଳିତ ନେତ୍ରରେ ଦେଖିଥାଏ, ସେହି ଶ୍ୟାମଶିଳା ପରି କଠିନ ହୃଦୟ ବିଳାସୀ ନାଗରଠାରୁ ଚିତ୍ତ ଫେରାଇ ଆଣ । ଆମେ କ'ଣ ଜାଣୁନା ଯେ ଏହି ଧୂର୍ତ୍ତ କେଳି ବିଳାସ ଦ୍ୱାରା କୁଳବତୀମାନଙ୍କୁ ବିଶେଷ ରୂପେ ଆକର୍ଷଣ କରି ଆଣି ସେମାନଙ୍କୁ କଳଙ୍କସମୁଦ୍ରରେ ନିମଜ୍ଜିତ କରି ପରେ ନିଃଶଙ୍କ ଚିତ୍ତରେ ପରିତ୍ୟାଗ କରିଥାଏ ।

ଏ ପ୍ରସଙ୍ଗରେ ଖଣ୍ଡିତା ରାଧାଙ୍କର ଈର୍ଷାମାନ ବ୍ୟଞ୍ଜକ କବିସୂର୍ଯ୍ୟଙ୍କର କେତୋଟି ଚିତ୍ରପଦ ସ୍ମରଣୀୟ, ଯଥା—ଶ୍ୟାମସୁନ୍ଦର ତୁ ଶୁଞ୍ଜିଲି ସୁହାଗ ଲଗାନା, ଗଳିତ ଅନୁରାଗ ଜଣା ଯା ଯା ମୋହନ ଯା (କ. ସୂ. ଗ୍ରଂ., ପୃ ୨୯୪) ।

ପ୍ରବଞ୍ଚକ ଶ୍ୟାମଙ୍କ ଦ୍ୱୈତ ବ୍ୟକ୍ତିତ୍ୱ ଏବଂ ଆତ୍ମପକ୍ଷ ସମର୍ଥନ ଓ ଦୋଷ କ୍ଷାଳନ ନିମିତ୍ତ ବାକ୍ଚାତୁରୀ ଲକ୍ଷ୍ୟ କରି ଅବମାନିତା, ଉପେକ୍ଷିତା ଶ୍ରୀମତୀ ନାରୀର ଚରମ ବିଭୂତି ଅଭିମାନର (ମାନ) ଆଶ୍ରୟ ନିଅନ୍ତି ।

**ମାନ :**

ମାନ ହେଉଛି ବିପ୍ରଲମ୍ଭର ଦ୍ୱିତୀୟ ସ୍ତର । ପ୍ରିୟତମର ଅଙ୍ଗରେ ଅନ୍ୟ ପ୍ରଣୟିନୀର ସମ୍ଭୋଗ ଚିହ୍ନ ଦର୍ଶନ କରି ରାଧାଙ୍କର ମାନର ସଞ୍ଚାର ହୋଇଥାଏ । ମାନିନୀ ପ୍ରଣୟିନୀର କ୍ରୋଧ, ଆକ୍ଷେପ ଓ ମାନ ଭଞ୍ଜନହିଁ ବୈଷ୍ଣବ ସାହିତ୍ୟରେ ମାନ ପର୍ଯ୍ୟାୟର ମୁଖ୍ୟରସ ବସ୍ତୁ । ମାନର ଭିନ୍ନ ଭିନ୍ନ କାରଣ ରହିଥିଲେ ମଧ୍ୟ ଅନିଦାନ (ଅକାରଣ) ମାନର ପ୍ରସଙ୍ଗ ଗୀତଗୋବିନ୍ଦରେ ରହିଛି ।

ବୈଷ୍ଣବ ସାହିତ୍ୟରେ ମାନ ପ୍ରକରଣର ମହତ୍ତ୍ୱ—ନାୟିକା ବା ପ୍ରଣୟିନୀର ଅଭିମାନକୁ ଉଚ୍ଚତର ମର୍ଯ୍ୟାଦା ଦିଆଯାଇ ଚମତ୍କାର କବିତା ସୃଷ୍ଟିର ପରମ୍ପରା କେବଳ

ଐରଣୀୟ ସାହିତ୍ୟରେ ପରିଲକ୍ଷିତ ହୁଏ । ଏହାକୁ ଭାରତୀୟ ପ୍ରେମ କବିତାର ପ୍ରାଣ (ଜୀବାତୁ) କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମର ସଂସ୍କୃତ ଓ ଦେଶୀୟ କାବ୍ୟ ପରମ୍ପରାରେ ମାନ ପ୍ରଣୟ ଲୀଳାର ଏକ ନିଜସ୍ୱ ସୌଷ୍ଠବ ଭାବରେ ଗୃହୀତ ହୋଇଥିଲେ ମଧ୍ୟ ବୈଷ୍ଣବ କାବ୍ୟ ଓ ପଦାବଳୀ ସାହିତ୍ୟରେ ଏହାର ଚୂଡ଼ାନ୍ତ ସୌନ୍ଦର୍ଯ୍ୟ ପ୍ରକାଶ ପାଇଛି । ପ୍ରେମ ଯେଉଁଠି ଯେତେ ନିବିଡ଼, ମାନର ପ୍ରାଧାନ୍ୟ ସେତେ ବେଶୀ । ରାଧା ଓ କୃଷ୍ଣଙ୍କର ପ୍ରଣୟ ଚୂଡ଼ାନ୍ତ ସୀମା ସ୍ପର୍ଶ କରିଥିବାରୁ ସେଥିରେ ମାନର ଏତେ ପ୍ରାଧାନ୍ୟ । ଲୌକିକ ପ୍ରେମ କବିତା ଦୃଷ୍ଟିରୁ ବିଚାର କଲେ ମଧ୍ୟ ମାନ ବୈଷ୍ଣବ ସାହିତ୍ୟକୁ ଅନନ୍ୟ ସ୍ୱାତନ୍ତ୍ର୍ୟ ଓ ମର୍ଯ୍ୟାଦା ଦାନ କରିଛି (୩୮) ।

କିଶୋରୀ ନିଜର ହୃଦୟ ବେଦୀରେ ଶ୍ୟାମଙ୍କୁ ପରମ ପ୍ରେମର ଅଧିଷ୍ଠାତ୍ରୀ ଦେବତା ରୂପରେ ପ୍ରତିଷ୍ଠିତ କରିଥିବାରୁ ତାଙ୍କର ଅଧିକାର ମାନରେ ରହିଛି । ଗଭୀରତମ ଅନୁରାଗ ହେତୁ ରାଧା ମାନିନୀ ହୋଇଛନ୍ତି ଏବଂ ପ୍ରେମିକ ପ୍ରିୟତମାର ଚରଣରେ ଦାସତ୍ୱ ବରଣ କରିବାକୁ ତିଳେମାତ୍ର କୁଣ୍ଠିତ ହୋଇନାହାନ୍ତି । ଅନୁରାଗର ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚି ଥିବାରୁ ଶ୍ରୀମତୀଙ୍କ ପକ୍ଷେ ତାଙ୍କର ଅଭିମାନିନୀ ମୂର୍ତ୍ତିଟି ବୈଷ୍ଣବ କାବ୍ୟ ଓ ପଦାବଳୀ ସାହିତ୍ୟରେ ମଧୁମୟ ହୋଇଉଠିଛି । ମାନରେ ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଆପାତତଃ ସାମୟିକ ବିରହର ସମ୍ଭାବନା ଥିଲେ ମଧ୍ୟ ସେହି ବିରହରେ ସମସ୍ତ ବ୍ୟବଧାନର ବିଲୋପ ଘଟିଥାଏ (୩୯) । ସେତେବେଳେ ଅନ୍ତର ଓ ବାହାର ଶ୍ରୀମତୀଙ୍କ ପକ୍ଷରେ ହୁଏ ଶ୍ୟାମମୟ (୪୦), ଶ୍ୟାମଙ୍କ ପକ୍ଷରେ ହୁଏ ରାଧାମୟ (୪୧) ।

ଅଭିମାନ ଦ୍ୱାରା ପ୍ରଣୟିନୀ ପ୍ରେମିକକୁ ଦଣ୍ଡିତ କଲେ ମଧ୍ୟ ବେଶୀ ଦଣ୍ଡିତ ହୁଏ ନିଜେ । ନାୟକକୁ ସାମୟିକ ପୀଡ଼ା ଦେଇ ନିଜେ ପୀଡ଼ିତ ହେବା, କନ୍ଦାଇ ନିଜେ କାନ୍ଦିବା ହେଉଛି ଗଭୀର ଅନୁରାଗର ଧର୍ମ ।

ପ୍ରଣୟିନୀର ଅଭିମାନ ଦ୍ୱାରା ସାମୟିକ ବିରହର ସମ୍ଭାବନା ରହୁଥିବାରୁ ଏହାକୁ (ମାନକୁ) ବିପ୍ରଲମ୍ଭର ଅନ୍ତର୍ଭୁକ୍ତ କରାଯାଇଛି ଏବଂ ଆଠ ଭାଗରେ ବିଭକ୍ତ କରାଯାଇଛି । ପ୍ରତ୍ୟେକ ଭାଗରେ ଅନ୍ୟ ପ୍ରଣୟିନୀ ସମ୍ଭୋଗ ପ୍ରସଙ୍ଗ ରହିଛି । ସେହି ଆଠଟି ଭାଗ ହେଉଛି—ସଖୀମୁଖରୁ ଶ୍ରବଣ, ଅନ୍ୟ କୁଞ୍ଜରେ ମୁରଲୀ ଧ୍ୱନି ଶ୍ରବଣ, ଶୁକ ମୁଖରୁ ଶ୍ରବଣ, ପ୍ରିୟତମଙ୍କ ଅଙ୍ଗରେ ସମ୍ଭୋଗଚିହ୍ନ ଦର୍ଶନ, ପ୍ରତିଦ୍ୱନ୍ଦ୍ୱିନୀ ଦେହରେ ସମ୍ଭୋଗ ଚିହ୍ନ ଦର୍ଶନ, ଗୋତ୍ର ସ୍ଖଳନ, ସ୍ୱପ୍ନରେ ଦର୍ଶନ, ଅନ୍ୟ ପ୍ରଣୟିନୀ ସହ ପ୍ରିୟତମଙ୍କୁ ଦର୍ଶନ (୪୨) ।

(୩୮) ପଦାବଳୀ ସାହିତ୍ୟ
(୩୯) ତଦୈବ
(୪୦) ଗୀ. ଗୋ., ୬।୮.୨।୫, ପୃ-୮୦ ଏବଂ ୧୦।୧୨।୮-୯, ପୃ-୧୧୯
(୪୧) ବି. ମା., ୫ମ ଅଙ୍କ, ପୃ-୨୬୫
(୪୨) ପ. ସା., ପୃ-୧୧୯

ବୈଷ୍ଣବ ସାହିତ୍ୟରେ ଏହା (ମାନ) ଏକ ଉଚ୍ଚାଙ୍ଗ ରସବସ୍ତୁ ହୋଇଥିବାରୁ ଏ ସମ୍ପର୍କରେ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ୫୨ଟି ଗୀତ ପରିଦୃଷ୍ଟ ହୁଏ । ରାଧାଙ୍କର ମାନ ସହିତ ରାଧା, କୃଷ୍ଣ ଓ ସଖୀ ତଥା ଦୂତୀମାନେ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବାରୁ ମାନ ସମ୍ପର୍କୀୟ ଗୀତ ଗୁଡ଼ିକରେ ବିଷୟ ବୈଚିତ୍ର୍ୟ ତଥା ବର୍ଣ୍ଣନା ବୈଚିତ୍ର୍ୟ ଲକ୍ଷିତ ହେବା ସ୍ୱାଭାବିକ । ରାଧାଙ୍କର ମାନ, ଜଣୋଗି ପକ୍ଷୀୟା ଦୂତୀମାନଙ୍କର କୃଷ୍ଣଙ୍କ ପ୍ରତି ଆକ୍ଷେପ, ଶ୍ରୀକୃଷ୍ଣ ପକ୍ଷୀୟା ଦୂତୀଙ୍କର ରାଧାଙ୍କୁ ସାନ୍ତ୍ୱନା (ମାନ ତ୍ୟାଗ ସମ୍ପର୍କରେ) ଓ ବିଶାଖାଙ୍କ ଉକ୍ତି, ଶ୍ରୀକୃଷ୍ଣଙ୍କର ଗୃହଁକ୍ତି, ଉଭୟଙ୍କର ମିଳନ ସମ୍ପର୍କରେ ଆଗ୍ରହୀ ଦୂତୀମାନଙ୍କର ମାନ ପରିହାର ନିମିତ୍ତ ରାଧାଙ୍କୁ ନିବେଦନ, ଦୂତୀ ସମ୍ବାଦ (ମାନମୟୀଙ୍କ ନିକଟରେ କୃଷ୍ଣଙ୍କର ବିରହାବସ୍ଥା ସମ୍ପର୍କରେ), ଦୂତୀ ସମ୍ବାଦ ଓ ପ୍ରବୋଧନାରେ ମିଳନ, କ୍ଷମାଭିସାରାର୍ଥ ଦୂତୀ ସନ୍ଦେଶ, ମାନାନ୍ତେ ଯୁଗଳ ମିଳନକୁ ଭିତ୍ତି କରି ଏହି ମାନ ସମ୍ପର୍କୀୟ ଗୀତ ଗୁଡ଼ିକ ରଚିତ ।

**(କ) ରାଧାଙ୍କର ଆକ୍ଷେପୋକ୍ତି**—କେତୋଟି ଗୀତରେ ମାନିନୀ ରାଧାଙ୍କର କୃଷ୍ଣଙ୍କ ପ୍ରତି ଆକ୍ଷେପୋକ୍ତି ପରିସ୍ଫୁଟ ହୋଇଛି । ଆକ୍ଷେପର ସ୍ୱର ସେପରି ଉଦାତ୍ତ ବା ତୀବ୍ର ନୁହେଁ । ପ୍ରଣୟିନୀର ମନର ମାଧୁର୍ଯ୍ୟ ଓ ସ୍ନିଗ୍ଧତାର ସ୍ପର୍ଶରେ ତାଙ୍କର ଅଭିମାନ ମାଧୁର୍ଯ୍ୟ-ମୂର୍ଚ୍ଛିତ ହୋଇଛି । ଗୋଟିଏ ଗୀତରେ (ଶ୍ୟାମ ଅପରାଧିନୀ ମୁଁ, ସଙ୍ଗିନ, ଗ୍ରଂ. ପୃ-୪୯୬) ଅଭିମାନିନୀ ଶ୍ରୀମତୀ ଶ୍ରୀକୃଷ୍ଣପକ୍ଷୀୟା ଦୂତୀ ବୃନ୍ଦାଙ୍କ ଜରିଆରେ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଅଭିମାନର ସଙ୍କେତ ଦେଉଛନ୍ତି । ଶ୍ରୀମତୀ କହୁଛନ୍ତି—ଚନ୍ଦ୍ରାବଳୀ ସିନା ଶ୍ୟାମଙ୍କର ହୃଦୟ ବିଳାସିନୀ, ସେ ତ ତାଙ୍କଠାରେ ଅପରାଧିନୀ । ତାଙ୍କଠାରୁ ବଳି ଅଧିକ ଗୁଣରେ ଗୁଆଳି ଅଛନ୍ତି । ନଗଣ୍ୟା ରାଧାର ସ୍ଥାନ ସେମାନଙ୍କ ନିକଟରେ କେଉଁଠି ? ଅଭିମାନରେ କୃଷ୍ଣ-ପ୍ରେରିତ ଗୁଞ୍ଜମାଳା ପ୍ରତ୍ୟର୍ପଣ କରିବାକୁ କହନ୍ତି । ଅନ୍ୟ ଗୀତ ପରି ଏଥିରେ ପ୍ରତିଦ୍ୱନ୍ଦ୍ୱିନୀ ପ୍ରତି ସାପତ୍ନ୍ୟସୁଲଭ ଈର୍ଷା ପ୍ରକଟିତ ହେବା ସ୍ୱାଭାବିକ ।

'ସୁରତକଥାମୃତ' ଶୀର୍ଷକ ଗୀତରେ (ଯାହାର ଯେ ପ୍ରାଣଧନ ଗୋ, ସଜନ, ଗ୍ରଂ. ପୃ-୪୮୮) ରାଧାଙ୍କର ଉକ୍ତିରେ ପ୍ରେମକ୍ଷେତ୍ରରେ ଜୀବନର ଚିରନ୍ତନ ସତ୍ୟ ପରିସ୍ଫୁଟ ହୋଇଛି । ଯେ ଯା'ଠାରେ ପ୍ରାଣ ବିକଛି, ତା'ଠାରେ ତା'ର ଅଭିମାନ ଶୋଭାପାଏ । ମାତ୍ର ଅଭିମାନ ଦ୍ୱାରା (ରୁଷାରୁଷି) ପ୍ରେମର ଜ୍ୟୋତି ପୁନାପୁନଃ ପରି ବଢ଼ିଉଠେ । ବଚନର ଯଦି ପ୍ରତ୍ୟୁତ୍ତର ମିଳେନା, ତା'ହେଲେ ଜଗତ୍ ଅନ୍ଧକାରମୟ ଜଣାପଡ଼େ । ଦୈବାତ୍ ବିଚ୍ଛେଦ ଘଟିଲେ ଗୋଟିଏ ଦିନ କୋଟିଏ ଦିନ ପରି ପ୍ରତୀତ ହୁଏ । ଈର୍ଷାବଶତଃ କହନ୍ତି, ସେ ତ ଚନ୍ଦ୍ରାବଳୀ ପରି ଯୋଗ୍ୟା ନୁହନ୍ତି । ପରିମିତ ପଦପଂକ୍ତିରେ ମାନିନୀ ରାଧାଙ୍କର ହୃଦୟର ଅଭିବ୍ୟକ୍ତି ବାସ୍ତବ ଓ ପ୍ରାଣସ୍ପର୍ଶୀ ହୋଇଛି ।

**(ଖ) ମାନମୟୀ ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଉକ୍ତି**—ପ୍ରାଥମିକ ପର୍ଯ୍ୟାୟରେ ରାଧାଙ୍କର ମାନଭଙ୍ଗ ନିମିତ୍ତ କବି ସ୍ୱଳ୍ପେଟି ଗୀତରେ ଶ୍ରୀକୃଷ୍ଣଙ୍କର ସ୍ତୁତି ଓ ଦୈନ୍ୟର ସଂକେତ ଦେଇଛନ୍ତି । ଏ ଗୀତଗୁଡ଼ିକରେ ଗୀତଗୋବିନ୍ଦ ଓ କବିସୂର୍ଯ୍ୟଙ୍କ ରଚନାର ପରମ୍ପରା ଅନୁସରଣ କରାଯାଇଛି । ଗୋଟିଏ ଗୀତରେ (ସଙ୍ଗିନିରେ ରାସ ରଙ୍ଗିନିରେ, ଗ୍ରଂ,

ପୃ-୪୭୧) ଶ୍ରୀକୃଷ୍ଣ ଶ୍ରୀମତୀଙ୍କୁ ତାଙ୍କର ଦୋଷ କ୍ଷମା କରି ଅଭିମାନ ତ୍ୟାଗ କରିବା ନିମିତ୍ତ ନିଜର ଦୈନ୍ୟ ପ୍ରକାଶ କରିଛନ୍ତି । ସେ କହୁଛନ୍ତି ଯେ ଅଭିମାନ ବଶତଃ ତାଙ୍କ ପ୍ରତି ଔଦାସିନ୍ୟ ପ୍ରକାଶ ନ କରି ତାଙ୍କର ଅଙ୍ଗ-ପଲଙ୍କ ମଣ୍ଡନ କରି ସ୍ମରପୀଡ଼ାରୁ ତାଙ୍କୁ ରକ୍ଷା କରିବା ଉପସ୍ଥିତ ମୁହୂର୍ତ୍ତରେ କର୍ତ୍ତବ୍ୟ । ଅଧରରେ ସ୍ମିତ ପ୍ରକାଶିତ ହେଲେ ପିଣ୍ଡରେ ତାଙ୍କର ପ୍ରାଣର ସଞ୍ଚାର ହେବ । କରୁଣାରେ କୃପା ପ୍ରକାଶ କଲେ ତାଙ୍କର ନାମ ଉଚ୍ଚାରଣ କରି ତାଙ୍କର କ୍ରୀଡ଼ାସରୋବରରେ ଝାସଦେବା ନିଶ୍ଚିତ । ଶ୍ୟାମ ଅବନତ ହୋଇ କିଙ୍କର ତୁଲ୍ୟ ତାଙ୍କର ପଦସ୍ପର୍ଶ କରନ୍ତି । ଅନ୍ୟ ଗୀତଗୁଡ଼ିକରେ ଭାବଗତ ବୈଚିତ୍ର୍ୟ କିଛି ନାହିଁ, ସେହି ଦୈନ୍ୟବ୍ୟଞ୍ଜକ ସ୍ତୁତିର ଚର୍ବିତ ଚର୍ବଣମାତ୍ର ।

ଗୀତଗୁଡ଼ିକରେ ଭାବର କ୍ରମ-ପାରମ୍ପର୍ଯ୍ୟ ଦୃଷ୍ଟ ହୁଏନା । ହାଲଙ୍କର ଗାଥାସପ୍ତଶତୀର ଶ୍ଳୋକ ପରି ପ୍ରତ୍ୟେକରେ ଗୋଟିଏ ଗୋଟିଏ ଭାବାବେଗ ରୂପ ପାଇଛି । ଶ୍ରୀକୃଷ୍ଣଙ୍କ ଉକ୍ତିରେ ମାନଭଙ୍ଗ ଓ ମିଳନ ନିମିତ୍ତ ଐନ୍ଦ୍ରିକ ଆବେଗ ବ୍ୟତୀତ ଅନ୍ୟ ଭାବଗତ ସୌଷ୍ଠବ ଲକ୍ଷିତ ହୁଏନା । ପୁଣି ଗୋଟିଏ ଗୋଟିଏ ଗୀତରେ ସ୍ତୁତି ସହ ମାନଭଙ୍ଗ ଓ ମିଳନର ସୂଚନା ଦିଆ ଯାଇଛି (୪୩) । ଭାବାନୁରୂପ ଛନ୍ଦ, ଅନୁପ୍ରାସିକ ମାଧୁର୍ଯ୍ୟ ଓ ଶବ୍ଦ-ଶିଳ୍ପ-ସୌନ୍ଦର୍ଯ୍ୟ ଜନିତ ସାଙ୍ଗୀତିକ ମୋହରେ ସହୃଦୟ ପାଠକ ଗୀତଗୁଡ଼ିକର ଭାବଦୁର୍ବଳତା ବିସ୍ମୃତ ହୁଏ । ଗୋଟିଏ ଗୀତରୁ ଦୃଷ୍ଟାନ୍ତ ଦିଆଯାଉଛି—

ସଙ୍ଗିନିରେ ରସ ରଙ୍ଗିନିରେ
ଦୋଷ କ୍ଷମା କର, ଜୀବବନ୍ଧୁ ଭୂଷଣାରେ । ଘୋଷା ।
ଯା କର ତୋ ପଦ ପଙ୍କଜ କିଙ୍କର
ରଙ୍କ ରତନ ମୃଗାଙ୍କ ଲପନାରେ ।
ଶଙ୍କର ଶତ୍ରୁ କିଂଶଙ୍କରେ ଦହୁଛି
ଅଙ୍ଗ ପର୍ଯ୍ୟଙ୍କ ମୋ ମଣ୍ଡ କାନାରେ ।୧।
ମାନସରୁ ମାନ ସରୁ ସ୍ମରଣରୁ
ରଙ୍ଗ ନୂଆ ସରୁ ନଳ ବଦନାରେ ।
ଜୀବନାମସରୁ ପୀୟୂଷ ହାସରୁ
ଲାବ ପ୍ରସରୁ ଖଞ୍ଜନ-ନୟନାରେ ।୭। (ଗୋ. କୃ. ଗ୍ରଂ. ପୃ-୪୭୧)

ଗୀତଗୋବିନ୍ଦରେ ମାନିନୀ ରାଧାଙ୍କ ପ୍ରତି ମାଧବଙ୍କର ଐନ୍ଦ୍ରିକ ଭାବପୂର୍ଣ୍ଣ ସ୍ତୁତି ଓ ଦୈନ୍ୟ ଏହି ଗୀତ କେତୋଟିର ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ସର୍ବତ୍ର ସେହି ନାୟକର କାମପୀଡ଼ା ଓ ତାର ପ୍ରଶମନ ନିମିତ୍ତ ନାୟିକାର ସନ୍ତୁଷ୍ଟି ପ୍ରତ୍ୟକ୍ଷ ନିବେଦନ ପରିସ୍ଫୁଟ । ଜୟଦେବଙ୍କର ଶ୍ରୀକୃଷ୍ଣ ମାନିନୀ ରାଧାଙ୍କୁ କହୁଛନ୍ତି—

ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ
ହରତି ଦରତିମିରମତିଘୋରମ୍ ।

(୪୩) ଗ୍ରଂ., ପୃ-୪୭୫.

ସ୍ଫୁରଦଧରସୀଧବେ ତବ ବଦନ-ଚନ୍ଦ୍ରମା
ରୋଚୟତୁ ଲୋଚନ-ଚକୋରମ୍ ।୨।
ପ୍ରିୟେ ଚାରୁଶୀଳେ, ମୁଞ୍ଚ ମୟି ମାନମନିଦାନମ୍ ।
ସପଦି ମଦନାନଲୋ ଦହତି ମମ ମାନସଂ
ଦେହି ମୁଖକମଲମଧୁପାନମ୍ ।୩।
ସ୍ମର-ଗରଳ-ଖଣ୍ଡନଂ ମମ ଶିରସି ମଣ୍ଡନମ୍
ଦେହି ପଦ-ପଲ୍ଲବମୁଦାରମ୍ ।
ଜ୍ୱଳତି ମୟି ଦାରୁଣୋ ମଦନକଦନାନଲୋ
ହରତୁ ତଦୁପାହିତ-ବିକାରମ୍ ।୯।

(ଗୀ. ଗୋ., ୧୦।୧୯, ପୃ-୧୧୫-୧୨୦)

ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟଙ୍କ ରଚନାରେ ନାୟିକାର ମାନାପନୟନ ନିମିତ୍ତ ନାୟକର ସ୍ଥୂଳ ରୁଚିପୂର୍ଣ୍ଣ ଚାଟୂକ୍ତି ଓ ଦୈନ୍ୟର ବହୁ ଦୃଷ୍ଟାନ୍ତ ଦେଖାଯାଏ । କବିସୂର୍ଯ୍ୟଙ୍କ ଶ୍ରୀକୃଷ୍ଣ ରାଧାଙ୍କୁ କହୁଛନ୍ତି—

ବାରିଜାକ୍ଷି ! ମନରୁ ମାନ ମାରିଦେ ରେ,
ଦେଖ କାଳ ହେଲେ କଳାବାରିଦ ରେ ।
ଦାସ ନାଶରେ ମାନସ ବଳୁଛୁ ଯେବେ ନାରୀଣ
କରିଜ ନାଗିଚ ମାରି ଚରିଦେ ରେ ।୧।

ତୋ ଚରଣ ସେବା ଭଲ ନୋହିଲା ଯେବେ ରେ ଆଳି,
ଗାଳି ଦିଆଇ ମହତ ସାରିଦେ ରେ ।୨।

(ସଙ୍ଗୀତ କଳ୍ପଲତା, କ. ସୂ. ଗ୍ରଂ, ପୃ ୨୪୩)

(ଗ) ଶ୍ରୀକୃଷ୍ଣଙ୍କ ଚାଟୁବଚନେ ସଖୀ-ଉକ୍ତି—ଶ୍ରୀକୃଷ୍ଣଙ୍କ ଚାଟୂକ୍ତିରେ ରାଧାଙ୍କର ପ୍ରାଣସମା ସଖୀମାନେ ତାଙ୍କପ୍ରତି ଆକ୍ଷେପୋକ୍ତି ପ୍ରକାଶ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଗୋଟିଏ ଗୀତରେ (ଅଣ୍ଡିଲନ ହୋଟି ଗୁଣେ, ଗ୍ରଂ., ପୃ-୪୭୩) ଶ୍ୟାମଙ୍କର କପଟତା, ବିଟତ୍ୱ ଓ ଚାଟୂକ୍ତି ପ୍ରତି ବ୍ୟଙ୍ଗ୍ୟ କରି ସଖୀ କହୁଛି—ତାଙ୍କର ସ୍ନେହ ସୁଖର ତୁଳନା ଏ ଜଗତରେ ନାହିଁ । ଚାତୁର୍ଯ୍ୟ ପ୍ରଦର୍ଶନର ପ୍ରୟୋଜନ ନାହିଁ । ସମାଜର ସଂଖ୍ୟାତୀତ ବାଧା ସତ୍ତ୍ୱେ ଯେଉଁ କିଶୋରୀ ତାଙ୍କ ଉପରେ ଏତେ ଭରସା ରଖିଥିଲା, ସେ କଥା ଭଲେହେଲେ ଚିନ୍ତାରେ ଆସିଲା ନାହିଁ; ସଙ୍କେତ କୁଞ୍ଜରେ ପ୍ରତାରିତ ହେଲା । ପୁଣି ମୋହଜାଲ ବିସ୍ତାର କରି ଅଶ୍ରୁ ଝରାଇବାର ପ୍ରୟୋଜନ ନାହିଁ । ତାଙ୍କର ଏ ପ୍ରକାର ସ୍ନେହକୁ ଲକ୍ଷେବାର ନମସ୍କାର—

ସୁଆଗକୁ ତୋହର ଜୁହାର ଲକ୍ଷେ ଥର
ମୋହ ଲଗାଇ ହରି ଲୁହ ପୋଛନା ।୪। (ଗ୍ରଂ., ପୃ-୪୭୪)

ଅନ୍ୟ ଏକ ଗୀତରେ (କି କରିବ ପଛେ ଗୋଡ଼ାଇଲେ, ଗ୍ରଂ.; ପୃ-୪୯୨) କିଶୋରୀ ଚନ୍ଦ୍ରାନନ୍ଦ ଚମ୍ପୂର ଲଳିତା ପରି ସଖୀ ଅବମାନିତା ଶ୍ରୀମତୀଙ୍କର ଶ୍ୟାମ ବିତୃଷ୍ଣାର ସୂଚନା ଦେଇ ତାଙ୍କ ଚିତ୍ତର ଉଦ୍‌ବେଗ ଓ ନୈରାଶ୍ୟ ବଢ଼ାଇବା ସଙ୍ଗେ ସଙ୍ଗେ ଶ୍ୟାମଙ୍କର ପ୍ରବଞ୍ଚନା ଓ ବହୁ ନାୟିକା ବଲ୍ଲଭତ୍ୱ ସମ୍ପର୍କରେ ବ୍ୟଙ୍ଗୋକ୍ତି ପ୍ରକାଶ କରିଛି ।

ଲୀଳା ବ୍ୟାପାରରେ ବୈଚିତ୍ର୍ୟ ସୃଷ୍ଟି ନିମିତ୍ତ ସଖୀମାନଙ୍କର ଭୂମିକା କିପରି ଉଲ୍ଲେଖଯୋଗ୍ୟ, ଏ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ସଖୀମାନେ ପ୍ରଣୟ କ୍ଷେତ୍ରରେ ଦ୍ୱନ୍ଦ୍ୱ ଓ ନାୟିକାର ଅଭିମାନ ସୃଷ୍ଟି କଲେ ମଧ୍ୟ ପ୍ରଣୟୀ ଯୁଗଳଙ୍କର ମିଳନାନନ୍ଦ ଦର୍ଶନ ନିମିତ୍ତ ସେମାନଙ୍କର ଉତ୍କଣ୍ଠା ଅସୀମ । ସେଥିପାଇଁ ଦୀର୍ଘକାଳ ଧରି ରାଧାଙ୍କର ଦୁର୍ଜୟ ମାନରେ ସେମାନଙ୍କର ଉଦ୍‌ବେଗ ଓ ବ୍ୟସ୍ତତାର ସୀମା ରହେନାହିଁ । ଶ୍ରୀକୃଷ୍ଣପକ୍ଷୀୟା ଦୂତୀ ବୃନ୍ଦାଙ୍କଠାରୁ ଆରମ୍ଭ କରି ସ୍ୱପକ୍ଷୀୟା ଦୂତୀମାନେ ଶ୍ୟାମଙ୍କ ପକ୍ଷ ଗ୍ରହଣ କରି ବ୍ୟାକୁଳ ଚିତ୍ତରେ ମାନାବସାନରେ ଲାଗିଯା'ନ୍ତି ।

(ଘ) ବୃନ୍ଦାଙ୍କର ସାନ୍ତ୍ୱନା—ନୈସର୍ଗ ଶୋଭା ସମ୍ଭାର ଭରା ବୃନ୍ଦାବନର ରକ୍ଷୟିତ୍ରୀ ତଥା ପରିପାଳିକା ବୃନ୍ଦାଦେବୀ ହେଉଛନ୍ତି ତା'ର ଅଧିଷ୍ଠାତ୍ରୀ ଦେବୀ । ବୃନ୍ଦାଟବୀର ପ୍ରତ୍ୟେକ ବୃକ୍ଷ, ବଲ୍ଲୀ, କୁଞ୍ଜ ଓ ପଶୁପକ୍ଷୀ ବୃନ୍ଦାଙ୍କର ଅତି ଆଦରର ସମ୍ପଦ ଏବଂ ଶ୍ୟାମ ଓ ଶ୍ରୀମତୀଙ୍କର ସେବା ପାଇଁ ବୃନ୍ଦାଙ୍କର ଇଙ୍ଗିତରେ ଅପେକ୍ଷମାଣ । ପ୍ରେମପରିପ୍ଲୁତା କେଳିରସୋତ୍ସୁକା ଏହି ବୃନ୍ଦାଦେବୀ ଶ୍ୟାମ ଓ ଶ୍ରୀମତୀଙ୍କର ମିଳନ ପାଇଁ ସଦା ଆତ୍ମନିୟୋଜିତା । ସେ ଶ୍ରୀକୃଷ୍ଣପକ୍ଷୀୟା ଦୂତୀ ହୋଇଥିବାରୁ ରାଧାଙ୍କର ମାନାପନୟନାର୍ଥ ତାଙ୍କର ବ୍ୟାକୁଳତା ଓ ପ୍ରୟାସ କମ୍ ନିବିଡ଼ ନୁହେଁ । 'ମାନିନୀ ରାଧାଙ୍କୁ ବୃନ୍ଦାଙ୍କର ସାନ୍ତ୍ୱନା' ଶୀର୍ଷକ ପାଞ୍ଚୋଟି ଗୀତ ଏବଂ 'ରାଧାମାନେ ବିଶାଖାଙ୍କ ପ୍ରତି ବୃନ୍ଦା ଉକ୍ତି' ଶୀର୍ଷକ ଗୋଟିଏ ଗୀତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଦେଖାଯାଏ । ବୃନ୍ଦାଙ୍କର ଉକ୍ତିରେ ରାଧାଙ୍କର ମାନ ହେତୁ ଶ୍ୟାମଙ୍କର ବିରହ ବେଦନା ପରିସ୍ଫୁଟ ହେବା ସଙ୍ଗେ ସଙ୍ଗେ ପ୍ରଣୟୀ ପ୍ରଣୟିନୀ ଭାବରେ ରାଧା ଓ କୃଷ୍ଣଙ୍କର ପାରସ୍ପରିକ ଗଭୀର ଅନୁରାଗର ଉଚ୍ଚାଙ୍ଗ ଛନ୍ଦ ପରିଲକ୍ଷିତ ହୁଏ । ମାନାପନୟନ ନିମିତ୍ତ ଅନ୍ୟ ଦୂତୀମାନଙ୍କ ଅପେକ୍ଷା ବୃନ୍ଦାଙ୍କର ଉକ୍ତି ଯେପରି ଉନ୍ନତ ସେହିପରି ସଂଭ୍ରମଶୀଳ । ଗୋଟିଏ ଗୀତରେ (କେବେ ନଥିଲା ରୁଷା ଆଜି କାହିଁକି ?, ଗ୍ରଂ., ପୃ-୪୮୭) ବୃନ୍ଦା ମାନିନୀ କିଶୋରୀଙ୍କୁ କହୁଛନ୍ତି ଯେ ମୋହନଙ୍କ ପ୍ରତି କେବେ ତ ତାଙ୍କର ଅଭିମାନ ନଥିଲା; ଆଜି ଏ ଦୁର୍ଜୟ ମାନ କାହିଁକି ? ତାଙ୍କ ସହିତ ପ୍ରେମର ବନ୍ଧନ କ'ଣ ଶିଥିଳ ହୋଇଗଲା ? ପ୍ରିୟତମଙ୍କୁ ବର୍ଜନ କରିବା ପାଇଁ ଯିନା ସେ ସଙ୍କଳ୍ପ କରିଛନ୍ତି, କିନ୍ତୁ ତାଙ୍କ ବିନା (ରାଧାବିନା) ସେ କିପରି ଜୀବନ ଧାରଣ କରିବେ, ଏ କଥା ଚିନ୍ତା କରିଛନ୍ତି କି ? ବ୍ରଜେନ୍ଦ୍ର ତାଙ୍କର ଜୀବନର ଜୀବନ ବୋଲି କେତେବାର ତୁଣ୍ଡରେ ଉଚ୍ଚାରଣ କରିଛନ୍ତି—ସେ କଥା କଣ ବିସ୍ମୃତି-ଗର୍ଭକୁ ଚାଲିଗଲାଣି ? ଯେ ଅନ୍ତରର ଗଭୀର ଅନୁରାଗରେ ଯାହାଙ୍କୁ ହୃଦୟସ୍ଥ କରି ଅଧର ସୁଧା ଯାଚି ଦେଇଛନ୍ତି, ଆଜି ଅନ୍ୟର ଅପବାଦରେ ଏ ପ୍ରକାର ଆଚରଣ କ'ଣ ଉଚିତ ହୋଇଛି ? ପୂର୍ବର ରୀତି ନିୟମ କ'ଣ ମୂଲ୍ୟହୀନ ?

ଅନ୍ୟ ଏକ ଗୀତରେ (ମୋହନଙ୍କୁ ତୁଷିବ କି ସେ ରାଧା ତୁ କାହିଁରେ, ଶ୍ରୀ. ପୃ-୪୮୯) ଶ୍ୟାମ ଓ ଶ୍ରୀମତୀଙ୍କର ନିବିଡ଼ ପ୍ରୀତିର ସୂଚନା ଦେବାକୁ ଯାଇ କହିଛନ୍ତି—ଶ୍ୟାମ ଯଦି ଦେହ ହୁଅନ୍ତି, ରାଧା ହେଉଛନ୍ତି ଜୀବନ। ଦେହ ଓ ପ୍ରାଣ ପରି ସେମାନଙ୍କର ସମ୍ପର୍କ ଅତି ନିବିଡ଼। କେଳିତଳରେ ଚତୁରାକ୍ଷ କାଳରେ ସେମାନଙ୍କର ଯେଜାଯେଜ ଭାବ ବଚନରେ ପ୍ରକାଶ କରି ହୁଏନାହିଁ। ଗୋଷ୍ଠଚନ୍ଦ୍ରମାଙ୍କର ନାମ ଶ୍ରବଣ ମାତ୍ରକେ ଯାହାଙ୍କର ସର୍ବାଙ୍ଗରେ ଦିବ୍ୟ ପୁଲକର ସଞ୍ଚାର ହୁଏ, ସେ ମୋହନଙ୍କ ପ୍ରତି ଯେ ଅଭିମାନ କରିବ, ଏହା ବିଶ୍ୱାସ କରି ହୁଏ ନାହିଁ। ବୃନ୍ଦାଙ୍କର ଉକ୍ତିରେ ଶ୍ୟାମ ଓ ଶ୍ରୀମତୀଙ୍କର ଗଭୀର ଅନୁରାଗ ସମ୍ପର୍କରେ ଯେଉଁ ସଙ୍କେତ ଦିଆଯାଇଛି, ତାହା ପାଠ କଲେ ଗୀତଗୋବିନ୍ଦ ଓ ପଦାବଳୀର ଅନୁରୂପ ଛନ୍ଦ ସ୍ମରଣକୁ ଆସେ। ଗୀତଗୋବିନ୍ଦରେ ମାନିନୀ ରାଧାଙ୍କ ପ୍ରତି ମାଧବଙ୍କର ଉକ୍ତି ହୋଇଛି—

ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନମ୍
ତ୍ୱମସି ମମ ଭବଜଳଧିରତ୍ନମ୍।

(ଗୀ. ଗୋ., ୧୦।୧.୧।୫, ପୃ-୧୧୭)

ପ୍ରତ୍ୟାଖ୍ୟାତ ଶ୍ୟାମ ନୟନର ଅଶ୍ରୁ ପୋଛି ପୋଛି ଭାବୁଛନ୍ତି ଯେ ତାଙ୍କୁ ଛାଡ଼ି ଶ୍ରୀମତୀ କ'ଣ ବଞ୍ଚିପାରିବେ ? ପଦକର୍ତ୍ତା ଶ୍ରୀକୃଷ୍ଣଙ୍କ ମୁଖରେ ପ୍ରକାଶ କରିଛନ୍ତି—

ମୋହେ ଉପେକ୍ଷି ରାଇ କୈସେ ଜୀୟବ
ସୋ ଦୁଃଖେ କରି ଅନୁମାନ।
ରସବତୀ-ହୃଦୟ ବିରହ ଜ୍ୱରେ ଜାରବ
ଇଥେ ଲାଗି ବିଦରେ ପରାଣ।

(ଗୋବିନ୍ଦ ଦାସ, ପ. ସା, ପୃ-୧୬୪)

ବିଦଗ୍ଧ ମାଧବ ଗ୍ରନ୍ଥରେ (୭ମ ଅଙ୍କ) କବି ବୃନ୍ଦାଙ୍କ ମୁଖରେ ପ୍ରସଙ୍ଗାନ୍ତରର ସୂଚନା ଦେଇ ରାଧାଙ୍କର ମାନଭଙ୍ଗ ପ୍ରସ୍ତାବର ସଙ୍କେତ ଦେଇଛନ୍ତି। ବୃନ୍ଦା ଦୃଢ଼ ନିଶ୍ଚିତ ଯେ ଶ୍ୟାମ ଓ ଶ୍ରୀମତୀଙ୍କର ଅନୁରାଗ ବନ୍ଧନ କେବେ ଶିଥିଳ ହେବାର ନୁହେଁ। ଗଭୀର ଅନୁରାଗ ହିଁ ରାଧାଙ୍କୁ ମାନର ଅଧିକାର ଦେଇଛି। ତାଙ୍କର ମାନ ସାମୟିକ ବିରହର ଦ୍ୟୋତକ ହେଲେ ତାହା ପ୍ରେମର ଦୀପ୍ତିକୁ ଅଧିକ ପ୍ରଖର କରୁଛି। ବୃନ୍ଦାଙ୍କର ବିଶ୍ୱାସ, ଶ୍ୟାମଙ୍କର ଲଳିତ ତ୍ରିଭଙ୍ଗ ନଟବର ବେଶ, ଶିଖିପିଞ୍ଛ ଓ ମୁରଲୀଶୋଭିତ ମୁଖପଦ୍ମ ଶ୍ରୀମତୀଙ୍କର ସ୍ମୃତିରେ ଆସିଲେ କ'ଣ ମାରବ ରହି ପାରିବେ ? ଚନ୍ଦ୍ରୋଦୟରେ ଚନ୍ଦ୍ରକାନ୍ତମଣି ଦ୍ରବୀଭୂତ ହେବା ପରି କିଶୋରଚନ୍ଦ୍ରଙ୍କର ଉଦୟରେ କିଶୋରୀ କ'ଣ ହୃଦୟ କଠିନ କରି ରହିପାରିବେ ? କ୍ଷଣେ ନ ଦେଖିଲେ ଯେ ବାରମ୍ବାର ଦର୍ଶନ ପ୍ରେରଣ କରି ସମ୍ବାଦ ଅଣାନ୍ତି, ସେ କ'ଣ ପ୍ରିୟଦର୍ଶନର ଲୋଭ ସମ୍ବରଣ କରି ପାରିବେ ? ପ୍ରସଙ୍ଗାନ୍ତରର ସୂଚନା ଦେଇ ବୃନ୍ଦା କହନ୍ତି ଯେ ଅଭିମନ୍ୟୁ (ରାଧାଙ୍କର ସ୍ୱାମୀ) ସନ୍ଦେହବାର ଯଥାର୍ଥ ବ୍ରଜଶିବ ବୋଲି କହିଲାଙ୍କ

ସମକ୍ଷରେ କହୁଥିଲ । ଏ ଉକ୍ତିରେ ରାଧା ଉଦ୍‌ବିଗ୍ନା ହୋଇ ବ୍ୟାକୁଳ ଚିତ୍ତରେ ସଖୀଙ୍କୁ ଜିଜ୍ଞାସା କରନ୍ତି ।

ଅନ୍ୟ ଏକ ଗୀତରେ (ସହି ! ଅଣ୍ଟିଲି ନାହିଁକି ? ଗ୍ରଂ., ପୃ-୪୯୯) ମାନଭଙ୍ଗ ନିମିତ୍ତ ରାଧାଙ୍କର କୃଷ୍ଣାନୁରାଗ ଓ ଶ୍ୟାମଙ୍କର ବିରହବ୍ୟାକୁଳତାର ପ୍ରାଣସ୍ପର୍ଶୀ ପ୍ରକାଶ ଘଟିଛି ବୃନ୍ଦାଙ୍କର ସାନ୍ତ୍ୱନା ବାଣୀରେ । ଏଥିରେ ଶ୍ୟାମ ଓ ଶ୍ରୀମତୀଙ୍କର ପ୍ରେମର ଗଭୀରତା ଓ ଭାବଜନିତ ଉତ୍କର୍ଷର ବ୍ୟଞ୍ଜନା ପରିସ୍ଫୁଟ । ବୃନ୍ଦା କହୁଛନ୍ତି—ଯେଉଁ କିଶୋରୀ ଶ୍ୟାମଙ୍କ ପାଇଁ ନିଜର ଦେହ ସଂସାର ଭୁଲିଯାଆନ୍ତି, ଆଜି ଦିନସାରା କ'ଣ ସେହି ଚନ୍ଦ୍ରମୁଖ ସ୍ମରଣକୁ ଆସୁ ନାହିଁ ? ଅଭିମାନ ଜ୍ୱାଳାର କ'ଣ ପ୍ରଶମନ ନାହିଁ ? ଶ୍ରୀମତୀ ପୁଲକିତ ପ୍ରାଣରେ ଯେଉଁ ଶ୍ୟାମଙ୍କୁ ହୃଦୟରେ ଆଶ୍ଳେଷ କରନ୍ତି, ଆଜି ସେହି ପ୍ରିୟ ଶ୍ୟାମ ତାଙ୍କର ନାମ ଉଚ୍ଚାରଣ କରି ଭୂମିରେ ଲୋଟି ଯାଉଛନ୍ତି । ପ୍ରିୟତମଙ୍କର ଶିରସ୍ଥିତା ନିଜ ପଦ ପ୍ରାନ୍ତରେ ପଡ଼ିଲି ମାତେ ସମ୍ଭ୍ରମବଶତଃ ଯେ ଅପସରି ଯାଆନ୍ତି, ଆଜି ତାଙ୍କର ଚକ୍ଷୁରୁ ଅଶ୍ରୁ ଗଡ଼ାଇ ଦାସୀର ଦସ୍ୟାପାଠ କରିଛନ୍ତି । ଶ୍ରୀମତୀଙ୍କର ପଦଚିହ୍ନ ଧୂଳିରେ ସୌରଭିକୃଷ୍ଣ ଅଳିର ଉପବେଶନ ଲକ୍ଷ୍ୟ କରି ଶ୍ୟାମ ଶ୍ରଦ୍ଧାରେ ତାହା ବୋଲି ହୁଅନ୍ତେ ଶ୍ରୀମତୀଙ୍କୁ ପହଞ୍ଚାଇବାର ସଂକଳ୍ପ କରି ସେ ତାଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି । ବୃନ୍ଦାଙ୍କର ଏହି ସାନ୍ତ୍ୱନାବାକ୍ୟରେ ବିଦଗ୍ଧ ଚିନ୍ତାମଣିର ଭାବ ଓ ପଦଯୋଜନାର ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ (୪୪) ।

'ଶ୍ରୀକୃଷ୍ଣ ଦୂତୀ ବୃନ୍ଦାଙ୍କର ସାନ୍ତ୍ୱନା' ଶୀର୍ଷକ ଆଉ ଗୋଟିଏ ଗୀତରେ ଶ୍ୟାମଙ୍କର ବିରହାନୁଭୂତିର ଅନ୍ୟ ଏକ ଉଚ୍ଚାଙ୍ଗ ପ୍ରାଣସ୍ପର୍ଶୀ ଚିତ୍ର ରହିଛି । ପାରମ୍ପରିକ ନଗ୍ନ ଶୃଙ୍ଗାରିକତା ଓ ସ୍ଥୂଳରୁଚିରୁ ଏହା ସମ୍ପୂର୍ଣ୍ଣ ମୁକ୍ତ । ସମଗ୍ର ବୃନ୍ଦାବନ ବିରହୀ କୃଷ୍ଣଙ୍କର ଚକ୍ଷୁରେ ହୋଇ ଉଠିଛି ରାଧାମୟ (୪୫) । ଯମୁନାର ବିବିକ୍ତ ସୈକତ ତଳ ତଟରେ ମୃଦୁ ସମୀରରେ ରାଧାଙ୍କ ନାମରେ ମୁରଲୀ ବାଦନ କରି ନିଜ ଅନ୍ତରର ବ୍ୟଥାର ରାଗିଣୀରେ ବୃନ୍ଦାବନର ପ୍ରକୃତିକୁ ସ୍ପନ୍ଦନମୟ କରିଛନ୍ତି । ବନର ପ୍ରତିଟି ବଲ୍ଲୀ, ଧେନୁ, ପଶୁ ଓ ପକ୍ଷୀଙ୍କୁ ରାଧାରୂପେ କଳ୍ପନା କରି ତାଙ୍କର ନାମ ଉଚ୍ଚାରଣ କରୁଁ କରୁଁ ସଂଜ୍ଞାଶୂନ୍ୟ ହୋଇ ପଡ଼ୁଛନ୍ତି —

ପ୍ରାଣେଶ୍ୱରୀ ରାଧିକେ ଶ୍ରୀମତୀ ଗାନ୍ଧର୍ବିକେ
ବୋଲୁଁ ହଜି ଯାଉଛି ଚେତନାରେ । ୧ ।
ବନେ ପ୍ରତି ବଲ୍ଲୀକି ଧେନୁ ପଶୁପକ୍ଷୀଙ୍କି
ତୋ ଅଭିଧାନରେ କହି କଳ୍ପନାରେ । ୨ । (ଗ୍ରଂ. ପୃ-୫୦୨)

ଶ୍ରୀମତୀ... ପ୍ରସାଧନ ନିମିତ୍ତ ମାଲ୍ୟ ପ୍ରସ୍ତୁତ କରି ତାଙ୍କର ରୂପ ଧ୍ୟାନ ଅବସ୍ଥାରେ ଅଶ୍ରୁ ମୋଚନ କରୁଛନ୍ତି । ଶ୍ୟାମଙ୍କର ଦୋଷାନୁରୂପ ଦଣ୍ଡବିଧାନ ଅବଶ୍ୟ କରଣୀୟ, କିନ୍ତୁ ଅଭିମାନ ଚିତ୍ତସ୍ଥିର ନୁହେଁ

(୪୪) ବି. ଚି., ୪୮।୩୧
(୪୫) ବି. ମା., ୫।୨୭, ପୃ-୨୭୫

**(ଙ) ଶ୍ରୀମତୀ ପକ୍ଷୀୟା ସଖୀ ଓ ଦୂତୀମାନଙ୍କର ମାନଭଞ୍ଜନ ପ୍ରୟାସ—** ନାୟିକାର ମାନଭଙ୍ଗ ନିମିତ୍ତ ଅଲଙ୍କାର ଶାସ୍ତ୍ର ଓ କାବ୍ୟମାନଙ୍କରେ ସାମ, ଭେଦ, ଦାନ, ନତି, ଉପେକ୍ଷା ଓ ରସାନ୍ତର (୪୭) ପ୍ରଭୃତି ନାନା ଉପାୟର ଉଲ୍ଲେଖ ରହିଥିଲେ ମଧ୍ୟ ଜୟଦେବଂକର ଗୀତଗୋବିନ୍ଦ ଠାରୁ 'ପ୍ରଣତି' ପଦ୍ଧତି ବୈଷ୍ଣବ କାବ୍ୟ ଓ ପଦାବଳୀ ସାହିତ୍ୟରେ ବିଶେଷ ରୂପେ ଅନୁସୃତ ହୋଇଛି । ଗୋପାଳକୃଷ୍ଣ ତାଂକ ସଙ୍ଗୀତରେ ରାଧାଂକର ମାନାପନୟନ ନିମିତ୍ତ ନତି (ପାଦପତନ), ଭୟ, ସ୍ମୃତିସ୍ମରଣ, ପରିହାସ ଓ କ୍ଷମା ପ୍ରଭୃତି ନାନା ଉପାୟର ସଂକେତ ସଖୀ ଓ ଦୂତୀମାନଂକର ଉକ୍ତିରେ ଦେଇଛନ୍ତି ।

ଗୋଟିଏ ଗୀତରେ (ଏଥରକ ଶ୍ୟାମଦୋଷ କର କ୍ଷମାରେ, ଗ୍ରଂ, ପୃ-୪୭୯) ଦୂତୀ ମୁଖରେ କବି ସୂଚିତ କରିଛନ୍ତି ଯେ ଶ୍ୟାମ ଶ୍ରୀମତୀଂକ ପଦତଳେ ନତି ପ୍ରକାଶ କରିଛନ୍ତି । ବହୁବାର ସେ ଶ୍ୟାମଂକର ଅପରାଧ ସହ୍ୟ କରିଛନ୍ତି । ବର୍ତ୍ତମାନ ତାଂକର ଦୋଷ କ୍ଷମା କରି ପ୍ରସନ୍ନ ଦୃଷ୍ଟିପାତ ନକଲେ ବ୍ରଜର ଶ୍ରୀ ତୁଟିଯିବ ।

ଶ୍ୟାମଙ୍କ ପ୍ରତି ସହାନୁଭୂତିଶୀଳା ହୃଷ୍ଟହର୍ଷିଣୀ ଲଳିତା ଯୁଗଳମୂର୍ତ୍ତିର ମିଳନ ପାଇଁ ଅତୀବ ବ୍ୟାକୁଳ । ସେ ଚେତାଇ କହିଛି ଯେ ଅଶନ, ଶୟନ ତ୍ୟାଗ କରି ଅଙ୍ଗର ସ୍ୱର୍ଣ୍ଣ କାନ୍ତି ମଳିନ କରିବା ତାଙ୍କ ପକ୍ଷରେ ଶୁଭଙ୍କର ନୁହେଁ । ନାରୀ ନାଶକ (ପୂତନା ନାଶକ) କୃଷ୍ଣଙ୍କ ପ୍ରତି ତାଙ୍କର ଏ ମାନ ସମ୍ପ୍ରତି ମୂଲ୍ୟହୀନ, କାରଣ ଅଗଣିତ ବ୍ରଜବଧୂ ଭକ୍ତ ସ୍ୱାଧୀନ କିଶୋର ପ୍ରତି ତାଙ୍କର ଏ ଅନୁରକ୍ତି ଅନୁଚିତ ବୋଲି ଚେତାଇ ଦିଆଯାଇଥିଲେ ମଧ୍ୟ ସେ ଜାଣି ଶୁଣି ଆସକ୍ତ ହୋଇଛନ୍ତି । ବର୍ତ୍ତମାନ ଏ ଅଭିମାନିନୀର ଭୂମିକା ତାଙ୍କ ପକ୍ଷେ ଅଶୋଭନୀୟ (ଗ୍ରଂ., ପୃ-୪୮୬-୪୮୭) । ପୁଣି ଅନ୍ୟ ଏକ ଗୀତରେ ଲଳିତା ରାଧାଙ୍କୁ ସାନ୍ତ୍ୱନା ଦେଇ କହେ ଯେ ଶ୍ୟାମ ତାଙ୍କର ସେବାପାଇଁ ପରିସ୍ମରକ ପ୍ରାୟ ରହିଛନ୍ତି । ତାଙ୍କର ସ୍ୱର୍ଣ୍ଣପଦ୍ମନିଭ ମୁଖ ମ୍ଳାନ ଓ କବରୀ ଶିଥିଳ ହୋଇ ପୃଷ୍ଠ ଦେଶରେ ଲୋଟୁଛି । ଭରସା ଦେଇ ସେ କହେ ଯେ ଶ୍ୟାମଙ୍କର ଚିତ୍ତ ଶ୍ରୀମତୀଙ୍କଠାରୁ ଭିନ୍ନ କରିବାକୁ ଗୋଷ୍ଠରେ କେହି ଜଣେ ହେଲେ ଗୁଆଳ ନାହିଁ (କି ବଳିଗଲ ରାଧିକେ !, ପୃ-୪୯୧) ।

ଆଉ ଗୋଟିଏ ଗୀତରେ ଲଳିତା ଶ୍ରୀମତୀଙ୍କ ହସ୍ତଧରି ଶ୍ୟାମଙ୍କ ପାଇଁ କ୍ଷମା ପ୍ରାର୍ଥନା କରି କହନ୍ତି ଯେ ଶ୍ୟାମଙ୍କ ପ୍ରତି ଅତ୍ୟଧିକ ମାନ ଅନୁଚିତ, ବରଂ ତାଙ୍କ ପକ୍ଷରେ କ୍ଷମାନୁକମ୍ପା ଶୋଭନୀୟ । ତାଙ୍କର ଅଚ୍ଛୋ ଦୃଷ୍ଟିରୁ ଅଭିମାନ ଭୁଲି ସସ୍ନେହ କଟାକ୍ଷପାତ ବାଞ୍ଛନୀୟ (ମାଗୁଛି ସହି ! ମୁଁ ଶ୍ୟାମ ଦୋଷ କ୍ଷମାକର ଗୋ., ଗ୍ରଂ., ପୃ-୫୦୦) । ବର୍ତ୍ତମାନ ବିଳମ୍ବ ନ କରି ବିନା ବେଶ ପ୍ରସାଧନରେ ଶ୍ୟାମଙ୍କ ନିକଟକୁ ଯାତ୍ରା ପାଇଁ ପ୍ରସ୍ତୁତ ହୋଇଯିବା ପ୍ରୟୋଜନ (ପୃ-୫୧୯) ।

ଅନ୍ୟ ଏକ ଗୀତରେ (ତୋତେ ତୁହି ପ୍ରାଣ ସହି ସାକ୍ଷୀ; ଗ୍ରଂ., ପୃ-୪୮୬) ମାନିନୀ ରାଧାଙ୍କର ଅନ୍ତରର ମଧୁର ସ୍ମୃତିସ୍ମରଣ ବ୍ୟାଜରେ ସଖୀ ତାଙ୍କୁ ସାନ୍ତ୍ୱନା ଦେବାର

(୪୭) ସା. ଦ., ୩।୨୦୧, ପୃ-୨୭୨

ପ୍ରୟାସ କରିଛୁ । ସେ କହୁଛି ସେ ପଶାଖେଳରେ ମୋହନ ପରାସ୍ତ ହେଲେ ସେ ରାଧା ସୂର୍ଯ୍ୟାସ୍ତର ଦ୍ୱାହି ଦେଇ ସାର ମିଶାଇ ଦିଅନ୍ତି । ଚମ୍ପକ କୁଞ୍ଜରେ ସେ ପରିହାସ ଛଳରେ ଆତ୍ମ ଗୋପନର ପ୍ରୟାସ କଲେ ମୁହୂର୍ତ୍ତିକ ମଧ୍ୟରେ ଶ୍ୟାମଂକର ଆଶ୍ଳେଷରେ ଚରମ ତୃପ୍ତି ଅନୁଭବ କରନ୍ତି । ବନ ବାହୁଡ଼ା କାଳରେ ସେ ଅଟ୍ଟାଳ ଚୂଡ଼ାରେ ଥାଇ କାନନ ପଥକୁ ଚାହିଁ ଶ୍ୟାମଦର୍ଶନ ନିମିତ୍ତ କେତେ ବ୍ୟାକୁଳତା ପ୍ରକାଶ କରନ୍ତି ।

ଆଉ ଗୋଟିଏ ଗୀତରେ (କେତେ କହିଲେ ତୋତେ, କିଶୋରୀ ମଣି, ଗ୍ରଂ., ପୃ-୪୮୯) ଶ୍ରୀମତୀଙ୍କର ମର୍ମ ବାସନା ପ୍ରକାଶ ଛଳରେ ସଖୀ ତାଙ୍କୁ ପ୍ରବୋଧ ଦେଇ କହେ ସେ ଶ୍ୟାମଙ୍କର ବୈଦଗ୍ଧ୍ୟ, ଧୈର୍ଯ୍ୟ, ଶୀଳତା ଓ ସ୍ନିଗ୍ଧତା ସତ୍ତ୍ୱେ ବଟଶ୍ରେଷ୍ଠ ବୋଲି ସେ (ରାଧା) ଆକ୍ଷେପ କଲେ ମଧ୍ୟ ଜୃମ୍ଭା (ହାଇ) ମାଧ୍ୟମରେ ଅଙ୍ଗଭଙ୍ଗୀ ପ୍ରକାଶ କରନ୍ତି (ମିଳନ ବାସନାର ବ୍ୟଞ୍ଜନା) । ଅଭିସାର କାଳ ଅତିକ୍ରାନ୍ତ ହେଉଥିବାରୁ ବେଣୀ ପ୍ରସାଧନ ନିମିତ୍ତ ଶ୍ରୀମତୀଙ୍କୁ ସଖୀ ଡେକାଇ ଦିଏ ।

ଉଭୟ ଶ୍ୟାମ ଓ ଶ୍ରୀମତୀଙ୍କ ପ୍ରତି ସମ୍ବେଦନଶୀଳା ସଖୀ ଶ୍ରୀମତୀଙ୍କର ଅଭିମାନ ଜନିତ ମୁଖର ମଳିନତା ଓ ନୟନର ଅଶ୍ରୁରେ ଅଶାନ୍ତି ବୋଧ କରି କହେ ସେ ଉଭୟଙ୍କ ଚକ୍ଷୁରେ ଉଭୟେ ଯେତେବେଳେ ଆଲେଖ୍ୟ-ପ୍ରତିମା ପ୍ରାପ୍ତ ରହିଛନ୍ତି, ଉଭୟେ ଯେତେବେଳେ ଶୋଭା ଓ ସୁଗୁଣ ଦ୍ୱାରା ବ୍ରଜବାସୀଙ୍କର ନୟନ ସାର୍ଥକ କରୁଛନ୍ତି, ସେ କ୍ଷେତ୍ରରେ ଏ ଅଭିମାନ ଶୋଭନୀୟ ନୁହେଁ (କାହିଁକରେ ମନ ମାନେ ଆଜ ମାନ, ଗ୍ରଂ., ପୃ-୪୯୦) ।

ଅନ୍ୟ ଏକ ଗୀତରେ ପରିହାସ ଛଳରେ ପ୍ରେୟସୀ ଓ ପ୍ରେମିକଙ୍କର ଅନୁଭୂତିର ମାର୍ଜିତ ଓ ମଞ୍ଜୁଳ ଅଭିବ୍ୟକ୍ତି ମାଧ୍ୟମରେ ସଖୀ କିଶୋରୀଙ୍କର ମାନ ଦୂରୀକରଣ ନିମିତ୍ତ ଚେଷ୍ଟା କରିଛି । ସଖୀ କହୁଛି—ଗାଢ଼ର ପ୍ରୀତିର ଏକ ଲକ୍ଷଣ ହେଉଛି ଅଭିମାନ । ପ୍ରୀତି ସାଗରରେ ଯେଉଁମାନେ ନିମଜ୍ଜମାନ. ମୁହୁଁମୁହିଁରେ ସେ ଅଭିମାନ କେଉଁ ଆଡ଼େ ମିଳାଇ ଯିବ । ବକୁଳ କୁଞ୍ଜସ୍ଥ ସୁପାତି ଶଯ୍ୟାର ଅନୁଭୂତି ସ୍ମୃତ ହୋଇଗଲେ ଶୟନ ବା ସ୍ୱପ୍ନରେ ଦିନ ଅପସରନ୍ତି ହେବ । ପରସ୍ପରର ଚତୁର୍ଚକ୍ଷ ହୋଇଗଲେ କେତୋଟି ଆଶ୍ଳେଷ ଓ ଚୁମ୍ବନରେ ମାନର ଅବସାନ ଘଟିଯିବ (ରହି ଯାଇଛୁ ରୁଷାଘୁଷିଟା, ଗ୍ରଂ., ପୃ-୪୯୪) ।

ଶ୍ରୀମତୀଙ୍କର ଶ୍ୟାମଙ୍କ ପ୍ରତି ଅଭିମାନ ଯେ ଅଯୌକ୍ତିକ, ସଖୀଦ୍ୱୟଙ୍କର ସଂଳାପରେ କବି ସୁନ୍ଦର ଭାବରେ ସୂଚିତ କରିଛନ୍ତି । ରାଧା ମୋହନଙ୍କ ପ୍ରତି ଅଭିମାନ କଲେ : ଏକଥା ଶୁଣିଲେ ଲୋକ ହସିବେ । ବନ ପ୍ରତ୍ୟାବର୍ତ୍ତନରୁ ବିଳମ୍ବ ହେଲେ ଆଖିରେ ଯାର ଜଳ ଭରିଯାଏ, ଯାହାର ସ୍ପର୍ଶ ଲାଭ ନ କଲେ ଶ୍ରୀମତୀ ଅମୃତତୁଲ୍ୟ ରସ ପ୍ରଥମେ ସ୍ପର୍ଶ କରନ୍ତି ନାହିଁ, ବ୍ରଜବଧୂଙ୍କ ସମକ୍ଷରୁ ଯାଇଥିବା ସଖୀକୁ ଯେ ଦର୍ଶନ କରି ସମ୍ଭ୍ରମବଶତଃ ତଳେ ଠିଆ ହୋଇଯାନ୍ତି (୪୬), ଅଗଣିତ ଗୁଆଳ ରାସମଣ୍ଡଳୀରେ ଥିଲେ ମଧ୍ୟ ଯେ ଶ୍ୟାମଙ୍କର ଆଶ୍ଳେଷ ସୁଖ ପାଆନ୍ତି, ସେ କ୍ଷେତ୍ରରେ ଅଭିମାନିନୀ କିଶୋରୀ ତାହା ଉପେକ୍ଷା କରିପାରିବେ କି ? (ରାଧା ରୁଷିଛି ମୋହନଙ୍କୁ ବୋଇଲେ, ଗ୍ରଂ., ପୃ-୪୯୬)

(୪୬) ବ. ଚ , ୫୨।୬

ଦୈବଯୋଗରେ ଶ୍ୟାମଙ୍କ ପ୍ରତି ରାଧାଙ୍କର ଅଭିମାନ ଦେଖା ଦେଇଛି, ନ ହେଲେ ସମଗ୍ର ବ୍ରଜବାସୀଙ୍କର ଚକ୍ଷୁତାରକା ତୁଲ୍ୟ ଶ୍ୟାମ ଓ ତାଙ୍କର ପ୍ରିୟତମା ଶ୍ରୀମତୀଙ୍କ ମଧ୍ୟରେ ଭିନ୍ନତା କାହିଁ ? କେହି କାହାକୁ ଦନକ ପାଇଁ ପଛ କରି ନାହାନ୍ତି । ଶ୍ୟାମଙ୍କର ଅପରାଧ କେତେବାର ବା ଶ୍ରୀମତୀ କ୍ଷମା କରିନାହାନ୍ତି ! ଯାହାଙ୍କର ସଖୀକୁ ଦେଖିଲେ ଶ୍ରୀମତୀ ନିଜର ପରିବାର ତୁଲ୍ୟ ମନେ କରନ୍ତି, ସେ କ୍ଷେତ୍ରରେ ଏ ମାନ ଅଳୀକ ( ଆସି ଯାଇଛି ପିନା କରମକୁ ଗୋ, ଗ୍ରଂ., ପୃ-୪୯୭) । ଶତ୍ରୁର ଦୁଃଖ ଦେଖିଲେ ଆଖିରୁ ଯା'ର ଲୁହ ଝରିପଡ଼େ, ଶ୍ୟାମଙ୍କର ଏ ବିରହ କଦନରେ ସେ ହୃଦୟ କଠୋର କପରି ? ଶ୍ୟାମ ରାଧା କ'ଣ ମାନିନୀଙ୍କୁ ସ୍ପର୍ଶ କରୁନାହିଁ ? (ତୋତେ ଯଦି ନ ଲାଗିଲା ଶ୍ୟାମ ରାଧା, ଗ୍ରଂ. ପୃ-୪୯୮) ।

ଅନ୍ୟ ଗୋଟିଏ ଗୀତରେ (ଦଣ୍ଡକୁ ତ ଭିନ୍ନେ ପରି, ଗ୍ରଂ., ପୃ-୪୯୫) ଦୂତୀ ରାଧାଙ୍କୁ ସାନ୍ତ୍ୱନାବାଣୀ ଶୁଣାଇ କହୁଛି ଯେ ତାଙ୍କୁ ନୂତନ ବେଶରେ ସଜ୍ଜିତ କରିବ ବୋଲି ଚନ୍ଦ୍ରାକର ଆସୁ ଆସୁ ଧେନୁ ଯୂଥର ପଶ୍ଚାଦ୍‌ଭାଗରେ ଆସୁଥିବା ଶ୍ୟାମ ତାଙ୍କ ପାଇଁ ସ୍ନେହରେ ଏ ପୁଷ୍ପହାର ଦେଇଛନ୍ତି । ଶ୍ୟାମ ପ୍ରେମାମୃତର ସାଗର ତୁଲ୍ୟ । ଶ୍ରୀମତୀଙ୍କ ପକ୍ଷରେ ଏ ପ୍ରକାର ପଣତ ବିସ୍ତାର କରି ମୁଖଶ୍ରୀ ମ୍ଳାନ କରି ବସି ରହିବା ସୁନ୍ଦର ନୁହେଁ (୪୮) ।

ସଖୀମାନଙ୍କର ଏ ମାନଭଙ୍ଗ-ପ୍ରସ୍ତାବର ଗୀତଗୁଡ଼ିକ ପାଠ କଲେ ବୈଷ୍ଣବ ପଦାବଳୀର ତତ୍ତୁଲ୍ୟ ଗୀତମାଳା ସ୍ମରଣକୁ ଆସିଯାଏ । ପଦକର୍ତ୍ତା ଘନଶ୍ୟାମ ଦାସଙ୍କର ସଖୀ ମାନିନୀ ଶ୍ରୀମତୀଙ୍କୁ କହେ—ଯାଚଲ ଧନ ତ୍ୟାଗ କରି ପୁଣି ଲୋଡ଼ି ବସିଲେ ମିଳନ ସମ୍ଭାବନା ଜଟିଳ ହୋଇଯାଏ । କୋକିଳର କୁହୁରାବ କର୍ଣ୍ଣରେ ବାଜିଲେ, ମୃଦୁମଳୟ ଅଙ୍ଗ ସ୍ପର୍ଶ କଲେ, କୋଟି କାମ-ଶର ହୃଦୟରେ ବୃଷ୍ଟି ହେଲେ—

> ତବ କାଁହା ରାଖବି ମାନ ?
> ତବ କୈସେ ରାଖବି ପରାଣ ? (ପ. ସା. ପୃ ୧୨୨)

ଗୋବିନ୍ଦ ଦାସଙ୍କର ସଖୀ ଅତୀତର କଥା ସ୍ମରଣ କରାଇ ଶ୍ରୀମତୀଙ୍କୁ କହୁଛି—

> ଶୁନଇତେ କାନୁ ମୁରଲୀରବ ମାଧୁରୀ ଶ୍ରବଣ ନିବାରଲୁଁ ତୋର ।
> ହେରଇତେ ରୂପ ନୟନ ଯୁଗ ଝାଁପଲୁଁ ତବ ମୋହେ ରୋଖଲି ଭୋର ॥
> ସୁନ୍ଦରି ! ତୈଖନେ କହଲମ ତୋୟ ।
> ଭରମହିଁ ତାସଯେଁ ଲେହ ବାଢାୟବି ଜନମ ଗୋଡାରବି ରୋୟ ॥
> ଯୋ ତୁହୁଁ ହୃଦୟେ ପ୍ରେମତରୁ ରୋପଲି ଶ୍ୟାମଜଲଦ ରସ ଆଶେ ।
> ସୋ ଅବ ନୟନ-ନୀର ଦେଇ ସିଞ୍ଚହ କହତହି ଗୋବିନ୍ଦ ଦାସେ ॥
> (ପ. ସା., ପୃ-୧୨୨-୧୨୩)

(୪୮) ଶ୍ରୀମତୀଙ୍କର ମାନଭଙ୍ଗ ନିମିତ୍ତ ସଖୀ ଓ ଦୂତୀମାନଙ୍କର ପ୍ରସ୍ତାବ ସମ୍ବଳିତ ଆଉ କେତୋଟି ଗୀତ ରହିଛି । ଗଦ୍ୟଧର୍ମୀ ପ୍ରକାଶରୀତି ଓ କବିତ୍ୱହୀନତା ଯୋଗୁଁ ସେଗୁଡ଼ିକର ଜନକତ୍ୱ ସମ୍ପର୍କରେ ସନ୍ଦେହ ହୁଏ ।

**(ଚ) ଦୂତୀ ସମ୍ବାଦ**—ରାଧା ଓ କୃଷ୍ଣଙ୍କର ମିଳନର ଅପୂର୍ବ ସୁଖ ଉପଲବ୍‌ଧିର ଅଧୀର ପ୍ରତୀକ୍ଷାରେ ଯେତେବେଳେ ସଖୀ ଓ ଦୂତୀମାନେ ରହିଛନ୍ତି, ସେତେବେଳେ ରାଧାଙ୍କର ମାନ ଓ କୃଷ୍ଣଙ୍କର ବିରହରେ ସେମାନଙ୍କର ହୃଦୟ କମ୍ ବ୍ୟଥିତ ନୁହେଁ । ସଖୀ ଓ ଦୂତୀମାନଙ୍କର ପ୍ରାଣର ବ୍ୟାକୁଳତା ଓ ଅଧୀରତାରେ ସତେ ଯେପରି ଶ୍ରୀମତୀ ଓ ଶ୍ୟାମଙ୍କର ବ୍ୟାକୁଳତାର ପ୍ରଚ୍ଛନ୍ନ ବ୍ୟଞ୍ଜନା ରହିଯାଇଛି । 'ଦୂତୀ ସମ୍ବାଦ' ଶୀର୍ଷକ କେତୋଟି ଗୀତରେ ମାନଭଙ୍ଗ ଓ ମିଳନ ସମ୍ପର୍କରେ ଦୂତୀମାନଙ୍କର ବ୍ୟାକୁଳତା ପରିସ୍ଫୁଟ ।

ଗୋଟିଏ ଗୀତରେ (କି କହିବିରେ ଶ୍ୟାମକୁ, ଗ୍ରଂ., ପୃ-୫୦୪) ବିରହୀ ଶ୍ୟାମ ପ୍ରେରିତ ଦୂତୀ କିଶୋରୀଙ୍କ ନିକଟରେ ଶ୍ୟାମଙ୍କ ପାଇଁ ନିଜର ଅଧୀରତା ପ୍ରକାଶ କରି କହୁଛି—ଶ୍ୟାମ ଏକାକୀ କେଶରକୁଞ୍ଜର କିଶଳୟ ଶଯ୍ୟାରେ ତାଙ୍କର ଆଗମନ ପ୍ରତୀକ୍ଷାରେ ସ୍ଥିର ରହିଛନ୍ତି । ତାଙ୍କର ସମସ୍ତ ପ୍ରତ୍ୟାଶା ଓ ବେଦନା ପ୍ରତି ଶ୍ରୀମତୀଙ୍କର ଉଦାସୀନତା ତାଙ୍କୁ (ଶ୍ୟାମଙ୍କୁ) ହତାଶ କରିଦେଇଛି । କ'ଣ କହି ଶ୍ୟାମଙ୍କୁ ସାନ୍ତ୍ୱନା ଦେବେ, ଶ୍ରୀମତୀଙ୍କୁ ଏହି ହେଉଛି ତାଙ୍କର ନୈରାଶ୍ୟବ୍ୟଞ୍ଜକ ପ୍ରଶ୍ନ ।

ମିଳନ ପାଇଁ ଦୂତୀର ବ୍ୟାକୁଳତା ପ୍ରକାଶ ପାଇଛି ଅନ୍ୟ ଦୁଇଟି ଗୀତରେ । ଗୋଟିଏ ଗୀତରେ (ବାହୁନ ବାହୁନରେ ଗୁଣ, ଗ୍ରଂ., ପୃ-୫୧୮) ମାନିନୀ ଶ୍ରୀମତୀଙ୍କୁ ଦୂତୀ କହୁଛି—ଶ୍ୟାମ ତାଙ୍କର ଗୁଣ ବାହୁନି ବାହୁନି ଯମୁନା ତଟ ଉପବନରେ ଲେଟି ଯାଉଛନ୍ତି । ସାରୀକି ପ୍ରସାରିତ କରରେ ବସାଇ ସ୍ୱାମିନୀଙ୍କୁ ଆସିବା ପାଇଁ ଡାକିବାକୁ କହୁଥିଲେ, କହୁଁ କହୁଁ ଚକ୍ଷୁ ଲୋତକରେ ଛଳ ଛଳ ହେଉଥିଲେ । ଆସୁଥିବେ ବୋଲି ଅଧୀର ଆଗ୍ରହରେ ଘଡ଼ିକୁ ଘଡ଼ି ଭ୍ରୂବଲ୍ଲୀ ତୋଳି ଚାହୁଁଥିଲେ । ବ୍ୟଥିତା ଦୂତୀ ଶ୍ୟାମଙ୍କର ସମସ୍ତ ଦୋଷ ନିଜ ଉପରକୁ ନେଇ ବେଶ ହୁଅନ୍ତୁ ବା ନ ହୁଅନ୍ତୁ ଶ୍ରୀମତୀଙ୍କୁ ଅଗ୍ରସର ହେବାପାଇଁ ଅନୁରୋଧ କରିଛି । କବି ମଞ୍ଜରୀ ସ୍ୱଭାବରେ ଉପଗ୍ରହ ସମୂହ ଯେମିତି ଅଗ୍ରସର ହୁଅନ୍ତି ଏବଂ ସଖୀମାନେ ନଖରୁ ଶିଖ ପର୍ଯ୍ୟନ୍ତ ଶ୍ରୀମତୀଙ୍କୁ ସଜ୍ଜିତ କରନ୍ତି । ଅନ୍ୟ ଗୀତଟିରେ (ନନ୍ଦ ନନ୍ଦନ-ଇନ୍ଦୀବର-ଇନ୍ଦୁ ତୋ ଲାଗି, ଗ୍ରଂ., ପୃ-୫୧୮) ସଖୀ ଶ୍ରୀମତୀଙ୍କ ପାଇଁ ଶ୍ରୀକୃଷ୍ଣଙ୍କ ଧ୍ୟାନସ୍ଥ ଅବସ୍ଥା ବର୍ଣ୍ଣନା କରି କହେ ଯେ ଶ୍ୟାମ ଯୋଗୀଋଷିଙ୍କ ପରି ଚକ୍ଷୁ ନିମୀଳିତ କରି ଅନ୍ତରେ ତାଙ୍କ ରୂପ ଧ୍ୟାନ କରି ନିଭୃତ କୁଞ୍ଜରେ ଜାଗି ରହିଛନ୍ତି । ଶ୍ୟାମପ୍ରେରିତ ଚଟାଇ ପ୍ରସଙ୍ଗର ସୂଚନା ଦେଇ ବିଳମ୍ବ ନକରି ଅଗ୍ରସର ହେବାପାଇଁ ଦୂତୀ ଅନୁରୋଧ କରିଛି ।

ଏହିପରି କେତୋଟି ଗୀତରେ ଶ୍ୟାମଙ୍କର ବିରହ ବ୍ୟାକୁଳତା, ମାନିନୀ ରାଧାଙ୍କୁ ଦୂତୀର ଅନୁଯୋଗ ଓ କୁଞ୍ଜ ମିଳନର ସୂଚନା ଦିଆଯାଇଛି । ଗୋଟିଏ ଗୀତରେ (ସହଚରି ! ଏକା ରହିଛନ୍ତି ବଂଶୀଧାରୀରେ, ଗ୍ରଂ. ପୃ-୫୨୨) ସଖୀ ନାୟକ ବଂଶୀଧାରୀଙ୍କର ଅବସ୍ଥା, ବିରହୋପଶମର ଏବଂ ପକ୍ଷୀ ଜଗତରେ ତା'ର ପ୍ରତିଦ୍ୱନ୍ଦ୍ୱିତାର ସୂଚନା ଦେଇ ଯାଇ କହୁଛି—

ସାରି ଶୁକ ପିକ କୃଷ୍ଣ କଦନରେ,
ମୂକ ହୋଇ ଅବନତ ବଦନରେ,

ରହିଁଛନ୍ତି ଚନ୍ଦ୍ର ପିନ୍ଧିଲା ପରିରେ
ବକୁଳ କୁଞ୍ଜରେ ପୂରିରେ ।୨। (ଗ୍ରଂ., ପୃ-୫୨୨)

କେବଳ ମାନବ ନୁହେଁ, ପ୍ରକୃତି ଏ କ୍ଷେତ୍ରରେ ସମ୍ବେଦନଶୀଳ ହୋଇଉଠିଛି । ମାନବ ଓ ପ୍ରକୃତି ମଧ୍ୟରେ ପାରସ୍ପରିକ ମଧୁର ପ୍ରତିକ୍ରିୟାର ବ୍ୟଞ୍ଜନାଟି କିପରି ମନୋଜ୍ଞ ଓ ପ୍ରାଣସ୍ପର୍ଶୀ ହୋଇଛି, ଏଠାରେ ଲକ୍ଷ୍ୟ କରାଯାଇପାରେ ।

ଅନ୍ୟ ଏକ ଗୀତରେ ସଖୀ ବିରହୀ ଶ୍ୟାମଙ୍କର ଉନ୍ମାଦ ଓ ଭ୍ରାନ୍ତି ବର୍ଣ୍ଣନା କରି କହୁଛି—ଶ୍ୟାମ ଶ୍ରୀମତୀଙ୍କର ଅନ୍ୱେଷଣରେ ଯମୁନାତୀରସ୍ଥ ନିକୁଞ୍ଜରେ ଚମ୍ପକ ବଲ୍ଲୀକୁ ରହି ରାଧା ଭ୍ରମରେ ଭୁଜରେ ଆଶ୍ଳେଷ କରୁଛନ୍ତି—

ରହୁଁ ଚମ୍ପକ ବଲ୍ଲୀ   ସଜନି ! ତୁହି ବୋଲି
ଶ୍ୟାମ ଶ୍ରୀଭୁଜରେ ତ ଭିଡ଼ାଇଲେରେ ।୩। (ଗ୍ରଂ., ପୃ-୫୨୩)

ଶିଖଣ୍ଡି ମୁକୁଟ ମଥାରୁ ଖସି ପଡୁଛି । ବିରହୋପଶମର ନିମିତ୍ତ କିଶଳୟ ସଂଗ୍ରହ ପାଇଁ ସୁବଳଙ୍କର ବ୍ୟସ୍ତତା ସେ ଦେଖି ଆସିଛନ୍ତି । ଗୀତ ଶେଷରେ ଶ୍ୟାମ ଓ ଶ୍ରୀମତୀଙ୍କର ଭେଟର ପାରମ୍ପର୍ଯ୍ୟହୀନ ସୂଚନାମାତ୍ର ଦିଆଯାଇଛି ।

ଭୂଷଣମଣ୍ଡିତା ଅଭିସାରିଣୀର ନେତ୍ର-ଅପାର ଓ ଅଧୋବଦନ ଶ୍ୟାମଙ୍କ ଚିତ୍ତ ବିକ୍ଷୁବ୍ଧ କରିଛି । ବିରହୀ ଶ୍ୟାମ ପାଗଳ ପ୍ରାୟ ହୋଇ ସୀତା ବିରହୀ ରାମଙ୍କ ତୁଲ୍ୟ ବୃନ୍ଦାଟବୀର ପ୍ରତ୍ୟେକ ପଶୁପକ୍ଷୀ, ପ୍ରତ୍ୟେକ ବୃକ୍ଷ ଓ ବଲ୍ଲୀକୁ ଶ୍ରୀମତୀଙ୍କର ସମ୍ବାଦ ଜିଜ୍ଞାସା କରୁଛନ୍ତି । ଚିତ୍ତର ଅବସ୍ଥା ବିଶେଷରେ କାନନର ବୃକ୍ଷଲତା, ପଶୁପକ୍ଷୀ ସତେ ଯେପରି ମାନବରୂପ ପରିଗ୍ରହ କରିଛନ୍ତି । ପୂର୍ବଗୀତ ପରି ମାନବ ଓ ପ୍ରକୃତି ମଧ୍ୟରେ ପାରସ୍ପରିକ ନିବିଡ଼ ସମ୍ପର୍କର ବ୍ୟଞ୍ଜନା ଏଠାରେ ଲକ୍ଷିତ ହୁଏ । ଚିତ୍ରପଟ ଓ ଦର୍ପଣରେ ଶ୍ୟାମଙ୍କର ବାମଭାଗରେ ଶ୍ରୀମତୀ ନିଜର ପ୍ରତିବିମ୍ବକୁ ଅନ୍ୟ ନାରୀ ବୋଲି ଅଭିମାନ ଓ ଅସୂୟାର ଶିକାର ହୁଅନ୍ତି । ମାଧବଙ୍କ ବକ୍ଷଃସ୍ଥ ମଣିରେ ନିଜର ପ୍ରତିବିମ୍ବକୁ ଅନ୍ୟ ନାରୀ ବୋଲି ସମ୍ଭାବନା କରି ବିଦଗ୍ଧ ମାଧବର ରାଧା ଏହିପରି ଅଭିମାନିନୀ ହୋଇଛନ୍ତି । (ମଦନମୋହନ ମନମୋହିନୀରେ, ଗ୍ରଂ.. ପୃ-୫୨୪)

ଶ୍ରୀମତୀଙ୍କର ମାନଭଙ୍ଗ ନିମିତ୍ତ ସଖୀ ଓ ଦୂତୀଙ୍କର ପ୍ରଚେଷ୍ଟା ସହିତ ଶ୍ୟାମଙ୍କର ସମସ୍ତ ପ୍ରକାର ପ୍ରୟାସ ରାଗରସର ଅଙ୍ଗ । ବଙ୍ଗୀୟ ବୈଷ୍ଣବ ପଦାବଳୀ ସାହିତ୍ୟରେ ଏହି ରାଗରସ ବା ରଙ୍ଗଲୀଳାର ମନୋଜ୍ଞ ଚିତ୍ରମାଳା ପରିଦୃଷ୍ଟ ହୁଏ (୪୯) । ପୂର୍ବଗୀତ ପରି ଅନ୍ୟ ଏକ ଗୀତରେ (କହିଲେ ବହିବୁ ବେଶରେ, ଗ୍ରଂ., ପୃ-୫୨୬) ଦୂତୀ ସେବକ ଭାବରେ ଶ୍ୟାମଙ୍କର ରସିକତା ପୂର୍ଣ୍ଣ ପ୍ରୟାସର ସଙ୍କେତ ଦେଇ ଶ୍ରୀମତୀଙ୍କର ମାନଭଙ୍ଗର ଚେଷ୍ଟା କରିଛି । ଦୂତୀ କହୁଛି—ଶ୍ରୀମତୀ ବ୍ରଜେନ୍ଦ୍ରଙ୍କୁ ନିଜର କର·କୋଡ଼ରେ କ୍ରୀଡ଼ାପୁତ୍ତଳିକା ପ୍ରାୟ ନଚାଇଲେ । ଥରକୁ ଥର ପତ୍ରାବଳୀ (ଉରଜରେ କସ୍ତୁରୀ ସାହାଯ୍ୟରେ ଚିତ୍ର) ଓ ମକରୀ

(୪୯) ପ. ସା., ପୃ-୧୯୦-୨୦୨,

ରଚନା କରିବାରେ ଶ୍ୟାମଙ୍କୁ ଢଳ ଅଣ୍ଟୁ ନାହିଁ (୫୦) । ସଖୀମାନଙ୍କର ଅଜଣାରେ ଆଉ ଯେତେପ୍ରକାର ସେବା ଚାଲିଛି, ତା'ର ସାକ୍ଷୀ ଏକା ନିଜେ ଶ୍ରୀମତୀ । କାହାର ଛାୟା ପରି ପାଖରେ ରହି ସେ କେଉଁ ସେବା ନ କରୁଛନ୍ତି ? ଅଥଚ ପଦରେ ଅଳକ୍ତକ ରାଗ ରଚନା କରିବାର ଆଗ୍ରହ ପ୍ରକାଶ କଲେ ଶ୍ରୀମତୀ ନିଷେଧ କରୁଛନ୍ତି ! ମୂହୂର୍ତ୍ତେ ମାତ୍ର ଗ୍ରାମରୁ ଅନ୍ତର ହେଲେ ବୃନ୍ଦାବନ ଯାକ ବୁଲି ଯେ ଅଶ୍ରୁଳ ନୟନରେ ଶ୍ରୀମତୀଙ୍କର ପଦଚହ୍ନର ଧୂଳି ବୋଳି ହେଉଛନ୍ତି, ତାଙ୍କ ଦୃଷ୍ଟିରେ ସେହି ନିକୁଞ୍ଜ ବିହାରୀଙ୍କର ଅଧୁର କ'ଣ ଧର୍ତ୍ତବ୍ୟ ଅପରାଧ ରହିଛି ? (୫୧) ।

ମାନାବସାନେ କୃଷ୍ଣ ସଙ୍କେତ ଶୀର୍ଷକ ଗୀତରେ (ଗ୍ରଂ, ପୃ-୫୨୭) ଶ୍ୟାମଙ୍କ ସହି ମିଳିତ ହେବାପାଇଁ ଶ୍ରୀମତୀଙ୍କର କର୍ଣ୍ଣ କଣ୍ଡୁୟନ, ଜୃମ୍ଭା ଏବଂ ବ୍ରଜବଧୂଙ୍କ ବିରହ ଦୁଃଖରେ ଅଶ୍ରୁଳ ନୟନ ପ୍ରଭୃତି ଭାବଭାବର ମଞ୍ଜୁଳ ରାଗରସପୂର୍ଣ୍ଣ ଚିତ୍ର ରହିଛି ।

**(ଛ) ଶ୍ରୀକୃଷ୍ଣଙ୍କ ଦୈନ୍ୟ ଓ ଚାଟୂକ୍ତି**—ପ୍ରାଥମିକ ପର୍ଯ୍ୟାୟରେ ଶ୍ରୀମତୀଙ୍କର ମାନଭଞ୍ଜନ ନିମିତ୍ତ ଶ୍ରୀକୃଷ୍ଣଙ୍କର ଦୈନ୍ୟ ଓ ଚାଟୂକ୍ତି ସୂଚକ ଚାରୋଟି ଗୀତ ସଂପର୍କରେ ଆଲୋଚନା କରାଯାଇଛି । ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସନ୍ନିବିଷ୍ଟ ସେହି ଦୈନ୍ୟ ଓ ଚାଟୂକ୍ତି ବ୍ୟଞ୍ଜକ ଆଉ ଛ'ଟି ଗୀତ ରା. କୃ. ଓ କୃ. ନ. ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ନାହିଁ । ଏହି ପ୍ରକାର ଗୀତଗୁଡ଼ିକର ରଚନାରେ ଜୟଦେବ, ଉପେନ୍ଦ୍ର ଭଞ୍ଜ, ଓ କବିସୂର୍ଯ୍ୟଙ୍କ ଭାବ, ଶବ୍ଦଗୁମ୍ଫନ ଓ ଆଳଙ୍କାରିକ ପରମ୍ପରା କିପରି ଅନୁସୃତ ତା'ର ସୂଚନା ପୂର୍ବରୁ ଦିଆଯାଇଛି । ଦୈନ୍ୟ ଓ ଚାଟୂଗୀତଗୁଡ଼ିକ ସମ୍ଭୋଗ ଶୃଙ୍ଗାରମୁଖୀ ଓ ଐନ୍ଦ୍ରିକ ଚେତନା ପୂର୍ଣ୍ଣ ହୋଇଥିବାରୁ (ସ୍ଥାନେ ସ୍ଥାନେ ସ୍ଥୂଳ ରୁଚି ସମ୍ପନ୍ନ) କେବଳ ଛନ୍ଦ, ଭାଷା, ଶବ୍ଦଶିଳ୍ପ ଚାତୁରୀ ଓ ସଙ୍ଗୀତଧର୍ମୀ ଆନୁପ୍ରାସିକ ସୌଷ୍ଠବକୁ ଛାଡ଼ିଦେଲେ ଏ ଗୁଡ଼ିକରେ ଭାବଗତ ଉତ୍କର୍ଷ ଲକ୍ଷିତ ହୁଏନାହିଁ । ଓଡ଼ିଶାର ଲୋକପ୍ରିୟ ଶୃଙ୍ଗାରଧର୍ମୀ ଚଉପଦୀଗୁଡ଼ିକର ସହଜଲଭ୍ୟ ସ୍ଥୂଳ ଗତାନୁଗତିକତାର ଆଦର୍ଶର ବ୍ୟତିକ୍ରମ ଘଟାଇବା ବୈଷ୍ଣବ କବି ଗୋପାଳକୃଷ୍ଣ ଓ ଅନ୍ୟ ବୈଷ୍ଣବେତର କବିମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । ଓଡ଼ିଶାର ବହୁ ଶୃଙ୍ଗାରୀ କବି ସଙ୍ଗୀତ ଓ କାବ୍ୟରେ ଏହି ଚାଟୂକ୍ତି ରଚନାରେ ନିଜ ନିଜ କବିତ୍ୱ ପ୍ରଦର୍ଶନର ଏକ ନିଷ୍ଫଳ ପ୍ରୟାସ କରିଛନ୍ତି ।

ଏହି ଗୀତଗୁଡ଼ିକରେ ଗତାନୁଗତିକ ସଂଭୋଗମୁଖୀ ଐନ୍ଦ୍ରିକ ଚେତନା ଓ ସ୍ଥୂଳଶୃଙ୍ଗାର ରୋମନ୍ଥନ ବ୍ୟତୀତ କିଛି ନୂତନତ୍ୱ ଆଶା କରିବା ବିଡ଼ମ୍ବନା ମାତ୍ର । ଶ୍ରୀକୃଷ୍ଣଙ୍କ ଚାଟୂକ୍ତିରେ ନାୟିକା ଓ ତାଙ୍କର ସୌଷ୍ଠବାନ୍ୱିତ ଅଙ୍ଗପ୍ରତ୍ୟଙ୍ଗର ଐନ୍ଦ୍ରିକ ଆବେଗ ପୂର୍ଣ୍ଣ ଅତିଶୟୋକ୍ତି-ବହୁଳ ପ୍ରଶଂସା ମାତ୍ର ରହିଛି ।

ଭୂମଣ୍ଡନା ମାନିନୀ ରାଧାଙ୍କ ବିନା ପ୍ରଚଣ୍ଡ ମଦନର ବାଣଘାତରୁ ତାଙ୍କୁ ପରିତ୍ରାଣ କରିବା ପାଇଁ କେହି ନାହିଁ । ମାନ ତ୍ୟାଗ କରି କୁନ୍ଦଦଶନା ଖଞ୍ଜନ ନୟନୀ ଶ୍ରୀମତୀ

(୫୦) ଗୀ. ଗୋ. ୧୨।୨୪।୧୭, ପୃ-୧୫୬,
(୫୧) ବି. ଚ., ୪୮।୩୦.

ପାଦରେ ନୂପୁର ଖଚିତ କରି କଟିର କିଙ୍କିଣୀ ନିନାଦରେ ରସ ପ୍ରବନ୍ଧରେ (ଶୃଙ୍ଗାର ବନ୍ଧରେ) ତାଙ୍କର ସୁଖବିଧାନ କରିବାକୁ ବିନୀତ ନିବେଦନ କରୁଛନ୍ତି । ଭାବ-ଦୁର୍ବଳତା ସତ୍ତ୍ୱେ ଚମତ୍କାର ଭାଷାଶିଳ୍ପ, ଆନୁପ୍ରାସିକ ସୌଷ୍ଠବ ଉପରି ସାଙ୍ଗୀତିକ ମାଧୁର୍ଯ୍ୟର ମୋହ ସୃଷ୍ଟି କରିଛି, ଲକ୍ଷ୍ୟ କରିଯାଇପାରେ—

ପୁଷ୍ପମାଳିନି ମାନିନି ଗଜଗାମିନି ତେଜ ମାନରେ ।
ଆଜ ମୋ ପରିହାସ ତୋ ବିନୁ ନାହିଁ କାହିଁ ସମାନରେ । ଘୋଷା ।
ଚଣ୍ଡରେ ସ୍ମର କାଣ୍ଡ ଗୁଣ୍ଡରେ ମଣ୍ଡଳୀକୃତ ଗୃପରେ ।
ମଣ୍ଡନା ମହାମଣ୍ଡନା ଏବେ ଖଣ୍ଡ ମୋ ପରିତାପରେ ।୧।
ରଞ୍ଜ ଅଞ୍ଜନ ଖଞ୍ଜନେକ୍ଷଣୀ ଖଞ୍ଜ ମଞ୍ଜୀର ପାଦରେ ।
ମଞ୍ଜୁ ଭାଷିଣୀ ସଞ୍ଚ ମୋର ସୁଖ ପୁଞ୍ଜ କାଞ୍ଚୀ ନିନାଦରେ ।୨। (ଶ୍ରୀ., ପୃ-୫୨୯)

ଶ୍ୟାମଙ୍କର ଦୃଷ୍ଟିରୁ ଅନୁଯାୟୀ ଶ୍ରୀମତୀ ହୋଇଛନ୍ତି ପଦ୍ମଗନ୍ଧା, ଯୋଷାସାର, ବ୍ରଜନାରୀ ମଥାମଣି, ମରାଳ ଗମନା, ଶରଣବତ୍ସଳା, ନିଧୁବନ କେଳି କୁଶଳା, ରସାଳସା, ନିଭୃତ କୁଞ୍ଜନିଳୟଭୂଷା । ଗୀତଗୋବିନ୍ଦର ମାଧବଙ୍କ ପରି ଶ୍ରୀକୃଷ୍ଣ କୋକନଦଜିତ ଅଧରରୁ ମଧୁପାନ କରାଇ ଅପରାଧ ଥିଲେ ବାହୁପାଶରେ ବାନ୍ଧି ଦଣ୍ଡଦେବାକୁ ରସସିନ୍ଧୁ ଶ୍ରୀମତୀଙ୍କ ଠାରେ ଦୈନ୍ୟ ପ୍ରକାଶ କରିଛନ୍ତି (୫୨) ।

ଗୋଟିଏ ଗୀତ (ଆରେ ପ୍ରାଣଧନ ! ଘେନ ମୋର ଏହି ନିବେଦନ ଶ୍ରୀ., ପୃ-୬୪୭) ଗୀତଗୋବିନ୍ଦର ଏକ ଗୀତର ଅବିକଳ ଅନୁକରଣରେ ରଚିତ । ମାନମୟୀ ରାଧାଙ୍କୁ ମାନର ଅବସାନ ଘଟାଇବାକୁ ନିବେଦନ କରି ଶ୍ରୀକୃଷ୍ଣ କାମାବଶ ଚିତ୍ତରେ ତାଙ୍କର ଚରଣ ସେବାରେ ଚରମ ଦାସତ୍ୱ ବରଣ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ସେ କହିଛନ୍ତି—ଚନ୍ଦ୍ରମୁଖୀ ଶ୍ରୀମତୀଙ୍କର ସେ ଚିର ଅନୁଗତ ଦାସ । ଦାସ ପ୍ରତି ମାନ ଶୋଭନୀୟ ନୁହେଁ । ପଲ୍ଲବ ଶଯ୍ୟାମଣ୍ଡିତ ତାଙ୍କର କୋମଳ ପଦାବ୍ଜ ଦ୍ୱୟ ତାଙ୍କ ବକ୍ଷରେ ଲଗାଇ ଶୀତଳ କରିବାକୁ ଏବଂ ମଞ୍ଜୀର ପ୍ରାପ୍ତ ପଦଯୁଗଳର ସେବାରେ ନିଜକୁ କୃତାର୍ଥ କରିବାକୁ ନିବେଦନ କରୁଛନ୍ତି । ତାଙ୍କର ଅମୃତମୟ ବାଣୀ ଶ୍ରବଣରେ ପୀନପୟୋଧରର ଆଚ୍ଛାଦନ ଅପସାରଣ କରିବାକୁ ସେ ପ୍ରସ୍ତୁତ ଅଛନ୍ତି । ତାଙ୍କ ହୃଦୟରେ ପୀନ ବକ୍ଷୋଜ ଯୁଗଳର ସ୍ଥାପନ ଓ ଆଲିଙ୍ଗନ ଦ୍ୱାରା ମଦନ ଜ୍ୱାଳା ପ୍ରଶମିତ କରିବାକୁ ତାଙ୍କର ବିନୀତ ନିବେଦନ । ଏହି ବର୍ଣ୍ଣନା ଗୀତଗୋବିନ୍ଦର ଉପରି ଅବିକଳ ଅନୁକୃତି, ଲକ୍ଷ୍ୟ କରାଯାଉ—

କରକମଳେନ କରୋମି ଚରଣମହମାଗମିତାସି ବିଦୂରମ୍ ।
କ୍ଷଣମୁପକୁରୁ ଶୟନୋପରି ମାମିବ ନୂପୁରମନୁଗତି ଶୂରମ୍ ।।୩।।
ବଦନ ସୁଧାନିଧି-ଗଳିତମମୃତମିବ ରଚୟ ବଚନମନୁକୂଲମ୍ ।
ବିରହମିବାପନୟାମି ପୟୋଧରରୋଧକମୁରସି ଦୁକୂଳମ୍ ।।୪।।

(୫୨) ଗୀ. ଗୋ., ୧୦।୧୨।୪, ପୃ-୧୧୭

ସ୍ମିତ ସୁପରିରମ୍ଭଣରଭସବଳିତମିବ ପୁଲକିତମତିଦୁରବାପମ୍ ।
ମଧୁରପି କୁଚକଳସଂ ବିକଟେଣସ୍ୟ ଶୋଷସ୍ୟ ମନସିଜତାପମ୍ ।।୫।।
ଅଧରସୁଧାରସମୁପନୟ ଭାମିନି ଜୀବୟ ମୃତମିବ ଦାସମ୍ ।
ତ୍ୱୟି ବିନିହିତ ମାନସଂ ବିରହାନଳଦଗ୍ଧବପୁଷମବିଳାସମ୍ ।।୬।।

(ଗୀ. ଗୋ., ୨।୨୩, ପୃ-୧୪୪।୧୪୫)

ଗୀତଟି ଗତାନୁଗତିକ ଶୃଙ୍ଗାରଧର୍ମୀ ଗ୍ରନ୍ଥର ଏକ ପ୍ରକାର ରୋମନ୍ଥନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଗୀତ ସହିତ ଅନ୍ୟ ଗୀତଗୁଡ଼ିକର ନୀରସ ଗଦ୍ୟଧର୍ମୀ ପଦ-ଗୁମ୍ଫନା, ଗୀତକାବ୍ୟସୁଲଭ ସୌଷ୍ଠବହୀନ ପ୍ରକାଶ ରୀତି ହେତୁ ସେ ଗୁଡ଼ିକର ଜନକତ୍ୱ ସମ୍ପର୍କରେ ସନ୍ଦେହ ଜାତ ହୁଏ (୫୩) ।

ସରୋଜ କୁମାର ପାଣିଗ୍ରାହୀଙ୍କ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ (ପ୍ରଥମ ଭାଗ)ର ରାଧାକୃଷ୍ଣ ଲୀଳାତ୍ମକ ନୂତନ ଗୀତଗୁଡ଼ିକ ମଧ୍ୟରେ ଅଧିକାଂଶ ଗୀତ ମାନିନୀ ରାଧା ଓ ଶ୍ରୀକୃଷ୍ଣଙ୍କର ଅନୁଶୋଚନା ସମ୍ପର୍କୀୟ । ବସ୍ତୁ ବର୍ଣ୍ଣନା ଗତାନୁଗତିକ ଓ ଭାବ ଦୁର୍ବଳ ହୋଇଥିବାରୁ ଅଧିକାଂଶ ଗୀତର ପିତୃତ୍ୱ ସମ୍ପର୍କରେ ସନ୍ଦେହ ଜାତହୁଏ । ଦୃଷ୍ଟାନ୍ତ ସ୍ୱରୂପ ଏ ସମ୍ପର୍କରେ 'ଅଭିମାନ ଅଗ୍ନି' (ପୃ-୨୧୬), 'ଆହେ ଶ୍ୟାମ ଘନ ତୁମ ଲାଗି ଯେନ' (ପୃ-୧୭୫), 'କହ କହ ସହଚରି' (ପୃ-୧୮୦), 'କି କଲି କି କଲି ମୋର' (ପୃ-୨୧୮), 'ଘନ କାଳେ ବନଜାକ୍ଷି' (ପୃ-୩୪୫); 'ଘାର ନ ହୁଅ ବଂଶୀଧାରି ହେ' ପୃ-୨୧୯), 'ମିଛଣି ତାକୁ କହିଦେ' (ପୃ-୩୫୮) ଏବଂ 'ଶୁଣ ଗୋ କିଶୋରୀମଣି' (ପୃ-୨୬୭) ଗୀତ ଗୁଡ଼ିକ ଦ୍ରଷ୍ଟବ୍ୟ । ଗୀତଗୁଡ଼ିକ ଅସ୍ୱାଭାବିକ ବସ୍ତୁ କଳ୍ପନା (ଶୁଣ ଗୋ କିଶୋରୀମଣି), କଳା-ସୌଷ୍ଠବହୀନ ଚିତ୍ରକଳ୍ପନା (ଶ୍ରୀକୃଷ୍ଣଙ୍କ ନାପିତାବେଶ, ମିଛଣି ତାକୁ କହି ଦେ), ଗଦ୍ୟଧର୍ମିତା, କଷ୍ଟତା, ଓ କବିତ୍ୱହୀନତା (କି କଲି କି କଲି ମୋର) ପ୍ରଭୃତି ଦୋଷ ଦୁଷ୍ଟ । ଗୋପାଳକୃଷ୍ଣ 'ପଡ଼ି' ପ୍ରୟୋଗରେ ରାଧାଙ୍କର ପ୍ରାଣର ବେଦନା ଓ ବିରହର ଛବି ଅଙ୍କନ କରି ନାହାନ୍ତି, କିନ୍ତୁ କୌଣସି ଛଦ୍ମ ଗୋପାଳକୃଷ୍ଣ ଭଙ୍ଗୀୟ ରୀତିରେ ଓ କବିସୂର୍ଯ୍ୟ ବଳଦେବଙ୍କ 'ପଡ଼ି' ପ୍ରୟୋଗ ଆଦର୍ଶରେ 'ଆହେ ଶ୍ୟାମଘନ ତୁମ୍ଭ ଲାଗି ଯେନ' ଗୀତଟି ରଚନା କରିଛନ୍ତି । ଏ ଗୀତରେ ବୈଷ୍ଣବୀୟ ରଚନା ରୀତି ଅପେକ୍ଷା ଭଞ୍ଜ ଓ କବିସୂର୍ଯ୍ୟଙ୍କ ସଙ୍ଗୀତ ପରମ୍ପରା ଅଧିକ ଲକ୍ଷିତ ହୁଏ । ସେହିପରି କାର୍ତ୍ତିକ ଧ୍ୱନିରେ ରଚିତ ରାଧାଙ୍କର କୃଷ୍ଣଙ୍କ ପ୍ରତି ଅଭିମାନ ଗୀତଟିରେ ଗୀତ ସୁଲଭ ରଚନାଭଙ୍ଗୀ ଅପେକ୍ଷା ଛାନ୍ଦସୁଲଭ ବର୍ଣ୍ଣନାଭଙ୍ଗୀ (ଛାନ୍ଦ ସ୍ୱର, ଛାନ୍ଦ ବସ୍ତୁର ପ୍ରଭାବ ଓ ପ୍ରେରଣା) ଲକ୍ଷଣୀୟ ।

**ମାନାବସାନ ଓ କଳହାନ୍ତରିତା ରାଧା :**

ଶ୍ରୀକୃଷ୍ଣଙ୍କ ଗ୍ରନ୍ଥି ଓ ନତି ଏବଂ ସଖୀ ଓ ଦୂତୀମାନଙ୍କର ଅନୁଯୋଗ ସତ୍ତ୍ୱେ ଦୁର୍ଜ୍ଜୟ ମାନିନୀ ରାଧାଙ୍କର ମାନର ଅବସାନ ଘଟେନା । ପ୍ରିୟତମଙ୍କୁ ଉପେକ୍ଷା କରି ଶ୍ରୀମତୀ

(୫୩) ଗ. ବ., ପୃ-୬୩୯।୬୪୦।୬୪୨।୬୮୭ ଦ୍ରଷ୍ଟବ୍ୟ ।

ଶେଷରେ ନିଜେ ଏକ ପ୍ରକାର ଉପେକ୍ଷିତା ହେଲାପରି ମନେ କରନ୍ତି । ଗୀତଗୋବିନ୍ଦ ଓ ବିଦଗ୍ଧ ମାଧବ ନାଟକରେ କାହ୍ନାଣୀ ଅନୁକ୍ରମରେ ଏବଂ ବଙ୍ଗୀୟ ପଦାବଳୀ ସାହିତ୍ୟରେ ରାଧାଙ୍କର ଶ୍ୟାମ ଉପେକ୍ଷା ପରେ 'କଳହାନ୍ତରିତା' ଅବସ୍ଥାର ମନୋଜ୍ଞ ଚିତ୍ର ରହିଛି (୫୪) । ଗୋପାଳକୃଷ୍ଣଙ୍କ ରଚନାରେ ଖଣ୍ଡିତା ରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଆକ୍ଷେପୋକ୍ତି ପରେ ଦୁର୍ଜୟ ଅଭିମାନ, ମାନଭଙ୍ଗ ନିମିତ୍ତ ସଖୀମାନଙ୍କର ଅନୁଯୋଗ, କୃଷ୍ଣଙ୍କର ଚାଟୂକ୍ତି ଓ ଦୈନ୍ୟ ଏବଂ ଶ୍ରୀମତୀଙ୍କର ମାନବତୀ ଓ ଔଦାସିନ୍ୟର ଚିତ୍ର ଦିଆଯାଇଛି; କିନ୍ତୁ ରାଧା କମ୍ବା ଶ୍ରୀକୃଷ୍ଣଙ୍କର ପ୍ରତ୍ୟକ୍ଷ ଉପେକ୍ଷାର ଚିତ୍ର ଦିଆଯାଇନାହିଁ । କାହ୍ନାଣୀ ଅନୁକ୍ରମର ଅଭାବସତ୍ତ୍ୱେ ବୃନ୍ଦାବନୀ ପ୍ରେମଲୀଳାର ସିଦ୍ଧରସତ୍ୱ ଏବଂ ରାଧା ଓ କୃଷ୍ଣଙ୍କର ସିଦ୍ଧରସ-ମୂର୍ତ୍ତିତ୍ୱ ହେତୁ ରାଧାଙ୍କର କଳହାନ୍ତରିତା ଅବସ୍ଥାର ଚିତ୍ର ରସଜ୍ଞ ପାଠକଙ୍କ ନିକଟରେ ଅପ୍ରାସଙ୍ଗିକ ବା ଅସ୍ୱାଭାବିକ ବୋଧହୁଏ ନାହିଁ ।

ରୂପ ଗୋସ୍ୱାମୀ କଳହାନ୍ତରିତାର ଲକ୍ଷଣ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—

> ଯା ସଖୀନାଂ ପୁରଃ ପାଦପତିତଂ ବଲ୍ଲଭଂ ରୁଷା ।
> ନିରସ୍ୟ ପଶ୍ଚାତ୍ତପତି କଳହାନ୍ତରିତା ହି ସା ।।
> ଅସ୍ୟାଃ ପ୍ରଳାପ-ସନ୍ତାପ-ଗ୍ଲାନି-ନିଶ୍ୱସିତାଦୟଃ ।।୪୮ ।।
>
> (ଉ. ନୀ., ନାୟିକାଭେଦଃ, ପୃ-୬୦୧)

ଅର୍ଥାତ୍ ଯେଉଁ ନାୟିକା ସଖୀମାନଙ୍କ ସମକ୍ଷରେ ପଦାନତ ବଲ୍ଲଭଙ୍କୁ ପରିତ୍ୟାଗ କରି ପଛରେ ଅତିଶୟ ଅନୁତାପ କରେ, ତାହାକୁ କଳହାନ୍ତରିତା କୁହାଯାଏ । ପ୍ରଳାପ, ସନ୍ତାପ, ଗ୍ଲାନି ଓ ଦୀର୍ଘ ନିଶ୍ୱାସ ତ୍ୟାଗ ପ୍ରଭୃତି କଳହାନ୍ତରିତା ନାୟିକାର ଚେଷ୍ଟା ।

ଗୋପାଳକୃଷ୍ଣଙ୍କ ରଚନାରେ ରାଧାଙ୍କର କଳହାନ୍ତରିତା ଅବସ୍ଥାର ପଶ୍ଚାତ୍ତାପ ଆଠଟି ଗୀତରେ ପରିଦୃଷ୍ଟ ହୁଏ । ଗୋଟିଏ ଗୀତରେ (ମୁଁ ତ ଜାଣି ଜାଣି କରିଛି ମାନ, ଗ୍ରଂ. ବ., ପୃ--୫୦୬) ରାଧା ସ୍ୱଗତୋକ୍ତି ଛଳରେ ନିଜ ହୃଦୟର ବେଦନା ପ୍ରକାଶ କରି କହିଛନ୍ତି ଯେ,ସେ ନିଜେ ଅଭିମାନ କରି ସ୍ୱହସ୍ତରେ ବିଷ ପାନ କରିଛନ୍ତି । ଜାଣି ଜାଣି ଯେତେ-ବେଳେ ମାନ ଭୁଜଙ୍ଗୀର ଆଶ୍ରୟ ନେଇଛନ୍ତି, ଅନ୍ୟ ପ୍ରତି ଦୋଷାରୋପ କରିବାର କିଛି ନାହିଁ। ନିଜେ ଅଦୃଷ୍ଟକୁ ସ୍ୱୀକାର କରି କହିଛନ୍ତି : ତାଙ୍କର କର୍ମଦୋଷ ତାଙ୍କୁ ଭୋଗ କରିବାକୁ ହେବ । ଶ୍ୟାମ କର ପ୍ରସାରି ନିଜର ଅପରାଧ କ୍ଷମାପାଇଁ ବିନୟବାଣୀ ପ୍ରକାଶ କଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ ନକରି ନିର୍ଦ୍ଦୟବାଣୀ ଶୁଣାଇ ଏବେ ଭାଗ୍ୟର ବିଡ଼ମ୍ବନା ଭୋଗୁଛନ୍ତି (ନନ୍ଦ ନନ୍ଦନ ହୃଦ ପଦ୍ମ ଚନ୍ଦନଙ୍କୁ, ଗ୍ରଂ.,ପୃ-୫୦୬) । ଅନ୍ୟ ଏକ ଗୀତରେ (ସହିରେ ! କି ମାନ କରି ବରଜିଲି, ଗ୍ରଂ., ପୃ ୫୦୭) ନିଜ ଅନୁତପ୍ତ ହୃଦୟର ବେଦନା ପ୍ରକାଶ କରିବାକୁ ଯାଇ କହିଛନ୍ତି—କେତେ ବ୍ରତ କରି ପ୍ରେମରତ୍ନ ଚିନ୍ତାମଣି ଶ୍ୟାମଙ୍କୁ ହୃଦୟର ହାର କରି ପାଇଥିଲେ, ଆଜି ମୁଦ୍ରିତର ଅସତର୍କତାରେ ତାଙ୍କୁ ହରାଇଛନ୍ତି ।

(୫୪) ସା. ଦ., ୩।୮୨, ପୃ-୧୮୨

ତାଙ୍କର ପଦସେବାରୁ ନିଜେ ନିଜକୁ ବଞ୍ଚିତା କରିଥିବାରୁ ଅନୁତାପର ତୀବ୍ର ଜ୍ୱାଳାରେ ଅନ୍ତର ତାଙ୍କର ଦଗ୍ଧ ହେଉଛି ।

ଉପେକ୍ଷିତ ନାୟକ ହୁଏତ ତାଙ୍କୁ ଉପେକ୍ଷା କରି ଚନ୍ଦ୍ରାବଳୀର ସୁଖ ବର୍ଦ୍ଧନ କରିବେ । ଗୋଟିଏ ଗୀତରେ (ମାନ କରିଥିଲି ବ୍ରଜବଧୂ, ଗ୍ରଂ., ପୃ-୫୧୦) ରାଧାଙ୍କର ଏ ସାପତ୍ନ୍ୟମୂଳକ ଆଶଙ୍କାର ସ୍ୱାଭାବିକ ଚିତ୍ର ଆଙ୍କିବାକୁ ଯାଇ ରାଧାଙ୍କ ମୁଖରେ ସୂଚିତ କରିଛନ୍ତି—

ବରିଜବ ଚନ୍ଦ୍ରାବଳୀ<br>
ବାଇର ମୋଠାରେ, ଏ ପାଳି କରିବ<br>
ଶ୍ୟାମଙ୍କୁ ଗଳାର ମାଳ ।୩। (ଗ୍ରଂ., ପୃ-୫୧୧)

ମାନ ଅବସରରେ ଉପେକ୍ଷିତ ଅବସ୍ଥାରେ ପ୍ରିୟତମ ତାଙ୍କର ଚାଲିଯାଉଥିଲେ ମଧ୍ୟ ତାଙ୍କୁ ଅଟକାଇଲେ ନାହିଁ (ସଖିରେ ! ମୁଁ କି ହୁଡ଼ିଲି) । ପ୍ରାଣସମା ସଖୀମାନେ ମଧ୍ୟ ତାଙ୍କ ଠାରୁ ମନ ଆହୁରି କଠିନ କରି ନୀରବ ରହିଲେ (ପୃ-୫୦୯) ।

ଅନ୍ୟ ଗୀତ ଗୁଡ଼ିକରେ ଭାବ ଓ ଚିତ୍ରର କିଛି ନୂତନତ୍ୱ ନାହିଁ; ସେହି ଏକ ପ୍ରକାର ପୁନରାବୃତ୍ତି ମାତ୍ର । କିନ୍ତୁ କବିଙ୍କ, ପ୍ରକାଶ ଭଙ୍ଗୀର ଅନନ୍ୟ ସୁଷମା ଓ ପ୍ରଣୟିନୀ ପ୍ରାଣର ଐକାନ୍ତିକ ଅନନ୍ୟ ଅନୁଭୂତିର ଆନ୍ତରିକ ସ୍ପର୍ଶରେ ଗୋଟିଏ ଗୀତ ପାଠକ ଚିତ୍ତରେ ଚିରନ୍ତନ ରୂପ ମୁଦ୍ରିତ କରେ । ଅନୁତାପଦଗ୍ଧା ଶ୍ରୀମତୀ କହୁଛନ୍ତି—ଦାରୁଣ ମାନ ହେତୁ ଜୀବଧନ କିଶୋରଚନ୍ଦ୍ରମାଙ୍କୁ ମୂର୍ଚ୍ଛି ଅମାପ ଯନ୍ତ୍ରଣା ଭୋଗୁଛନ୍ତି । ତାଙ୍କର ଏ ଭାବୀ ଦୁଃଖ ଓ ଯନ୍ତ୍ରଣାର ଚେତନା ହୋଇଥିଲେ ପଦ ପତନ କାଳରେ ଭୁଜରେ ତୋଳି ଆଶ୍ଳେଷ କରିଥାନ୍ତେ । ସଖୀମାନଙ୍କର ନୀରବତା ହେତୁ ହସ୍ତରୁ ସେ ଅମୂଲ୍ୟ ରତ୍ନ ହଜାଇ ଦେଲେ । ଶ୍ରୀମତୀ ନିଜର ପ୍ରଣୟିନୀ ସୁଲଭ ନମ୍ରତା ପ୍ରକାଶ କରି କହିଛନ୍ତି--ରମାଙ୍କ ଠାରୁ ସୁନ୍ଦରୀ କେତେ ସ୍ୱାଧୀନା ବ୍ରଜବାଳୀ ରହିଛନ୍ତି, କିନ୍ତୁ ଶ୍ୟାମଙ୍କର ପଦସେବିକା ହେବାର ଯୋଗ୍ୟତା ଯା'ର ନାହିଁ, ତା ପାଇଁ ଶ୍ରୀମୁଖ ମଳିନ କଲେ—

ରମା ସୁଷମାରୁ ବଳି ଥିଲେ କେତେ ବ୍ରଜବାଳୀ<br>
ଅନୁଦିନ ସମସ୍ତେ ସ୍ୱାଧୀନ ।<br>
ଆଭୀର କୁମାରୀ ଭିତର କିଙ୍କରୀ ପରି ତାଙ୍କର<br>
ନୁହଇ ମୁଁ, କଲେ କେଣେ ଶ୍ରୀମୁଖ ମଳିନ । (ଗ୍ରଂ., ପୃ-୫୦୯)

ଗୀତଗୋବିନ୍ଦରେ ଖଣ୍ଡିତା ରାଧାଙ୍କର ଶ୍ଳେଷ ଗର୍ଭିତ ବ୍ୟଙ୍ଗୋକ୍ତିରେ ଆହତ ମାଧବ ଚାଲିଗଲା ପରେ ରାଧାଙ୍କର ଚେତନା ଫେରି ଆସିଛି । କଳହାନ୍ତରିତା ଅବସ୍ଥାରେ ସେ ଚିନ୍ତାମଗ୍ନ ହୋଇ ରହିଥିବାରୁ ମାନ ପରିହାର ପାଇଁ ସଖୀ ତାଙ୍କୁ ଅନୁରୋଧ କରିଛି । ଜୟଦେବ ଲେଖିଛନ୍ତି—

ତାମଥ ମନ୍ମଥଖିନ୍ନାଂ ରତିରସଭିନ୍ନାଂ ବିଷାଦସମ୍ପନ୍ନାମ୍ ।
ଅନୁଚିନ୍ତିତହରିଚରିତାଂ କଳହାନ୍ତରିତାମୁବାଚ ରହଃ ସଖୀ ।

(ଗୀ. ଗୋ., ୯।୧, ପୃ-୧୧୦)

ବିଦଗ୍ଧ ମାଧବର ଖଣ୍ଡିତା ରାଧା ମାଧବଙ୍କ ଦ୍ୱାରା ବାରମ୍ବାର ଅପମାନିତା ହୋଇ ମଧ୍ୟ ତାହାକୁ ଅପମାନ ମନେ ନକରି ତାଙ୍କ ପାଇଁ ଉତ୍କଣ୍ଠିତା ହୋଇଛନ୍ତି । କଳହାନ୍ତରିତା ଅବସ୍ଥାରେ ରାଧା ଅନୁତାପ କରି କହୁଛନ୍ତି—

କର୍ଣ୍ଣାନ୍ତେ ନ କୃତା ପ୍ରିୟୋକ୍ତିରଚନା କ୍ଷିପ୍ତଂ ମୟା ଦୂରତୋ
ମଲ୍ଲୀଦାମନକାମପଥ୍ୟବଚସୋ ସଖ୍ୟୈ ରୁଷଃ କଳ୍ପିତାଃ ।
କ୍ଷୌଣୀଲଗ୍ନଶିଖଣ୍ଡିଶେଖରମସୌ ନାଭ୍ୟର୍ଥୟନ୍ନୀକ୍ଷିତଃ
ସ୍ୱାନ୍ତଂ ହନ୍ତ ମମାଦ୍ୟ ତେନ ଖଦିରାଙ୍ଗାରେଣ ଦନ୍ଦହ୍ୟତେ !

(ବି. ମା., ୬।୮, ୧୪୯-୧୫୦)

ଅର୍ଥାତ୍ ମୁଁ ପ୍ରିୟତମଙ୍କର ବଚନ କାନକୁନେଇ ନାହିଁ । ତାଙ୍କ ଦତ୍ତ ମଲ୍ଲିକାମାଳା ଦୂରକୁ ନିକ୍ଷେପ କରିଛି । ସଖୀର ହିତବଚନ ସତ୍ତ୍ୱେ ତାପ୍ରତି ଅହେତୁକ କୋପ ପ୍ରକାଶ କରିଛି । ଶିଖିପୁଚ୍ଛ ଶ୍ୟାମ ଭୂଲୁଣ୍ଠିତ ହୋଇ ବିନୟ ପ୍ରକାଶ କଲେ ମଧ୍ୟ ମୁଁ ଫେରି ଚାହିଁ ନାହିଁ । ଏଥିପାଇଁ ମୋର ଅନ୍ତର ଖଦିର ଅଙ୍ଗାରରେ ବାରମ୍ବାର ଦଗ୍ଧ ହେଉଛି ।

ଏ କ୍ଷେତ୍ରରେ କବିସମ୍ରାଟ୍ ବଳଦେବଙ୍କର ଚଉପଦୀ ମଧ୍ୟ ସ୍ମରଣୀୟ । ରାଧାଙ୍କ ମୁଖରେ କବି ପ୍ରକାଶ କରିଛନ୍ତି—

(କ) ସେ ଦିନ ବସିବ ଭୂମି,
ଯେ ଶିଖଣ୍ଡଚୂଳ ନୟନ କୁଳରେ
ଦିନେ ନୋହୁଥିବ ଭୂମି ।

(ଖ) ଗୁମାନ କରିବା ବୃଥାରେ ସଙ୍ଗିନି ଗୁମାନ କରିବା ବୃଥା ।
ଗତି ତ ନଥିବ ଘନଶ୍ୟାମ ବିନୁ ଖଣ୍ଡିବାକୁ କାମ ବ୍ୟଥା ।।

## ମିଳନ ଓ ସମ୍ଭୋଗ :

ସମ୍ଭୋଗର ପ୍ରକାରଭେଦ—ଗୀତଗୋବିନ୍ଦ, ପଦାବଳୀ ସାହିତ୍ୟ, ଓଡ଼ିଆ ରୀତିକାଳୀନ ଓ ବୈଷ୍ଣବ କାବ୍ୟରେ ମିଳନ ଓ ସମ୍ଭୋଗ (୬୫) ଏକ ଉଲ୍ଲେଖଯୋଗ୍ୟ ପ୍ରକରଣ । ଲୌକିକ ନାୟକ ନାୟିକାଙ୍କ ପରି ରାଧାକୃଷ୍ଣଙ୍କର ସମସ୍ତ ଲୀଳାର ପରିଣତି ହେଉଛି ମିଳନ ଓ ସମ୍ଭୋଗ । ରୂପ ଗୋସ୍ୱାମୀଙ୍କ ମତରେ ଏହି ସମ୍ଭୋଗ ହେଉଛି ଦୁଇ ପ୍ରକାର— ମୁଖ୍ୟ ଓ ଗୌଣ । ଜାଗ୍ରତାବସ୍ଥାରେ ଯେଉଁ ସମ୍ଭୋଗ ତାହା ମୁଖ୍ୟ ଏବଂ ସ୍ୱପ୍ନାବସ୍ଥାରେ

(୬୫) ଉ.ନୀ., ସମ୍ଭୋଗ, ପୃ-୯୪୧ ଏବଂ ଗୌ.ବୈ.ଦ., ଶୃଙ୍ଗାରଭେଦ ସମ୍ଭୋଗ ପୃ-୩୬୩୫

ସେଉଁ ସମ୍ଭୋଗ ତାହା ଗୌଣ । ମୁଖ୍ୟ ସମ୍ଭୋଗ ପୁଣି ଚାରି ପ୍ରକାର, ଯଥା—ସଂକ୍ଷିପ୍ତ, ସଂକୀର୍ଣ୍ଣ, ସମ୍ପନ୍ନ ଓ ସମୃଦ୍ଧିମାନ୍ । ପୂର୍ବରାଗ ପରର ସମ୍ଭୋଗକୁ (ବସ୍ତ୍ରାକର୍ଷଣ, ବର୍ତ୍ମରୋଧନ ଇତ୍ୟାଦି) ସଂକ୍ଷିପ୍ତ ସମ୍ଭୋଗ କୁହାଯାଏ (୫୬) । ଉଜ୍ଜ୍ୱଳ ନୀଳମଣି ମତରେ ଲଜ୍ଜାବତୀ ଭୀରୁ ମୁଗ୍ଧା ରାଧାଙ୍କର ଅର୍ଦ୍ଧବାମତା ଓ ଅର୍ଦ୍ଧ ଦାକ୍ଷିଣ୍ୟର ମଧ୍ୟବର୍ତ୍ତୀ ସମ୍ଭୋଗକୁ ମଧ୍ୟ ସଂକ୍ଷିପ୍ତ ସମ୍ଭୋଗ କୁହାଯାଏ । ଯେଉଁ ସମ୍ଭୋଗରେ ନାୟକକୃତ ବ୍ୟଳୀକ (ପ୍ରବଞ୍ଚନା, ବିପକ୍ଷର ଗୁଣ କୀର୍ତ୍ତନ, ନାୟକ ଅଙ୍ଗରେ ରତି ଚିହ୍ନାଦିର ଦର୍ଶନ, ଶ୍ରବଣ) ସ୍ମରଣାଦି ଫଳରେ ଆଲିଙ୍ଗନ, ଚୁମ୍ବନାଦି ସମ୍ଭୋଗୋପକରଣ ଗୁଡ଼ିକ ମିଶ୍ରିତ ହୁଏ ଏବଂ ତପ୍ତଇକ୍ଷୁର ଚର୍ବଣ କାଳରେ ଯୁଗପତ୍ ଉଷ୍ଣତା ଓ ମାଧୁର୍ଯ୍ୟର ଅନୁଭବ ପରି ସ୍ୱାଦୁକର ହୁଏ, ତାହାକୁ ସଂକୀର୍ଣ୍ଣ ସମ୍ଭୋଗ କୁହାଯାଏ (୫୭) । ଏଠାରେ ସଂକୀର୍ଣ୍ଣର ଅର୍ଥ ମିଶ୍ରିତ (ସମ୍ଭୋଗ ସୁଖ ସହ କିଞ୍ଚିତ୍ ଦୁଃଖର ମିଶ୍ରଣ) । ଶ୍ରୀକୃଷ୍ଣଙ୍କର ଜଳକେଳି, ନୌକାବିଳାସ, ଦାନଲୀଳା ଓ ରାସଲୀଳା ସଂପର୍କୀୟ ସମ୍ଭୋଗ ଏହାର ଅନ୍ତର୍ଭୁକ୍ତ । କିଞ୍ଚିତ୍ ଦୂରପ୍ରବାସରୁ ସମାଗତ ନାୟକ ସହିତ ନାୟିକାର ମିଳନ ଜନିତ ସମ୍ଭୋଗକୁ ସମ୍ପନ୍ନ ସମ୍ଭୋଗ କୁହାଯାଏ (୫୮) । ଏହା ଦୁଇ ପ୍ରକାରର, ଯଥା—ଆଗତି ଓ ପ୍ରାଦୁର୍ଭାବ । ଲୌକିକ ବ୍ୟବହାର ହେତୁକ ଆଗମନକୁ (ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯାଇ ସେଠାରୁ ଫେରି ଆସିବା, ଯେପରି ଶ୍ରୀକୃଷ୍ଣ ପ୍ରାତଃକାଳରେ ବ୍ରଜରୁ ବନକୁ ଯାଇ ସନ୍ଧ୍ୟାରେ ବ୍ରଜକୁ ଫେରିଆସନ୍ତି) 'ଆଗତି' ଏବଂ ପ୍ରେମବିହ୍ୱଳା ପ୍ରିୟତମା ମାନଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଙ୍କର ଅକସ୍ମାତ୍ ଆବିର୍ଭାବକୁ ପ୍ରାଦୁର୍ଭାବ କୁହାଯାଏ ! ଦୋଳ, ଝୁଲଣ ଇତ୍ୟାଦି ସମ୍ପର୍କୀୟ ସମ୍ଭୋଗ ଏହାର ଅନ୍ତର୍ଭୁକ୍ତ । ପରାଧୀନତା ହେତୁ ଯେଉଁମାନଙ୍କ ପକ୍ଷରେ ପରସ୍ପରର ଦର୍ଶନ ଦୁର୍ଲଭ ହୁଏ, ତା'ର ଅବସାନରେ ସେହି ନାୟକନାୟିକାଙ୍କର ଯେଉଁ ଉପଭୋଗର ଅତିରିକ୍ତତା, ତାହାକୁ 'ସମୃଦ୍ଧିମାନ୍ ସମ୍ଭୋଗ' କୁହାଯାଏ (୫୯) । ସୁଦୂର ପ୍ରବାସ ପରେ ଯେଉଁ ସମ୍ଭୋଗ ଏବଂ ସ୍ୱପ୍ନରେ ମିଳନ, ଭାବୋଲ୍ଲାସ ଇତ୍ୟାଦି ସମ୍ପର୍କିତ ସମ୍ଭୋଗକୁ ମଧ୍ୟ ସମୃଦ୍ଧିମାନ୍ ସମ୍ଭୋଗ କୁହାଯାଏ । ଦୀର୍ଘକାଳର ବିରହ ପରେ ରାଧାଙ୍କର ଭାବାବେଶ, ସ୍ୱପ୍ନ ଓ ରୂପାନ୍ତରରେ କବିମାନେ ଶ୍ରୀକୃଷ୍ଣଙ୍କ ସହ ତାଙ୍କର ମିଳନ ବର୍ଣ୍ଣନା କରିଥାନ୍ତି—ଏହି ମିଳନ ସମ୍ଭୋଗ ହିଁ ସମୃଦ୍ଧିମାନ୍ ସମ୍ଭୋଗ (୬୦) । ଏହି ସମ୍ଭୋଗର ଅପୂର୍ବ ବୈଶିଷ୍ଟ୍ୟର କାରଣ ହେଉଛି ଉତ୍କଣ୍ଠାର ଆଧିକ୍ୟ ଓ ବିପ୍ରଲମ୍ଭର ଅଭାବ । ସଂକ୍ଷିପ୍ତ, ସଂକୀର୍ଣ୍ଣ ଓ ସମ୍ପନ୍ନ ସମ୍ଭୋଗ ସମୟରେ ନାୟକ ନାୟିକାଙ୍କର ପରାଧୀନତା ଥାଏ । କୌଣସି ପ୍ରକାରେ ପାରତନ୍ତ୍ର୍ୟ ଅତିକ୍ରମ କରି ସେମାନେ ମିଳିତ ହୁଅନ୍ତି ଓ ମିଳନରେ ଆନନ୍ଦ ଲାଭ କରନ୍ତି । କିନ୍ତୁ

(୫୬) ଉ. ନୀ., ସମ୍ଭୋଗ, ଶ୍ଳୋ-୬, ପୃ-୯୪୨

(୫୭) ଉ. ନୀ. ସମ୍ଭୋଗ ପ୍ରକରଣ, ଶ୍ଳୋ-୧୦, ପୃ-୯୪୪,

(୫୮) ତତ୍ରୈବ, ଶ୍ଳୋ-୧୩ ପୃ-୯୪୬

(୫୯) ତତ୍ରୈବ, ଶ୍ଳୋ-୧୬, ପୃ-୯୫୦

(୬୦) ପ. ସା, ପୃ-୧୩୯-୧୪୦

ପରାଧୀନତା ରହିଯାଏ ବୋଲି ପୁଣି ମିଳନରେ ବିଘ୍ନ ଜନ୍ମେ, ଫଳରେ ପୁଣି ବିପ୍ରଲମ୍ଭ, ପୁଣି ଦୁଃଖ । କିନ୍ତୁ ସମୃଦ୍ଧିମାନ୍ ସମ୍ଭୋଗରେ ପରାଧୀନତାର ଅଭାବ ହେତୁ ବିପ୍ରଲମ୍ଭର ଅଭାବ ରହିଛି । ସୁତରାଂ ମିଳନ ଜନିତ ଆନନ୍ଦ ହୁଏ ଅବ୍ୟାହତ ଓ ନିତ୍ୟ, କିନ୍ତୁ ସଂକ୍ଷିପ୍ତାଦି ସମ୍ଭୋଗରେ ଆନନ୍ଦର ସେ ନିତ୍ୟତ୍ୱ ନାହିଁ (୭୧) । ପ୍ରେମବୈଚିତ୍ତ୍ୟ ପରେ ଯେଉଁ ସମ୍ଭୋଗ ତାହାକୁ କେହି କେହି ପଞ୍ଚମପ୍ରକାର ସମ୍ଭୋଗ ମଧ୍ୟ କହିଥାନ୍ତି । ପ୍ରିୟ ନିକଟରେ ଥାଇ ପ୍ରେମୋତ୍କର୍ଷ ସ୍ୱଭାବବଶତଃ ମିଳନସୁଖମୁଗ୍‌ଧା ନାୟିକା ଚିତ୍ତରେ ଯଦି ଅନ୍ୟଥା ବୁଦ୍ଧି (ସମ୍ଭୋଗ ମଧ୍ୟରେ ଅନ୍ୟ ଭାବ ବା ରସର ଗ୍ରସ୍ତାପାତ ବା ମିଳନ ମଧ୍ୟରେ ବିଚ୍ଛେଦ ଭ୍ରାନ୍ତି) ହୁଏ, ତାହାକୁ ପ୍ରେମ ବୈଚିତ୍ତ୍ୟ କୁହାଯାଏ (୭୨) । ମିଳନ କାଳରେ ବିଚ୍ଛେଦ ଭୟ ପୁଣି ମିଳନ କାଳର କ୍ଷଣିକତାର ଚିନ୍ତା ମିଳନ ମଧ୍ୟରେ ଏହି ବୈଚିତ୍ତ୍ୟ ବା ଅନ୍ୟଥାଭାବ ଜାତ କରେ । ଦୃଷ୍ଟାନ୍ତ ସ୍ୱରୂପ ଚଣ୍ଡୀଦାସଙ୍କର ଶ୍ୟାମ ଓ ଶ୍ରୀମତୀ ପରସ୍ପର ମିଳିତ ହୋଇ ମଧ୍ୟ ବିଚ୍ଛେଦ ଭାବ ଦୁହିଁଙ୍କ କୋଡ଼ରେ ଦୁହେଁ କାନ୍ଦୁଥାନ୍ତି—'ଦୁହୁଁ କୋଡ଼େ ଦୁହୁଁ କାନ୍ଦେ ବିଚ୍ଛେଦ ଭାବିୟା' । ପୂର୍ବୋକ୍ତ ଚତୁର୍ବିଧ ସମ୍ଭୋଗକୁ କେହି କେହି ପୂର୍ବରାଗାନନ୍ତର ସମ୍ଭୋଗ, ମାନାନ୍ତର ସମ୍ଭୋଗ, ପ୍ରବାସାନନ୍ତର ସମ୍ଭୋଗ ଓ କରୁଣ ବିପ୍ରଲମ୍ଭାନନ୍ତର ସମ୍ଭୋଗ କହିଥାନ୍ତି । ସେହି ଚତୁର୍ବିଧ ସମ୍ଭୋଗ ଅନୁଭାବ ହେଉଛନ୍ତି ସନ୍ଦର୍ଶନ, ଜଳ୍ପ, ସ୍ପର୍ଶ, ବର୍ତ୍ମରୋଧନ, ରାସ, ବୃନ୍ଦାବନକ୍ରୀଡ଼ା, ଜଳକେଳି (ଯମୁନାରେ), ନୌକ୍ରୀଡ଼ା, ଲୀଳାଚୌର୍ଯ୍ୟ, ବସ୍ତ୍ରଚୌର୍ଯ୍ୟ, ପୁଷ୍ପଚୌର୍ଯ୍ୟ, ଦାନଲୀଳା, କୁଞ୍ଜାଦି ଲୀନତା, ମଧୁପାନ, ବଧୂବେଶ ଧାରଣ, ବ୍ୟାଜନିଦ୍ରା, ଦ୍ୟୂତକ୍ରୀଡ଼ା, ବସ୍ତ୍ରାକର୍ଷଣ, ଚୁମ୍ବନ, ଆଲିଙ୍ଗନ, ନଖକ୍ଷତ, ଅଧର ସୁଧାପାନ ଇତ୍ୟାଦି ।

**ସମ୍ଭୋଗ ଗୀତି ଗୁଡ଼ିକର ସମୀକ୍ଷା**—ଗୋପାଳକୃଷ୍ଣଙ୍କ ରଚନାରେ ରାସ, ବସନ୍ତୋତ୍ସବ ଓ ଝୁଲଣ ସହିତ ପ୍ରାୟ ପଚିଶିଟି ମିଳନ ତଥା ସମ୍ଭୋଗ ଗୀତ ପରିଦୃଷ୍ଟ ହୁଏ । ସମ୍ଭୋଗ ଗୀତ ଗୁଡ଼ିକରେ କବି ଆଙ୍ଗିକ (ଭାଷା, ସ୍ୱର, ଛନ୍ଦ, ଅଳଙ୍କାର) ଦୃଷ୍ଟିରୁ ଭଞ୍ଜ ଓ କବି-ସୂର୍ଯ୍ୟଙ୍କ ପରମ୍ପରାର ପଥିକ, କିନ୍ତୁ ଆତ୍ମିକ (Content) ଦୃଷ୍ଟିରୁ ବୈଷ୍ଣବ ମହାଜନ ଗୋଷ୍ଠୀର ବିଶ୍ୱସ୍ତ ଅନୁସରଣକାରୀ । ଗୀତିକବିତାର ସଂକ୍ଷିପ୍ତି (Brevity), ଭାବଗତ ଐକ୍ୟ ଓ ସଙ୍ଗୀତଧର୍ମିତା ଥିଲେ ମଧ୍ୟ ବ୍ୟକ୍ତିଗତ ଭାବ ସମ୍ବେଗ ଓ ଅନନ୍ୟ ଅନୁଭୂତିର ଅଭାବ ଏ ଗୁଡ଼ିକରେ ଉପଲବ୍‌ଧ ହୁଏ । କବିଙ୍କର ବ୍ୟକ୍ତିଗତ ଚିନ୍ତା, ଅନୁଭୂତି ଓ ଅଭିଜ୍ଞତା ନିଜ ଧର୍ମୀୟ ଗୋଷ୍ଠୀଠାରେ ଆତ୍ମସମର୍ପଣ କରିଛି । ଗୀତଗୁଡ଼ିକ ପାରମ୍ପରିକ ଭାବେ ସାଧନାର ଅଙ୍ଗ ହୋଇଥିବାରୁ କବିଙ୍କର ଆଧ୍ୟାତ୍ମିକ ଜୀବନର ଅନ୍ତରଙ୍ଗ ଅନୁଭୂତି ବ୍ୟକ୍ତିମୁଖୀ ନହୋଇ ହୋଇଛି ଗୋଷ୍ଠୀମୁଖୀ ।

**ଗୋପାଳକୃଷ୍ଣ ଓ କବିସୂର୍ଯ୍ୟ**—ଜୟଦେବଙ୍କର ଆଦର୍ଶରେ ଉଭୟ କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଋଷିପ୍ରେମ ମଧ୍ୟରେ ଶୃଙ୍ଗାର ପ୍ରାଧାନ୍ୟର ଧାରା ଗ୍ରହଣ କରିଛନ୍ତି; ଫଳରେ ରାଧାକୃଷ୍ଣ ପ୍ରେମଲୀଳାରେ କାମକଳା (କାମଲୀଳା) ଏକ ଅପରିହାର୍ଯ୍ୟ ଅଙ୍ଗ ଭାବରେ ଗୃହୀତ

(୭୧) ଗୌ. ବୈ. ଦ., ୫ମ ଖଣ୍ଡ, ରସତତ୍ତ୍ୱ, ପୃ-୩୬୪୯

(୭୨) ଉ. ନୀ., ପ୍ରେମବୈଚିତ୍ତ୍ୟ; ପୃ-୯୧୨

ହୋଇଯାଉଛି । ଉଭୟ କବି ପ୍ରେମ ଓ ସୌନ୍ଦର୍ଯ୍ୟର କବି, କିନ୍ତୁ କବିସୂର୍ଯ୍ୟ ନିଜ ସୃଷ୍ଟିରେ ଐନ୍ଦ୍ରିକ ଅନୁଭୂତି, କାମବାସନା ଓ ସୌନ୍ଦର୍ଯ୍ୟ ଉପରେ ଧ୍ୟାନ ଦେଉଥିବା ସ୍ଥଳେ ଗୋପାଳକୃଷ୍ଣ ପ୍ରେମ ଓ ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଉଭୟେ ହୋଇଛନ୍ତି ଶିଳ୍ପୀ, କିନ୍ତୁ ଗୋପାଳକୃଷ୍ଣଙ୍କ ଶିଳ୍ପସୃଷ୍ଟି ଧର୍ମୀୟ ସାଧନା ସହିତ ଜଡ଼ିତ । ସଙ୍ଗୀତ ରଚନା ଗୋପାଳକୃଷ୍ଣଙ୍କ ପକ୍ଷରେ ଥିଲା ତାଙ୍କର ଧର୍ମସାଧନାର ଅଙ୍ଗ, ପ୍ରାଣର ପ୍ରିୟତମଙ୍କଠାରେ ଥିଲା ନୈବେଦ୍ୟ ଅର୍ପଣ । ଗୋପାଳକୃଷ୍ଣଙ୍କର ସଙ୍ଗୀତ କେବଳ ପ୍ରେମର କାବ୍ୟ ହୋଇ ରହିନାହିଁ, ତାହା ହୋଇଛି ମଧୁର ଭକ୍ତି-ପୁଷ୍ପମାଲ୍ୟ । ତେଣୁ ମିଳନ ଓ ସମ୍ଭୋଗ ଚିତ୍ରରେ କବିସୂର୍ଯ୍ୟ ଯେଉଁଠି ନିଃସଙ୍କୋଚ, ଗୋପାଳକୃଷ୍ଣ ସେଠି ସଂଯତ । ନାୟକ ନାୟିକାଙ୍କର ପ୍ରେମ ଦୈହିକ ସମ୍ଭୋଗର ଊର୍ଦ୍ଧ୍ୱରେ ଯଥାସମ୍ଭବ ପବିତ୍ରତା ରକ୍ଷାକରି ପ୍ରତିଷ୍ଠିତ । ସେଠି ଶ୍ୟାମ ଓ ଶ୍ରୀମତୀଙ୍କର ସମ୍ଭୋଗାନନ୍ଦ ସେମାନଙ୍କଠାରେ ଆବଦ୍ଧ ନ ହୋଇ ସମଗ୍ର ବୃନ୍ଦାବନ ମସ୍ତ ହୋଇ ପଡ଼ିଛି । ସେ ମିଳନ ସମ୍ଭୋଗ ଜନିତ ଆନନ୍ଦର ଉପଲବ୍ଧି ପାଇଁ ନାୟକ ନାୟିକା ଯେତେ ବ୍ୟାକୁଳ, ତତୋଽଧିକ ବ୍ୟାକୁଳ ହୋଇଛନ୍ତି ଶ୍ରୀମତୀଙ୍କର କାୟବ୍ୟୂହ ସ୍ୱରୂପା ସଖୀମାନେ, ଦୂତୀ ଓ ମନ୍ତ୍ରୀଗଣ, ବୃନ୍ଦାବନର ପ୍ରତ୍ୟେକ ବିଟପୀ, ବଲ୍ଲୀ, ଖଗ ଓ ମୃଗ ଏପରିକି ନୀଳବେଣୀଯୁକ୍ତା ଯମୁନା ମଧ୍ୟ ।

କବିସୂର୍ଯ୍ୟଙ୍କ ଚଉପଦୀ ଗୁଡ଼ିକରେ ସଂକ୍ଷିପ୍ତ ଓ ସଂକୀର୍ଣ୍ଣ (ପୂର୍ବରାଗାନନ୍ତର, ମାନାନ୍ତର) ସମ୍ଭୋଗ ଚିତ୍ର ପରିଦୃଷ୍ଟ ହେଉଥିବା ସ୍ଥଳେ ଗୋପାଳକୃଷ୍ଣଙ୍କ ରଚନାରେ ସମସ୍ତ ଶ୍ରେଣୀର ସମ୍ଭୋଗଚିତ୍ର ପରିଦୃଷ୍ଟ ହୁଏ । କବିସୂର୍ଯ୍ୟଙ୍କ ସମ୍ଭୋଗ ଚିତ୍ରରେ ନାୟକ ନାୟିକାଙ୍କର କାମାର୍ତ୍ତି ଓ ଦୈହିକ ସମ୍ଭୋଗ ବାସନା ପ୍ରବଳ ହୋଇଥିବାରୁ ପ୍ରକୃତ ପ୍ରେମର ସ୍ପର୍ଶ ପାଇବା ଦୁଷ୍କର, କିନ୍ତୁ ଗୋପାଳକୃଷ୍ଣଙ୍କ ମିଳନ ଓ ସମ୍ଭୋଗ ଚିତ୍ରରେ ଗୀତଗୋବିନ୍ଦର ଅନୁସରଣ ଫଳରେ କହିଁତ କାମର ସ୍ପର୍ଶ ଦେଖାଗଲେ ମଧ୍ୟ ପ୍ରେମର ମହତ୍ତ୍ୱ କ୍ଷୁଣ୍ଣ ହୋଇନାହିଁ । ନିଜର ସାଧକ ଦୃଷ୍ଟିରେ କବି ଦୈହିକ ମିଳନର ପବିତ୍ରତା ରକ୍ଷଣ ପ୍ରତି ସତର୍କ ଧ୍ୟାନ ଦେଇଛନ୍ତି (୬୩) ।

ମିଳନଗୀତଗୁଡ଼ିକ ମଧ୍ୟରୁ ଗୋଟିଏ ଗୀତରେ (ମାଧୁରୀରେ ମାଧୁରୀରେ, . ଗ୍ରଂ. ପୃ-୪୪୫) କବି ଏକ କମନୀୟ ନୈସର୍ଗିକ ପରିବେଶରେ ସଖୀ (ଲଳିତା) ସହ ସ୍ୱୟଂସ୍ମିତା ରାଧାଙ୍କର ନିକୁଞ୍ଜ ବିଜୟର ମଞ୍ଜୁଳ ଚିତ୍ର ଆଙ୍କିଛନ୍ତି । ବୃନ୍ଦାବନର ବୃକ୍ଷବଲ୍ଲୀ, କର୍ଣ୍ଣିକାର ଓ କୁସୁମ ବ୍ୟାଜରେ ପ୍ରଫୁଲ୍ଲିତ ହୋଇ ଉଠିଛନ୍ତି । ଅଳି ପଙ୍‌କ୍ତି ମଧୁର ଗୁଞ୍ଜନ କରୁଛନ୍ତି । ଯମୁନାର କୁମୁଦ ବନରୁ ଶୀତଳ ସମୀର ପ୍ରବାହିତ ହେଉଛି । ତ୍ରିଭୁବନସୁନ୍ଦର ପ୍ରିୟତମଙ୍କର ଅନୁପମ ରୂପ ଧ୍ୟାନ କରି ଶ୍ରୀମତୀ ଧୀରେ ଧୀରେ ପଦବିନ୍ୟାସ କରୁଛନ୍ତି । ଘନଶ୍ୟାମଳ ତମାଳକୁ ଦେଖି ଶ୍ୟାମ ଭ୍ରମ ହେତୁ ଲଳିତାର ଭୁଜ ଧରି ଶ୍ରୀମତୀ କିଶୋରୀ ସୁଲଭ ଲଜ୍ଜା ହେତୁ ପଛକୁ ଘୁଞ୍ଚି ଆସନ୍ତି । ସଦ୍ୟ ମିଳନର ନିଶ୍ଚିନ୍ତ ସମ୍ଭାବନାରେ ଉଦ୍‌ବେଗ, ଚାପଲ୍ୟ, ଭ୍ରାନ୍ତି, ପ୍ରଣୟ ଓ ହର୍ଷ ପ୍ରଭୃତି ସଞ୍ଚାରୀଭାବ ଏବଂ ସ୍ୱେଦ, କମ୍ପ ଓ ପୁଲକ ପ୍ରଭୃତି

(୬୩) ଦାଶରଥି ଦାସ, କବିସୂର୍ଯ୍ୟ କାବ୍ୟବିଚାର, ୧ମ ସଂ., ୧୯୬୮, ପୃ-୪୩୧

ସାତ୍ତ୍ୱିକ ଅନୁଭବରେ ଶ୍ରୀଅଙ୍ଗ ଅବଶ ହୋଇପଡ଼େ । ନିକୁଞ୍ଜ ପ୍ରାଙ୍ଗଣରେ ଜୀବନବନ୍ଧୁଙ୍କ ଜୀବନଭୂଳ ମୂର୍ତ୍ତିକୁ ଚାହିଁ ପାଦ ବଢାଇଲେ ମଧ୍ୟ ଲଜ୍ଜା ହେତୁ ପାଦ ଚଳେନା, ମସ୍ତକରୁ ନୀଳ ଉତ୍ତରୀୟ ଖସି ପଡ଼େ ଏବଂ କନକରମ୍ଭୋରୁ ଶ୍ରୀମତୀ ଅଧୋମୁଖରେ ଠିଆ ହୋଇ ରହନ୍ତି । ପ୍ରିୟତମଙ୍କ ସହ ମିଳିତ ହେବାପାଇଁ ଅନ୍ତରରେ ଅପରନ୍ତ ଉତ୍କଣ୍ଠା ଓ ଆଗ୍ରହ, ଅଥଚ ଦର୍ଶନରେ ତାଙ୍କର ଲଜ୍ଜା-ଲକ୍ଷ୍ମୀ ଶୋଭିତ ମୂର୍ତ୍ତିଟିର କଳ୍ପନା କିପରି ମନୋଜ୍ଞ ଓ ମଧୁମୟ, ଏଠାରେ ଲକ୍ଷ୍ୟ କରାଯାଇପାରେ । ଜୟଦେବଙ୍କର ରାଧା ମଞ୍ଜୁଳ ପ୍ରାକୃତିକ ପରିବେଶରେ ପ୍ରିୟତମ ମାଧବଙ୍କୁ ଦର୍ଶନ କରି ସେହିପରି ଲଜ୍ଜାନତ ବଦନରେ ଦଣ୍ଡାୟମାନ ହୋଇଛନ୍ତି—'ଦ୍ୱାରେ ନିକୁଞ୍ଜନିଲୟସ୍ୟ ହରିଂ ବିଲୋକ୍ୟ ବ୍ରୀଡ଼ାବତୀ' (୭୪) । କବିସୂର୍ଯ୍ୟଙ୍କର ସୁକ୍ତପ୍ରବଣା ପ୍ରଗଲ୍‌ଭା ଶ୍ରୀମତୀ ଲତାନ୍ତରାଳରେ କଟାକ୍ଷଲୀଳା ବିସ୍ତାରକାରୀ ଶ୍ରୀକୃଷ୍ଣଙ୍କର ବିହାର ବିଳାସ ରମଣୀୟ ବୃନ୍ଦାରଣ୍ୟର ଶୋଭା ଲଳିତାସହ ସନ୍ଦର୍ଶନ କରିବା ନିମିତ୍ତ ଚରଣରୁ ନୂପୁର ବାହାର କରି କଦମ୍ବକୁଞ୍ଜ କାନନରେ ପ୍ରବେଶ କରନ୍ତି ଏବଂ ଲଳିତା ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କର ଶୋଭା ସନ୍ଦର୍ଶନ କରାଇ ତାଙ୍କର ରୂପସୁଧା ପାନ କରିବା ପାଇଁ କହି ଅନ୍ୟତ୍ର ଚାଲିଯା'ନ୍ତି । ରାଧାଙ୍କର ଅଙ୍ଗ ସୌରଭରେ ଆକୃଷ୍ଟ ହୋଇ ଭ୍ରମରମାନେ ଗୁଞ୍ଜନ ବ୍ୟାଜରେ ମଙ୍ଗଳ ସଙ୍ଗୀତ ଆରମ୍ଭ କରନ୍ତି । ଏହି ସମୟରେ ବାସନ୍ତୀ ମଳୟାନିଳ ଧୀରେ ଧୀରେ ପ୍ରବାହିତ ହୁଏ (୭୫) । କବିସୂର୍ଯ୍ୟ ରାଧାକୃଷ୍ଣଙ୍କର ମିଳନର ପୃଷ୍ଠଭୂମି ରୂପେ କିପରି ମନୋଜ୍ଞ ପ୍ରାକୃତିକ ପରିବେଶର ଚିତ୍ର ଅଙ୍କନ କରିଛନ୍ତି, ଏଠାରେ ତାହା ଲକ୍ଷଣୀୟ ।

ଶ୍ରୀମତୀଙ୍କୁ ଦର୍ଶନ କରି ଶ୍ୟାମଙ୍କର ଅଙ୍ଗେ ଅଙ୍ଗେ ପୁଲକର ସଞ୍ଚାର ହୁଏ । ଆଶ୍ଳେଷ କରି ଶ୍ୟାମ ଗୀତଗୋବିନ୍ଦର ମାଧବଙ୍କ ପରି (୭୬) କହନ୍ତି—ଶ୍ରୀମତୀ ହେଉଛନ୍ତି ତାଙ୍କର ଜୀବନର ସଙ୍ଖାଳି, ଗଳାର ସ୍ୱର୍ଣ୍ଣରତ୍ନମାଳ, ନୟନର ପ୍ରତିମା । ରାଧା ଯଦି ଶୀକରବାସୀ ବାଁଶିଦ, ତା'ହେଲେ ସେ ତାଙ୍କର ଆଶାୟୀ ବୃତକ; ସେ ଯଦି ସୁମନ ହୁଅନ୍ତି, ରାଧା ତାଙ୍କର ସୁରଭି; ସେ ଯଦି ଚନ୍ଦ୍ର ହୁଅନ୍ତି, ରାଧା ତା'ର ଶୀତଳ ଜ୍ୟୋତ୍ସ୍ନା, ସେ ଯଦି ମୃଗମଦ ହୁଅନ୍ତି, ରାଧା ତା'ର ସୌରଭ; ସେ ବୀଣା ହେଲେ ଶ୍ରୀମତୀ ହେଉଛନ୍ତି ତା'ର ଝଙ୍କାର । ଉପମାନ ଓ ସେମାନଙ୍କର ଗୁଣ ଓ ଧର୍ମ ମଧ୍ୟରେ ଯେପରି ଅବିଚ୍ଛେଦ୍ୟ ସମ୍ପର୍କ, ଶ୍ୟାମ ଓ ଶ୍ରୀମତୀଙ୍କ ମଧ୍ୟରେ ସମ୍ପର୍କ ସେହିପରି ଅଚ୍ଛେଦ୍ୟ ଓ ଶାଶ୍ୱତ । ଭକ୍ତ ଓ କବିସୂର୍ଯ୍ୟଙ୍କ ମିଳନ ଗୀତର ନାୟକ ନାୟିକାଙ୍କର ଦୈହିକ ମିଳନ ସମ୍ପର୍କୀୟ କାମ-ଚେତନାରୁ ମୁକ୍ତ ହୋଇ ଶଂସିତ ମିଳନ ଗୀତଟି (ପରିମ୍ଭଙ୍ଗ ରଙ୍ଗେ କୁଞ୍ଜେଶ୍ୱରଙ୍କ କୋଳେ, ଗ୍ରଂ.; ପୃ-୪୪୮) କିପରି ଶ୍ୟାମ ଓ ଶ୍ରୀମତୀଙ୍କର ଶାଶ୍ୱତ ପ୍ରେମ ଭାବନାରେ ମହିମାନ୍ୱିତ ଓ ଗୀତକାବ୍ୟ ସୁଲଭ ନଗ୍ନତାରୁ ମୁକ୍ତ, ତାହା ଲକ୍ଷ୍ୟ କରାଯାଇପାରେ ।

---

(୭୪) ଗୀ. ଗୋ., ୧୧।୨୦।୧୩, ପୃ-୧୩୬

(୭୫) କ. ସୂ. ଗ୍ରଂ., ପୃ-୧୪୮।୧୭୪

(୭୬) ଗୀ. ଗୋ., ୧୦।୧୧।୫, ପୃ-୧୧୭

ଶ୍ୟାମ ଓ ଶ୍ରୀମତୀଙ୍କର ମିଳନ-ସମ୍ଭୋଗର ଆନନ୍ଦ କେବଳ ପ୍ରଣୟୀ ଯୁଗଳଙ୍କଠାରେ ଆବଦ୍ଧ ନ ହୋଇ ସମଗ୍ର ବୃନ୍ଦାବନମୟ ହୋଇ ପଡ଼ିଛି । ମେଘ ଦେହରେ ଚନ୍ଦ୍ରପରି ବ୍ରଜେନ୍ଦୁଙ୍କ ଅଙ୍କରେ ଧନୀ ରାଧିକା ଶୋଭା ପାଉଛନ୍ତି । ଉଭୟଙ୍କର ମିଳନାନନ୍ଦରେ କୁଞ୍ଜର ପଲ୍ଲବିତା ଓ ପୁଷ୍ପିତା ଲତା ଓ ବୃକ୍ଷ ଗୁଡ଼ିକ ପୁଷ୍ପର ସୁରଭି ବହନ କରି ମଳୟର ତରଙ୍ଗରେ ନୃତ୍ୟ କରି ଉଠୁଛନ୍ତି । ଯମୁନାର ନୀଳପ୍ରବାହ ତରଙ୍ଗ କରି ପ୍ରସାରିତ କରି ନାନାଭଙ୍ଗୀରେ ପ୍ରବଳ ଆନନ୍ଦୋଚ୍ଛ୍ୱାସରେ ନୃତ୍ୟ କରି ଉଠୁଛି, ପୁଣି ଚନ୍ଦ୍ର ଯମୁନାର ଜଳରେ ସ୍ନାନକରି ହାସ୍ୟ ସୃଷ୍ଟି କରି ବିହ୍ୱଳ ହୋଇ ନୃତ୍ୟ କରୁଛି । ବୃନ୍ଦାବନର ମୟୂର, ଚାତକ, ସାରୀ, ଶୁକ, କୋକିଳ, ଖଞ୍ଜନ ଓ ମତ୍ତ ଭ୍ରମରମାନେ ମଧୁର ସ୍ୱନରେ ଆକାଶ ଓ ବନଭୂମି ମୁଖରିତ କରି ନିଜର ଆନନ୍ଦ ପ୍ରକାଶ କରୁଛନ୍ତି । ଆନନ୍ଦିତ ତଥା ଲହ୍ୟୋଚ୍ଛଳ ପ୍ରକୃତିର ପ୍ରାଣୋଚ୍ଛଳ ପରିବେଶରେ ଶ୍ୟାମ ଓ ଶ୍ରୀମତୀଙ୍କର ମିଳନାନନ୍ଦରେ ଚିରତୃଷିତ ସଖୀ ଓ ମଞ୍ଜରୀମାନଙ୍କର ମନ ଓ ନେତ୍ର ନୃତ୍ୟଚଞ୍ଚଳ ହୋଇ ଉଠିଛି । ମଞ୍ଜରୀ ଭାବାପନ୍ନ କବି ଗୁରୁରୂପା ସଖୀଙ୍କ ଅନୁକମ୍ପାରେ ସିଦ୍ଧ ଶରୀରରେ ସ୍ୱାମୀ ଓ ସ୍ୱାମିନୀଙ୍କ ମିଳନ ଲକ୍ଷ୍ୟ କରି ଆନନ୍ଦରେ ନୃତ୍ୟ କରି ଉଠିଛନ୍ତି । ମିଳନ ଓ ସମ୍ଭୋଗର ଚିତ୍ର ରୀତିକାବ୍ୟ ସୁଲଭ ନଗ୍ନତାରୁ ମୁକ୍ତ ହୋଇ ମାନବ ଓ ପ୍ରକୃତିର ନିବିଡ଼ ଯୋଗାଯୋଗ ଓ ପାରସ୍ପରିକ ମଧୁର ପ୍ରତିକ୍ରିୟାର ପରିକଳ୍ପନାରେ କିପରି ସୁନ୍ଦର ଓ ସ୍ୱାଦ୍ୟ ହୋଇଛି, ଏଠାରେ ଲକ୍ଷ୍ୟ କରିବାର କଥା (ରତି ଜୟମଙ୍ଗଳ, ପରିପୂର୍ଣ୍ଣ ବୃନ୍ଦାରଣ୍ୟ ସ୍ଥଳ ଯେ, ଗ୍ରଂ., ପୃ-୪୪୮) ।

କବି ନିକୁଞ୍ଜ ତଳରେ ଶ୍ୟାମ ଓ ଶ୍ରୀମତୀଙ୍କର ମିଳନ ଶୋଭାକୁ ସଖୀ ଓ ମଞ୍ଜରୀଙ୍କର ଉପଲବ୍ଧ ଆନନ୍ଦ ଦୃଷ୍ଟିରୁ ପ୍ରସଙ୍ଗୀତ ପରି କଳ୍ପନାର କମନୀୟ ସ୍ପର୍ଶ ଦେଇ ସଂଯତ ଭାବରେ ରୂପଦାନ କରିଛନ୍ତି । ଶ୍ୟାମଙ୍କ କୋଳରେ ଶ୍ରୀମତୀଙ୍କୁ ଲକ୍ଷ୍ୟ କରି କବି ଉପମା ପ୍ରୟୋଗ କରି ଲେଖିଛନ୍ତି—ଶ୍ୟାମ ସ୍ୱରୂପ ହସ୍ତୀ ସୁମନ-ତଳ-ସରରେ ହେମାଙ୍ଗିନୀ ଶ୍ରୀମତୀ ସ୍ୱରୂପିଣୀ ସ୍ୱର୍ଣ୍ଣ ପଙ୍କଜକୁ ଧାରଣ କରିଛି । ଚତୁର୍ଦ୍ଦିଗ ବୀକ୍ଷ କାଳରେ ପ୍ରିୟତମଙ୍କର ହାସ ଲକ୍ଷ୍ୟ କରି ଶ୍ରୀମତୀ ଲଜ୍ଜା ହେତୁ ଶ୍ୟାମଙ୍କ କରରେ ନିଜର ଚକ୍ଷୁ ଲୁଚାଇଛନ୍ତି । ଉତ୍ପ୍ରେକ୍ଷା ପ୍ରୟୋଗ କରି କବି ଲେଖିଛନ୍ତି—

(କ) ଅଚଳା-ଚପଳା ହୃଦେ ବନ୍ଧୁ ଘନ ହେଲ ଉଦେ ।୪।

(ଖ) ନବ ସୌଦାମିନୀ କିବା ଜଳଦେ ଜଡ଼ିତା ? ।୪। (ଗ୍ରଂ., ପୃ-୪୫୦)

ଶ୍ୟାମ ରୂପକ ଘନ ନିଜ ବକ୍ଷରେ ସ୍ଥିର ବିଦ୍ୟୁତ୍ ସ୍ୱରୂପିଣୀ ଶ୍ରୀମତୀଙ୍କୁ ଧରି କୁଞ୍ଜ-ଆକାଶରେ ଉଦିତ ହେଲେ କି ? ରାଧାକୃଷ୍ଣଙ୍କ ଚକ୍ଷୁଷ୍ମାନ୍ ବ୍ରଜବାସୀଙ୍କର ମୂର୍ତ୍ତିମନ୍ତ ପୁଣ୍ୟଫଳ ଭାବରେ କଳ୍ପନା କରି କବି ନିଜର ସଂଯତ କଳ୍ପନାକୁଶଳତାର ସୁନ୍ଦର ପରିଚୟ ଦେଇଛନ୍ତି—

ଏ ବ୍ରଜରେ ଆଖି ବନ୍ଥ- ଥିବା ଜନଙ୍କର ସନ୍ଧି !

ଜନ୍ମାନ୍ତର ପୁଣ୍ୟଫଳ ଘଟିଛି ଆଜକୁ ।୫। (ଗ୍ରଂ., ପୃ-୪୫୦)

ଶ୍ୟାମ ଓ ଶ୍ରୀମତୀଙ୍କର ମିଳନୋତ୍ସବ ବୃନ୍ଦାବନରେ ସମସ୍ତ ସଖୀ ଓ ମଞ୍ଜରୀଙ୍କର ଉତ୍ସବାନନ୍ଦ। କୁଞ୍ଜରେ ସେମାନଙ୍କର ମିଳନ ମାଧୁରୀ ଲକ୍ଷ୍ୟ କରି ସବୁ ସଖୀ ଆନନ୍ଦରେ ଢୁଳଢୁଳ ହେଉଛନ୍ତି। କବି ଅନେକତ୍ର ସାଧକର ସାତ୍ତ୍ୱିକ ଦୃଷ୍ଟିରେ ସେମାନଙ୍କର ମିଳନ ଶୋଭାର ସଂଯତ ମାର୍ଜିତ ଚିତ୍ର ଦେଇଛନ୍ତି। ଭଞ୍ଜ ଓ କବିସୂର୍ଯ୍ୟଙ୍କର ଚଳନ୍ତିପଦାର ନାୟକ ନାୟିକାଙ୍କର ସ୍ଥୂଳ କାମ ବାସନା ଏବଂ ଭୋଗସର୍ବସ୍ୱ ଅଙ୍ଗ ପ୍ରତ୍ୟଙ୍ଗର ନଗ୍ନତାରୁ ଏହା ମୁକ୍ତ ହେଲେ ମଧ୍ୟ ସେମାନଙ୍କର ଆଲଙ୍କାରିକ ଯୋଜନା ଓ କଳ୍ପନାକୁଶଳତାରୁ ତାଙ୍କର ଏ ମିଳନ ଚିତ୍ର ମୁକ୍ତ ନୁହେଁ। ନିଭୃତ କୁଞ୍ଜରେ ମୋହନଙ୍କ କୋଳରେ ମୋହିନୀଙ୍କୁ ଦେଖି କବି ଯେଉଁ ମାଳୋତ୍ପ୍ରେକ୍ଷାର କଳ୍ପନା କରିଛନ୍ତି, ତାହା କେତେ ସାର୍ଥକ ଓ ସ୍ୱାଭାବିକ, ଲକ୍ଷ୍ୟ କରିଯାଉ—

ନବ ସୌଦାମିନୀ କିବା ଜଳଦେ ଜଡ଼ିତା ? ।୪। (୭୭)
ମର୍କତ ପିଞ୍ଜରେ କିସେ ସୁବର୍ଣ୍ଣ-ସାରିକା ?
ତମାଳେ ବେଷ୍ଟିତା ଯଥା ମାଳତୀ-ଲତିକା ।୫। (୭୮)

ରାଧାକୃଷ୍ଣଙ୍କୁ କବି ରକ୍ତମାଂସର କିଶୋର ଓ କିଶୋରୀ ଭାବରେ ରୂପାୟିତ କରିଥିଲେ ମଧ୍ୟ ମିଳନ ଅବସରରେ ତାଙ୍କୁ ଚିନ୍ମୟ ଚିଦ୍‌ଘନାନନ୍ଦ ଭାବରେ ବର୍ଣ୍ଣନା କରି ନିଜର ମଞ୍ଜରୀ ସୁଲଭ ସାଧକ-ଚେତନାର ପରିଚୟ ଦେଇଛନ୍ତି (ଆହା କି ଅପୂର୍ବ ଧୂରୀ, ଗ୍ରଂ., ପୃ-୪୫୦)।

ପାଞ୍ଚଟି ସଙ୍ଗୀତରେ କବି ଶ୍ୟାମ ଓ ଶ୍ରୀମତୀଙ୍କର ସମ୍ଭୋଗ ଓ ସମ୍ଭୋଗକାଳୀନ ରୂପ ମାଧୁରୀ ବର୍ଣ୍ଣନା କରିଛନ୍ତି। ସମ୍ଭୋଗ ଚିତ୍ରରେ କବିଙ୍କ ଲେଖନୀ ଭଞ୍ଜ ଓ କବିସୂର୍ଯ୍ୟଙ୍କର ସ୍ଥୂଳ ରସିକତା ଓ ନଗ୍ନତାକୁ ପରିହାର କରି ଶାଳୀନତା ଓ ସଂଯତଶ୍ରୀମଣ୍ଡିତ ହୋଇଛି। ଗୋଟିଏ ଗୀତରେ (ଭାଙ୍ଗିଲା ଉଗ୍ରିବୁ ମାନ ଯେ, ଗ୍ରଂ., ପୃ-୫୩୦) କବି ଲେଖିଛନ୍ତି—

ଅଶୋକ କୁଞ୍ଜ ନିଳୟର କୁସୁମ ଶଯ୍ୟାରେ ଶ୍ୟାମ ଓ ଶ୍ରୀମତୀ ଶୋଭିତ ହୋଇଛନ୍ତି। ଆଶ୍ଳେଷ ଫଳରେ ଅଧରକରେ ଅଧର ମିଶିଲା ପ୍ରାୟ ପ୍ରତୀତ ହେଉଛି। ପ୍ରେମରେ ନିମଜ୍ଜିତ ହୋଇ ପରସ୍ପରକୁ ଆଲିଙ୍ଗନ ଓ ଚୁମ୍ବନ ଦାନ କରୁଛନ୍ତି।

ଅନ୍ୟ ଗୋଟିଏ ଗୀତରେ (ପ୍ରେମ ଦର୍ପିତ ଦର୍ପ୍ପାର, ପୃ-୫୩୪) କବି ରୀତିଯୁଗୀୟ ଆଲଙ୍କାରିକ ରୀତିର ଆଶ୍ରୟ ନେଇ ଅଦ୍ଭୁତୋପମା ଓ ଉତ୍ପ୍ରେକ୍ଷାରେ ଯୁଗଳମୂର୍ତ୍ତିଙ୍କର ସମ୍ଭୋଗକାଳୀନ ଶୋଭା ବର୍ଣ୍ଣନା କରିଛନ୍ତି, ଯଥା—

ହେମଶମ୍ଭୁ କୁଚ ପରେ ଦେଇ କରତଳ,
କମଳ କଳିକା ଗ୍ରାସ କଲାକି କମଳ ? ।୧।

(୭୭) ଗୋ. ଲୀ. ମୁ., ୧୬।୧୦୫
(୭୮) 'ଯଥା' ଉପମାବାଚକ ହେଲେ ମଧ୍ୟ ଏଠାରେ ଉତ୍ପ୍ରେକ୍ଷା ବାଚକ ରୂପ ଭାବରେ ବ୍ୟବହୃତ।

ବଦନେ ବଦନ ଦେଇଁ ଲଗିଲ ଏ ଦ୍ୱନ୍ଦ୍ୱ,
କମଳ ପିଅଇକି କମଳ-ମକରନ୍ଦ ? ।୨।

ଏଠାରେ ଶ୍ରୀମତୀଙ୍କର ହେମକୁଚ ଶମ୍ଭୁକୁ କମଳ କଳି ଏବଂ ଶ୍ୟାମଙ୍କର କରତଳକୁ କମଳଭାବେ ଏବଂ ଉଭୟଙ୍କର ମୁଖକୁ କମଳ ରୂପେ ବର୍ଣ୍ଣନା କରାଯାଇଛି । କୃଷ୍ଣ ଓ ଗୌରତନୁର ଅପୂର୍ବ ସଙ୍ଗମକୁ ଲକ୍ଷ୍ୟ କରି ସାର୍ଥକ ଉପମା ଓ ଉତ୍ପ୍ରେକ୍ଷାରେ କବି-କଳ୍ପନା ମୁଖରିତ ହୋଇଉଠିଛି । କବିଙ୍କ ଭାଷାରେ—

କଳା ଗୋରା ବେନିତନୁ ଅପୂର୍ବ-ସଙ୍ଗମ ।
ମର୍କତେ ଜଡ଼ିତ କିସେ ଜମ୍ବୁନଦ ହେମ ? ।୪।
କନକ-ଲତିକା ଯଥା ତରୁଣ ତମାଳେ ।
ସ୍ଥିର ସୌଦାମିନୀ କିବା ନବାମ୍ବୁଦ ମାଳେ ?
କମଳେ ମଧୁପ ଯଥା ସଙ୍ଗୀ ଅନୁରାଗେ ।
ଦୁଇ ଅଙ୍ଗ ପୁଲକିତ ପ୍ରେମାବ୍ଧି ତରଙ୍ଗେ ।୩। (ଗ୍ରଂ., ପୃ-୫୩୫)

ନିବିଡ଼ ପରିରମ୍ଭ କାଳରେ ଉଭୟଙ୍କର ହୃଦୟଯୁଗର ମିଳନ ଫଳରେ ବକ୍ଷରେ ଦୋଳାୟିତ ହାର ତୁଟିଯାଏ । ଉଭୟଙ୍କର ଦେହ ଶ୍ରମ-ସ୍ୱେଦରେ ସିକ୍ତ ହୋଇପଡ଼େ । ଉଭୟେ ଅଧରାମୃତ ପାନ କରୁକରୁ ଆନନ୍ଦସାଗର ଉଦ୍‌ବେଳିତ ହୋଇପଡ଼େ । ଉଭୟଙ୍କର ସମ୍ମିଳିତ ବଦନରେ ଜ୍ୟୋତି ମିଳିତ ଦୁଇଟି ପୂର୍ଣ୍ଣେନ୍ଦୁର ଶୋଭା ଧାରଣ କରିଛି । ଯୁଗଳ ତନୁରେ ପୁଲକର ଅପୂର୍ବ ସଞ୍ଚାର ହୋଇଛି । ଲତାବାତାୟନରେ ମଞ୍ଜରୀ ଭାବାପନ୍ନ କବି ସେ କେଳିବିଳାସ ଦର୍ଶନରେ ପରମଉଲ୍ଲାସ ଅନୁଭବ କରୁଛନ୍ତି (ଆହା ! ଅପୂର୍ବ ଶୋଭନ, ଗ୍ରଂ., ପୃ-୬୪୬) । ଏ ମିଳନ କବିଙ୍କ ଦୃଷ୍ଟିରେ ସାମାନ୍ୟ ରକ୍ତମାଂସ ଦେହର କାମତାନ୍ତ୍ରିକ ମିଳନ ନୁହେଁ, କେବଳ ହୃଦୟ ହୃଦୟର ମିଳନ ନୁହେଁ—ଆତ୍ମା, ଆତ୍ମାର ମିଳନ । ମିଳିତ ଅବସ୍ଥାରେ ପ୍ରତୀତ ହୁଅନ୍ତି, ସତେ ଯେପରି ଦୁହିଁଙ୍କର ଗୋଟିଏ ଦେହ, ଗୋଟିଏ ଜୀବନ । ମର୍ତ୍ତ୍ୟ ବୃନ୍ଦାବନରେ ଲୀଳାର ପ୍ରକାଶ ନିମିତ୍ତ ଚିନ୍ମୟ ପ୍ରେମର ପ୍ରତିମା କେବଳ ଭିନ୍ନ ଭିନ୍ନ କଳେବର ଧାରଣ କରିଛନ୍ତି—

ଦୁହେଁ ଏକ ଅପଘନ ଏକଇ ଜୀବନ ।
ଲୀଳା ଛଳେ ପ୍ରେମର ପ୍ରତିମା ସିନା ଭିନ୍ନ ।୬। (ଗ୍ରଂ., ପୃ-୫୩୫).

ମଞ୍ଜରୀ ପ୍ରାଣ କବିଙ୍କ ଦୃଷ୍ଟିରେ ଶ୍ୟାମ ଓ ଶ୍ରୀମତୀ ଶୁଚି ରସର ମୂର୍ତ୍ତିମନ୍ତ ଅବତାର । ସାଧକ କବିଙ୍କର ସଂଯତ କଳ୍ପନା ମିଳନ ଦୃଶ୍ୟଟିକୁ କିପରି ମହିମାନ୍ୱିତ କରିଛି, ଏଠାରେ ଲକ୍ଷ୍ୟ କରି ଯାଇପାରେ ।

ଗୀତଗୋବିନ୍ଦରେ ସମ୍ଭୋଗ ଚିତ୍ର—ଶ୍ୟାମ ଓ ଶ୍ରୀମତୀଙ୍କର ମିଳନ ଓ ସମ୍ଭୋଗର ଅନୁକୂଳ ପ୍ରାକୃତିକ ପରିବେଶର ଚିତ୍ର ଗୀତଗୋବିନ୍ଦର ଅବିକଳ ଅନୁସରଣ ନ ହେଲେ ମଧ୍ୟ ପ୍ରେରଣା ପାଇଁ ଯେ କବି ଜୟଦେବଙ୍କଠାରେ ଋଣୀ, ଏଥିରେ ସନ୍ଦେହ ନାହିଁ ।

ସଖୀ ରାଧାଙ୍କୁ କୁସୁମରଚିତ କେଳି ନିଳୟରେ ଶ୍ୟାମଙ୍କ ସହ ମିଳିତ ହେବାପାଇଁ ଉଦ୍‌ବୁଦ୍ଧ କରି କହୁଛି—'ହେ କରଭୋରୁ, ଅନିଳ ସଞ୍ଚାଳିତ କିଶଳୟ-କର-ସଙ୍କେତରେ ଲତା ସମୂହ ତୁମକୁ ଅଭିସାରର ଇଙ୍ଗିତ ଦେଉଛନ୍ତି । ଗମନରେ ବିଳମ୍ବ କରନା (୬୯) ।

ରତି ବଳିତ ଲଳିତ ସଙ୍ଗୀତରେ ମାତି ମଳୟାନ୍ଦୋଳିତ ସୁରଭି-ଶୀତଳ ଓ ମଧୁମତ୍ତ ଭ୍ରମର ଗୁଞ୍ଜିତ କୁଞ୍ଜରେ ମଦନରସରେ ମାଧବଙ୍କ ସହ ବିଳାସରେ ପ୍ରବୃତ୍ତ ହୁଅ (୭୦) । କିନ୍ତୁ ଗୋପାଳକୃଷ୍ଣ ମିଳନ ଚିତ୍ରରେ ଗୀତଗୋବିନ୍ଦର କୃଷ୍ଣଙ୍କ ମୁଖରେ ଅତିମାତ୍ର ସ୍ପଷ୍ଟ (ପଦସମ୍ବାହନ, ବକ୍ଷର ଦୁକୂଳ ଅପସାରଣ ଇତ୍ୟାଦି : ଗୀ. ଗୋ., ୧୨।୨୩।୩-୪) ପରିହାର କରି ମିଳନ ଚିତ୍ରକୁ ଯଥାସମ୍ଭବ ସଂଯତ ରୁଚି ଓ ଶାଳୀନତା ପୂର୍ଣ୍ଣ କରିଛନ୍ତି । ରୂପ ଗୋସ୍ୱାମୀ ବିଦଗ୍‌ଧ ମାଧବ ନାଟକର ସପ୍ତମ ଅଙ୍କରେ ଲଳିତା ଓ ବୃନ୍ଦାଙ୍କର ସଂଲାପ ମାଧ୍ୟମରେ ମାଧବୀ ମଣ୍ଡପରେ ରାଧାମାଧବଙ୍କର କେଳିଚିହ୍ନ ଶ୍ଳେଷଭଙ୍ଗୀରେ ମାର୍ଜିତଭାବରେ ପ୍ରଦାନ କରିଛନ୍ତି (୭୧) ।

**ଗୋବିନ୍ଦ ଲୀଳାମୃତରେ ସମ୍ଭୋଗ ଚିତ୍ର**—ଗୋବିନ୍ଦ ଲୀଳାମୃତ ମହାକାବ୍ୟର ନବମସର୍ଗରେ (ମଧ୍ୟାହ୍ନ ଲୀଳା) ରାଧାଙ୍କ ସହ କୃଷ୍ଣଙ୍କର ବୈଦଗ୍ଧ୍ୟପୂର୍ଣ୍ଣ ଉକ୍ତି ପ୍ରତ୍ୟୁକ୍ତି, ଶୃଙ୍ଗାରୋଦ୍ଦୀପକ ହାବଭାବ (ରାଧାଙ୍କର କଞ୍ଚୁକାଞ୍ଚଳ ଧାରଣ, ନୀବୀମୋକ୍ଷଣ, ସ୍ତନ ପୀଡ଼ନ, ଶ୍ରୀମତୀଙ୍କର ବ୍ୟାଜରୋଧ (୭୨), ଶ୍ରୀକୃଷ୍ଣଙ୍କର କନ୍ଦର୍ପ-ଯଜ୍ଞ, କୁନ୍ଦଲତାଙ୍କ ଦ୍ୱାରା ଶ୍ୟାମ ଓ ଶ୍ରୀମତୀଙ୍କର ବସ୍ତ୍ରାଞ୍ଚଳରେ ଗ୍ରନ୍ଥିବନ୍ଧନ, ଅଧର ଚୁମ୍ବନ (୭୩), ଦଶମ ସର୍ଗରେ (ମଧ୍ୟାହ୍ନ ଲୀଳା) ରତାନୁଗତିକ ରୀତିରେ ନିକୁଞ୍ଜ ଗହ୍ୱରରେ ରାଧାଙ୍କ ସହ କୃଷ୍ଣଙ୍କର ବଳପୂର୍ବକ ରତିକେଳି (ନିର୍ଜନ କାମବିଳାସ) (୭୪) ଏବଂ ପଞ୍ଚଦଶ ସର୍ଗରେ ବୃନ୍ଦାଙ୍କ ନିର୍ଦ୍ଦେଶରେ ସରୋଜକୁଞ୍ଜରେ ରାଧାଙ୍କ ସହ କୃଷ୍ଣଙ୍କର ସମ୍ଭୋଗ ବିଳାସାଦି (୭୫) ବର୍ଣ୍ଣିତ ହୋଇଛି ।

. **ପଦାବଳୀ ସାହିତ୍ୟରେ ସମ୍ଭୋଗ ଚିତ୍ର**—ପଦାବଳୀ ସାହିତ୍ୟରେ ମିଳନର ଚିତ୍ର ସଂଯତ ଓ ଶାଳୀନତାପୂର୍ଣ୍ଣ, କିନ୍ତୁ ଅଳଙ୍କାର ପ୍ରୟୋଗ କ୍ଷେତ୍ରରେ ସେହି ରତାନୁଗତିକ ପ୍ରତିଧ୍ୱନି ମାତ୍ର ରହିଛି, ଯଥା—

ଦୁହୁଁ ଦୋହ୍ନାଁ ଦରଶନେ ଉଲ୍ଲସିତ ଭେଲ ।
ଆକୁଲେ ଅମିୟା ସାଗରେ ଡୁବିଗେଲ ॥
ଦୁହୁଁ ଜନ ନୟନ ହୋୟଲ ଯବ ଥିର ।
ଦୁହୁଁ ମୁଖ ଦୁହୁଁ ହେରି ଝରକତ ନୀର ॥ (ଗୋବିନ୍ଦ ଦାସ ବୈ. ଚ. ପ.)

---

(୬୯) ଗୀ. ଗୋ. ୧୧।୨୦।୫, ପୃ-୧୨୮, (୭୦) ତତ୍ରୈବ, ୧୧।୨୧।୧୭-୧୯, ପୃ-୧୩୪-୧୩୫, (୭୧) ବି. ମା., ୭।୬୦, ୬୩-୬୪, ପୃ-୪୧୪-୪୧୮ (୭୨) ଗୋ. ଲୀ. ମୃ., ୯।୬୨-୬୪, (୭୩) ତତ୍ରୈବ. ୯।୬୮, ୭୪, ୭୬; ୭୯; ୮୩,୮୪; ୮୭, (୭୪) ଗୋ. ଲୀ. ମୃ., (୭୫) ତତ୍ରୈବ, ୧୫।୩, ୫, ୧୧, ୧୨-୧୬, ୧୮; ୧୯, ୨୧ ଓ ୨୩ ଶ୍ଳୋକ ସମୂହ ।

ଦୁହେଁ ମୁଖ ସୁନ୍ଦର କ ଦେବ ତୁଳନା ।
କାନୁ ମରକତ ମଣି ରାଇ କାଞ୍ଚ ସୋନା ॥
ନବ ଗୋରୋଚନା ଗୋରି କାନୁ ଇନ୍ଦୀବର ।
ବିନୋଦିନୀ ବିଜୁରି ବିନୋଦ ଜଲଧର ॥
କନକେର ଲତା ଯେନ ତମାଲେ ବେଢ଼ିଲ ।
ନବଘନ ମାଝେ ଯେନ ବିଜୁରି ପଶିଲ ॥
ରାଇ କାନୁ ରୂପେର ନାହିକ ଉପାମ ।
କୁବଲୟ ଚାନ୍ଦ ମିଲଲ ଏକ ଠାମ ॥
ରସେର ଆବେଶେ ଦୁହେଁ ହଇଲା ବିଭୋର ।
ଦାସ ଅନନ୍ତ ପହୁଁ ନା ପାଓଲ ଓର ॥ (ବି. ଚ. ପ.)

**କିଶୋରଚନ୍ଦ୍ରାନନ୍ଦ ଚମ୍ପୂରେ ସମ୍ଭୋଗ ଚିତ୍ର**—ପ୍ରକୃତି ରୂପିଣୀ ରାଧାଙ୍କ ସଙ୍ଗରେ ପୁରୁଷ ରୂପୀ ଶ୍ରୀକୃଷ୍ଣଙ୍କର ମିଳନାଗ୍ରହରେ କବିସମ୍ରାଟ ଉପେନ୍ଦ୍ର ଋତୁରାଜ ବସନ୍ତ ଓ ତା'ର ଆନୁଷଙ୍ଗିକ ବିଭବ ମାନର ବର୍ଣ୍ଣନା ଦେଇ କାବ୍ୟିକ ଭାଷା ଓ ଅନୁପ୍ରାସର ମନୋଜ୍ଞ ଆବରଣରେ କାମକେଳିର ମାର୍ଜିତ ବର୍ଣ୍ଣନା ଦେଇଛନ୍ତି କିଶୋରଚନ୍ଦ୍ରାନନ୍ଦ ଚମ୍ପୂର 'ମ' ଗୀତରେ । କବିଙ୍କ ବର୍ଣ୍ଣନାନୁଯାୟୀ ପ୍ରଥମେ କଦମ୍ବ କୁଞ୍ଜର ଶେଷ ଭାଗରେ ବାସନ୍ତୀ ମଳୟାନିଳ ମୃଦୁ ମୃଦୁ ପ୍ରବାହିତ ହେଲା । ଭ୍ରମରମାନେ ଗୁଞ୍ଜନ କରି ପଙ୍କ୍ତି ବାନ୍ଧି ଲତାରେ ଉପବେଶନ କଲେ । ବନପ୍ରଦେଶ ରାଧାଙ୍କର ସ୍ୱର୍ଣ୍ଣତେଜ ଓ ଶ୍ରୀକୃଷ୍ଣଙ୍କର ଇନ୍ଦ୍ରନୀଳମଣି ସଦୃଶ ନୀଳବର୍ଣ୍ଣ କିରଣ-କଳିକାର ସଞ୍ଚାର ଶୋଭାରେ ଭୂଷିତ ହେଲା । ଉଭୟଙ୍କର ଚତୁରାକ୍ଷ ଘଟେ । କାମୋଦ୍ଦୀପନା ହେତୁ କୃଷ୍ଣଙ୍କର ଶ୍ୟାମତେଜ ଓ ରାଧାଙ୍କର ଗୌର ତେଜ ଏକୀଭୂତ ହୋଇଯାଏ (ମିଳିଲା ଶ୍ୟାମ ଗୌରର ଦୁଇମହ) । ସ୍ନେହାଧିକ୍ୟ ହେତୁ ଦୁହିଁଙ୍କର ଦେହ ଓ ମନ ଏକ ହୋଇଯାଏ ।

ଶ୍ରୀମତୀଙ୍କ ପ୍ରତି ଶ୍ୟାମଙ୍କର ଅବିରତ ଅନୁରାଗରେ ଏକ ପ୍ରଶସ୍ତିମୂଳକ ଗୀତ ରଚିଛି (ଚନ୍ଦ୍ରାନନେ ! ଧନ୍ୟ ମୁହିଁ ପିନ୍ଧା ତୋ ପୀତଧଟି ଧନେ ଗୋ, ଶ୍ରୀ. ବ. ପୃ-୬୩୭), ଯେଉଁଥିରେ ପ୍ରଣୟୀ ଭାବରେ କୃଷ୍ଣଚରିତର ଏକ ମଞ୍ଜୁଳ ବ୍ୟଞ୍ଜନାମୂଳକ ଅଭିବ୍ୟକ୍ତି ଘଟିଛି । ଗତାନୁଗତିକ ସମ୍ଭୋଗ ଗୀତର ସ୍ଥୂଳତାରୁ ମୁକ୍ତ ହୋଇ ଭାବ ଦୃଷ୍ଟିରୁ ଗୀତଟି ଏକ ଉଚ୍ଚାଙ୍ଗ ଗୀତର ମର୍ଯ୍ୟାଦା ଲାଭ କରିଛି । ମିଳନ ପରେ ସୁରତ-ରସାନନ୍ଦେ ଶ୍ରୀକୃଷ୍ଣ ମୁଗ୍ଧଚିତ୍ତରେ ରାଧାଙ୍କୁ କହନ୍ତି ଯେ ସେ ତାଙ୍କର ପ୍ରେମ ଧନରେ ଧନ୍ୟ । ଶ୍ରୀମତୀଙ୍କ ପ୍ରତି ତାଙ୍କର ନୈସର୍ଗିକ ଅନୁରାଗ ହେତୁ ତାଙ୍କ ସ୍ୱର୍ଣ୍ଣାଭ ଅଙ୍ଗ କାନ୍ତିର ଅନୁରୂପ ପୀତବସ୍ତ୍ର ପରିଧାନ କରନ୍ତି । ତାଙ୍କର ଅପରୂପ ରୂପମାଧୁରୀର ଆସ୍ୱାଦନ ନିମିତ୍ତ ସେ ନୀପମୂଳରେ ଆଶ୍ରୟ ନେଇଥାନ୍ତି । ତାଙ୍କର ନାମଗାନ କରି ତାଙ୍କୁ ଆକୃଷ୍ଟ କରିବା ନିମିତ୍ତ ସେ ମୁରଲୀବାଦନ କରନ୍ତି (୭୭) । ତାଙ୍କର

---

(୭୭) ଜ୍ଞାନଦାସ, ପ. ସା. ପୃ-୧୪୭

ପଥ ଅନୁସରଣ କରି ସେ ବୃନ୍ଦାରଣ୍ୟରେ ଭ୍ରମଣ କରୁଥାନ୍ତି । ତାଙ୍କ କବରୀର ଛଡ଼ା ଫୁଲମାଳା ସ୍ନେହରେ ସେ ତାଙ୍କ ଚନ୍ଦ୍ରକ ଚୂଡ଼ାରେ ଖଚିତ କରନ୍ତି । ତାଙ୍କ ପଦଚିହ୍ନର ସୁରଞ୍ଜିତ ରେଣୁରାଶି ଶ୍ରଦ୍ଧାରେ ଶରୀରରେ ବୋଳି ହୁଅନ୍ତି । ଏହି ଅକୃତ୍ରିମ ଅନୁରାଗର ଅନୁରୂପ ଭାବ ଓ ଚିତ୍ର ସଂସ୍କୃତ ଓ ଓଡ଼ିଆ ରଚନା ମାନଙ୍କରେ ପରିଲକ୍ଷିତ ହୁଏ । କୃଷ୍ଣଦାସ କବିରାଜ ଗୋବିନ୍ଦ ଲୀଳାମୃତରେ ଅନନ୍ୱୟ ଓ ଉପମେୟୋପମା ଅଲଙ୍କାରରେ ରାଧିକାଙ୍କର ରୂପ ଓ ଗୁଣର ପ୍ରଶସ୍ତି ଗାନ କରି ଲେଖିଛନ୍ତି—

କୃଷ୍ଣେନ୍ଦ୍ରିୟାହ୍ଲାଦଗୁଣୈରୁଦାରା
ଶ୍ରୀରାଧିକା ରାଜତି ରାଧିକେବ ।
ସର୍ବୋପମାନାବଳିମର୍ଦ୍ଦିଶୀଲା-
ନ୍ୟଙ୍ଗାନି ବାଙ୍ଗାନି ଚ ଭାନ୍ତ୍ୟମୁଷ୍ୟାଃ ।୧୧୮।
ଶ୍ରୀରାଧିକାନନ୍ୟସମା ଲସତ୍ୟସୌ
ମାଧୁର୍ଯ୍ୟସମ୍ପତ୍ତିରିବାସବର୍ଦ୍ଧିଷଃ ।୧୧୯। (ଗୋ' ଲୀ. ମୃ., ୧୧ଶ ସର୍ଗ)

ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଇନ୍ଦ୍ରିୟର ଆହ୍ଲାଦକାରୀ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟାଦି ଗୁଣରେ ଭୂଷିତା ରାଧିକା ରାଧିକା ପରି ଏବଂ ଚନ୍ଦ୍ର, କୁମୁଦ, ମୃଣାଳ, ପଦ୍ମ ଓ ସ୍ୱର୍ଣ୍ଣାଦି ନିଖିଳ ଉପମାନ ବସ୍ତୁର ଅହଙ୍କାର ବିମର୍ଦ୍ଦକ ରାଧାଙ୍କର ଅଙ୍ଗପ୍ରତ୍ୟଙ୍ଗ ରାଧାଙ୍କର ଅଙ୍ଗପ୍ରତ୍ୟଙ୍ଗ ପରି ଶୋଭା ପାଉଛି, ପୁଣି ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ସମ୍ପତ୍ତି ପରି ଅନନ୍ୟସମା ରାଧା ଶୋଭା ପାଉଛନ୍ତି ।

**ସ୍ୱାଧୀନଭର୍ତ୍ତୃକା ରାଧା**—'କେଳିବିଳାସାନ୍ତେ ସ୍ୱାଧୀନଭର୍ତ୍ତୃକା ରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଉକ୍ତି' ଶୀର୍ଷକ ଗୀତଟିଏ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ରହିଛି । ଗୀତଟି ପ୍ରଥାଙ୍କଣ୍ଡ ପାରମ୍ପରିକ ରୀତିରେ ରଚିତ । ରୂପ ଗୋସ୍ୱାମୀ ସ୍ୱାଧୀନ ଭର୍ତ୍ତୃକାର ଲକ୍ଷଣ ସମ୍ପର୍କରେ ଲେଖିଛନ୍ତି—

ସ୍ୱାୟତ୍ତାସନ୍ନଦୟିତା ଭବେତ୍ ସ୍ୱାଧୀନଭର୍ତ୍ତୃକା ।
ସଲିଲାରଣ୍ୟବିକ୍ରୀଡ଼ା-କୁସୁମାବଚୟାଦିକୃତ୍ ।୪୯।

(ଉଜ୍ଜ୍ୱଳ ନୀଳମଣି, ନାୟିକା ଭେଦଃ, ପୃ-୨୦୪)

ଅର୍ଥାତ୍ କାନ୍ତ ଯାହାର ଅଧୀନ ହୋଇ ସର୍ବଦା ସମୀପରେ ଅବସ୍ଥାନ କରେ, ତାହାକୁ ସ୍ୱାଧୀନଭର୍ତ୍ତୃକା କୁହାଯାଏ (୭୭) । ସ୍ୱାଧୀନଭର୍ତ୍ତୃକା ଗୀତଟିରେ (ହେ ନଳିଙ୍କ ବଦରିଧରଜ !) ରାଧା ରତିବିଳାସାନ୍ତେ ବିପର୍ଯ୍ୟସ୍ତ ବେଶ ଭୂଷଣକୁ ଲକ୍ଷ୍ୟ କରି ଶ୍ରୀକୃଷ୍ଣଙ୍କ ପ୍ରତି ବ୍ୟାଜ କ୍ରୋଧ ପ୍ରକାଶ କରି ଅନୁଶାସନ ଭଙ୍ଗୀରେ କହୁଛନ୍ତି—ସଖୀ ମଣ୍ଡଳୀଗଣଙ୍କର ବହୁଯତ୍ନ ସମ୍ପାଦିତ ବେଶଭୂଷଣ (ଅଳକା ରଚନା) ସେ ନିର୍ବିଘ୍ନରେ ବିଢ଼ମ୍ବିତ କରି ଆଜି ସେମାନଙ୍କ

(୭୭) ସା. ଦ., ୩ୟ ପରିଚ୍ଛେଦ; ପୃ-୨୨୭

ସମକ୍ଷରେ ତାଙ୍କୁ ଲଜ୍ଜିତ କରିଛନ୍ତି । ବେଶଭୂଷଣ ସୁସଜ୍ଜିତ କରିବା ପାଇଁ ନିର୍ଦ୍ଦେଶ ଦେଇ କହୁଛନ୍ତି—ତାଙ୍କର ଅସମ୍ବୃତ ସିନ୍ଥି ସକାଡ଼ି ସେଥିରେ ସୁଘଟିତ ସିନ୍ଦୂର ରେଖା ଅଙ୍କନ କରନ୍ତୁ । କର୍ଣ୍ଣାବତଂସ ସହିତ କରିଲସ୍ଥିର ତମଗ୍ଧ ପ୍ରସ୍ତୁତ କରି ପୟୋଧରରେ ମୃଗମଦର ପତ୍ରାବଳୀ ରଚନା କରନ୍ତୁ । ସ୍ଖଳିତ ବଳୟ କରଦ୍ୱୟରେ ପନ୍ଦର ସହିତ ପିନ୍ଧାଇ ଦିଅନ୍ତୁ । କୁସୁମ ସ୍ରଜରେ ଶିଥିଳ ବେଣୀ ଶୃଙ୍ଖଳିତ କରି ଚରଣଦ୍ୱୟ ନୂପୁର ଶୋଭିତ କରନ୍ତୁ (୭୮) । ଗୀତଗୋବିନ୍ଦ, ବିଦଗ୍ଧ ମାଧବ, ଗୋବିନ୍ଦ ଲୀଳାମୃତ, ବୈଷ୍ଣବ ପଦାବଳୀ ଓ କବିସୂର୍ଯ୍ୟଙ୍କ ରଚନାରୁ ଶ୍ରୀମତୀଙ୍କର ସ୍ୱାଧୀନ ଭର୍ତ୍ତୃକା ଲକ୍ଷଣରେ ଅନୁରୂପ ଦୃଷ୍ଟାନ୍ତ ଦିଆ ଯାଇପାରେ । ଗୀତଗୋବିନ୍ଦରେ ରାଧା ରତିବିଳାସାନ୍ତେ ମାଧବଙ୍କୁ ଆଦର ସହକାରେ କହୁଛନ୍ତି—

କୁରୁ ଯଦୁନନ୍ଦନ ଚନ୍ଦନଶିଶିରତରେଣ କରେଣ ପୟୋଧରେ ।
ମୃଗମଦପତ୍ରକମତ୍ର ମନୋଭବ ମଙ୍ଗଳକଳସସହୋଦରେ ।ଧ୍ରୁ। ।୧।

ମମ ରୁଚିରେ ଚିକୁରେ କୁରୁ ମାନଦମାନସଜଧ୍ୱଜଚାମରେ ।
ରତିଗଳିତେ ଲଳିତେ କୁସୁମାନି ଶିଖଣ୍ଡିଶିଖଣ୍ଡକଡାମରେ ।୨।

ରଚୟ କୁଚୟୋଃ ପତ୍ରଂ ଚିତ୍ରଂ କୁରୁଷ୍ୱ କପୋଲୟୋ-
ର୍ଘଟୟ ଜଘନେ କାଞ୍ଚୀମଞ୍ଚସ୍ରଜାଂ କବରୀଭରମ୍ ।
କଳୟ ବଳୟଶ୍ରେଣୀଂ ପାଣୌ ପଦେ କୁରୁ ନୂପୁରା-
ବିତି ନିଗଦିତଃ ପ୍ରୀତଃ ପୀତାମ୍ବରୋଽପି ତଥା କରୋତ୍ ।୪।

(ଗୀ. ଗୋ., ୧୨।୨୪, ପୃ-୧୫୨-୧୫୬)

ବିଦଗ୍ଧମାଧବର ରାଧା ନେପଥ୍ୟରେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟକରି କହୁଛନ୍ତି—ହେ ଅନଘ ଶ୍ରୀକୃଷ୍ଣ ! ମୋର କର୍ଣ୍ଣକୋଡରେ କଳପଦ୍ମ ଘଟିତ କର, ଚିକୁରର ପ୍ରାନ୍ତଭାଗରେ ଅଭଙ୍ଗୁର ଲବଙ୍ଗ, ବକ୍ଷଦେଶରେ ମଲ୍ଲିକାମାଳା ଏବଂ ଜଘନରେ କଦମ୍ବପୁଷ୍ପ ରଚିତ ମେଖଳା ବିନ୍ୟାସ କର—ସଖୀଗଣ ଯେପରି ମୋତେ ଭୂଷଣହୀନା ନ ଦେଖନ୍ତି (୭୯) ।

ପଦକର୍ତ୍ତା ବସୁ ରାମାନନ୍ଦ ରସାଳସ ଅବସ୍ଥାରେ ରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି—

ପ୍ରାଣନାଥ କି ଆଜୁ ହୋଇଲ
କେମନେ ଯାଇବ ଘରେ ନିଶି ପୋହାଇଲ ।।
ମୃଗମଦ ଚନ୍ଦନ ବେଶ ଗେଲ ଦୂର ।
ନୟାନେର କାଜର ଗେଲ ସିଁଥାର ସିନ୍ଦୂର ।।

(୭୮) ଗଦ୍ୟଧର୍ମୀ ପ୍ରକାଶଭଙ୍ଗୀ ଓ କବିତ୍ୱହୀନ ପଦ ପରମ୍ପରା ହେତୁ ଗୀତଟିର କନକତ୍ୱ ସମ୍ପର୍କରେ ସନ୍ଦେହ ଜାତ ହୁଏ ।

(୭୯) ବି. ମା., ୭।୨୫, ପୃ–୪୧୯

ଯତନେ ପରାବୃ ମୋରେ ନିଜ ଆଭରଣ ।
ସଙ୍ଗେ ଲଇଯା ଚଲ ମୋରେ ବଙ୍କିମ-ଲୋଚନ ।।
ତୋମାର ପୀତବାସ ଆମାରେ ଦାଓ ପରି ।
ଉଭ କରି ବାନ୍ଧ ଚୂଡ଼ା ଆଉଲାଯ୍ୟା କବରୀ ।। (ବି. ଚ. ପ.)

ନିଶାନ୍ତେ କେଳି-କୁଞ୍ଜ ଦ୍ୱାରଦେଶରୁ ଜଣେ ବ୍ରଜାଙ୍ଗନାର ଚେତାବନୀ ଶ୍ରବଣ କରି ରସାଳସା ଶ୍ରୀମତୀ ଶ୍ୟାମଙ୍କୁ କହୁଛନ୍ତି—

ଲୀଳାନିଧି ହେ ! ଲଜେ ମୁଁ ଗଲିଟି ସଖି
ଲୁଚ୍ଛଇଛ କାହିଁ ଶ୍ୟାମ ହେ ଦିଅ ମୋ ଲଗି ଶାଢ଼ୀ । ପଦ ।

ଲକ୍ଷଲକ୍ଷ ଗୁଣ ଅଛୁଟି ମୋର    ଲଲମ ଆଦି ଭୂଷା ସଜ କର
ଲଭିଥିବ ଭୁରୁ ମଧ୍ୟ ତିଲକ    ଲେଖିଦିଅ ବେଗେ ନ ଦେଖୁ ଲୋକ ।୬।
(କି. ଚ. ଚଂ., କ. ସୂ. ଗ୍ରଂ., 'ଲ' ଗୀତ, ପୃ-୧୭୯)

ଗୀତକାବ୍ୟର ପରମ୍ପରା କ୍ରମେ କବି କେଳିକୁଞ୍ଜ ବାହୁଡ଼ା କାଳରେ ରସାଳସା ରାଧାଙ୍କୁ ଲକ୍ଷ୍ୟକରି ସଖୀମାନଙ୍କର ପରିହାସ ସୂଚକ ଗୀତଟିଏ (ପ୍ରାଣ ମିତଣିରେ ! ଫିଟାଇ କହ ରୁ ମଙ୍କା) ରଚନା କରିଛନ୍ତି । ସଖୀ ପରିହାସ କରି ଶ୍ରୀମତୀଙ୍କୁ କହୁଛି—'କୁଞ୍ଜରେ ସୁରରାଜା ଉଭୟଙ୍କୁ କାହିଁକି ବନ୍ଦୀ କରିଥିଲା, ରହସ୍ୟ ଫିଟାଇ କହ । କେଉଁଠାରେ ଶ୍ୟାମଙ୍କ ସହ ତାଙ୍କର ଭେଟ ହେଲା ? ପୁଣି ନୀଳ ଦୁକୂଳ ଛାଡ଼ି ଶ୍ୟାମଙ୍କର ପୀତବସନ ଓ ଉତ୍ତରୀୟ ଅଙ୍ଗରେ ଆବରଣ ଦେବାର ରହସ୍ୟ କ'ଣ ? ସଖୀ ମେଳରେ ତ ତାଙ୍କର ଫୁଲତୋଳା ଚାଲିଥିଲା, କିନ୍ତୁ ଗଣ୍ଡର ମକରୀ ଉପରେ ତାମ୍ବୁଲ ବୋଳ ଆସିଲା କେଉଁଠୁ ? ମତ୍ତହସ୍ତୀ ତାଡ଼ିତ ପଦ୍ମ ପରି ତାଙ୍କର ବେଶଭୂଷଣ ବିପର୍ଯ୍ୟସ୍ତ ହେବାର ରହସ୍ୟ କ'ଣ ? ଓଡ଼ିଆ ଗୀତକାବ୍ୟମାନଙ୍କରେ ଏ ପ୍ରକାର କେଳିମନ୍ଦିର ବାହୁଡ଼ା ସଖୀପରିହାସର ବହୁଳ ଚିତ୍ର ଦୃଷ୍ଟ ହୁଏ । କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର 'ବ' ଗୀତ (ବିଟପି ବେଣୀ ମଣ୍ଡୁଳାରେ ବାଳା, ବିବିଧ ବିରୁଦ୍ଧ ଶୀଳା, କ. ସୂ. ଗ୍ରଂ., ପୃ-୧୭୪) ତା'ର ଏକ ସୁନ୍ଦର ଦୃଷ୍ଟାନ୍ତ ।

## ରସାଳସ ଓ କୁଞ୍ଜଭଙ୍ଗ :

ସମ୍ଭୋଗ ପରେ ଶ୍ୟାମ ଓ ଶ୍ରୀମତୀଙ୍କର ଆଳସ୍ୟ ବା ଅବସାଦକୁ ରସାଳସ କୁହାଯାଏ । ଏହି ପର୍ଯ୍ୟାୟର ଗୀତଗୁଡ଼ିକରେ ରାଧାକୃଷ୍ଣଙ୍କର କୁଞ୍ଜରେ ସମ୍ଭୋଗ ଓ ବିନିଦ୍ର ରଜନୀ ଯାପନ ଫଳରେ ଦେହ ଓ ମନରେ ଯେଉଁ ଶିଥିଳତା ଆସିଥାଏ, ତା'ର ବର୍ଣ୍ଣନା ହୋଇଥାଏ । ତା'ଛଡ଼ା ବୃନ୍ଦା, ସଖୀ, ରାଧା ପାଳିତ କକ୍ଖଟୀ ବାନରୀର ଅହ୍ୱାନ, ପାଳିତ ଶୁକ ଓ ସାରୀଙ୍କର ଉକ୍ତି ପ୍ରତ୍ୟୁକ୍ତି ଏବଂ ପକ୍ଷୀମାନଙ୍କର କୂଜନରେ ଉଷା ପୂର୍ବରୁ ରାଧା ଓ କୃଷ୍ଣଙ୍କୁ ସଚେତ କରାଯାଇ ସ୍ୱ ସ୍ୱ ବାସ-ପ୍ରେରଣ କ୍ରିୟାକୁ କୁଞ୍ଜଭଙ୍ଗ କୁହାଯାଏ । 'ନିଶାନ୍ତଲୀଳା ସ୍ମରଣୀ' ସୂଚକ ଶ୍ରୀରାଧାକୃଷ୍ଣ ପ୍ରାତଃ ସ୍ମରଣାମୃତ ଗୀତଟିରେ ଶ୍ୟାମ ଓ ଶ୍ରୀମତୀଙ୍କର ସମ୍ଭୋଗାନ୍ତ

ରସାଳସ ଅବସ୍ଥା ଓ କୁଞ୍ଜଭଙ୍ଗର ଚିତ୍ର ଦିଆଯାଇଛି (୮୦) । ଏତଦ୍‌ବ୍ୟତୀତ ପୂର୍ବାଲୋଚିତ ଶ୍ରୀମତୀଙ୍କର ସ୍ୱାଧୀନଭର୍ତ୍ତୃକା ଲକ୍ଷଣର ଗୀତଟି କୁଞ୍ଜଭଙ୍ଗର ଅନ୍ୟତମ ଦୃଷ୍ଟାନ୍ତ । ବଙ୍ଗୀୟ ପଦାବଳୀ ସାହିତ୍ୟରେ ଯେପରି ରସାଳସ, କୁଞ୍ଜଭଙ୍ଗ ଓ ଶ୍ରୀମତୀଙ୍କର ସମ୍ଭୋଗସ୍ପୃହା ମୂଳକ ବହୁ ସୁନ୍ଦର ପଦ (ଗୀତ) ପରିଦୃଷ୍ଟ ହୁଏ, ଗୋପାଳକୃଷ୍ଣଙ୍କ ରଚନାରେ (ପୂର୍ବର ଦୁଇଟି ଗୀତକୁ ଛାଡ଼ିଦେଲେ) ତାହା ଏକପ୍ରକାର ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ ।

## ପ୍ରେମବୈଚିତ୍ତ୍ୟ :

ପୂର୍ବରୁ ପ୍ରେମବୈଚିତ୍ତ୍ୟ ସମ୍ପର୍କରେ ସୂଚନା ଦିଆଯାଇଛି । ଏହା ସମ୍ଭୋଗର ଏକ ଅଙ୍ଗ । ପ୍ରିୟତମର କଣ୍ଠାଶ୍ଳିଷ୍ଟ ହେଲେ ମଧ୍ୟ ନାୟିକା ଚିତ୍ତରେ ଯଦି ଅନ୍ୟଥାବୃତ୍ତି ହୁଏ, ତାହାକୁ ପ୍ରେମବୈଚିତ୍ତ୍ୟ କୁହାଯାଏ । ଶ୍ୟାମ ଓ ଶ୍ରୀମତୀ ପରସ୍ପର ମିଳିତ ହେଲେ ମଧ୍ୟ ବିଚ୍ଛେଦଭୟ ଓ ମିଳନକାଳର କ୍ଷଣିକତାର ଚିନ୍ତା ହେତୁ ମିଳନ ମଧ୍ୟରେ ପ୍ରେମବୈଚିତ୍ତ୍ୟ ଦେଖାଯାଏ । ପ୍ରିୟତମର କୋଳରେ ଥାଇ ଯଦି ମନେହୁଏ ଯେ ଉଭୟଙ୍କ ମଧ୍ୟରେ ଦୂରତ୍ୱ ଦୂରୀଭୂତ ନାହିଁ, ଅଙ୍ଗର ଉତ୍ତରୀୟ, ହାର ଓ ଚନ୍ଦନକୁ ଯେବେ ମିଳନର ବାଧା ବୋଲି ମନେ କରାଯାଏ, ପୁଣି ଦେହର ବ୍ୟବଧାନ ସମ୍ପୂର୍ଣ୍ଣ ମିଳନ ସୁଖରେ ବାଧା ଘଟାଉଛି ବୋଲି ଯଦି ମନେହୁଏ, ତା'ହେଲେ ତାହାକୁ ଲୋକୋତ୍ତର ପ୍ରେମବୈଚିତ୍ତ୍ୟ କୁହାଯାଏ । ଏହାଛଡ଼ା ଯାହା ଉପଭୁକ୍ତ ହୋଇ ଅଭୁକ୍ତପୂର୍ବ ବୋଲି ମନେହୁଏ, ତାହା ମଧ୍ୟ ପ୍ରେମବୈଚିତ୍ତ୍ୟର ଅନ୍ୟତମ ଦୃଷ୍ଟାନ୍ତ (୮୧) । ଲଳିତ ମାଧବ, ବିଦଗ୍‌ଧ ମାଧବ ଏବଂ ବଙ୍ଗୀୟ ପଦାବଳୀ ସାହିତ୍ୟରେ ବିଶୁଦ୍ଧ ପ୍ରେମବୈଚିତ୍ତ୍ୟର ଯେପରି ମଞ୍ଜୁଳ ଦୃଷ୍ଟାନ୍ତ ପରିଦୃଷ୍ଟ ହୁଏ, ଗୋପାଳକୃଷ୍ଣଙ୍କ ରଚନାରେ ତାହା କ୍ୱଚିତ୍ ପରିଲକ୍ଷିତ ହୁଏ । କେବଳ ଯେ ପର୍ଯ୍ୟନ୍ତ ରାଧାଙ୍କର ସମାଜ ଓ ଗୁରୁଗୌରବ ଲଜ୍ଜାର ଭୟ ରହିଛି, ପୂର୍ବରାଗର କେତୋଟି ଗୀତରେ ଏହି ପ୍ରେମବୈଚିତ୍ତ୍ୟର ବ୍ୟଞ୍ଜନା ମାତ୍ର ଉପଲବ୍‌ଧ ହୋଇଥାଏ ।

## ସ୍ୱୟଂ ଦୌତ୍ୟ (ସଂକୀର୍ଣ୍ଣ ସମ୍ଭୋଗ) :

ରାଧାଙ୍କ ସହିତ ମିଳିତ ହେବାପାଇଁ ନାନା ସ୍ଥଳରେ ନାନା ବେଶରେ ଶ୍ରୀକୃଷ୍ଣଙ୍କର ଅଭିଯାତ୍ରା ପଦାବଳୀ ସାହିତ୍ୟରେ ବର୍ଣ୍ଣିତ ଅଛି । ନିଜପାଇଁ ନିଜେ ଦୌତ୍ୟ କରିଥିବାରୁ ଶ୍ୟାମଙ୍କର ଏ ମିଳନ ପ୍ରଚେଷ୍ଟାକୁ ସ୍ୱୟଂଦୌତ୍ୟ କୁହାଯାଏ । ଶ୍ରୀକୃଷ୍ଣ କେତେବେଳେ ନାପିତୁଣୀ, କେତେବେଳେ ମାଳିନୀ, କେତେବେଳେ ବଣିଆଣୀ, କେତେବେଳେ କେଳା, କେତେବେଳେ ବାଜିକର କେତେବେଳେ ବା ଘାଟ ଜଗୁଆଳ ବେଶରେ ରାଧାଙ୍କ ସହିତ ମିଳିତ ହେବାର ଏବଂ ରାଧା ଓ ତାଙ୍କର ସଖୀମାନଙ୍କ ସହିତ ତାଙ୍କର ବଚନ ଚାତୁରୀର ରସମୟ ଚିତ୍ର ରହିଛି । ଏଗୁଡ଼ିକ ସଂକୀର୍ଣ୍ଣ ସମ୍ଭୋଗଲୀଳାର ଅନ୍ତର୍ଭୁକ୍ତ । ସମ୍ଭବତଃ ଚଣ୍ଡୀଦାସଙ୍କର 'କୃଷ୍ଣକୀର୍ତ୍ତନ' ଓ ପଦାବଳୀ ଆଦର୍ଶରେ ଓଡ଼ିଶାର ବୈଷ୍ଣବ କବି ଦୀନକୃଷ୍ଣ;

(୮୦) ଗୋ କୃ ପ., ପୃ-୫, ଗୋ. କୃ. ଗ୍ରଂ., ପୃ-୫୭
(୮୧) ପ. ସା., ପୃ-୧୩୯-୧୪୫

ଦୀନେଇ ଦାସ, ବନମାଳୀ, ସଦାନନ୍ଦ, ଅଭିମନ୍ୟୁ, ଗୌରଚନ୍ଦ୍ର ଓ ଗୌରହରି ପ୍ରଭୃତି ତାଙ୍କର କାବ୍ୟ ଓ ସଙ୍ଗୀତରେ ନୌକାଲୀଳା, ଶ୍ରୀକୃଷ୍ଣଙ୍କ ରଜକୀ ବେଶ, ମାଳିନୀ ଓ ବଣିଆଣୀ ବେଶ ପ୍ରଭୃତିର ବର୍ଣ୍ଣନା କରିଅଛନ୍ତି । ବାବାଜୀ ବୈଷ୍ଣବ ଚରଣଙ୍କ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ନୌକାଲୀଳା ସମ୍ପର୍କୀୟ ଗୋଟିଏ ଗୀତକୁ ଛାଡ଼ିଦେଲେ ସେଥିରେ ଓ ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ଅନ୍ୟତମ ପରିଦୃଷ୍ଟ ହୁଏନା । ସରୋଜ କୁମାର ପାଣିଗ୍ରାହୀ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଶ୍ରୀକୃଷ୍ଣଙ୍କ କାତରୀ (ପୃ-୩୩୯-୩୪୨), ଧାଙ୍ଗ ଜଗୁଆଳ (ପୃ ୩୦୧), ନାପିତୁଣୀ (ପୃ-୩୪୮) ବେଶ ଓ ନଟୂଣୀବେଶ ସମ୍ପର୍କିତ ସଂକୀର୍ଣ୍ଣ ସମ୍ଭୋଗର କେତୋଟି ଗୀତ ରହିଛି । ଏଗୁଡ଼ିକର ଭାବ, ରୂଚି, ଭାଷା ଓ ରଚନାଭଙ୍ଗୀ ଲକ୍ଷ୍ୟ କଲେ ସ୍ପଷ୍ଟ ଜଣାଯାଏ ଯେ ଏଗୁଡ଼ିକ ଗୋପାଳକୃଷ୍ଣଙ୍କ ରଚନା ନୁହେଁ ।

**ବସନ୍ତୋତ୍ସବ ଓ ରାସ :**

ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ବସନ୍ତୋତ୍ସବର ଅବିର ଓ ହୋରିକୀଡ଼ା ସମ୍ପର୍କରେ ଦୁଇଟି ଗୀତ ଏବଂ ରାସୋତ୍ସବ ସମ୍ପର୍କରେ ଦୁଇଟି ଗୀତ ରହିଛି । ବସନ୍ତୋତ୍ସବର (ଦୋଳଲୀଳା) ସମୟ ହେଉଛି ବସନ୍ତ ଏବଂ ରାସବିହାରର ସମୟ ହେଉଛି ଶରତ୍ । ବସନ୍ତୋତ୍ସବ ବା ଦୋଳଲୀଳା ରାଧାକୃଷ୍ଣଙ୍କର ସମ୍ପନ୍ନ ସମ୍ଭୋଗ ଏବଂ ରାସବିହାର ସଂକୀର୍ଣ୍ଣ ସମ୍ଭୋଗର ଅନ୍ତର୍ଭୁକ୍ତ । ବସନ୍ତ ଓ ଶରତରେ ପ୍ରକୃତିର ରୂପବୈଚିତ୍ର୍ୟ ସହ ସାମଞ୍ଜସ୍ୟ ରକ୍ଷା କରିଯାଇ ଏହି ଲୀଳାଗୁଡ଼ିକର ପରିକଳ୍ପନା କରାଯାଇଛି । ପ୍ରାବୃଟରେ ଶୀକରବାହୀ ବାୟୁର ତରଙ୍ଗାୟିତ ପ୍ରବାହ, ବୃଷ୍ଟିଧାରା ଓ ଧରଣୀର ଶ୍ୟାମଳଶ୍ରୀ ବକ୍ଷରେ ଆନନ୍ଦର ଯେଉଁ ସ୍ପନ୍ଦନ ଖେଳାଇ ଦିଏ, ତାହା ବୃନ୍ଦାବନରେ ଶ୍ୟାମ ଓ ଶ୍ରୀମତୀଙ୍କର ଝୁଲଣ ଲୀଳାର ରୂପ ଗ୍ରହଣ କରେ, କିନ୍ତୁ ଗୋପାଳକୃଷ୍ଣଙ୍କ ରଚନାରେ ଝୁଲଣ ଲୀଳା ସମ୍ପର୍କୀୟ ଗୀତ ପରିଦୃଷ୍ଟ ହୁଏନା ।

**ବସନ୍ତୋତ୍ସବ**—ଶୈତ୍ୟର ପାଣ୍ଡୁରତା ଓ ଜର୍ଣ୍ଣତା ପରେ ବସନ୍ତରେ ଧରଣୀ ବକ୍ଷରେ ନବ ଜୀବନର ସଞ୍ଚାର ହୁଏ । ବୃକ୍ଷ ଓ ବଲ୍ଲୀରେ କିଶଳୟ, ଆମ୍ରମଞ୍ଜରୀ, କୋକିଳର କୁହୁ, ମଳୟର ମୃଦୁ ପ୍ରବାହ, ବାସନ୍ତୀ ଜ୍ୟୋତ୍ସ୍ନା, ମନୁଷ୍ୟ, ପଶୁପକ୍ଷୀ ସମସ୍ତଙ୍କ ପ୍ରାଣରେ ନବ ଉନ୍ମାଦନା ସଞ୍ଚାର କରନ୍ତି । ଅନୁରାଗର ପ୍ରତୀକ ପଳାଶ, ଶାଲ୍ମଳୀ ଓ ଅଶୋକର ଆରକ୍ତ କୃଷ୍ଣଚୂଡ଼ା ଶାଶ୍ୱତ ପ୍ରେମର ମୂର୍ତ୍ତିମନ୍ତ ବିଗ୍ରହ ଶ୍ୟାମ ଓ ଶ୍ରୀମତୀଙ୍କର ବସନ୍ତୋତ୍ସବର ଆବାହନୀ ଗାନ କରନ୍ତି । ପୁରପଲ୍ଲୀ, ନଗର, ପ୍ରାନ୍ତରରେ ଅନୁଷ୍ଠିତ ହୁଏ ତାଙ୍କର ବସନ୍ତୋତ୍ସବ-ସଙ୍ଗୀତ ନୃତ୍ୟ ଓ ବାଦ୍ୟର ତାଳେ ତାଳେ । ଅନୁରାଗର ପ୍ରତୀକ ଅବିର ଓ ଫଗୁ କ୍ରୀଡ଼ା ମୋଦରେ ଆକାଶ ଓ ବତାସ ହୁଏ ଅନୁରାଗମୟ । ବସନ୍ତର ଏ କମନୀୟ ନୈସର୍ଗିକ ପରିବେଶରେ ଶ୍ୟାମ ଓ ଶ୍ରୀମତୀଙ୍କର ବୃନ୍ଦାବନରେ ଆନନ୍ଦମୁଖର ବସନ୍ତୋତ୍ସବର (ଦୋଳୋତ୍ସବ) କଳ୍ପନା କରି ବୈଷ୍ଣବ କବି ସୁନ୍ଦର ପଦ, ସଙ୍ଗୀତ, ନାଟକ ଓ କାବ୍ୟ

ରଚନା କରି ଯାଇଛନ୍ତି (୮୨) । ରାଧାମାଧବଙ୍କର ବାସନ୍ତୀଲୀଳା ଅବଲମ୍ବନରେ ରଚିତ ଗୀତଗୋବିନ୍ଦକୁ ଛାଡ଼ିଦେଲେ ଓଡ଼ିଶୀ କବି ପିଣ୍ଡିକ ଶ୍ରୀଚନ୍ଦନଙ୍କର 'ବସନ୍ତ ରାସ' ଏବଂ ବଙ୍ଗ ଓଡ଼ିଶାର ବହୁ କବିଙ୍କର ଏ ସଂକ୍ରାନ୍ତ ବହୁ ସଙ୍ଗୀତ, ଚଉପଦୀ ଓ ଛାନ୍ଦ ପରିଦୃଷ୍ଟ ହୁଏ ।

ଯୁଗଳପ୍ରେମମୂର୍ତ୍ତିଙ୍କର 'ହୋରିଖେଳ' ଶୀର୍ଷକ ଗୋଟିଏ ଗୀତରେ (ହୋରି ରଙ୍ଗେ ବିହରି, ଗ୍ରନ୍ଥାବଳୀ, ପୃ-୪୪୭) କବି ବୃନ୍ଦାବନରେ ବ୍ରଜାଙ୍ଗନାଙ୍କ ମେଳରେ ରାଧାକୃଷ୍ଣଙ୍କର ରଙ୍ଗଲୀଳାର ଅସରନ୍ତି ଆନନ୍ଦ ବର୍ଣ୍ଣନା କରିଛନ୍ତି । କବିଙ୍କ ବର୍ଣ୍ଣନାନୁଯାୟୀ କିଶୋରୀ ଶ୍ୟାମଙ୍କ ସଙ୍ଗରେ ହୋରି ରଙ୍ଗରେ ବିହାର କରୁଥିବା ସମୟରେ ବାୟୁ ଆନ୍ଦୋଳିତ ଚମ୍ପକବଲ୍ଲୀ ତମାଲରେ ଢ଼ଳିପଡ଼ି ଏବଂ ବ୍ରଜସୁନ୍ଦରୀଗଣ ଶ୍ରୀମତୀଙ୍କ ସହିତ ଶ୍ୟାମଙ୍କୁ ଘେରି ରହିଥିବାରୁ ତଡ଼ିତ୍ମାଳା ଘନକୁ ଘେରିଲା ପରି ଦେଖା ଯାଉଛନ୍ତି । ଗୋପାଙ୍ଗନା ସଦୃଶ ପଦ୍ମବନରେ ଶ୍ରୀକୃଷ୍ଣ ମଧୁବ୍ରତ ପ୍ରାୟ ପ୍ରତୀତ ହେଉଛନ୍ତି । ଏଠାରେ ତିନୋଟି ଉପମାର ପ୍ରୟୋଗ ହୋଇଛି । ଗୋଟିକରେ ଶ୍ରୀକୃଷ୍ଣଙ୍କୁ ତମାଲ ଓ ଶ୍ରୀମତୀଙ୍କୁ ଚମ୍ପକବଲ୍ଲୀ, ଅନ୍ୟଟିରେ ଶ୍ରୀକୃଷ୍ଣଙ୍କୁ ମେଘ ଓ ଗୋପାଙ୍ଗନାଗଣଙ୍କୁ ଚପଳାମାଳା ଏବଂ ତୃତୀୟଟିରେ ବ୍ରଜସୁନ୍ଦରୀମାନଙ୍କୁ ସ୍ୱର୍ଣ୍ଣପଦ୍ମବନ ଏବଂ ଶ୍ୟାମଙ୍କୁ ମଧୁବ୍ରତ ରୂପେ କଳ୍ପନା କରାଯାଇଛି । ସଙ୍ଗୀତଟିରେ ଉପମାଗୁଡ଼ିକ ଚିତ୍ରଧର୍ମୀ । ଗୀତଟିରେ ସେପରି ଭାବଗତ ଉତ୍କର୍ଷ ନଥିଲେ ମଧ୍ୟ ଉପମାନ ଚୟନରେ ପ୍ରଥାଙ୍କର୍ଣ୍ଣିତା ସତ୍ତ୍ୱେ ଚିତ୍ରକଳ୍ପନାଟି କମନୀୟ ହୋଇଛି । ରତ୍ନ ଖଚିତ ଜଳଯନ୍ତ୍ର ସାହାଯ୍ୟରେ ପରସ୍ପର ଉପରେ ପନୀର ଜଳ ନିକ୍ଷେପ ଚାଲିଛି ଏବଂ ମଞ୍ଜରୀ ଭାବାପନ୍ନ କବି ଶ୍ୟାମ ଓ ଶ୍ରୀମତୀଙ୍କର ଏ କ୍ରୀଡ଼ା ଦର୍ଶନ କରି ନୟନ ସାର୍ଥକ ମଣୁଛନ୍ତି ।

ବସନ୍ତୋତ୍ସବର ଅବିର ଖେଳ ଶୀର୍ଷକ ଆଉ ଗୋଟିଏ ଗୀତ (ଏଣୀ ଈକ୍ଷଣୀ ରାଧେ ଏଣିକି ଆ, ଗ୍ରନ୍ଥାବଳୀ, ପୃ-୪୪୭) ରହିଛି । ବ୍ରଜସୁନ୍ଦରୀଙ୍କ ଗହଣରେ ରାଧାଙ୍କ ସହିତ ଶ୍ୟାମଙ୍କର ଅବିର କ୍ରୀଡ଼ା ପ୍ରସ୍ତୁତି ଏବଂ ତତ୍ସଂକ୍ରାନ୍ତ ସଖୀର ବାଣୀ ବୈଦଗ୍ଧ୍ୟ ଏଥିରେ ପରିସ୍ଫୁଟ । ସଖୀ ଏଣୀନୟନା ରାଧାଙ୍କୁ ସତର୍କ କରାଇ କହୁଛି—'ନବନୀରଦ କାନ୍ତି ଶ୍ୟାମ ଆଜି କାମତୁଲ୍ୟ ସଜ୍ଜିତ ହୋଇ କ୍ରୀଡ଼ା ନିମନ୍ତେ ପ୍ରସ୍ତୁତ ଅଛନ୍ତି । ପୃଷ୍ଠ ଭାଗରେ ପୁଷ୍ପବାଣ ଲୁଚାଇ ଖୋସିଛନ୍ତି । ପୀତାମ୍ବର ମଧ୍ୟରେ ମୁରଲୀକୁ ରଖି ଅପାଙ୍ଗ ଚାହୁଁଛନ୍ତି । ହସ୍ତରୁ ଫଗୁମୁଠା ଫିଙ୍ଗି ଆସୁଛି । ଓଢ଼ଣାରେ (ହଉଁରାପୁ) ମଥା ଘୋଡ଼ି ହୋଇ ତା' (ସଖୀ) ନିକଟକୁ ଚାଲି ଆସିବାକୁ ସେ ସତର୍କ କରାଇ ଦିଏ । ଗୀତଟିରେ ଗତାନୁଗତିକ ଚିତ୍ର ବ୍ୟତୀତ ଭାବ ବା ପରିକଳ୍ପନାଗତ ସୌଷ୍ଠବ ସେପରି ନାହିଁ ।

ଗୋପାଳକୃଷ୍ଣଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ବହୁ କବି ବସନ୍ତୋତ୍ସବ ସମ୍ପର୍କରେ ଗୀତ ରଚନା କରିଛନ୍ତି । ଗୋପାଳକୃଷ୍ଣଙ୍କ ରଚନା ପରି ଗୀତଗୁଡ଼ିକର ଭାବ ଓ ରସଗତ ଉତ୍କର୍ଷ ଅପେକ୍ଷା ସାମ୍ପ୍ରଦାୟିକ ଆବେଦନ ଅଧିକ । ବନମାଳୀଙ୍କ 'ହୋରିଖେଳ' ଗୀତରେ ପାଠକେ ଗୋପାଳକୃଷ୍ଣଙ୍କ ଚିତ୍ରଧର୍ମିତା ଲକ୍ଷ୍ୟ କରେ, ଦୃଷ୍ଟାନ୍ତ ସ୍ୱରୂପ--

---

(୮୨) ପଦାବଳୀ ଦ୍ରଷ୍ଟବ୍ୟ

ଶ୍ରୀପଦ ଗାନ କରେ          କେ ଚନ୍ଦ୍ର ବସନ୍ତ ରାଗରେ
ମନ୍ଦ, ମଧ୍ୟ ସ୍ୱରତାନରେ
ତା ତା ଥେଇ ଥେଇ          ମୃଦଙ୍ଗ ବାଜଇ
ମନ୍ଦ, ମଧ୍ୟ ଦ୍ରୁତ ମାନରେ ।୧।
କେ ତାଳେ ତଳେ          କେ ଛଳେ କୁତୂହଳେ
ମୋହନ ମୁରଲୀ ଛଡ଼ାଇ
ଚଞ୍ଚଳେ ଅଞ୍ଚଳ ଧରି          କହେ ବନମାଳୀ
ତାହାକୁ ଧରନ୍ତି ଗୋଡ଼ାଇ ।୪।
(ବନମାଳୀ ପଦ୍ୟାବଳୀ, ପୃ-୧୪୮୫)

ପଦାବଳୀର କବିମାନଙ୍କ ମଧ୍ୟରେ ଉଦ୍ଧବ ଦାସଙ୍କର ଦୋଳଲୀଳା ସଂପର୍କୀୟ ପଦ ବିଶେଷ ଉଲ୍ଲେଖଯୋଗ୍ୟ, ଯଥା—

ଅବରେ ଅରୁଣ ନବ ବୃନ୍ଦାବନ ଉଡ଼ଯ୍ୟା ଗଗନ ଗ୍ରାସ୍ୟ ।
ବଁଧୂୟା ଆମାର ହିୟାର ମାଝାରେ କେହ ନା ଦେଖିତେ ପାୟ ।।
ଚପଲ ନୟନ ପିଚକାରି ଯେନ ନିରଖେ ବୟନ ମୋର ।
ନବ ଅନୁରାଗ ଫାଗୁୟା ଭରଲ ତନୁମନ କରି ଜୋର ।। (ପ. ସା., ପୃ-୧୭୧)

**ରାସ**—ଶ୍ରୀମଦ୍‌ଭାଗବତର ଦଶମସ୍କନ୍ଧର ପାଞ୍ଚଟି ଅଧ୍ୟାୟରେ (୨୯-୩୩) ଭଗବାନ୍ ଶ୍ରୀକୃଷ୍ଣଙ୍କର ଶରତ୍ ରାସର ବିସ୍ତୃତ ମଞ୍ଜୁଳ ବର୍ଣ୍ଣନା ରହିଛି । ଶ୍ରୀମଦ୍ ଭାଗବତରେ ରାଧାଙ୍କର ନାମ ନଥିଲେ ମଧ୍ୟ ଯେଉଁ ଗୋପୀ ସହିତ ଶ୍ରୀକୃଷ୍ଣ ରାସମଣ୍ଡଳୀରୁ ଅନ୍ତର୍ହିତ ହୋଇଥିଲେ ଏବଂ ଯାହାଙ୍କର ଚରଣ ଚିହ୍ନ ଦର୍ଶନ ପ୍ରସଙ୍ଗରେ 'ବଧୂ' କଥାର (୮୩) ସୂଚନା ରହିଛି, 'ବୃହତ୍ ବୈଷ୍ଣବ ତୋଷଣୀ' ଟୀକାକାର ସନାତନ ଗୋସ୍ୱାମୀ ତାଙ୍କୁ ରାଧା ବୋଲି ଉଲ୍ଲେଖ କରିଛନ୍ତି ।

ଶ୍ରୀମଦ୍‌ଭାଗବତରେ ରାସଲୀଳା ପ୍ରସଙ୍ଗକୁ ବଙ୍ଗୀୟ ବୈଷ୍ଣବ ପଦକର୍ତ୍ତାମାନେ ଗୌଡ଼ୀୟ ବୈଷ୍ଣବ ମତର ଅନୁକୂଳ କରି ନେଇଛନ୍ତି ଏବଂ ଶ୍ରୀକୃଷ୍ଣଙ୍କର ଯୋଗେଶ୍ୱର ମୂର୍ତ୍ତି ଧାରଣ ଐଶ୍ୱର୍ଯ୍ୟ ଭାବ ଓ ଗୋପୀମାନଙ୍କର ଦାସ୍ୟଭାବ (୮୪) ଗ୍ରହଣ କରି ନାହାନ୍ତି, ବରଂ ପ୍ରେମାନଙ୍କର ମଧୁର ସଖୀଭାବ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ଗୌତମୀୟ ତନ୍ତ୍ରରେ ବର୍ଣ୍ଣିତ ଅଛି ଯେ ଶ୍ରୀକୃଷ୍ଣ 'ସମ୍ଭୋଗ'ର ପୁଷ୍ଟି ନିମିତ୍ତ ଗୋପୀମାନଙ୍କୁ ବିପ୍ରଲମ୍ଭର ଆସ୍ୱାଦ ଦେବା ପାଇଁ କୁଞ୍ଜରେ ଆତ୍ମଗୋପନ କରିଥିଲେ । ରାସମଣ୍ଡଳୀରେ ଶ୍ରୀକୃଷ୍ଣଙ୍କର ବହୁତ୍ୱ ପ୍ରକାଶକୁ ରସବିରୋଧୀ ମନେ କରି ପଦକର୍ତ୍ତାମାନେ ଶ୍ରୀମଦ୍ ଭାଗବତର ଟୀକାକାର ସନାତନ ଗୋସ୍ୱାମୀ ଓ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ପଦାଙ୍କ ଅନୁସରଣ କରି ବର୍ଣ୍ଣନା

(୮୩) ଶ୍ରୀ. ଭା., ୧୦।୩୦
(୮୪) ଶ୍ରୀ. ଭା., ୧୦।୨୯।୩୫-୩୬; ୧୦।୩୧।୨,

କରିଛନ୍ତି ଯେ 'ଶ୍ରୀକୃଷ୍ଣ ନିଜର ଅଦ୍ଭୁତ ନୃତ୍ୟ ପ୍ରଦର୍ଶନ କରି ପ୍ରତ୍ୟେକଙ୍କ ମନରେ ଏହି ଭାବନା ଜାତ କରନ୍ତି ଯେ ଶ୍ରୀକୃଷ୍ଣ ତା' ପାଖରେ ଅଛନ୍ତି (୮୫)।

କୃଷ୍ଣଦାସ କବିରାଜ ତାଙ୍କର ଗୋବିନ୍ଦ ଲୀଳାମୃତ ମହାକାବ୍ୟର ଦ୍ୱାବିଂଶ ଓ ତ୍ରୟୋବିଂଶ ସର୍ଗରେ ଶ୍ରୀକୃଷ୍ଣଙ୍କର ରାସଲୀଳାର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି। ତାଙ୍କର ବର୍ଣ୍ଣନାନୁଯାୟୀ ଶ୍ରୀକୃଷ୍ଣ ନିଜ ଗଣ ସହ ବନ ବିହାର, ମଣ୍ଡଳୀ (ଚକ୍ର) ମଧ୍ୟରେ ଭ୍ରମଣ ଓ ନୃତ୍ୟ, ସଖୀ ସମୂହଙ୍କର ପ୍ରବନ୍ଧ ଗାନ (୮୬), ରତିକେଳି, ପରିହାସ ଓ ଜଳକେଳି ଆଦି ରାସଲୀଳାର ବହୁବିଧ ଅଙ୍ଗର ବିଧାନ କରନ୍ତି। ଗୋବିନ୍ଦ ଲୀଳାମୃତ ଗ୍ରନ୍ଥକାରେ ରଚିତ 'ପ୍ରେମଚନ୍ଦ୍ରାମଣି' କାବ୍ୟର ୬୩, ୬୪ ଓ ୬୫ ଛାନ୍ଦରେ ଅଭିମନ୍ୟୁ ସାମନ୍ତସିଂହାର ମହାରାସ (୮୭) ସହ ରାସଲୀଳାର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି। କବି ଶୁଦ୍ଧାଭକ୍ତି ମତର ପଥିକ ହେଲେ ମଧ୍ୟ ଚକ୍ର ଭ୍ରମଣ କାଳରେ ଶ୍ରୀକୃଷ୍ଣ ନିଜର ମାୟାଶକ୍ତି ବଳରେ ଗୋଟିଏ ଗୋପୀକୁ ଗୋଟିଏ କୃଷ୍ଣ ହେବା ଏବଂ କାହାର କି ପ୍ରକାର ରତିଭାବ ତାହାର ପରୀକ୍ଷା ନିମନ୍ତେ ବୃନ୍ଦା ସହ ପୁଷ୍ପଚୟନ ଛଳରେ ଅନ୍ତର୍ହିତ ହେବା ପ୍ରସଙ୍ଗ ଶ୍ରୀଧର ସ୍ୱାମୀଙ୍କର ଶ୍ରୀମଦ୍ ଭାଗବତର ଟୀକା ଅନୁଗତ।

ରାମକୃଷ୍ଣ ଓ କୃପାସିନ୍ଧୁ ନରେନ୍ଦ୍ର ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ ରାସ ସମ୍ପର୍କୀୟ ଗୋଟିଏ ଏବଂ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ (ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ) ଚାରୋଟି ଗୀତ ପରିଦୃଷ୍ଟ ହୁଏ। ଗୀତଗୋବିନ୍ଦର ଅପଭ୍ରଂଶ ଛନ୍ଦରେ କବି ରାସାରମ୍ଭରେ ରାସବିହାରୀ ଶ୍ରୀକୃଷ୍ଣଙ୍କର ଗୋଟିଏ ବନ୍ଦନାଗୀତ ପ୍ରଣୟନ କରିଛନ୍ତି। ଏଥିରେ ଜଗନ୍ମନ ଲୋଭା ରାସରସିକ ଶ୍ରୀକୃଷ୍ଣଙ୍କର ବେଶ ଭୂଷଣ ଓ ଗୁଣର ବର୍ଣ୍ଣନା ପାରମ୍ପରିକ ଭାବରେ କରାଯାଇଛି (ମସ୍ତକରେ କେକୀପୁଚ୍ଛ, ପୀତ ଦୁକୂଳ, ରତ୍ନର ଭୂଷଣ, ପଦରେ ନୂପୁର, ମଦନ ଭାବାବେଶରେ ନେତ୍ରାଞ୍ଚଳର ଚାଞ୍ଚଲ୍ୟ, ଆଜାନୁଲମ୍ବିତ ବନମାଳା, ବେଣୁନାଦ)। ଯେଉଁ ରାସବିହାରୀଙ୍କର ଅନୁପମ ରୂପମୟ ବିଗ୍ରହ ଜଗତର ନେତ୍ରୋତ୍ସବ ବିଧାନ କରେ, ସେହି ହୃଦୟ ଓ ମନର ଅଧୀଶ୍ୱରଙ୍କଠାରେ କବି ମନ୍ତ୍ରମୁଗ୍ଧ ଭାବାବେଶରେ ନିଜର ପ୍ରଣତି ବାଢ଼ିଛନ୍ତି। ବନ୍ଦନା ଗୀତଟିରେ ଗୀତଗୋବିନ୍ଦର ସୁଲଳିତ ଛନ୍ଦ ଓ ପଦପରମ୍ପରାର ପ୍ରଭାବ ଆମୂଳଚୂଳ ଅନୁଭୂତ ହୁଏ। ଦୋଳାୟିତ ଛନ୍ଦ, ଶବ୍ଦ ଝଙ୍କାର ଓ କୋମଳ ବ୍ୟଞ୍ଜନ ବର୍ଣ୍ଣରାଜିର ପୁନଃ ପୁନଃ ପ୍ରୟୋଗରେ ଆନୁପ୍ରାସିକ ସୌଷ୍ଠବ ସୃଷ୍ଟି କରି କବି ଗୀତଟିରେ ସାଙ୍ଗୀତିକ ମାଧୁର୍ଯ୍ୟ ବଢ଼ାଇଛନ୍ତି, ଯଥା—

ଅଭିନବ-ନୀଳ-ଜଳଦ ତନୁ ଢଳ ଢଳ/ପିଞ୍ଛ ମୁକୁଟ ଶିରେ ସାଜଣିରେ /
କାଞ୍ଚନ ବସନ, ରତ୍ନମୟ ଆଭରଣ/ ନୂପୁର ରୁଣୁଝୁଣୁ ବାଜଣିରେ ।
( (ଗୋ. କୃ. ଗ୍ରଂ., ପୃ-୫୩୦)

---

(୮୫) ପଦାବଳୀ ସାହିତ୍ୟ
(୮୬) ଗୋ. ଲୀ. ମୃ', ୨୨ଶ ସର୍ଗ
(୮୭) ପ୍ରେମଚନ୍ଦ୍ରାମଣି, ୬୫।୪୧

'ରାସବିହାର' ଶୀର୍ଷକ ଗୀତଟିରେ କବି ଗୋପବଧୂ ପରିବୃତ ରାଧା ଓ କୃଷ୍ଣଙ୍କର ରାସବିହାର ଓ ନୃତ୍ୟର ମଞ୍ଜୁଳ ଚିତ୍ର ଅଙ୍କନ କରିଛନ୍ତି । ଜ୍ୟୋତ୍ସ୍ନାସ୍ନାତ ଯମୁନାର ସିକତାମୟ ପୁଳିନରେ ମୃଦୁ ମଳୟ ପ୍ରବାହିତ ହେଉଛି । କୁନ୍ଦ, କୁମୁଦ ଓ ପଦ୍ମର ସୁରଭିରେ ପୁଳିନ ସୌରଭମୟ ଏବଂ ବିହଙ୍ଗମାନଙ୍କ କୂଜନରେ ମୁଖରିତ ହୋଇ ଉଠିଛି । ଭ୍ରମର ପୁଞ୍ଜର ମଧୁଚୁମ୍ବନ (କୁସୁମରୁ) ଓ ମଧୁର ଗୁଞ୍ଜନ ଚାଲିଛି । ବୃନ୍ଦାରଣ୍ୟର ଏ ମଧୁମୟ ପରିବେଶରେ ସମସ୍ତଙ୍କ ଚିତ୍ତ ପ୍ରେମ ଓ ଉଲ୍ଲାସରେ ଭରି ଉଠିଛି । ଉଦ୍‌ବେଳିତ ଆନନ୍ଦରେ ଗୋପୀ ଓ ଗୋବିନ୍ଦଙ୍କ ମଧ୍ୟରେ ମଧୁର ଗାନ ଓ ନୃତ୍ୟ ଚାଲିଛି । ଶ୍ୟାମଙ୍କର ଅପୂର୍ବ ନୃତ୍ୟ ଭଙ୍ଗୀରେ ମହାଭାବାବେଶର ସଞ୍ଚାର ହେଉଛି । କଳ୍ପସମ ରାସ ରଜନୀରେ ସତେ ଯେପରି ସୁଧାରାଶି ଝରିପଡ଼ୁଛି । ପ୍ରାକୃତିକ ପରିବେଶର ଚିତ୍ର ଲକ୍ଷ୍ୟ କଲେ ଗୀତ ଗୋବିନ୍ଦର 'ଲଳିତଲବଙ୍ଗଲତାପରିଶୀଳନ' (୧ମ ସର୍ଗ, ୩ୟ ଗୀତ) ଏବଂ 'ରତିସୁଖ-ସାରେ ଗତମଭିସାରେ' (୫ମ ସର୍ଗ, ୧୧ଶ ଗୀତ) ଗୀତର ନିସର୍ଗ ପରିବେଶ ସ୍ମରଣକୁ ଆସିଯାଏ ।

ଅନ୍ୟ ଏକ ଗୀତରେ (ଜୟ ଜୟ ରାସବିହାରୀ, ଗ୍ରଂ. ବ., ପୃ-୫୬୩) କବି ଶ୍ରୀକୃଷ୍ଣଙ୍କର ବେଣୁ ଗୀତ, ବ୍ରଜବଧୂମାନଙ୍କର ଆଗମନ ଓ ମଦନଭାବାବେଶ, ରାସ ସଙ୍ଗୀତ ଆଳାପନ, ସେମାନଙ୍କର ଅଭିମାନର ଅବସାନ, ଗୁଣବରିଷ୍ଠା ରାଧାଙ୍କର ସୌନ୍ଦର୍ଯ୍ୟ, ଚନ୍ଦନନୃତ୍ୟ, ବଳୟୀକୃତ ବଲ୍ଲବୀ ଯୁବତୀଙ୍କର ଆନନ୍ଦ, ସୁରାଙ୍ଗନାଙ୍କର ଚିତ୍ରକାର ଓ ଜଳକେଳି ପ୍ରଭୃତି ରାସର ବିଭିନ୍ନ ଅଙ୍ଗର ସୂଚନାମାନ ଦେଇଛନ୍ତି । କବି ସୂତ୍ରଧର୍ମୀ ବର୍ଣ୍ଣନାଭଙ୍ଗୀର ପ୍ରୟୋଗ କରିଥିଲେ ମଧ୍ୟ ପଦ ପଦାର୍ଥ କେତେକ ସ୍ଥଳରେ ଦୁର୍ବୋଧ ହୋଇଛି, ଯଥା—

ଅମ୍ବୁ ବିଗାହନ- ନନ୍ଦିତ ନିଜ ଜନ-
ମଣ୍ଡିତ ଯମୁନାତୀର ।୪। (ଗ୍ର. ବ., ପୃ-୫୩୪)

ରାସ ସମ୍ପର୍କୀୟ ପୂର୍ବୋକ୍ତ ତିନୋଟି ଗୀତରେ ଭାବ, ଚିତ୍ର, ଭଙ୍ଗୀ ଓ ଅଳଙ୍କାର ଯୋଜନା ଦୃଷ୍ଟିରୁ କିଛି ନୂତନତ୍ୱ ପରିଲକ୍ଷିତ ହୁଏ ନାହିଁ—ସର୍ବତ୍ର ସେହି ପ୍ରଥାଗ୍ରସ୍ତ ଅଳଙ୍କୃତି ଓ ପାରମ୍ପରିକ ବର୍ଣ୍ଣନା ଭଙ୍ଗୀର ପ୍ରଭାବ ଅନୁଭୂତ ହୁଏ ।

କିନ୍ତୁ ରାସଲୀଳାରେ ବ୍ରଜବଧୂମାନଙ୍କ ମଧ୍ୟରେ ସଙ୍ଗୀତ, ନୃତ୍ୟ ଓ ହାବଭାବରେ ରାଧାଙ୍କର ଅପୂର୍ବ କୁଶଳତା ତଥା ଶ୍ରେଷ୍ଠତ୍ୱ ସୂଚକ ଯେଉଁ ଗୀତଟି (ପରିପନ୍ଥୀ-ଗରବ-ଗିରି ଭାଙ୍ଗି ଦେଲରେ, ଗ୍ରଂ., ପୃ-୩୧୧) ରହିଛି, ପରିକଳ୍ପନା, ଭାଷା ଓ ରଚନା ଭଙ୍ଗୀ ଦୃଷ୍ଟିରୁ ତାହା ଏକ ମନୋଜ୍ଞ ରଚନା । ରାସ ନୃତ୍ୟରେ ରାଧାଙ୍କର ଅପୂର୍ବ ପରିପାଟୀର ପ୍ରଶଂସା କରି ସଖୀ କହେ ଯେ ତାଙ୍କର ନୃତ୍ୟଭଙ୍ଗୀ ଶତ୍ରୁମାନଙ୍କର ଅଭିମାନ ଚୂର୍ଣ୍ଣ କରିଛି । ବ୍ରଜବଧୂମାନଙ୍କ ମଧ୍ୟରେ ରାଧାଙ୍କର ପୀୟୂଷ ସମ୍ମିତ ମଧୁର ଆଳାପ ଶ୍ୟାମଙ୍କର ମଧୁର ବଂଶୀସ୍ୱନ ସହିତ ଅନୁରୂପ ସ୍ୱର-ସୌଷମ୍ୟ (Harmony) ସୃଷ୍ଟି କରିଥିଲା । ଲାସ୍ୟ କାଳରେ ଶ୍ୟାମଙ୍କର ମୁଖକୁ ଚାହିଁ ତାଙ୍କର ସ୍ମିତମଣ୍ଡିତ ପଲକ୍ଷ ଡୋଳା ଚାଳନ ଶ୍ୟାମଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଶ୍ରୀକୃଷ୍ଣ ରାଧାଙ୍କର କ୍ଳାନ୍ତି ଅପନୋଦନ ନିମିତ୍ତ

ପ୍ରେମାବେଶରେ ନିଜର କୋଳକୁ ଆଉଜାଇ ନିଅନ୍ତି ଏବଂ ତାଙ୍କର ସ୍କନ୍ଧରେ ଶିର ସ୍ଥାପନ କରି ଭଗ୍ନ ହେବାର ଅପୂର୍ବ ଭଙ୍ଗୀ ସମସ୍ତଙ୍କ ଚିତ୍ତ ଆକର୍ଷଣ କରିବା ସଙ୍ଗେ ସଙ୍ଗେ କୃଷ୍ଣ ପ୍ରେୟସୀ ମାନଙ୍କ ମଧ୍ୟରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲି । କେବଳ ଅନୁପମ ଅଙ୍ଗଲାବଣ୍ୟ ନୁହେଁ, ବଦ୍ଧୁବାଧ ଗୁଣ ଯୋଗୁଁ ଗୋପୀମାନଙ୍କ ମଧ୍ୟରେ ରାଧାଙ୍କ ଶ୍ରେଷ୍ଠତ୍ୱ ଶାସ୍ତ୍ରରେ ପ୍ରତିଷ୍ଠିତ । ଅପୂର୍ବ ସାତ୍ତ୍ୱିକ ଭାବସହ ଗୀତ ଓ ନୃତ୍ୟ କୁଶଳତାରେ ରାଧା ନିଜର ପ୍ରିୟତମଙ୍କ ଚିତ୍ତ ହରଣ କରି ନିଜର ରାଧିକା ନାମର ଯଥାର୍ଥତା ପ୍ରତିପାଦନ କରିଛନ୍ତି । ଏହାର ଅନୁରୂପ ଚିତ୍ର ସଂସ୍କୃତ ସାହିତ୍ୟରୁ ଦିଆଯାଇପାରେ । ଦୃଷ୍ଟାନ୍ତ ସ୍ୱରୂପ ରାସଲୀଳାରେ ରାଧାଙ୍କର ମାଧୁର୍ଯ୍ୟର ପରିଚୟ ଦେବାକୁ ଯାଇ ରୂପ ଗୋସ୍ୱାମୀ ଲେଖିଛନ୍ତି—

ଅସବ୍ୟଂ କଂସାରେର୍ଭୁଜ ଶିରସି ଧୃତ୍ୱା ପୁଲକିନଂ
ନିଜ ଶ୍ରୋଣ୍ୟାଂ ସବ୍ୟଂ କର ମନୁଜ୍ଞ ବିସ୍ମିତ ପଦା ।
ଦଧାନା ମୂର୍ଦ୍ଧାନଂ ଲଘୁ ତରଧରାଃ ସଂସିନମିସ୍ତଂ
ବଭୌ ରାସୋତ୍ତୀର୍ଣ୍ଣା ମୁହୁରଳସମୂର୍ତ୍ତିଃ ଶଶିମୁଖୀ ।

(ଉ. ନୀ., ଅନୁଭାବ ପ୍ରକରଣ, ଶ୍ଳୋ. ୬୫ ପୃ-୨୭୫)

ଅର୍ଥାତ୍ ରାସଲୀଳାରେ ଦୂରରୁ ରାଧାଙ୍କର ଅବସ୍ଥାନ ମାଧୁର୍ଯ୍ୟ ଦର୍ଶନ କରି ରତିମଞ୍ଜରୀ ନିଜର ସଖୀକୁ କହିଲେ—ଦେଖ, ଚନ୍ଦ୍ରମୁଖୀ ରାଧା ରାସବିହାରରୁ ନିବୃତ୍ତ ହୋଇ ମୁହୁର୍ମୁହୁ ବିଳାସ-ଶ୍ରମରେ ଅଳସାଙ୍ଗୀ ହୋଇଥିବାରୁ କି ଅପୂର୍ବଶୋଭା ଧାରଣ କରିଛନ୍ତି । ସେ ଶ୍ରୀକୃଷ୍ଣଙ୍କର ସ୍କନ୍ଧ ଦେଶରେ ନିଜର ପୁଲକାଞ୍ଚିତ ଦକ୍ଷିଣକର ଏବଂ ନିଜର ଶ୍ରୋଣୀ ଦେଶରେ ବାମକର ସ୍ଥାପନ କରିଛନ୍ତି । ତାଙ୍କର ଚରଣ ଦ୍ୱୟ ବକ୍ର ଭାବରେ ପରସ୍ପରକୁ ଅବଲମ୍ବନ କରି ଅବସ୍ଥିତ ଏବଂ ତାଙ୍କର ଶିରୋଦେଶ ମଧ୍ୟ ଈଷତ୍ ବକ୍ରଭାବରେ ଅବନମିତ । ଏଠାରେ ରାସଲୀଳା ଶ୍ରମଜନିତ ଆଳସ୍ୟାଦି ସତ୍ତ୍ୱେ ହସ୍ତ ଦ୍ୱୟର ସ୍ଥାପନରେ, ଚରଣ ଦ୍ୱୟର ଅବସ୍ଥାନରେ, ଗ୍ରୀବାର ଈଷତ୍ ବକ୍ରଭଙ୍ଗୀରେ— ସର୍ବାବସ୍ଥାରେ ରାଧାଙ୍କର ଚେଷ୍ଟାର ରୁଚିରତା ପ୍ରକାଶ ପାଇଛି । ଏହାହିଁ ମାଧୁର୍ଯ୍ୟ ।

ପଦକର୍ତ୍ତା ଗୋବିନ୍ଦ ଦାସଙ୍କ 'ରାସ' ପଦରୁ କେତୋଟି ପଙ୍କ୍ତି ଉଦ୍ଧାର କରାଯାଉଛି, ଯଥା—

ବାଜତ ଡମ୍ଫ                    ରବାବ ପାଖୋୟାଜ
    କରତଲ ତାଳ ତରଲ ଏକୁ ମେଲ ।
ଚଲତ ଚନ୍ଦ୍ରଗତି                    ସକଲ କଳାବତି
    କରେ କରେ ନୟନେ ନୟନେ କରୁ କେଲି ॥
        ନାଚତ ଶ୍ୟାମ ସଙ୍ଗେ ବ୍ରଜନାରୀ ।
ଜଲଦ ପୁଞ୍ଜେ ଜନୁ                    ତଡ଼ିତ୍ ଲତାବଲୀ
    ଅଙ୍ଗଭଙ୍ଗ କତ ରଙ୍ଗ ବଥାରି ।        (ପ. ସା., ପୃ-୧୬୮)

**ମାଥୁର :**

'ଜଣ୍ଠପଚ ପ୍ରେମ ମାନବଲୋକରେ ହୁଏନା, ଯଦି ହୁଏ ତେବେ ତାହାର ବା ବିରହ ହୁଏ ? ବିରହ ହେଲେ ଜିଏ ବା ବଞ୍ଚେ ? (୮୮) ।' ଶ୍ରୀକୃଷ୍ଣ ଯେତେବେଳେ ବିପ୍ରଲମ୍ଭର ଆସ୍ୱାଦ ଦେବାପାଇଁ ଗୋପୀମାନଙ୍କ ମଧ୍ୟରୁ ଅନ୍ତର୍ଦ୍ଧିତ ହୋଇଗଲେ ସେତେବେଳେ ତାଙ୍କ ଉଦ୍ଦେଶ୍ୟରେ ଏହା ହେଉଛି ଗୋପୀମାନଙ୍କର ଉକ୍ତି । ଶ୍ରୀକୃଷ୍ଣ ହେଉଛନ୍ତି ସମ୍ଭୋଗ ରସର ମୂର୍ତ୍ତିମନ୍ତ ବିଗ୍ରହ । ଗୋପାଙ୍ଗନାଗଣ ହେଉ ସମ୍ଭୋଗର ଅନ୍ତରଙ୍ଗ ସ୍ୱରୂପ; କିନ୍ତୁ ସମ୍ଭୋଗକୁ ପରିପୁଷ୍ଟ କରିବାପାଇଁ ଯୋଗମାୟା ବିରହର ସମ୍ଭାବନା ସୃଷ୍ଟି କରିଛନ୍ତି । ଶୁଦ୍ଧାଭକ୍ତି ସମ୍ବଳିତ ବୈଷ୍ଣବ ସାହିତ୍ୟ ହେଉଛି ବିରହର ସାହିତ୍ୟ । ଶ୍ରୀମତୀ ରାଧା କୃଷ୍ଣ ବିରହର ରୂପ ଧାରଣ କରି କୃଷ୍ଣ ସେବା ଓ ତାଙ୍କର ଆନନ୍ଦ ବୃଦ୍ଧି ନିମିତ୍ତ, କୃଷ୍ଣ କାନ୍ତାମାନଙ୍କର ଶ୍ରେଷ୍ଠ ଇନ୍ଧନ ରୂପେ ଆତ୍ମପ୍ରକାଶ ନିମିତ୍ତ ଅନନ୍ତ କୋଟି ବ୍ୟୂହ ବିସ୍ତାର କରି ସର୍ବଦା ବର୍ତ୍ତମାନ । ବୃନ୍ଦାବନ ଲୀଳାରେ ଶ୍ରୀକୃଷ୍ଣଙ୍କର ସୁଦୂର ପ୍ରବାସ (ମଥୁରା) ଜନିତ ବିଚ୍ଛେଦ କୃଷ୍ଣ, ରାଧା ଓ ଗୋପୀମାନଙ୍କ ପକ୍ଷରେ ବିରହର କାରଣ ହୋଇଥାଏ । ଯେଉଁ ଗୀତ ଗୁଡ଼ିକରେ ଏହି ବିରହର ଚିତ୍ର ଅଙ୍କିତ ହୋଇଛି ସେ ଗୁଡ଼ିକୁ ବୈଷ୍ଣବୀୟ ଭାଷାରେ କୁହାଯାଏ ମାଥୁର (୮୯) । ଶ୍ରୀମଦ୍ ଭାଗବତ ଓ ଓଡ଼ିଆ ବୈଷ୍ଣବ କାବ୍ୟମାନଙ୍କରେ (ରସ କଲ୍ଲୋଳ ଓ ମଥୁରା ମଙ୍ଗଳ ପ୍ରଭୃତି) ଶ୍ରୀକୃଷ୍ଣଙ୍କର ମଥୁରାଯାତ୍ରା ଓ ମଥୁରାବାସ ହେତୁ ରାଧା, ଗୋପୀ ଓ କୃଷ୍ଣଙ୍କର ବିରହର ପ୍ରାଣସ୍ପର୍ଶୀ ବର୍ଣ୍ଣନା କରାଯାଇଛି । କିନ୍ତୁ ବଙ୍ଗୀୟ ବୈଷ୍ଣବ ପଦାବଳୀ ସାହିତ୍ୟରେ ବିରହର ବୈଚିତ୍ର୍ୟମୟ ଆଲେଖ୍ୟ (୯୦) ସମ୍ବଳିତ 'ମାଥୁର' ଗୀତ ଗୁଡ଼ିକର ସଂଖ୍ୟା ଯେପରି ବହୁଳ ଓଡ଼ିଆ ଚଉପଦୀ ଓ ସଙ୍ଗୀତମାନଙ୍କରେ ତା'ର ସଂଖ୍ୟା ଖୁବ୍ କମ୍ । ଅବଶ୍ୟ ପ୍ରବାସୀ ବିରହୀ ନାୟକ ଓ ବିରହିଣୀ ନାୟିକାର ବିରହାନୁଭୂତି ଓ ସମ୍ଭୋଗ ସ୍ମୃତିକୁ ଭିତ୍ତି କରି (ଲୌକିକରସ) ଓଡ଼ିଆରେ ଅଜସ୍ର ଐନ୍ଦ୍ରିକ ଆବେଗପୂର୍ଣ୍ଣ ଚୈତିପଦୀ, ଛାନ୍ଦ, କୋଇଲି ଓ ବାରମାସୀ ଗୀତ ରଚିତ ହୋଇଛି ।

ବନମାଳୀ ପଦ୍ୟାବଳୀରେ ବାରଟି ଏବଂ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଦୁଇଟି ମାତ୍ର ମାଥୁର ଗୀତ ପରିଦୃଷ୍ଟ ହୁଏ । ରାମକୃଷ୍ଣ ସମ୍ପାଦିତ ଗୋପାଳକୃଷ୍ଣ ପଦ୍ୟାବଳୀରେ 'ମାଥୁର' ଗୀତ ନାହିଁ । ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସନ୍ନିବିଷ୍ଟ 'ମାଥୁର' ଗୀତ ଦୁଇଟିରେ ଶ୍ରୀକୃଷ୍ଣଙ୍କ ଅନୁଚିନ୍ତା ମାଧ୍ୟମରେ ବିରହିଣୀ ରାଧାଙ୍କର ଓ ତାଙ୍କର ପ୍ରବାସ ହେତୁକ ବିରହ ଚିତ୍ର ଅଙ୍କିତ । ରାଧା ଓ ଗୋପୀମାନଙ୍କର ବିରହ ବୈଚିତ୍ର୍ୟପୂର୍ଣ୍ଣ 'ମାଥୁର ଗୀତ' ଆଦୌ ନାହିଁ ।

ଗୋଟିଏ ଗୀତରେ (ନାଗଙ୍କେ ଏକାଳେ ତେଜିଲି, ଗ୍ରନ୍ଥାବଳୀ, ପୃ-୫୩୭) କବି 'ପାରମ୍ପରିକ ରୀତିରେ ବିରହୀ ଶ୍ରୀକୃଷ୍ଣଙ୍କ ମୁଖରେ ରାଧାଙ୍କର ବିରହ ବେଦନା ବର୍ଣ୍ଣନା

(୮୮) ଶ୍ରୀ ଭା. ର ୩୧ ଅଧ୍ୟାୟ; ପୃ-୧୮୯ରୁ ଉଦ୍ଧୃତ ।

(୮୯) ପଦାବଳୀ ସାହିତ୍ୟ

(୯୦) ପ. ସା., ପୃ-୧୦୭-୧୧୧

କରିଛନ୍ତି । ଭଞ୍ଜନ-ବିରହରେ ମିଳନର ସମ୍ଭାବନା ଥିଲା, କିନ୍ତୁ ପ୍ରତ୍ୟାବର୍ତ୍ତନ ଓ ମିଳନର ଆଶା ଦେଇଥିଲେ ମଧ୍ୟ ବ୍ରଜକୁ ପ୍ରତ୍ୟାବର୍ତ୍ତନ ସମ୍ଭବ ହୋଇପାରି ନାହିଁ । ରାଧାଙ୍କ ଚିତ୍ତରେ ଭାବୀ ମିଳନର ଆଶା ମଉଳି ଯାଇଛି । ଏ ଅବସ୍ଥାରେ ତାଙ୍କ ବିନା ପ୍ରିୟତମାର ଜୀବନ ଧାରଣ ଯେ ଅସମ୍ଭବ ଶ୍ରୀକୃଷ୍ଣଙ୍କ ଏ ଅନୁଚିନ୍ତାରେ କବି ନିଗୂଢ଼ତ ମର୍ମବେଦନାର ବ୍ୟଞ୍ଜନା ସୃଷ୍ଟି କରିଛନ୍ତି । କବି ଗତାନୁଗତିକ ରୀତିରେ ବିରହ ବେଦନାର ସୂଚନା ଦେଇଛନ୍ତି ଶ୍ରୀକୃଷ୍ଣଙ୍କ ମୁଖରେ, ଯଥା—ରାଧା ବିରହତାପ ପ୍ରଶମନ ନିମିତ୍ତ ପଦ୍ମପତ୍ର ଶଯ୍ୟାରେ ଶୟନ କରୁଥିବ । ଏ ଅବସ୍ଥାରେ ସଖୀମାନେ ବକ୍ଷରେ ମୃଗମଦର ପତ୍ରାବଳୀ ଅଙ୍କନ କରୁ ନ ଥିବେ । ଝାଞ୍ଜି ବିତାହରେ ଲତିକା ପ୍ରାପ୍ତ ଝାଉଁଳି ଧରାରେ ପଡ଼ି ଯାଉଥିବ । ଘନସାର (କର୍ପୂର) ଓ ଅଗୁରୁ ଧୂପ ହଳାହଳ ପ୍ରାୟ ବୋଧ ହେଉଥିବ । ଗୀତଟିର ଶେଷ ଭାଗରେ ଉଲ୍ଲେଖ ଅଛି ଯେ ଦୂତୀମୁଖରୁ ଶ୍ରୀକୃଷ୍ଣଙ୍କ କଥା ଶ୍ରବଣ କରି ସମ୍ଭାର ସହ ପ୍ରମୁଖ ସଖୀ ଗହଣରେ ଶ୍ରୀମତୀ ପ୍ରଫୁଲ୍ଲ ଚିତ୍ତରେ ବୃନ୍ଦାବନରେ ବିଜେ କଲେ । କିନ୍ତୁ ମାଥୁର ପ୍ରସଙ୍ଗରେ ରାଧାଙ୍କର ପ୍ରଫୁଲ୍ଲତା ଓ ବୃନ୍ଦାବନ ବିଜୟର ଯଥାର୍ଥତା ସଂପର୍କରେ ପ୍ରଶ୍ନ ଉଠିବା ସ୍ୱାଭାବିକ । ଗୀତଟିରେ ଭାବଗତ ନୂତନତ୍ୱ ନାହିଁ । ପ୍ରଥାଜୀର୍ଣ୍ଣ ଆଲଙ୍କାରିକ ରୀତି ଓ ଅମସୃଣ ପ୍ରକାଶ ଭଙ୍ଗୀ କାବ୍ୟର ଅନୁକୂଳ ନୁହେଁ । ଭାଷା ଓ ପଦଯୋଜନା କ୍ଲିଷ୍ଟ ଏବଂ ଭାବ ଅସ୍ପଷ୍ଟ ହୋଇଥିବାରୁ ଅର୍ଥାପତ୍ତିରେ ବାଧା ଘଟୁଛି ।

ପଦାବଳୀ ସାହିତ୍ୟରେ ଶ୍ରୀମତୀଙ୍କର ବିରହାନୁଭୂତିର ପ୍ରଥାସିଦ୍ଧ ଅଳଙ୍କାର ପୂର୍ଣ୍ଣ ପଦଗୁଡ଼ିକୁ ଛାଡ଼ିଦେଲେ କିଛି ଉଚ୍ଚାଙ୍ଗ ପଦ ରହିଛି, ଭାବ ଦୃଷ୍ଟିରୁ ଯେଉଁଗୁଡ଼ିକ ବିଶେଷ ପ୍ରାଣସ୍ପର୍ଶୀ । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଦୁଇଟି ପଦ ଉଦ୍ଧାର କରାଯାଉଛି—

(କ) କହିଓ କାନୁରେ ସଇ କହିଓ କାନୁରେ ।
ଏକବାର ପିୟା ଯେନ ଆଇସେ ବ୍ରଜପୁରେ ।।
ଗେଁଥିନୁ ମଲ୍ଲିକା ନିଜ କରେ ।
ଗାଁଥିୟା ଫୁଲେର ମାଲ ପରାଇଓ ତାରେ ।।
ନିକୁଞ୍ଜେ ରାଖିନୁ ଏଇ ମୋର ହିୟାର ହାର ।
ପିୟା ଯେନ ଗଲାୟ ପରୟେ ଏକବାର ।।
ଏଇତରୁ ଶାଖାୟ ରହିଲ ଶାରି ଶୁକେ ।
ଏଇ ଦଶା ପିୟା ଯେନ ଶୁନେ ଇହାର ମୁଖେ ।।

(ଶେଖର, ବୈ. ପ., ପୃ-୯୫)

(ଖ) ଜନମେ ଜନମେ ରହୁ ସେ ପିୟା ଆମାର ।
ବିଧି ପାୟେ ମାଗି ମୁଞି ଏଇବର ସାର ।।
ହିୟାର ମାଝାରେ ମୋର ରହିଗେଲ ଦୁଃଖ ।
ମରଣ ସମୟେ ପିୟାର ନା ହେରିନୁ ମୁଖ ।। (ପ° ସା:, ପୃ-୨୧୨)

ଅନ୍ୟ ଗୀତଟିରେ (ସରଳାଣି ସୁଖସ୍ନେହ, ଗ୍ରନ୍ଥାବଳୀ, ପୃ-୬୬୮) କବି ସାଧାରଣ ପ୍ରବାସୀ ବିରହୀ ନାୟକ ପରି ଶ୍ରୀକୃଷ୍ଣଙ୍କର ଅନୁଚିନ୍ତାରେ ତାଙ୍କର ବିଚ୍ଛେଦ ଜନିତ ବେଦନା ଓ କାରୁଣ୍ୟର ବାସ୍ତବ ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ଦେଇଛନ୍ତି । ଶ୍ରୀକୃଷ୍ଣଙ୍କ ମୁଖରେ କବି ପ୍ରକାଶ କରିଛନ୍ତି--ସୁଖର ନିଳୟ ବ୍ରଜପୁର ତ୍ୟାଗ କରିବା ଦିନରୁ ପ୍ରିୟତମା ବିନା କେଉଁଥିରେ ତାଙ୍କର ମନ ଲାଗେ ନାହିଁ । ସୁଖ ସ୍ନେହର ନୀଡ଼ ତାଙ୍କ ପାଇଁ ଶୁଷ୍କ ହୋଇ ଗଲାଣି । କେବଳ ଅତୀତର ମଧୁର ପ୍ରେମ-ସ୍ମୃତି ଝୁରିବାକୁ କୌଣସି ମତେ ସେ ଜୀବନ ଧାରଣ କରିଛନ୍ତି । ପ୍ରାଣସମା କିଶୋରୀଙ୍କର ଅମୃତମୟ ବଚନ ତାଙ୍କ ପକ୍ଷରେ ସ୍ୱପ୍ନପ୍ରାୟ ହୋଇ ପଡ଼ିଲାଣି । ଅହର୍ନିଶ ଚିନ୍ତା କରି କରି ଶୀର୍ଣ୍ଣ ଓ ହତାଶ ହୋଇ ପଡ଼ିବଣି । ପ୍ରିୟସଖା ସୁବଳ ସହିତ ଆସିଥିବା ସ୍ୱପକ୍ଷୀୟା ସଖୀ ବୃନ୍ଦାଙ୍କୁ ବ୍ରଜ ପ୍ରତ୍ୟାବର୍ତ୍ତନର ପ୍ରତ୍ୟାଶା ଦେଇଛନ୍ତି । ଶ୍ରୀକୃଷ୍ଣ ଭକ୍ତ ଶ୍ରେଷ୍ଠ ଦୂତ ଉଦ୍ଧବଙ୍କ ହସ୍ତରେ ରାଧା ଓ ଗୋପୀଙ୍କ ନିକଟକୁ ସମ୍ବାଦ ପ୍ରେରଣ କରିଛନ୍ତି ।

**ଭାବସମ୍ମେଳନ :**

ଭଗବାନ ନିଜର ଲୀଳାନନ୍ଦ ଉପଭୋଗ ନିମିତ୍ତ ବୃନ୍ଦାବନର ରୂପଲୋକରେ ନରରୂପ ଧାରଣ କରି ଆବିର୍ଭୂତ ହୁଅନ୍ତି । ସେହି ଲୀଳାନନ୍ଦ କାବ୍ୟକ ଭାଷାରେ ହେଉଛି ମାନବିକ ଆନନ୍ଦ । ସେଥିରେ ଆନନ୍ଦ ଅଛି, ବେଦନା ମଧ୍ୟ ଅଛି । ସେହି ରସ ସମ୍ଭୋଗ ଆନନ୍ଦ ଜୀବ ଭକ୍ତମାନଙ୍କ ମଧ୍ୟରେ ବିତରଣ କରିବା ପାଇଁ ଭଗବାନଙ୍କର ସ୍ୱରୂପ ଶକ୍ତିର ବୃତ୍ତିହ୍ଲାଦିନୀ ସହିତ ତାଙ୍କର ଦ୍ୱୈତ ବ୍ୟବଧାନ ସଂଘଟିତ ହୁଏ, କିନ୍ତୁ ନିତ୍ୟ ମିଳନରେ ଏହି ଦ୍ୱୈତସତ୍ତା ବା ଦ୍ୱୈତ ବ୍ୟବଧାନର ଅବସାନ ଘଟେ । ରାଧା ଅନୁକ୍ଷଣ ପ୍ରିୟତମଙ୍କର ଚିନ୍ତା କରି କରି ନିଜେ ପ୍ରିୟତମଙ୍କ ସହିତ ଏକାତ୍ମ ହୋଇ ଯାଆନ୍ତି (୯୧) । ସେତେବେଳେ ଦ୍ୱୈତସତ୍ତା ଆଉ ରହେ ନାହିଁ । ଏହି ଅଦ୍ୱୟ ଭାବକୁ ବୈଷ୍ଣବୀୟ ଭାଷାରେ କୁହାଯାଏ ଭାବ ସମ୍ମେଳନ (୯୨) ।

'ଭାବଲୋକରେ ବିରହର ପ୍ରଶ୍ନ ଉଠେନା, ସେଠାରେ ରାଧାକୃଷ୍ଣଙ୍କର ନିତ୍ୟମିଳନ ସଂଘଟିତ ହୁଏ । ବୈଷ୍ଣବ କବିମାନେ ରସାସ୍ୱାଦନ ନିମିତ୍ତ ଭାବକୁ ରୂପ ମଧ୍ୟରେ ଅଙ୍ଗଦାନ କରନ୍ତି । ବୃନ୍ଦାବନର ରୂପଲୀଳାରେ ବିରହର ସମ୍ଭାବନା ଥାଏ, କିନ୍ତୁ ରୂପର ଭାବକୁ ପ୍ରତ୍ୟାବର୍ତ୍ତନ ହେଉଛି ଭାବସମ୍ମେଳନ । ଏହି ମିଳନହିଁ ନିତ୍ୟ ମିଳନ । ଏହି ମିଳନର ଆନନ୍ଦହିଁ ଭାବସମ୍ମେଳନର ପ୍ରଧାନ ଉପଜୀବ୍ୟ (୯୩) ।' ରବୀନ୍ଦ୍ରନାଥଙ୍କ ଭାଷାରେ—

'ଅସୀମ ସେ ଚାହେ ସୀମାର ନିବିଡ଼ ସଙ୍ଗ,
ସୀମା ହତେ ଚାହେ ଅସୀମେର ମାଝେ ହାରା ।' (୯୪)

---

(୯୧) ପ. ସା., ପୃ-୨୨୫
(୯୨) ଶ୍ରୀ ବଳଦେବ ଉପାଧ୍ୟାୟ, ଭାଗବତ ସମ୍ପ୍ରଦାୟ, ୧ମ ସଂ., ପୃ-୬୨୪-୬୨୫
(୯୩) ପ. ସା., ପୃ-୨୨୫
(୯୪) ଶ୍ରୀ ରବୀନ୍ଦ୍ରନାଥ ଠାକୁର, ରବୀନ୍ଦ୍ର ରଚନାବଳୀ, ୨ୟ ଖଣ୍ଡ, ପୃ-୯୪

ଅର୍ଥାତ୍ ଅସୀମ ସୀମାର ନିବିଡ଼ ସଙ୍ଗ ଲାଭ କରି ନିଜକୁ ପ୍ରକାଶ କରିଥାଏ, କିନ୍ତୁ ସେହି ସଙ୍ଗ ଯେତେବେଳେ ତ୍ୟାଗ କରେ, ସୀମା ଅସୀମ ମଧ୍ୟରେ ନିଜକୁ ହରାଇଦିଏ ।

ରୂପଲୋକ ବୃନ୍ଦାବନରେ ଯେତେବେଳେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳାନନ୍ଦର ଆକାଙ୍‌କ୍ଷା ପରିତୃପ୍ତ ହୁଏ, ସେତେବେଳେ ହ୍ଲାଦିନୀ ସ୍ୱରୂପିଣୀ ରାଧାଙ୍କ ସହ ତାଙ୍କର ଦ୍ୱୈତ ବ୍ୟବଧାନ ରହେ ନାହିଁ, କିନ୍ତୁ ଜୀବସତ୍ତ୍ୱର ସେତେବେଳେ ବିରହ ଘଟେ । 'ମାନବୀୟ ଲୀଳା ମଧ୍ୟରେ ଯେଉଁ ଧନକୁ ଆମେ ହୃଦୟର ନିକଟରେ ପାଇ ଆତ୍ମହରା ହେଉଁ, ସେ ଯେତେବେଳେ ଅନନ୍ତ ଅସୀମ ସଚ୍ଚିଦାନନ୍ଦ ବିଗ୍ରହରେ ପରିଣତ ହୁଅନ୍ତି ସେତେବେଳେ ଆମେ ତାଙ୍କ ବିରହରେ, ତାଙ୍କର ମିଳନ ତୃଷ୍ଣାରେ ବ୍ୟାକୁଳ ହେଉଁ । ତାଙ୍କୁ ଆମେ ବୃନ୍ଦାବନ ଲୀଳାରେ ପାଇଥିଲୁଁ ବିନା ତପସ୍ୟାରେ ! ତପସ୍ୟାର ସୂତ୍ରପାତ ହୁଏ ଏହି ଭାବ ସମ୍ମେଳନ ଠାରୁ । ଭାବ ସମ୍ମେଳନ ପରେ ଏହି ବିରହ ରାଧିକାଙ୍କର ନୁହେଁ, ଏ ବିରହ ବ୍ରଜର, ବିଶ୍ୱମାନବର (୯୫) ।'

ବହୁ ବୈଷ୍ଣବ କବି ଓ ଭକ୍ତ 'ମାଥୁର' ଓ 'ଭାବ ସମ୍ମେଳନ' ସ୍ୱୀକାର କରନ୍ତି ନାହିଁ, କିନ୍ତୁ ବହୁ କବି ଭାବ ସମ୍ମେଳନର ପଦ ରଚନା କରିଯାଇଛନ୍ତି । ଅଦ୍ୱୈତ ଭାବକୁ ବାଣୀ ରୂପଦାନ କଷ୍ଟକର ବୋଲି ସାଧାରଣତଃ କବିମାନେ ଦ୍ୱୈତଭାବର ଭାଷାରେ ରୂପ ଦାନର ଚେଷ୍ଟା କରିଛନ୍ତି । ସଂସ୍କୃତରେ କବିଚନ୍ଦ୍ର କମଳଲୋଚନ ଖଡ଼୍‌ଗରାୟଙ୍କର (ଓଡ଼ିଶାର କବି) 'ସଙ୍ଗୀତ ଚିନ୍ତାମଣି' (ବୃନ୍ଦାବନରେ ରାଧାକୃଷ୍ଣଙ୍କର ଅଷ୍ଟକାଳୀନ ଲୀଳା (୯୬), ଅଷ୍ଟକାଳ ପଦାବଳୀ (ବହୁ ବୈଷ୍ଣବ କବିଙ୍କ ଦ୍ୱାରା ରଚିତ ପଦ ସଂଗ୍ରହ) (୯୭), ଓଡ଼ିଆରେ ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ପ୍ରେମ ଚିନ୍ତାମଣି, ବଙ୍ଗଳାରେ ରଚିତ ଗୌରହରି ପରିଚ୍ଛାଙ୍କର 'ଅଷ୍ଟକାଳ ସେବା ଓ ଦଣ୍ଡାତ୍ମିକା' (୯୮) ଏବଂ ଗୋପାଳକୃଷ୍ଣଙ୍କର 'ନିଶାନ୍ତ ଲୀଳା ସ୍ମରଣୀ' (ଶ୍ରୀ ଶ୍ରୀ ରାଧାଗୋବିନ୍ଦ ପ୍ରାତଃ ସ୍ମରଣାମୃତ, ଗ୍ରଂ. ବ., ପୃ–୫୭) (୯୯) ବ୍ୟତୀତ ରାଧାକୃଷ୍ଣଙ୍କର ନିତ୍ୟ ମିଳନ ସମ୍ପର୍କୀୟ ଭାବ ସମ୍ମେଳନର ଗୀତ ପ୍ରାୟ ପରିଦୃଷ୍ଟ ହୁଏ ନାହିଁ ।



---

(୯୫) ପ. ସା., ପୃ-୨୨୭।୨୨୭

(୯୬) କେଦାରନାଥ ମହାପାତ୍ର, ଶ୍ରୀ ଜୟଦେବ ଶ୍ରୀ ଗୀତଗୋବିନ୍ଦ, ୧୯୭୩, ପୃ-୨୭୬

(୯୭) Dr. Basudeb Sahoo, ed Descriptive Catalogue of Oriya Manuscripts, P. 16.

(୯୮) ଗୌରହରି ଗ୍ରନ୍ଥାବଳୀ, ୧ମ ସଂ., ପା. କ୍ଷି., ୧୯୨୭, ପୃ-୧୧୩-୧୪୫.

(୯୯) ପୂର୍ବରୁ ଏହାର ଆଲୋଚନା କରା ଯାଇଛି । ଏହି ସନ୍ଦର୍ଭରେ ଷଷ୍ଠ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

# ନବମ ପରିଚ୍ଛେଦ

## ଲୌକିକ ରସର ଗୀତ ବା ଲୌକିକ ପ୍ରେମମୂଳକ ଗୀତ

### ବସ୍ତୁ ଓ ମୂଳ ପ୍ରେରଣା :

ଶୁଦ୍ଧା ଭକ୍ତି ପରମ୍ପରାର ସାମ୍ପ୍ରଦାୟିକ ଗୀତ ଓ ରାଧାକୃଷ୍ଣଙ୍କର ବୃନ୍ଦାବନୀ ପ୍ରେମଲୀଳାର ଗୀତଗୁଡ଼ିକର ରଚନା ପୂର୍ବରୁ ଗୋପାଳକୃଷ୍ଣ ପ୍ରାରମ୍ଭିକ ଅବସ୍ଥାରେ ଲୌକିକ (ପାର୍ଥିବ) ପ୍ରେମମୂଳକ ଚଉପଦୀ, ଚମ୍ପୂ ଛାନ୍ଦ ଓ ଚଉତିଶା ରଚନା କରୁଥିଲେ । ଏ ପ୍ରକାର ଗୀତର ସଂଖ୍ୟା ହେଉଛି ପଞ୍ଚାନବେ (ବାବାଜୀ ବୈଷ୍ଣବ ଚରଣଙ୍କ ଦ୍ୱାରା ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଅନୁଯାୟୀ) । ନାୟକ ନାୟିକାଙ୍କର ପ୍ରୀତି, ମିଳନ, ସମ୍ଭୋଗ ସମ୍ପର୍କୀୟ ଅନୁଭୂତି, ସ୍ତୁତି ଓ ରମଣ; ପ୍ରୋଷିତ ଭର୍ତ୍ତୃକା ନାୟିକାର ଉକ୍ତି; ନାୟକର ମାନିନୀ ନାୟିକା ପ୍ରତି ସ୍ତୁତି; ନାୟକର ପ୍ରବାସଗମନ ଓ ପ୍ରବାସରେ ବିରହ ବେଦନା ଏବଂ ମିଳନ ସମ୍ଭୋଗକୁ ଭିତ୍ତି କରି ଗୀତଗୁଡ଼ିକ ରଚିତ । ଏ ପ୍ରକାର ଗୀତ ରଚନା କ୍ଷେତ୍ରରେ ମୁଖ୍ୟତଃ ଉପେନ୍ଦ୍ର ଭଞ୍ଜ, ବନମାଳୀ ଓ କବିସୂର୍ଯ୍ୟ ବଳଦେବ ରଥ ହେଉଛନ୍ତି କବିଙ୍କର ଆଦର୍ଶ, ଯେଉଁମାନଙ୍କର ରଚନାର ଆଦି ପ୍ରେରଣା ହେଉଛନ୍ତି ଜୟଦେବ, ଅମରୁ (ଅମରୁ ଶତକ) ଓ ହାଲ ସାତବାହନ (ଗାଥା ସପ୍ତଶତୀ) ।

### ଅବକ୍ଷୟମାଣ ସାହିତ୍ୟିକ ପ୍ରବୃତ୍ତି ଓ କବି ପରମ୍ପରା :

ଏ ପ୍ରକାର ଶୃଙ୍ଗାରଧର୍ମୀ ଓ ଯୌନ ଆବେଦନମୂଳକ ରଚନାର ପ୍ରାଚୁର୍ଯ୍ୟ ପାଇଁ ମଧ୍ୟଯୁଗୀୟ ଉତ୍କଳୀୟ ରାଜନୈତିକ ଓ ସାମାଜିକ ଜୀବନକୁ ତାର ହେତୁ ରୂପେ କେହି କେହି ଗ୍ରହଣ କରିଥାନ୍ତି । ଏ ସମ୍ପର୍କରେ ଯୁକ୍ତି ଉତ୍ଥାପିତ ହୁଏ ଯେ ଓଡ଼ିଶା ଦେଶ ଓ ଓଡ଼ିଆ ଜାତିର ସ୍ୱାଧୀନତା ରବି ଅସ୍ତମିତ ହୋଇଗଲା ପରେ ଏ ଜାତିର ସମର ଚର୍ଚ୍ଚା ଓ କ୍ଷତ୍ରିୟ ଧର୍ମରେ ଶିଥିଳତା ଦେଖାଯାଏ । ଓଡ଼ିଶାର ରାଜା ଓ ସାମନ୍ତ ଶ୍ରେଣୀ ମୋଗଲ ଶାସକମାନଙ୍କର ଅନୁକରଣରେ ଅଳସ ଇନ୍ଦ୍ରିୟଭୋଗସର୍ବସ୍ୱ ବିଳାସପୂର୍ଣ୍ଣ ଜୀବନ ଯାପନ କରନ୍ତି । ରାଜା ଓ ସାମନ୍ତମାନଙ୍କ ସନ୍ତୋଷ ନିମିତ୍ତ ବହୁ କବି ଏ ପ୍ରକାର ଯୌନ ଆବେଦନମୂଳକ ଭୋଗପ୍ରଧାନ ଗୀତ ରଚନା କଲେ (୧) । ଆଂଶିକ ଭାବରେ ଏହାର

(୧) ଡଃ. ଜାନକୀ ବଲ୍ଲଭ ମହାନ୍ତି, ଓଡ଼ିଆ ଗୀତିକାବ୍ୟ, ପୃ-୯୭

କଥିତ ସତ୍ୟତା ଥିଲେ ମଧ୍ୟ ଏ ଯୁକ୍ତି ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ବହୁ ପୂର୍ବରୁ ସଂସ୍କୃତ ସାହିତ୍ୟ କ୍ଷେତ୍ରରେ କାଳିଦାସଙ୍କ ପରେ ପରେ ଯେଉଁ ଅବକ୍ଷୟ ପ୍ରବୃତ୍ତି (Decadent tendency) ଦେଖା ଦେଇଥିଲା, ଶୃଙ୍ଗାର ରସର ମାତ୍ରାଧିକ ଅନୁଶୀଳନ, ନାରୀ ସୁନ୍ଦରୀର ରୂପମୋହ ଓ ମିଳନ ସମ୍ଭୋଗରେ ନଗ୍ନ ଯୌନ ଆବେଦନମୂଳକ ଚିତ୍ରର ବହୁଳତା ତନ୍ମଧ୍ୟରେ ଦେଖାଦେଲା । ଶ୍ରୀହର୍ଷଙ୍କର ନୈଷଧ ଚରିତମ୍, ଜୟଦେବଙ୍କର ଗୀତଗୋବିନ୍ଦ, ହାଲଙ୍କର ଗାଥା ସପ୍ତଶତୀ, ଅମରୁଙ୍କର ଶତକ, ପ୍ରାକୃତ ଓ ଅପଭ୍ରଂଶ କାବ୍ୟ ଏବଂ ଗୀତ-ଗୋବିନ୍ଦ ଆଦର୍ଶରେ ରଚିତ ବହୁ ସଂସ୍କୃତ ଓ ଦେଶୀୟ କାବ୍ୟ ଓ ସଙ୍ଗୀତ ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ମୁଖ୍ୟତଃ ସେହି ଅବକ୍ଷୟମାଣ ସାହିତ୍ୟିକ ପ୍ରବୃତ୍ତିର ପରିଣତି ହେଉଛି ଓଡ଼ିଆରେ ରଚିତ ଅଜସ୍ର ଶୃଙ୍ଗାରଧର୍ମୀ ଯୌନ ଆବେଦନ ମୂଳକ ଚଉପଦୀ, ଚଉତିଶା, ଚଟାଉ, ସନ୍ଦେଶ, ବାରମାସୀ, ପୋଇ ଓ ଦୋହା ପ୍ରଭୃତି ଏବଂ ଏଗୁଡ଼ିକର ରଚୟିତା ଭାବରେ ବହୁ ରାଜା, ରାଜବଂଶୀୟ ବ୍ୟକ୍ତି ଓ ସାଧାରଣ ବ୍ୟକ୍ତି ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସେମାନଙ୍କ ମଧ୍ୟରେ ଧନଞ୍ଜୟ ଭଞ୍ଜ (ଚଉପଦୀ ଭୂଷଣ), କୁଞ୍ଜବିହାରୀ ଭ୍ରମରବର, ଗୌର ଚନ୍ଦ୍ରଦେବ, ଦୀନବନ୍ଧୁ ରାଜହରିଚନ୍ଦନ, ବ୍ରଜବିହାରୀ ଶ୍ରୀଚନ୍ଦନ ପ୍ରଭୃତି ରାଜକବି; ବନମାଳୀ, ସଦାନନ୍ଦ, ଗୋପାଳକୃଷ୍ଣ, ଗୌରହରି ଓ ଗୌରଚରଣ ପ୍ରଭୃତି ବୈଷ୍ଣବ କବି ଏବଂ କବିସୂର୍ଯ୍ୟ ବଳଦେବ, ଯଦୁମଣି, ନୃସିଂହ ପଟ୍ଟନାୟକ, ଦାଶରଥି ଦାସ, ବୈଶ୍ୟ ହରି, କହ୍ନାଇ, ନାରାୟଣ ଦ୍ୱିଜ, ପଦ୍ମନାଭ ପଟ୍ଟନାୟକ ଓ ରାମକୃଷ୍ଣ ପଟ୍ଟନାୟକ (୨) ପ୍ରଭୃତି କବିଙ୍କ ନାମ ଉଲ୍ଲେଖଯୋଗ୍ୟ । ସଂସ୍କୃତ ରଚନା (ଋତୁ ସଂହାର, ମେଘଦୂତ, ନୈଷଧ ଚରିତ, ଗୀତଗୋବିନ୍ଦ, ଗାଥା ସପ୍ତଶତୀ, ଅଭିଜ୍ଞାନଶାକୁନ୍ତଳମ୍) ବାଦ ଦେଲେ ପ୍ରେମ ପ୍ରଧାନ ଓଡ଼ିଆ ଲୋକ ସାହିତ୍ୟ, ବୈଷ୍ଣବୀୟ କାବ୍ୟ, ନାଟକ ଓ ପଦାବଳୀ ଏବଂ ଓଡ଼ିଆ ରୀତିକାବ୍ୟର ପ୍ରଭାବ ଏ ଗୁଡ଼ିକରେ ଲକ୍ଷ୍ୟ କରାଯାଇପାରେ ।

ପ୍ରକୃତିର ଉଦ୍ଦୀପନାମୟ ପରିବେଶରେ ଏହି ଯୌନ ଆବେଦନ ମୂଳକ ପ୍ରେମ ଓ ଶୃଙ୍ଗାର ଚେତନା ବ୍ୟତୀତ ଏ ଗୁଡ଼ିକରେ ମାନବଜୀବନର ବୈଚିତ୍ର୍ୟମୟ ଅନୁଭୂତିର ଅଭାବ ପରିଲକ୍ଷିତ ହୁଏ । ଏ ଗୁଡ଼ିକରେ ଯେଉଁ ପ୍ରେମର ଚିତ୍ର ଅଙ୍କିତ, ତାହା ହେଉଛି ମୁଖ୍ୟତଃ ବିବାହିତ ଦମ୍ପତି ନାୟକ ଓ ନାୟିକାଙ୍କ ପ୍ରେମ । ଆବହମାନ କାଳରୁ ଆମର ରାଷ୍ଟ୍ରୀୟ ତଥା ସାମାଜିକ ବ୍ୟବସ୍ଥାରେ ଗଣଭୋଗ୍ୟା ଗଣିକା ଓ ବେଶ୍ୟାମାନେ ସ୍ୱୀକୃତ ହୋଇଥିବାରୁ ଏମାନଙ୍କ ସହିତ ରାଜା, ସାମନ୍ତ ଓ ସମ୍ଭ୍ରାନ୍ତ ନାଗରିକମାନଙ୍କର ସମ୍ପର୍କ ନିନ୍ଦନୀୟ ନଥିଲା, ବରଂ ସେମାନଙ୍କର ବିଳାସର ଏକ ଅଙ୍ଗ ଭାବରେ ଗୃହୀତ ହୋଇଥିଲା । ବହୁ କବି ଗଣିକା ଓ ବାରାଙ୍ଗନାର ପ୍ରୀତିର ନିନ୍ଦା କରିଥିଲେ ହେଁ କେତେକ ପରକୀୟା ସହିତ ଗଣିକାର ରୂପ ପ୍ରଶଂସା ଓ ସମ୍ଭୋଗର ଚିତ୍ର ଚଉପଦୀ ମାନଙ୍କରେ ଅଙ୍କନ କରାଯାଇଛନ୍ତି ।

---

(୨) ଚନ୍ଦ୍ରୋଦୟ, ପୃ-୯୮

**ତ୍ୟାଗ ଓ ସଂଯମ ଭିତ୍ତିକ ଉଚ୍ଚାଙ୍ଗ ପ୍ରଣୟାନୁଭୂତି ଅପେକ୍ଷା ଐନ୍ଦ୍ରିକ ଆବେଗ ଓ ସ୍ଥୂଳ ଦେହଧର୍ମ :**

ଗୋପାଳକୃଷ୍ଣ ବନମାଳୀ ଓ ବଳଦେବଙ୍କ ପରି ମୁଖ୍ୟତଃ ନାନା ରାଗରାଗିଣୀ ସମନ୍ୱିତ ଏହି ଚଉପଦୀଗୁଡ଼ିକୁ ନିଜର ଭାବାବେଗ ପ୍ରକାଶର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ଚଉପଦୀର ସୀମିତ ପରିସର ମଧ୍ୟରେ କବି ନିଜର ରୂପତୃଷ୍ଣା, ଭାବତନ୍ମୟତା, ଅନ୍ତରର କୋମଳ ଅନୁଭୂତି ଓ ସୌନ୍ଦର୍ଯ୍ୟବୋଧ ପ୍ରକାଶର ଅବସର ପାଇଛନ୍ତି । ରାଧାକୃଷ୍ଣ ପ୍ରେମସମ୍ବଳିତ ଚଉପଦୀଗୁଡ଼ିକୁ ବାଦଦେଲେ ଅନ୍ୟଗୁଡ଼ିକ ଲୌକିକ ବା ମାନବିକ ପ୍ରେମମୂଳକ ଚଉପଦୀ । ପ୍ରାକୃତ ନାୟକନାୟିକାଙ୍କର ପ୍ରେମଚିତ୍ରରେ କବି ନିଜର କବିତ୍ୱ, ବୈଦଗ୍ଧ୍ୟ ଓ ସୌନ୍ଦର୍ଯ୍ୟ ଚେତନାର ପରିଚୟ ଦେଇଥିଲେ ମଧ୍ୟ ତାହା ମୁଖ୍ୟତଃ ଦେହଜ, ଇନ୍ଦ୍ରିୟାବେଗ ସର୍ବସ୍ୱ । ତ୍ୟାଗ, ସହିଷ୍ଣୁତା ଓ ସଂଯମଭିତ୍ତିକ ଅନ୍ତରର ଆଦର୍ଶାୟିତ ଉଚ୍ଚାଙ୍ଗ ପ୍ରଣୟାନୁଭୂତି ଅପେକ୍ଷା କାମବାସନାଦୀପ୍ତ ଐନ୍ଦ୍ରିକ ଆବେଗ ଓ ଦୈହିକ କ୍ଷୁଧାନିବୃତ୍ତି ଜନିତ ସ୍ଥୂଳଦେହଧର୍ମ ହେଉଛି ଏହାର ଲକ୍ଷ୍ୟ । ଦେହ ଏ ପ୍ରେମର ମୁଖ୍ୟ ଆଶ୍ରୟ ହୋଇଥିବାରୁ କେତେକ ସ୍ଥଳରେ ସଂଯମ ଓ ସୁରୁଚିର ମର୍ଯ୍ୟାଦା କ୍ଷୁଣ୍ଣ ହୋଇଛି । ଅନେକତ୍ର ନାୟକ ନାୟିକାଙ୍କର ଅଙ୍ଗପ୍ରତ୍ୟଙ୍ଗ, ବେଶଭୂଷଣ ଓ ଚନ୍ଦ୍ରିକାଚେତନାର ସ୍ଥୂଳ କାମୋଦ୍ଦୀପକ ଚିତ୍ର ପରିଲକ୍ଷିତ ହୁଏ । କବିସୂର୍ଯ୍ୟଙ୍କ ପରି କବି ଚଉପଦୀ ଗୁଡ଼ିକରେ କାମ, ପ୍ରେମ, ସୌନ୍ଦର୍ଯ୍ୟ ଓ ସମ୍ଭୋଗ-ଶୃଙ୍ଗାର ଉପରେ ଗୁରୁତ୍ୱାରୋପ କରିଛନ୍ତି । ସେଥିପାଇଁ ସଂସ୍କୃତ ଶୃଙ୍ଗାରୀ କାବ୍ୟ, ଓଡ଼ିଆ ରୀତିକାବ୍ୟ ଓ ଚଉପଦୀ ଆଦର୍ଶରେ କବି ଶୃଙ୍ଗାର ଚିତ୍ରରେ ବାସ୍ତବ ପ୍ରେମାନୁଭୂତି ଅପେକ୍ଷା ବାତ୍ସାୟନ କାମଶାସ୍ତ୍ରୋକ୍ତ ବିଧିର ଉଲ୍ଲେଖ ସମ୍ପର୍କରେ ଅଧିକ ଉତ୍ସାହ ପ୍ରଦର୍ଶନ କରିଛନ୍ତି । ଜୟଦେବ, ଉପେନ୍ଦ୍ର ଓ ବଳଦେବଙ୍କ ପରି କବି ନାୟକନାୟିକାଙ୍କ ସମ୍ଭୋଗ ଚିତ୍ରରେ ପୁରୁଷାୟିତ ବା ବିପରୀତ ରତିଲୀଳାରେ କମ ଆନନ୍ଦ ପ୍ରକାଶ କରିନାହାନ୍ତି ।

ଦାମ୍ପତ୍ୟ ଜୀବନରେ କାମଶାସ୍ତ୍ରୋକ୍ତ ବିଧି ଅନୁସାରେ ନାୟକନାୟିକାଙ୍କର ଦୈହିକ ସମ୍ଭୋଗ ବା କାମକେଳିର ସାମାଜିକ ପ୍ରୟୋଜନ ଅବଶ୍ୟ ଅନସ୍ୱୀକାର୍ଯ୍ୟ । ଏ ସମ୍ଭୋଗର ଲକ୍ଷ୍ୟ ହେଉଛି ସୁଯୋଗ୍ୟ ସନ୍ତାନଲାଭ (ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା) । କିନ୍ତୁ ପୂର୍ବସୂରିଙ୍କ ଠାରୁ ଆରମ୍ଭ କରି କବିଙ୍କର କୌଣସି ଗୀତରେ ଏ ଲକ୍ଷ୍ୟର ପ୍ରଚ୍ଛନ୍ନ ବାସନା ବ୍ୟଞ୍ଜିତ ହୋଇନାହିଁ, କେବଳ ଐନ୍ଦ୍ରିକ ତଥା ମାନସିକ ସୁଖୋପଲବ୍ଧି ଏ ସମ୍ଭୋଗର ଲକ୍ଷ୍ୟ । ଦାମ୍ପତ୍ୟ ପ୍ରେମରେ ଦୈହିକ ସମ୍ଭୋଗ ପ୍ରୟୋଜନ ହେଲେ ମଧ୍ୟ ଏହା ନାୟକନାୟିକାଙ୍କର ଜୀବନ ଓ ଯୌବନର ଶ୍ରେଷ୍ଠ କିମ୍ବା ଏକମାତ୍ର ଲକ୍ଷ୍ୟ ନୁହେଁ । ଦୈହିକ ସମ୍ଭୋଗର ଊର୍ଦ୍ଧ୍ୱକୁ କବି କଳ୍ପନା ପ୍ରସାରିତ ହୋଇପାରିନାହିଁ । ସେଥିପାଇଁ ଦାମ୍ପତ୍ୟ ଜୀବନରେ ଯେଉଁ ତ୍ୟାଗ ଓ ସଂଯମ ଭିତ୍ତିକ ଉଚ୍ଚାଙ୍ଗ ପ୍ରେମ ଆଶା କରାଯାଏ, ସେ ପ୍ରେମର ଚିତ୍ର ଏ ଗୁଡ଼ିକରେ ନାହିଁ ।

ଚଉପଦୀ ଗୁଡ଼ିକରେ ସମ୍ଭୋଗ ଓ ବିପ୍ରଲମ୍ଭର ଯେଉଁ ଚିତ୍ର ରହିଛି, ଦେହ ତଥା ଇନ୍ଦ୍ରିୟ ଭିତ୍ତିରେ ସେଗୁଡ଼ିକର ପ୍ରତିଷ୍ଠା ହେଲେ ମଧ୍ୟ ଅନୁଭୂତି ଚିତ୍ରଣ ଓ ଆଳଙ୍କାରିକ

କଳ୍ପନାରେ କେତେକ ସ୍ଥଳରେ ବାସ୍ତବତା ପରିଲକ୍ଷିତ ହୁଏ, କିନ୍ତୁ ବହୁସ୍ଥଳରେ ପ୍ରଥାନୁଗତ ଅଳଙ୍କାର ଓ ବର୍ଣ୍ଣନାରେ ଷୋଡ଼ଶ ଶତାବ୍ଦୀର କାବ୍ୟ-ପରମ୍ପରାର ଯଦୃଚ୍ଛା ଅନୁକରଣ ପାଠକ ଚିତ୍ତରେ ଅବସାଦ ଆଣେ ।

## (କ) ନାୟକନାୟିକାଙ୍କର ପ୍ରୀତି ଏବଂ ମିଳନ-ସମ୍ଭୋଗ ସମ୍ପର୍କୀୟ ଅନୁଭୂତି, ସ୍ମୃତି ଓ ଚିନ୍ତନ ସମ୍ବଳିତ ଚଉପଦୀ

ଏହି ଶ୍ରେଣୀର ଚଉପଦୀ ଗୁଡ଼ିକର ସଂଖ୍ୟା ହେଉଛି ସତର । ଏଗୁଡ଼ିକ ମଧ୍ୟରୁ କେତୋଟି ଚଉପଦୀରେ ନାୟିକାର ମିଳନସ୍ମୃତି, ମିଳନାକାଙ୍କ୍ଷା, କେତୋଟିରେ ନାୟକର ପ୍ରଣୟ-ସ୍ମୃତି, ସମ୍ଭୋଗବାସନା, ପ୍ରୀତି ଓ ପୁରୁଷାୟିତ ସମ୍ପର୍କିତ ଅନୁଭୂତି, କେତୋଟିରେ କବିଙ୍କର ପ୍ରଣୟାନୁଭୂତି ବର୍ଣ୍ଣିତ ହୋଇଛି ।

ଗୋଟିଏ ଗୀତରେ (ଅନୁମାନ ନ କରି ତୁ ବୋଲି, ଗ୍ରଂ., ପୃ-୫୩୭) ସଖୀ ନିକଟରେ ନାୟିକା ମୁଖରେ କବି ମିଳନସ୍ମୃତି ବର୍ଣ୍ଣନା କରିବାକୁ ଯାଇ ବଡ଼ ନିଃସଙ୍କୋଚ ଭାବରେ ନାୟକର କାମବାସନା ପ୍ରଣୋଦିତ ସଂକ୍ଷୁବ୍ଧ କାମକ୍ରିୟାର ନଗ୍ନଚିତ୍ର ଦେଇଛନ୍ତି, ଯଥା—

ହେଦ ବନ୍ଧନ କଞ୍ଚୁଳିକା ମୋର,
ହୃଦରୁ ଫିଙ୍ଗାଇ କଲେ ଦୂର ।୩।
ପୁଣି ନିଃଶଙ୍କେ ମୋର ବକ୍ଷୋଜରେ,
ପାଣି ରଖି ବିଞ୍ଚିଲେ ସଧୀରେ ।୪।
ଗୀତ ଗାଇଲି ଆହ୍ଵା କେତେ ପରି,
ହାତଧରି ଅଙ୍କେ ଅପସରି ।୫। (ଗ୍ରଂ., ପୃ-୫୩୮)

ଅବଶ୍ୟ ଗୀତଟିରେ କବିଙ୍କର କୌଶଳପୂର୍ଣ୍ଣ ବର୍ଣ୍ଣନାଭଙ୍ଗୀ ଏ ବର୍ଣ୍ଣନାକୁ କେତେକ ପରିମାଣରେ ଔଚିତ୍ୟର ଆବରଣ ଦେଇଛି । ନାୟିକା ନିଜର ସଖୀ ନିକଟରେ ଏ ଅନୁଭୂତି ବର୍ଣ୍ଣନା କରୁଛି, ପୁଣି ରଜନୀରେ ନାୟକର କଣ୍ଠସ୍ଵର ସଖୀର କଣ୍ଠସ୍ଵର ପରି ହୋଇଥିବାରୁ ସେ ତାଙ୍କୁ ନିଜର ସଖୀ ବୋଲି ମନେ କରିଛି । ବିଦ୍ୟୁତ୍‌ର ଝଲକରେ ନାୟକଙ୍କୁ ଚିହ୍ନିପାରି ସେ ନାସାପୁଲକ ଭୀତ କମ୍ପିତ ଦେହରେ ଠିଆ ହୋଇ ଯାଇଛି । ପୁଣି ସ୍ଵପ୍ନରେ ବିଦେଶସ୍ଥ କାନ୍ତ ସହ ବିରହିଣୀର ମିଳନ ଚିତ୍ର (ଶୁଣ ସଜନି ! କାଲି ରଜନୀରେ, ଗ୍ରଂ. ପୃ-୫୪୩) ଗତାନୁଗତିକ ହେଲେ ମଧ୍ୟ କବି କଳ୍ପନାର ବୈଚିତ୍ର୍ୟର ସ୍ଵାଦ ମିଳେ । ବିଶେଷତଃ ସ୍ଵପ୍ନ -ମିଳନ କାଳରେ ଦୟିତର ପଦତଳେ ନାୟିକାର ପ୍ରଣାମ ଚିତ୍ରରେ କବି ବିରହିଣୀ ସ୍ଵକୀୟା କୁଳବତୀର ସମ୍ଭ୍ରମବୋଧରେ ତା'ର ଚରିତ୍ରକୁ ମହିମାମଣ୍ଡିତ କରିଛନ୍ତି—

ଦେଖି ମୁଁ ଦୂରୁ ଉଠି କାନ୍ଥାରୁ
ବସାଇ କୋଳେ ବସିଲେ ଗୋ ।୨। (ଗ୍ରଂ., ପୃ-୫୪୩)

ଜ୍ୟୋତ୍ସ୍ନାମୟୀ ବାସନ୍ତୀ ରଜନୀ ଓ ମଳୟର ଉଦ୍ଦୀପନାମୟ ପରିବେଶ ସାଥୀହୀନା ବିରହିଣୀ ନାରୀ ପକ୍ଷରେ ଅତୀବ ଯନ୍ତ୍ରଣା ଦାୟକ । ଏ ପରିବେଶରେ ନାୟକ-ସଙ୍ଗ-ବଞ୍ଚିତା କାମପୀଡ଼ିତା ଯୁବତୀ ବନର ମାଳତୀ ପରି ନିଜ ଯୌବନର ବ୍ୟର୍ଥତା ଓ ଅହର୍ନିଶ ଚିନ୍ତାରେ ଶୀର୍ଣ୍ଣ ନିଜ ଶରୀର କଥା ଭାବି ହତାଶ ହୋଇ ପଡ଼ିଛି ( ବନ୍ଧୁ ନାରୀ କରି ମୋତେ, ଗ୍ରଂ., ପୃ-୫୪୦) । ଏକାକିନୀ ନିଃସଙ୍ଗ ଭାବରେ ତାକୁ ଯେ ଜୀବନ ବିତାଇବାକୁ ପଡ଼ିବ, ଏହା ଥିଲି ତା'ର କଳ୍ପନାତୀତ (କେତେ ବୋଲି ମୋ ଦୁଃଖ ସମ୍ଭବରେ, ଗ୍ରଂ., ପୃ-୫୧୪) । ଏ ପ୍ରକାର ସାଥୀଶୂନ୍ୟା ନାୟିକାର ଉକ୍ତି ଓ ଅନୁଚିନ୍ତା ପାଠ କଲେ ନାୟିକା ସ୍ୱକୀୟା କି ପରକୀୟା ପାଠକ ଚିତ୍ତରେ ଭାବ-ଦ୍ୱନ୍ଦ୍ୱ ଜାତ ହେବା ସ୍ୱାଭାବିକ । ଉଣିତା ପଙ୍‌କ୍ତି ଗୁଡ଼ିକ (୩) ଅନୁଧ୍ୟାନ କଲେ ମନରେ ପ୍ରଶ୍ନ ଉଦିତ ହୁଏ—ଏ ନାୟିକା କ'ଣ କବିଙ୍କର ପରକୀୟା ?

## କବିଙ୍କର ବ୍ୟକ୍ତିଗତ ଅନୁଭୂତି ଓ ପରକୀୟା-ଦୁର୍ବଳତା ? :

ଲୌକିକ ରସର ଗୀତଗୁଡ଼ିକ ମୁଖ୍ୟତଃ କବିଙ୍କର ବ୍ୟକ୍ତିଗତ ଅନୁଭୂତି ପ୍ରସୂତ । ରସିକ କବିଙ୍କର କୈଶୋର ଓ ଯୌବନର ଦେହଳିରେ କୌଣସି ପ୍ରେମିକା ବା ପରକୀୟାର ଆବିର୍ଭାବ ଯେ ଘଟି ନଥିବ ଏପରି ନୁହେଁ । ସେ କାଳର କାବ୍ୟିକ ପରମ୍ପରାରେ କବି ତାଙ୍କର ପୂର୍ବସୂରିଙ୍କ (କବିସୂର୍ଯ୍ୟ ବଳଦେବ) ପରି ଥିଲେ ସୌନ୍ଦର୍ଯ୍ୟ, ପ୍ରେମ ଓ କାମର ଉପାସକ ତଥା ଆଲେଖ୍ୟକାର । କବିଙ୍କର ଯୌବନସୁଲଭ ସୌନ୍ଦର୍ଯ୍ୟଚେତନା ଓ ପ୍ରେମୋଚ୍ଛଳ ପ୍ରାଣର ଚମତ୍କାର ଅଭିବ୍ୟକ୍ତି ଘଟିଛି କେତୋଟି ଚଉପଦୀରେ । ଗୋଟିଏ ବୈଶ୍ୟ ଜାତୀୟା ସୁନ୍ଦରୀ ଯୁବତୀ ଉପରି ଯୁବ-କବିଙ୍କର ନେତ୍ରୋତ୍ସବ ସମ୍ପାଦନ କରି ତାଙ୍କ କଳ୍ପନାକୁ ମୁଖରିତ କରିଥିଲା ତାଙ୍କର "ସୁରେ ଦେଇ ବନ୍ଧୁ ! ନ ଯାରେ" ଚଉପଦୀଟି ପାଠ କଲେ ସ୍ପଷ୍ଟ ଜଣାଯିବ (୪) । ଗୀତଟି ଆମୂଳଚୂଳ କେବଳ ଦେହର କ୍ଷୁଧା, କାମୋଦ୍ଦୀପନାର ସଙ୍କେତ ବହନ କରିଛି । ସମ୍ଭୋଗଲାଳସୀ ନାୟକ ମୁଖରେ କବି ପ୍ରକାଶ କରିଛନ୍ତି—

ଗର୍ଭାଳସୀ ହଂସୀ ଗମନା ପୂରା ତନୁ କାମକାମନା
ପୃଷ୍ଠେ ହେବ ବୋଲି ଯୁମନା ଜଗିଛୁ ପଥ ମୃଣାଳଙ୍କାରେ ।୧।
ସରିଣି ନ ଭାଙ୍ଗ ବଉଳ ଲୁଆଁଇ ବଦନ ନୀରଜ
ଦରାଧର ଭିଡ଼ା ବରଜ ଅନା ଥରେ ହସି ବନା ଲଜ୍ଜାରେ ।୩।
ଭାଷ ଗୀର ଆନ ଧରନା ପରବୋଲି ମୋତେ ଡରନା
କମ୍ପାନା ତୁ ଶମ୍ପାବରନା ଲଭିଛୁ ତୋ ଭେଟ ହରପୂଜାରେ ।୪।

(ଗୋ. କୃ. ପ., ପୃ-୧୪୫-୧୪୬)

---

(୩). ଗ୍ରଂ., ପୃ-୫୪୪
(୪) କୃ. ନ. ସମ୍ପାଦିତ ଗୋ. କୃ. ପ. ରେ କବିଙ୍କ ସଂକ୍ଷିପ୍ତ ଜୀବନୀ, ପୃ-୮ ଦ୍ରଷ୍ଟବ୍ୟ ।

ଅନ୍ୟର ଯୁବତୀକୁ (ବିବାହିତା ?) ଦେଖି ଏକ ସମ୍ଭୋଗ ସର୍ବସ୍ୱ ପରକୀୟା ଭାବରେ କଳ୍ପନା କରିବା କବିଙ୍କର ଯୌବନ ସୁଲଭ ଚପଳତାର ପରିଚୟସୂଚକ । ସ୍ଥୂଳ ଦେହଧର୍ମ ସର୍ବସ୍ୱ ନାୟକର କାମାର୍ତ୍ତି ଏ କ୍ଷେତ୍ରରେ କବିଙ୍କର କାମାର୍ତ୍ତିର ସ୍ୱାକ୍ଷର ବହନ କରିଛି । 'ଗୁହ୍ୟଗଲ କି ଭଙ୍ଗୀରେ ଛଇଲା ଅଳସଭଙ୍ଗିରେ' (ଗ୍ରଂ., ପୃ-୫୪୭) ଚଉପଦୀଟିରେ କବି ଏକ ମଦନୋନ୍ମୁଖା ନାୟିକାର କାମୋଦ୍ଦୀପକ ଭଙ୍ଗୀର (ଭ୍ରୂଲତା ଊର୍ଦ୍ଧ୍ୱ କୁ ତୋଳି ଅଳସ ଭଙ୍ଗିବା ଓ ଜୃମ୍ଭା, ଅପାଙ୍ଗଦୃଷ୍ଟି, କମନୀୟ ଗ୍ରୀବା ଭଙ୍ଗ, ଚିବୁକରେ ତର୍ଜନୀ ନିବେଶ, କାମ ଘୂର୍ଣ୍ଣିତ ଅଳସ ନେତ୍ର) ମନୋଜ୍ଞ ଆଲେଖ୍ୟରେ କବି ଚରିତ୍ର ପରକୀୟା-ବତ୍ସଳତା ବ୍ୟକ୍ତିତ ହୋଇଥିବାର ଅନୁମାନ ହୁଏ । ସେହିପରି 'ଅନାରେ ମୀନ ନୟନା' (ଗ୍ରଂ., ପୃ-୫୪୮), 'ତୋ ପୀରତି ଲଗିରେ ହେବି ଯୋଗୀ' (ଗ୍ରଂ., ପୃ-୫୫୦), ଗୁହ୍ୟ ନାହିଁ ସରି କରି' (ଗ୍ରଂ., ପୃ-୫୫୮), 'କେ କି ଲଗାଇ କହିଲା ଧନକୁ' (ଗ୍ରଂ., ପୃ-୫୫୯), 'ଚନ୍ଦ୍ରବଦନା ! କେ କି କହି କଲା ମନା' (ପୃ-୫୬୦), 'ମନରଖା ପୀରତି କେ କଲାଣି ମନା' (ପୃ-୫୬୫), 'ପ୍ରେମ ଚିନ୍ତାମଣିକି କେ ଲୁଚାଇଲରେ' (ପୃ-୫୬୬) 'ଅନୁସରିବା ଫଳ ଦର୍ଶିଲରେ' (ପୃ-୫୬୮), 'କେ କିସ କହିଲା ଖାଲୁରେ' (ପୃ-୫୭୦) ଚଉପଦୀଗୁଡ଼ିକ କବିଙ୍କର ବୈଦଗ୍ଧ୍ୟ, ସୌନ୍ଦର୍ଯ୍ୟବୋଧ ଓ ପ୍ରଣୟ ଚେତନାର ସ୍ୱାକ୍ଷର ବହନ କରିଥିବାର ପ୍ରତୀତ ହୁଏ ।

## ପ୍ରୀତିର ସ୍ୱରୂପ :

ପଦାବଳୀ ସାହିତ୍ୟ ଓ ଓଡ଼ିଆ ବୈଷ୍ଣବ କାବ୍ୟରେ (ବି. ଚ., ପ୍ରେ. ଚ.) ନାୟକ ନାୟିକା, ସଖୀ ଓ ଅନ୍ୟ ଚରିତ୍ର ମୁଖରେ ପ୍ରୀତିର ସ୍ୱରୂପ ନାନାଭାବରେ ବର୍ଣ୍ଣିତ ହୋଇଛି (୫) । ପାରମ୍ପରିକ ସୂତ୍ରରେ ଗୋପାଳକୃଷ୍ଣ କେତୋଟି ଚଉପଦୀରେ ନାୟକ ନାୟିକାଙ୍କ ଉକ୍ତିରେ ପ୍ରୀତିସ୍ୱରୂପ ସମ୍ପର୍କରେ ସୂଚନା ଦେଇଛନ୍ତି । ଅଭିମନ୍ୟୁଙ୍କ ଭଙ୍ଗୀରେ କବି ନାୟିକା ମୁଖରେ ପ୍ରକାଶ କରିଛନ୍ତି ଯେ ପ୍ରୀତି ହେଉଛି ଏପରି ଏକ ଦୁର୍ଜୟ ମାଦକ ଯାହା ଅନବରତ ପ୍ରଣୟୀ ପ୍ରଣୟିନୀଙ୍କୁ ବଶୀଭୂତ କରିଥାଏ (୬), ଶଙ୍ଖାରି କରତ ଶଙ୍ଖ କର୍ତ୍ତନ କଲାପରି ସର୍ବଦା ମର୍ମ ଛିନ୍ନ କରୁଥାଏ । ପ୍ରୀତି ଜାତି ଅଜାତି, ପାତ୍ରାପାତ୍ରର ବିଚାର ରଖେନା । ଚକ୍ଷୁ ଥାଉଁ ଥାଉଁ ଅନ୍ଧ କରେ । ପ୍ରୀତି ଆଚରଣକାରୀ ଦିନରାତିର ପାର୍ଥକ୍ୟ ମାନେନା । ସମାଜରେ ନିଜର ମହତ୍ତ୍ୱ କ୍ଷୁଣ୍ଣ ହେଲେ ମଧ୍ୟ ସେଥିପ୍ରତି ତା'ର ଧ୍ୟାନ ରହେନା । ପ୍ରୀତି ସ୍ୱକୀୟା ହେଉ ବା ପରକୀୟା ହେଉ ପ୍ରେମାସ୍ପଦଙ୍କୁ ଯୁଗପତ୍ ସୁଖ ଓ ଦୁଃଖ ଭୋଗ କରିବାକୁ ହୋଇଥାଏ । ପଦକର୍ତ୍ତାଙ୍କ ସହ କଣ୍ଠ ମିଳାଇ କବି ଗାଇଛନ୍ତି—

ବିଷାମୃତ ଏକତ୍ରରେ ପୂରିଛି ପ୍ରୀତି ଗାତରେ
ବିଚ୍ଛେଦେ ମିଳନେ ଚହ୍ଲାଯାଏ ତାର ଚିତ୍ତରେ ।୪। (୭) (ଗ୍ରଂ., ପୃ-୫୯୧)

---

(୫) ବି. ଚ., ୩୯, ୪୬ ଓ ୯୪ ଛାନ୍ଦ

(୬) ବି. ଚ., ୩୯।୧୮, ୪୬।୪୫

(୭) ଯଦୁନନ୍ଦନ ଦାସ, ବି. ଚ. ପ.

ଅନ୍ୟତ୍ର ନାୟକ ମୁଖରେ କବି ପ୍ରକାଶ କରିଛନ୍ତି—ଅନୁଭବୀ କେବଳ ପ୍ରୀତିର ସ୍ୱରୂପ ଜାଣେ । ପ୍ରେମିକ ପ୍ରେମିକା ପରସ୍ପରର କଣ୍ଠଧ୍ୱନି ଶ୍ରବଣ ମାତ୍ରେ କାମବାଣରେ ପୀଡ଼ିତ ହୋଇ ପଡ଼ନ୍ତି । ମୁହୂର୍ତ୍ତେ ପରସ୍ପରର ମୁଖାବଲୋକନ କରି ନଥିଲେ ପରସ୍ପରକୁ ଝୁରି ହୁଅନ୍ତି । ଦୃଷ୍ଟିଦେଲାମାତ୍ରେ ପରସ୍ପରର ନେତ୍ରକୋଣରେ ଉଭୟେ ନାଚି ଉଠନ୍ତି । ନାୟିକା ଲଜ୍ଜେ ମାତ୍ର ମୌନତା ପ୍ରକାଶ କଲେ ଆଶଙ୍କାରେ ଅଭିମାନ ଭୁଲି ଦୂତୀର ସାହାଯ୍ୟ ଲୋଡ଼େ । ନିର୍ଜନରେ ନିଜର ଅନ୍ତରର ଭାବ ପ୍ରକାଶ କାଳରେ ପରସ୍ପରର ଅଙ୍ଗରେ ବେପଥୁର ସଞ୍ଚାର ହୋଇଥାଏ । ସମସ୍ତ ବିଶେଷରେ ଛଳ, ଅଭିମାନ ଭୁଲି ନାୟିକା ଶିଘ୍ର ମିଳନପ୍ରାପ୍ତେ ମନେକରେ (୮) ।

ଅନ୍ୟ ଏକ ଗୀତରେ କବି ନାୟକ ମୁଖରେ ମନମିଳା ପ୍ରୀତିର ସ୍ୱରୂପ ବର୍ଣ୍ଣନା କରି କହିଛନ୍ତି –

ବିଧାତା ପ୍ରତିକୂଳ ନ ହେଲେ ମନମିଳା ପ୍ରୀତିର କେବେ ଅବସାନ ଘଟେନା । ପ୍ରୀତି ପାଇଁ ନାୟକ ନାୟିକା ଜାତି, କୀର୍ତ୍ତି, ଧନ, ମହତ୍ତ୍ୱ ଓ ଗର୍ବ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଥାନ୍ତି । ପ୍ରୀତି ପାଇଁ ଧନକୁ ତୁଚ୍ଛ କରି ପ୍ରାଣ ଦେବାପାଇଁ ମଧ୍ୟ ପ୍ରସ୍ତୁତ ହୋଇଥାନ୍ତି । ଶୟନ ସ୍ୱପ୍ନରେ ପ୍ରେମାସ୍ପଦର ମୂର୍ତ୍ତିବିନା ଅନ୍ୟ କିଛି ଦେଖାଯାଏନା (୯) । କବିଙ୍କ ଭାଷାରେ –

ଯା ଲାଗି ଯା ପ୍ରାଣ ଯିବ ଏ ପ୍ରମାଣ
ଦେଲେ ଗୁଞ୍ଜାବକ ତା ତୁଳରେ ସୁନା । ୩ ।
ନୟନେ ଅୟନେ ଶୟନେ ସ୍ୱପନେ
ନ ଦିଶଇ ଆନ ତା ମୂରତି ବିନା ।୪। (ଗ୍ରଂ., ପୃ-୫୨୭)

ନାୟିକାର ପ୍ରୀତି ପାଇଁ ନାୟକ ତା'ର ଗୁଣଗାନ କରି ଯୋଗୀ ହେବାପାଇଁ ମଧ୍ୟ ସଂକଳ୍ପ କରିଛି—

ତୋ ପୀରତି ଲାଗିରେ ହେବି ଯୋଗୀ ।
ଧରି ଜପାମାଳୀ ତୋ ଗୁଣ ଆବଳୀ
ନିରତେ ଜପିବି ଜୀବ-ସଙ୍ଗୀରେ । ୧ । (ଗ୍ରଂ; ପୃ-୫୫୦)

ପୁଣି ଅନ୍ୟ ଏକ ଗୀତରେ (ଛଣକୁ ଛଣେ ପରପ୍ରେମ ଜାତି ଲୋଡ଼ାଇ, ପୃ-୫୫୪) ପରକୀୟା ପ୍ରେମର ମହତ୍ତ୍ୱ ବର୍ଣ୍ଣନା କରି ପରକୀୟାର ବୈଚିତ୍ର୍ୟପୂର୍ଣ୍ଣ ଭଙ୍ଗୀର ମନୋଜ୍ଞ ମୂର୍ଚ୍ଛନା ଦେଇଛନ୍ତି ।

---

(୮) ଗୋ. କୃ. ଗ୍ରଂ., ପୃ-୫୫୩

(୯) ବି.ଚି., ୩୯।୨୫

## ପୁରୁଷାୟିତ ଚେତନା :

କବି ପୂର୍ବସୂରିଙ୍କ ଆଦର୍ଶରେ ଯୁଗରୁଚିର ଅନୁରୋଧରେ ନାୟକର ଉକ୍ତି ଓ ଅନୁନୟରେ ପୁରୁଷାୟିତ ବା ବିପରୀତ ରତିବାସନାର ସଙ୍କେତ ଦେଇଛନ୍ତି । ନାୟକର କାମାର୍ତ୍ତି, ସ୍ଥୂଳ ଦେହସମ୍ଭୋଗଲାଳସା, କାମ ତୃଷ୍ଣା ଚଞ୍ଚଳ ଚିତ୍ତ ଓ ସମ୍ଭୋଗ ଲୀଳା-ବିଳାସର ନଗ୍ନତା ଅବଶ୍ୟ କବିଙ୍କର ଭାଷା ଓ ଅଳଙ୍କାର ପ୍ରୟୋଗ ପରିପାଟୀରେ ପ୍ରଚ୍ଛାଦିତ ହୋଇଯାଇଛି । ଗୋଟିଏ ଚଉପଦୀରୁ ତା'ର ଦୃଷ୍ଟାନ୍ତ ଦିଆଯାଉଛି—

ଜୀବନବନ୍ଧୁ ମାଗୁଣି ମାଗୁଛିରେ ଏତିକ
ନାହିଁ କରିବୁ ନାହିଁଟି କହିବା ବିନତିକ । ଘୋଷା ।
ନଚ୍ଚଇ ଚରମେ ବେଣୀ ବଜାଇ କଟି କିଙ୍କିଣୀ
ଝୁଲାଇବୁ ବିପରୀତେ ଭୁଲକର (୧୦) ମୋଦକ ।୧।
ସ୍ତନ ଭୁଲେ ତୋରହାର ତାଟଙ୍କ ଝଲକା ଝର
ଚଳାଇବୁ ଯହିଁ ମୋତେ ନ ଲାଗିବ ବଣିକ ।୨।
ବିଲୋକିବି ବିମ୍ବାଧର- ଭଙ୍ଗା ମୁଖ ସୁଧାକର,
ସ୍ୱେଦ ଜରଜର ଅନନ୍ତର-ଦେହ-ଦ୍ୟୁତିକ ।୩।
ଭ୍ରୂଲତା ମଧ୍ୟରେ ନେଇ ଖଞ୍ଜନ ଡୋଳା ଖେଳାଇ
ଯାହା ବୋଲୁଥିବୁ ଶୁଣୁଥିବଟି ମୋ ଶ୍ରୁତିକ ।୪।

(ଗୋ. କୃ. ଗ୍ରଂ., ପୃ-୫୪୧, ଗୋ, କୃ. ପ., ପୃ-୨୫୭।୨୫୮)

କିନ୍ତୁ ଭାଷା ଓ ଅଳଙ୍କରଣର ଆବରଣ ସତ୍ତ୍ୱେ ଅନ୍ୟ ଏକ ଗୀତରେ (ମନେ କି ପାଞ୍ଚିଲ, ଗ୍ରଂ., ପୃ-୫୪୮) ନାୟିକା ସମକ୍ଷରେ ନାୟକର ପୁରୁଷାୟିତ ବାସନାର ଚିତ୍ର ବାତ୍ସ୍ୟାୟନ କାମଶାସ୍ତ୍ରୋକ୍ତ ବିଧାନ ପରମ୍ପରାରେ କିପରି ପ୍ରତ୍ୟକ୍ଷ, ସୁରୁଚିହୀନ ଓ ରୁଚି ଗର୍ହିତ ହୋଇଛି, ନିମ୍ନୋକ୍ତ ଉଦ୍ଧୃତ ତା'ର ପ୍ରମାଣ—

କର ନିବେଶି ସ୍ତନ ଚିବୁକରେ । କର ସୀତ୍କାର ହସ ରତିରେ ।
ବୋଲି ପଞ୍ଚରତ୍ନେ ପୁରସବତି । ଝୁଲାଇ ରଙ୍ଗେ ଶ୍ରୁତି-ଅଳଙ୍କୃତି ।
ନିମ୍ନନାଭ ସୁରଦନାମୃତରେ । ଚୁମ୍ବି ନିବେଦନ କରୁଁ ମୁଁ ଧୀରେ ।
ତଳି ଗ୍ରନ୍ଥି ସୁପାଦରେ ଛଇଳୀ । ସ୍ଥଳରୁ ରସନା ବୋଲି କହିଲି ।
ବିବସନ ହୋଇ ତଳପ ପର । ନିବେଶିବୁ ପାଣି ପଦ ଯୁଗଳ ।
ଚରମ ଦେଶେ ହୋଇଥିବ ମୂର୍ଦ୍ଧ । (ଗ୍ରଂ., ପୃ-୫୪୮)

କବିସୂର୍ଯ୍ୟଙ୍କର ଅଧିକାଂଶ ଚଉପଦୀରେ ନାୟକ ନାୟିକାଙ୍କର କାମାର୍ତ୍ତି ଓ ସ୍ଥୂଳ ଦୈହିକ ସମ୍ଭୋଗ ଲାଳସାର ଚିତ୍ର ସ୍ୱତନ୍ତ୍ର ଲକ୍ଷିତ ହୁଏ । କେବଳ ଦୈହିକ ସମ୍ଭୋଗରେ

(୧୦) ଭୁଲକ—ଦଣ୍ଡୀ ।

ନାୟକ ନାୟିକାଙ୍କର ପ୍ରେମାବେଗ 'କେନ୍ଦ୍ରୀଭୂତ ହୋଇଛି । ଯୌନ ସମ୍ଭୋଗ ଓ ଯୌନ ଚିତ୍ରକଳାର ଅଜସ୍ର ଦୃଷ୍ଟାନ୍ତ ତାଙ୍କ ଚଉପଦୀରୁ ମିଳେ ।

## (ଖ) ମାନ ଓ ଚାଟୂକ୍ତି :

**ମାନଭଙ୍ଗରେ ପ୍ରଣତି ଓ ନାୟିକାର ରୂପ ପ୍ରଶଂସା**—ପ୍ରଣୟ ଓ ବିପ୍ରଲମ୍ଭ ଶୃଙ୍ଗାର ପର୍ଯ୍ୟାୟରେ ମାନିନୀ ନାୟିକାର ମାନଭଙ୍ଗ ଭାରତୀୟ ଓ ଉତ୍କଳୀୟ ପ୍ରେମ କାବ୍ୟର ଏକ ପ୍ରଥାଜୀର୍ଣ୍ଣ ରୀତି । ଗୀତଗୋବିନ୍ଦରେ ଶ୍ରୀକୃଷ୍ଣଙ୍କ ଚାଟୂକ୍ତି ଓ ରାଧାଙ୍କର ମାନଭଙ୍ଗ ଚିର ଅନୁଶୀଳିତ ସଂସ୍କୃତ ଓ ଦେଶୀୟ କବିଙ୍କୁ ପ୍ରେରଣା ଯୋଗାଇ ଆସିଛି । ମାନଭଙ୍ଗ ନିମିତ୍ତ 'ପ୍ରଣତି' ପଦ୍ଧତି (ସଂସ୍କୃତରେ ନତି ବା ପାଦ ପତନ) ବୈଷ୍ଣବ ପଦାବଳୀ ଓ ଦେଶୀୟ କାବ୍ୟ ମାନଙ୍କରେ ପ୍ରୟୋଗ କରାଯାଇଛି । ମାନିନୀ ନାୟିକା ପ୍ରତି ନାୟକର ଚାଟୂକ୍ତିରେ ପରିସ୍ଫୁଟ ହୋଇଛି ତା'ର ସେବକତ୍ୱ । ନାୟିକାର ରୂପ ପ୍ରଶଂସା କେବଳ ତା'ର ସ୍ଥୂଳ ଦେହ ସମ୍ଭୋଗରେ ତା'ର କାମାନଳ ନିର୍ବାପନ ପାଇଁ । ଲୌକିକ ରସର ଗୀତ ପର୍ଯ୍ୟାୟରେ ମାନ ଓ ଚାଟୂକ୍ତି ମୂଳକ ଗୀତର ସଂଖ୍ୟା ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଏକତିରିଶିଟି ।

**ନାୟକର କାମପୀଡ଼ା, ସେବକତ୍ୱ ଓ ନାୟିକାର କୃପା କଟାକ୍ଷ**—ବିଭିନ୍ନ ଚାଟୂକ୍ତି ସମ୍ବଳିତ ଗୀତରେ (ଚଉପଦୀରେ) ଅନୁଭୂତ ବିଭିନ୍ନ ସ୍ମରଣୀୟ କ୍ଷୁଦ୍ର କ୍ଷୁଦ୍ର ଘଟଣାର ସଙ୍କେତ ରହିଥିଲେ ମଧ୍ୟ ସେ ଗୁଡ଼ିକରେ ପ୍ରାୟ ଗୋଟିଏ ଗତାନୁଗତିକ ସ୍ୱରର ମୂର୍ଚ୍ଛନା ଅନୁଭୂତ ହୁଏ, ତାହା ହେଉଛି : ନାୟିକାର ମାନ ଫଳରେ ନାୟକର କାମ ପୀଡ଼ା, ସେହି ପୀଡ଼ାର ପ୍ରଶମନ ନିମିତ୍ତ ନାୟିକାର କୃପା କଟାକ୍ଷ । ମାନଭଙ୍ଗ ନିମିତ୍ତ ନାୟିକାର ପ୍ରେମ, ରୂପ ଓ ଗୁଣର ଉଚ୍ଛ୍ୱସିତ ପ୍ରଶଂସା ଏବଂ ନାୟକର ସେବକତ୍ୱ ଗୀତ ଗୁଡ଼ିକରେ ପଦେ ପଦେ ପରିସ୍ଫୁଟ । ଚଟାଉ (ଯଥା) ଜଣାଆରେ ନାୟକ ଚାଟୂକ୍ତି କରି କହୁଛି -- ତା'ର ବାନ୍ଧବୀ ନାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ପୁଣି ଧରାର ଭୂଷା ସ୍ୱରୂପ । ବାନ୍ଧବୀର କୃପା କଟାକ୍ଷ ତା'ର ଜନ୍ମାନ୍ତରର ସୁକୃତ । ଚକୋର ଚନ୍ଦ୍ରଜ୍ୟୋତ୍ସ୍ନାକୁ ଚାହିଁ ରହିଲା ପରି ସେ ତା'ର ପଥକୁ ଚାହିଁ ରହିଛି । ସ୍ମରପୀଡ଼ା ହେତୁ ଅକୂଳ ନଦୀରେ ଭାସି ଯାଉଛି । ଆଶା-ବଲ୍ଲରୀ ଛିନ୍ନ ନ କରି ପୀୟୂଷ ସମ୍ମିତ ପଦେ କଥା କହି ତା'ର ତୃଷା ନିବାରଣ କରିବାକୁ ବିନୟ ପ୍ରକାଶ କରିଛି (ବନ୍ଧୁ ! ମୋ ନ ଭାଙ୍ଗ ଆଶାରେ, ଗ୍ରଂ., ପୃ-୫୫୭) । ମାନ ଓ ରୋଷ ଫଳରେ ଉଷ୍ଣ ଶ୍ୱାସ ହେତୁ ନାୟିକାର ମଳିନ ଅଧର ଓ ନୟନର ଅଶ୍ରୁ ନାୟକର ଧୈର୍ଯ୍ୟଚ୍ୟୁତି ଘଟାଇଛି । ନିଜର ସେବକତ୍ୱ ଘୋଷଣା କରି କହୁଛି—

ଧରା ଭୂଷାର ସେବକ    ବୋଲି ମୁଁ ଯେ, ପଢ଼େ ଡାକ
ଜିଣି ବ୍ରହ୍ମଲୋକ ତେଣି ପାରିକ ।୨।
କିଣ୍ଣା ଜନରେ ରୋଷକୁ    କଲେ କି ଲଭି ଯଶକୁ
ତରିଜିବା ଥରେ ନ ପଚାରିକ ? ।୩।    (ଗ୍ରଂ., ପୃ-୫୫୭)

କାମ ତରଙ୍ଗିଣୀର ଅଗାଧ ଜଳରୁ କାମ-କୁମ୍ଭୀର ମୁଖରୁ ଉଦ୍ଧାର ପାଇଁ ନାୟିକାର ସ୍ୱର୍ଣ୍ଣକୁମ୍ଭରୂପୀ ଉରଜ ଯୁଗଳ କାମାର୍ତ୍ତ ନାୟକ ପକ୍ଷରେ ଏକମାତ୍ର ଅବଲମ୍ବନ (ଗ୍ରଂ., ପୃ-୫୬୧)। ଚନ୍ଦ୍ରକୁ ସମ୍ଭୋଗ ସ୍ପୃହା ଉଦ୍ରେକ କରି ନାୟକ କବିସୂର୍ଯ୍ୟ-ଭଙ୍ଗୀରେ ନାୟିକାକୁ କହୁଛି—

ଜଳପତନେ ବସନା ଗ୍ରାମବର, ଜଳପ ସୁଧା କଳପ ସ୍ମୃତୁ ଗିର।
କଳପ କୋଟି ସୁକୃତ ଫଳ ମୋର, ଅଳପ ଦୃଷ୍ଟିରେ ଦୃଷ୍ଟିରେ ।୧।
ଆବାସ ତନୁନେତ୍ର ସୁଖ କବାସ, ଦଶାଇ ମୋ ପରି ସୁରତରେ ରସ
ହ୍ୱାସ ଚନ୍ଦ୍ରାପ କରି ପରକାଶ, ବେଣୀ ନାସାମଣି ନଗ୍ନରେ ।୩।
(ଗୋ କୃ. ପ., ପୃ-୨୪୪, ଗୋ କୃ. ଗ୍ରଂ., ପୃ-୫୭୨)

ଭାବଜାଗ୍ରତା ସଙ୍ଗେ କବିସୂର୍ଯ୍ୟଙ୍କର ସ୍ୱର ଓ ପଦ ପରମ୍ପରାର ଅନୁସରଣରେ ସରସ ପଦଗୁମ୍ଫନା ଓ ଆନୁପ୍ରାସିକ ସୌଷ୍ଠବରେ କବି କିପରି ସାଙ୍ଗୀତିକ ମାଧୁର୍ଯ୍ୟ ସୃଷ୍ଟି କରିଛନ୍ତି, ଲକ୍ଷ୍ୟ କରାଯାଉ—

ସାର-ସଜ ସାରସ-ଲୋଚନାରେ !
ସାଜ ମୋ ପରି ସଜ କୋପନାରେ ।
କ୍ଷୀଣା କ୍ଷଣା ବଚନା କଣା କନେ ବମନା
ହେଉ କମ୍ପାଇଁ ହେତୁ-ଅଧୀନାରେ ।୧।
ନାଗରତ କୋପନା ନାଗରେ ରୁ ଦ୍ୱସାନା
ନାଗରୀ ବାଜେ ତୋର ମୁଁ ସିନାରେ ।୨। (୧୧)
ଏ ରାତରେ ନବୀନା ଧ୍ୱନିରତ ବେଦନା
ସହ ହେବକ ବନ୍ଧୁ ତୋ ବନାରେ ।୩। (ଗୋ.କୃ.ପ.,ପୃ-୨୩୬)

## (ଗ) ପ୍ରୋଷିତଭର୍ତ୍ତୃକା ନାୟିକା ଉକ୍ତି :

ପୁରୁଷ ଚରିତ୍ର ଦ୍ୱୈତ ସ୍ୱରୂପ—ପ୍ରୋଷିତଭର୍ତ୍ତୃକା ନାୟିକାର (୧୨) ବେଦନା ଭିତ୍ତିକ ପାଞ୍ଚଟି ଗୀତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ତନୋଟି ଗୀତ ଗୋପାଳକୃଷ୍ଣ ପଦ୍ୟାବଳୀରେ ଅଛୁ । ଗୋଟିଏ ଗୀତରେ (ପ୍ରାଣସଖି ! ପିଠି କଲେ କେ କାହାର ? ଗ୍ରଂ., ପୃ-୫୩୯) କବି ପ୍ରୋଷିତଭର୍ତ୍ତୃକାର ମର୍ମବେଦନାର ଚିତ୍ର ଦେବାକୁ ଯାଇ ପୁରୁଷକୁ କେନ୍ଦ୍ର କରି ଦାମ୍ପତ୍ୟ ଜୀବନର ରୂଢ଼ି ବାସ୍ତବ ଅନୁଭୂତ ପ୍ରକାଶ କରିଛନ୍ତି । ପୁରୁଷ-ଚରିତ୍ର ଦ୍ୱୈତ ସ୍ୱରୂପ ପ୍ରକାଶ କରିବାକୁ ଯାଇ ନାୟିକା କହୁଛି—ସମକ୍ଷରେ ଥିବା ପର୍ଯ୍ୟନ୍ତ ପୁରୁଷଙ୍କ ଚିତ୍ତ ଦର୍ପଣ ପରି ସ୍ୱଚ୍ଛ, କିନ୍ତୁ ବିଦେଶକୁ ଗଲେ ଏ ଦର୍ପଣର ସ୍ୱଚ୍ଛତା କେଉଁଆଡ଼େ ଲୁଚିଯାଏ—

(୧୧) ସଙ୍ଗୀତ କଳ୍ପଲତା, କ. ସ. ଗ୍ରଂ., ପୃ-୨୧୯
(୧୨) ସା. ଦ., ୩ୟ ପରିଚ୍ଛେଦ

ପୂରତରେ ଥିବାଯାଏଁ ପୁରୁଷଙ୍କ ଚରିତରେ
ଜାଣ ଦରପଣ ପରକାର ।୧।

କାର୍ଯ୍ୟୋପଲକ୍ଷ୍ୟରେ ଦୂର ପ୍ରବାସକୁ ଗଲେ ମଧ୍ୟ ନାୟକ ବାରବାର ଶପଥ କରି କହେ—ଦେହ ପୃଥକ୍ ହେଲେ ମଧ୍ୟ ଉଭୟଙ୍କ ଚରିତରେ ଭିନ୍ନତା ନାହିଁ । କିନ୍ତୁ ଶପଥ ଶପଥରେ ପର୍ଯ୍ୟବସିତ ହୁଏ । ଦିନ ଅତିକ୍ରାନ୍ତ ହୁଏ, ନାୟକଠାରୁ ଉଦନ୍ତ ଆସେନା । ସଂଶୟ ଓ ଆଶଙ୍କାର କୁହେଳିରେ ନାୟିକାର ଚିତ୍ତ ଆଚ୍ଛନ୍ନ ହୁଏ । ହୁଏତ ଅନ୍ୟ ପ୍ରତି ଆସକ୍ତ ହୋଇ ନାୟକ ଗୃହ ପରିତ୍ୟକ୍ତା ବିରହିଣୀର ବେଦନା ବିସ୍ମୃତ ହୁଏ । ବିରହିଣୀ ନାୟିକା ଜୀବନରେ ଅଛନ୍ତି କି ନାହିଁ ସମ୍ବାଦ ଜାଣିବା ପାଇଁ ନାୟକ ଚିତ୍ତରେ ବ୍ୟଗ୍ରତା ପ୍ରକାଶ ପାଏନା । ନାୟକ ନିକଟରୁ ଦୂତର ପ୍ରତୀକ୍ଷାରେ ବିରହିଣୀର ଆଖି ପାଣି ଆଖିରେ ମରେ । ଅନ୍ୟ ଏକ ଗୀତରେ କବି ସ୍ୱପ୍ନରେ ପ୍ରୋଷିତଭର୍ତ୍ତୃକା ନାରୀର ପ୍ରବାସସ୍ଥ କାନ୍ତ ସହ ମିଳନର ଏକ କାମୋଦ୍ଦୀପକ ଚିତ୍ର ଆଙ୍କିଛନ୍ତି (ଗ୍ରଂ. ପୃ-୫୪) ।

**ବର୍ଷା ବିରହ**—ବର୍ଷାକାଳ ଏ ଦେଶରେ କବି ଚିତ୍ତରେ ଶତ କଳ୍ପ କଦମ୍ବ ବିକଶିତ କରେ । ସଂଯୋଗୀ ମାନଙ୍କ ପକ୍ଷରେ ଏହାର ଶ୍ୟାମ-ଶୀତଳ ପରିବେଶ ଯେପରି ଆନନ୍ଦ ଦାୟକ, ବିଯୋଗୀମାନଙ୍କ ପକ୍ଷରେ ସେହିପରି ଶତଗୁଣ ଦୁଃଖ ଦାୟକ । ବିଚ୍ଛେଦ ଅବସ୍ଥାରେ ବିରସ୍ତ ବିରହିଣୀଙ୍କ ଦୃଷ୍ଟିରେ ବର୍ଷା ହୁଏ ଦୁର୍ଦ୍ଦିନ । ଆଷାଢ଼ ଆକାଶର ଘନାବର୍ତ୍ତି ବିରହିଣୀର ବେଦନାକୁ କରନ୍ତି ଘନୀଭୂତ । ବର୍ଷାର ପ୍ରାଣୋଚ୍ଛଳ ପରିବେଶରେ ବିରହିଣୀ ବ୍ୟଥା-ଜୀର୍ଣ୍ଣ ପ୍ରାଣରେ ଆବେଗ ଜଡ଼ିତ ଚିତ୍ତରେ ଭାବି ବସନ୍ତି—ଏ ଘନ କାଳରେ ତାଙ୍କର ପ୍ରିୟତମ କପରି ନାସଙ୍ଗ ଭାବରେ ଦିନ ଅତିବାହିତ କରିବେ ? ଦର୍ଦ୍ଦୁର ନାଦରେ ହୃଦୟ ତାଙ୍କର ଦୀର୍ଣ୍ଣ ହେଉଥିବ । ଘନକୋଳରେ ବିଦ୍ୟୁତର ଝଲକ, ମତ୍ତ ଭ୍ରମରର ଗୁଞ୍ଜନ, ଝିଙ୍କାରୀର ଝଙ୍କାର, ମାଳତୀ ଗନ୍ଧବାହୀ ମରୁତ ତାଙ୍କର ବେଦନାକୁ ଶତଗୁଣିତ କରୁଛି । ବିଦାୟ ବେଳାରେ ତାଙ୍କର ନିଷେଧ ବାଣୀ ଶୁଣି ପ୍ରିୟତମଙ୍କର ଲେଉଟି ଯିବା ବାଣି ଏବେ ତାଙ୍କର ସ୍ମୃତି କୋଠାରେ ଝଲସି ଉଠୁଛି । ବର୍ଷାର ପରିବେଶରେ ବିରହିଣୀ ନାରୀର ଏ ସଂଯତ ଓ ପ୍ରାଣସ୍ପର୍ଶୀ ଆଲେଖ୍ୟଟି ଅନ୍ୟ କାମ କଳୁଷିତ ପ୍ରଥା-ଜୀର୍ଣ୍ଣ ଚିତ୍ରର ଏକ ବ୍ୟତିକ୍ରମ ।

## (ଘ) ନାୟକର ପ୍ରବାସଗମନ ଓ ତାର ଅନୁଚିନ୍ତା ସମ୍ବଳିତ ଚଉପଦୀ

**ପ୍ରବାସର ହେତୁ ଓ ଦୈର୍ଘ୍ୟ**—ରାଜନୈତିକ ଓ ସାମାଜିକ ଜୀବନରେ ନାନା କାର୍ଯ୍ୟୋପଲକ୍ଷ୍ୟରେ ନାୟକକୁ ନିଜର ପ୍ରିୟତମାଠାରୁ ମେଲାଣି ନେଇ ବିଦେଶ କରିବାକୁ ହୋଇଥାଏ । କେହି କେହି ବାଣିଜ୍ୟ ଉଦ୍ଦେଶ୍ୟରେ, କେହି କେହି ସମର ଉଦ୍ଦେଶ୍ୟରେ, କେହି କେହି ତୌତ୍ୟକାର୍ଯ୍ୟରେ, କେହି କେହି ତୀର୍ଥାଟନ ଲକ୍ଷ୍ୟରେ ବିଦେଶ ଯାତ୍ରା କରୁଥିଲେ । ପୂର୍ବକାଳରେ ଶ୍ୱାପଦ ଜନ୍ତୁପୂର୍ଣ୍ଣ ନିବିଡ଼ ଅରଣ୍ୟ ଓ ଦସ୍ୟୁ ଦୌରାତ୍ମ୍ୟ ହେତୁ ପଥ ବନ୍ଧୁର ଓ ବିପଦସଂକୁଳ ଥିଲା । ପ୍ରତିକୂଳ ବାୟୁ, ଝଡ଼ବତାସ ଓ ଜଳଦସ୍ୟୁଙ୍କ

ଆକ୍ରମଣ ହେତୁ ନୌବାଣିଜ୍ୟ କ୍ଷେତ୍ରରେ ଦେଶ ତଥା ଦ୍ୱୀପାନ୍ତର ଗମନ ଓ ପ୍ରତ୍ୟାବର୍ତ୍ତନ ମଧ୍ୟ ବିପଦପୂର୍ଣ୍ଣ ଥିଲା । ସମର ଆହ୍ୱାନ କାଳରେ ଯୁବ-ଯୁବତୀମାନଙ୍କୁ କେନ୍ଦ୍ର କରି ପ୍ରତି ପରିବାରରେ ଶୋକର ଛାୟା ଖେଳି ଯାଉଥିଲା । ପୂର୍ବର ଆଶଙ୍କାସଙ୍କୁଳ ପ୍ରବାସ ଯାତ୍ରା, ଏବର ପ୍ରବାସ ଯାତ୍ରା ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ସେଥିପାଇଁ ସଂସ୍କୃତ ଓ ଦେଶୀୟ ସାହିତ୍ୟରେ ନାୟକର ପ୍ରବାସ ଗମନ; ପ୍ରବାସରେ ଅନୁଚିନ୍ତା ଓ ବିରହ ବେଦନା ଏବଂ ଗୃହ ପରିତ୍ୟକ୍ତା ନାୟିକାର ଅନୁଚିନ୍ତାକୁ କେନ୍ଦ୍ର କରି ଅଜସ୍ର କାବ୍ୟ, କବିତା ଓ ସଙ୍ଗୀତ ରଚିତ ହୋଇଛି । ଦୂର ମାଧ୍ୟମରେ ବାର୍ତ୍ତା ପ୍ରେରଣ ସବୁ ଶ୍ରେଣୀର ପ୍ରବାସୀଙ୍କ ପକ୍ଷରେ ସମ୍ଭବ ନ ଥିବାରୁ ତା'ର ବେଦନାର ଅଭିବ୍ୟକ୍ତି ନିମିତ୍ତ ବସନ୍ତ, ବର୍ଷା, ଶରତ, ବାୟୁ ଓ ଚନ୍ଦ୍ର ପ୍ରଭୃତି ପ୍ରାକୃତିକ ଉପାଦାନକୁ ପରିବେଶ ରୂପେ ଏବଂ କୋକିଳ, ହଂସ, ଶୁକ, ସାରି, ଭୃଙ୍ଗ, ବାୟୁ ଓ ମେଘ ପ୍ରଭୃତିକୁ ଦୂତ ରୂପେ କଳ୍ପନା କରାଯାଉଥିଲା । ଦୂର ପ୍ରବାସରେ ପ୍ରକୃତିର ମନୋଜ୍ଞ ଉପାଦାନ ସମକ୍ଷରେ ପ୍ରବାସୀ ନାୟକ ନିଜର ବେଦନା ବାଢ଼ି ବସିବା ବା ପ୍ରକୃତିର ଉପାଦାନକୁ ଦୂତ ରୂପେ ଗ୍ରହଣ କରି ନିଜ ବିରହ ଜର୍ଜରିତ ପ୍ରାଣର ବାର୍ତ୍ତା ପ୍ରେରଣରେ କଳ୍ପନା ବହୁ କବି କଳ୍ପନାକୁ ମୁଖର କରିଥିଲା । ସେଥିପାଇଁ ବିଦେଶୀ ନାୟକର ଅନୁଚିନ୍ତାର ଚିତ୍ର ସହିତ ବହୁ ଦୂତ କାବ୍ୟର ସନ୍ଧାନ ସଂସ୍କୃତ ଓ ଦେଶୀୟ ସାହିତ୍ୟରେ ମିଳେ (୧୩) । ଓଡ଼ିଆ ରୀତିକାବ୍ୟ, ଚଉତିଶା, କୋଇଲି ଓ ଚିଟାଉ ଗ୍ରନ୍ଥ (ଉପେନ୍ଦ୍ର, ପଦ୍ମନାଭ, ଶ୍ରୀଚନ୍ଦନ ପ୍ରଭୃତି) ଗୁଡ଼ିକରେ ବିରହୀ ପ୍ରବାସୀ ନାୟକର ଅନୁଚିନ୍ତା ଓ ବାର୍ତ୍ତା ପ୍ରେରଣର ଚିତ୍ର ପରିଦୃଷ୍ଟ ହୁଏ ।

ଏ ଗ୍ରନ୍ଥଗୁଡ଼ିକରେ କାମାର୍ତ୍ତି ଓ ଯୌନ ଆବେଗର ମାତ୍ରା କମ—ନାୟକର ପ୍ରବାସଗମନ କାଳୀନ ଉକ୍ତି, ପ୍ରବାସରେ ଅନୁଚିନ୍ତା ଓ ବିରହିଣୀ ନାୟିକାର ଅନୁଚିନ୍ତାକୁ ଭିତ୍ତି କରି ଗୋପାଳକୃଷ୍ଣ ପଦ୍ୟାବଳୀରେ କେତୋଟି ଗୀତ ପରିଲକ୍ଷିତ ହୁଏ । ସମ୍ଭୋଗସ୍ପୃହାର ଚୁମ୍ବନ, ନାୟିକାର ରୂପ ଓ ଗୁଣର ଅତିରଞ୍ଜିତ (ଅତିଶୟୋକ୍ତି ପୂର୍ଣ୍ଣ) ବର୍ଣ୍ଣନା ସତ୍ତ୍ୱେ ଲୌକିକରସର ଅନ୍ୟାନ୍ୟ ଚଉପଦୀ ଅପେକ୍ଷା ଏଗୁଡ଼ିକ ମଧ୍ୟରୁ କେତୋଟି ଭାବ, ରସ, ଛନ୍ଦ, ବ୍ୟଞ୍ଜନା ଓ ପଦଯୋଜନା ଦୃଷ୍ଟିରୁ ପାଠକ ଚିତ୍ତରେ ସ୍ଥାୟୀ ମୁଦ୍ରା ଅଙ୍କନ କରନ୍ତି । ଅନ୍ୟାନ୍ୟ ଗୀତ ଅପେକ୍ଷା ଏଗୁଡ଼ିକରେ କାମାର୍ତ୍ତି, ସମ୍ଭୋଗ ଲାଳସା ଓ ସ୍ଥୂଳଦେହଧର୍ମ ଜନିତ ଯୌନ ଆବେଗର ମାତ୍ରା କମ ।

**ନାୟିକା ପ୍ରତି ନାୟକର ସ୍ନେହ, ସହାନୁଭୂତି ଓ କରୁଣାକୋମଳହୃଦୟ—**

ବିଦାୟକାଳରେ ବିଦେଶଯାତ୍ରୀ ନାୟକର ଅନ୍ତର କାରୁଣ୍ୟରେ ଭରି ଉଠିଛି । ଗୋଟିଏ ଗୀତରେ (କରୁଣା ଆଉରେ ଧନ, ଗ୍ରଂ., ପୃ-୫୭୨) ଭାବୀ-ବିରହିଣୀ ନାୟିକାକୁ ସାନ୍ତ୍ୱନା ବାଣୀ ଶୁଣାଇ ନାୟକ କହୁଛି—ବିଧାତାର ନିର୍ଦ୍ଦେଶରେ ତାକୁ ବିଦେଶ ଯାତ୍ରା କରିବାକୁ ହେଉଛି । ବିଦାୟ ଅବସରରେ ତା'ର ନୟନର ଅଶ୍ରୁ, ମୁଖର ବିଷଣ୍ଣତା ଓ ନୀରବତାରେ

(୧୩) S. K. De. H. S. L., Foot note. PP. 372-375 ଓ
ଡଃ ଜାନକୀ ବଲ୍ଲଭ ମହାନ୍ତି, ଓଡ଼ିଆ ଗୀତିକାବ୍ୟ, ପୃ-୧୬୯-୧୭୪

ଅନ୍ତର ତା'ର ବାଷ୍ପାକୁଳ ହୋଇ ଉଠୁଛି । ତା'ର ବେଦନାର ପ୍ରଶମନ ନିମିତ୍ତ ସେ ପତ୍ର (ଚିଠାଉ, ଲେଖ) ପ୍ରେରଣ କରୁଥିବ । ଅନ୍ତରରେ ତା'ର ସ୍ମୃତିକୁ ଉଜ୍ଜ୍ୱଳ ରଖି କରୁଣା, ସହାନୁଭୂତି ପ୍ରକାଶରେ ସେ ଯେପରି ଦ୍ୟୂନତା ପ୍ରକାଶ ନ କରେ । ବିଦେଶଗାମୀ ନାୟକ ପକ୍ଷରେ ନାୟିକା ତା'ର ଅଶେଷ ଗୁଣବତୀ, ମଦନମଦାଳସୀ, କେଳିକଳିତବଲ୍ଲୀ ଓ ଇନ୍ଦ୍ରଭୂତି ଦାୟିନୀ । ଏ ପ୍ରକାର ସମ୍ବୋଧନରେ କବି ନାୟିକା ପ୍ରତି ନାୟକର ସ୍ନେହ, ସହାନୁଭୂତି ଓ କରୁଣା କୋମଳ ହୃଦୟର ସାର୍ଥକ ବ୍ୟଞ୍ଜନା ସୃଷ୍ଟି କରିଛନ୍ତି । ନାୟକ ମୁଖରେ କବି ପ୍ରକାଶ କରିଛନ୍ତି—

ଆଜ ହେଲି ମେଲଣି, ଗ୍ରମୁରୁ ଗୁଣମଣି !
ନ କର ତୁ ମଳିନ                    କଳାକର ଲପନ
ମଦନ-ମଦାଳସି ! କହୁଛି ଧରି ପାଣି ।୧।
ବିଦେଶୀ ହେବି ବୋଲି                    କେଳି-କଳିତ-ବଲ୍ଲି !
ଜଣା ନଥିଲା ଏହା, ବିଧି ବିହିଲା ଆଣି ।୨।
କରୁଣା ଥାଉ ଚିତ୍ତେ                    ନବୀନା ଅବରତେ
ମନେ ମୁଁ ପଡ଼ୁଥିବି, ଏହି ଏକା ମାଗୁଣି ।୩।    (ଗ୍ରଂ., ପୃ-୫୬୩)

ବିରହୀ ପ୍ରବାସୀ ନାୟକର ଅନୁଚିନ୍ତା ବା ଭାବନାମୂଳକ ଚଉପଦୀଗୁଡ଼ିକରେ ବହୁ କ୍ଷୁଦ୍ର ଘଟଣା,ଅନୁଭୂତି ଓ ସମ୍ଭୋଗସ୍ମୃତି ଏବଂ ନାୟିକାର ଅନନ୍ୟ ରୂପ, ଗୁଣ, ହାବଭାବ, ଲୀଳା ଓ ବିରହଣୀଙ୍କ ତାର ମଞ୍ଜୁଳ ଚିତ୍ର ସହିତ ନାୟକର ସାନ୍ତ୍ୱନାବାଣୀରେ ତା'ର ବିରହବେଦନା ଓ କାରୁଣ୍ୟଭରା ଅନ୍ତରର ମାର୍ମିକ ପ୍ରକାଶ ଘଟିଛି । ଗୋଟିଏ ଚଉପଦୀରେ (ମନକୁ ମନ ମୋ ଧନ, ଗ୍ରଂ., ପୃ-୫୬୪) ନାୟକର ଅନୁଚିନ୍ତାରେ କବି ପ୍ରକାଶ କରିଛନ୍ତି—ତାର ନବେଲୀ ବୟସୀ ବିରହିଣୀ ନାୟିକା ଚିନ୍ତାରେ ଦିନକୁଦିନ କ୍ଷୀଣ ହୋଇ ଯାଉଥିବ । ତା ସହିତ ଅପ୍ରତ୍ୟାଶିତ ଭେଟ ପାଇଁ ପୁରଦ୍ୱାର ନିକଟରେ ତା'ର ପଥକୁ ସତୃଷ୍ଣ ନୟନରେ ଗ୍ରହିଁ ରହିଥିବ (୧୪) । ପଦ୍ମ ପୁରଭିତା ନାୟିକା ତା'ର ସମକ୍ଷରେ ବାୟସ ରବ ଶୁଣି ଆହାର (ତଣ୍ଡୁଳ) ଦେଇ ତା'ର ସନ୍ଦେଶ ପଗ୍ଗରୁଥିବ । ଘଡ଼ିକ ଘଡ଼ି ନୟନ ଲୋତକ ସଜଳ କରି ଗଣ୍ଡରେ କରସ୍ଥାପନ କରି କେତେ ଦୀର୍ଘଶ୍ୱାସ ତ୍ୟାଗ କରୁଥିବ । ତା'ର ଅନୁପସ୍ଥିତିରେ ହଦନ ଅଲଗା ଲାଗୁଥିବ (ଗ୍ରଂ., ପୃ-୫୬୬) । ବିଦ୍ରୁମ ଅଧର ବିରହରେ ପାଣ୍ଡୁରବର୍ଣ୍ଣ ଧାରଣ କରିବଣି । ବେଶ, ବାସ ଓ ଭୂଷଣ ପ୍ରତି ତା'ର ବିତୃଷ୍ଣା ଜାତ ହୋଇଥିବ ଏବଂ ମୁହୂର୍ତ୍ତିକୁ ସେ ଯୁଗପ୍ରାୟ ମନେ କରୁଥିବ (ଗ୍ରଂ., ପୃ-୫୮୦) । ନାୟିକାର କୋମଳ ଅନୁଚ୍ଚ ସ୍ୱରର ମାଧୁର୍ଯ୍ୟ ଓ ବଦରଧ୍ୱନି ଶ୍ରବଣ କରି ତା'ର ନୟନକୁ ପ୍ରିୟତମାର ଅନୁପମ ରୂପ-ଐଶ୍ୱର୍ଯ୍ୟରେ ଅଭିଷିକ୍ତ କରିଛି ।

---

(୧୪) ମାଘଙ୍କର 'ଶିଶୁପାଳ ବଧ'ର ଷଷ୍ଠ ସର୍ଗରେ ବନ୍ଦୀଜନଙ୍କ ଦ୍ୱାରା ପ୍ରୋଷିତଭର୍ତ୍ତୃକା ନାୟିକା ପ୍ରତି ଅଶ୍ୱାସନା ସମ୍ବଳିତ ତିନୋଟି ମନୋଜ୍ଞ ଶ୍ଳୋକ (୧୬-୧୯) ରହିଛି ।

ଶ୍ରୀକୃଷ୍ଣଙ୍କ ଚକ୍ଷୁରେ ଚତୁର୍ଦ୍ଦିଗ ରାଧିକାମୟ ପ୍ରତୀତ ହେବାପରି (୧୫) ସମସ୍ତ ବିଶ୍ୱ ତା'ର ପ୍ରିୟତମାମୟ ହୋଇଯାଇଛି । ନାୟକର ଭାଷାରେ—

ତୋ ରୂପ ପ୍ରତିକ୍ଷଣେ ଦିଶୁଛି ରେ !
ତୋ ପରି ଲକ୍ଷେ ରହି ହସୁଛି ରେ !
ଦୂର ଲେଉଟି ଗୁହିଁ ମୋତେ ପଗ୍ରଣ ସହି
ନ ଶୁଭୁ ଧୀରେ ଗିର ଭାସୁଛି ରେ ।୨।
ଫିଟି ଯାଉଛି କେଶ ନବଲ୍-ନୀବି-ବାସ
ଆତୁର ହୋଇ କେତେ ଖୋସୁଛିରେ ।୩। (ଗ୍ରଂ., ପୃ-୫୮୯)

ନାୟକର ରୂପମୁଗ୍ଧତା—ନାୟକ ଦୃଷ୍ଟିରେ ନାୟିକା ପୁଣି ଅନନ୍ୟାସୁନ୍ଦରୀ । ତା'ର ରୂପମୁଗ୍ଧତାର ପରିଚୟ ଦେଇ ତା ମୁଖରେ କବି ପ୍ରକାଶ କରିଛନ୍ତି—

(କ) ଯେଣିକି ଗୁହିଁଲେ ତୋ ପରିଯେ ମୋତେ
କେହି ଜଣେ ଦିଶୁନାହିଁ ଟରେ । (ଗ୍ରଂ., ପୃ-୫୭୭)

(ଖ) କେଶରୀ ମଧ୍ୟାକୁ ଅଛି କେ ସରି ।
ଅଉ ଗଣ୍ଡିବକ ନାଶୀ ତା'ପରି ।
ଯାଠାରୁ ଅବନୀ ଶୀଘ୍ର ସରସିବ
ତାକୁ କେ ଏ ଦଣ୍ଡ ବହି ରେ । (ଗ୍ରଂ., ପୃ-୫୯୬)

ନାୟକ ମୁଖରେ ବିଭିନ୍ନ ଚଉପଦୀରେ ନାୟିକାର ରୂପର ପ୍ରଶସ୍ତିସହ ବିବିଧ ସୁଗୁଣର ମଞ୍ଜୁଳ ଅଭିବ୍ୟକ୍ତିରେ ବିରହିଣୀ କୁଳବତୀ ନାୟିକାର ମଧୁମୂର୍ତ୍ତୀ ମୂର୍ତ୍ତି ପାଠକମାନଙ୍କର ଶ୍ରଦ୍ଧା ଓ ସହାନୁଭୂତି ଆକର୍ଷଣ କରେ । ନାୟକ ଦୃଷ୍ଟିରେ ନାୟିକା ତା'ର ଦେବ (ଶଙ୍କର) ସେବା ଜନିତ ସୁକୃତିର ଫଳ (୧୬), ସୌନ୍ଦର୍ଯ୍ୟ ଓ ସ୍ୱାଗତକାର କମନୀୟ ମୂର୍ତ୍ତି (୧୭), ଅପଘନର ବାସ, ପିଣ୍ଡର ପ୍ରାଣ ଓ ନୟନର ତାରକା ତୁଲ୍ୟ (୧୮) । ନାୟିକା କେବଳ ଶଯ୍ୟାସଙ୍ଗିନୀ ନୁହେଁ, ସେ ବ୍ରୀଡ଼ାବତୀ, ବ୍ରତସ୍ମରଣୀ ଓ ସମ୍ଭ୍ରମଶୀଳା (୧୯), ସ୍ୱାମୀର କଲ୍ୟାଣ କାମିନୀ ଗୃହଲକ୍ଷ୍ମୀ (୨୦) । କବିର ପରିଣୀତା ନାୟିକା ପ୍ରତି ପ୍ରବାସୀ ସ୍ୱାମୀର ସ୍ନେହ ଓ ଆନୁଗତ୍ୟ ପାଠକର ଶ୍ରଦ୍ଧା ଆକର୍ଷଣ କରେ । ଦୁଃଖ ଭୋଗରେ

(୧୫) ବି. ମା., ୫ମ ଅଙ୍କ, ପୃ-୨୬୫ (୭ମ ପରିଚ୍ଛେଦ ଦ୍ରଷ୍ଟବ୍ୟ) ।
(୧୬) ଜାଈଫୁଲ ଚଉତିଶା, ଗୋ. କୃ. ଗ୍ରଂ, ପୃ-୫୯୮।୫୯୦ ।
(୧୭) ଗ୍ରଂ., ବ., ପୃ-୫୭୯ ।
(୧୮) ଗ୍ରଂ, ପୃ-୫୮୭।୬୧୫ ।
(୧୯) ଗ୍ରଂ., ପୃ-୫୯୭ ।
(୨୦) ବିଦେଶୀଭାବନା, ବିରହ ଚଉତିଶା, ଗ୍ରଂ., ପୃ-୬୦୨ ।

ତା'ର ଶୋଚନା ନାହିଁ, କିନ୍ତୁ ଜୀବନ ଗଲେ ପ୍ରିୟତମାର ଚନ୍ଦ୍ରମୁଖ ଦର୍ଶନରୁ ସେ ବଞ୍ଚିତ ହେବ, ସେଥିପାଇଁ ତା'ର ଶୋଚନା—

ଦୁଃଖୀ ହେବାକୁ ଶୋଚନା ନାହିଁରେ ସ୍ନେହ-ଲୋଚନା
ଗଲେ ଜୀବନ ଆଉ କାହୁଁ ଦେଖିବିରେ ।୨। (ଗ୍ରଂ., ପୃ. ୫୬୯)

କମନୀୟ ପ୍ରାକୃତିକ ପରିବେଶରେ ରଚିତ ଚଉପଦୀ, ଚଉତିଶା ଓ ଛାନ୍ଦ—ରୀତିକବି ରଘୁନାଥ ହରିଚନ୍ଦନ (ଲୀଳାବତୀ), ଲୋକନାଥ ବିଦ୍ୟାଧର (ସର୍ବାଙ୍ଗସୁନ୍ଦରୀ), ଉପେନ୍ଦ୍ର, ଅଭିମନ୍ୟୁ ଓ ବଳଦେବଙ୍କ ପରି କବି ମଧୁଚନ୍ଦ୍ରିକା, ବସନ୍ତ ଓ ପ୍ରାବୃଟର ପରିବେଶରେ ଚିରାଚରିତ ଭଙ୍ଗୀରେ କେତୋଟି ଚଉପଦୀ, ଚଉତିଶା ଓ ବିରହପତ୍ରିକା (ଚିଠାଉ) ମାଧ୍ୟମରେ ପ୍ରବାସୀ ନାୟକର ଅନୁଚିନ୍ତାରେ ତା'ର ବିରହବେଦନା ଓ ସମ୍ଭୋଗସ୍ମୃତିର ଚିତ୍ର ଅଙ୍କନ କରିଛନ୍ତି । ଚନ୍ଦ୍ର, ଚନ୍ଦନ ଓ ମଳୟ ସେମାନଙ୍କର ସ୍ନିଗ୍ଧତା ଓ ସ୍ୱଭାବ ଶୀତଳତା ତ୍ୟାଗ କରି ବିରହୀମାନଙ୍କ ପକ୍ଷରେ ହୁଅନ୍ତି ଜ୍ୱାଳାମୟ । ଜୟଦେବଙ୍କର ମାଧବ ବିରହରେ ଚନ୍ଦ୍ରକିରଣରେ ମୃତପ୍ରାୟ ପଡ଼ିରହନ୍ତି (୨୧) । ବିରହିଣୀ ରାଧା ଚନ୍ଦନ ଓ ଚନ୍ଦ୍ରକିରଣକୁ ଅଗ୍ନିପ୍ରାୟ ମନେକରି ସେଗୁଡ଼ିକର ନିନ୍ଦା କରନ୍ତି (୨୨) । ଶ୍ରୀହର୍ଷଙ୍କର ନାୟିକା ବିରହିଣୀ ଦମୟନ୍ତୀଙ୍କର ଚନ୍ଦ୍ରପ୍ରତି ଆକ୍ଷେପ (୨୩) ଏବଂ ତା'ର ଅନୁକରଣରେ ଭଞ୍ଜୀୟନାୟିକା ଲାବଣ୍ୟବତୀର ଓ ଅଭିମନ୍ୟୁଙ୍କର ନାୟିକା ରାଧାଙ୍କର ଚନ୍ଦ୍ରପ୍ରତି ଆକ୍ଷେପୋକ୍ତିର ବର୍ଣ୍ଣନା ରହିଛି । ଶାରଦୀୟ ଆକାଶରେ ଦର୍ପକମନୀ ଦର୍ପଣତୁଲ୍ୟ ଚନ୍ଦ୍ରକୁ ଚାହିଁ 'ପ୍ରେମସୁଧାନିଧି'ର ବିରହୀ ନାୟକ କାତର ହୋଇ ପ୍ରିୟତମା ନିକଟକୁ ଚିଠାଉ ଲେଖିବସେ । ଗତାନୁଗତିକ ରୀତିରେ କବି (ଗୋପାଳକୃଷ୍ଣ) ପ୍ରବାସୀ ନାୟକ ମୁଖରେ ପ୍ରକାଶ କରିଛନ୍ତି—

ନ ରୁଚେ ବାସ ବେଶ ତାମ୍ବୂଳ ହେଲା ବିଷ,
ଜ୍ୱାଳା ଚନ୍ଦ୍ର ଚନ୍ଦନ ପବନ ହେଲା । (ଗ୍ରଂ., ପୃ-୬୦୯)

ପୁଣି କବିସୂର୍ଯ୍ୟଙ୍କ ପଦ୍ଧ ପରମ୍ପରାର ଅନୁକରଣରେ ଲେଖିଛନ୍ତି—

ଦାରୁଣ ସ୍ମରଗଣ ବିନ୍ଧଇ ତୀକ୍ଷ୍ଣ ବାଣ
ପ୍ରାଣ ନେବ ବୋଲିଣ ହସି ବସିଲା ।୨। (୨୪)

'ପ୍ରେମସୁଧାନିଧି'ର ନାୟକ ପରି ଚନ୍ଦ୍ରକୁ ଚାହିଁ ବ୍ୟାକୁଳ ଚିତ୍ତରେ ପ୍ରବାସୀ ନାୟକ ନବୋଢ଼ା ବଧୂର ଅନନ୍ୟ ରୂପ ଓ ସ୍ନେହୋଚ୍ଛ୍ୱଳ ପ୍ରତ୍ୟେକ ଭାବଭଙ୍ଗୀ ସ୍ମରଣ କରି

(୨୧) ଗୀ. ଗୋ., ୫।୧୦।୩
(୨୨) ତତ୍ରୈବ, ୪।୮।୨
(୨୩) ନୈଷଧଚରିତମ୍, ୪।୨୦।୫୪
(୨୪) ଶ୍ରୀଗୋପୀ କଲାଲତା, କ. ସୂ. ଗ୍ର., ପୃ-୨୩୭

କହୁଛି—ପ୍ରିୟତମ୍ମା ତା'ର ପଥକୁ ଗ୍ଭହିଁ ଅଶ୍ରୁ ମୋଚନ କରୁଥିବ ! ବିଦାୟ ବେଳାରେ କେଳି ମନ୍ଦିର ଦ୍ୱାର ଦେଶରେ ଦଣ୍ଡାୟମାନା ତା'ର ପ୍ରିୟତମାର ଚିକ୍‌କଣ କବରୀଦାମ ଶିଥିଳ ହୋଇ ପଡ଼ିଥିଲା । ପରିହିତ ବସ୍ତ୍ର ବିପର୍ଯ୍ୟସ୍ତ ଅବସ୍ଥାରେ ଥିଲା । ସୀମନ୍ତରୁ ପୁଷ୍ପମାଳା ଫିଟି ତଳ ଧୀରେ ଧୀରେ ଲୋଟି ଯାଉଥିଲା । ବିଦାୟ ବାଣୀ ଶ୍ରବଣରେ ନେତ୍ର ତା'ର ଲୋତକରେ ଭରି ଉଠିଥିଲା; ଦୀର୍ଘ ନିଶ୍ୱାସ ପକାଇ ପଦାଙ୍ଗୁଳି ଭୂମିରେ ଘର୍ଷଣ କରୁଥିଲା । ତାର ଲାବଣ୍ୟ ତରଙ୍ଗିତ କଳେବର ସ୍ୱେଦ ଓ ଲଜ୍ଜାରେ ଜର ଜର ହୋଇ ଉଠିଥିଲା । ପ୍ରତ୍ୟାବର୍ତ୍ତନ ସମୟ ସମ୍ପର୍କରେ ଜିଜ୍ଞାସା କରନ୍ତେ କଣ୍ଠ ତା'ର ବାଷ୍ପରୁଦ୍ଧ ହୋଇଯାଉଥିଲା (ବଧୂ ଗ୍ଭହିଁ ଗ୍ଭଲେ ବିରହୀ, ଗ୍ରଂ., ପୃ-୬୦୪) । ମିଳନ ଅବସ୍ଥାରେ ଯେଉଁ ଶୁଭ୍ର ମଲ୍ଲିକା କେଳି ଶଯ୍ୟା, ନାୟିକାର କବରୀ ଓ ତା'ର ଗଳା ମଣ୍ଡିତ କରେ, ଆଜି ପ୍ରବାସୀ ବିରହୀ ନାୟକ ନିକଟରେ ଜ୍ୟୋତ୍ସ୍ନାମୟୀ ରଜନୀରେ ସେ ତା'ର ଶୁଭ୍ରହାସ ଓ ସୌରଭ ହରାଇଛି (ବିଦେଶୀ ଅନୁଚିନ୍ତା, ପୃ-୬୧୮) ।

ଦିବ୍ୟ ନାରୀ ଲାଭ ପାଇଁ ଭଞ୍ଜଙ୍କର ନାୟକ (ପ୍ରଭାକର) କଠୋର ତପସ୍ୟା ଆଚରଣ କରେ (୬୫) । ସୁଲକ୍ଷଣା ଗୁଣବତୀ ନାରୀ ନାୟକର ଜୀବନକୁ ସରସ ଓ ସୁନ୍ଦର କରେ । ଏ ପ୍ରକାର ପ୍ରିୟତମା ପ୍ରାପ୍ତିରେ ଓ ସମ୍ଭୋଗରେ ଜୀବଲୋକରେ ନାୟକ ନିଜର ଜୀବନକୁ ସାର୍ଥକ ମନେ କରିବା ସ୍ୱାଭାବିକ । ବିରହୀ ନାୟକ ମୁଖରେ କବି ପ୍ରକାଶ କରିଛନ୍ତି—

ମଦନ କର ମୁକୁର        ବଦନକୁ ଚୁମ୍ବି ତା'ର
ଜୀବ ଲୋକେ ଜୀବନକୁ ଧନ୍ୟ କରି ଲେଖିବ ।୩।        (ଗ୍ରଂ., ପୃ-୫୮୫)

ସମ୍ଭୋଗ ମୁଦ୍ରିତ ଚିତ୍ରରେ କାମତୃଷ୍ଣା ଓ ମିଳନୋଚ୍ଛ୍ୱାସର ଆବେଗ ରହିଥିଲେ ମଧ୍ୟ କବି ଯଥା ସମ୍ଭବ ଭଞ୍ଜୀୟ ଓ କବିସୂର୍ଯ୍ୟୀୟ ନଗ୍ନତା ପରିହାର କରିବାକୁ ଚେଷ୍ଟା କରିଛନ୍ତି । ସମ୍ଭୋଗ ଲୀଳାରେ ନାୟିକାର ରସପୂର୍ଣ୍ଣ କମନୀୟ କଳାପୂର୍ଣ୍ଣ ଭଙ୍ଗୀ ନାୟକ-ପକ୍ଷରେ କମ୍ ଲୋଭନୀୟ ନୁହେଁ । ଗୋଟିଏ ଚଉପଦୀରୁ କେତୋଟି ପଦ ଉଦ୍ଧାର କରାଯାଉଛି—

ବିଲୋକିଲେ ଅବା        ଶୁଣିଲେ ମୋ ବାଣୀ
ଜୀବବନ୍ଧୁ କେଡ଼େ ସ୍ନେହରେ ।
ନୀପଫୁଲ ପରି        କଳେବର ଯାକ
କଣ୍ଟକ ପୁଲକୁ ଥାଇରେ ।୧।
ହେଜ୍ ଥାଇ ରତେ        ମୋ ଦୃଷ୍ଟି ଉରଜ
ତଳକୁ ବଳିଲେ ସଦ୍ଧରେ !
ଚୁମ୍ବ ଦେବା ଛଳେ        ମୁଖେ ମୁଖ ଦେଇ
ରହୁଥିବ ମୂର୍ଚ୍ଛିଲି ମୁହିଁରେ ।୨।

(୬୫) ଉପେନ୍ଦ୍ର ଭଞ୍ଜ, ଲାବଣ୍ୟବତୀ, ୧।୨୭

ସୁରତାନ୍ତେ ତଲ୍ପ- ତଳେ ଅଳୋଦରି !
ପ୍ରଦୀପ ପାଶରେ ଗନ୍ଧରେ ।
ବାସ ପିନ୍ଧୁ ନାରୀ- ବନ୍ଧ ଖୋସୁଁ ବନ୍ଧୁ !
ହସି ଯା ଦେଇଛୁ ଗ୍ରହିରେ ।୩। (ଗ୍ରଂ., ପୃ-୫୬୮)

ଅନ୍ୟତ୍ର ସଂଯତ ଓ ବ୍ୟଞ୍ଜନାଧର୍ମୀ ବର୍ଣ୍ଣନା ଭଙ୍ଗୀରେ ସମ୍ଭୋଗ ଚିତ୍ର କପରି ସୌଷ୍ଠବମୟ ଓ ରସୋତ୍ତୀର୍ଣ୍ଣ ହୋଇଛି, ଲକ୍ଷ୍ୟ କରାଯାଉ—

ବେଣୀ ସାଜ ଦେବ ବୋଲୁଁ,
ବମ୍ବାଧରି ! ହସି ପାଶକୁ ଆସିଲେ
ପ୍ରଦୀପ ଲିଭାଇ ଦେଲୁ ।୨୩।
ଭରମାଙ୍ଗି ରତି ଶେଷେ,
ଭଉଁ ଦଳ୍-ବାସ ବାସ ପିନ୍ଧୁ ହାସ
ପୁଁଛିଥାଇ ଗଣ୍ଡଦେଶେ ।୨୪।
ମଲ୍ଲୀ କୁସୁମର ତଲ୍ପ,
ମଧୁପ ଚୁମ୍ବି ଥି- ଲବୁ ରୁ ଅନାଇ,
ମୋ ନୟନ ବୁଜାଇଲୁ ।୨୫।
ଯତନେ ଶଯ୍ୟା ସଜାଡ଼ି,
ସିବାଯାଏ ମୁଁ ପ- ଣନ୍ତରେ ପଲ୍ୟଙ୍କ
ତଳରେ ଥାଉ ପଡ଼ୁଡ଼ି ।୨୭।
ବାସବ-ରଞ୍ଜନ-କେଶି !
ବାନ୍ଧୁ ମୋ ମଥା ମୁ- ଚୁଳି କରିଥାଉ
ପାହୁସିବା ଯାଏ ନଣି ।୨୯। (ଗୋ,କୃ. ଗ୍ରଂ , ୫୯୮)

**ବର୍ଷାର ପରିବେଶରେ ରଚିତ ଚଉପଦୀ, ଚଉତିଶା ଓ ବିରହ ପତ୍ରିକା :**

. ବର୍ଷାର ପରିବେଶରେ କବି କ୍ୱେଟି ଚଉପଦୀ, ଗୋଟିଏ ଚଉତିଶା ଓ ଗୋଟିଏ ବିରହ ପତ୍ରିକାରେ ପ୍ରବାସୀ ନାୟକର ନାନା ଅନୁଭୂତି ଓ ସ୍ମୃତି ବିଜଡ଼ିତ ବିରହ ବ୍ୟଥାର ବର୍ଣ୍ଣନା କରିଛନ୍ତି । ବର୍ଷାର ଶ୍ୟାମ ଓ ଶୀତଳ ପରିବେଶରେ ମିଳନ ବାସନାର ତୀବ୍ରତା ହେତୁ ପ୍ରବାସୀ ପକ୍ଷରେ ବିରହ ବେଦନା ଶତଗୁଣିତ ହୋଇଥାଏ । ବର୍ଷାର ପୃଷ୍ଠଭୂମିରେ ମହାକବି କାଳିଦାସ 'ମେଘଦୂତ'ର କଳ୍ପନା କରି ସଞ୍ଚରଣଶୀଳ ମେଘକୁ ବିରହୀ ଯକ୍ଷର ବ୍ୟଥାସିକ୍ତ ଅନୁଭୂତିର ବାର୍ତ୍ତାବହ ରୂପେ ମୂର୍ତ୍ତିମାନ୍ କରିଛନ୍ତି । ବର୍ଷା ବିରହ ଚଉପଦୀ ଗୁଡ଼ିକରେ ରାଗବୈଚିତ୍ର୍ୟକୁ ବାଦ ଦେଲେ ଭାବ ଓ ଚିତ୍ର ଦୃଷ୍ଟିରୁ ନୂତନତ୍ୱ କିଛି ନାହିଁ, ସେହି ପୁରୁଣା ଆର୍ତ୍ତିର ରୋମନ୍ଥନ ମାତ୍ର । କବିସୂର୍ଯ୍ୟଙ୍କ ଅନୁକରଣରେ କବି ଗୋଟିଏ ଚଉପଦୀରେ (ଏ ଘନ କାଳରେ ଘନକେଶୀ ମୋର, ଗ୍ରଂ., ପୃ-୫୮୧) 'ନିପୁଣ' ତାଳ

ଓ 'ପଞ୍ଜ'ର ପ୍ରୟୋଗ କରି ସାଙ୍ଗୀତିକ ସୌଷ୍ଠବ ରକ୍ଷା କରିଥିଲେ ମଧ୍ୟ ତାହା ବିରହର ଅନୁକୂଳ ନୁହେଁ । 'କଲ୍ୟାଣ ଆହାରି' ରାଗରେ ରଚିତ 'ଜଳଦ ଚଉତିଶା' ଏବଂ 'ଚନ୍ଦ୍ରା କେଦାର' ରାଗରେ ରଚିତ ତାଙ୍କର 'ବିରହ ଚିତ୍ରାଙ୍ଗ' (ଅପୂର୍ଣ୍ଣ) ଦୁଇଟି ସାର୍ଥକ ବର୍ଷା-ବିରହ କବିତା । ଓଡ଼ିଆ ଗୀତିକାବ୍ୟ ଓ ଚଉତିଶାର ବର୍ଷା ବିରହ ବର୍ଣ୍ଣନା ଏ ଦୁଇଟି କବିତାର ମୂଳ ପ୍ରେରଣା । ଏ ଗୁଡ଼ିକର ଆୟତନ ଦୀର୍ଘ ଏବଂ ବିରହୀ ନାୟକର ବିଭିନ୍ନ ଅନୁଭୂତି ଓ ସ୍ମୃତିର ଚିତ୍ର ରହିଲେ ମଧ୍ୟ ଚିତ୍ରପଦୀ ପରି ଭାବ ଓ ପ୍ରେରଣାର ଐକ୍ୟ ବା ଏକମୁଖିତାରୁ ଏ ଗୁଡ଼ିକ ବଞ୍ଚିତ ନୁହନ୍ତି । ବର୍ଷାର ପୃଷ୍ଠଭୂମିରେ ରଚିତ ନହେଲେ ମଧ୍ୟ ଲୋକଗୀତ ଛନ୍ଦରେ (ଖଣ୍ଡବାଣୀ) ରଚିତ ତାଙ୍କର 'କାଇଁଫୁଲ ଚଉତିଶା' ଅନ୍ୟ ଏକ ସାର୍ଥକ ବିରହ ଗୀତିକା ।

ଏ ଗୁଡ଼ିକରେ ନାୟକ ନାୟିକାର ସ୍ମରପୀଡ଼ା, ନାୟିକାର ଅନନ୍ୟ ରୂପମାଧୁର୍ଯ୍ୟ, କୁଳବତୀ ସୁଲଭ ସୁଗୁଣ ରାଜି (ନମ୍ରତା, ଲଜ୍ଜା, ସଂଯତ ଆଚରଣ, ସମ୍ଭ୍ରମବୋଧ, ଏକନିଷ୍ଠ ପ୍ରେମ, ଦୃଢ଼ତାଗ୍ରର ନିଷ୍ଠା, ନାୟକର ମଙ୍ଗଳ କାମନା, ସହିଷ୍ଣୁତା, କରୁଣା, କୋମଳତା, ସ୍ନେହ, ଅତିଥି ପରାୟଣତା, ସ୍ୱାଗତ-ପ୍ରିୟତା, ବିଦୂଷିତା, କଳାପ୍ରିୟତା, ବୈଦଗ୍ଧ୍ୟ, କେଳି ପ୍ରବୀଣତା, ଚାତୁର୍ଯ୍ୟ, ସମ୍ଭୋଗ ଲୀଳାରେ ସଂଯମ, ବେଶଭୂଷଣ ପରିପାଟୀ, ସୌନ୍ଦର୍ଯ୍ୟବୋଧ, ଭାବ ଚିତ୍ରଣ କୁଶଳତା, ନାୟକ ପାଇଁ ବ୍ୟାକୁଳତା ଓ ବ୍ୟାଥାତୁରତା), ନାୟକର ଏକପତ୍ନୀବ୍ରତ, ଗଭୀର ପ୍ରେମ, ରୂପ ମୁଗ୍ଧତା, ଗୁଣଗ୍ରାହିତା, ରସିକତା, ବୈଦଗ୍ଧ୍ୟ କଳାପ୍ରାଣତା, ସୌନ୍ଦର୍ଯ୍ୟବୋଧ, ରତିକେଳି କୁଶଳତା, ନାୟିକା ପ୍ରତି କରୁଣା, କୋମଳତା ଓ ସହାନୁଭୂତି ଏବଂ ଭାଗ୍ୟ ବାଦିତା ପରିସ୍ଫୁଟ ହୋଇଛି । ନାୟିକାର ନମ୍ରତା, ବୈଦଗ୍ଧ୍ୟ, ସୌନ୍ଦର୍ଯ୍ୟ ତଥା ରସବୋଧର ପରିଚୟ ଦେବାକୁ ଯାଇ କବି ନାୟକ ମୁଖରେ ପ୍ରକାଶ କରିଛନ୍ତି—

(କ) ଗୁଣନିଧି ରୂପବତୀ,
ଗ୍ରୀବା ନୁଆଁଇ ମୃଦୁବଚନ ସୁମନ ଫାଟି ଯାଉନାହିଁ ଛାତି ।୩।
ରୁରୁ ଭ୍ରମୀକର ଅଙ୍ଗୀ,
ଚିଉରୁ ଯାଉନାହିଁ ସାଜି କବରୀ, ମୋତେ ଦେଖାଇବା ଭଙ୍ଗୀ ।୭।
ଯିବାବେଳେ ଆସେ ପାଶେ,
ଜବାଧରୀ ଲେଭେ ଲେଉଟି ପଛକୁ, ମୋତେ ଚାହିଁବାର ଦଶେ ।୮।
(କାଇଁଫୁଲ ଚଉତିଶା, ଗ୍ରଂ., ପୃ-୪୯୬)

(ଖ) ପୂର୍ଣ୍ଣଚନ୍ଦ୍ରମୁହିଁ ରତି ସଜ ହୋଇ
ଆଳୀକି ଡାକ ଦେହଳୀକି ।
ଫୁଲ ହୃଦ ବାସେ ଲୁଚୁଇ ଧରଣ
ବୋଲଇ ଏକାନ୍ତେ ଦେଖୁକି ?
(ଜଳଦ ଚଉତିଶା, ଗ୍ରଂ., ପୃ-୪୯୧)

ନାୟିକାର ବିଦୂଷିତା ଓ କଳାପ୍ରିୟତାର ପ୍ରଶଂସା କରି ନାୟକ କହୁଛି—

(କ) ଫୁଲବନ ସଦନରେ
ଫେଡ଼ି ପୋଥି ପଢ଼ି    ଲୁହ ପୋଛୁଥାଉ
ମୋ କ୍ଷଣିକ ବିଚ୍ଛେଦରେ ।
(ଜାଇଫୁଲ ଚଉତିଶା, ଗ୍ରଂ., ପୃ-୫୯୮)

(ଖ) ଯତନେ କେତକୀ-    ଦଳେ ଲେଖିଥାଇ
ସେ ଘଡ଼ିର ଯେତେ ଦୁଃଖକୁ । (ଜଳଦ ଚଉତିଶା, ପୃ-୬୦୦)

(ଗ) ଚନ୍ଦ୍ରଧର ! ପ୍ରେମ ଶ୍ଳୋକେ,
ତରକି ନପାରି    ମୋ ରୂପ ଲେଖିବୁ
ଭିତ୍ତି ଚିତ୍ରିବାର ବେଳେ ।୧୬।
(ଜାଇଫୁଲ ଚଉତିଶା, ଗ୍ରଂ., ପୃ-୫୯୭)

କବି ପ୍ରଥାସିଦ୍ଧ ଭଙ୍ଗୀସ୍ତ ରୀତିରେ ବ୍ୟତିରେକ ଓ ଉତ୍ପ୍ରେକ୍ଷାର ପ୍ରୟୋଗରେ ନାୟିକାର କବରୀ ଓ ଅଳକା ଶୋଭାର ଶ୍ରେଷ୍ଠତ୍ୱ ନାୟକ ମୁଖରେ ବର୍ଣ୍ଣନା କରି ତା'ର ରୂପମୁଗ୍ଧତାର ପରିଚୟ ଦେଇଛନ୍ତି, ଯଥା—

ମୁକୁଳିତ ଦୀର୍ଘ ସ୍ନିଗ୍ଧକେଶ    ଅଞ୍ଜନରୁ ଅସିତ ସୁବେଶ
କରି କବରୀ ରୁଚିକ ଫାଳ ପରି
ଉପମାକୁ କରାଉ ସଙ୍କୋଚ ରେ, ବରାଙ୍ଗି ! ।୧୭।
ହ୍ୱାଁ କି ଶୋଭେ ଅଳକାବଳୀ    ସ୍ମର ରାଜାର ବିରୁଦାବଳୀ
କପୋଳ ବ୍ୟାଜେ କି ସେ ସ୍ୱର୍ଣ୍ଣ କାଗଜେ-
ଲେଖା ରୁଚିର ସ୍ୱାକ୍ଷର-ମାଳ ରେ, ବରାଙ୍ଗି ! ।୧୮।
(ବିରହ ଚଣ୍ଟାଉ, ଗ୍ରଂ., ପୃ-୬୦୨)

## ପ୍ରଥାକୀର୍ଣ୍ଣତା ସତ୍ତ୍ୱେ ଉପମାନ ନିର୍ବାଚନରେ ନୂତନତ୍ୱ :

ବିଭିନ୍ନ ଚଉପଦୀରେ ଅଳଙ୍କାର ପ୍ରୟୋଗରେ ପ୍ରଥାକୀର୍ଣ୍ଣତା ସତ୍ତ୍ୱେ କବି ସ୍ଥାନେ ସ୍ଥାନେ ଉପମାନ ନିର୍ବାଚନରେ ନୂତନତ୍ୱର ସଙ୍କେତ ଦେଇଛନ୍ତି । ଉଦ୍ଧୃତ ଦ୍ୱିତୀୟ ପଦରେ ନାୟିକାର ଅଳକା (ଚୂର୍ଣ୍ଣକୁନ୍ତଳ)ଠାରେ କନ୍ଦର୍ପ ରାଜାର ବିରୁଦାବଳୀ (ଦେବତା ଓ ରାଜାଙ୍କର ପ୍ରଶସ୍ତିମୂଳକ ଲେଖା), କପୋଳଠାରେ ସ୍ୱର୍ଣ୍ଣ (ସୁନେଲି) କାଗଜ ଓ ଅଳକାଠାରେ ସୁନ୍ଦର ଅକ୍ଷରମାଳାର କଳ୍ପନା ନୂତନ ଓ ବାସ୍ତବ ଅନୁଭୂତି ଉପରେ ପ୍ରତିଷ୍ଠିତ । ନାୟିକାର ନେପଥ୍ୟ ବିଧାନରେ ଭାଲର ସିନ୍ଦୂର ତିଳକ, କର୍ଣ୍ଣାବତଂସ ଓ କଣ୍ଠସ୍ଥପଦକର ଶୋଭାର ନିନ୍ଦା କରି (ନାୟକ ମୁଖରେ) ସେହି ବ୍ୟତିରେକର ପ୍ରୟୋଗ କରିଛନ୍ତି (୧୭) ।

(୧୭) ବିରହ ଚଣ୍ଟାଉ, ଗୋ. କୃ. ଗ୍ରଂ., ପୃ-୬୦୩

ଚଉତିଶା ଜୁଇଟିର ଭାଷା, ଭାବ ଓ ପ୍ରକାଶ ଭଙ୍ଗୀ ବିରହସ୍ବଭବର ଅନୁରୂପ; କିନ୍ତୁ ବିରହ ଚଉତିଶାର ଭାଷା, ଅଳଙ୍କାର ପ୍ରୟୋଗ ଓ ପ୍ରକାଶଭଙ୍ଗୀ ବିରହର ଅନୁରୂପ ନୁହେଁ ।

**ଚଉପଦୀଗୁଡ଼ିକରେ ଗୀତିକବିତାର ଧର୍ମ :**

ବୈଷ୍ଣବ ପଦାବଳୀ ପରି ଗୋପାଳକୃଷ୍ଣଙ୍କର ସାମ୍ପ୍ରଦାୟିକ ସାଧନଗୀତ ଏବଂ ରାଧାକୃଷ୍ଣ ପ୍ରେମଲୀଳା ସମ୍ବଳିତ ଚଉପଦୀଗୁଡ଼ିକ ବୈଷ୍ଣବଗୋଷ୍ଠୀର ଗୀତ ହୋଇଛି । ବୈଷ୍ଣବ ଗୋଷ୍ଠୀର ଚେତନା ତଥା ଆଦର୍ଶ ନିକଟରେ ଆତ୍ମନିଷ୍ଠତା ବା ମନ୍ମୟତା (Subjectivity) ଅପ୍ରଧାନ ବା ଏକ ପ୍ରକାର ପ୍ରଚ୍ଛାଦିତ ହୋଇଯାଇଛି । କିନ୍ତୁ ଲୌକିକ ପ୍ରେମମୂଳକ ଚଉପଦୀଗୁଡ଼ିକରେ ସଂସ୍କୃତ କାବ୍ୟ ଓ ଆଳଙ୍କାରିକ ରୀତି ଅନୁସୃତ ହେଲେ ବି ସତ୍ତ୍ୱେ ବ୍ୟକ୍ତିଗତ ଅନୁଭୂତି ପ୍ରାଧାନ୍ୟ ଲାଭ କରିଛି । ତେଣୁ ଆଧୁନିକ ଅର୍ଥରେ ଏଗୁଡ଼ିକ ଗୀତିକବିତା ନହେଲେ ମଧ୍ୟ ଗୀତି କବିତାର ଧର୍ମ, ଯଥା– ଭାବର ଏକମୁଖିତା, ସଂକ୍ଷିପ୍ତି (Brevity), ଗୀତିମାଧୁର୍ଯ୍ୟ (ସ୍ୱର ଓ ତାଳ ନିର୍ଦ୍ଦେଶ ହେତୁ) ଓ ସ୍ୱତଃସ୍ଫୂର୍ତ୍ତି (Spontaneity) ଏ ଗୁଡ଼ିକରେ ପରିଲକ୍ଷିତ ହୁଏ । ଲୌକିକ ପ୍ରେମର ମିଳନ, ବିଚ୍ଛେଦ, ଅଭିମାନ, ତୃଷା, ଆନନ୍ଦ ଓ ବେଦନା ପ୍ରଭୃତି ବିଭିନ୍ନ ଅବସ୍ଥାର ଏବଂ ଗୋଟିଏ ଗୋଟିଏ ଭାବର, ତୀବ୍ର ଅନୁଭୂତିର ଅଭିବ୍ୟକ୍ତି ଘଟିଛି ଏ ଗୁଡ଼ିକରେ । କବିସୂର୍ଯ୍ୟ ବଳଦେବଙ୍କ ଚଉପଦୀ ପରି ଏ ଗୁଡ଼ିକ ସ୍ୱଳ୍ପସଂଖ୍ୟକ ପଙ୍କ୍ତିରେ ପ୍ରେମର ଗୋଟିଏ ଗୋଟିଏ ଭାବୋଚ୍ଛ୍ୱାସର ଗାଢ଼ବଦ୍ଧ ରୂପ । ହାଲ ସାତବାହନ (ଗାଥାସପ୍ତଶତୀକାର) ଓ ଅମରୁଙ୍କର (ଅମରୁ ଶତକକାର) (୬୭) ଶୃଙ୍ଗାରଧର୍ମୀ ଏକ ଏକ ଶ୍ଳୋକ ପରି ଏଗୁଡ଼ିକ ମୁକ୍ତକ ଶୈଳୀର ଗୀତିକାବ୍ୟ, ଯେଉଁଥିରେ କାମ, ପ୍ରେମ ଓ ସୌନ୍ଦର୍ଯ୍ୟର ସମନ୍ୱିତ ତ୍ରିବେଣୀଧାରା ପ୍ରବାହିତ ।

(୬୭) ଅବନ୍ତୀ ସାନ୍ୟାଲ୍, 'ହାଜାରବଛରେର ପ୍ରେମେର କବିତା' ୧ମ ସଂ, ୧୯୬୬, ପୃ-୮

# ପରିଶିଷ୍ଟ [ଏକ]

## ଗୋପାଳକୃଷ୍ଣଙ୍କ ନାମରେ ଭଣିତ ହୋଇଥିବା ସନ୍ଦେହସୂଚକ ପଦାବଳୀ

### (କ) ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦାବଳୀ;

ସଂପାଦକ—ଶ୍ରୀ ବୈଷ୍ଣବ ଚରଣ ଦାସ ଗୋସ୍ୱାମୀ,
ପ୍ରକାଶକ — ଶ୍ରୀ ଅରକ୍ଷିତ ଦାସ, କଟକ-୧୯୫୯

ରାମକୃଷ୍ଣଙ୍କ ଦ୍ୱାରା ସମ୍ପାଦିତ ହୋଇଥିବା ଗୋପାଳକୃଷ୍ଣ ପଦାବଳୀ ତାହାରେ ବାବାଜୀ ବୈଷ୍ଣବ ଚରଣ ଗୋପାଳକୃଷ୍ଣଙ୍କ ନାମରେ ଭଣିତ ହୋଇଥିବା ଯେଉଁ ଅଧିକ ଗୀତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ସନ୍ନିବେଶିତ କରିଛନ୍ତି ତନ୍ମଧ୍ୟରୁ ପୂର୍ବୋକ୍ତ ୨୨ଟି ଗୀତ ଗୋପାଳକୃଷ୍ଣଙ୍କର ରଚନା ନୁହେଁ (କବିତ୍ୱ ଓ ପ୍ରକାଶ ଭଙ୍ଗୀକୁ ମାନଦଣ୍ଡ ଧରି ବିଚାର କଲେ) । ଅବଶିଷ୍ଟ ଗୀତଗୁଡ଼ିକ ସବୁ ଯେ ଗୋପାଳକୃଷ୍ଣଙ୍କର ତାହା ନିଶ୍ଚିତ ଭାବରେ କହିହେବ ନାହିଁ ।

**(ଖ) ଗୋପାଳକୃଷ୍ଣ ଗ୍ରନ୍ଥାବଳୀ, ପ୍ରଥମଭାଗ,**

ସଂକଳକ ଓ ସଂଗ୍ରାହକ—ଶ୍ରୀ ସତ୍ୟେନ କୁମାର ପାଣିଗ୍ରାହୀ

ପ୍ରକାଶକ—ଶେଖ୍ ଅମିନୁଲ୍ ଆଇ, କଟକ-୧୯୬୯

# ପରିଶିଷ୍ଟ [ଘୁଈ]

## ବାବାଜୀ ବୈଷ୍ଣବ ଚରଣ ସମ୍ପାଦିତ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦାବଳୀରେ ପରିବର୍ତ୍ତିତ ରାଗ ଓ ତାଳର ସଙ୍କେତ

| ଗୀତର ନାମ | ସ୍ୱ. କୃ. ସମ୍ପାଦିତ ଗୋ. କୃ. ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ | ବା. ବୈ. ଚ. ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ.କୃ.ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୧ । ଅରେ ଦେଖିଛୁ ଯେ | ରାଗ କାରବାଣୀ; ତାଳ ମିଶ୍ରରୂପ । ପ୍ରଭ-କେଣେ ନ ଶୁଣ ଯେ | ୭୧ | ରାଗ ବସନ୍ତ, ତାଳ ସରମାନ; ପ୍ରଭର ଉଲ୍ଲେଖ ନାହିଁ । | ୧୨୭ |
| ୨ । ଦେଖାଇବକ ସତେ | ରାଗ-ପରଜ; ମିଶ୍ର ରୂପତାଳ; ପ୍ରଭ-ସଞ୍ଜିବନ ଲୋଡ଼ି ଲୋଡ଼ି | ୭୭ | ରାଗ-ପରଜ; ତାଳ ଆଡ଼ତାଳୀ | ୧୨୨ |
| ୩ । ମାନସରୁ ଯିବକ-ଭାବନା | ରାଗ-ଝିଞ୍ଜୋଟୀ; ତାଳ ମିଶ୍ରରୂପ; ପ୍ରଭ-ମୋହନ ନୟନାଞ୍ଚଳ | ୭୮ | ରାଗ-ଝିଂଝୁଟ, ତାଳ-ଆଡ଼ତାଳୀ | ୧୨୫ |
| ୪ । ମୋ ଧନ ଯିବପରି | ରାଗ-ଖମାଚ; ତାଳ-ଆଦି | ୭୯ | ରାଗ-ଶଙ୍କରାଭରଣ; ତାଳ-ଆଠତାଳୀ | ୧୦୧ |
| ୫ । ଦୟାମୟି ଦଶିବ | ରାଗ-ଶଙ୍କରାଭରଣ; ମିଶ୍ର ଏକତାଳ; ଦ୍ରୁତି ବସିଛୁ କଣୋଷ୍ଟ ପ୍ରଭ | ୮୨ | ରାଗ-ମଧୁଶ୍ରୀ; ତାଳ-ଏକତାଳୀ | ୧୨୭ |

| ଗୀତର ନାମ | ରା. କୃ. ସମ୍ପାଦିତ<br>ଗୋ. କୃ. ପ.ରେ<br>ରାଗ ଓ ତାଳ | ପୃଷ୍ଠାଙ୍କ | ବା. ବୈ. ଭ.<br>ସମ୍ପାଦିତ<br>ଗୋ. କୃ. ଗ୍ରଂ.<br>ଓ ଗୋ.କୃ.ପ.ରେ<br>ରାଗ ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୬ । କର କରୁଣାମୟି<br>ରାଧେ ! | ରାଗ-ଜଙ୍ଗଲା,<br>ଆଦିତାଳ | ୮୨ | ରାଗ-ସୌରାଷ୍ଟ୍ର;<br>ତାଳ-ଏକତାଳୀ | ୧୦୩ |
| ୭ । କେଣେ କ<br>ଶୁଣ ଯେ | ରାଗ-କ୍ଷୀରବାଣୀ;<br>ତାଳ-ମିଶ୍ରରୂପ;<br>ପ୍ରଥ-କଣା ପତ୍ତଲରେ<br>ବଣ ମୃଗାକ୍ଷି ! | ୮୩ | ରାଗ-ରସକାମୋଦୀ;<br>ତାଳ-ଏକତାଳୀ | ୧୧୨ |
| ୮ । ଏଡ଼େ ଭାଗ୍ୟ<br>ମୋର | ରାଗ-କଲ୍ୟାଣୀ,<br>ରୂପକ ତାଳ;<br>ପ୍ରଥ-ଗୃଢ ପାନ୍ଥ<br>ଗଲରେ ହାଥ ! | ୮୪ | ରାଗ-କଲ୍ୟାଣୀ<br>ତାଳ-ଝୁଲା,ଝମ୍ପା | ୧୧୪ |
| ୯ । ଭାବ ଭାବ ବନ<br>ନଶି | ରାଗ-ଖମ୍ବାଚ,<br>ଆଦିତାଳ,<br>ପ୍ରଥ-ଭଜମନ<br>ହରପ୍ରାଣ | ୮୭ | ରାଗ-ମଙ୍ଗଲ-<br>କେଦାର;<br>ତାଳ-ଆଢ,<br>ଝପ୍‌ପା | ୧୧୬ |
| ୧୦ । ହା ଗୋଷ୍ଠପୁରନ୍ଦର | ରାଗ-ଯଦୁକୁଳ<br>କାମୋଦୀ;<br>ଆଦିତାଳ | ୮୭ | ରାଗ-ରସକେଳି,<br>ତାଳ-ଏକତାଳୀ,<br>ଆଢ | ୧୧୯ |
| ୧୧ । ସ୍ୱପନେ<br>ବଲେକଲରେ | ରାଗ-ଝିଙ୍କ୍ଷୋଟୀ;<br>ଆଦିତାଳ | ୧୦୦ | ରାଗ-ଘଣ୍ଟାରବ;<br>ତାଳ-ଆଢ | ୧୩୩ |
| ୧୨ । କର ଜୁହାର<br>ମାଗୁଛୁ | ରାଗ-ନାଦ<br>ନାମନ୍ଦିସ୍ୱା;<br>ମିଶ୍ର ରୂପତାଳ | ୧୦୨ | ରାଗ-ସାରଙ୍ଗ,<br>ତାଳ-ଏକତାଳୀ | ୧୩୪ |
| ୧୩ । ଜୁହାର<br>ଶ୍ରୀଗୋପାଳ | ରାଗ-ପାଲୁବରାଡ଼ି,<br>ତାଳ-ରୂପକ | ୧୦୭ | ରାଗ-ଦୀର୍ଘବରାଡ଼ି<br>ତାଳ-ରୂପକ | ୧୩୮ |
| ୧୪ । ଶରଧାରେ<br>କର ମନ | ରାଗ-କାମୋଦୀ<br>ମିଶ୍ର ରୂପତାଳ | ୧୦୯ | ରାଗ-ଆଶାବରୀ<br>ତାଳ-ଆଠତାଳୀ | ୨୧୪ |

| ଗୀତର ନାମ | ସ୍ୱା. କୃ. ସମ୍ପାଦିତ ଗୋ. କୃ ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ | ଡା. ବୈ. ଚ ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ.କୃ.ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୧୫ । ଜଗବନ୍ଧୁ ଦୟାଳୁ | ରାଗ-ଶଙ୍କରାଭରଣ; ରୂପକ ତାଳ | ୧୧୩ | ରାଗ-ବଖସ; ତାଳ-ଆଠତାଳି | ୨୪୭ |
| ୧୬ । ଭଜମନ ହରପ୍ରାଣ | ରାଗ-ଖମାଚ; ଆଦିତାଳ | ୧୧୬ | ରାଗ-ଶଙ୍କରାଭରଣ; ତାଳ-ଆଠତାଳି | ୨୦୦ |
| ୧୭ । ଜୟ ରାଧେକୃଷ୍ଣ ବୋଲ | ରାଗ-ବଳାହାରି; ତାଳ-ତ୍ରିପୁଟା | ୧୧୯ | ରାଗ-ଆହାରି; ତାଳ-ଆଡ଼ତାଳି | ୨୨୫ |
| ୧୮ । କଦମ୍ବ ବନେ ବଂଶୀ | ରାଗ-ଧନାଶ୍ରୀ, ମିଶ୍ରରୂପତାଳ | ୧୩୨ | ରାଗ-କାମୋଦୀ; ତାଳ-ଏକତାଳି | ୩୩୫ |
| ୧୯ । କି କରିବ ବ୍ରଜବଧୂ ଲାଗିରେ | ରାଗ-ପରଜ; ଦ୍ରୁତ ଗତି ଏକତାଳ | ୧୩୯ | ରାଗ-ରସକାମୋଦୀ; ତାଳ-ଆଠତାଳି | ୪୧୧ |
| ୨୦ । ମୁହଁ ମୁହିଁ କିଶୋର-ଚନ୍ଦ୍ରମାଙ୍କର | ରାଗ-ଖର-ହରପ୍ରିୟା ମିଶ୍ରରୂପତାଳ | ୧୪୩ | ରାଗ-ଲଳିତକାମୋଦୀ ତାଳ-ଆଠତାଳି | ୩୯୯ |
| ୨୧ । ମୋ ମନରୁ ଯାଉନାହିଁ | ରାଗ-ମୋହନା; ଏକତାଳ | ୧୪୮ | ରାଗ-ତୋଡ଼ି ପରଜ; ତାଳ-ଏକତାଳି | ୫୧୧ |
| ୨୨ । ମାନ କରିଥିଲ | ରାଗ-ମୋହନା; ତାଳ-ରୂପକ | ୧୫୩ | ରାଗ-ସୁରଠ ଆରବୀ; ତାଳ-ରୂପକ | ୫୧୦ |
| ୨୩ । ବୁଝିଛନ୍ତି ମା ଗୋଷ୍ଠ ଚନ୍ଦ୍ରମା | ରାଗ-ମାଲ୍ୱାମାଳବ ଗୌଡ଼ା, ମିଶ୍ରରୂପତାଳ | ୧୫୪ | ରାଗ-ଭୈରବୀ; ତାଳ-ଏକତାଳି | ୩୬୫ |
| ୨୪ । କୁଞ୍ଜବନଯାକ ଲେଉଟୁଥିବେ | ରାଗ-ହରିକାମ୍ବୋଦ ରୂପକ ତାଳ | ୧୫୬ | ରାଗ-ବଙ୍ଗଳାଶ୍ରୀ, ତାଳ-ଯଢ | ୪୩୦ |
| ୨୫ । ଏତେ ଦୁଃଖ କାହିଁକି ? | ରାଗ-କାରବାଣୀ ରୂପକ-ତାଳ | ୧୫୯ | ରାଗ-ପଞ୍ଚହମଞ୍ଜରୀ ତାଳ-ଏକତାଳି | ୩୬୫ |
| ୨୬ । ଯାହା ଭାଳିଥିଲ ହୋଇଥିଲେ | ରାଗ-ଝିଞ୍ଜୋଟି, ମିଶ୍ର ରୂପତାଳ | ୧୬୦ | ରାଗ-ବଙ୍ଗଳାଶ୍ରୀ, ତାଳ-ପହ୍ନପଟ୍ଟଙ୍ଲ | ୩୯୮ |

| ଗୀତର ନାମ | ସ୍ୱ. କୃ. ସମ୍ପାଦିତ ଗୋ. କୃ. ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ | ବା. ବୈ. ଚ. ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ.କୃ.ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୨୭ । କହରେ ସଙ୍ଗିନି କେ ସେ | ରାଗ-ଯୁଝାବନ୍ତୀ; ଆଦିତାଳ | ୧୭୦ | ରାଗ-କୁସୁମ କେଦାର ତାଳ-ଝପ୍‌ତା | ୩୫୬ |
| ୨୮ । ପରସ୍ପର କେଣେ ମନ | ରାଗ-ସାବେରୀ; ତାଳ-ଏକତାଳ | ୧୭୬ | ରାଗ-ତୋଡ଼ି ପରଜ, ତାଳ-ଆଡ଼ତାଳୀ | ୩୮୨ |
| ୨୯ । ଯାଚ କଥା କୃଷ୍ଣା ସିବରେ | ରାଗ-ନୀଳାମ୍ବରୀ; ମିଶ୍ର ରୂପତାଳ | ୧୭୮ | ରାଗ-ଗୁର୍ଜ୍ଜରୀ; ତାଳ-ଆଠତାଳୀ | ୪୯୩ |
| ୩୦ । ସୁନ୍ଦର ତୋତେ ଏ ଗାଢ | ରାଗ-ଆନନ୍ଦ ଭୈରବୀ; ଆଦିତାଳ | ୧୮୦ | ରାଗ-ଗୁଣ୍ଡକିରୀ ତାଳ-ଯତି | ୪୮୬ |
| ୩୧ । ଆସି ଯାଇଛି ସିନା କରମକୁ | ରାଗ-ଖରହରପ୍ରିୟା; ମିଶ୍ର ରୂପତାଳ | ୧୮୦ | ରାଗ-ସିନ୍ଧୁଡ଼ା; ତାଳ-ଏକତାଳୀ | ୪୯୬ |
| ୩୨ । ଶ୍ୟାମ ବୋଇଲେ ଗୋ ଜଣ | ରାଗ-ପୁନ୍ନାଗ ବରାଡ଼ି; ମିଶ୍ର ରୂପତାଳ | ୧୮୩ | ରାଗ-ଜୌନପୁର ତୋଡ଼ି, ତାଳ-ଆଠତାଳୀ | ୪୦୫ |
| ୩୩ । ଆଉକ ବେଶ ସଜନରେ | ରାଗ-ନାଟକ ପ୍ରିୟା, ମିଶ୍ର ରୂପତାଳ | ୧୮୬ | ରାଗ-ନାଟକୁରଙ୍ଗୀ, ତାଳ-ଆଠତାଳୀ | ୪୩୯ |
| ୩୪ । ସହଚରି ! ଏକା ରହିଛନ୍ତି | ରାଗ-ମାଞ୍ଜି; ମିଶ୍ର ରୂପତାଳ | ୧୯୩ | ରାଗ-ପୂରବୀ, ତାଳ-ଆଠତାଳୀ | ୫୨୨ |
| ୩୫ । ମୋହନ ମାଧୁରୀ ଦେଖିଥିଲି | ରାଗ-ବେହାଗ; ଏକତାଳ | ୧୯୫ | ରାଗ-ବସନ୍ତ କାମୋଦୀ, ତାଳ-ଆଠତାଳୀ | ୩୪୫ |
| ୩୬ । ଧୀର ସମୀରେ କିସି ଡାକୁଛି | ରାଗ-ନାଦନାମ କ୍ରିୟା; ମିଶ୍ର ରୂପତାଳ | ୨୦୦ | ରାଗ-ଭୂପାଳୀ, ତାଳ-ଆଠତାଳୀ | ୫୦୨ |

| ଗୀତର ନାମ • | ସ୍ୱ. କୃ. ସମ୍ପାଦିତ ଗୋ. କୃ. ପ.ରେ ରାଗ ଓ ତାଳ | ପୃଷ୍ଠାଙ୍କ | ବା. ବୈ. ତ ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ.କୃ.ପ. ପର ରାଗ ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୩୬ । ନନ୍ଦନନ୍ଦନ-ଇନ୍ଦୀବର | ରାଗ-ଖରହର ପ୍ରିୟା, ଚତୁସ୍ରଜାତ ଏକତାଳ | ୨୦୦ | ରାଗ-ଗାନ୍ଧାର; ତାଳ-ଯତି, ଝମ୍ପା | ୫୧୮ |
| ୩୮ । କି ସୁକୃତ କରିଥିଲା | ରାଗ-ଭୈରବୀ. ମିଶ୍ର ରୂପତାଳ | ୨୦୩ | ରାଗ-ଖଳସା ଗୁର୍ଜରୀ, ତାଳ-ଏକତାଳୀ | ୩୮୧ |
| ୩୯ । ସେ ଯିବା କଥା କରେ | ରାଗ-କୀରବାଣୀ ମିଶ୍ର ରୂପତାଳ | ୨୦୫ | ରାଗ-ସୌରାଷ୍ଟ୍ରୀ; ତାଳ-ଏକତାଳୀ | ୩୪୯ |
| ୪୦ । ବରଜ ଶିଶୁ ସଙ୍ଗେ ଯିବନ୍ତି | ରାଗ-ମାୟାମାଳବ ଗୌଡ଼ା; ମିଶ୍ର ରୂପତାଳ | ୨୦୯ | ରାଗ-ଘଣ୍ଟାରବ; ତାଳ-ଏକତାଳୀ | ୩୯୩ |
| ୪୧ । ପ୍ରାଣ ସଙ୍ଗିନିରେ | ରାଗ-ହଟ୍ଟକୋଟି ରୂପକ ତାଳ | ୨୧୫ | ରାଗ-କର୍ଣ୍ଣାଟୀ; ତାଳ-ସରମାନ | ୩୪୩ |
| ୪୨ । ପ୍ରାଣସିଙ୍ଗିରେ | ରାଗ ପୁନ୍ନାଗବରାଳି, ମିଶ୍ର ରୂପତାଳ | ୨୨୪ | ରାଗ-ତୋଡ଼ିପରଜ, ତାଳ-ଝମ୍ପା | ୪୫୩ |
| ୪୩ । ମନସିଜ ମନମୋହନ | ରାଗ-ବେହାଗ, ରୂପକ ତାଳ | ୨୨୫ | ରାଗ-ଗୁଣ୍ଡକିରୀ, ତାଳ-ରୂପକ | ୪୨୦ |
| ୪୪ । ଦେଖିଲେ ଦେଖିଲାପରି | ରାଗ-ବେଗଡ଼ା, ତ୍ରିପୁଟା ତାଳ | ୨୨୯ | ରାଗ-ମଧୁଶ୍ରୀ, ତାଳ-ଆଠତାଳୀ | ୩୪୫ |
| ୪୫ । ଜନେ ଜାଣିଲେଣି ବୋଲି | ରାଗ-ଖମାଚ, ଆଦିତାଳ | ୨୩୩ | ରାଗ-ବସନ୍ତ ବରାଡ଼ି ତାଳ-ମଠାତାଳୀ | ୩୯୦ |
| ୪୬ । କରୁଣା ଥାଉରେ ଧନ | ରାଗ-ଖରହରପ୍ରିୟା, ଆଦିତାଳ | ୨୩୪ | ରାଗ-ଚିପାକେଦାର ତାଳ-ଆଦିତାଳ | ୫୬୨ |
| ୪୭ । ବଧୂ ଗୃହିଁ ଗଲେ | ରାଗ-ସାବେରୀ, ମିଶ୍ରରୂପତାଳ | ୨୪୨ | ରାଗ-କୁସୁମକାଚ୍ଛମାଧୀ ତାଳ-ଝୁଲା,ଝମ୍ପା | ୬୦୪ |

| ଗୀତର ନାମ | ସ୍ୱ. କୃ. ସମ୍ପାଦିତ ଗୋ. କୃ. ପ.ରେ ସ୍ୱର ଓ ତାଳ | ପୃଷ୍ଠାଙ୍କ | ବା. ବୈ. ଭ. ସାମ୍ପାଦିତ ଗୋ. କୃ ଗ୍ରଂ. ଓ ଗୋ. କୃ. ପ.ରେ ସ୍ୱର ଓ ତାଳ | ପୃଷ୍ଠାଙ୍କ |
|---|---|---|---|---|
| ୪୮ । ଶୁଣ ସଜନୀ, କାଲି ରଜନୀରେ | ରାଗ-ଖରହରପ୍ରିୟା, ମିଶ୍ରରୂପତାଳ | ୧୪୩ | ରାଗ-କାଶ୍ମୀର କାମୋଦୀ ତାଳ-ଆଠତାଳୀ | ୫୪୩ |
| ୪୯ । ଘନକୃଷ୍ଣ ! ମାର ମୁଖୁଁ | ରାଗ-ଭୈରବୀ, ମିଶ୍ରରୂପତାଳ | ୧୪୭ | ରାଗ-ଆଶାବରୀ ତାଳ-ଆଠତାଳୀ | ୫୬୨ |
| ୫୦ । ତୋରୂପ ପ୍ରଭ ଦଣେ | ରାଗ-ଧନାଶ୍ରୀ, ମିଶ୍ରରୂପତାଳ | ୧୬୩ | ରାଗ-ସ୍ୱଟିଆରୀ ତାଳ-ଏକତାଳୀ | ୫୮୯ |

# ପରିଶିଷ୍ଟ [ତିନି]

## ପାଠ ବୈଷମ୍ୟ

| ଗୀତର ନାମ | ରା. କୃ. ଓ କୃ. ନ. ସମ୍ପାଦିତ ଗୋ.କୃ.ପ. | ପୃଷ୍ଠାଙ୍କ ରା.କୃ. କୃ. ନ. | ବା. ବୈ. ତ ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ. କୃ. ପ. | ପୃଷ୍ଠାଙ୍କ |
|---|---|---|---|---|
| ୧ । କେଶର କୁଞ୍ଜ ଶେଯରେ | ଦଶଟି ପଦର ଉଲ୍ଲେଖ; ଅସଂପୂର୍ଣ୍ଣ ବୋଲି ସୂଚିତ । | ୩୩–୩୧ | ୩୩ଟି ପଦର ଉଲ୍ଲେଖ, ୫, ୧୩, ୧୪, ୧୫, ୧୬, ୧୭, ୧୮, ୧୯, ୨୦, ୨୧, ୨୨- ୨୯, ୩୧-୩୩ ସଂଖ୍ୟକ ପଦ ଗୁଡ଼ିକ ଗୋ.କୃ. ପ.ରେ ନାହିଁ । | ୩୦୯ |

| ଗୀତର ନାମ | ସ. କୃ. ଓ କୃ. ନ. ସମ୍ପାଦିତ ଗୋ.କୃ.ପ. | ପୃଷ୍ଠାଙ୍କ ସ.କୃ. କୃ. ନ. | ବା. ବୈ. ଚ. ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ କୃ. ପ. | ପୃଷ୍ଠାଙ୍କ |
|---|---|---|---|---|
| ୨ । ବୃନ୍ଦାରଣ୍ୟ ସାର୍ବଭୌମ | ୨୮ଟି ପଦର ଉଲ୍ଲେଖ ଅଛି । | ୨୩-୫୮ | ୨୨ଟି ପଦର ଉଲ୍ଲେଖ; ୫୩-୭୧ ପଦ ରା.କୃ. ଓ କୃ. ନ. ସମ୍ପାଦିତ ଗୋ. କୃ. ପ.ରେ ନାହିଁ । ସ୍ଥାନେ ସ୍ଥାନେ ପାଠାନ୍ତର ରହିଛି । | ୭୧ |
| ୩ । ଶ୍ରୀଗୁରୁ ଦଣ୍ଡ ଚଳୁ ଏବେ | ୧୫ଟି ପଦର ଉଲ୍ଲେଖ ଅଛି । | ୬୯-୭୪ | ୧୮ଟି ପଦର ଉଲ୍ଲେଖ, ୧୬-୧୮ ପଦ ଗୋ.କୃ ପ.ରେ ନାହିଁ । | ୮୯ |
| ୪ । ଶ୍ରୀ ରାଧା ଗୋବିନ୍ଦ ଯେ | ୭ଟି ପଦର ଉଲ୍ଲେଖ ଅଛି । | ୭୬-୭୧ | ସାତଟି ପଦର ଉଲ୍ଲେଖ; ୭ମ ପଦ ଗୋ. କୃ, ପ.ରେ ନାହିଁ । | ୧୨୦ |
| ୫ । ମୋ ମନରୁ ଯାଉନାହିଁ | ୫ଟି ପଦର ଉଲ୍ଲେଖ ଅଛି । | ୧୪୮-୧୪୧ | ସାତଟି ପଦର ଉଲ୍ଲେଖ; ୪-୭ ପଦ ଗୋ. କୃ. ପ ରେ ନାହିଁ । | ୪୧୧ |
| ୬ । ମନେ ପଡ଼ୁଛିରେ (ମା) | ୭ଟି ପଦର ଉଲ୍ଲେଖ ଅଛି । | ୧୫୧-୧୪୫ | ଆଠଟି ପଦର ଉଲ୍ଲେଖ, ୧ମ ପଦ ଗୋ. କୃ. ପ. ରେ ନାହିଁ । | ୪୩୮ |
| ୭ । କୃଷ୍ଣଚନ୍ଦନପାନ ନେଉଥିବେ | ୫ମ ପଦ ପଡ଼ି ଯାଇଥିବ କରନ୍ତୁ ମୁରଲୀ | ୧୫୭-୧୫୧ | ପାଠାନ୍ତର-ଛପି ପଡ଼ୁଥିବ ଶ୍ରୀହସ୍ତ ମୁରଲୀ । | ୪୩୦ |

| ଗୀତର ନାମ | ଗ୍ର. କୃ. ଓ କୃ ନ. ସମ୍ପାଦକ ଗୋ.କୃ. ପ. ଗ୍ର.କୃ. କୃ.ନ. | ପୃଷ୍ଠାଙ୍କ | ବା. ବୈ. ଚ. ସମ୍ପାଦକ ଗୋ. କୃ. ଗ୍ରଂ, ଓ ଗୋ. କୃ. ପ. | ପୃଷ୍ଠାଙ୍କ |
|---|---|---|---|---|
| ୮ । ଆଉ ଆସିବେ ଶ୍ୟାମ | ୬ଟି ପଦର ଉଲ୍ଲେଖ | ୧୪୮-୧୫୩ | 'ମୋତେ ଜଳଜଳ ଦଶଇରେ' ପାଦ ଗୋ. କୃ. ପ.ରେ ନାହିଁ । | ୪୫୬ |
| ୯ । ମୁଁ ଶ୍ୟାମବନ୍ଧୁ...ମୁଁ ଶ୍ୟାମବନ୍ଧୁ | ଭଳକ ଗୋ। | ୧୬୨-୧୫୬ | ପାଠାନ୍ତର-ମୁଁ ହେବ ଶ୍ୟାମବନ୍ଧୁ ଭଳ କ ଗୋ ! | ୪୦୬ |
| ୧୦ । ମୁଁ କ ମୂଢ଼ ବୁଦ୍ଧି କଲ | ୫ଟି ପଦର ଉଲ୍ଲେଖ ଅଛୁ । | ୧୬୦-୧୬୫ | ୫ଟି ପଦର ଉଲ୍ଲେଖ, ୨ୟ ପଦର ଆଦ୍ୟ ଜାଣି ନ ପାର ଏବଂ ୪ର୍ଥ ପଦର 'ମୁଷମାକୁ ନୟନରେ କ ଗୋ.କୃ.ପ.ରେ ନାହିଁ । | |
| ୧୧ । ପ୍ରଭୁ ! ଏଦ୍ଧତି ପଶୁପୀ | ୧୬ଟି ପଦର ଉଲ୍ଲେଖ ଅଛୁ | ୧୯୬-୧୯୪ | ୧୬ଟି ପଦର ଉଲ୍ଲେଖ । 'ବଟାଣ ତା ପ୍ରଭବ କପଟେ ଗୋ. କୃ. ପ ରେ ନାହିଁ । | ୪୩୫ |
| ୧୨ । କ ସୁକୃତ କୃଶଥଲ | ୫ଟି ଦେର ଉଲ୍ଲେଖ ଅଛୁ । | ୨୦୩-୨୦୦ | ୬ଟି ପଦର ଉଲ୍ଲେଖ ଅଛୁ । 'ଦଧିଗ୍ରାମ ଗୁଆଲୀ ଯଦ ଗୋ. କୃ. ପ.ରେ ନାହିଁ । | ୩୮୧ |
| ୧୩ । ବୁଡ଼ିଗଲୁ ଶ୍ୟାମ ପ୍ରେମରେ | ୭ଟି ପଦର ଉଲ୍ଲେଖ ଅଛୁ । | ୨୧୬-୨୧୪ | ୮ଟି ଦେର ଉଲ୍ଲେଖ ଯାଉଁ ଯମୁନା ଜଳକୁ ଦେ ଗୋ.କୃ.ପ.ରେ ନାହିଁ । | ୩୬୨ |

| ଗୀତର ନାମ | ସ୍ୱ. କୃ. ଓ କୃ. ନ. ସମ୍ପାଦିତ ଗୋ.କୃ. ପ. ରା.କୃ. କୃ.ନ. | ପୃଷ୍ଠାଙ୍କ | ବା. ବୈ. ଚ. ସମ୍ପାଦିତ ଗୋ. କୃ. ଗ୍ରଂ. ଓ ଗୋ. କୃ. ପ. | ପୃଷ୍ଠାଙ୍କ |
|---|---|---|---|---|
| ୧୪ । ମନସିଜ ମନମୋହନ | ୫ଟି ପଦର ଉଲ୍ଲେଖ | ୨୨୫-୨୧୨ | ୬ଟି ପଦର ଉଲ୍ଲେଖ, | ୪୨୦ |
| ୧୫ । ରାଧାପର ରାଧା | ସାତଟି ପଦର ଉଲ୍ଲେଖ ଅଛି । | ୨୩୧-୨୨୮ | ପାଞ୍ଚଟି ପଦର ଉଲ୍ଲେଖ, ଗୋ. କୃ. ପ.ର ଷଷ୍ଠ ଓ ସପ୍ତମ ପଦ ଗୋ.କୃ.ଗ୍ରଂ.ରେ ନାହିଁ । | ୪୨୩ |
| ୧୬ । ବନ୍ଧୁ ନାଗ୍ର କର ମୋତେ | ବନର ମାଳତୀ ସମ; ମନ କଥା ମନରେ ରନ୍ଧୁ ଦେନ୍ଧୁ ସଢ଼ିଲରେ । | ୨୩୪-୨୩୧ | ପାଠାନ୍ତର : 'ବନର ମାଳତୀ ସମ', ମନ କଥା ମନେ ରନ୍ଧୁ ଦେନ୍ଧୁ ମୋର ସଢ଼ିଲରେ | ୫୪୦ |
| ୧୭ । ସାରସଜ ସାରସ ଲପନା | ଛଅଟି ପଦର ଉଲ୍ଲେଖ ଅଛି । | ୨୩୯-୨୩୬ | ପାଞ୍ଚଟି ପଦର ଉଲ୍ଲେଖ, 'ସୁନାସୁଣ ସୁମନା ତୁ ହୋଇଲେ ବମନା କ ଗଢ ଅଛୁ ମୋରଟି ଆନରେ' ପଦ ଗୋ.କୃ.ପ ରେ ନାହିଁ । | ୫୬୧ |
| ୧୮ । ଏ ଘନ ଵନ ଏକା | ପାଞ୍ଚଟି ପଦର ଉଲ୍ଲେଖ | ୨୪୬-୨୪୩ | ଏଥିରେ ଗୋ.କୃ ପର ପ୍ରତ୍ୟେକ ପଦର ସାମାନ୍ୟ ପରିବର୍ତ୍ତନ ଲକ୍ଷିତ ହୁଏ । | ୫୪୫ |

# ପରିଶିଷ୍ଟ [ଘର]

## ଗୋପାଳକୃଷ୍ଣଙ୍କ ଦ୍ୱାରା ପ୍ରଭାବିତ ତାଙ୍କର ସମସାମୟିକ ଓ ପରବର୍ତ୍ତୀ କବି ଏବଂ ସେମାନଙ୍କର ରଚନା

୧। କବିଚନ୍ଦ୍ର ରଘୁନାଥ ପରିଚ୍ଛା (ପା. ଖି), ଲକ୍ଷଣ ଚନ୍ଦ୍ରୋଦୟ ଗ୍ରନ୍ଥ; ପ୍ର-ସଙ୍ଗୀତ ନାଟକ ଏକାଡ଼େମୀ, ଭୁବନେଶ୍ୱର, ୧୯୫୭ ।

୨। କବି ଶ୍ୟାମସୁନ୍ଦର ଦେବ (ଖୋର୍ଦ୍ଧା), ଅନୁରାଗକଳ୍ପଲତା, ୧ମ ଓ ୨ୟ ଭାଗ, ୧ମ ସଂ., ସମ୍ପା-ଶ୍ରୀମତୀ ପ୍ରମିଳା ମିଶ୍ର, ପ୍ର-ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗ ନିର୍ଦ୍ଦେଶାଳୟ, ଭୁବନେଶ୍ୱର, ୧୯୭୪ ।

୩। ଗୌରହରି ପରିଚ୍ଛା (ପା. ଖି.), ଗୌରହରି ଗ୍ରନ୍ଥାବଳୀ; ୧ମ ସଂ, ସଂଶୋଧକ-ଅପର୍ଣ୍ଣା ପଣ୍ଡା, ପ୍ର-ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ୧୯୨୬ ।

୪। ହରିବନ୍ଧୁ ଦେବଶର୍ମା; ହରିବନ୍ଧୁ ପଦ୍ୟାବଳୀ, ୧ମ ମୁଦ୍ରଣ, ସଂଶୋଧକ-ଶ୍ୟାମସୁନ୍ଦର ଦେବଶର୍ମା, ପ୍ର-ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ୧୯୩୩ ।

୫। ପଦ୍ମନାଭ ପରିଚ୍ଛା (ପା. ଖି.), କୋଇଲିଗୀତ ।

୬। ଗୌରଚରଣ ଅଧିକାରୀ (ପୁରୀଜିଲ୍ଲା), ଗୌରଚରଣ ଗୀତାବଳୀ, ସଂଗ୍ରାହକ-ଡା. ବୈ. ଚ. ଦାସ, ସମ୍ପା-ବନ୍ଦୁନ ଚରଣ ପଟ୍ଟନାୟକ, ପ୍ର-ଉତ୍କଳ ରାଷ୍ଟ୍ରଭାଷା ପ୍ରକାଶନ ସମିତି, କଟକ ।

୭। ତଟକର ହରେକୃଷ୍ଣ (ପା. ଖି.) ଚୌପଦୀକାର (କୃଷ୍ଣଭକ୍ତି ଓ ଗ୍ରାମ୍ୟରସ ମୂଳକ)

୮। କବି ଅପର୍ଣ୍ଣା ପରିଚ୍ଛା (ପା. ଖି), ସଙ୍ଗୀତ ଓ ନାଟକ (ଅପ୍ର-)

୯। ଦୟାନିଧି ପାଢ଼ୀ, ବୃନ୍ଦାବନ ଚରିତ, ଉତ୍କଣ୍ଠାମାଳିକା (ଅପ୍ର-), ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି, ପୋଥି ନଂ ୧୪୩, ଚଉପଦୀ OL/77

୧୦। କବିଚନ୍ଦ୍ର ରାମକୃଷ୍ଣ, ଓଡ଼ିଆ ଓ ତେଲୁଗୁ ସଙ୍ଗୀତ ।

୧୧। କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଓଡ଼ିଶୀ ସଙ୍ଗୀତ ।

# ପରିଶିଷ୍ଟ [ପାଞ୍ଚ]

## ଗୋପାଳକୃଷ୍ଣଙ୍କ ସମ୍ପର୍କରେ ରଚିତ ପୁସ୍ତକ ଓ ପ୍ରବନ୍ଧାବଳୀ

### ପୁସ୍ତକ

୧ । ଚଇନ୍ ରତ୍ନାକର, କବି ଗୋପାଳକୃଷ୍ଣ, ୧ମ ପ୍ରକାଶ, ପ୍ର-ସାର୍ଥୀମଣ୍ଡଳ, କଟକ, ୧୯୭୦ ।

୨ । ଦାସ ଫକୀରଚରଣ, ଭକ୍ତକବି ଗୋପାଳ କୃଷ୍ଣ (ଜୀବନୀଖଣ୍ଡ), ୧ମ ସଂ., ବାରିପଦା ୧୯୬୩ ।

୩ । ମହାପାତ୍ର ନରସିଂହ, କବି ଗୋପାଳକୃଷ୍ଣ (ନାଟକ), ପ୍ରକାଶ ବୁକ୍‌ଷ୍ଟୋର କଟକ,

### ପ୍ରବନ୍ଧ

୧ । ଦାସ ବାବାଜୀ ବୈଷ୍ଣବଚରଣ, ଗୋ. କୃ. ଗ୍ରଂ ଓ ଗୋ. କୃ. ପ. ପ୍ର-ଦାଶରଥି ପୁସ୍ତକାଳୟ, କଟକ, ୧୯୫୯; 'ମୁଖବନ୍ଧ' ଓ 'ଜୀବନୀ' ଶୀର୍ଷକ ରଚନା ।

୨ । ଦାସ ଦାଶରଥି, କବିସୂର୍ଯ୍ୟ କାବ୍ୟକଳ୍ପ, ୧ମ ପ୍ରକାଶ, ପ୍ର-ଅଗ୍ରଦୂତ ପ୍ରକାଶନ, କଟକ, ୧୯୭୮, ପୃ-୩୮, 'କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ' ପ୍ରବନ୍ଧ ।

୩ । ଦେବ କୃପାସିନ୍ଧୁ ନରେନ୍ଦ୍ର, ସମ୍ପା-'ଗୋପାଳକୃଷ୍ଣ ପଦ୍ୟାବଳୀ' ନୂତନ ସଂସ୍କରଣ ପ୍ର-ସୀମାଦ୍ରି ପଣ୍ଡା, ବ୍ରହ୍ମପୁର, ୧୯୪୯, 'ମୁଖବନ୍ଧ' ଶୀର୍ଷକ ରଚନା ।

୪ । ଦେବୀ ସରଳା, ଉତ୍କଳ ସାହିତ୍ୟ, 'ଭକ୍ତକବି ଗୋପାଳକୃଷ୍ଣ' ଶୀର୍ଷକ ପ୍ରବନ୍ଧ ।

୫ । ପଟ୍ଟନାୟକ ରାମକୃଷ୍ଣ, ସମ୍ପା-ଗୋ. କୃ. ପ, ୩ୟ ସଂ, ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ, ପା. ଖି., ୧୯୩୫, 'ମୁଖବନ୍ଧ'; 'ଭୂମିକା' ଓ ଜୀବନୀ ଶୀର୍ଷକ ରଚନା ।

୬ । ପଟ୍ଟନାୟକ, କାଳୀଚରଣ, ସମ୍ପା-ଗୋ. କୃ. ପ., ୧ମ ସଂ, ୪ର୍ଥ ମୁଦ୍ରଣ, ପ୍ର-ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକ, ୧୯୫୯, ସମୀକ୍ଷା ଶୀର୍ଷକ ଆଲୋଚନା ।

୭ । ପାଣିଗ୍ରାହୀ ସରୋଜକୁମାର, ସଂକ-ଗୋ. କୃ. ପ. (୧ମ ଖଣ୍ଡ), ୧ମ ସଂ, ପ୍ର-ସେଖ ଅମିନୁଲ ଆଇ, କଟକ, ୧୯୭୯, 'ସଂକ୍ଷିପ୍ତ ଜୀବନୀ', 'ମୁଖଶାଳା' ଓ 'ମୋ ମନକଥା' ଶୀର୍ଷକ ରଚନା ।

୮ । ବଳ ଗଙ୍ଗାଧର, ସାହିତ୍ୟ ଜିଜ୍ଞାସା, ୧ମ ମୁଦ୍ରଣ, ପ୍ର-ଓଡ଼ିଶା ବୁକ୍‌ଷ୍ଟୋର, କଟକ, ୧୯୭୧, ପୃ-୨୪୨, 'ଗୋପାଳକୃଷ୍ଣ ଓ ତାଙ୍କର ପଦ୍ୟାବଳୀ' ପ୍ରବନ୍ଧ ।

୯ । ମହାନ୍ତି ଜାନକୀ ବଲ୍ଲଭ, ଓଡ଼ିଆ ଗୀତିକାବ୍ୟ, ୧ମ ମୁଦ୍ରଣ, ପ୍ର: ଗ୍ରନ୍ଥମନ୍ଦିର, କଟକ, ୧୯୬୬; ଗୋ. କୃ. ପଟ୍ଟନାୟକଙ୍କ ରଚନାର ସଂକ୍ଷିପ୍ତ ପରିଚୟ, ପୃ-୨୮୪ ।

୧୦ । ମହାନ୍ତି ଜାନକୀ ବଲ୍ଲଭ, କଳା ଓ କଳାକାର, ଫ୍ରେଣ୍ଡ୍ସ ପବ୍ଲିଶର୍ସ, କଟକ, ୧୯୬୮, 'ଭକ୍ତକବି ଗୋପାଳକୃଷ୍ଣ' ପ୍ରବନ୍ଧ ।

୧୧ । ମାନସିଂହ ମାୟାଧର, କବି ଓ କବିତା, ଗ୍ରନ୍ଥମନ୍ଦିର, କଟକ, 'ଗୋପାଳକୃଷ୍ଣ' ପ୍ରବନ୍ଧ ।

୧୨ । ମାନସିଂହ ମାୟାଧର, 'ଓଡ଼ିଆ ସାହିତ୍ୟର ଇତିହାସ', ୧ମ ସଂ, ଗ୍ରନ୍ଥମନ୍ଦିର, କଟକ, ୧୯୬୭, 'ଗୋପାଳକୃଷ୍ଣ' ଶୀର୍ଷକ ପ୍ରବନ୍ଧ ।

୧୩ । ମିଶ୍ର କାହ୍ନୁଚରଣ, 'ଆଲୋଚନାମାଳା' ସଂଶୋଧିତ ସଂ, ୧୯୬୭, ଫ୍ରେଣ୍ଡ୍ସ ପବ୍ଲିଶର୍ସ, କଟକ, ପାରଳାଖେମୁଣ୍ଡିରେ ସଙ୍ଗୀତ ଚର୍ଚ୍ଚା' (ପୃ-୧୪୪-୧୬୭) ଏବଂ 'କବି ଗୋପାଳକୃଷ୍ଣ' ପୃ-୨୦୪-୨୧୦ ।

୧୪ । ସେନାପତି ଫକୀରମୋହନ, ଫକୀରମୋହନ ଗ୍ରନ୍ଥାବଳୀ, ୧ମ ଖଣ୍ଡ, ୧ମ ସଂ., କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର, ୧୯୫୭, ପୃ-୧୦୭୦, 'ଗୋପାଳକୃଷ୍ଣ' ପ୍ରବନ୍ଧ ।

# ଗ୍ରନ୍ଥସୂଚୀ

## ( ଓଡ଼ିଆ )


୧ । ଆଚାର୍ଯ୍ୟ ପ୍ୟାରୀମୋହନ, ଓଡ଼ିଶାର ଇତିହାସ, ୨ୟ ସ., ପ୍ର. ବିଶ୍ୱନାଥ କର, କଟକ, ୧୯୨୫ ।

୨ । ଛନ୍ଦ ରତ୍ନାକର, କବି ଗୋପାଳକୃଷ୍ଣ, ୧ମ ସଂ., ସାଥୀମହଲ କଟକ, ୧୯୭୦ ।

୩ । ଜଗଦ୍ଦେବ ଗୋପୀନାଥ, ସଙ୍ଗୀତ ଗୀତଗୋବିନ୍ଦ (ମହାକାବ୍ୟ), ୨ୟ ମୁଦ୍ରଣ, ଗ୍ରନ୍ଥସାଥୀ ।

୪ । ତ୍ରିପାଠୀ କୁଞ୍ଜବିହାରୀ, ସଂକ. ଓଡ଼ିଆ ସାହିତ୍ୟ ସମୀକ୍ଷା ୧ମ ଖଣ୍ଡ ୧ମ ସଂ., ପ୍ର. ପଣ୍ଡିତ ଭୁବନେଶ୍ୱର ମିଶ୍ର, କଟକ ୧୯୬୩ ।

୫ । ଦାଶ ପଣ୍ଡିତ କୁଳମଣି, ସମ୍ପା. କବିସୂର୍ଯ୍ୟ ଗ୍ରନ୍ଥାବଳୀ ୧ମ ସଂ., କଟକ ପବ୍ଲିସିଂ ହାଉସ୍ ୧୯୫୭ ।

୬ । ଦାସ ଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ, ସମ୍ପା. ଗୋ.କୃ. ଗ୍ରଂ., ଓ ଗୋ.କୃ.ପ., ୧ମ ସଂ. ୧ମ ଭାଗ, ଦାଶରଥି ପୁସ୍ତକାଳୟ, କଟକ ୧୯୫୯ ।

୭ । ଦାସ ଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ, ସମ୍ପା. ଗୋ.କୃ.ଗ୍ରଂ. ଓ ଗୋ.କୃ ପ., ୧ମ ସଂ. ୨ୟ ଭାଗ, ଦାଶରଥି ପୁସ୍ତକାଳୟ, କଟକ ୧୯୬୦ ।

୮ । ତତ୍ରୈବ, ସମ୍ପା. ଯଦୁମଣି ପଦ୍ୟାବଳୀ ।

୯ । ଦାସ ଦାଶରଥି, କବିସୂର୍ଯ୍ୟ କାବ୍ୟବୋଧ ୧ମ ପ୍ରକାଶ, ପ୍ର ଅଗ୍ରଦୂତ ପ୍ରକାଶନ, କଟକ ୧୯୬୮ ।

୧୦ । ଦାସ ପଣ୍ଡିତ ନୀଳକଣ୍ଠ, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨ୟ ସଂ. ୧ମ, ୨ୟ ୩ୟ ଭାଗ, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ ୧୯୬୬ ।

୧୧ । ଦାସ ବ୍ରହ୍ମାନନ୍ଦ, ସୃଷ୍ଟି ଓ କୃଷ୍ଟି, ୧ମଭାଗ, ୧ମ ସଂ., ପ୍ର. ମା କନକଦୁର୍ଗା କଟକ ।

୧୨ । ଦାସ ଫକୀର ମୋହନ, ଭକ୍ତକବି ଗୋପାଳକୃଷ୍ଣ (ଜୀବନୀ ଖଣ୍ଡ), ୧ମ ସଂ., ବାରିପଦା ୧୯୬୩ ।

୧୩ । ଦାସ ମୋହନ ଚରଣ, ସମ୍ପା. ରାଧାକୃଷ୍ଣ ପଦ୍ୟାବଳୀ, ପ୍ର ମା କନକଦୁର୍ଗା କଟକ ।

୧୪ । ଦାସ ସୂର୍ଯ୍ୟନାରାୟଣ, ଓଡ଼ିଆ ସାହିତ୍ୟର ଇତିହାସ, ୪ର୍ଥ ଭାଗ, ୧ମ ସଂ., ଗ୍ରନ୍ଥମନ୍ଦିର କଟକ ୧୯୭୧ ।

୧୫ । ଦେବ କିଶୋରଚନ୍ଦ୍ର ରାଜେନ୍ଦ୍ର, ବସନ୍ତ ରାହାସ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଭୁବନେଶ୍ୱର ୧୯୫୮ ।

୧୬ । ଦେବ ଶ୍ୟାମସୁନ୍ଦର, ଅନୁରାଗ କଳ୍ପଲତା, ୧ମ ଭାଗ, ୧ମ ସଂ., ସମ୍ପା. ପ୍ରମିଳା ମିଶ୍ର, ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗ, ଓଡିଶା ଭୁବନେଶ୍ୱର ୧୯୭୪ ।

୧୭ । ତଦେବ, ତଦେବ, ୨ୟଭାଗ ୧ମ ସଂ., ତଦେବ ।

୧୮ । ଦେବୀ ସରଳା, ରାସ୍ତ ରାମାନନ୍ଦ ୧ମ ସଂ., ଓ. ସା. ଏ. ଭୁବନେଶ୍ୱର ।

୧୯ । ନରେନ୍ଦ୍ରଦେବ କୃପାସିନ୍ଧୁ, ସଂପା: ଗୋ.କୃ.ପ. ନୂତନ ସଂ., ବ୍ରହ୍ମପୁର ୧୯୪୯ ।

୨୦ । ନାୟକ କ୍ଷେତ୍ରବାସୀ, ସମ୍ପା. ଶ୍ରୀ ଜଗନ୍ନାଥ ପଦ୍ୟାବଳୀ; ୧ମ ସଂ. ପୁସ୍ତକ ପ୍ରତିଷ୍ଠାନ ବ୍ରହ୍ମପୁର ୯୬୯ ।

୨୧ । ପଟ୍ଟନାୟକ କାଳୀଚରଣ; ସଙ୍ଗୀତରେ ସ୍ୱର; ୧ମ ସଂ. ଓ.ସା.ଏ.; ଭୁବନେଶ୍ୱର ।

୨୨ । ତଦେବ ସଂମ୍ପା. କବିସୂର୍ଯ୍ୟ ଗୀତାବଳୀ; ପ୍ର. ଜଗନ୍ନାଥ ରଥ; କଟକ ୧୯୬। ।

୨୩ । ତଦେବ ଓଡ଼ିଶୀ ମେଳ ରାଗ ଲକ୍ଷଣ ଗୀତ ଭୁବନେଶ୍ୱର ୧୯୬୩ ।

୨୪ । ତଦେବ ରାଗଚନ୍ଦ୍ର ।

୨୫ । ତଦେବ ସଂପା ଗୋ.କୃ.ପ. ୧ମ ସଂ. ୪ର୍ଥ ମୁଦ୍ରଣ ଓଡ଼ିଶା ଜଗନ୍ନାଥ କମ୍ପାନୀ କଟକ ୧୯୫୯ ।

୨୬ । ପଟ୍ଟନାୟକ ପଠାଣି; ସଂପା ବନମାଳୀ ପଦ୍ୟାବଳୀ ୧ମ ସଂ. କଳିଙ୍ଗ ଗ୍ରନ୍ଥମନ୍ଦିର ।

୨୭ । ପଟ୍ଟନାୟକ ବଚ୍ଛନ୍ଦ ଚରଣ; ସମ୍ପା. ଗୌର ଚରଣ ଗୀତାବଳୀ, ୧ମ ସଂ., କଳିଙ୍ଗ ଭାରତୀ; କଟକ ।

୨୮ । ପଟ୍ଟନାୟକ ରାମକୃଷ୍ଣ, ସମ୍ପା. ଗୋ.କୃ.ପ. ୩ୟ ସଂ ପା.ଖି. ୧୯୩୫ ।

୨୯ । ପରିଛା ଗୌରଧ୍ୱଜ, ଗୌରଧ୍ୱଜ ଗ୍ରନ୍ଥାବଳୀ; ୧ମ ସଂ. ପା.ଖି ୧୯୨୬ ।

୩୦ । ପରୀକ୍ଷା ରଘୁନାଥ, ରାଧାମାଧବ ବିଳାସ, ସମ୍ପା. ବେଣୀମାଧବ ପାଢ଼ୀ ପା.ଖି. ୧୯୫୬ ।

୩୧ । ପରୀକ୍ଷା ରଘୁନାଥ, ଲକ୍ଷଣ ଚନ୍ଦ୍ରୋଦୟ ଗ୍ରନ୍ଥ, ୧ମ ଓ ୨ୟାଂଶ, ୧ମ ସଂ., ପା.ଖି. ପ୍ର. ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଭୁବନେଶ୍ୱର ।

୩୨ । ପାଣିଗ୍ରାହୀ ସର୍ବେଶ କୁମାର, ସଂକ. ଗୋ.କୃ.ଗ୍ରଂ., ୧ମ ଭାଗ, କଟକ ୯୬୯ ।

୩୩ । ପାତ୍ର ଆଚାର୍ଯ୍ୟ ତାରିଣୀ ଚରଣ, ଓଡ଼ିଶୀ ସଙ୍ଗୀତ ପ୍ରକାଶ, ୧ମ ସଂ. କବିସୂର୍ଯ୍ୟ ନଗର ୧୯୭୦ ।

୩୪ । ପ୍ରଧାନ ପ୍ରହ୍ଲାଦ, ସମ୍ପା. ଅର୍ଥଗୋବିନ୍ଦ (ବଳର ଦାସ), ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଭୁବନେଶ୍ୱର ।

୩୫ । ପ୍ରଧାନ, ନଗେନ୍ଦ୍ରନାଥ, ଓଡ଼ିଆ ସାହିତ୍ୟ ଓ ଶ୍ରୀ ଜୟଦେବ ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ କଟକ ।

୩୬ । ବେବର୍ତ୍ତା ହରବନ୍ଧୁ; ହରବନ୍ଧୁ ପଦ୍ୟାବଳୀ, ୧ମ ମୁଦ୍ରଣ; ପା . ଖି. ୧୯୩୩ ।

୩୭ । ବେହେରା, ଚନ୍ଦ୍ରାମଣି, ବିଦଗ୍ଧ ପାଠକ, ୧ମ ସଂ ପ୍ର-ଜଗନ୍ନାଥ ରଥ କଟକ, ୧୯୭୫ ।

୩୮ । ବ୍ରହ୍ମଚାରୀ ଯଦୁଶେଖର, ପ୍ର-ଶ୍ରୀ ଗୌଡ଼ୀୟ ବାଣୀ ସଚ୍ଚିଦାନନ୍ଦ ଗ୍ରନ୍ଥମାଳା-୧ କଟକ ୧୯୪୦ ।

୩୯ । ବ୍ରହ୍ମା ଗୌରୀକୁମାର ଓଡ଼ିଆ କବିତାର ଛନ୍ଦ; ୧ମ ସଂ କଟକ ଷ୍ଟୁଡ଼େଣ୍ଟ୍‌ସ୍ ଷ୍ଟୋର୍ସ ୧୯୬୭ ।

୪୦ । ବ୍ରହ୍ମା ସଦାନନ୍ଦ କବିସୂର୍ଯ୍ୟ, ଗୌରଚନ୍ଦ୍ରାମଣି ।

୪୧ । ତତ୍ରୈବ ଯୁଗଳରସାମୃତ ଭଉଁରୀ ।

୪୨ । ତତ୍ରୈବ ଯୁଗଳରସାମୃତ ଚଉଁରୀ ।

୪୩ । ତତ୍ରୈବ ତତ୍ତ୍ୱତରଙ୍ଗିଣୀ (ଅପ୍ର) ଉତ୍କଳବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାର

୪୪ । ତତ୍ରୈବ ପ୍ରେମତରଙ୍ଗିଣୀ (ଅପ୍ର) ତତ୍ରୈବ ।

୪୫ । ତତ୍ରୈବ 'ବିଦଗ୍ଧ ମାଧବ ଛାନ୍ଦଗୀତ'
ବା ବ୍ରଜଲୀଳାମୃତ ସମୁଦ୍ର (ଅପ୍ର) ତତ୍ରୈବ ।

୪୬ । ତତ୍ରୈବ ନାମଚନ୍ଦ୍ରାମଣି (ଅପ୍ର) ତତ୍ରୈବ ।

୪୭ । ତତ୍ରୈବ ପ୍ରେମକଳ୍ପଲତା ।

୪୮ । ଭକ୍ତିବିନୋଦ ଠାକୁର; ଶ୍ରୀହରିନାମ ଚନ୍ଦ୍ରାମଣି ୧ମ ସଂ ଚୈତନ୍ୟାବ୍ଦ ୪୫୨ କଟକ ୧୯୨୮ ।

୪୯ । ଭଞ୍ଜ ଉପେନ୍ଦ୍ର, ଚଉପଦୀଚନ୍ଦ୍ର

୫୦ । ତତ୍ରୈବ ଚଉପଦୀଭୂଷଣ ।

୫୧ । ଭଞ୍ଜ ଦାମୋଦର ଦଣ୍ଡପୋଇ ।

୫୨ । ମହତାବ ହରେକୃଷ୍ଣ ଓଡ଼ିଶା ଇତିହାସ ପ୍ର-ଷ୍ଟୁଡ଼େଣ୍ଟ୍‌ଷ୍ଟୋର ବ୍ରହ୍ମପୁର କଟକ ୧୯୪୮ ।

୫୩ । ମହାପାତ୍ର କେଦାରନାଥ ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ ଭୁବନେଶ୍ୱର ୧୯୬୩ ।

୫୪ । ମହାପାତ୍ର ନିତ୍ୟାନନ୍ଦ ନାହଂ ତିଷ୍ଠାମି ବୈକୁଣ୍ଠେ ୧ମ ସଂ ଦ୍ରୁଗର ପ୍ରେସ୍ ପିଠାପୁର କଟକ ।

୫୫ । ମହାନ୍ତି ଜାନକୀବଲ୍ଲଭ ଓଡ଼ିଆ ଗୀତିକାବ୍ୟ ୧ମ ମୁଦ୍ରଣ ପ୍ର-ଗ୍ରନ୍ଥମନ୍ଦିର କଟକ ୧୯୬୬ ।

୫୬ । ମହାନ୍ତି, ଜାନକୀବଲ୍ଲଭ ସଂପା-ଚଉତିଶା ସଂକଳନ ୧ମ ସଂ ଗ୍ରନ୍ଥମନ୍ଦିର କଟକ ।

୫୭ । ତତ୍ରୈବ ସମ୍ପା-ଓଡ଼ିଆ ଭକ୍ତକବିତା ସଞ୍ଚୟନ ଗ୍ରନ୍ଥସାଥୀ କଟକ ।

୫୮ । ତତ୍ରୈବ ସମ୍ପା-ବୈଷ୍ଣବଭକ୍ତଗୀତିକା ୧ମ ସଂ ଗ୍ରନ୍ଥମନ୍ଦିର କଟକ ।

୫୯ । ତତ୍ରୈବ କଳା ଓ କଳାକାର ପ୍ର-ଫ୍ରେଣ୍ଡ୍ସ ପବ୍ଲିଶର୍ସ କଟକ ୧୯୬୮ ।

୬୦ । ମହାନ୍ତି, ଆର୍ତ୍ତବଲ୍ଲଭ, ସମ୍ପା-ଲାବଣ୍ୟବତୀ ୧ମ ଭାଗ, ୨ୟ ସଂ ପ୍ରାଚୀଗ୍ରନ୍ଥମାଳା କଟକ ୧୯୫୨ ।

୬୧ । ମହାନ୍ତି ଆର୍ତ୍ତବଲ୍ଲଭ ସମ୍ପା-ବିଦଗ୍ଧ ଚିନ୍ତାମଣି ୧ମ-୪ର୍ଥ ଖଣ୍ଡ ବିଶୁଦ୍ଧ ସଂସ୍କରଣ ୩ୟ ମୁଦ୍ରଣ ପ୍ରାଚୀଗ୍ରନ୍ଥମାଳା (୧) କଟକ ୧୯୪୧ ।

୬୨ । ମହାନ୍ତି ସୁରେନ୍ଦ୍ର ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ୧ମ ସଂ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ।

୬୩ । ମାନସିଂ ମାୟାଧର ଓଡ଼ିଆ ସାହିତ୍ୟର ଇତିହାସ ୧ମ ସଂ ଗ୍ରନ୍ଥମନ୍ଦିର କଟକ ୧୯୬୭ ।

୬୪ । ତତ୍ରୈବ ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ (କବିତା) ୧ମ ମୁଦ୍ରଣ ଗ୍ରନ୍ଥମନ୍ଦିର ୧୯୬୨ ।

୬୫ । ମିଶ୍ର କାହ୍ନୁଚରଣ, ଆଲୋଚନାମାଳା ୨ୟ ସଂ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ କଟକ ।

୬୬ । ମିଶ୍ର କୃପାସିନ୍ଧୁ ଉତ୍କଳଇତିହାସ ପ୍ର-ଆତୁଲ ମିଶ୍ର, କଟକ ଟ୍ରେଡ଼ିଂ କମ୍ପାନୀ ୧୯୩୩ ।

୬୭ । ମିଶ୍ର ଗୋପାଳଚନ୍ଦ୍ର ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ ୧ମ ସଂ ଯଶୋଧାର କଟକ ୧୯୭୮ ।

୬୮ । ମିଶ୍ର ବିନାୟକ ଓଡ଼ିଆ ସାହିତ୍ୟର ଇତିହାସ ନୂତନ ସଂସ୍କରଣ କଟକ ।

୬୯ । ମିଶ୍ର ନୀଳମଣି ସମ୍ପା-ଓଡ଼ିଆ ଭଜନ ୧ମ ଭାଗ ୧ମ ସଂ ଭୁବନେଶ୍ୱର ୧୯୬୪ ।

୭୦ । ତତ୍ରୈବ ସମ୍ପା ଭକ୍ତକବି ସାଲବେଗ ୧ମ ସଂ ଗ୍ରନ୍ଥମନ୍ଦିର କଟକ ୧୯୬୬ ।

୭୧ । ତତ୍ରୈବ ପ୍ରାଚୀନଓଡ଼ିଆଲିପି ଭାଷା ଓ ସାହିତ୍ୟ ଗ୍ରନ୍ଥମନ୍ଦିର କଟକ ୧୯୬୬ ଓଡ଼ିଆ ଗୀତିସାହିତ୍ୟ ପୃ-୪୬-୮୫ ।

୭୨ । ନାଉତରାୟ କବି ଯଦୁମଣି କବିକଳ୍ପଦ୍ରୁମ ୧ମ ସଂ ସମ୍ପା-ଭଗବାନ ପଣ୍ଡା ସାଂ. ବ୍ୟା. ବିଭାଗ ଭୁବନେଶ୍ୱର ୧୯୭୨ (ଅଷ୍ଟ ଓ ନବମ ପ୍ରକାଣ୍ଡ) ।

୭୩ । ରଘୁଗୁରୁ, ରଘୁଗୁରୁ ପଦ୍ୟାବଳୀ ।

୭୪ । ସାମନ୍ତସିଂହାର ଅଭିମନ୍ୟୁ, ପ୍ରେମ ଚିନ୍ତାମଣି (ଅପ୍ର), ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାର ।

୭୫ । ତଦୈବ ଅଭିମନ୍ୟୁ ପଦ୍ୟାବଳୀ (୧ମ ଭାଗ) (ଅପ୍ର) ।

୭୬ । ତଦୈବ ତଦୈବ (୨ୟ ଭାଗ) (ଅପ୍ର) ।

୭୭ । ସାମନ୍ତରାୟ ନଟବର, ଓଡ଼ିଆ ବୈଷ୍ଣବ ସାହିତ୍ୟ, ୧ମ ଭାଗ, ୧ମ ମୁଦ୍ରଣ, ବାଣୀ-ଭଣ୍ଡାର କଟକ ୧୯୫୯ ।

୭୮ । ତଦୈବ, ସାହିତ୍ୟାଦର୍ଶ

୭୯ । ସିଂହ ଜଗବନ୍ଧୁ, ପ୍ରାଚୀନ ଉତ୍କଳ, ୨ୟ ସଂ. ଓ.ସା.ଏ. ଭୁବନେଶ୍ୱର ।

## ( ବଙ୍ଗଳା ଓ ଅସମିୟା )

୧ । ଗୁପ୍ତ ଅତୁଲ ଚନ୍ଦ୍ର, କାବ୍ୟ ଜିଜ୍ଞାସା, ୨ୟ ସଂ. ପୁନର୍ମୁଦ୍ରଣ ବିଶ୍ୱଭାରତୀ ଗ୍ରନ୍ଥାଳୟ, କଲିକତା ୧୩୫୧ ।

୨ । ଗୋସ୍ୱାମୀ କୃଷ୍ଣଦାସ କବିରାଜ, ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ, ସଂପା. ପଣ୍ଡିତ ସୀତାପତି ଭଟ୍ଟାଗ୍ରୂର୍ଯ୍ୟ, ୪ର୍ଥ ମୁଦ୍ରଣ କଲିକତା ୧୩୬୭ ।

୩ । ଘୋଷ ଜଗଦୀଶ ଚନ୍ଦ୍ର, ଶ୍ରୀକୃଷ୍ଣ ଓ ଭାଗବତ ଧର୍ମ, ୪ର୍ଥ ସଂ. କଲିକତା ।

୪ । ଚଟ୍ଟୋପାଧ୍ୟାୟ ସୁନୀତି କୁମାର, ଜୟଦେବ; (ଅସମିୟା ଅନୁବାଦ) ମହେଶ୍ୱର ନେଓଗ, ୧ମ ସଂ. ସାହିତ୍ୟ ଏକାଡେମୀ ନୂଆଦିଲ୍ଲୀ ୧୯୭୭ ।

୫ । ଠାକୁର ରବୀନ୍ଦ୍ରନାଥ, ରବୀନ୍ଦ୍ର ରଚନାବଳୀ, ଜନ୍ମଶତବାର୍ଷିକ ସଂସ୍କରଣ, ୧ମ ଓ ୨ୟ ଖଣ୍ଡ (କବିତା) ପଶ୍ଚିମବଙ୍ଗ ସରକାର, ୨୫ ବୈଶାଖ ୧୩୬୮ ।

୬ । ତଦୈବ, ଗୀତାଞ୍ଜଳି, ୧୩୧୭ ସାଲ ପ୍ରକାଶର ପୁନର୍ମୁଦ୍ରଣ, ବିଶ୍ୱଭାରତୀ ଗ୍ରନ୍ଥାଳୟ ।

୭ । ଦାସଗୁପ୍ତ ଶଶିଭୂଷଣ, ବାଂଲା ସାହିତ୍ୟେର ଏକଦିକ, ୧ମ ସଂ. କଲିକତା ।

୮ । ତଦୈବ, ଶିଳ୍ପଲିପି, ୧ମ ସଂ. ଏ ମୁଖାର୍ଜୀ ଏଣ୍ଡ କୋ କଲିକତା ୧୩୫୮ ।

୯ । ତଦୈବ. ଶ୍ରୀରାଧାର କ୍ରମ ବିକାଶ, ୩ୟ ସଂ. କଲିକତା ୧୩୭୦ ।

୧୦ । ଦାସଗୁପ୍ତ ସୁଧୀର କୁମାର, କାବ୍ୟାଲୋକ, ୧ମ ଖଣ୍ଡ, ୨ୟ ସଂ. କଲିକତା ୧୩୬୫ ।

୧୧ । ଦାସଗୁପ୍ତ ସୁରେନ୍ଦ୍ରନାଥ, କାବ୍ୟ ବିଚାର, ୨ୟ ସଂ. ପ୍ର-ଗଜେନ୍ଦ୍ର କୁମାର ମିତ୍ର, କଲିକତା ୧୯୩୯ ।

୧୨ । ଦାସଗୁପ୍ତ ସୁରେନ୍ଦ୍ରନାଥ, ସୌନ୍ଦର୍ଯ୍ୟତତ୍ତ୍ୱ, ୧ମ ସଂ. କଲିକତା ୧୩୫୭°।

୧୩ । ନାଥ ରାଧାଗୋବିନ୍ଦ, ଗୌଡ଼ୀୟ ବୈଷ୍ଣବ ଦର୍ଶନ (ପ୍ରେମତତ୍ତ୍ୱ), ୪ର୍ଥ ଖଣ୍ଡ, ପ୍ରାଚ୍ୟ ବାଣୀ ମନ୍ଦିର, କଲିକତା ୧୯୫୯ ।

୧୪ । ତଦୈବ, ତଦୈବ (ଅଚିନ୍ତ୍ୟ ଭେଦାଭେଦ ବାଦ), ୧ମ ଖଣ୍ଡ, ପ୍ରାଚ୍ୟ ବାଣୀ ମନ୍ଦିର, କଲିକତା ୧୩୬୩ ।

୧୫ । ତଦୈବ, ତଦୈବ (ରସତତ୍ତ୍ୱ), ୫ମ ଖଣ୍ଡ ତଦୈବ ୧୯୬୦ ।

୧୬ । ବନ୍ଦ୍ୟୋପାଧ୍ୟାୟ ହରେକୃଷ୍ଣ, ସମ୍ପା. ବିଦ୍ୟାପତି ଚଣ୍ଡୀଦାସ ଓ ଅନ୍ୟାନ୍ୟ ବୈଷ୍ଣବ ମହାଜନ ଗୀତିକା, ପୁନର୍ମୁଦ୍ରଣ, ଦେବ ସାହିତ୍ୟ କୁଟୀର; କଲିକତା ୧୩୫୭ ।

୧୭ । ବନ୍ଦ୍ୟୋପାଧ୍ୟାୟ ତୁଳସୀ ପ୍ରସାଦ, ମଧ୍ୟଯୁଗେର ବାଂଲା ସାହିତ୍ୟ, ଦାଶଗୁପ୍ତ ଏଣ୍ଡ୍ କୋ. ଲି. କଲିକତା ୧୩୫୮ ।

୧୮ । ବିଦ୍ୟା ବିନୋଦ, ଶ୍ରୀମନ୍ତ ସୁନ୍ଦରାନନ୍ଦ, ବୈଷ୍ଣବ ସାହିତ୍ୟେ ବିରହତତ୍ତ୍ୱ, ୧ମ ସଂ. କଲିକତା ।

୧୯ । ଭଟ୍ଟାଚାର୍ଯ୍ୟ ଆଶୁତୋଷ, ବାଂଲା ମଙ୍ଗଲ କାବ୍ୟେର ଇତିହାସ, ୩ୟ ସଂ. କଲିକତା ୧୯୫୮ ।

୨୦ । ମଜୁମଦାର ବିମାନବିହାରୀ, ଚଣ୍ଡୀଦାସେର ପଦାବଳୀ, ବଙ୍ଗୀୟ ସାହିତ୍ୟ ପରିଷଦ କଲିକତା ।

୨୧ । ମଜୁମଦାର ମୋହିତଲାଲ, ସାହିତ୍ୟ ବିଚାର ।

୨୨ । ମିତ୍ର ଖଗେନ୍ଦ୍ରନାଥ, ସମ୍ପାଦକ. ବୈଷ୍ଣବ ପଦାବଲୀ (ଚୟନ), ୮ମ ସଂ. କଲିକତା ବି. ବି. ୧୯୬୨ ।

୨୩ । ରାୟ ରମା; ଗୌଡ଼ୀୟ ବୈଷ୍ଣବୀୟ ରସେର ଅଲୌକିକତ୍ୱ, ନୂତନ ସଂସ୍କରଣ, କଲିକତା ୧୩୬୩ ।

୨୪ । ରାୟ କାଳିଦାସ, ପ୍ରାଚୀନ ବଙ୍ଗ ସାହିତ୍ୟ, ପ୍ରଥମାଂଶ ୧ମ ଓ ୨ୟ ଖଣ୍ଡ, ୨ୟ ସଂ. ଟାଲିଗଞ୍ଜ କଲିକତା ୧୩୫୪ ।

୨୫ । ତଦୈବ, ପଦାବଳୀ ସାହିତ୍ୟ, ପ୍ର-କାଶ ମୁଖୋପାଧ୍ୟାୟ, ସଂଶୋଧିତ ୩ୟ ସଂ. କଲିକତା ୧୩୮୩ ।

୨୬ । ଲାହିଡ଼ୀ ଶିବଚନ୍ଦ୍ର, ବାଂଲା କାବ୍ୟେ ଉପମାଲେକ, ୧ମ ଖଣ୍ଡ ୧ମ ସଂ. ଗ୍ରନ୍ଥନିଲୟ କଲିକତା ୧୯୬୫ ।

୨୭ । ଶିବ ପ୍ରସାଦ ଭଟ୍ଟାଚାର୍ଯ୍ୟ, ଶରତଚନ୍ଦ୍ର ଓ ରାମ ପ୍ରସାଦ, ମଡ଼ର୍ଣ୍ଣ ବୁକ୍ ଏଜେନ୍ସି କଲିକତା ।

୨୮ । ସାନ୍ୟାଲ ଅବନ୍ତୀ, ସଂପା. ହାଜାର ବଛରେର ପ୍ରେମେର କବିତା, ୧ମ ସଂ. ନୂତନ ସାହିତ୍ୟ ଭବନ କଲକତା ୧୩୭୬ ।

୨୯ । ସେନ୍ ସୁକୁମାର, ବାଂଲର ସାହିତ୍ୟ ଇତିହାସ, ସାହିତ୍ୟ ଏକାଡ଼େମୀ ନଉଦିଲ୍ଲୀ ୧୯୬୫ ।

୩୦ । ସେନ୍ ପ୍ରିୟରଞ୍ଜନ, ଗସ୍ତ ରମାନନ୍ଦେର ଭଣିତା ଯୁକ୍ତ ପଦାବଲୀ, ପ୍ର-ମାଣିକଲାଲ ବୃତ୍ତ କଲକତା, ୧୩୫୨ ।

୩୧ । ସ୍ୱାମୀ ଜଗଦୀଶ୍ୱରାନନ୍ଦ, ଅନୁ-ସାମବେଦ (ସାୟଣ ଭାଷ୍ୟାନୁସାରେ ଅନୁବାଦ) ୧ମ ସଂ ଶ୍ରୀ ରାମକୃଷ୍ଣ ଧର୍ମଚକ୍ର ବେଲୁଡ଼ ୧୩୭୬ ।

## ( ହିନ୍ଦୀ )

୧ । ଉପାଧ୍ୟାୟ ବଳଦେବ, ଭାଗବତ ସମ୍ପ୍ରଦାୟ ୧ମ ସଂ. ନାଗରୀ ପ୍ରଚାରଣୀ ସଭା କାଶୀ ।

୨ । ତଦୈବ ଭାରତୀୟ ସାହିତ୍ୟ ଶାସ୍ତ୍ର, ୨ୟ ଭାଗ ୨ୟ ସଂ. ହିନ୍ଦୁ ବିଶ୍ୱ ବିଦ୍ୟାଳୟ କାଶୀ ସମ୍ବତ୍-୨୦୧୨ ।

୩ । ତଦୈବ ଭାରତୀୟ ଦର୍ଶନ, ୭ମ ସଂ. ଶାରଦା ମନ୍ଦିର କାଶୀ ୧୯୬୬ ।

୪ । ଜୈନ ଜଗଦୀଶଚନ୍ଦ୍ର, ପ୍ରାକୃତ ସାହିତ୍ୟକା ଇତିହାସ (ଖ୍ରୀ: ପୂ: ୫୦୦-ଖ୍ରୀ. ୧୮୦୦) ୧ମ ସଂ. ଚୌଖମ୍ବା ବିଦ୍ୟାଭବନ ବାରାଣସୀ ୧୯୬୧ ।

୫ । ସିଂହ ବଚନ, ରୀତିକାଳୀନ କବିୟୋଁକୀ ପ୍ରେମ ବ୍ୟଞ୍ଜନା, ନାଗରୀ ପ୍ରଚାରଣୀ ସଭା ସମ୍ବତ୍-୨୦୧୫ ।

୬ । ସୂର ଦାସ, ସୂର ସାଗର ସମ୍ପା. ଓ ଅନୁ. ହରଦେବ ବାହାରୀ, ଲୋକ ଭାରତୀ ପ୍ରକାଶନ ଇଲାହାବାଦ ୧୯୬୪ ।

୭ । ତଦୈବ, ସୂର ସାଗର (୧୦ମ ସ୍କନ୍ଧ), ୨ୟ ସଂ.ସମ୍ପା. ନନ୍ଦଦୁଲାରେ ବାଜପେୟୀ ।

୮ । ଡକ୍ଟର ନଗେନ୍ଦ୍ର, ରୀତିକାବ୍ୟକୀ ଭୂମିକା, ୨ୟ ସଂ. ଗୌତମ ବୁକ୍ ଡ଼ିପୋ, ଦିଲ୍ଲୀ ୧୯୫୩ ।

## ( ତେଲୁଗୁ )

୧ । ରାଓ ବ. ମାଧବ, ପ୍ରବନ୍ଧ ବାଙ୍ମୟ ପରିଣାମମ୍, କାବ୍ୟ ରୀତୁଲୁ, (ବିମର୍ଶ କାବଢଂସ୍ମ) (ପ୍ରାଧ୍ୟାପକ ଜେ. ଜଗନ୍ମୋହନ ରାଓଙ୍କ ଦ୍ୱାରା ପଠିତ ଓ ବ୍ୟାଖ୍ୟାତ)

## ( ସଂସ୍କୃତ ଓ ପ୍ରାକୃତ )


୧ । କବିରାଜ କୃଷ୍ଣ ଦାସ, ଶ୍ରୀ ଶ୍ରୀ ଗୋବିନ୍ଦ ଲୀଳାମୃତମ୍ (ମହାକାବ୍ୟ), ଅନୁ-ଶ୍ରୀ ଶଚୀନନ୍ଦନ ଗୋସ୍ୱାମୀ ବୃନ୍ଦାବନ ଶ୍ରୀଚୈତନ୍ୟାବ୍ଦ-୪୨୨ ।

୨ । କବିରାଜ ବିଶ୍ୱନାଥ, ସାହିତ୍ୟ ଦର୍ପଣଃ, ସମ୍ପା. ପଣ୍ଡିତ କୃଷ୍ଣମୋହନ ଠାକୁର ପ୍ର-ଜୟକୃଷ୍ଣ ଦାସ ହରିଦାସ ଗୁପ୍ତ, ଚୌଖମ୍ବା ସଂସ୍କୃତ ସିରିଜ୍ ଅଫିସ ବନାରସ ସମ୍ବତ୍ ୨୦୦୪ ।

୩ । କାଳିଦାସ କୁମାରସମ୍ଭବମ୍, କାଳିଦାସ ଗ୍ରନ୍ଥାବଳୀ, ୧୦ମ ସଂ. ସଂପା. ପଣ୍ଡିତ ରାଜେନ୍ଦ୍ରନାଥ ବିଦ୍ୟାଭୂଷଣ, ବସୁମତୀ ସାହିତ୍ୟ ମନ୍ଦିର କଲିକତା ୧୩୫୭ ।

୪ । ଗୋସ୍ୱାମୀ ମହାରାଜ ଭକ୍ତିସାରଙ୍ଗ, ଶ୍ରୀ ସ୍ତବକଳ୍ପଦ୍ରୁମଃ ୧ମ ସଂ. ବୃନ୍ଦାବନ (ମଥୁରା) ୧୯୫୯ ।

୫ । ଗୋସ୍ୱାମୀ ରଘୁନାଥ ଦାସ, ବିଳାପ କୁସୁମାଞ୍ଜଳିଃ ୧ମ ସଂ. ଚୈତନ୍ୟ ମଠ, ଶ୍ରୀଧାମ ମାୟାପୁର ।

୬ । ଗୋସ୍ୱାମୀ ରୂପ, ବିଦଗ୍ଧ ମାଧବ ନାଟକ, ସମ୍ପାଦକ. ସତ୍ୟେନ୍ଦ୍ରନାଥ ବସୁ, ପ୍ର-ସତୀଶଚନ୍ଦ୍ର ମୁଖୋପାଧ୍ୟାୟ ବସୁମତୀ ସାହିତ୍ୟ ମନ୍ଦିର କଲିକତା ।

୭ । ତଦୈବ, ଲଳିତମାଧବ ନାଟକମ୍ ପ୍ର- ଓ ଅନୁ-କୃଷ୍ଣ ଦାସ ବାବା ମଥୁରା ସମ୍ବତ୍-୨୦୨୪ ।

୮ । ତଦୈବ, ଶ୍ରୀ ରାଧାକୃଷ୍ଣ ଗଣୋଦ୍ଦେଶ ଦୀପିକା, ୨ୟ ସଂ. ଅନୁ-ଶ୍ରୀ ରସବିହାରୀ ପ୍ର-ଶ୍ରୀ ଶ୍ୟାମସୁନ୍ଦର ମିଶ୍ର କଲିକତା ୧୩୫୭ ।

୯ । ତଦୈବ, ଶ୍ରୀ ଶ୍ରୀ ଭକ୍ତିରସାମୃତ ସିନ୍ଧୁଃ (ଟୀକା ତ୍ରୟୋପେତଃ ସାନୁବାଦଶ୍ଚ), ୧ମ ସଂ. ପ୍ର-ଶ୍ରୀ ହରିଦାସ ଦାସ, ସଂସ୍କୃତ ପୁସ୍ତକ ଭଣ୍ଡାର, କଲିକତା ଶ୍ରୀ ଗୌରାଙ୍ଗାବ୍ଦ-୪୬୨ ।

୧୦ । ତଦୈବ, ଉଜ୍ଜ୍ୱଳ ନୀଳମଣିଃ (ଶ୍ରୀ ଜୀବ ଗୋସ୍ୱାମୀ କୃତୟା ଲୋଚନ ରୋଚନୀ ନାମ୍ନ୍ୟା ତଥା ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ କୃତୟା ଆନନ୍ଦ ଚନ୍ଦ୍ରିକା ନାମ୍ନ୍ୟା ଟୀକାୟାଚ ସହିତଃ), ୪ର୍ଥ ସଂ. ଅନୁ-ଶ୍ରୀ ରାମନାରାୟଣ ବିଦ୍ୟାରତ୍ନ, ପ୍ର-ଶ୍ରୀ ବ୍ରଜନାଥ ମିଶ୍ର, ମୁର୍ଶିଦାବାଦ ୧୩୪୧ ।

୧୧ । ତଦୈବ, ଶ୍ରୀ ଲଘୁ ଭାଗବତାମୃତମ୍, ସମ୍ପା-ଶ୍ରୀମଦ୍ ଭକ୍ତି ବିଳାସ ତୀର୍ଥ ମହାରାଜ, ଅନୁ-ଶ୍ରୀଭକ୍ତି କୁସୁମ ଶ୍ରମଣ, ପ୍ର-ଶ୍ରୀ ଚୈତନ୍ୟ ମଠ, ମାୟାପୁର ଶ୍ରୀଗୌରାବ୍ଦ-୪୭୭ ।

୧୨ । ଚୈତନ୍ୟ, ଶ୍ରୀ ପଦ୍ୟାବଳୀ; ଟୀକା-ଶ୍ରୀ ବନମାଳୀ ଦାସ ଶାସ୍ତ୍ରୀ, ବୃନ୍ଦାବନ (ମଥୁରା) ୧୯୫୯ ।

୧୩ । ଗୋସ୍ୱାମୀ ଜୀବ, ଶ୍ରୀ ଭକ୍ତି ସନ୍ଦର୍ଭଃ, ସଂପା. ଶ୍ରୀ ଭକ୍ତିବିଳାସତୀର୍ଥ ମହାରାଜ, ଶ୍ରୀ ଚୈତନ୍ୟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍, କଲିକତା ଗୌରାବ୍ଦ-୪୭୭ ।

୧୪ । ଗୋସ୍ୱାମୀ ବଲଇଚାଁଦ, ଅନୁ-ଶ୍ରୀ ଶ୍ରୀ ରାସ ପଞ୍ଚାଧ୍ୟାୟ, ୧ମ ସଂ. ସଂସ୍କୃତ ପୁସ୍ତକ ଭଣ୍ଡାର, କଲିକତା ୧୨୯୭ ।

୧୫ । ଚକ୍ରବର୍ତ୍ତୀ ବିଶ୍ୱନାଥ; ଶ୍ରୀ ଶ୍ରୀ ସୁରତ କଥାମୃତମ୍, ପ୍ର-ଗୋବର୍ଦ୍ଧନ ଦାସ, ନବଦ୍ୱୀପ ଶ୍ରୀଚୈତନ୍ୟାବ୍ଦ-୪୫୨ ।

୧୬ । ଠକ୍କୁର ଦ୍ୱାରକାନାଥ, ଶ୍ରୀ ଶ୍ରୀ ଗୋବିନ୍ଦ ବଲ୍ଲଭ ନାଟକମ୍, ପ୍ର-ଶ୍ରୀ ହରି ଦାସ ସେନ୍, ଶ୍ରୀ ଧାମ ନବଦ୍ୱୀପ, ହରିବୋଲ କୁଟୀର ନଦୀୟା, ଚୈତନ୍ୟାବ୍ଦ, ୪୬୩ ।

୧୭ । ତୀର୍ଥ ଶ୍ରୀମଦ୍‌ଭକ୍ତିବିଲାସ, ସମ୍ପା. ଶ୍ରୀ ବ୍ରହ୍ମ ସଂହିତା, ୩ୟ ସଂ. ଶ୍ରୀଚୈତନ୍ୟ ମଠ, ମାୟାପୁର ନଦୀୟା ୧୩୮୮ ।

୧୮ । ଦାସ ଗଙ୍ଗା, ଛନ୍ଦୋମଞ୍ଜରୀ

୧୯ । ବିଦ୍ୟାରତ୍ନ ରାମନାରାୟଣ, ବ୍ୟାଖ୍ୟାକାର ଓ ପ୍ରକାଶକ, ଗୋପାଳତାପନୀ, ୩ୟ ସଂ: ଶ୍ରୀ ବିଶ୍ୱେଶ୍ୱର ଓ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ କୃତ ଟୀକା), ମୁର୍ଶିଦାବାଦ ୧୩୦୬ ।

୨୦ । ଭଟ୍ଟ କେଦାର, ବୃତ୍ତରତ୍ନାକରଃ, ୬ଷ୍ଠ ସଂ. ସଂପା. ଆଚାର୍ଯ୍ୟ ଶ୍ରୀ ଶୀଳସ୍କନ୍ଧ ମହାସ୍ଥବିର ନିର୍ଣ୍ଣୟସାଗର ମୁଦ୍ରଣାଳୟ, ମୁଂବଇ ୧୯୪୮ ।

୨୧ । ବସାକ୍ ରାଧାଗୋବିନ୍ଦ, ସମ୍ପା. ଗାଥା ସପ୍ତଶତୀ (ପ୍ରାକୃତ), ବଙ୍ଗୀୟ ସଂ. ଜେନେରାଲ୍ ପ୍ରିଣ୍ଟର୍ସ ଏଣ୍ଡ ପବ୍ଲିଶର୍ସ ଲିଃ କଲିକତା ୧୯୫୬ ।

୨୨ । ମାଘ ମହାକବି, ଶିଶୁପାଳବଧମ୍, ୩ୟ ସଂ. ପ୍ର-ଚୌଖମ୍ବା ବିଦ୍ୟାଭବନ ବାରାଣସୀ, ୧୯୭୨ ।

୨୩ । ମିଶ୍ର ଜଗନ୍ନାଥ, ରସକଳ୍ପଦ୍ରୁମଃ, ସଂପା. ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ପ୍ର-ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର ୧୯୬୫ ।

୨୪ । ମୁଖୋପାଧ୍ୟାୟ ହରେକୃଷ୍ଣ, କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ, ୪ର୍ଥ ସଂ. ଶାରଦା କୁଟୀର ବୀରଭୂମ ୧୩୭୧ ।

୨୫ । ରାୟ ରାମାନନ୍ଦ, ଜଗନ୍ନାଥ ବଲ୍ଲଭ ନାଟକମ୍, ୫ମ ସଂ. ଅନୁ-ରାମନାରାୟଣ ବିଦ୍ୟାରତ୍ନ, ପ୍ର-ଶ୍ୟାମସୁନ୍ଦର ମିଶ୍ର, ମୁର୍ଶିଦାବାଦ ୧୩୫୭ ।

୨୬ । ଲୀଳାଶୁକ ବିଲ୍ୱମଙ୍ଗଳ, ଶ୍ରୀକୃଷ୍ଣ କର୍ଣ୍ଣାମୃତମ୍, ୧ମ ସଂ. ସମ୍ପା-ବିମାନବିହାରୀ ମଜୁମଦାର, ପ୍ର-ଶ୍ରୀଶକୁମାର କୁଣ୍ଡୁ, କଲିକତା ୧୩୬୩, ଇଂ. ୧୯୬୬ ।

୧୭। ସ୍ୱାମୀ ଗମ୍ଭୀରାନନ୍ଦ, ସ୍ତବ କୁସୁମାଞ୍ଜଳି, ୧ମ ସଂ. ଉଦ୍‌ବୋଧନ କାର୍ଯ୍ୟାଳୟ, କଲିକତା ୧୩୭୯ ।

୧୮। ସିଦ୍ଧାନ୍ତ କୌମୁଦୀ, ୪ର୍ଥ ଭାଗ, ଚୌଖମ୍ବା ସଂସ୍କୃତ ସଂସ୍ଥାନ, ବାରାଣସୀ ୧୯୭୭ ।

## ( ଇଂରାଜୀ )

1. Barua Birinchi Kumar, Assamese Literature, P. E. N. books.

2. Do, Aspects of Early Assamese Literature, Gauhati University.

3. Bhandarkar Sir R. G Vaisnavism Saivism and Minor Religious Systems, Indological Book House Varanasi.

4. Bhattacharya Haridas, ed. The Cultural Heritage of India, Vol. v. Reprint 1975, Religions, The Ramakrishna Mission Institute of Culture, Paper:—"Bhagabat Religion : The Cult of Bhakti by Jadunath Sinha."

5. Chatterji Suniti Kumar, Language and Literature of Modern India 1st impression, Prakash Bhavan, Calcutta 1963.

6. Cohen J. M. & M. J, The Penguin Dictionary of quotations, The English Language Book Society & Penguin Books, Great Britain 1964.

7. Dasgupta S. N. & De S. K. ed. History of Sanskrit Literature, Vol. I, 2nd edn, University of Calcutta 1962.

8. De S. K, Early History of the Vaisnav Faith and Movement in Bengal, 1st edn. Firma K. L Mukhopadhyaya Calcutta 1961.

9. Do, Ancient Indian Erotics and Erotic Literature, 1st edn. Firma K. L. M. Cal. 1959.

10. Do, Bengali Literature in the Nineteenth Century (1757-1857), Firma K. L. M. Cal. 1962.

11. Do, History of Sanskrit Poetics, Firma K. L. M. Cal. 1960.

12. Do, Some Problems of Sanskrit Poetics, 1st edn. Firma K. L. M. Cal. 1959.

13. De S. K. ed, Vakrokti Jivita of Kuntaka, 3rd edn. Firma K. L. M. Cal, 1961.

14. Do, Aspects of Sanskrit Literature, Cal, 1959.

15. Dwivedi R. C. ed, Principles of Literary Criticism in Sanskrit 1969 (Paper 'An Etymological note on the word Alankara' by Dr G. C. Tripathi)

16. Edwards Paul, ed. The Encyclopaedia of Philosophy, Vol V & VI, Collier Macmillan Publishers, London 1972 P 89

17. Eschmann Anncharlott ed. The Cult of Jagannath and The Regional Tradition of Orissa, 1st edn, New Delhi 1978.

18. Eliot T. S. Selected Essays (Essay : "Tradition and Individual Talent ")

19 Encyclopaedia Britanica, Vol. VII.

20 Gupta Rakes'a Psychological Studies in Rasa, 1st edn. Oriental Book House, Poona.

21. Sterling Andrew, History of Orissa, Vol. I & Vol. II ed. Dr N. K. Sahoo, Published by Susil Gupta, India Ltd- Calcutta

22. Kane P. V., History of Alankara Literature (Introduction to Sahitya Darpana).

23. Katre S. M., ed. A Volume of Studies in Indology, Oriental Book Agency (Poona), 1941 (Presented to Prof P. V. Kane) Papers :—

(i) 'Devotional Lyrics in Kannada Literature' by K. C. Kundangar.

(ii) 'Vaisnavism of Assam and Southern India' by B. Kakati.

Jiii) 'Concept of Suggestion in Hindu Aesthetics by, P S. Naidu.

24. Lahiri P. C. Concepts of Riti and Guna in Sanskrit Poetics in their Historical Development, University of Dacca 1937.

25. Law B. C , ed. Dr. Bhandarkar Volume, Published by Indian Research Institute, Calcutta 1940: Papers, "Indian Aesthetics" by P. B Adhikari" "Role of Alamkara in Indian Philosophy" by Dorothy Stede.

26 Maltby T. J., The Ganjam District Manual, ed. G. D. Leman Madras 1918.

27. Majumdar B. C. Typical Selections from Oriya Literature, Vol II Cal 1923.

28. Misra Jayakanta, History of Maithili Literature.

29. Mukherjee Prabhat. History of Medieval Vaisnavism in Orissa, Pub : R. Chatterjee Cal. 1940.

30 Do, History of the Chaitanya Faith in Orissa, 1st edn. Manohar Publications New Delhi 1979.

31. Munshi K. M , Gujrat and its Literature, 2nd edn. Bharatiya Vidya Bhavan Bombay 1954.

32 Narasimhaiah C. D. Literary Criticism, European and Indian Traditions Deptt. of P. G. Studies and Research in English University of Mysore.

33 Nagendra Dr. ed Indian Literature, 1st edn, L. N- Agarwal Agra 1959.

34. Pandey K, C, Comparative Aesthetics Vol I, Indian Aesthetics 2nd edn, Varanasi 1959

35. Popley, H, A, The Sacred Kural or Tamil Veda of Tiruvalluvar Tr, 2nd edn, Y, M, C, A, Publishing House Calcutta 1958

36. Press John. ed. Palgrave's Golden Treasury, 5th edn (P. B, Shelley, 'To a skylark' P 245)

37. Raju P, T, Telugu Literature, International Book House Ltd, Bombay,

38. Raghavan V, The Number of Rasas, The Adyar Library Adyar Madras 1940,

39. Do, Some Concepts of Alankara Sastra, The Adyar Library Adyar Madras 1942,

40. Do, Bhojas Srngara Prakasa Punarvasu Madras 1963

41. Rajaguru S, N, History of the Gangas Vol. II,

42 Do, Invocatory Verses from Inscriptions Vol I, 1st edn, Bhubaneswar 1971

43 Do Inscriptions of Orissa Val II,

44. Sastri Nilakanta, Development of Religion in South India, 1st edn. Orient Longmans 1963,

45. Sahoo Basudeb, Descriptive Catalogue of Oriya Manuscripts 1st edn.

46. Sen Sukumar, History of Brajabuli Literature, 1st edn. Calcutta University 1935.

47. Tadpatrikar S. N. ed. Caurapancasika (An Indian Love Lament), Oriental Book Agency, Poona 1966.

48. Tryon Edwards, D. D. Comp., The New Dictionary of Thoughts (An Encyclopaedia of Quotations), Universal Text Books Limited London.

49. Watson George, The Literary Thesis, Pt, I, Longman 1970.

## ପତ୍ର-ପତ୍ରିକା

### ( ଓଡ଼ିଆ )

୧ । ଉତ୍କଳ ସାହିତ୍ୟ, ସମ୍ପା. ବିଶ୍ୱନାଥ କର ।

୨ । ଝଙ୍କାର ୯ମ ବର୍ଷ, ୯ମ ସଂଖ୍ୟା, ସମ୍ପା. ଡକ୍ଟର ହରେକୃଷ୍ଣ ମହତାବ ।

୩ । ଡଙ୍କେବ ୧୬ଶ ବର୍ଷ, ୧୦ମ ସଂଖ୍ୟା, ଜାନୁଆରୀ ୧୯୬୬ ।

୪ । ଡଙ୍କେବ ଜୁନ୍ ସଂଖ୍ୟା ୧୯୭୧ ।

୫ । ଡଙ୍କେବ ୨୧ଶ ବର୍ଷ ୧ମ ସଂଖ୍ୟା ।

୬ । କୋଣାର୍କ ୧୯୬୮, ଓ, ସା; ଏ, ମୁଖପତ୍ର (ବ୍ରଜବୁଲି ସାହିତ୍ୟ) ।

୭ । ସମାଜ ୧।୪।୭୮; ସମ୍ପା-ଡଃ ରାଧାନାଥ ରଥ ।

୮ । ଝଙ୍କାର ୧୯୮୦, ୩୨ଶ ବର୍ଷ ୩ୟ ସଂଖ୍ୟା, ଜୁନ (ବୈଷ୍ଣବ କାବ୍ୟରେ ପ୍ରେମ ଓ ରସତତ୍ତ୍ୱ -୧ ); ପୃ-୨୩୯ ।

୯ । ଝଙ୍କାର ୧୯୮୦, ୩୨ଶ ବର୍ଷ; ୮ମ ସଂଖ୍ୟା ନଭେମ୍ବର (ବୈଷ୍ଣବ କାବ୍ୟରେ ପ୍ରେମ ଓ ରସତତ୍ତ୍ୱ -୨), ପୃ-୬୭୧ ।

୧୦ । ସପ୍ତର୍ଷି ୧୯୮୦ ଜୁଲାଇ, ୯ମ ବର୍ଷ ୭ମ ସଂଖ୍ୟା, ପୃ-୧, ସମ୍ବଲପୁର ବିଶ୍ୱବିଦ୍ୟାଳୟ ।

( ଇଂରାଜୀ )

1. Annals of the Bhandarkar Oriental Reasearch Institute (A. B. O. R.I ), Silver Jubilee Volume, Vol. No XXIII, Pt. I-IV, 1917-1942, ed. R. N. Dandekar 1942. Papers :—

(i) 'Psychology of the Rasa-Theory' by K. N. Watawe PP. 669-677;

(ii) 'Sex life in Ancient India—Some Thought' by K. R. Pisharoti, PP. 336-340;

(iii) 'The Philosophy of Madhva Dvaita Vedanta' by Nagaraj Rao, P-379;

(iv) 'Some Contributions of Alvars to the Philosophy of Bhakti' by K. C. Varadachari, P. 621;

(v) 'Origin of Bhagabata and Jaina Religion' by P. C. Divanji, PP. 107-118.

2. Bhavans Journal, Vol. XIII, No. 9, 1966 ed. Dr. K. M, Munshi, Paper :—"The Six Darsanas : The Rational Quest for Philosophy and Discipline—The Nyaya Darsana" by Dr. Narasim hayya.

3. Journal of Bihar Orissa Research Society (J. B. O. R S), Vol. XII, Pt. III, 1926 Review of books : "Vaisnav Lyrics done into English Verse" by Surendranath Kumar etc., Oxford University Press, London 1923.

4. J. B. O. R. S, Vol, XX. pt. 1, 1934 Paper;—"Unity between the Deity and the Devotee" by Kalipada Mitra.

5. Journal of the Kalinga Historical Research Society, Vol, I No. 4 March 1947, Paper by P. Mukherjee.

6. Proceedings of the Asiatic Society, Bengal ed. by Honorary Secretaries, January-December 1898.

Sub :-Notes on Language and Literature of Orissa, Part III & IV by M M. Chakravarti, Deputy Magistrate Gaya.

Part III :-Oriya Songs and Religious Poems, P. P. 332-349.
Part IV :-The Later Oriya Poets, PP. 350-386.

7. Souvenir on Sri Jayadeva, ed. Dr. N. K. Sahu Published by "The Jayadeva Sanskrutika Parishad, Orissa Bhubaneswar, 1968, Paper :—

"On the Worship of Images of Radha Krsna" by P. Acharya PP. 52-72.

8. The Orissa Historical Research Journal, Vol, VIII October 1959 and January 1960. No. 3 and 4, ed. Superintendent, Archeology and Museum, Bhubaneswar Paper :—Tikakara Kaviratna Purusottama Misra (1606-1680) by K. N. Mohapatra P 206.

9. O. H. R J. Vol, III Dec, 1954 No 3,
Paper :-"Notices on Palmleaf manuscripts-Govinda Lilamrta with its Commentary" by K. N. Mohapatra.

10. O. H. R. J Vol VII, July 1958, Pt II. Paper :—
"Two unknown Sanskrit Poets of Orissa : Krsna Dasa Bada Jena Mohapatra and Haladhara Misra."



# ଡଃ ବଳଙ୍କ ପ୍ରକାଶିତ ରଚନାବଳୀ

## ସାହିତ୍ୟ ସମାଲୋଚନା :

୧। ସାହିତ୍ୟାଲୋକ, ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର କଟକ ୧୯୬୪
୨। ସାହିତ୍ୟ ଆଲୋଚନା, ଗ୍ରନ୍ଥମନ୍ଦିର କଟକ ୧୯୬୫
୩। ଆଲୋକ ଓ ଆଲୋଚନା, ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ ୧୯୭୦
୪। ସାହିତ୍ୟ ଜିଜ୍ଞାସା, ଓଡ଼ିଶା ବୁକ୍ ଷ୍ଟୋର କଟକ ୧୯୭୧ ୨ୟ ସଂ ୧୯୮୩
୫। ଭାଷା ଓ କବିବର ରାଧାନାଥ, ସାହିତ୍ୟ ଜଗତ୍ ବାଲେଶ୍ୱର ୧୯୬୮
୬। ରସକଲ୍ଲୋଳ (ସମୀକ୍ଷାତ୍ମକ ଟୀକା), ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର ୧୯୬୪
୭। ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା, ବିଦ୍ୟାପୁରୀ ୧୯୮୨
୮। ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା, ବିଦ୍ୟାପୁରୀ ୧୯୮୫
୯। ମେହେର ସୃଷ୍ଟି ସମୀକ୍ଷା, ସାଥୀ ମହଲ ୧୯୮୪
୧୦। ସାହିତ୍ୟିକ ବିଚାର ବିମର୍ଶ, ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର ୧୯୮୪
୧୧। ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା, ଗ୍ରନ୍ଥମନ୍ଦିର (ଡିଲକ୍ସ ସନ୍ଦର୍ଭ) ୧୯୮୫

## ସାଧାରଣ ପୁସ୍ତକ :

୧୨। ଅମୃତ ପୁତ୍ର (ସନ୍ଥ ଜୀବନୀ), ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର ୧୯୭୦
୧୩। ସ୍ରଷ୍ଟା ଓ ସୃଷ୍ଟି (କବି ଜୀବନୀ) ପୁରସ୍କୃତ, ବାଣୀଭଣ୍ଡାର ୧୯୭୧
୧୪। କଥା କଳିକା (ଶିଶୁ ସାହିତ୍ୟ), କନକ ପବ୍ଲିସିଂ ହାଉସ୍ ୧୯୬୩ ୨ୟ ସଂ-୧୯୮୪
୧୫। ଅଜାତର ଅଭୁଲା କାହାଣୀ (କିଶୋର ସାହିତ୍ୟ) ଗ୍ରନ୍ଥସାଥୀ ୧୯୭୭
୧୬। ଆଦିବାସୀ କାହାଣୀ (ଶିଶୁ ସାହିତ୍ୟ), ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର ୧୯୬୨
୧୭। ମୂକ ରାଜକନ୍ୟା ଓ ଅନ୍ୟାନ୍ୟ କାହାଣୀ, ଗ୍ରନ୍ଥସାଥୀ ୧୯୭୨

## ସମ୍ପାଦନା :

୧୮। 'ମହାମାନବର ସାଗରତୀରେ, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ କେନ୍ଦ୍ର, ବାଲେଶ୍ୱର ୧୯୭୦
୧୯। ଅଭିନନ୍ଦନ ଗ୍ରନ୍ଥ (ଡଃ କାହ୍ନୁ ଚରଣ ମିଶ୍ରଙ୍କ ଷଷ୍ଟି ପୂର୍ତ୍ତି ଉପଲକ୍ଷେ), ତାରତାରିଣୀ ବୁକ୍ ଷ୍ଟୋର୍ ୧୯୮୩

## ପ୍ରକାଶ ଅପେକ୍ଷାରେ :

୧। କବି ଓ କାବ୍ୟ (ସାହିତ୍ୟ ସମାଲୋଚନା)
୨। ଦ୍ୱିତୀୟାଶ୍ରମ